# ଶ୍ରୀମଦ୍
# ବାଲ୍ମୀକି ରାମାୟଣମ୍

(ସୁନ୍ଦରକାଣ୍ଡଃ)

# ଶ୍ରୀମଦ୍

# ବାଲ୍ମୀକିରାମାୟଣମ୍

## (ସୁନ୍ଦରକାଣ୍ଡଃ)

---

ସଂଗ୍ରାହକ ଓ ଅନୁବାଦକ


ପଣ୍ଡିତ ଲିଙ୍ଗରାଜ ମିଶ୍ର, ଏମ୍. ଏ.



ପ୍ରଥମ ସଂସ୍କରଣ

୧୯୫୬






ମୂଲ୍ୟ ଟ ୬।୮ ଛଅ ଟଙ୍କା ଆଠ ଅଣା ମାତ୍ର

# ଶ୍ରୀମଦ୍ରାମାୟଣସର୍ଗନାମାନୁକ୍ରମଣିକା

## ସୁନ୍ଦରକାଣ୍ଡଃ

# ଶ୍ରୀମଦ୍ ବାଲ୍ମୀକିରାମାୟଣମ୍

## ସୁନ୍ଦରକାଣ୍ଡଃ

---

## ପ୍ରଥମଃ ସର୍ଗଃ

### ସାଗରଲଙ୍ଘନମ୍

ତତୋ ରାବଣନୀତାୟାଃ ସୀତାୟାଃ ଶତ୍ରୁକର୍ଷଣଃ ।
ଇୟେଷ ପଦମନ୍ୱେଷ୍ଟୁଂ ଚାରଣାଚରିତେ ପଥି । ୧ ।
ଦୁଷ୍କରଂ ନିଷ୍ପ୍ରତିଦ୍ୱନ୍ଦ୍ୱଂ ଚିକୀର୍ଷନ୍ କର୍ମ ବାନରଃ ।
ସମୁଦଗ୍ରଶିରୋଗ୍ରୀବୋ ଗବାଂ ପତିରିବାବଭୌ । ୨ ।
ଅଥ ବୈଦୂର୍ଯ୍ୟବର୍ଣ୍ଣେଷୁ ଶାଦ୍ୱଲେଷୁ ମହାବଲଃ ।
ଧୀରଃ ସଲିଳକଳ୍ପେଷୁ ବିଚଚାର ଯଥାସୁଖମ୍ । ୩ ।

---

## ୧ମ ସର୍ଗ

### ( ସାଗରଲଙ୍ଘନ )

ଅନନ୍ତର ଶତ୍ରୁକର୍ଷଣ ହନୁମାନ୍ ରାବଣକର୍ତ୍ତୃକ ଅପହୃତ ହୋଇଥିବା ସୀତାଙ୍କ ସ୍ଥାନ ଖୋଜିବାପାଇଁ ଚାରଣମାନେ ଯେଉଁ ଆକାଶପଥରେ ଚଳପ୍ରଚଳ ହୁଅନ୍ତି, ସେହି ପଥରେ ଯିବାକୁ ଇଚ୍ଛାକଲେ । ୧ । ସେହି ବାନର ଅନ୍ୟର ଅସାଧ୍ୟ ଏହି ଦୁଷ୍କର କାର୍ଯ୍ୟ କରିବାପାଇଁ ଅଭିଳାଷ କରି ଗ୍ରୀବା ଏବଂ ମସ୍ତକ ଉତ୍ତୋଳନ-ପୂର୍ବକ ବୃଷଭସଦୃଶ ଶୋଭାପାଇଲେ । ୨ । ଅନନ୍ତର ସେହି ଧୀର ମହାବଳ ହନୁମାନ୍ ବୈଦୂର୍ଯ୍ୟବର୍ଣ୍ଣ ଜଳସଦୃଶ ତୃଣକ୍ଷେତ୍ରରେ ମନଃସୁଖରେ ବିଚରଣ

ଦ୍ୱିଜାନ୍ ବିତ୍ରାସୟନ୍ ଧୀମାନୁରସା ପାଦପାନ୍ ହରନ୍ ।
ମୃଗାଂଶ୍ଚ ସୁବହୂନ୍ ନିଘ୍ନନ୍ ପ୍ରବୃଦ୍ଧ ଇବ କେସରୀ ।୪।
ନୀଲଲୋହିତମାଞ୍ଜିଷ୍ଠପଦ୍ମବର୍ଣ୍ଣୈଃ ସିତାସିତୈଃ ।
ସ୍ୱଭାବସିଦ୍ଧୈର୍ବିମଲୈର୍ଧାତୁଭିଃ ସମଲଂକୃତମ୍ । ୫ ।
କାମରୂପିଭିରାବିଷ୍ଟମଭୀକ୍ଷ୍ଣଂ ସପରିଚ୍ଛଦୈଃ ।
ଯକ୍ଷକିନ୍ନରଗନ୍ଧର୍ବୈର୍ଦେବକଳ୍ପୈଃ ସପନ୍ନଗୈଃ । ୬ ।
ସ ତସ୍ୟ ଗିରିବର୍ଯ୍ୟସ୍ୟ ତଲେ ନାଗବରାୟୁତେ ।
ତିଷ୍ଠନ୍ କପିବରସ୍ତତ୍ର ହ୍ରଦେ ନାଗ ଇବାବଭୌ । ୭ ।
ସ ସୂର୍ଯ୍ୟାୟ ମହେନ୍ଦ୍ରାୟ ପବନାୟ ସ୍ୱୟଂଭୁବେ ।
ଭୂତେଭ୍ୟଶ୍ଚାଞ୍ଜଳିଂ କୃତ୍ୱା ଚକାର ଗମନେ ମତିମ୍ । ୮ ।
ଅଞ୍ଜଳିଂ ପ୍ରାଙ୍ମୁଖଃ କୁର୍ବନ୍ ପବନାୟାତ୍ମଯୋନୟେ ।
ତତୋ ହି ବବୃଧେ ଗନ୍ତୁଂ ଦକ୍ଷିଣୋ ଦକ୍ଷିଣାଂ ଦିଶମ୍ । ୯ ।
ପ୍ଲବଗପ୍ରବରୈର୍ଦୃଷ୍ଟଃ ପ୍ଲବନେ କୃତନିଶ୍ଚୟଃ ।
ବବୃଧେ ରାମବୃଦ୍ଧ୍ୟର୍ଥଂ ସମୁଦ୍ର ଇବ ପର୍ବସୁ । ୧୦ ।

---

କରିବାକୁ ଲାଗିଲେ । ୩ । ସେ ପକ୍ଷୀମାନଙ୍କୁ ଭୟଭୀତ କରାଇ ଏବଂ ବକ୍ଷାଦ୍ୱାରା ବୃକ୍ଷମାନଙ୍କୁ ପକାଇଦେଇ ତଥା ବହୁସଂଖ୍ୟକ ମୃଗଙ୍କୁ ହତ୍ୟାକରି ବର୍ଦ୍ଧିତ ସିଂହସଦୃଶ ଦେଖାଗଲେ । ୪ । ସେହି କପିଶ୍ରେଷ୍ଠ ପ୍ରାକୃତିକ ଶ୍ୱେତ, କୃଷ୍ଣ, ନୀଳ, ଲୋହିତ ଓ ମାଞ୍ଜିଷ୍ଠବର୍ଣ୍ଣର ବିମଳ ଧାତୁମାନଙ୍କଦ୍ୱାରା ଅଳଙ୍କୃତ, ସପରିବାର ଦେବତୁଲ୍ୟ, କାମରୂପୀ ଯକ୍ଷ, ଗନ୍ଧର୍ବ, କିନ୍ନର ଓ ପନ୍ନଗମାନଙ୍କ ଦ୍ୱାରା ସତତସେବିତ ଏବଂ ଶ୍ରେଷ୍ଠ ନାଗସମାକୀର୍ଣ୍ଣ ସେହି ମହେନ୍ଦ୍ର ପର୍ବତର ତଳେ ଠିଆହୋଇ, ହ୍ରଦ-ମଧ୍ୟସ୍ଥିତ ଗଜସଦୃଶ ଶୋଭାପାଇଲେ । ୫-୭ । ସେ ସୂର୍ଯ୍ୟ, ମହେନ୍ଦ୍ର, ପବନ, ବ୍ରହ୍ମା ଏବଂ ଅନ୍ୟାନ୍ୟ ଭୂତଗଣଙ୍କୁ କୃତାଞ୍ଜଳି ହୋଇ ଯାତ୍ରା କରିବାକୁ ମନକଲେ । ୮ । ସୁଦକ୍ଷ ହନୁମାନ୍ ପୂର୍ବମୁଖ ହୋଇ କରଯୋଡ଼ି ନିଜର ପିତା ପବନଦେବଙ୍କୁ ନମସ୍କାର କରି ଦକ୍ଷିଣଦିଗକୁ ଯିବାପାଇଁ ବର୍ଦ୍ଧିତ ହେବାକୁ ଲାଗିଲେ । ୯ । ପ୍ରଧାନ ପ୍ରଧାନ ବାନରମାନେ ତାଙ୍କ ଆଡ଼କୁ ଚାହିଁଥାନ୍ତି । ସେ ରାମଙ୍କର ଅଭିବୃଦ୍ଧି ନିମନ୍ତେ ସମୁଦ୍ର ଲଙ୍ଘନ କରିବାପାଇଁ କୃତନିଶ୍ଚୟ ହୋଇ, ପୂର୍ଣ୍ଣିମାରେ ସମୁଦ୍ରପରି ବର୍ଦ୍ଧିତ

ନଷ୍ଟ୍ରମାଣଶରୀରଃ ସଁଲ୍ଲିଲଙ୍ଘୟିଷୁରର୍ଣବମ୍ ।
ବାହୁଭ୍ୟାଂ ପୀଡ଼ୟାମାସ ଚରଣାଭ୍ୟାଂ ଚ ପର୍ବତମ୍ । ୧୧ ।
ସ ଚଚାଲାଚଲଶ୍ଚାଶୁ ମୁହୂର୍ତ୍ତଂ କପିପୀଡ଼ିତଃ ।
ତରୂଣାଂ ପୁଷ୍ପିତାଗ୍ରାଣାଂ ସର୍ବଂ ପୁଷ୍ପମଶାତୟତ୍ । ୧୨ ।
ତେନ ପାଦପମୁକ୍ତେନ ପୁଷ୍ପୌଘେଣ ସୁଗନ୍ଧିନା ।
ସର୍ବତଃ ସଂବୃତଃ ଶୈଲୋ ବଭୌ ପୁଷ୍ପମୟୋ ଯଥା । ୧୩ ।
ତେନ ଚୋତ୍ତମବୀର୍ଯେଣ ପୀଡ଼୍ୟମାନଃ ସ ପର୍ବତଃ ।
ସଲିଲଂ ସଂପ୍ରସୁସ୍ରାବ ମଦମତ୍ତ ଇବ ଦ୍ୱିପଃ । ୧୪ ।
ପୀଡ଼୍ୟମାନସ୍ତୁ ବଲିନା ମହେନ୍ଦ୍ରସ୍ତେନ ପର୍ବତଃ ।
ରୀତିର୍ନିର୍ବର୍ତ୍ତୟାମାସ କାଞ୍ଚନାଞ୍ଜନରାଜତୀଃ । ୧୫ ।
ମୁମୋଚ ଚ ଶିଲାଃ ଶୈଲୋ ବିଶାଲାଃ ସମନଃଶିଲାଃ ।
ମଧ୍ୟମେନାର୍ଚିଷା ଜୁଷ୍ଟୋ ଧୂମରାଜୀରିବାନଲଃ ।୧୬ ।
ହରିଣା ପୀଡ଼୍ୟମାନେନ ପୀଡ଼୍ୟମାନାନି ସର୍ବତଃ ।
ଗୁହାବିଷ୍ଟାନି ସତ୍ତ୍ୱାନି ବିନେଦୁର୍ବିକୃତୈଃ ସ୍ୱରୈଃ । ୧୭ ।

---

ହେବାକୁ ଲାଗିଲେ । ୧୦ । ସେ ସମୁଦ୍ର ଲଙ୍ଘନ କରିବାକୁ ଅଭିଳାଷୀ ହୋଇ ଅପରିମିତ ବିଶାଳଶରୀର ଧାରଣକରି ବାହୁ ଏବଂ ଚରଣଦ୍ୱୟଦ୍ୱାରା ସେହି ପର୍ବତକୁ ଆଘାତ କରିବାକୁ ଲାଗିଲେ । ୧୧ । ବାନରକର୍ତ୍ତୃକ ଅଭିହତ ହୋଇ ସେହି ପର୍ବତ ସତ୍ୱର ମୁହୂର୍ତ୍ତକ ପାଇଁ କମ୍ପି ଉଠିଲା । ତଦ୍ଦ୍ୱାରା ପୁଷ୍ପିତାଗ୍ର ବୃକ୍ଷମାନଙ୍କର ଫୁଲଗୁଡ଼ିକ ଝଡ଼ିପଡ଼ିଲା । ୧୨ । ସେହି ସମସ୍ତ ସୁଗନ୍ଧଯୁକ୍ତ ପୁଷ୍ପରାଜି ବୃକ୍ଷରୁ ପତିତ ହୋଇ ଚାରିଆଡ଼େ ପର୍ବତକୁ ସମାଚ୍ଛନ୍ନ କରିଦେବାରୁ ତାହା ପୁଷ୍ପଦ୍ୱାରାହିଁ ନିର୍ମିତ ହୋଇଥିବା ପରି ଶୋଭାପାଇଲା । ୧୩ । ସେହି ମହାବଳଶାଳୀ ହନୁମାନଙ୍କ କର୍ତ୍ତୃକ ନିପୀଡ଼ିତ ହୋଇ ମତ୍ତହସ୍ତୀ ମଦ କ୍ଷରଣ କଲାପରି ସେ ପର୍ବତ ଜଳକ୍ଷରଣ କରିବାକୁ ଲାଗିଲା । ୧୪ । ସେହି ମହେନ୍ଦ୍ର ପର୍ବତ ସେ ମହାବଳୀଙ୍କ ଦ୍ୱାରା ପୀଡ଼୍ୟମାନ ହୋଇ ସ୍ୱର୍ଣ୍ଣ ଓ ରଜତବର୍ଣ୍ଣର ସ୍ରୋତମାନ ପ୍ରବାହିତ କରିବାକୁ ଲାଗିଲା ।୧୫ । ସେହି ପର୍ବତ ମନଃଶିଳାସମନ୍ୱିତ ବିଶାଳ ଶିଳାଖଣ୍ଡମାନ ମୋଚନ କରିବାଦ୍ୱାରା ବୋଧହେଲା, ଯେପରି ଅଗ୍ନିର ମଧ୍ୟସ୍ଥାନ ଜଳୁଛି ଏବଂ ତାହାର ଚତୁର୍ଦ୍ଦିଗରୁ ଧୂମ ନିର୍ଗତ ହେଉଅଛି । ୧୬ । ବାନରକର୍ତ୍ତୃକ ପର୍ବତ ପୀଡ଼୍ୟମାନ ହେବାରୁ ତାହାର ଗୁହାମଧ୍ୟସ୍ଥିତ ପ୍ରାଣୀମାନେ ସର୍ବତୋଭାବରେ ନିପୀଡ଼ିତ ହୋଇ ବିକୃତସ୍ୱରରେ ଚିତ୍କାର କରିବାକୁ

ସ ମହାନ୍ ସତ୍ତ୍ୱସଂନାଦଃ ଶୈଳପୀଡ଼ାନିମିତ୍ତକଃ ।
ପୃଥିବୀଂ ପୂରୟାମାସ ଦିଶଶ୍ଚୋପବନାନି ଚ । ୧୮ ।
ଶିରୋଭିଃ ପୃଥୁଭିର୍ନାଗା ବ୍ୟକ୍ତସ୍ୱସ୍ତିକଲକ୍ଷଣୈଃ ।
ବମନ୍ତଃ ପାବକଂ ଘୋରଂ ଦଦଂଶୁର୍ଦଶନୈଃ ଶିଳାଃ । ୧୯ ।
ତାସ୍ତଦା ସବିଷୈର୍ଦଷ୍ଟାଃ କୁପିତୈସ୍ତୈର୍ମହାଶିଳାଃ ।
ଜଜ୍ୱଲୁଃ ପାବକୋଦ୍ଦୀପ୍ତା ବିଭିଦୁଶ୍ଚ ସହସ୍ରଧା । ୨୦ ।
ଯାନି ତ୍ୱୌଷଧଜାଲାନି ତସ୍ମିଞ୍ଜାତାନି ପର୍ବତେ ।
ବିଷଘ୍ନାନ୍ୟପି ନାଗାନାଂ ନ ଶେକୁଃ ଶମିତୁଂ ବିଷମ୍ । ୨୧ ।
ଭିଦ୍ୟତେଽୟଂ ଗିରିର୍ଭୂତୈରିତି ମତ୍ୱା ତପସ୍ୱିନଃ ।
ତ୍ରସ୍ତା ବିଦ୍ୟାଧରାସ୍ତସ୍ମାଦୁତ୍ପେତୁଃ ସ୍ତ୍ରୀଗଣୈଃ ସହ । ୨୨ ।
ପାନଭୂମିଗତଂ ହିତ୍ୱା ହୈମମାସନଭାଜନମ୍ ।
ପାତ୍ରାଣି ଚ ମହାର୍ହାଣି କରକାଂଶ୍ଚ ହିରଣ୍ମୟାନ୍ । ୨୩ ।
ଲେହ୍ୟାନୁଚ୍ଚାବଚାନ୍ ଭକ୍ଷ୍ୟାନ୍ମାଂସାନି ବିବିଧାନି ଚ ।
ଆର୍ଷଭାଣି ଚ ଚର୍ମାଣି ଖଡ୍‌ଗାଂଶ୍ଚ କନକତ୍ସରୂନ୍ । ୨୪ ।

---

ଲଗିଲେ । ୧୭ । ପ୍ରାଣୀମାନଙ୍କର ସେହି ଶୈଳପୀଡ଼ାଜନିତ ଶବ୍ଦୋଚ୍ଚଧ୍ୱନି ପୃଥିବୀକୁ, ଦିଗମାନଙ୍କୁ ଏବଂ ଉପବନମାନଙ୍କୁ ପରିପୂର୍ଣ୍ଣ କରିଦେଲା । ୧୮ । ସର୍ପମାନେ ଫଣାସ୍ଥିତ ଚକ୍ରଚିହ୍ନ ପ୍ରକାଶପୂର୍ବକ ସେମାନଙ୍କର ପ୍ରଶସ୍ତ ମସ୍ତକରୁ ଭୟଙ୍କର ଅଗ୍ନି ଉଦ୍‌ଗୀରଣ କରି ଦନ୍ତଦ୍ୱାରା ଶିଳାମାନଙ୍କୁ ଦଂଶନ କରିବାକୁ ଲାଗିଲେ । ୧୯ । ସେହି ବୃହତ୍ ଶିଳାଖଣ୍ଡମାନ ବିଷାକ୍ତ କ୍ରୁଦ୍ଧ ସର୍ପମାନଙ୍କ ଦ୍ୱାରା ଦଷ୍ଟ ହୋଇ ଅଗ୍ନିପ୍ରଦୀପ୍ତ ଦ୍ରବ୍ୟପରି ପ୍ରଜ୍ୱଳିତ ହୋଇ ଉଠିଲେ ଏବଂ ସହସ୍ରଖଣ୍ଡରେ ବିଦୀର୍ଣ୍ଣ ହୋଇଗଲେ । ୨୦ । ସେହି ପର୍ବତରେ ଯେଉଁସବୁ ବିଷଘ୍ନ ଔଷଧିବୃକ୍ଷ ଜନ୍ମିଥିଲା ସେ ସବୁ ଏହି ସର୍ପମାନଙ୍କର ବିଷ ନିବାରଣ କରିବାକୁ ସମର୍ଥ ହେଲେ ନାହିଁ । ୨୧ । 'ଏହି ପର୍ବତ ଏହାର ମଧ୍ୟସ୍ଥିତ ପ୍ରାଣୀମାନଙ୍କ ଦ୍ୱାରା ବିଦୀର୍ଣ୍ଣ ହେଉଅଛି' ଏହି କଥା ମନେକରି ତପସ୍ୱୀମାନେ ଏବଂ ବିଦ୍ୟାଧରମାନେ ନିଜ ନିଜ ସ୍ତ୍ରୀଗଣଙ୍କ ସହିତ ସେଠାରୁ ଉତ୍ପତିତ ହେଲେ । ୨୨ । ରକ୍ତବର୍ଣ୍ଣ ମାଲ୍ୟ ଓ ରକ୍ତଚନ୍ଦନଧାରୀ ମଦମତ୍ତ ରକ୍ତଲୋଚନ ବିଦ୍ୟାଧରମାନେ ମଦ୍ୟପାନଭୂମିରେ ପଡ଼ିଥିବା ସ୍ୱର୍ଣ୍ଣମୟ ମଦ୍ୟପାତ୍ର, ଭୋଜନପାତ୍ର, ମହାମୂଲ୍ୟ ସ୍ୱର୍ଣ୍ଣଭୂଷିତ ସରେଇ, ଉତ୍କୃଷ୍ଟ ଓ ନିକୃଷ୍ଟ ପ୍ରକାର ଲେହ୍ୟ, ଭକ୍ଷ୍ୟ ଓ ମାଂସ ତଥା

କୃତକଣ୍ଠଗୁଣାଃ କ୍ଷୀବା ରକ୍ତମାଲ୍ୟାନୁଲେପନାଃ ।
ରକ୍ତାକ୍ଷାଃ ପୁଷ୍କରାକ୍ଷାଶ୍ଚ ଗଗନଂ ପ୍ରତିପେଦିରେ । ୨୫ ।
ହାରନୂପୁରକେୟୂରପାରିହାର୍ଯଧରାଃ ସ୍ତ୍ରିୟଃ ।
ବିସ୍ମିତାଃ ସସ୍ମିତାସ୍ତସ୍ଥୁରାକାଶେ ରମଣୈଃ ସହ । ୨୬ ।
ଏଷ ପର୍ବତସଂକାଶୋ ହନୂମାନ୍ ମାରୁତାତ୍ମଜଃ ।
ତିତୀର୍ଷତି ମହାଦେହଃ ସମୁଦ୍ରଂ ବରୁଣାଲୟମ୍ । ୨୭ ।
ରାମାର୍ଥଂ ବାନରାର୍ଥଂ ଚ ଚିକୀର୍ଷନ୍ କର୍ମ ଦୁଷ୍କରମ୍ ।
ସମୁଦ୍ରସ୍ୟ ପରଂ ପାରଂ ଦୁଷ୍ପ୍ରାପଂ ପ୍ରାପ୍ତୁମିଚ୍ଛତି । ୨୮ ।
ଇତି ବିଦ୍ୟାଧରା ବାଚଃ ଶ୍ରୁତ୍ୱା ତେଷାଂ ତପସ୍ୱିନାମ୍ ।
ମପ୍ରମେୟଂ ଦଦୃଶୁଃ ପର୍ବତେ ବାନରର୍ଷଭମ୍ । ୨୯ ।
ଦୁଧୁବେ ଚ ସରୋମାଣି ଚକମ୍ପେ ଚ୍ଚଚଲୋପମଃ ।
ନନାଦ ଚ ମହାନାଦଂ ସୁମହାନିବ ତୋୟଦଃ । ୩୦ ।
ଆନୁପୂର୍ବ୍ୟାଚ୍ଚ ବୃତ୍ତଂ ତଲ୍ଲାଙ୍ଗୂଲଂ ଲୋମଭିଶ୍ଚିତମ୍ ।
ଉତ୍ପତିଷ୍ୟନ୍ ବିଚିକ୍ଷେପ ପକ୍ଷିରାଜ ଇବୋରଗମ୍ । ୩୧ ।

---

ବୃଷଭଚର୍ମନିର୍ମିତ ଫଳକଯୁକ୍ତ ସ୍ୱର୍ଣ୍ଣମୁଷ୍ଟିଯୁକ୍ତ ଖଡ୍‌ଗମାନଙ୍କୁ ସେଠାରେ ଛାଡ଼ିଦେଇ ଆକାଶକୁ ଉଠିଗଲେ । ୨୩-୨୫ । ହାର, ନୂପୁର, ତାଡ଼ ଏବଂ ବକ୍ଷାଭରଣଧାରିଣୀ ବିଦ୍ୟାଧରରମଣୀମାନେ ଆଶ୍ଚର୍ଯ୍ୟ ହୋଇ ହସି ହସି ସ୍ୱାମୀମାନଙ୍କ ସହିତ ଆକାଶରେ ଅବସ୍ଥାନ କଲେ । ୨୬ । "ଏହି ପର୍ବତସଦୃଶ ବିଶାଳଶରୀର ପବନନନ୍ଦନ ହନୁମାନ୍ ବରୁଣାଳୟ ସମୁଦ୍ରକୁ ଉତ୍ତୀର୍ଣ୍ଣ ହେବାକୁ ଇଚ୍ଛା କରୁଅଛି । ଏ ରାମ ଏବଂ ବାନରମାନଙ୍କ ଲାଗି ଦୁଷ୍କର କାର୍ଯ୍ୟ କରିବାକୁ ଅଭିଳାଷୀ ହୋଇ ଦୁଷ୍ପ୍ରାପ୍ୟ ସମୁଦ୍ରର ଅପର ତୀରକୁ ଯିବାପାଇଁ ଇଚ୍ଛା କରୁଅଛି ।" ତପସ୍ୱୀମାନଙ୍କର ଏହି କଥା ଶୁଣି ବିଦ୍ୟାଧରମାନେ ସେହି ଅତୁଳପ୍ରଭାବ ବାନରଶ୍ରେଷ୍ଠଙ୍କୁ ପର୍ବତଉପରେ ଦେଖିବାକୁ ଲାଗିଲେ । ୨୭-୨୯ । ପର୍ବତସଦୃଶ ହନୁମାନ୍ ନିଜର ରୋମମାନଙ୍କୁ ଝାଡ଼ି କମ୍ପିଲା ଏବଂ ବିଶାଳ ମେଘସଦୃଶ ଘୋର ନାଦ କଲା । ୩୦ । ସେ ଉପରକୁ ଡେଇଁବାକୁ ଇଚ୍ଛାକରି, ପକ୍ଷିରାଜ ଗରୁଡ଼ ସର୍ପକୁ ଝିଙ୍ଗାଡ଼ିଦେଲାପରି କ୍ରମାନୁସାରେ ନିଜର ଗୋଲାକାର ଲୋମପୂର୍ଣ୍ଣ ଲାଙ୍ଗୁଳକୁ ଉପରକୁ ଛାଟିଦେଲା । ୩୧ । ବେଗ ଆହରଣ କରିଥିବା

ତସ୍ୟ ଲାଙ୍ଗୂଲମାବିଦ୍ଧମତ୍ତବେଗସ୍ୟ ପୃଷ୍ଠତଃ ।
ଦଦୃଶେ ଗରୁଡ଼େନେବ ହ୍ରିୟମାଣୋ ମହୋରଗଃ ।୩୨।
ବାହୂ ସଂସ୍ତମ୍ଭୟାମାସ ମହାପରିଘସନ୍ନିଭୌ ।
ଆସସାଦ କପିଃ କଟ୍ୟାଂ ଚରଣୌ ସଂଚୁକୋଚ ଚ ।୩୩।
ସଂହୃତ୍ୟ ଚ ଭୁଜୌ ଶ୍ରୀମାଂସ୍ତଥୈବ ଚ ଶିରୋଧରାମ୍ ।
ତେଜଃ ସତ୍ତ୍ୱଂ ତଥା ବୀର୍ଯ୍ୟମାବିବେଶ ସ ବୀର୍ଯ୍ୟବାନ୍ ।୩୩।
ମାର୍ଗମାଲୋକୟନ୍ ଦୂରାଦୂର୍ଦ୍ଧ୍ୱଂ ପ୍ରଣିହିତେକ୍ଷଣଃ ।
ରୁରୋଧ ହୃଦୟେ ପ୍ରାଣାନାକାଶମବଲୋକୟନ୍ ।୩୫।
ପଦ୍ଭ୍ୟାଂ ଦୃଢ଼ମବସ୍ଥାନଂ କୃତ୍ୱା ସ କପିକୁଞ୍ଜରଃ ।
ନିକୁଞ୍ଚ୍ୟ କର୍ଣ୍ଣୌ ହନୁମାନୁତ୍ପତିଷ୍ୟନ୍ ମହାବଲଃ ।୩୬।
ବାନରାନ୍ ବାନରଶ୍ରେଷ୍ଠ ଇଦଂ ବଚନମବ୍ରବୀତ୍ ।
ଯଥା ରାଘବନିର୍ମୁକ୍ତଃ ଶରଃ ଶ୍ୱସନବିକ୍ରମଃ ।୩୭।
ଗଚ୍ଛେତ୍ତଦ୍ୱଦ୍‌ଗମିଷ୍ୟାମି ଲଙ୍କାଂ ରାବଣପାଲିତାମ୍ ।
ନ ହି ଦ୍ରକ୍ଷ୍ୟାମି ଯଦି ତାଂ ଲଙ୍କାୟାଂ ଜନକାତ୍ମଜାମ୍ ।୩୮।
ଅନେନୈବ ହି ବେଗେନ ଗମିଷ୍ୟାମି ସୁରାଲୟମ୍ ।
ଯଦି ବା ତ୍ରିଦିବେ ସୀତାଂ ନ ଦ୍ରକ୍ଷ୍ୟାମି କୃତଶ୍ରମଃ ।୩୯।

---

ହନୁମାନଙ୍କର ପୃଷ୍ଠଦେଶରେ ସଂଲଗ୍ନ ତାହାଙ୍କର ଲାଙ୍ଗୁଳ, ଗରୁଡ଼କର୍ତ୍ତୃକ ବୋହି-ନିଆଯାଉଥିବା ମହାକାୟ ସର୍ପ ପରି ଦେଖାଯାଉଥିଲା ।୩୨। ସେହି ବାନର ମହାପରିଘସଦୃଶ ତାହାର ବାହୁଦ୍ୱୟ ଦୃଢ଼ଭାବରେ ସ୍ତମ୍ଭିତକରି ପାଦଦୁଇଟିକୁ କଟିଦେଶରେ ସଙ୍କୁଚିତ କଲେ ।୩୩। ବୀର୍ଯ୍ୟବାନ୍ ଶ୍ରୀମାନ୍ ହନୁମାନ୍ ଭୁଜଦୁଇଟିକୁ ଏବଂ ଗ୍ରୀବାକୁ ସଙ୍କୁଚିତ କରି ତେଜ, ବଳ ଏବଂ ବୀର୍ଯ୍ୟ ଧାରଣକଲେ ।୩୪। ସେ ଆକାଶମାର୍ଗକୁ ଚାହିଁ ବହୁଦୂରପର୍ଯ୍ୟନ୍ତ ଦୃଷ୍ଟି ସ୍ଥିର କରି ହୃଦୟମଧ୍ୟରେ ପ୍ରାଣବାୟୁକୁ ନିରୋଧ କଲେ ।୩୫। କପିଶ୍ରେଷ୍ଠ ମହାବଳୀ ହନୁମାନ୍ ଉର୍ଦ୍ଧ୍ୱକୁ ଡେଇଁବା ଅଭିଳାଷରେ କର୍ଣ୍ଣଦ୍ୱୟ ସଙ୍କୁଚିତ କରି ଦୁଇପାଦ ଉପରେ ଦୃଢ଼ଭାବରେ ଅବସ୍ଥାନ କଲେ ।୩୬। ବାନରଶ୍ରେଷ୍ଠ ହନୁମାନ୍ ଅନ୍ୟ ବାନରମାନଙ୍କୁ କହିଲେ । "ରାମଙ୍କ କର୍ତ୍ତୃକ ନିର୍ମୁକ୍ତ ଶର ଯେପରି ବାୟୁବେଗରେ ଗମନ କରେ, ମୁଁ ସେହିପରି ରାବଣପାଳିତ ଲଙ୍କାକୁ ଯିବି । ଯଦି ମୁଁ ଲଙ୍କାରେ ଜନକ-ଦୁହିତାଙ୍କୁ ନ ଦେଖେ, ତେବେ ମୁଁ ଏହି ବେଗରେ ଦେବଭବନ ସ୍ୱର୍ଗକୁ ଯିବି ।

ବଦ୍ଧ୍ୱା ରାକ୍ଷସରାଜାନମାନୟିଷ୍ୟାମି ରାବଣମ୍ ।
ସର୍ବଥା କୃତକାର୍ଯୋଽହମେଷ୍ୟାମି ସହ ସୀତୟା । ୪୦ ।
ଆନୟିଷ୍ୟାମି ବା ଲଙ୍କାଂ ସମୁତ୍ପାଟ୍ୟ ସରାବଣାମ୍ ।
ଏବମୁକ୍ତ୍ୱାତୁ ହନୁମାନ୍ ବାନରାନ୍ ବାନରୋତ୍ତମଃ । ୪୧ ।
ଉତ୍ପପାତାଥ ବେଗେନ ବେଗବାନବିଚାରୟନ୍ ।
ସୁପର୍ଣମିବ ଚାତ୍ମାନଂ ମେନେ ସ କପିକୁଞ୍ଜରଃ । ୪୨ ।
ସମୁତ୍ପତତି ତସ୍ମିଂସ୍ତୁ ବେଗାତ୍ତେ ନଗରୋହିଣଃ ।
ସଂହୃତ୍ୟ ବିଟପାନ୍ ସର୍ବାନ୍ ସମୁତ୍ପେତୁଃ ସମନ୍ତତଃ । ୪୩ ।
ସ ମତ୍ତକୋୟଷ୍ଟିଭକାନ୍ ପାଦପାନ୍ ପୁଷ୍ପଶାଳିନଃ ।
ଉଦ୍‌ବହନ୍ନୂରୁବେଗେନ ଜଗାମ ବିମଲେଽମ୍ବରେ । ୪୪ ।
ଊରୁବେଗୋତ୍ଥିତା ବୃକ୍ଷା ମୁହୂର୍ତ୍ତଂ କପିମନ୍ୱୟୁଃ ।
ପ୍ରସ୍ଥିତଂ ଦୀର୍ଘମଧ୍ୱାନଂ ସ୍ୱବନ୍ଧୁମିବ ବାନ୍ଧବାଃ । ୪୫ ।
ତମୂରୁବେଗୋନ୍ମଥିତାଃ ସାଲାଶ୍ଚାନ୍ୟେ ନଗୋତ୍ତମାଃ ।
ଅନୁଜଗ୍ମୁର୍ହନୂମନ୍ତଂ ସୈନ୍ୟା ଇବ ମହୀପତିମ୍ ।୪୬।

---

ମୁଁ ଯଦି ବହୁ ପରିଶ୍ରମ କରି ମଧ୍ୟ ସ୍ୱର୍ଗରେ ସୀତାଙ୍କୁ ନ ଦେଖେଁ, ତାହାହେଲେ ରାକ୍ଷସରାଜ ରାବଣଙ୍କୁ ବାନ୍ଧି ଆଣିବି । ହୁଏତ, ମୁଁ ସର୍ବତୋଭାବେ କୃତକାର୍ଯ୍ୟ ହୋଇ ସୀତାଙ୍କ ସହିତ ଆସିବି; ନତୁବା ରାବଣ ସହିତ ଲଙ୍କାନଗରୀକୁ ଉତ୍ପାଟନ କରି ଘେନି ଆସିବି ।" ବାନରଶ୍ରେଷ୍ଠ ବେଗଶାଳୀ ହନୂମାନ୍ ବାନରମାନଙ୍କୁ ଏହି କଥା କହି ଆଉ କିଛି ନ ବିଚାରି ବେଗରେ ଉପରକୁ ଡେଇଁଲେ । ସେହି କପିଶ୍ରେଷ୍ଠ ସେତେବେଳେ ନିଜକୁ ଗରୁଡ଼ସଦୃଶ ମନେକଲେ । ୩୭-୪୨ । ସେ ଏହିପରି ସବେଗରେ ଉତ୍ପତିତ ହେବାରୁ ସେହି ପର୍ବତସ୍ଥ ବୃକ୍ଷମାନେ ଶାଖାମାନଙ୍କୁ ସଙ୍କୁଚିତ କରି ଏଣେ ତେଣେ ଉପରକୁ ଉଡ଼ିଲେ । ୪୩ । ହନୂମାନ୍ ସ୍ୱୀୟ ବେଗରେ ପକ୍ଷିସମ୍ମଦସେବିତ ପୁଷ୍ପଶାଳୀ ବୃକ୍ଷମାନଙ୍କୁ ବହନ କରି ସୁନିର୍ମଳ ଆକାଶପଥରେ ଗମନ କରିବାକୁ ଲାଗିଲେ । ୪୪ । ବନ୍ଧୁଜନମାନେ ବହୁଦୂରକୁ ଯାଉଥିବା ନିଜ ବନ୍ଧୁଙ୍କୁ ଯେପରି ଅନୁଗମନ କରନ୍ତି, ସେହିପରି ତାହାଙ୍କର ଊରୁବେଗରେ ସମୁତ୍ଥିତ ବୃକ୍ଷସକଳ ମୁହୂର୍ତ୍ତକାଳ ତାଙ୍କର ଅନୁଗମନ କଲେ । ୪୫ । ସୈନ୍ୟ ଯେପରି ରାଜାଙ୍କର ଅନୁଗମନ କରନ୍ତି, ସେହିପରି ଶାଳ ଏବଂ ଅନ୍ୟାନ୍ୟ ଉତ୍ତମ ବୃକ୍ଷମାନେ ହନୂମାନଙ୍କର ଊରୁବେଗରେ ଉତ୍ପାଟିତ ହୋଇ ତାହାଙ୍କର ଅନୁଗମନ କଲେ ।୪୬।

ସୁପୁଷ୍ପିତାଗ୍ରୈର୍ବହୁଭିଃ ପାଦପୈରନ୍ୱିତଃ କପିଃ ।
ହନୂମାନ୍ ପର୍ବତାକାରୋ ବଭୂବାଦ୍ଭୁତଦର୍ଶନଃ ॥ ୪୭ ॥
ସାରବନ୍ତୋଽଥ ଯେ ବୃକ୍ଷା ନ୍ୟମଜ୍ଜଁଲ୍ଲବଣାମ୍ଭସି ।
ଭୟାଦିବ ମହେନ୍ଦ୍ରସ୍ୟ ପର୍ବତା ବରୁଣାଲୟେ ॥ ୪୮ ॥
ସ ନାନାକୁସୁମୈଃ କୀର୍ଣଃ କପିଃ ସାଙ୍କୁରକୋରକୈଃ ।
ଶୁଶୁଭେ ମେଘସଂକାଶଃ ଖଦ୍ୟୋତୈରିବ ପର୍ବତଃ ॥ ୪୯ ॥
ବିମୁକ୍ତାସ୍ତସ୍ୟ ବେଗେନ ମୁକ୍ତ୍ୱା ପୁଷ୍ପାଣି ତେ ଦ୍ରୁମାଃ ।
ବ୍ୟବଶୀର୍ଯନ୍ତ ସଲିଲେ ନିବୃତ୍ତାଃ ସୁହୃଦୋ ଯଥା ॥ ୫୦ ॥
ଲଘୁତ୍ୱେନୋପପନ୍ନଂ ତଦ୍‌ବିଚିତ୍ରଂ ସାଗରେଽପତତ୍ ।
ଦ୍ରୁମାଣାଂ ବିବିଧଂ ପୁଷ୍ପଂ କପିବାୟୁସମୀରିତମ୍ ॥ ୫୧ ॥
ପୁଷ୍ପୌଘେଣ ସୁଗନ୍ଧେନ ନାନାବର୍ଣେନ ବାନରଃ ।
ବଭୌ ମେଘ ଇବୋଦ୍ୟନ୍ ବୈ ବିଦ୍ୟୁଦ୍‌ଗଣବିଭୂଷିତଃ ॥ ୫୨
ତସ୍ୟ ବେଗସମୁଦ୍ଭୂତୈଃ ପୁଷ୍ପୈସ୍ତୋୟମଦୃଶ୍ୟତ ।
ତାରାଭିରିବ ରାମାଭିରୁଦିତାଭିରିବାମ୍ବରମ୍ ॥ ୫୩ ॥

---

ସେତେବେଳେ ବାନର ହନୂମାନ୍ ବହୁ ପୁଷ୍ପଶୋଭିତ ବୃକ୍ଷଦ୍ୱାରା ପରିବୃତ ହୋଇ ଅଦ୍ଭୁତଦର୍ଶନ ପର୍ବତସଦୃଶ ଦେଖାଗଲେ । ୪୭ । ପର୍ବତମାନେ ଇନ୍ଦ୍ରଙ୍କ ଭୟରେ ଯେପରି ବରୁଣାଳୟ ସମୁଦ୍ରରେ ନିମଗ୍ନ ହୋଇଥିଲେ, ସେହିପରି ସାରବାନ୍ ବୃକ୍ଷସମୂହ ଲବଣସମୁଦ୍ରମଧ୍ୟରେ ନିମଗ୍ନ ହେବାକୁ ଲାଗିଲେ । ୪୮ । ପର୍ବତ ଖଦ୍ୟୋତମାନଙ୍କ ଦ୍ୱାରା ସମାକୀର୍ଣ୍ଣ ହୋଇ ଯେପରି ଶୋଭାପାଏ, ସେହିପରି ମେଘୋପମ ବାନରଶ୍ରେଷ୍ଠ ହନୂମାନ୍ ଅଙ୍କୁରିତ, ପ୍ରସ୍ଫୁଟିତ ଏବଂ କୋରକାକାର ନାନାବିଧ ପୁଷ୍ପରେ ସମାଚ୍ଛାଦିତ ହୋଇ ଶୋଭାପାଇଲେ । ୪୯ । ତାହାଙ୍କର ବେଗଦ୍ୱାରା ଉତ୍ପାଟିତ ବୃକ୍ଷସକଳ ପୁଷ୍ପବ୍ରଜ ମୋଚନ କରି ଦୂରଗାମୀ ବ୍ୟକ୍ତିର ଅନୁଗାମୀ ବନ୍ଧୁଙ୍କ ପରି ନିବୃତ୍ତ ହୋଇ ଜଳମଧ୍ୟରେ ଖସିପଡ଼ିଲେ । ୫୦ । ବୃକ୍ଷମାନଙ୍କର ନାନାଜାତିର ବିଚିତ୍ର ପୁଷ୍ପସମୂହ ବାନର (ହନୂମାନ୍)ଙ୍କର ବାୟୁବେଗରେ ସଂଗୃହୀତ ହୋଇ ଏବଂ ତାହାଙ୍କର କ୍ଷିପ୍ରଗତି ହେତୁ ଉତ୍ପତିତ ହୋଇ ସମୁଦ୍ରମଧ୍ୟରେ ପଡ଼ିଲେ ।୫୧। ନାନାବର୍ଣ୍ଣର ସୁଗନ୍ଧ ପୁଷ୍ପସମୂହଦ୍ୱାରା ଭୂଷିତ ହୋଇ ସେହି ବାନର ବିଦ୍ୟୁଦ୍‌ଗଣ-ବିଭୂଷିତ ସମୁଦିତ ମେଘସଦୃଶ ଶୋଭାପାଇଲେ ।୫୨। ଆକାଶମଣ୍ଡଳ ସମୁଦିତ ରମଣୀୟ ତାରାସମୂହଦ୍ୱାରା ଅଳଙ୍କୃତ ହେଲାପରି, ସେହି ଜଳରାଶି

ତସ୍ୟାମ୍ବରଗତୌ ବାହୂ ଦଦୃଶାତେ ପ୍ରସାରିତୌ ।
ପର୍ବତାଗ୍ରାଦ୍ବିନିଷ୍କ୍ରାନ୍ତୌ ପଞ୍ଚାସ୍ୟାବିବ ପନ୍ନଗୌ । ୫୪ ।
ପିବନ୍ନିବ ବଭୌ ଚାପି ସୋର୍ମିଜାଲଂ ମହାର୍ଣବମ୍ ।
ପିପାସୁରିବ ଚାକାଶଂ ଦଦୃଶେ ସ ମହାକପିଃ । ୫୫ ।
ତସ୍ୟ ବିଦ୍ୟୁତ୍ପ୍ରଭାକାରେ ବାୟୁମାର୍ଗାନୁସାରିଣଃ ।
ନୟନେ ବିପ୍ରକାଶେତେ ପର୍ବତସ୍ଥାବିବାନଲୌ । ୫୬ ।
ପିଙ୍ଗେ ପିଙ୍ଗାକ୍ଷମୁଖ୍ୟସ୍ୟ ବୃହତୀ ପରିମଣ୍ଡଲେ ।
ଚକ୍ଷୁଷୀ ସଂପ୍ରକାଶେତେ ଚନ୍ଦ୍ରସୂର୍ଯାବିବ ସ୍ଥିତୌ । ୫୭ ।
ମୁଖଂ ନାସିକୟା ତସ୍ୟ ତାମ୍ରୟା ତାମ୍ରମାବଭୌ ।
ସନ୍ଧ୍ୟୟା ସମଭିସ୍ପୃଷ୍ଟଂ ଯଥା ସ୍ୟାତ୍ସୂର୍ଯମଣ୍ଡଲମ୍ । ୫୮ ।
ଲାଙ୍ଗୂଲଂ ଚ ସମାବିଦ୍ଧଂ ପ୍ଲବମାନସ୍ୟ ଶୋଭତେ ।
ଅମ୍ବରେ ବାୟୁପୁତ୍ରସ୍ୟ ଶକ୍ରଧ୍ୱଜ ଇବୋଚ୍ଛ୍ରିତଃ । ୫୯ ।
ଲାଙ୍ଗୂଲଚକ୍ରୋ ହନୂମାନ୍ ଶୁକ୍ଲଦଂଷ୍ଟ୍ରୋଽନିଲାତ୍ମଜଃ ।
ବ୍ୟରୋଚତ ମହାପ୍ରାଜ୍ଞଃ ପରିବେଷୀବ ଭାସ୍କରଃ । ୬୦ ।

---

ହନୂମାନଙ୍କର ବେଗସ୍ଖଳିତ କୁସୁମସମୂହଦ୍ୱାରା ଶୋଭାପାଇଲା । ୫୩ । ଆକାଶରେ ଅବସ୍ଥିତ ତାଙ୍କର ସୁପ୍ରସାରିତ ବାହୁଦ୍ୱୟ ପର୍ବତଶିଖରରୁ ବାହାରୁଥିବା ଦୁଇଟି ପଞ୍ଚଶୀର୍ଷ ସର୍ପପରି ଦେଖାଯାଉଥିଲା । ୫୪ । ସେହି ବାନରଶ୍ରେଷ୍ଠ ହନୂମାନ୍ ଊର୍ମିମାଳାସମନ୍ୱିତ ମହାସାଗରକୁ ସତେ ଯେପରି ପାନ କରୁଛନ୍ତି; ଅଥବା ଯେପରିକି ସମୁଦାୟ ଆକାଶକୁ ପିଇଯିବାକୁ ଇଚ୍ଛା କରୁଛନ୍ତି, ସେହିପରି ଦେଖାଗଲେ ।୫୫। ପବନର ମାର୍ଗ ଅନୁସରଣକାରୀ ସେହି ହନୂମାନଙ୍କର ବିଦ୍ୟୁତ୍ସଦୃଶ ଦୀପ୍ତିଶାଳୀ ନେତ୍ରଦ୍ୱୟ ପର୍ବତ ଉପରେ ଜଳୁଥିବା ଦୁଇଟି ଅଗ୍ନିସଦୃଶ ପ୍ରକାଶିତ ହେଲା । ୫୬ । ସେହି କପିଶ୍ରେଷ୍ଠଙ୍କର ପିଙ୍ଗଳବର୍ଣ୍ଣ ବର୍ତ୍ତୁଳାକାର ବୃହତ୍ ଲୋଚନଦ୍ୱୟ ନଭୋମଣ୍ଡଳସ୍ଥିତ ଚନ୍ଦ୍ର ସୂର୍ଯ୍ୟଙ୍କ ପରି ଦୀପ୍ତି ଲାଭକଲା ।୫୭। ତାହାଙ୍କର ତାମ୍ରବର୍ଣ୍ଣ ନାସିକାଦ୍ୱାରା ତାଙ୍କ ମୁଖ ତାମ୍ରବର୍ଣ୍ଣ ହୋଇ ସନ୍ଧ୍ୟାକାଳୀନ ସୂର୍ଯ୍ୟମଣ୍ଡଳସଦୃଶ ଶୋଭା ପାଇଲା ।୫୮। ପବନପୁତ୍ର ହନୂମାନ୍ ଡେଇଁବାବେଳେ ତାଙ୍କର ଲାଙ୍ଗୁଳ ଆକାଶରେ ସମ୍ୟକ୍ ବକ୍ଷିପ୍ତ ହୋଇ ଉତ୍ତୋଳିତ ଇନ୍ଦ୍ରଧ୍ୱଜସଦୃଶ ଶୋଭାପାଇଲା । ୫୯ । ମହାପ୍ରାଜ୍ଞ, ଶୁକ୍ଳଦନ୍ତ ପବନନନ୍ଦନ ହନୂମାନ୍ ଲାଙ୍ଗୁଳଚକ୍ରସମନ୍ୱିତ ହୋଇ ମଣ୍ଡଳଯୁକ୍ତ ସୂର୍ଯ୍ୟଙ୍କ ପରି

ସ୍ଥିରଦେଶେନାତ୍ତାମ୍ରେଣ ରରାଜ ସ ମହାକପିଃ ।
ମହତା ଦାରିତେନେବ ଗିରିର୍ଗୈରିକଧାତୁନା ॥ ୭୧ ॥
ତସ୍ୟ ବାନରସିଂହସ୍ୟ ପ୍ଲବମାନସ୍ୟ ସାଗରମ୍ ।
କକ୍ଷାନ୍ତରଗତୋ ବାୟୁର୍ଜୀମୂତ ଇବ ଗର୍ଜତି ॥ ୭୨ ॥
ଖେ ଯଥା ନିପତତ୍ୟୁଲ୍କା ଉତ୍ତରାନ୍ତାଦ୍ୱିନିଃସୃତା ।
ଦୃଶ୍ୟତେ ସାନୁବନ୍ଧା ଚ ତଥା ସ କପିକୁଞ୍ଜରଃ ॥ ୭୩ ॥
ପତତ୍ପତଙ୍ଗସଂକାଶୋ ବ୍ୟାୟତଃ ଶୁଶୁଭେ କପିଃ ।
ପ୍ରବୃଦ୍ଧ ଇବ ମାତଙ୍ଗଃ କକ୍ଷ୍ୟୟା ବଧ୍ୟମାନୟା ॥ ୭୪ ॥
ଉପରିଷ୍ଟାଚ୍ଛରୀରେଣ ଛାୟୟା ଚାବଗାଢ଼ୟା ।
ସାଗରେ ମାରୁତାବିଷ୍ଟା ନୌରିବାସୀତ୍ତଦା କପିଃ ॥ ୭୫ ॥
ଯଂ ଯଂ ଦେଶଂ ସମୁଦ୍ରସ୍ୟ ଜଗାମ ସ ମହାକପିଃ ।
ସ ତୁ ତସ୍ୟାଙ୍ଗବେଗେନ ସୋନ୍ମାଦ ଇବ ଲକ୍ଷ୍ୟତେ ॥ ୭୬ ॥
ସାଗରସ୍ୟୋର୍ମିଜାଲାନାମୁରସା ଶୈଳବର୍ଷ୍ମଣା ।
ଅଭିଘ୍ନଂସ୍ତୁ ମହାବେଗଃ ପୁପ୍ଲୁବେ ସ ମହାକପିଃ ॥ ୭୭ ॥
କପିବାତଶ୍ଚ ବଲବାନ୍ ମେଘବାତଶ୍ଚ ନିର୍ଗତଃ ।
ସାଗରଂ ଭୀମନିର୍ହ୍ରାଦଂ କମ୍ପୟାମାସତୁର୍ଭୃଶମ୍ ॥ ୭୮ ॥

---

ଶୋଭାପାଇଲେ । ୭୦ । ତାଙ୍କର ପିଣ୍ଡ ଅତ୍ୟନ୍ତ ତାମ୍ରବର୍ଣ୍ଣ ଥିବାରୁ ସେ କପିରାଜ, ବିଦାରିତ ଗୈରିକ ଧାତୁଦ୍ୱାରା ସମାଚ୍ଛନ୍ନ ପର୍ବତପରି ଶୋଭାପାଇଲେ । ୭୧ । ସେହି ବାନରଶ୍ରେଷ୍ଠ ସମୁଦ୍ର ଲଙ୍ଘନ କରୁଥିବାବେଳେ ତାଙ୍କର ଉଦର ମଧ୍ୟସ୍ଥିତ ବାୟୁ ମେଘପରି ଗର୍ଜନ କରୁଥିଲା ।୭୨ । ଉତ୍ତରଦିଗର ସୀମାନ୍ତରୁ ବିନିର୍ଗତ ଉଲ୍କା ଅନ୍ୟ ଉଲ୍କା ସହିତ ଯେପରି ଆକାଶରେ ପଡ଼ିଲାବେଳେ ଦେଖାଯାଏ, ସେହି କପିଶ୍ରେଷ୍ଠ ସେହିପରି ଦେଖାଗଲେ । ୭୩ । ଉପରକୁ ଉଠୁଥିବା ସୂର୍ଯ୍ୟଙ୍କ ସଦୃଶ ଦୀର୍ଘାକାର ସେହି ବାନର ପେଟି ବନ୍ଧାହୋଇଥିବା ମତ୍ତହସ୍ତୀ ପରି ଶୋଭା ପାଇଲେ । ୭୪ । ଊର୍ଦ୍ଧ୍ୱଦେଶରୁ ତାଙ୍କର ଶରୀରର ଛାୟା ସମୁଦ୍ରରେ ପ୍ରତିବିମ୍ବିତ ହୋଇ ପବନଚାଳିତ ନୌକାସଦୃଶ ଶୋଭାପାଇଲା । ୭୫ । ସେହି ମହାବାନର ସମୁଦ୍ରର ଯେଉଁ ଯେଉଁ ଅଞ୍ଚଳକୁ ଯାଉଥିଲେ, ସେହି ସେହି ଅଞ୍ଚଳ ତାଙ୍କର ଶରୀର-ବେଗରେ ଆଲୋଡ଼ିତ ହୋଇ ଉନ୍ମତ୍ତପ୍ରାୟ ଦେଖାଯାଉଥିଲା । ୭୬ । ସେହି କପିଶ୍ରେଷ୍ଠ ପର୍ବତସଦୃଶ ବକ୍ଷସ୍ଥଳଦ୍ୱାରା ସମୁଦ୍ରର ତରଙ୍ଗମାନଙ୍କୁ ପ୍ରତିହତ କରି ମହାବେଗରେ ସମୁଦ୍ର ଲଙ୍ଘନ କରିବାକୁ ଲାଗିଲେ । ୭୭ । ସେତେବେଳେ ବାନରବେଗଜନିତ ବାୟୁ ଏବଂ ମେଘବାୟୁ ଉଭୟ ନିର୍ଗତ ହୋଇ ଭୟଙ୍କର ଗର୍ଜନକରି ସମୁଦ୍ରକୁ

ବିକର୍ଷନ୍ନୂର୍ମିଜାଲାନି ବୃହନ୍ତି ଲବଣାମ୍ଭସି ।
ପୁପ୍ଲୁବେ କପିଶାର୍ଦ୍ଦୂଲୋ ବିକିରନ୍ନିବ ରୋଦସୀ । ୬୯ ।
ମେରୁମନ୍ଦରସଂକାଶାନୁଦ୍‌ଗତାନ୍ ସୁମହାର୍ଣ୍ଣବେ ।
ଅତ୍ୟକ୍ରାମନ୍ମହାବେଗସ୍ତରଙ୍ଗାନ୍ ଗଣୟନ୍ନିବ । ୭୦ ।
ତସ୍ୟ ବେଗସମୁଦ୍‌ଘୁଷ୍ଟଂ ଜଲଂ ସଜଲଦଂ ତଦା ।
ଅମ୍ବରସ୍ଥଂ ବିବଭ୍ରାଜ ଶାରଦାଭ୍ରମିବାତତମ୍ । ୭୧ ।
ତିମିନକ୍ରଝଷାଃ କୂର୍ମା ଦୃଶ୍ୟନ୍ତେ ବିବୃତାସ୍ତଦା ।
ବସ୍ତ୍ରାପକର୍ଷଣେନେବ ଶରୀରାଣି ଶରୀରିଣାମ୍ । ୭୨ ।
କ୍ରମମାଣଂ ସମୀକ୍ଷ୍ୟାଥ ଭୁଜଗାଃ ସାଗରଙ୍ଗମାଃ ।
ବ୍ୟୋମ୍ନି ତଂ କପିଶାର୍ଦ୍ଦୂଲଂ ସୁପର୍ଣ୍ଣମିବ ମେନିରେ । ୭୩ ।
ଦଶଯୋଜନବିସ୍ତୀର୍ଣ୍ଣା ତ୍ରିଂଶଦ୍‌ଯୋଜନମାୟତା ।
ଛାୟା ବାନରସିଂହସ୍ୟ ଜଲେ ଚାରୁତରାଭବତ୍ । ୭୪ ।
ଶ୍ୱେତାଭ୍ରଘନରାଜୀବ ବାୟୁପୁତ୍ରାନୁଗାମିନୀ ।
ତସ୍ୟ ସା ଶୁଶୁଭେ ଛାୟା ପତିତା ଲବଣାମ୍ଭସି । ୭୫ ।

---

ପ୍ରକମ୍ପିତ କଲା । ୬୮ । ଲବଣସାଗରର ଉତ୍ତାଳ ତରଙ୍ଗମାଳାକୁ ଇତସ୍ତତଃ ଆକର୍ଷଣ କରି ସେହି କପିଶ୍ରେଷ୍ଠ, ସତେ ଯେପରି ସ୍ୱର୍ଗ ଏବଂ ପୃଥିବୀକୁ ବିକ୍ଷିପ୍ତ କରି ଦେଇଥିଲେ । ୬୯ । ସେହି ମହାସାଗରରେ ମେରୁ ଓ ମନ୍ଦରପର୍ବତସଦୃଶ ଉନ୍ନତ ତରଙ୍ଗସମୂହକୁ ଗଣନା କଲାପରି ସେ ମହାବେଗରେ ତାହା ଅତିକ୍ରମ କରିବାକୁ ଲାଗିଲେ । ୭୦ । ସେତେବେଳେ ସମୁଦ୍ର ଜଳ ତାହାଙ୍କ ବେଗରେ ଉତ୍‌କ୍ଷିପ୍ତ ହୋଇ ଏବଂ ମେଘମଣ୍ଡଳର ମଧ୍ୟଗତ ହୋଇ ଶରତ୍‌କାଳୀନ ସୁବିସ୍ତୃତ ମେଘସଦୃଶ ଶୋଭମାନ ହେଲା । ୭୧ । ପ୍ରାଣୀମାନଙ୍କ ଦେହରୁ ଲୁଗା କାଢ଼ିଦେଲେ ସେମାନଙ୍କ ଶରୀର ଯେପରି ଦେଖାଯାଏ, ସେହିପରି ତିମି, ମଗର, କୂର୍ମ ଏବଂ ମତ୍ସ୍ୟମାନେ ଅନାବୃତଭାବରେ ଦେଖାଗଲେ । ୭୨ । ସମୁଦ୍ରରେ ବାସ କରୁଥିବା ସର୍ପମାନେ ତାଙ୍କୁ ଆକାଶପଥରେ ସମୁଦ୍ର ପାର ହେଉଥିବାର ଦେଖି ଗରୁଡ଼ ବୋଲି ମନେକଲେ । ୭୩ । ସେହି ବାନରସିଂହଙ୍କର ଦଶଯୋଜନବିସ୍ତୃତ ଏବଂ ତ୍ରିଂଶ-ଯୋଜନଦୀର୍ଘ ଛାୟା ସେତେବେଳେ ଜଳରେ ଅତିଶୟ ମନୋହର ଦେଖାଯାଉଥିଲା ।୭୪। ପବନନନ୍ଦନଙ୍କୁ ଅନୁଗମନ କରୁଥିବା ସେହି ଛାୟା ଲବଣ ସମୁଦ୍ରରେ ପଡ଼ି ଶ୍ୱେତ ମେଘମାଳାସଦୃଶ ଶୋଭାପାଇଲା । ୭୫ । ସେହି

ଶୁଶୁଭେ ସ ମହାତେଜା ମହାକାୟୋ ମହାକପିଃ ।
ବାୟୁମାର୍ଗେ ନିରାଲମ୍ବେ ପକ୍ଷବାନିବ ପର୍ବତଃ । ୭୬ ।
ଯେନାସୌ ଯାତି ବଲବାନ୍ ବେଗେନ କପିକୁଞ୍ଜରଃ ।
ତେନ ମାର୍ଗେଣ ସହସା ଦ୍ରୋଣୀକୃତ ଇବାର୍ଣବଃ । ୭୭ ।
ଆପାତେ ପକ୍ଷିସଙ୍ଘାନାଂ ପକ୍ଷିରାଜ ଇବ ବ୍ରଜନ୍ ।
ହନୁମାନ୍ମେଘଜାଲାନି ପ୍ରକର୍ଷନ୍ମାରୁତୋ ଯଥା । ୭୮ ।
ପାଣ୍ଡୁରାରୁଣବର୍ଣାନି ନୀଲମାଞ୍ଜିଷ୍ଠକାନି ଚ ।
କପିନାକୃଷ୍ୟମାଣାନି ମହାଭ୍ରାଣି ଚକାଶିରେ । ୭୯ ।
ପ୍ରବିଶନ୍ନଭ୍ରଜାଲାନି ନିଷ୍ପତଂଶ୍ଚ ପୁନଃପୁନଃ ।
ପ୍ରଚ୍ଛନ୍ନଶ୍ଚ ପ୍ରକାଶଶ୍ଚ ଚନ୍ଦ୍ରମା ଇବ ଦୃଶ୍ୟତେ । ୮୦ ।
ପ୍ଲବମାନଂ ତୁ ତଂ ଦୃଷ୍ଟ୍ୱା ପ୍ଲବଗଂ ତ୍ୱରିତଂ ତଦା ।
ବବୃଷୁଃ ପୁଷ୍ପବର୍ଷାଣି ଦେବଗନ୍ଧର୍ବଦାନବାଃ । ୮୧ ।
ତତାପ ନ ହି ତଂ ସୂର୍ଯଃ ପ୍ଲବନ୍ତଂ ବାନରେଶ୍ୱରମ୍ ।
ସିଷେବେ ଚ ତଦା ବାୟୂ ରାମକାର୍ଯାର୍ଥସିଦ୍ଧୟେ । ୮୨ ।

---

ମହାତେଜସ୍ୱୀ ବିଶାଳକାୟ ବାନରଶ୍ରେଷ୍ଠ ନିରାଲମ୍ବ ଆକାଶପଥରେ ପକ୍ଷଯୁକ୍ତ ପର୍ବତସଦୃଶ ଶୋଭାପାଇଲେ । ୭୬ । ସେହି ବଳବାନ୍ କପିଶ୍ରେଷ୍ଠ ଯେଉଁ ପଥ ଦେଇ ସବେଗରେ ଯାଉଥିଲେ, ସମୁଦ୍ରର ସେହି ଅଂଶ ସହସା ଦୁଇ ପର୍ବତମଧ୍ୟସ୍ଥିତ ଉପତ୍ୟକା ପରି ହୋଇଯାଉଥିଲା । ୭୭। ଏହିପରି ହନୁମାନ୍ ପକ୍ଷୀମାନଙ୍କର ମାର୍ଗରେ ଗରୁଡ଼ସଦୃଶ ଗମନକରି ବାୟୁସଦୃଶ ମେଘରାଜିକୁ ଛିନ୍ନ ଭିନ୍ନ କରିବାକୁ ଲାଗିଲେ । ୭୮ । ଶ୍ୱେତ, ଅରୁଣ, ନୀଳ ଓ ମାଞ୍ଜିଷ୍ଠ ବର୍ଣ୍ଣର ମହାମେଘଖଣ୍ଡସକଳ ସେହି ବାନରକର୍ତ୍ତୃକ ଆକୃଷ୍ଟ ହୋଇ ଅତିଶୟ ଶୋଭା ଧାରଣକଲେ ।୭୯ । ସେ ବାରମ୍ବାର ମେଘରାଜିମଧ୍ୟରେ ପ୍ରବେଶ କରି ଓ ତାହାମଧ୍ୟରୁ ନିର୍ଗତହୋଇ କେତେବେଳେ ପ୍ରଚ୍ଛନ୍ନ ଏବଂ କେତେବେଳେ ପ୍ରକାଶମାନ ଚନ୍ଦ୍ରଙ୍କ ପରି ଦେଖାଗଲେ ।୮୦ । ସେତେବେଳେ ଦେବ, ଦାନବ ଓ ଗନ୍ଧର୍ବମାନେ ସେହି ବାନରଙ୍କୁ ଦ୍ରୁତବେଗରେ ସମୁଦ୍ର ଲଙ୍ଘନ କରୁଥିବାର ଦେଖି ସେଠାରେ ପୁଷ୍ପବୃଷ୍ଟି କରିବାକୁ ଲାଗିଲେ । ୮୧ । ରାମଙ୍କ କାର୍ଯ୍ୟସାଧନ ନିମନ୍ତେ ବାନରରାଜ ସମୁଦ୍ର ଲଙ୍ଘନ କରୁଥିବାବେଳେ, ସୂର୍ଯ୍ୟ ତାଙ୍କୁ ସନ୍ତାପିତ କଲେ ନାହିଁ ଏବଂ ବାୟୁ ମଧ୍ୟ (ମନ୍ଦଗତିରେ ବହି) ତାଙ୍କୁ ସେବା

ଋଷୟସ୍ତୁଷ୍ଟୁବୁଶ୍ଚୈନଂ ପ୍ଲବମାନଂ ବିହାୟସା ।
ଜଗୁଶ୍ଚ ଦେବଗନ୍ଧର୍ବାଃ ପ୍ରଶଂସନ୍ତୋ ମହୌଜସମ୍ । ୮୩ ।
ନାଗାଶ୍ଚ ତୁଷ୍ଟୁବୁର୍ଯକ୍ଷା ରକ୍ଷାଂସି ବିବଧାନି ଚ ।
ପ୍ରେକ୍ଷ୍ୟ ସର୍ବେ କପିବରଂ ସହସା ବିଗତକ୍ଲମମ୍ । ୮୪ ।
ତସ୍ମିନ୍ ପ୍ଲବଗଶାର୍ଦ୍ଦୂଲେ ପ୍ଲବମାନେ ହନୂମତି ।
ଇକ୍ଷ୍ୱାକୁକୁଲମାନାର୍ଥୀ ଚିନ୍ତୟାମାସ ସାଗରଃ । ୮୫ ।
ସାହାଯ୍ୟଂ ବାନରେନ୍ଦ୍ରସ୍ୟ ଯଦି ନାହଂ ହନୂମତଃ ।
କରିଷ୍ୟାମି ଭବିଷ୍ୟାମି ସର୍ବବାଚ୍ୟୋ ବିବକ୍ଷତାମ୍ । ୮୬ ।
ଅହମିକ୍ଷ୍ୱାକୁନାଥେନ ସଗରେଣ ବିବର୍ଦ୍ଧିତଃ ।
ଇକ୍ଷ୍ୱାକୁସଚିବଶ୍ଚାୟଂ ତନ୍ନାର୍ହତ୍ୟବସାଦିତୁମ୍ । ୮୭ ।
ତଥା ମୟା ବିଧାତବ୍ୟଂ ବିଶ୍ରମେତ ଯଥା କପିଃ ।
ଶେଷଂ ଚ ମୟି ବିଶ୍ରାନ୍ତଃ ସୁଖୀ ସୋଽତିତରିଷ୍ୟତି । ୮୮ ।
ଇତି କୃତ୍ୱା ମତିଂ ସାଧ୍ୱୀଂ ସମୁଦ୍ରଶ୍ଛନ୍ନମମ୍ଭସି ।
ହିରଣ୍ୟନାଭଂ ମୈନାକମୁବାଚ ଗିରିସତ୍ତମମ୍ । ୮୯ ।

---

କରିବାକୁ ଲାଗିଲେ । ୮୨ । ଋଷିମାନେ ସେହି ଗଗନପଥ ଅତିକ୍ରମକାରୀ ମହାତେଜସ୍ୱୀ ବାନରଙ୍କୁ ସ୍ତବ କରିବାକୁ ଲାଗିଲେ ଏବଂ ଦେବତା ଓ ଗନ୍ଧର୍ବମାନେ ତାଙ୍କୁ ପ୍ରଶଂସା କରି ଗାନକରିବାକୁ ଲାଗିଲେ । ୮୩ । ନାଗ, ଯକ୍ଷ ଏବଂ ନାନାଶ୍ରେଣୀର ରାକ୍ଷସମାନେ ସେହି କ୍ଲାନ୍ତିହୀନ କପିବରଙ୍କୁ ବେଗରେ ଯାଉଥିବାର ଦେଖି ସାଧୁବାଦ କରିବାକୁ ଲାଗିଲେ । ୮୪ । ବାନରଶ୍ରେଷ୍ଠ ହନୁମାନ୍ ସମୁଦ୍ର ଲଙ୍ଘନ କରୁଥିବାର ଦେଖି ସମୁଦ୍ର ଇକ୍ଷ୍ୱାକୁକୁଳର ସମ୍ମାନ ରକ୍ଷା କରିବାକୁ ଇଚ୍ଛାକରି ଚିନ୍ତାକରିବାକୁ ଲାଗିଲେ । ୮୫ । 'ମୁଁ ଯଦି ବାନରରାଜ ହନୂମାନଙ୍କର ସାହାଯ୍ୟ ନ କରେଁ, ତେବେ ସବୁ ଲୋକଙ୍କ କର୍ତ୍ତୃକ ନିନ୍ଦନୀୟ ହେବି । ୮୬ । ମୁଁ ଇକ୍ଷ୍ୱାକୁନାଥ ସଗରଙ୍କ କର୍ତ୍ତୃକ ପରିବର୍ଦ୍ଧିତ ହୋଇଅଛି । ଏ ବାନର ମଧ୍ୟ ଇକ୍ଷ୍ୱାକୁ-କୁଳର ସାହାଯ୍ୟକାରୀ; ସୁତରାଂ ଏହାଙ୍କୁ କଷ୍ଟ ଦେବା ମୋର ବିଧେୟ ନୁହେ । ମୁଁ ଏପରି କରିବା ଉଚିତ, ଯେପରି କି, ଏ ବାନର ମୋ ଉପରେ ଅବସ୍ଥାନ କରି ଶ୍ରମ ଅପନୋଦନପୂର୍ବକ ସୁଖରେ ଅବଶିଷ୍ଟ ମାର୍ଗ ଅତିକ୍ରମ କରିବେ' । ୮୭-୮୮ । ସମୁଦ୍ର ଏହିପରି ସାଧୁ ସଂକଳ୍ପ କରି ସ୍ୱୀୟ ଜଳମଧ୍ୟରେ ଲୁଚି ରହିଥିବା ସ୍ୱର୍ଣ୍ଣମୟ ଗିରିଶ୍ରେଷ୍ଠ ମୈନାକଙ୍କୁ କହିଲେ । ୮୯ । "ହେ ଗିରିଶ୍ରେଷ୍ଠ ! ଦେବରାଜ ଇନ୍ଦ୍ର ତୁମ୍ଭଙ୍କୁ

ତ୍ୱମିହାସୁରସଙ୍ଘାନାଂ ଦେବରାଜ୍ଞା ମହାତ୍ମନା ।
ପାତାଳନିଲୟାନାଂ ହି ପରିଘଃ ସଂନିବେଶିତଃ । ୯୦ ।
ତ୍ୱମେଷାଂ ଜ୍ଞାତବୀର୍ଯାଣାଂ ପୁନରେବୋତ୍ପତିଷ୍ୟତାମ୍ ।
ପାତାଳସ୍ୟାପ୍ରମେୟସ୍ୟ ଦ୍ୱାରମାବୃତ୍ୟ ତିଷ୍ଠସି । ୯୧ ।
ତିର୍ଯଗୂର୍ଧ୍ୱମଧଶ୍ଚୈବ ଶକ୍ତିସ୍ତେ ଶୈଳ ବର୍ଧିତୁମ୍ ।
ତସ୍ମାତ୍ସଂଚୋଦୟାମି ତ୍ୱାମୁତ୍ତିଷ୍ଠ ଗିରିସତ୍ତମ । ୯୨ ।
ସ ଏଷ କପିଶାର୍ଦୂଲସ୍ତ୍ୱାମୁପର୍ଯେଷ୍ୟତି ବୀର୍ଯବାନ୍ ।
ହନୂମାନ୍ ରାମକାର୍ଯାର୍ଥୀ ଭୀମକର୍ମା ଖମାପ୍ଲୁତଃ ।
ଶ୍ରମଂ ଚ ପ୍ଲବଗେନ୍ଦ୍ରସ୍ୟ ସମୀକ୍ଷ୍ୟୋତ୍ଥାତୁମର୍ହସି । ୯୩ ।
ହିରଣ୍ୟଗର୍ଭୋ ମୈନାକୋ ନିଶମ୍ୟ ଲବଣାମ୍ଭସଃ ।
ଉତ୍ପପାତ ଜଳାତ୍ତୂର୍ଣଂ ମହାଦ୍ରୁମଲତାବୃତଃ । ୯୪ ।
ସ ସାଗରଜଲଂ ଭିତ୍ତ୍ୱା ବଭୂବାଭ୍ୟୁଚ୍ଛ୍ରିତସ୍ତଦା ।
ଯଥା ଜଲଧରଂ ଭିତ୍ତ୍ୱା ଦୀପ୍ତରଶ୍ମିର୍ଦିବାକରଃ । ୯୫ ।
ସ ମହାତ୍ମା ମୁହୂର୍ତେନ ପର୍ବତଃ ସଲିଲାବୃତଃ ।
ଦର୍ଶୟାମାସ ଶୃଙ୍ଗାଣି ସାଗରେଣ ନିୟୋଜିତଃ । ୯୬ ।

---

ଏଠାରେ ପାତାଳତଳବାସୀ ଅସୁରମାନଙ୍କର ଦ୍ୱାରର ଅର୍ଗଳସ୍ୱରୂପ ବସାଇଛନ୍ତି । ୯୦ । ପୁଣି ଉପରକୁ ଉଠିବାକୁ ଇଚ୍ଛାକରୁଥିବା ବିଖ୍ୟାତବୀର୍ଯ୍ୟ ଏହି ଅସୁରମାନଙ୍କର ଅପରିମେୟ ପାତାଳଦ୍ୱାର ଅବରୋଧ କରି ତୁମ୍ଭେ ରହିଅଛ । ୯୧ । ହେ ପର୍ବତଶ୍ରେଷ୍ଠ ! ଊର୍ଦ୍ଧ୍ୱ, ଅଧଃ ଏବଂ ପାର୍ଶ୍ୱଭାଗରେ ବର୍ଦ୍ଧିତ ହେବାପାଇଁ ତୁମ୍ଭର ଶକ୍ତି ଅଛି; ସୁତରାଂ ମୁଁ ତୁମ୍ଭଙ୍କୁ ନିଯୁକ୍ତ କରୁଛି, ତୁମେ ଊର୍ଦ୍ଧ୍ୱକୁ ଉତ୍ଥିତ ହୁଅ ।୯୨। ଏହି ରାମକାର୍ଯ୍ୟସାଧକ, ଭୀମକର୍ମା, ଗଗନବିହାରୀ, ବୀର୍ଯ୍ୟବାନ୍, କପିଶ୍ରେଷ୍ଠ ହନୂମାନ୍ ତୁମ୍ଭ ନିକଟକୁ ଆସିବେ । ଏହି କପିବରଙ୍କର ଶ୍ରମ ଦେଖି ତୁମ୍ଭର ଉପରକୁ ଉତ୍ଥିତ ହେବା ଉଚିତ” । ୯୩ । ବଡ଼ ବଡ଼ ଦ୍ରୁମ ଏବଂ ଲତାପରିପୂର୍ଣ୍ଣ ସ୍ୱର୍ଣ୍ଣନାଭ ମୈନାକ ପର୍ବତ ଲବଣସମୁଦ୍ରଙ୍କ କଥା ଶୁଣି ତତ୍‌କ୍ଷଣାତ୍ ଜଳମଧ୍ୟରୁ ଉତ୍ଥିତ ହେଲେ ।୯୪। ଦୀପ୍ତରଶ୍ମି ସୂର୍ଯ୍ୟ ଯେପରି ମେଘରାଶି ଭେଦକରି ଉଠନ୍ତି, ସେ ସେହିପରି ସମୁଦ୍ରଜଳକୁ ଭେଦକରି ଉତ୍ଥିତ ହେଲେ । ୯୫ । ସମୁଦ୍ର ପରିବୃତ ସେହି ମହାତ୍ମା ମୈନାକ ସମୁଦ୍ରକର୍ତ୍ତୃକ ନିୟୋଜିତ ହୋଇ ମୁହୂର୍ତ୍ତକ ମଧ୍ୟରେ ନିଜର ଶୃଙ୍ଗମାନଙ୍କୁ ପ୍ରକାଶିତ କଲେ । ୯୬ । ତାଙ୍କର ସେହି ଶୃଙ୍ଗଗୁଡ଼ିକ ସୁବର୍ଣ୍ଣମୟ,

ଶାତକୁମ୍ଭମୟୈଃ ଶୃଙ୍ଗୈଃ ସକିନ୍ନରମହୋରଗୈଃ ।
ଆଦିତ୍ୟୋଦୟସଂକାଶୈରୁଲ୍ଲିଖଦ୍ଭିରିବାମ୍ବରମ୍ । ୯୭ ।
ତସ୍ୟ ଜାମ୍ବୂନଦୈଃ ଶୃଙ୍ଗୈଃ ପର୍ବତସ୍ୟ ସମୁତ୍ଥିତୈଃ ।
ଆକାଶଂ ଶସ୍ତ୍ରସଂକାଶମଭବତ୍କାଞ୍ଚନପ୍ରଭମ୍ । ୯୮ ।
ଜାତରୂପମୟୈଃ ଶୃଙ୍ଗୈର୍ଭ୍ରାଜମାନୈର୍ମହାପ୍ରଭୈଃ ।
ଆଦିତ୍ୟଶତସଂକାଶଃ ସୋଽଭବଦ୍ ଗିରିସତ୍ତମଃ । ୯୯ ।
ସମୁତ୍ଥିତମସଙ୍ଗେନ ହନୂମାନଗ୍ରତଃ ସ୍ଥିତମ୍ ।
ମଧ୍ୟେ ଲବଣତୋୟସ୍ୟ ବିଘ୍ନୋଽୟମିତି ନିଶ୍ଚିତଃ । ୧୦୦ ।
ସ ତମୁଚ୍ଛ୍ରିତମତ୍ୟର୍ଥଂ ମହାବେଗୋ ମହାକପିଃ ।
ଉରସା ପାତୟାମାସ ଜୀମୂତମିବ ମାରୁତଃ । ୧୦୧ ।
ସ ତଦା ପାତିତସ୍ତେନ କପିନା ପର୍ବତୋତ୍ତମଃ ।
ବୁଦ୍ଧ୍ୱା ତସ୍ୟ ହରେର୍ବେଗଂ ଜହର୍ଷ ଚ ନନାଦ ଚ । ୧୦୨ ।
ତମାକାଶଗତଂ ବୀରମାକାଶେ ସମୁପସ୍ଥିତଃ ।
ପ୍ରୀତୋ ହୃଷ୍ଟମନା ବାକ୍ୟମବ୍ରବୀତ୍ପର୍ବତଃ କପିମ୍ । ୧୦୩ ।

---

କିନ୍ନର ଏବଂ ବୃହତ୍ ସର୍ପରେ ପରିପୂର୍ଣ୍ଣ, ସୂର୍ଯ୍ୟୋଦୟସଦୃଶ ପ୍ରଭଶାଳୀ ହୋଇ ଆକାଶକୁ ଭେଦ କରୁଥିଲା । ୯୭ । ତାଙ୍କର ସ୍ୱର୍ଣ୍ଣମୟ ଶୃଙ୍ଗସମୂହ ସମୁତ୍ଥିତ ହେବାରୁ ଶସ୍ତ୍ରସଦୃଶ ଉଜ୍ଜ୍ୱଳ ନଭୋମଣ୍ଡଳ କାଞ୍ଚନବର୍ଣ୍ଣରେ ରଞ୍ଜିତ ହୋଇଉଠିଲା । ୯୮ । ସ୍ୱର୍ଣ୍ଣମୟ, ନିରତିଶୟ ପ୍ରଭାବିଶିଷ୍ଟ, ଶୋଭମାନ ଏହି ଶୃଙ୍ଗମାନଙ୍କଦ୍ୱାରା ସେ ପର୍ବତରାଜ ଶତ ସୂର୍ଯ୍ୟଙ୍କ ପରି ଦୀପ୍ତିମାନ୍ ହୋଇ ଉଠିଲେ । ୯୯ । ମହାବେଗଶାଳୀ ମହାବାନର ହନୁମାନ୍, ଲବଣସାଗରମଧ୍ୟରେ ସହସା ଏହି ପର୍ବତକୁ ଉତ୍ଥିତ ହୋଇ ତାଙ୍କସମ୍ମୁଖରେ ଅବସ୍ଥାନ କରିବାର ଦେଖି 'ଏହା ଗୋଟିଏ ବିଘ୍ନ' ବୋଲି ସ୍ଥିରକରି ପବନ ମେଘକୁ ଅପସାରିତ କଲାପରି ନିଜର ବକ୍ଷସ୍ଥଳର ଆଘାତଦ୍ୱାରା ସେହି ଅତ୍ୟୁନ୍ନତ ଶୃଙ୍ଗକୁ ଭାଙ୍ଗି ପକାଇଦେଲେ ।୧୦୦-୧୦୧। ସେହି ଗିରିବର ମୈନାକ ସେହି ବାନର ନିପାତିତ ହୋଇ ଏବଂ ବଳ ବେଗ ଜାଣି ଆନନ୍ଦିତ ହୋଇ ଗର୍ଜନକରି ଉଠିଲା ।୧୦୨। ଅନନ୍ତର ସେହି ପର୍ବତ ମନୁଷ୍ୟରୂପ ଧାରଣକରି ନିଜ ଶୃଙ୍ଗ ଉପରେ ଠିଆହୋଇ ପ୍ରୀତ ଏବଂ ଆନନ୍ଦିତମନରେ ସେହି ଆକାଶସ୍ଥ ବୀର ବାନରଙ୍କୁ

ମାନୁଷଂ ଧାରୟନ୍ ରୂପମାତ୍ମନଃ ଶିଖରେ ସ୍ଥିତଃ ।
ଦୁଷ୍କରଂ କୃତବାନ୍ କର୍ମ ତ୍ୱମିଦଂ ବାନରୋତ୍ତମ ।୧୦୪ ।
ନିପତ୍ୟ ମମ ଶୃଙ୍ଗେଷୁ ସୁଖଂ ବିଶ୍ରମ୍ୟ ଗମ୍ୟତାମ୍ ।
ରାଘବସ୍ୟ କୁଲେ ଜାତୈରୁଦଧିଃ ପରିବର୍ଦ୍ଧିତଃ । ୧୦୫ ।
ସ ତ୍ୱାଂ ରାମହିତେ ଯୁକ୍ତଂ ପ୍ରତ୍ୟର୍ଚ୍ଚୟତି ସାଗରଃ ।
କୃତେ ଚ ପ୍ରତିକର୍ତ୍ତବ୍ୟମେଷ ଧର୍ମଃ ସନାତନଃ । ୧୦୬ ।
ସୋଽୟଂ ତତ୍ ପ୍ରତିକାରାର୍ଥୀ ତ୍ୱତ୍ତଃ ସମ୍ମାନମର୍ହତି ।
ତ୍ୱନ୍ନିମିତ୍ତମନେନାହଂ ବହୁମାନାତ୍ ପ୍ରଚୋଦିତଃ । ୧୦୭ ।
ଯୋଜନାନାଂ ଶତଂ ଚାପି କପିରେଷ ଖମାପ୍ଲୁତଃ ।
ତବ ସାନୁଷୁ ବିଶ୍ରାନ୍ତଃ ଶେଷଂ ପ୍ରକ୍ରମତାମିତି । ୧୦୮ ।
ତିଷ୍ଠ ତ୍ୱଂ ହରିଶାର୍ଦ୍ଦୂଳ ମୟି ବିଶ୍ରମ୍ୟ ଗମ୍ୟତାମ୍ ।
ତଦିଦଂ ଗନ୍ଧବତ୍ ସ୍ୱାଦୁ କନ୍ଦମୂଳଫଳଂ ବହୁ । ୧୦୯।
ତଦାସ୍ୱାଦ୍ୟ ହରିଶ୍ରେଷ୍ଠ ବିଶ୍ରାନ୍ତୋଽଥ ଗମିଷ୍ୟସି ।
ଅସ୍ମାକମପି ସମ୍ବନ୍ଧଃ କପିମୁଖ୍ୟ ତ୍ୱୟାସ୍ତି ବୈ ।
ପ୍ରଖ୍ୟାତସ୍ତ୍ରିଷୁ ଲୋକେଷୁ ମହାଗୁଣପରିଗ୍ରହଃ । ୧୧୦ ।

---

କହିଲେ, "ହେ ବାନରଶ୍ରେଷ୍ଠ" ! ତୁମ୍ଭେ ଏହି ଅତିଦୁଷ୍କର ଓ ଦୁଃସାଧ୍ୟ କାର୍ଯ୍ୟ କରୁଅଛ । ୧୦୩-୧୦୪ । ସୁତରାଂ ମୋ ଶୃଙ୍ଗଉପରେ ନିପତିତ ହୋଇ ଯଥାସୁଖରେ ବିଶ୍ରାମ କର । ରାମଚନ୍ଦ୍ରଙ୍କ କୁଳରେ ଜନ୍ମ ହୋଇଥିବା ବ୍ୟକ୍ତିଙ୍କ ଦ୍ୱାରା ସମୁଦ୍ର ପରିବର୍ଦ୍ଧିତ ହୋଇଅଛନ୍ତି । ତୁମ୍ଭେ ବର୍ତ୍ତମାନ ସେହି ରାମଙ୍କର ହିତସାଧନ କରିବାରେ ନିଯୁକ୍ତ ହୋଇଅଛ । ସୁତରାଂ ସେହି ସାଗର ତୁମ୍ଭଙ୍କୁ ପ୍ରତ୍ୟର୍ଚ୍ଚନା କରୁଅଛନ୍ତି । ଉପକାରର ପ୍ରତ୍ୟୁପକାର କରିବା ଏହାହିଁ ସନାତନ ଧର୍ମ ଅଟେ । ୧୦୫-୧୦୬ । ସେହି ସମୁଦ୍ର ତୁମ୍ଭପ୍ରତି ପ୍ରତ୍ୟୁପକାର କରିବାପାଇଁ ଇଚ୍ଛା କରିଅଛନ୍ତି; ସୁତରାଂ ସେ ତୁମ୍ଭଠାରୁ ସମ୍ମାନ ପାଇବା ଉଚିତ । ତୁମ୍ଭର ଲାଗି ସେ ବହୁମାନପୂର୍ବକ ମୋତେ ନିଯୁକ୍ତ କରିଅଛନ୍ତି । ୧୦୭ । ସେ ମୋତେ କହିଛନ୍ତି, "ଏହି ବାନର ଶତଯୋଜନ ଅତିକ୍ରମ କରିବାପାଇଁ ଆକାଶପଥରେ ଯାଉଛନ୍ତି । ସେ ତୁମ୍ଭ ଶିଖରଦେଶରେ ବିଶ୍ରାମକରି ଅବଶିଷ୍ଟ ପଥ ଅତିକ୍ରମ କରନ୍ତୁ" । ୧୦୮ । ହେ ବାନରଶ୍ରେଷ୍ଠ ! ତୁମ୍ଭେ ରହ, ମୋ ଉପରେ ବିଶ୍ରାମକରି ତୁମ୍ଭେ ଗମନ କର । ହେ ହରିବର ! ଏଠାରେ ବହୁ ସୁଗନ୍ଧଯୁକ୍ତ ସ୍ୱାଦୁ କନ୍ଦମୂଳ ଓ ଫଳରହିଛି । ତାହାକୁ

ବେଗବନ୍ତଃ ପ୍ଲବନ୍ତୋ ଯେ ପ୍ଲବଗା ମାରୁତାତ୍ମଜ ।
ତେଷାଂ ମୁଖ୍ୟତମଂ ମନ୍ୟେ ତ୍ୱାମହଂ କପିକୁଞ୍ଜର । ୧୧୧ ।
ଅତଥିଃ କିଲ ପୂଜାର୍ହଃ ପ୍ରାକୃତୋଽପି ବିଜାନତା ।
ଧର୍ମଂ ଜିଜ୍ଞାସମାନେନ କିଂ ପୁନର୍ଯାଦୃଶୋ ଭବାନ୍ । ୧୧୨ ।
ତ୍ୱଂ ହି ଦେବବରିଷ୍ଠସ୍ୟ ମାରୁତସ୍ୟ ମହାତ୍ମନଃ ।
ପୁତ୍ରସ୍ତସ୍ୟୈବ ବେଗେନ ସଦୃଶଃ କପିକୁଞ୍ଜର । ୧୧୩ ।
ପୂଜିତେ ତ୍ୱୟି ଧର୍ମଜ୍ଞେ ପୂଜାଂ ପ୍ରାପ୍ନୋତି ମାରୁତଃ ।
ତସ୍ମାତ୍ତ୍ୱଂ ପୂଜନୀୟୋ ମେ ଶୃଣୁ ଚାପ୍ୟତ୍ର କାରଣମ୍ । ୧୧୪ ।
ପୂର୍ବଂ କୃତଯୁଗେ ତାତ ପର୍ବତାଃ ପକ୍ଷିଣୋଽଭବନ୍ ।
ତେଽପି ଜଗ୍ମୁର୍ଦିଶଃ ସର୍ବା ଗରୁଡ଼ାନିଲବେଗିନଃ । ୧୧୫ ।
ତତସ୍ତେଷୁ ପ୍ରୟାତେଷୁ ଦେବସଙ୍ଘାଃ ମହର୍ଷିଭିଃ ।
ଭୂତାନି ଚ ଭୟଂ ଜଗ୍ମୁସ୍ତେଷାଂ ପତନଶଙ୍କୟା । ୧୧୬ ।
ତତଃ କ୍ରୁଦ୍ଧଃ ସହସ୍ରାକ୍ଷଃ ପର୍ବତାନାଂ ଶତକ୍ରତୁଃ ।
ପକ୍ଷାଂଶ୍ଚିଚ୍ଛେଦ ବଜ୍ରେଣ ତତଃ ଶତସହସ୍ରଶଃ । ୧୧୭ ।

---

ଆସ୍ୱାଦନ କରି ବିଶ୍ରାମାନ୍ତେ ଗମନ କରିବ । ହେ କପିଶ୍ରେଷ୍ଠ ! ତୁମ୍ଭ ସହିତ ମୋର ମଧ୍ୟ ତ୍ରିଭୁବନବିଖ୍ୟାତ ଅତି ସଦ୍‌ଗୁଣସମ୍ପନ୍ନ ସମ୍ପର୍କ ରହିଅଛି । ହେ ପବନନନ୍ଦନ ! ଯେତେ ପ୍ଲବନକାରୀ ବେଗଶାଳୀ ବାନର ଅଛନ୍ତି, ସେମାନଙ୍କ ମଧ୍ୟରେ ମୁଁ ତୁମ୍ଭଙ୍କୁ ମୁଖ୍ୟତମ ବୋଲି ମନେକରିଅଛି । ଅତି ସାଧାରଣ ଅତିଥି ମଧ୍ୟ ଧର୍ମଜିଜ୍ଞାସୁ ବିଜ୍ଞ ବ୍ୟକ୍ତିର ପୂଜାପାଇବାର ଯୋଗ୍ୟ ଅଟେ; ସୁତରାଂ ତୁମ୍ଭପରି ବିଶିଷ୍ଟ ଅତିଥିର କଥା କଣ କହିବା ? ହେ ବାନରଶ୍ରେଷ୍ଠ ! ତୁମ୍ଭେ ଦେବଶ୍ରେଷ୍ଠ, ମହାତ୍ମା ମାରୁତଙ୍କର ପୁତ୍ର ଏବଂ ବେଗରେ ତାହାଙ୍କ ସହିତ ସମାନ ଅଟ । ହେ ଧର୍ମଜ୍ଞ ! ତୁମ୍ଭର ପୂଜାକଲେ ମାରୁତଦେବ ମଧ୍ୟ ସେ ପୂଜା ପାଇବେ; ସୁତରାଂ ତୁମ୍ଭେ ମୋର ପୂଜନୀୟ; ଏ ବିଷୟରେ ଅନ୍ୟ କାରଣ ମଧ୍ୟ ଅଛି ଶୁଣ । ୧୦୯-୧୧୪ । ହେ ବତ୍ସ ! ପୂର୍ବେ ସତ୍ୟଯୁଗରେ ପର୍ବତମାନେ ପକ୍ଷବିଶିଷ୍ଟ ଥିଲେ । ସେମାନେ ଗରୁଡ଼ ଏବଂ ପବନଙ୍କସଦୃଶ ବେଗଶାଳୀ ହୋଇ ସବୁ ଦିଗକୁ ଗମନ କରୁଥିଲେ । ୧୧୫ । ସେମାନେ ଏପରି ଯିବାଆସିବା କରିବାର ଦେଖି ଦେବଗଣ, ଋଷିଗଣ ଏବଂ ଭୂତଗଣ, ସମସ୍ତେ ସେମାନଙ୍କର ପତନ ଆଶଙ୍କାରେ ଭୀତ ହୋଇଉଠିଲେ । ୧୧୬ । ଅନନ୍ତର ସହସ୍ରାକ୍ଷ ଇନ୍ଦ୍ର କ୍ରୁଦ୍ଧ ହୋଇ ବଜ୍ରଦ୍ୱାରା ସହସ୍ର ସହସ୍ର ପର୍ବତଙ୍କର ପକ୍ଷ ଛେଦନ

ସ ମାମୁପଗତଃ କ୍ରୁଦ୍ଧୋ ବଜ୍ରମୁଦ୍ୟମ୍ୟ ଦେବରାଟ୍ ।
ତତୋଽହଂ ସହସା କ୍ଷିପ୍ତଃ ଶ୍ୱସନେନ ମହାତ୍ମନା । ୧୧୮ ।
ଅସ୍ମିଁଲ୍ଲବଣତୋୟେ ଚ ପ୍ରକ୍ଷିପ୍ତଃ ପ୍ଲବଗୋତ୍ତମ ।
ଗୁପ୍ତପକ୍ଷଃ ସମଗ୍ରଶ୍ଚ ତବ ପିତ୍ରାଭିରକ୍ଷିତଃ । ୧୧୯ ।
ତତୋଽହଂ ମାନୟାମି ତ୍ୱାଂ ମାନ୍ୟୋଽସି ମମ ମାରୁତେ ।
ତ୍ୱୟା ମମୈଷ ସମ୍ବନ୍ଧଃ କପିମୁଖ୍ୟ ମହାଗୁଣଃ । ୧୨୦ ।
ଅସ୍ମିନ୍ନେବଂ ଗତେ କାର୍ଯ୍ୟେ ସାଗରସ୍ୟ ମମୈବ ଚ ।
ପ୍ରୀତିଂ ପ୍ରୀତମନାଃ କର୍ତ୍ତୁଂ ତ୍ୱମର୍ହସି ମହାମତେ । ୧୨୧ ।
ଶ୍ରମଂ ମୋକ୍ଷୟ ପୂଜାଂ ଚ ଗୃହାଣ ହରିସତ୍ତମ ।
ପ୍ରୀତିଂ ଚ ମମ ମାନ୍ୟସ୍ୟ ପ୍ରୀତୋଽସ୍ମି ତବ ଦର୍ଶନାତ୍ । ୧୨୨ ।
ଏବମୁକ୍ତଃ କପିଶ୍ରେଷ୍ଠସ୍ତଂ ନଗୋତ୍ତମମବ୍ରବୀତ୍ ।
ପ୍ରୀତୋଽସ୍ମି କୃତମାତିଥ୍ୟଂ ମନ୍ୟୁରେଷୋଽପନୀୟତାମ୍ ।୧୨୩।
ତ୍ୱରତେ କାର୍ଯ୍ୟକାଲୋ ମେ ଅହଶ୍ଚାପ୍ୟତିବର୍ତ୍ତତେ ।
ପ୍ରତିଜ୍ଞା ଚ ମୟା ଦତ୍ତା ନ ସ୍ଥାତବ୍ୟମିହାନ୍ତରା । ୧୨୪ ।

---

କରିଦେଲେ । ୧୧୭ । ସେହି ଦେବରାଜ ଇନ୍ଦ୍ର କ୍ରୁଦ୍ଧ ହୋଇ ବଜ୍ର ଉତ୍ତୋଳନପୂର୍ବକ ମୋ ନିକଟରେ ଆସି ପହଞ୍ଚିଲେ । ହେ ବାନରଶ୍ରେଷ୍ଠ, ତାହା ଦେଖି ମହାତ୍ମା ବାୟୁ ମୋତେ ତତ୍‌କ୍ଷଣାତ୍ ଉଠାଇଦେଲେ ଏବଂ ଏହି ଲବଣସମୁଦ୍ରମଧ୍ୟରେ ଆଣି ପକାଇଦେଲେ । ଏହିପରିଭାବରେ ମୁଁ ମୋର ପକ୍ଷ ଲୁଚାଇଦେଇ ସମ୍ପୂର୍ଣ୍ଣଭାବରେ ତୁମ୍ଭ ପିତାଙ୍କ ଦ୍ୱାରା ରକ୍ଷିତ ହେଲି । ୧୧୮-୧୧୯ । ସୁତରାଂ ହେ ମାରୁତେ ! ସେହି ହେତୁରୁ ମୁଁ ତୁମକୁ ସମ୍ମାନ ଦେଖାଉଛି, କାରଣ ତୁମ୍ଭେ ମୋର ମାନନୀୟ ଅଟ । ହେ କପିଶ୍ରେଷ୍ଠ ! ତୁମ୍ଭ ସହିତ ମୋର ଏ ସମ୍ବନ୍ଧ ମହାଗୁଣଯୁକ୍ତ ଅଟେ । ୧୨୦ । ହେ ମହାମତେ ! ବର୍ତ୍ତମାନ ଏ କାର୍ଯ୍ୟରେ ତୁମ୍ଭେ ପ୍ରୀତମନରେ ମୋର ଏବଂ ସାଗରଙ୍କର ପ୍ରୀତିସାଧନ କରିବା ଉଚିତ । ୧୨୧ । ହେ କପିଶ୍ରେଷ୍ଠ ! ମୁଁ ତୁମ୍ଭର ମାନନୀୟ ଅଟେ । ଅତଏବ ତୁମେ ଶ୍ରମ ଦୂରକର ଏବଂ ଏ ପୂଜା ଗ୍ରହଣ କରି ମୋତେ ପ୍ରୀତ କର । ମୁଁ ତୁମ୍ଭଙ୍କୁ ଦେଖି ଆନନ୍ଦିତ ହୋଇଅଛି" ।୧୨୨। ପର୍ବତରାଜ ଏହିପରି କହିବାରୁ, କପିଶ୍ରେଷ୍ଠ ହନୁମାନ୍ ତାଙ୍କୁ କହିଲେ, "ମୁଁ ଅତିଶୟ ପ୍ରୀତ ହେଲି; ଆପଣ ଯଥେଷ୍ଟ ଆତିଥ୍ୟ କରିଛନ୍ତି । ଆପଣ ମନରୁ କ୍ଷୋଭ ଦୂର କରନ୍ତୁ । ୧୨୩ । କାର୍ଯ୍ୟକାଳ ମୋତେ ଉତ୍ତେଜିତ କରୁଅଛି, ଏଣେ ଦିନ ମଧ୍ୟ ବିତିଯାଉଛି, ମୁଁ ମଧ୍ୟ ପ୍ରତିଜ୍ଞା କରିଛି ଯେ ମଝିରେ କୌଣସିଠାରେ ବିଶ୍ରାମ

ଇତ୍ୟୁକ୍ତ୍ୱା ପାଣିନା ଶୈଳମାଲଭ୍ୟ ହରିପୁଙ୍ଗବଃ ।
ଜଗାମାକାଶମାବିଶ୍ୟ ବୀର୍ଯ୍ୟବାନ୍ ପ୍ରହସନ୍ନିବ ।୧୨୫।
ସ ପର୍ବତସମୁଦ୍ରାଭ୍ୟାଂ ବହୁମାନାଦବେକ୍ଷିତଃ ।
ପୂଜିତଶ୍ଚୋପପନ୍ନାଭିରାଶୀର୍ଭିରଭିନନ୍ଦିତଃ ।୧୨୬।
ଅଥୋର୍ଦ୍ଧ୍ୱଂ ଦୂରମାପ୍ଳୁତ୍ୟ ହିତ୍ୱା ଶୈଳମହାର୍ଣବୌ ।
ପିତୁଃ ପନ୍ଥାନମାସାଦ୍ୟ ଜଗାମ ବିମଲେଽମ୍ବରେ ।୧୨୭।
ଭୂୟଶ୍ଚୋର୍ଦ୍ଧ୍ୱଗତିଂ ପ୍ରାପ୍ୟ ଗିରିଂ ତମବଲୋକୟନ୍ ।
ବାୟୁସୂନୁର୍ନିରାଲମ୍ବୋ ଜଗାମ କପିକୁଞ୍ଜରଃ ।୧୨୮।
ତଦ୍ଦ୍ୱିତୀୟଂ ହନୂମତୋ ଦୃଷ୍ଟ୍ୱା କର୍ମ ସୁଦୁଷ୍କରମ୍ ।
ପ୍ରଶଶଂସୁଃ ସୁରାଃ ସର୍ବେ ସିଦ୍ଧାଶ୍ଚ ପରମର୍ଷୟଃ ।୧୨୯।
ଦେବତାଶ୍ଚାଭବନ୍ ହୃଷ୍ଟାସ୍ତତ୍ରସ୍ଥାସ୍ତସ୍ୟ କର୍ମଣା ।
କାଞ୍ଚନସ୍ୟ ସୁନାଭସ୍ୟ ସହସ୍ରାକ୍ଷଶ୍ଚ ବାସବଃ ।୧୩୦।
ଉବାଚ ବଚନଂ ଧୀମାନ୍ ପରିତୋଷାତ୍ସଗଦ୍ଗଦମ୍ ।
ସୁନାଭଂ ପର୍ବତଶ୍ରେଷ୍ଠଂ ସ୍ୱୟମେବ ଶଚୀପତିଃ ।୧୩୧।

---

କରିବ ନାହିଁ” ।୧୨୪। ବାନରଶ୍ରେଷ୍ଠ ବୀର୍ଯ୍ୟବାନ୍ ହନୂମାନ୍ ଏହା କହି, ହସ୍ତଦ୍ୱାରା
ସେ ପର୍ବତକୁ ସ୍ପର୍ଶକରି ହସି ହସି ଆକାଶମଧ୍ୟରେ ପ୍ରବେଶକରି ଚାଲିଗଲେ ।୧୨୫।
ପର୍ବତ ଏବଂ ସମୁଦ୍ର ଉଭୟେ ବହୁମାନପୂର୍ବକ ପବନନନ୍ଦନଙ୍କୁ ଦେଖିବାକୁ ଲାଗିଲେ
ଏବଂ ଉପଯୁକ୍ତ ଆଶୀର୍ବାଦଦ୍ୱାରା ତାଙ୍କୁ ପୂଜାକଲେ ।୧୨୬। ଅନନ୍ତର ହନୂମାନ୍
ସେହି ଶୈଳ ଏବଂ ମହାର୍ଣ୍ଣବ ଉଭୟଙ୍କୁ ତ୍ୟାଗକରି, ବହୁଦୂର ଉପରକୁ ଉଠି, ନିଜ
ପିତାଙ୍କ ପଥ ଧରି ନିର୍ମଳ ଆକାଶରେ ଗମନ କରିବାକୁ ଲାଗିଲେ ।୧୨୭।
ବାନରଶ୍ରେଷ୍ଠ, ବାୟୁପୁତ୍ର, ହନୂମାନ୍ କୌଣସି ଆଶ୍ରୟ ନ ନେଇ, ପୁଣି
ଉପରକୁ ଉଠି ଏବଂ ସେ ପର୍ବତକୁ ଚାହିଁ ଚାହିଁ ଚାଲିଲେ ।୧୨୮। ହନୂମାନଙ୍କର
ଏହି ଦ୍ୱିତୀୟ ଦୁଷ୍କର କର୍ମ ଦେଖି ଦେବତା, ସିଦ୍ଧ ଏବଂ ମହର୍ଷିମାନେ ତାଙ୍କୁ ପ୍ରଶଂସା
କରିବାକୁ ଲାଗିଲେ ।୧୨୯। ସେଠାରେ ଉପସ୍ଥିତ ଥିବା ଦେବତାମାନେ ତାଙ୍କର
ଏହି କାର୍ଯ୍ୟ ଦେଖି ଆନନ୍ଦିତ ହେଲେ । ଅନନ୍ତର ଶଚୀପତି ସହସ୍ରାକ୍ଷ ଧୀମାନ୍ ଇନ୍ଦ୍ର
ପରିତୁଷ୍ଟ ହୋଇ ଗଦ୍ଗଦ ବାକ୍ୟରେ ସୁବର୍ଣ୍ଣନାଭିବିଶିଷ୍ଟ ପର୍ବତଶ୍ରେଷ୍ଠ ମୈନାକଙ୍କୁ
ନିଜେ କହିଲେ, “ହେ ହିରଣ୍ୟନାଭ ପର୍ବତରାଜ ! ମୁଁ ତୁମ୍ଭପ୍ରତି ଅତିଶୟ ସନ୍ତୁଷ୍ଟ

ହିରଣ୍ୟନାଭ ଶୈଳେନ୍ଦ୍ର ପରିତୁଷ୍ଟୋଽସ୍ମି ତେ ଭୃଶମ୍ ।
ଅଭୟଂ ତେ ପ୍ରଯଚ୍ଛାମି ଗଚ୍ଛ ସୌମ୍ୟ ଯଥାସୁଖମ୍ । ୧୩୨ ।
ସାହ୍ୟଂ କୃତଂ ତେ ସୁମହଦ୍‌ବିକ୍ରାନ୍ତସ୍ୟ ହନୂମତଃ ।
କ୍ରମତୋ ଯୋଜନଶତଂ ନିର୍ଭୟସ୍ୟ ଭୟେ ସତି । ୧୩୩ ।
ରାମସ୍ୟୈଷ ହିତାୟୈବ ଯାତି ଦାଶରଥେଃ କପିଃ ।
ସତ୍କ୍ରିୟାଂ କୁର୍ବତା ଶକ୍ତ୍ୟା ତୋଷିତୋଽସ୍ମି ଦୃଢ଼ଂ ତ୍ୱୟା ।୧୩୪
ସ ତତ୍ ପ୍ରହର୍ଷମଲଭଦ୍‌ବିପୁଳଂ ପର୍ବତୋତ୍ତମଃ ।
ଦେବତାନାଂ ପତିଂ ଦୃଷ୍ଟ୍ୱା ପରିତୁଷ୍ଟଂ ଶତକ୍ରତୁମ୍ । ୧୩୫ ।
ସ ବୈ ଦତ୍ତବରଃ ଶୈଳୋ ବଭୂବାବସ୍ଥିତସ୍ତଦା ।
ହନୂମାଂଶ୍ଚ ମୁହୂର୍ତ୍ତେନ ବ୍ୟତିଚକ୍ରାମ ସାଗରମ୍ । ୧୩୬ ।
ତତୋ ଦେବାଃ ସଗନ୍ଧର୍ବାଃ ସିଦ୍ଧାଶ୍ଚ ପରମର୍ଷୟଃ ।
ଅବ୍ରୁବନ୍ ସୂର୍ଯ୍ୟସଙ୍କାଶାଂ ସୁରସାଂ ନାଗମାତରମ୍ । ୧୩୭ ।
ଅୟଂ ବାତାତ୍ମଜଃ ଶ୍ରୀମାନ୍ ପ୍ଲବତେ ସାଗରୋପରି ।
ହନୂମାନ୍ନାମ ତସ୍ୟ ତ୍ୱଂ ମୁହୂର୍ତ୍ତଂ ବିଘ୍ନମାଚର । ୧୩୮ ।

---

ହୋଇଅଛି । ମୁଁ ତୁମ୍ଭଙ୍କୁ ଅଭୟ ଦେଉଛି, ତୁମ୍ଭେ ମନସୁଖରେ ଯେଉଁଠାକୁ ଇଚ୍ଛା ସେଠାକୁ ଯାଅ । ୧୩୦-୧୩୨ । ବିକ୍ରମୀ ହନୂମାନ୍ ନିର୍ଭୟରେ ଶତଯୋଜନ ସମୁଦ୍ର ଅତିକ୍ରମ କରୁଥିବାବେଳେ, କାଳେ ସଙ୍କଟାପନ୍ନ ହେବେ, ଏଥିଲାଗି ତୁମେ ତାଙ୍କର ବିଶେଷ ସାହାଯ୍ୟ କରିଅଛ । ୧୩୩ । ଏହି ବାନର ଦାଶରଥିଙ୍କର ହିତସାଧନ ନିମନ୍ତେ ଯାଉଛନ୍ତି; ସୁତରାଂ ତୁମ୍ଭେ ତାଙ୍କର ଯଥାଶକ୍ତି ସତ୍କାର କରିବାଦ୍ୱାରା ମୁଁ ଅତିଶୟ ସନ୍ତୁଷ୍ଟ ହୋଇଅଛି" । ୧୩୪ । ଦେବତାମାନଙ୍କର ଅଧିପତି ଇନ୍ଦ୍ରଙ୍କୁ ପରିତୁଷ୍ଟ ହେବାର ଦେଖି, ସେହି ପର୍ବତଶ୍ରେଷ୍ଠ ମୈନାକ ବିପୁଳ ହର୍ଷ ଲାଭକଲେ ଏବଂ ତାଙ୍କଠାରୁ ବର ପାଇ ଯଥାସ୍ଥାନରେ ଅବସ୍ଥିତ ହେଲେ । ହନୂମାନ୍ ମଧ୍ୟ ମୁହୂର୍ତ୍ତକମଧ୍ୟରେ ସମୁଦ୍ର ଲଙ୍ଘନ କରିଗଲେ ।୧୩୫-୧୩୬। ଅନନ୍ତର ଦେବ, ଗନ୍ଧର୍ବ, ସିଦ୍ଧ ଓ ମହର୍ଷିମାନେ ସୂର୍ଯ୍ୟତୁଲ୍ୟ ଦୀପ୍ତିଶାଳିନୀ ନାଗମାତା ସୁରସାଙ୍କୁ କହିଲେ । ୧୩୭ । 'ଏହି ପବନନନ୍ଦନ ଶ୍ରୀମାନ୍ ହନୂମାନ୍ ସମୁଦ୍ରର ଉପରେ ଦେଇ ଡେଇଁଯାଉଛନ୍ତି । ତୁମ୍ଭେ ମୁହୂର୍ତ୍ତକ ପାଇଁ ତାଙ୍କର ବିଘ୍ନ ଆଚରଣ କର ।୧୩୮ ।

ରାକ୍ଷସଂ ରୂପମାସ୍ଥାୟ ସୁଘୋରଂ ପର୍ବତୋପମମ୍ ।
ଦଂଷ୍ଟ୍ରାକରାଳଂ ପିଙ୍ଗାକ୍ଷଂ ବକ୍ତ୍ରଂ କୃତ୍ୱା ନଭଃସ୍ପୃଶମ୍ ।୧୩୯ ।
ବଲମଚ୍ଛାମହେ ଜ୍ଞାତୁଂ ଭୂୟଶ୍ଚାସ୍ୟ ପରାକ୍ରମମ୍ ।
ତ୍ୱାଂ ବିଜେଷ୍ୟତ୍ୟୁପାୟେନ ବିଷାଦଂ ବା ଗମିଷ୍ୟତି । ୧୪୦ ।
ଏବମୁକ୍ତା ତୁ ସା ଦେବୀ ଦୈବତୈରଭିସତ୍କୃତା ।
ସମୁଦ୍ରମଧ୍ୟେ ସୁରସା ବିଭ୍ରତୀ ରାକ୍ଷସଂ ବପୁଃ । ୧୪୧ ।
ବିକୃତଂ ଚ ବିରୂପଂ ଚ ସର୍ବସ୍ୟ ଚ ଭୟାବହମ୍ ।
ପ୍ଲବମାନଂ ହନୂମନ୍ତମାବୃତ୍ୟେଦମୁବାଚ ହ । ୧୪୨ ।
ମମ ଭକ୍ଷ୍ୟଃ ପ୍ରଦିଷ୍ଟସ୍ତ୍ୱମୀଶ୍ୱରୈର୍ବାନରର୍ଷଭ ।
ଅହଂ ତ୍ୱାଂ ଭକ୍ଷୟିଷ୍ୟାମି ପ୍ରବିଶେଦଂ ମମାନନମ୍ । ୧୪୩ ।
ବର ଏଷ ପୁରା ଦତ୍ତୋ ମମ ଧାତ୍ରେତି ସତ୍ୱରା ।
ବ୍ୟାଦାୟ ବକ୍ତ୍ରଂ ବିପୁଲଂ ସ୍ଥିତା ସା ମାରୁତେଃ ପୁରଃ । ୧୪୪ ।
ଏବମୁକ୍ତଃ ସୁରସୟା ପ୍ରହୃଷ୍ଟବଦନୋଽବ୍ରବୀତ୍ ।
ରାମୋ ଦାଶରଥିର୍ନାମ ପ୍ରବିଷ୍ଟୋ ଦଣ୍ଡକାବନମ୍ ।
ଲକ୍ଷ୍ମଣେନ ସହ ଭ୍ରାତ୍ରା ବୈଦେହ୍ୟା ଚାପି ଭାର୍ଯ୍ୟୟା । ୧୪୫ ।

---

ତୁମ୍ଭେ ଭୟଙ୍କର ପର୍ବତସଦୃଶ ରାକ୍ଷସରୂପ ଧାରଣକରି ଓ ପିଙ୍ଗଳବର୍ଣ୍ଣ ଚକ୍ଷୁବିଶିଷ୍ଟ, ଭୀଷଣ ଦନ୍ତଯୁକ୍ତ ବଦନ ଧାରଣକରି ତଦ୍ଦ୍ୱାରା ଆକାଶମଣ୍ଡଳକୁ ସ୍ପର୍ଶକର ।୧୩୯। ସେ ତୁମ୍ଭଙ୍କୁ କୌଣସି କୌଶଳଦ୍ୱାରା ପରାଜିତ କରିବେ, କି ବିଷଣ୍ଣ ହୋଇପଡ଼ିବେ; ତାଙ୍କର ସେହି ବଳ ଏବଂ ପରାକ୍ରମ ପୁଣି ଜାଣିବାକୁ ଆମ୍ଭମାନଙ୍କର ଇଚ୍ଛା ହେଉଅଛି” ।୧୪୦। ଦେବତାମାନେ ବିଶେଷ ସମ୍ମାନସହକାରେ ଏହିପରି କହିବାରୁ ଦେବୀ ସୁରସା ସମୁଦ୍ର ମଧ୍ୟରେ ବିକୃତ, ବିରୂପ ଏବଂ ସମସ୍ତଙ୍କର ଭୟପ୍ରଦ ରାକ୍ଷସମୂର୍ତ୍ତି ଧାରଣକରି ସାଗର ଲଙ୍ଘନକାରୀ ହନୂମାନଙ୍କର ପଥରୋଧ କରି କହିଲେ । ୧୪୧-୧୪୨ । “ହେ ବାନରଶ୍ରେଷ୍ଠ ! ଦେବତମାନେ ତୋତେ ମୋର ଭକ୍ଷ୍ୟରୂପେ ନିର୍ଦ୍ଦିଷ୍ଟ କରିଛନ୍ତି, ସୁତରାଂ ମୁଁ ତୋତେ ଭକ୍ଷଣ କରିବି । ତୁ ମୋର ଏହି ବଦନମଧ୍ୟରେ ପ୍ରବେଶ କର । ୧୪୩ । ବିଧାତା ମୋତେ ପୂର୍ବେ ଏହି ବର ଦେଇଥିଲେ ।” ଏହା କହି ସେ ତତ୍‌କ୍ଷଣାତ୍ ବିପୁଳ ମୁଖ ମେଲାଇ ହନୂମାନ୍‌ଙ୍କ ସମ୍ମୁଖରେ ଠିଆହେଲା । ୧୪୪ । ସୁରସା ଏହିପରି କହିବା ଉତ୍ତାରୁ ହନୂମାନ୍ ହର୍ଷମୁଖରେ କହିଲେ, “ଦଶରଥନନ୍ଦନ ଶ୍ରୀମାନ ରାମ ତାଙ୍କର ଭ୍ରାତା ଲକ୍ଷ୍ମଣ ଏବଂ ଭାର୍ଯ୍ୟା ବୈଦେହୀଙ୍କ ସହିତ ଦଣ୍ଡକାରଣ୍ୟରେ

ଅନ୍ୟ କାର୍ଯବିଷକ୍ତସ୍ୟ ବଦ୍ଧବୈରସ୍ୟ ରାକ୍ଷସୈଃ ।
ତସ୍ୟ ସୀତା ହୃତା ଭାର୍ଯା ରାବଣେନ ଯଶସ୍ୱିନୀ । ୧୪୬ ।
ତସ୍ୟାଃ ସକାଶଂ ଦୂତୋଽହଂ ଗମିଷ୍ୟେ ରାମଶାସନାତ୍ ।
କର୍ତୁମର୍ହସି ରାମସ୍ୟ ସାହ୍ୟଂ ବିଷୟବାସିନୀ । ୧୪୭ ।
ଅଥବା ମୈଥିଲୀଂ ଦୃଷ୍ଟ୍ୱା ରାମଂ ଚାକ୍ଲିଷ୍ଟକାରଣମ୍ ।
ଆଗମିଷ୍ୟାମି ତେ ବକ୍ତ୍ରଂ ସତ୍ୟଂ ପ୍ରତିଶୃଣୋମି ତେ । ୧୪୮ ।
ଏବମୁକ୍ତା ହନୂମତା ସୁରସା କାମରୂପିଣୀ ।
ଅବ୍ରବୀନ୍ନାତିବର୍ତେନ୍ମାଂ କଶ୍ଚିଦେଷ ବରୋ ମମ । ୧୪୯ ।
ତଂ ପ୍ରୟାନ୍ତଂ ସମୁଦ୍‌ବୀକ୍ଷ୍ୟ ସୁରସା ବାକ୍ୟମବ୍ରବୀତ୍ ।
ବଲଂ ଜିଜ୍ଞାସମାନା ସା ନାଗମାତା ହନୂମତଃ । ୧୫୦ ।
ନିବିଶ୍ୟ ବଦନଂ ମେଽଦ୍ୟ ଗନ୍ତବ୍ୟଂ ବାନରୋତ୍ତମ ।
ବର ଏଷ ପୁରା ଦତ୍ତୋ ମମ ଧାତ୍ରେତି ସତ୍ୱରା । ୧୫୧ ।
ବ୍ୟାଦାୟ ବିପୁଲଂ ବକ୍ତ୍ରଂ ସ୍ଥିତା ସା ମାରୁତେଃ ପୁରଃ ।
ଏବମୁକ୍ତଃ ସୁରସୟା କ୍ରୁଦ୍ଧୋ ବାନରପୁଙ୍ଗବଃ । ୧୫୨ ।

---

ପ୍ରବେଶ କରିଥିଲେ । ୧୪୫ । ସେହି ରାକ୍ଷସବୈରୀ ରାମ ଅନ୍ୟ କାର୍ଯ୍ୟରେ ବ୍ୟାପୃତ ଥିବାବେଳେ ତାଙ୍କର ଭାର୍ଯ୍ୟା ଯଶସ୍ୱିନୀ ସୀତାଙ୍କୁ ରାବଣ ହରଣକରି ନେଇଅଛି ।୧୪୬। ରାମଙ୍କ ଆଦେଶ ଅନୁସାରେ ମୁଁ ସେହି ସୀତାଙ୍କ ନିକଟକୁ ଦୂତ ହୋଇ ଯାଉଅଛି । ତୁମ୍ଭେ ତାଙ୍କ ରାଜ୍ୟରେ ବାସ କର; ସୁତରାଂ ବର୍ତ୍ତମାନ ତୁମ୍ଭର ରାମଙ୍କୁ ସାହାଯ୍ୟ କରିବା ଉଚିତ । ୧୪୭ । ତାହା ଯଦି ତୁମ୍ଭେ ନ କର, ତେବେ ମୁଁ ସୀତାଙ୍କୁ ଏବଂ ଅକ୍ଲିଷ୍ଟକାରୀ ରାମଙ୍କୁ ଦେଖାକରି ସାରି ଫେରିଆସି ତୁମ୍ଭର ବଦନମଧ୍ୟରେ ପ୍ରବେଶ କରିବି, ତୁମ୍ଭଙ୍କୁ ଏହି ସତ୍ୟପ୍ରତିଶ୍ରୁତି ଦେଉଅଛି" ।୧୪୮। ହନୂମାନ୍ ଏପରି କହିବା ଉତ୍ତାରୁ କାମରୂପିଣୀ ସୁରସା ତାଙ୍କୁ କହିଲା, "କୌଣସି ବ୍ୟକ୍ତି ମୋତେ ଅତିକ୍ରମ କରି ଯାଇପାରିବ ନାହିଁ, ମୁଁ ଏହି ବର ପାଇଛି" । ୧୪୯ । ଅନନ୍ତର ହନୂମାନ୍ ଯିବାକୁ ଉଦ୍ୟତ ହେବାର ଦେଖି ନାଗମାତା ସେହି ସୁରସା ତାହାଙ୍କର ବଳ ପରୀକ୍ଷା କରିବା ପାଇଁ କହିଲେ । ୧୫୦ । "ହେ ବାନରୋତ୍ତମ ! ଆଜ ମୋ ବଦନମଧ୍ୟରେ ପ୍ରବେଶ କରି ତୋତେ ଯିବାକୁ ହେବ । ବିଧାତା ମୋତେ ପୂର୍ବେ ଏହି ବର ଦେଇଛନ୍ତି" । ୧୫୧ । ଏହା କହି ସେ ବିପୁଳ ମୁଖବିସ୍ତାରପୂର୍ବକ ସତ୍ୱର ମାରୁତି-ଙ୍କ ଆଗରେ ଠିଆହେଲେ । ସୁରସା ଏପରି କହିବାରୁ ବାନରଶ୍ରେଷ୍ଠ ହନୂମାନ୍

ଅବ୍ରବୀତ୍କ୍ରୁଦ୍ଧୋ ବୈ ବକ୍ତ୍ରଂ ଯେନ ମାଂ ବିଷହିଷ୍ୟସି ।
ଇତ୍ୟୁକ୍ତ୍ୱା ସୁରସାଂ କ୍ରୁଦ୍ଧୋ ଦଶଯୋଜନମାୟତାମ୍ । ୧୫୩ ।
ଦଶଯୋଜନବିସ୍ତାରୀ ହନୂମାନଭବତ୍ତଦା ।
ଚକାର ସୁରସା ଚାସ୍ୟଂ ବିଂଶଦ୍ୟୋଜନମାୟତମ୍ । ୧୫୪ ।
ତଦ୍ଦୃଷ୍ଟ୍ୱା ବ୍ୟାଦିତଂ ତ୍ୱାସ୍ୟଂ ବାୟୁପୁତ୍ରଃ ସ ବୁଦ୍ଧିମାନ୍ ।
ଦୀର୍ଘଜିହ୍ୱଂ ସୁରସୟା ସୁଭୀମଂ ନରକୋପମମ୍ । ୧୫୫ ।
ସ ସଂକ୍ଷିପ୍ୟାତ୍ମନଃ କାୟଂ ଜୀମୂତ ଇବ ମାରୁତିଃ ।
ତସ୍ମିନ୍ମୁହୂର୍ତ୍ତେ ହନୁମାନ୍ ବଭୂବାଙ୍ଗୁଷ୍ଠମାତ୍ରକଃ । ୧୫୬ ।
ସୋଽଭିପତ୍ୟାଥ ତଦ୍ୱକ୍ତ୍ରଂ ନିଷ୍ପତ୍ୟ ଚ ମହାବଲଃ ।
ଅନ୍ତରୀକ୍ଷେ ସ୍ଥିତଃ ଶ୍ରୀମାନିଦଂ ବଚନମବ୍ରବୀତ୍ । ୧୫୭ ।
ପ୍ରବିଷ୍ଟୋଽସ୍ମି ହି ତେ ବକ୍ତ୍ରଂ ଦାକ୍ଷାୟଣି ନମୋଽସ୍ତୁ ତେ ।
ଗମିଷ୍ୟେ ଯତ୍ର ବୈଦେହୀ ସତ୍ୟଶ୍ଚାସୀଦ୍ୱରସ୍ତବ । ୧୫୮ ।
ତଂ ଦୃଷ୍ଟ୍ୱା ବଦନାନ୍ମୁକ୍ତଂ ଚନ୍ଦ୍ରଂ ରାହୁମୁଖାଦିବ ।
ଅବ୍ରବୀତ୍ସୁରସା ଦେବୀ ସ୍ୱେନ ରୂପେଣ ବାନରମ୍ । ୧୫୯ ।
ଅର୍ଥସିଦ୍ଧ୍ୟୈ ହରିଶ୍ରେଷ୍ଠ ଗଚ୍ଛ ସୌମ୍ୟ ଯଥାସୁଖମ୍ ।
ସମାନୟ ଚ ବୈଦେହୀଂ ରାଘବେଣ ମହାତ୍ମନା । ୧୬୦ ।

---

କ୍ରୁଦ୍ଧ ହୋଇ କହିଲେ, "ବେଶ୍, ତେବେ ମୋତେ ସହିପାରିବାଭଳି ବଦନ ବିସ୍ତାର କର" । ଦଶଯୋଜନ ବିସ୍ତୃତା ସୁରସାକୁ କ୍ରୋଧରେ ଏପରି କହି ହନୁମାନ୍ ନିଜେ ତତ୍କ୍ଷଣାତ୍ ଦଶଯୋଜନବିସ୍ତୃତ ହୋଇଗଲେ । ସୁରସା ମଧ୍ୟ ନିଜର ମୁଖକୁ କୋଡ଼ିଏ ଯୋଜନ ବିସ୍ତୃତ କରିଦେଲା ।୧୫୨-୧୫୪। ସୁରସା ତାହାର ଦୀର୍ଘଜିହ୍ୱାବିଶିଷ୍ଟ ଅତି ଘୋର ନରକସଦୃଶ ମୁଖ ମେଲାଇବାର ଦେଖି,ବୁଦ୍ଧିମାନ୍ ପବନନନ୍ଦନ,ହନୁମାନ୍ ମେଘସଦୃଶ ନିଜର ଶରୀରକୁ ସଙ୍କୁଚିତ କରିଦେଇ ସେହି ମୁହୂର୍ତ୍ତରେ ବୁଢ଼ା ଆଙ୍ଗୁଠିରେ ଆକାର ହୋଇଗଲେ । ୧୫୫-୧୫୬ । ଅନନ୍ତର ଶ୍ରୀମାନ୍ ହନୁମାନ୍ ତାହାର ମୁଖମଧ୍ୟରେ ପ୍ରବେଶକରି ଏବଂ ସବେଗରେ ବାହାରି ଆସି, ଆକାଶରେ ଅବସ୍ଥାନ କରି ତାକୁ କହିଲେ । ୧୫୭ । "ହେ ଦାକ୍ଷାୟଣି ! ମୁଁ ତୁମ୍ଭଙ୍କୁ ନମସ୍କାର କରୁଛି । ମୁଁ ତୁମ୍ଭ ବଦନମଧ୍ୟରେ ପ୍ରବେଶ କଲି, ତୁମ୍ଭର ବର ମଧ୍ୟ ସତ୍ୟହେଲା । ବୈଦେହୀ ଯେଉଁଠାରେ ଅଛନ୍ତି ମୁଁ ଏବେ ସେଠାକୁ ଯିବି । ୧୫୮ । ରାହୁର ମୁଖରୁ ଚନ୍ଦ୍ର ମୁକ୍ତ ହେଲାପରି ତାହାଙ୍କର ମୁଖରୁ ସେ ବାନର ମୁକ୍ତ ହେବାର ଦେଖି ଦେବୀ ସୁରସା ନିଜରୂପ ଧରି ତାଙ୍କୁ କହିଲେ । ୧୫୯ । "ହେ ସୌମ୍ୟ ବାନରଶ୍ରେଷ୍ଠ ! ତୁମ୍ଭେ ନିଜର କାର୍ଯ୍ୟସିଦ୍ଧି ନିମନ୍ତେ ଯଥାସୁଖରେ ଗମନ କର ଏବଂ ମହାତ୍ମା ରାମଙ୍କ ସହିତ ବୈଦେହୀଙ୍କର

ତତସ୍ତୃତୀୟଂ ହନୂମତୋ ଦୃଷ୍ଟ୍ୱା କର୍ମ ସୁଦୁଷ୍କରମ୍ ।
ସାଧୁ ସାଧ୍ୱିତି ଭୂତାନି ପ୍ରଶଶଂସୁସ୍ତଦା ହରିମ୍ ।୧୬୧ ।
ସ ସାଗରମନାଧୃଷ୍ୟ ମଭ୍ୟେତ୍ୟ ବରୁଣାଲୟମ୍ ।
ଜଗାମାକାଶମାବିଶ୍ୟ ବେଗେନ ଗରୁଡ଼ୋପମଃ । ୧୬୨ ।
ସେବିତେ ବାରିଧାରାଭିଃ ପତଗୈଶ୍ଚ ନିଷେବିତେ ।
ଚରିତେ କୈଶିକାଚାର୍ଯ୍ୟୈରୈରାବତନିଷେବିତେ । ୧୬୩ ।
ସିଂହକୁଞ୍ଜରଶାର୍ଦୂଲପତଗୋରଗବାହନୈଃ ।
ବିମାନୈଃ ସଂପତଦ୍ଭିଶ୍ଚ ବିମଲୈଃ ସମଲଂକୃତେ । ୧୬୪ ।
ବଜ୍ରାଶନିସମସ୍ପର୍ଶୈଃ ପାବକୈରିବ ଶୋଭିତେ ।
କୃତପୁଣ୍ୟୈର୍ମହାଭାଗୈଃ ସ୍ୱର୍ଗଜିଦ୍ଭିରଧିଷ୍ଠିତେ । ୧୬୫ ।
ବହତା ହବ୍ୟମତ୍ୟନ୍ତଂ ସେବିତେ ଚିତ୍ରଭାନୁନା ।
ଗ୍ରହନକ୍ଷତ୍ରଚନ୍ଦ୍ରାର୍କତାରାଗଣବିଭୂଷିତେ । ୧୬୬ ।
ମହର୍ଷିଗଣଗନ୍ଧର୍ବନାଗଯକ୍ଷସମାକୁଳେ ।
ବିବିକ୍ତେ ବିମଳେ ବିଶ୍ୱେ ବିଶ୍ୱାବସୁନିଷେବିତେ । ୧୬୭ ।
ଦେବରାଜଗଜାକ୍ରାନ୍ତେ ଚନ୍ଦ୍ରସୂର୍ଯ୍ୟପଥେ ଶିବେ ।
ବିତାନେ ଜୀବଲୋକସ୍ୟ ବିମଳେ ବ୍ରହ୍ମନିର୍ମିତେ । ୧୬୮ ।

---

ମିଳନ କରାଅ” । ୧୬୦ । ହନୂମାନଙ୍କର ଏହି ତୃତୀୟ ଦୁଷ୍କର କାର୍ଯ୍ୟ ଦେଖି, ସେତେବେଳେ ସମସ୍ତ ପ୍ରାଣୀ 'ସାଧୁ, ସାଧୁ' କହି ସେ ବାନରଙ୍କୁ ପ୍ରଶଂସା କରିବାକୁ ଲାଗିଲେ । ୧୬୧ । ହନୂମାନ୍ ଅଜେୟ ବରୁଣାଳୟ ସମୁଦ୍ରକୁ ଅତିକ୍ରମ କରି ଆକାଶମାର୍ଗରେ ଗରୁଡ଼ସଦୃଶ ବେଗରେ ଗମନ କରିବାକୁ ଲାଗିଲେ । ୧୬୨ । ଜଳଧାରା, ବିହଙ୍ଗସମୂହ, ସଙ୍ଗୀତାଚାର୍ଯ୍ୟ ଗନ୍ଧର୍ବ ପ୍ରଭୃତି, ସିଂହ, ବ୍ୟାଘ୍ର, ହସ୍ତୀ, ପକ୍ଷୀ ଓ ସର୍ପଯୁକ୍ତ ନିର୍ମଳ ବିମାନସମୂହ, ବଜ୍ର, ଅଶନି ଓ ଅଶନିପରି ପ୍ରାଣଘାତୀ ଅଗ୍ନି, ପୁଣ୍ୟାନୁଷ୍ଠାନକାରୀ ସ୍ୱର୍ଗଜୟୀ ମହାଭାଗ ପୁରୁଷଗଣ, ସତତ ହବ୍ୟ ବହନକାରୀ ଅଗ୍ନି, ଗ୍ରହ, ନକ୍ଷତ୍ର, ସୂର୍ଯ୍ୟ, ଚନ୍ଦ୍ର ଓ ତାରାରାଜି, ମହର୍ଷି, ଗନ୍ଧର୍ବ, ନାଗ, ଯକ୍ଷଗଣ, ଦେବରାଜଙ୍କର ବାହନ ଐରାବତ ଏବଂ ବହୁସଂଖ୍ୟକ ବୀର ବିଦ୍ୟାଧରଗଣଙ୍କ ଦ୍ୱାରା ଏହି ବାୟୁପଥ ଅଳଙ୍କୃତ ଓ ସୁଶୋଭିତ ହୋଇଥିଲା । ଏହି ପଥ ନିର୍ଜନ, ନିର୍ମଳ, ବିଶ୍ୱାବସୁସେବିତ ଓ ଜୀବଲୋକର ଆଶ୍ରୟସ୍ଥଳ। ଏ ପଥକୁ ବ୍ରହ୍ମା ସ୍ୱୟଂ ନିର୍ମାଣ କରିଥିଲେ।

ବହୁଶଃ ସେବତେ ବୀରୈର୍ବିଦ୍ୟାଧରଗଣୈର୍ବୃତେ ।
ଜଗାମ ବାୟୁମାର୍ଗେ ଚ ଗରୁତ୍ମାନିବ ମାରୁତଃ । ୧୬୯ ।
ହନୁମାନ୍ମେଘଜାଲାନି ପ୍ରାକର୍ଷନ୍ମାରୁତୋ ଯଥା ।
କାଲାଗୁରୁସବର୍ଣାନି ରକ୍ତପୀତସିତାନି ଚ । ୧୭୦ ।
କପିନାକୃଷ୍ୟମାଣାନି ମହାଭ୍ରାଣି ଚକାଶିରେ ।
ପ୍ରବିଶନ୍ନଭ୍ରଜାଲାନି ନିଷ୍ପତଂଶ୍ଚ ପୁନଃ ପୁନଃ । ୧୭୧ ।
ପ୍ରାବୃଷୀନ୍ଦୁରିବାଭାତି ନିଷ୍ପତନ୍ ପ୍ରବିଶଂସ୍ତଥା ।
ପ୍ରଦୃଶ୍ୟମାନଃ ସର୍ବତ୍ର ହନୁମାନ୍ମାରୁତାତ୍ମଜଃ । ୧୭୨ ।
ଭେଜେଽମ୍ବରଂ ନିରାଲମ୍ବଂ ପକ୍ଷଯୁକ୍ତ ଇବାଦ୍ରିରାଟ୍ ।
ପ୍ଲବମାନଂ ତୁ ତଂ ଦୃଷ୍ଟ୍ୱା ସିଂହିକା ନାମ ରାକ୍ଷସୀ । ୧୭୩ ।
ମନସା ଚିନ୍ତୟାମାସ ପ୍ରବୃଦ୍ଧା କାମରୂପିଣୀ ।
ଅଦ୍ୟ ଦୀର୍ଘସ୍ୟ କାଲସ୍ୟ ଭବିଷ୍ୟାମ୍ୟହମାଶିତା । ୧୭୪ ।
ଇଦଂ ମମ ମହାସତ୍ତ୍ୱଂ ଚିରସ୍ୟ ବଶମାଗତମ୍ ।
ଇତି ସଂଚିନ୍ତ୍ୟ ମନସା ଛାୟାମସ୍ୟ ସମାକ୍ଷିପତ୍ । ୧୭୫ ।
ଛାୟାୟାଂ ଗୃହ୍ୟମାଣାୟାଂ ଚିନ୍ତୟାମାସ ବାନରଃ ।
ସମାକ୍ଷିପ୍ତୋଽସ୍ମି ସହସା ପଙ୍ଗୂକୃତପରାକ୍ରମଃ । ୧୭୬ ।

---

ହନୁମାନ୍ ବାୟୁଙ୍କପରି ମେଘସମୂହ ଆକର୍ଷଣକରି ଏହି ଚନ୍ଦ୍ର ସୂର୍ଯ୍ୟସେବିତ ମଙ୍ଗଳମୟ ପଥରେ ଗରୁଡ଼ସଦୃଶ ଗମନ କରିବାକୁ ଲାଗିଲେ । ରକ୍ତ, ପୀତ ଓ ଶ୍ୱେତବର୍ଣ୍ଣ ଏବଂ କାଲାଗୁରୁସଦୃଶ ମେଘରାଜ ଏହି ବାନରକର୍ତ୍ତୃକ ଆକର୍ଷିତ ହୋଇ ଶୋଭା ବିସ୍ତାର କରିବାକୁ ଲାଗିଲେ । ସେ ବାରମ୍ବାର ମେଘମାଳା ମଧ୍ୟରେ ପ୍ରବିଷ୍ଟ ଏବଂ ନିର୍ଗତ ହେବାଦ୍ୱାରା ବର୍ଷାକାଳୀନ ଚନ୍ଦ୍ରପରି ଦେଖାଗଲେ । ପବନନନ୍ଦନ ହନୁମାନ୍ ଏହିପରି ସର୍ବତ୍ର ପରିଦୃଷ୍ଟ ହୋଇ ପକ୍ଷବିଶିଷ୍ଟ ପର୍ବତରାଜପରି ନିରାଲମ୍ବ ଆକାଶମାର୍ଗ ଅବଲମ୍ବନ କରି ଚାଲିଲେ । ଏହି ସମୟରେ ପ୍ରବୃଦ୍ଧା କାମରୂପିଣୀ ସିଂହିକା ନାମକ ରାକ୍ଷସୀ ହନୁମାନଙ୍କୁ ଏହିପରିଭାବରେ ଉଡ଼ିଁ ଯାଉଥିବାର ଦେଖି ମନେ ମନେ ଚିନ୍ତାକଲା, 'ଆଜି ଦୀର୍ଘକାଳ ପରେ ମୁଁ ଭକ୍ଷଣ କରିବି । ବହୁକାଳ ପରେ ଏହି ବିଶାଳକାୟ ପ୍ରାଣୀ ମୋ କବଳକୁ ଆସିଅଛି ।' ସେ ମନେ ମନେ ଏହି କଥା ଚିନ୍ତାକରି ହନୁମାନଙ୍କର ଛାୟାକୁ ଆକର୍ଷଣ କଲା । ୧୭୩-୧୭୫ । ଛାୟାର

ପ୍ରତିଲୋମେନ ବାତେନ ମହାନୌରିବ ସାଗରେ ।
ତିର୍ଯ୍ୟଗୂର୍ଦ୍ଧ୍ୱମଧଶ୍ଚୈବ ବୀକ୍ଷମାଣସ୍ତଦା କପିଃ । ୧୭୭ ।
ଦଦର୍ଶ ସ ମହାସତ୍ତ୍ୱମୁତ୍ଥିତଂ ଲବଣାମ୍ଭସି ।
ତଦ୍ଦୃଷ୍ଟ୍ୱା ଚିନ୍ତୟାମାସ ମାରୁତିର୍ବିକୃତାନନାମ୍ । ୧୭୮ ।
କପିରାଜ୍ଞା ଯଥାଖ୍ୟାତଂ ସତ୍ତ୍ୱମଦ୍ଭୁତଦର୍ଶନମ୍ ।
ଛାୟାଗ୍ରାହି ମହାବୀର୍ଯ୍ୟଂ ତଦିଦଂ ନାତ୍ର ସଂଶୟଃ । ୧୭୯ ।
ସ ତାଂ ବୁଦ୍ଧ୍ୱାର୍ଥତତ୍ତ୍ୱେନ ସିଂହିକାଂ ମତିମାନ୍ କପିଃ ।
ବ୍ୟବର୍ଦ୍ଧତ ମହାକାୟଃ ପ୍ରାବୃଷୀବ ବଲାହକଃ । ୧୮୦ ।
ତସ୍ୟ ସା କାୟମୁଦ୍‌ବୀକ୍ଷ୍ୟ ବର୍ଦ୍ଧମାନଂ ମହାକପେଃ ।
ବକ୍ତ୍ରଂ ପ୍ରସାରୟାମାସ ପାତାଳାନ୍ତରସଂନିଭମ୍ । ୧୮୧ ।
ଘନରାଜୀବ ଗର୍ଜନ୍ତୀ ବାନରଂ ସମଭିଦ୍ରବତ୍ ।
ସ ଦଦର୍ଶ ତତସ୍ତସ୍ୟା ବିକୃତଂ ସୁମହନ୍ମୁଖମ୍ । ୧୮୨ ।
କାୟମାତ୍ରଂ ଚ ମେଧାବୀ ମର୍ମାଣି ଚ ମହାକପେଃ ।
ସ ତସ୍ୟା ବିବୃତେ ବକ୍ତ୍ରେ ବଜ୍ରସଂହନନଃ କପିଃ । ୧୮୩ ।

---

ଗ୍ରସ୍ତ। ଏହିପରଭାବରେ ଆକର୍ଷିତ ହେଉଥିବାର ଦେଖି ସେ ବାନର ଚିନ୍ତାକଲେ 'ମୁଁ ହଠାତ୍ ଏପରି ଆକ୍ରାନ୍ତ ହେଲି, ମୋର ବୀର୍ଯ୍ୟ ଶିଥିଳ ହୋଇଯାଉଅଛି । ସମୁଦ୍ରମଧ୍ୟରେ ପ୍ରତିକୂଳବାହୀ ବାୟୁଦ୍ୱାରା ସମାକୃଷ୍ଟ ବିଶାଳ ନୌକାପରି ମୁଁ ହୀନବଳ ହୋଇପଡ଼ୁଅଛି' । ଅନନ୍ତର ସେହି କପିବର ଏ ପାଖ ସେ ପାଖ ଓ ଉପର ତଳକୁ ଚାହିଁ, ଲବଣସମୁଦ୍ରମଧ୍ୟରୁ ସମୁତ୍ଥିତ ଏହି ମହାପ୍ରାଣୀକୁ ଦେଖିଲେ । ପବନନନ୍ଦନ ସେହି ବିକୃତବଦନାଙ୍କୁ ଦେଖି ଚିନ୍ତା କରିବାକୁ ଲାଗିଲେ । ୧୭୭-୧୭୮ । 'କପିରାଜ ସୁଗ୍ରୀବ, ଯେଉଁ ଅଦ୍ଭୁତଦର୍ଶନ, ମହାବୀର୍ଯ୍ୟବାନ୍, ଛାୟା ଆକର୍ଷଣକାରୀ ପ୍ରାଣୀର କଥା କହିଥିଲେ, ଏ ନିଶ୍ଚୟ ସେହି ପ୍ରାଣୀ, ଏଥିରେ ସନ୍ଦେହ ନାହିଁ' । ୧୭୯ । ମତିମାନ୍ ବାନର ତାହାକୁ ଯଥାର୍ଥରେ ସିଂହିକା ବୋଲି ଜାଣିପାରି ବର୍ଷାକାଳୀନ ମେଘପରି ନିଜ ଶରୀରକୁ ବଢ଼ାଇ ଅତି ବିଶାଳକାୟ ହୋଇଗଲେ । ୧୮୦ । ସିଂହିକା ସେହି ମହାକପିଙ୍କର ଶରୀର ବର୍ଦ୍ଧିତ ହେବାର ଦେଖି ପାତାଳଗର୍ଭସଦୃଶ ନିଜ ବଦନକୁ ପ୍ରସାରିତ କଲା, ଏବଂ ମେଘରାଜିସଦୃଶ ଗର୍ଜନ କରି ସେହି ବାନର ଅଭିମୁଖରେ ଧାବମାନ ହେଲା । ମେଧାବୀ ହନୁମାନ୍ ତାହାର ବିକୃତ ବିଶାଳମୁଖ ଓ ଶରୀର ତଥା

ସଂକ୍ଷିପ୍ୟ ମୁହୁରାତ୍ମାନଂ ନିପପାତ ମହାକପିଃ ।
ଆସ୍ୟେ ତସ୍ୟା ନିମଜ୍ଜନ୍ତଂ ଦଦୃଶୁଃ ସିଦ୍ଧଚାରଣାଃ ।୧୮୪।
ଗ୍ରସ୍ୟମାନଂ ଯଥା ଚନ୍ଦ୍ରଂ ପୂର୍ଣ୍ଣଂ ପର୍ବଣି ରାହୁଣା ।
ତତସ୍ତସ୍ୟା ନଖୈସ୍ତୀକ୍ଷ୍ଣୈର୍ମର୍ମାଣ୍ୟୁତ୍କୃତ୍ୟ ବାନରଃ ।୧୮୫।
ଉତ୍ପପାତାଥ ବେଗେନ ମନଃସଂପାତବିକ୍ରମଃ ।
ତାଂ ତୁ ଦୃଷ୍ଟ୍ୟା ଚ ଧୃତ୍ୟା ଚ ଦାକ୍ଷିଣ୍ୟେନ ନିପାତ୍ୟ ସଃ ।୧୮୬
କପିପ୍ରବୀରୋ ବେଗେନ ବବୃଧେ ପୁନରାତ୍ମବାନ୍ ।
ହୃତହୃତ୍ସା ହନୁମତା ପପାତ ବିଧୁରାମ୍ଭସି ।
ସ୍ୱୟଂଭୁବେବ ହନୁମାନ୍ ସୃଷ୍ଟସ୍ତସ୍ୟା ନିପାତନେ ।୧୮୭।
ତାଂ ହତାଂ ବାନରେଣାଶୁ ପତିତାଂ ବୀକ୍ଷ୍ୟ ସିଂହିକାମ୍ ।
ଭୂତାନ୍ୟାକାଶଚାରୀଣି ତମୂଚୁଃ ପ୍ଲବଗୋତ୍ତମମ୍ ।୧୮୮।
ଭୀମମଦ୍ୟ କୃତଂ କର୍ମ ମହତ୍ସତ୍ତ୍ୱଂ ତ୍ୱୟା ହତମ୍ ।
ସାଧୟାର୍ଥମଭିପ୍ରେତମରିଷ୍ଟଂ ପ୍ଲବତାଂ ବର ।୧୮୯।

---

ବକ୍ଷସ୍ଥଳ ଦେଖିଲେ । ଅନନ୍ତର ବଜ୍ରସଦୃଶ ଦୃଢ଼ଶରୀର ସେହି ମହାବଳୀ ହନୁମାନ୍ ତତ୍କ୍ଷଣାତ୍ ନିଜର ଶରୀରକୁ ସଂକୁଚିତ କରି ତାହାର ବିବୃତ ମୁଖ-ମଧ୍ୟରେ ଯାଇ ପଡ଼ିଲେ । ପୂର୍ଣ୍ଣିମା ସମୟରେ ରାହୁ ପୂର୍ଣ୍ଣଚନ୍ଦ୍ରଙ୍କୁ ଗ୍ରାସ କଲାପରି ସେହି ସିଂହିକାର ମୁଖ ମଧ୍ୟରେ ନିମଗ୍ନ ହେଉଥିବା ହନୁମାନଙ୍କୁ ସିଦ୍ଧ ଏବଂ ଚାରଣମାନେ ଦେଖିଲେ । ଅନନ୍ତର ମନପରିବେଗଶାଳୀ ସେହି ବାନର ତୀକ୍ଷ୍ଣ ନଖଦ୍ୱାରା ତାହାର ମର୍ମସ୍ଥଳ ବିଦାର୍ଣ୍ଣ କରି ଆକାଶକୁ ଉତ୍ପତିତ ହେଲେ । ଏହାପରେ ଆତ୍ମବାନ୍ କପି-ପ୍ରବର ହନୂମାନ୍ ସୂକ୍ଷ୍ମଦୃଷ୍ଟି, ଧୈର୍ଯ୍ୟ ଏବଂ ଦକ୍ଷତା ସହକାରେ ସେହି ସିଂହିକାକୁ ନିପାତିତ କରି ସବେଗରେ ପୁନର୍ବାର ବର୍ଦ୍ଧିତ ହେବାକୁ ଲାଗିଲେ । ସେ ରାକ୍ଷସୀ ହନୂମାନ୍ କର୍ତ୍ତୃକ ଭଗ୍ନହୃଦୟା ହୋଇ ନିରାଶ୍ରୟଭାବରେ ସମୁଦ୍ରଜଳରେ ନିପତିତ ହେଲା । ବ୍ରହ୍ମା ତାହାର ସଂହାର ନିମନ୍ତେହିଁ ହନୂମାନଙ୍କୁ ସୃଷ୍ଟି କରିଥିଲେ । ।୧୮୦-୧୮୭। ସିଂହିକାକୁ ବାନରକର୍ତ୍ତୃକ ନିହତ ହୋଇ ଏହାପରି ପତିତ ହେବାର ଦେଖି ଆକାଶଚାରୀ ପ୍ରାଣୀମାନେ ବାନରଶ୍ରେଷ୍ଠ ହନୂମାନଙ୍କୁ କହିଲେ । ।୧୮୮। "ହେ ବାନରଶ୍ରେଷ୍ଠ ! ତୁମ୍ଭେ ଆଜି ଏହି ବୃହତ୍ ପ୍ରାଣୀକୁ ବଧକରି ଅତି ଦୁଷ୍କର କର୍ମ ସମ୍ପାଦନ କଲ । ଏଣିକି ନିର୍ବିଘ୍ନରେ ସ୍ୱୀୟ ଅଭିପ୍ରେତ ସାଧନ

ଯସ୍ୟ ତ୍ୱେତାନି ଚତ୍ୱାରି ବାନରେନ୍ଦ୍ର ଯଥା ତବ ।
ଧୃତିର୍ଦୃଷ୍ଟିର୍ମତିର୍ଦାକ୍ଷ୍ୟଂ ସ କର୍ମସୁ ନ ସୀଦତି । ୧୯୦ ।
ସ ତୈଃ ସଂପୂଜିତଃ ପୂଜ୍ୟଃ ପ୍ରତିପନ୍ନପ୍ରୟୋଜନୈଃ ।
ଜଗାମାକାଶମାବିଶ୍ୟ ପନ୍ନଗାଶନବତ୍କପିଃ । ୧୯୧ ।
ପ୍ରାପ୍ତଭୂୟିଷ୍ଠପାରସ୍ତୁ ସର୍ବତଃ ପରିଲୋକୟନ୍ ।
ଯୋଜନାନାଂ ଶତସ୍ୟାନ୍ତେ ବନରାଜିଂ ଦଦର୍ଶ ସଃ । ୧୯୨ ।
ଦଦର୍ଶ ଚ ପତନ୍ନେବ ବିବିଧଦ୍ରୁମଭୂଷିତମ୍ ।
ଦ୍ୱୀପଂ ଶାଖାମୃଗଶ୍ରେଷ୍ଠୋ ମଲୟୋପବନାନି ଚ । ୧୯୩ ।
ସାଗରଂ ସାଗରାନୂପାନ୍ ସାଗରାନୂପଜାନ୍ ଦ୍ରୁମାନ୍ ।
ସାଗରସ୍ୟ ଚ ପତ୍ନୀନାଂ ମୁଖାନ୍ୟପି ବିଲୋକୟନ୍ । ୧୯୪ ।
ସ ମହାମେଘସଂକାଶଂ ସମୀକ୍ଷ୍ୟାତ୍ମାନମାତ୍ମବାନ୍ ।
ନିରୁନ୍ଧନ୍ତମିବାକାଶଂ ଚକାର ମତିମାନ୍ମତିମ୍ । ୧୯୫ ।
କାୟବୃଦ୍ଧିଂ ପ୍ରବେଗଂ ଚ ମମ ଦୃଷ୍ଟ୍ୱୈବ ରାକ୍ଷସାଃ ।
ମୟି କୌତୂହଲଂ କୁର୍ୟୁରିତି ମେନେ ମହାମତିଃ । ୧୯୬ ।

---

କର । ୧୮୯ । ହେ ବାନରେନ୍ଦ୍ର ! ତୁମପରି ଯେଉଁ ବ୍ୟକ୍ତିର ଧୃତି, ଦୃଷ୍ଟି, ମତି ଓ ଦକ୍ଷତା ଏହି ଚାରିଗୁଣ ଅଛି, ସେ କଦାପି କାର୍ଯ୍ୟରେ ଅବସନ୍ନ ହୁଏ ନାହିଁ । ୧୯୦ । ହନୂମାନ୍ ସେହି ପୂଜ୍ୟ ପ୍ରାଣୀମାନଙ୍କ ଦ୍ୱାରା ପୂଜିତ ହୋଇ ଏବଂ ଅଭୀଷ୍ଟସାଧନରେ ଅନୁଯୋଜିତ ହୋଇ ସର୍ପଭକ୍ଷୀ ଗରୁଡ଼ସଦୃଶ ଆକାଶମାର୍ଗରେ ଗମନକଲେ । । ୧୯୧ । ସେ ବହୁପରିମାଣରେ ସମୁଦ୍ରର ଅପର ପାରର ନିକଟବର୍ତ୍ତୀ ହୋଇ, ଚତୁର୍ଦ୍ଦିଗକୁ ଅବଲୋକନ କରି, ଶତଯୋଜନାନ୍ତେ ବନରାଜି ଦେଖିବାକୁ ପାଇଲେ । । ୧୯୨ । ଅନନ୍ତର ସେହି ବାନରଶ୍ରେଷ୍ଠ ଯାଉଁ ଯାଉଁ ବିବିଧ ଦ୍ରୁମଶୋଭିତ ଦ୍ୱୀପ ଏବଂ ମଲୟପର୍ବତର ଉପବନସକଳ ଦେଖିଲେ । ୧୯୩ । ପରେ ସେହି ମତିମାନ୍ ମାରୁତି ସାଗର, ସାଗରର ଉପକୂଳଦେଶ, ଉପକୂଳଜାତ ବୃକ୍ଷସମୂହ, ସାଗରପତ୍ନୀ ନଦୀମାନଙ୍କର ସଙ୍ଗମସ୍ଥାନମାନ ଦେଖି ଦେଖି ଯାଉଁ ଯାଉଁ ମେଘସଦୃଶ ଆକାଶ ଅବରୋଧକାରୀ ସ୍ୱୀୟ ଶରୀରକୁ ଦେଖି ବିଚାରିଲେ ଯେ, 'ମୋର ଏହି ବିଶାଳଶରୀର ଏବଂ ପ୍ରବଳବେଗ ଦେଖିଲେ ରାକ୍ଷସମାନଙ୍କ ମନରେ କୌତୂହଳ ଜାତ ହେବ' । ୧୯୪-୧୯୬ । ଏହି ବିବେଚନା କରି ସେ

ତତଃ ଶରୀରଂ ସଂକ୍ଷିପ୍ୟ ତନ୍ମହୀଧରସନ୍ନିଭମ୍ ।
ପୁନଃ ପ୍ରକୃତିମାପେଦେ ବୀତମୋହ ଇବାତ୍ମବାନ୍ । ୧୯୭ ।
ତଦ୍ରୂପମତିସଂକ୍ଷିପ୍ୟ ହନୁମାନ୍ ପ୍ରକୃତୌ ସ୍ଥିତଃ ।
ତ୍ରୀନ୍ କ୍ରମାନିବ ବିକ୍ରମ୍ୟ ବଲିବୀର୍ଯହରୋ ହରିଃ । ୧୯୮ ।

ସ ଚାରୁ ନାନାବିଧରୂପଧାରୀ
ପରଂ ସମାସାଦ୍ୟ ସମୁଦ୍ରତୀରମ୍ ।
ପରୈରଶକ୍ୟଂ ପ୍ରତିପନ୍ନରୂପଃ
ସମୀକ୍ଷିତାତ୍ମା ସମବେକ୍ଷିତାର୍ଥଃ । ୧୯୯ ।

ତତଃ ସ ଲମ୍ବସ୍ୟ ଗିରେଃ ସମୃଦ୍ଧେ
ବିଚିତ୍ରକୂଟେ ନିପପାତ କୂଟେ ।
ସକେତକୋଦ୍ଦାଲକନାରିକେଳେ
ମହାଦ୍ରିକୂଟପ୍ରତିମୋ ମହାତ୍ମା । ୨୦୦ ।

ତତସ୍ତୁ ସଂପ୍ରାପ୍ୟ ସମୁଦ୍ରତୀରମ୍
ସମୀକ୍ଷ୍ୟ ଲଙ୍କାଂ ଗିରିବର୍ଯମୂର୍ଦ୍ଧ୍ନି ।
କପିସ୍ତୁ ତସ୍ମିନ୍ନିପପାତ ପର୍ବତେ
ବିଧୂୟ ରୂପଂ ବ୍ୟଥୟନ୍ ମୃଗଦ୍ୱିଜାନ୍ । ୨୦୧ ।

---

ପର୍ବତପ୍ରମାଣ ନିଜ ଶରୀରକୁ ସଂକୁଚିତ କରି କାମାଦି ମୋହ ଶୂନ୍ୟ ଆତ୍ମବାନ୍ ଯୋଗୀ ପରି ପୁନର୍ବାର ସ୍ୱୀୟ ପ୍ରକୃତି ଅବଲମ୍ବନ କଲେ । ୧୯୭ । ବାମନ ଯେପରି ତିନୋଟି ପଦବିକ୍ଷେପଦ୍ୱାରା ବଳିର ଐଶ୍ୱର୍ଯ୍ୟ ହରଣ କରି ପୁନର୍ବାର ପ୍ରକୃତିସ୍ଥ ହୋଇଥିଲେ, ହନୁମାନ୍ ସେହିପରି ନିଜ ରୂପକୁ ଅତିଶୟ ସଂକୁଚିତ କରି ; ପୂର୍ବରୂପ ଧାରଣକଲେ ।୧୯୮। ଏହିପରି ସେ ବିବିଧ ମନୋହର ରୂପଧାରଣପୂର୍ବକ ସମୁଦ୍ରର ଅପର ପାରରେ ପହଞ୍ଚି, ଏହା ପରେ କ'ଣ କରିବାକୁ ହେବ ତାହା ଆଲୋଚନା କରି ଶତ୍ରୁମାନେ ନ ଜାଣିପାରିବା ଭଳି ରୂପ ଧାରଣକଲେ । ୧୯୯ । ଅନନ୍ତର ସେହି ମହାମେଘଖଣ୍ଡସଦୃଶ ମହାତ୍ମା ହନୁମାନ୍ 'ଲମ୍ବ' ନାମକ ପର୍ବତର ଶିଖରଦେଶରେ ଓହ୍ଲାଇଲେ । ଏହି ଶିଖରଦେଶ ବିଚିତ୍ର ଶୃଙ୍ଗସମୂହଦ୍ୱାରା ଅଲଂକୃତ, ଅତିଶୟ ସମୃଦ୍ଧିସମ୍ପନ୍ନ ଏବଂ କେତକୀ, ଉଦ୍ଦାଳକ ଓ ନାରିକେଳ ବୃକ୍ଷରେ ପରିପୂର୍ଣ୍ଣ ହୋଇଥିଲା । ୨୦୦ । ଅନନ୍ତର ସେ ସମୁଦ୍ରତୀରରେ ପହଞ୍ଚି ପର୍ବତର ଶିଖରଦେଶରେ ଲଙ୍କାନଗରୀ ଦର୍ଶନକରି ଏବଂ ନିଜର ରୂପ ସଂକୋଚନପୂର୍ବକ ମୃଗ ଏବଂ ପକ୍ଷୀମାନଙ୍କୁ ଭୟଭୀତ କରାଇ ସେହି ପର୍ବତ ଉପରେ ଯାଇ ପଡ଼ିଲେ । ୨୦୧ । ସେ

ସ ସାଗରଂ ଦାନବପନ୍ନଗାୟୁତମ୍
ବଲେନ ବକ୍ରମ୍ୟ ମହୋର୍ମିମାଲିନମ୍ ।
ନିପତ୍ୟ ତୀରେ ଚ ମହୋଦଧେସ୍ତଦା
ଦଦର୍ଶ ଲଙ୍କାମମରାବତୀମିବ । ୨୦୨ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ସୁନ୍ଦରକାଣ୍ଡେ ସାଗରଲଙ୍ଘନମ୍
ନାମ ପ୍ରଥମଃ ସର୍ଗଃ ।

---

ସେତେବେଳେ ଦାନବ ଓ ପନ୍ନଗମାନଙ୍କ ଦ୍ୱାରା ପରିବ୍ୟାପ୍ତ, ବିଶାଳ ତରଙ୍ଗମାଳାଯୁକ୍ତ ମହାସାଗରକୁ ନିଜର ବଳଦ୍ୱାରା ଲଙ୍ଘନ କରି ତାହାର ତୀରରେ ପଦାର୍ପଣପୂର୍ବକ ଅମରାବତୀସଦୃଶ ଲଙ୍କାନଗରୀକୁ ଦେଖିଲେ । ୨୦୨ ।

# ଦ୍ୱିତୀୟଃ ସର୍ଗଃ

## ନିଶାଗମପ୍ରତୀକ୍ଷା

ସ ସାଗରମନାଧୃଷ୍ୟମତିକ୍ରମ୍ୟ ମହାବଲଃ ।
ତ୍ରିକୂଟସ୍ୟ ତଟେ ଲଙ୍କାଂ ସ୍ଥିତଃ ସ୍ୱସ୍ଥୋ ଦଦର୍ଶ ହ । ୧ ।
ତତଃ ପାଦପମୁକ୍ତେନ ପୁଷ୍ପବର୍ଷେଣ ବୀର୍ଯ୍ୟବାନ୍ ।
ଅଭିବୃଷ୍ଟସ୍ତତସ୍ତତ୍ର ବଭୌ ପୁଷ୍ପମୟୋ ହରିଃ । ୨ ।
ଯୋଜନାନାଂ ଶତଂ ଶ୍ରୀମାଂସ୍ତୀର୍ତ୍ତ୍ୱାପ୍ୟୁତ୍ତମବିକ୍ରମଃ ।
ଅନିଃଶ୍ୱସନ୍ କପିସ୍ତତ୍ର ନ ଗ୍ଲାନିମଧିଗଚ୍ଛତି । ୩ ।
ଶତାନ୍ୟହଂ ଯୋଜନାନାଂ କ୍ରମେୟଂ ସୁବହୂନ୍ୟପି ।
କିଂ ପୁନଃ ସାଗରସ୍ୟାନ୍ତଂ ସଂଖ୍ୟାତଂ ଶତଯୋଜନମ୍ । ୪ ।
ସ ତୁ ବୀର୍ଯ୍ୟବତାଂ ଶ୍ରେଷ୍ଠଃ ପ୍ଲବତାମପି ଚୋତ୍ତମଃ ।
ଜଗାମ ବେଗବାଁଲ୍ଲଙ୍କାଂ ଲଙ୍ଘୟିତ୍ୱା ମହୋଦଧିମ୍ । ୫ ।
ଶାଦ୍ୱଲାନି ଚ ନୀଲାନି ଗନ୍ଧବନ୍ତି ବନାନି ଚ ।
ମଧୁମନ୍ତି ଚ ମଧ୍ୟେନ ଜଗାମ ନଗବନ୍ତି ଚ । ୬ ।

---

## ୨ୟ ସର୍ଗ

( ରାତିହେବା ପାଇଁ ଅପେକ୍ଷା )

ମହାବଳ ହନୁମାନ୍ ଅପାର ସାଗର ଅତିକ୍ରମ କରି ତ୍ରିକୂଟ ପର୍ବତର ପାର୍ଶ୍ୱଦେଶରେ ସୁସ୍ଥଭାବରେ ଠିଆହୋଇ ଲଙ୍କା ଆଡ଼କୁ ନିରୀକ୍ଷଣ କରିବାକୁ ଲାଗିଲେ । ୧ । ବୀର୍ଯ୍ୟବାନ୍ ହନୁମାନ୍ ବୃକ୍ଷସମୂହରୁ ଝଡ଼ୁଥିବା ପୁଷ୍ପବୃଷ୍ଟିରେ ଅବୃତ ହୋଇ ପୁଷ୍ପମୟ ବାନରପରି ଶୋଭାପାଇଲେ । ୨ । ଉତ୍କୃଷ୍ଟ ବଳଶାଳୀ ଶ୍ରୀମାନ୍ ହନୁମାନ୍ ଶତଯୋଜନ ପଥ ଅତିକ୍ରମକରି ମଧ୍ୟ ଟିକିଏ ହେଲେ ଉର୍ଦ୍ଧ ନିଃଶ୍ୱାସ ତ୍ୟାଗ କଲେ ନାହିଁ ବା ଲେଶମାତ୍ର କ୍ଳାନ୍ତି ଅନୁଭବ କଲେ ନାହିଁ ।୩। ସେ ଭାବିଲେ, 'ମୁଁ ବହୁଶତ ଯୋଜନ ପଥ ଅତିକ୍ରମ କରି ପାରିବି; ଏ ସମୁଦ୍ରର ଦୂରତ୍ୱ ତ କେବଳ ଶତ-ଯୋଜନ ମାତ୍ର ।୪।' ସେହି ଶ୍ରେଷ୍ଠ ବୀର୍ଯ୍ୟବାନ୍, ବାନରମାନଙ୍କର ଅଗ୍ରଣୀ, ବେଗବାନ୍ ହନୁମାନ୍ ମହାସାଗରକୁ ପାରହୋଇ ଲଙ୍କାକୁ ଯାଇଥିଲେ ।୫। ବହୁ ଶ୍ୟାମଳବର୍ଣ୍ଣ

ଶୈଳାଂଶ୍ଚ ତରୁସଂଚ୍ଛନ୍ନାନ୍‌ବନରାଜୀଶ୍ଚ ପୁଷ୍ପିତାଃ ।
ଅଭିଚକ୍ରାମ ତେଜସ୍ୱୀ ହନୂମାନ୍‌ ପ୍ଲବଗର୍ଷଭଃ । ୭ ।
ସ ତସ୍ମିନ୍ନଚଲେ ତିଷ୍ଠନ୍‌ ବନାନ୍ୟୁପବନାନି ଚ ।
ସ ନଗାଗ୍ରେ ସ୍ଥିତାଂ ଲଙ୍କାଂ ଦଦର୍ଶ ପବନାତ୍ମଜଃ । ୮ ।
ସରଳାନ୍‌ କର୍ଣିକାରାଂଶ୍ଚ ଖର୍ଜୁରାଂଶ୍ଚ ସୁପୁଷ୍ପିତାନ୍‌ ।
ପ୍ରିୟାଳାନ୍ମୁଚୁଳିନ୍ଦାଂଶ୍ଚ କୁଟଜାନ୍‌କେତକାନପି । ୯ ।
ପ୍ରିୟଙ୍ଗୂନ୍‌ ଗନ୍ଧପୂର୍ଣାଂଶ୍ଚ ନୀପାନ୍‌ ସପ୍ତଚ୍ଛଦାଂସ୍ତଥା ।
ଅସନାନ୍‌ କୋବିଦାରାଂଶ୍ଚ କରବୀରାଂଶ୍ଚ ପୁଷ୍ପିତାନ୍‌ । ୧୦ ।
ପୁଷ୍ପଭାରନିବଦ୍ଧାଂଶ୍ଚ ତଥା ମୁକୁଳିତାନପି ।
ପାଦପାନ୍‌ ବିହଗାକୀର୍ଣାନ୍‌ ପବନାଧୂତମସ୍ତକାନ୍‌ । ୧୧ ।
ହଂସକାରଣ୍ଡବାକୀର୍ଣା ବାପୀଃ ପଦ୍ମୋତ୍ପଳାବୃତାଃ ।
ଆକ୍ରୀଡ଼ାନ୍‌ ବିବିଧାନ୍‌ ରମ୍ୟାନ୍‌ ବିବିଧାଂଶ୍ଚ ଜଳାଶୟାନ୍‌ । ୧୨ ।
ସଂତତାନ୍‌ ବିବିଧୈର୍ବୃକ୍ଷୈଃ ସର୍ବର୍ତୁଫଳପୁଷ୍ପିତୈଃ ।
ଉଦ୍ୟାନାନି ଚ ରମ୍ୟାଣି ଦଦର୍ଶ କପିକୁଞ୍ଜରଃ । ୧୩ ।
ସମାସାଦ୍ୟ ଚ ଲକ୍ଷ୍ମୀବାଁଲ୍ଲଙ୍କାଂ ରାବଣପାଳିତାମ୍‌ ।
ପରିଖାଭିଃ ସପଦ୍ମାଭିଃ ସୋତ୍ପଳାଭିରଲଂକୃତାମ୍‌ । ୧୪ ।

---

ଶସ୍ୟକ୍ଷେତ୍ର, ଗନ୍ଧ ଓ ମଧୁବହୁଳ ବୃକ୍ଷଯୁକ୍ତ ବନରାଜି, ବୃକ୍ଷସମାଚ୍ଛନ୍ନ ପର୍ବତସମୂହ ସେହି ପ୍ଲବଗଶ୍ରେଷ୍ଠ ହନୂମାନ୍‌ ଅତିକ୍ରମ କରିଥିଲେ । ୬-୭ । ପବନନନ୍ଦନ ଯେଉଁ 'ଲମ୍ବ' ପର୍ବତରେ ଅବସ୍ଥାନ କରି ପର୍ବତୋପରି ଅବସ୍ଥିତ ଲଙ୍କାନଗରୀ ଏବଂ ବନ ଓ ଉପବନମାନ ଦର୍ଶନ କଲେ । ୮ । ସରଳ,କର୍ଣ୍ଣିକାର, ସୁପୁଷ୍ପିତ ଖର୍ଜୁର, ପ୍ରିୟାଳ, ମୁଚୁକୁନ୍ଦ, କୁଟଜ, କେତକୀ, ଗନ୍ଧପୂର୍ଣ୍ଣ ପ୍ରିୟଙ୍ଗୁ, କଦମ୍ବ, ସପ୍ତଚ୍ଛଦ, ଅସନ, କୋବିଦାର, କୁସୁମିତ କରବୀର ଓ ଅନ୍ୟାନ୍ୟ ପୁଷ୍ପଭାରନତ, କଳିକାପୂର୍ଣ୍ଣ, ପକ୍ଷିସମାକୀର୍ଣ୍ଣ, ପବନଦ୍ୱାରା କମ୍ପିତାଗ୍ର ବୃକ୍ଷସମୂହ, ପଦ୍ମ ଏବଂ ନୀଳୋତ୍ପଳପରିପୂର୍ଣ୍ଣ, ହଂସକାରଣ୍ଡବଦ୍ୱାରା ସମାକୀର୍ଣ୍ଣ ବାପୀସମୂହ, ବିବିଧ ରମଣୀୟ କ୍ରୀଡ଼ାପର୍ବତ ଓ ଜଳାଶୟ ଏବଂ ସମସ୍ତ ଋତୁରେ ଫଳପୁଷ୍ପପୂର୍ଣ୍ଣ ହୋଇଥିବା ନାନାଜାତୀୟ ବୃକ୍ଷରେ ସମାଚ୍ଛନ୍ନ, ମନୋହର ଉଦ୍ୟାନସମୂହ ସେହି କପିଶ୍ରେଷ୍ଠ ଦେଖିଲେ । ୯-୧୩ । ଅନନ୍ତର ଶ୍ରୀମାନ୍‌ ପବନନନ୍ଦନ ରାବଣପାଳିତା ଲଙ୍କା ନିକଟରେ ଉପସ୍ଥିତ ହୋଇ ଦେଖିଲେ ଯେ ତାହା ନୀଳୋତ୍ପଳ ଓ ପଦ୍ମପୂର୍ଣ୍ଣ ପରିଖାମାନଙ୍କ ଦ୍ୱାରା ସୁଶୋଭିତ

ସୀତାପହରଣାର୍ଥେନ ରାବଣେନ ସୁରକ୍ଷିତାମ୍ ।
ସମନ୍ତାଦ୍ୱିଚରଦ୍ଭିଶ୍ଚ ରାକ୍ଷସୈରୁଗ୍ରଧନ୍ୱିଭିଃ । ୧୫ ।
କାଞ୍ଚନେନାବୃତାଂ ରମ୍ୟାଂ ପ୍ରାକାରେଣ ମହାପୁରୀମ୍ ।
ଗୃହୈଶ୍ଚ ଗିରିସଂକାଶୈଃ ଶାରଦାମ୍ବୁଦସଂନିଭୈଃ । ୧୬ ।
ପାଣ୍ଡୁରାଭିଃ ପ୍ରତୋଲୀଭିରୁଚ୍ଚାଭିରଭିସଂବୃତାମ୍ ।
ଅଟ୍ଟାଳକଶତାକୀର୍ଣ୍ଣାଂ ପତାକାଧ୍ୱଜଶୋଭିତାମ୍ । ୧୭ ।
ତୋରଣୈଃ କାଞ୍ଚନୈର୍ଦ୍ଦିବ୍ୟୈର୍ଲତାପଙ୍କ୍ତିବିରାଜିତୈଃ ।
ଦଦର୍ଶ ହନୁମାଁଲ୍ଲଙ୍କାଂ ଦେବୋ ଦେବପୁରୀମିବ । ୧୮ ।
ଗିରିମୂର୍ଦ୍ଧ୍ନି ସ୍ଥିତାଂ ଲଙ୍କାଂ ପାଣ୍ଡୁରୈର୍ଭବନୈଃ ଶୁଭୈଃ ।
ଦଦର୍ଶ ସ କପିଃ ଶ୍ରୀମାନ୍ ପୁରୀମାକାଶଗାମିବ । ୧୯ ।
ପାଳିତାଂ ରାକ୍ଷସେନ୍ଦ୍ରେଣ ନିର୍ମିତାଂ ବିଶ୍ୱକର୍ମଣା ।
ପ୍ଲବମାନାମିବାକାଶେ ଦଦର୍ଶ ହନୁମାନ୍ କପିଃ । ୨୦ ।
ବପ୍ରପ୍ରାକାରଜଘନାଂ ବିପୁଳାମ୍ବୁବନାମ୍ବରାମ୍ ।
ଶତଘ୍ନୀଶୂଳକେଶାନ୍ତାମଟ୍ଟାଳକାବତଂସକାମ୍ । ୨୧ ।

---

ହୋଇଅଛି । ୧୪ । ସୀତାଙ୍କୁ ଅପହରଣ କରିଥିବା ହେତୁ ତାହା ରାବଣକର୍ତ୍ତୃକ ସୁରକ୍ଷିତ ହୋଇଅଛି ଏବଂ ରାକ୍ଷସମାନେ ଧନୁ ଉତ୍ତୋଳନପୂର୍ବକ ତାହାର ଚତୁର୍ଦ୍ଦିଗରେ ବିଚରଣ କରୁଅଛନ୍ତି । ୧୫ । ସ୍ୱର୍ଣ୍ଣମୟ ପ୍ରାଚୀରଦ୍ୱାରା ସେହି ମହାପୁରୀ ଆବୃତ ହୋଇଅଛି । ଶରତ୍ ମେଘସଦୃଶ ପର୍ବତୋପମ ଗୃହସମୂହ, ପାଣ୍ଡୁରବର୍ଣ୍ଣ ଅତ୍ୟୁଚ୍ଚ ପ୍ରତୋଲୀରାଜି, ଧ୍ୱଜ ଓ ପତାକାସମନ୍ୱିତ ଶତ ଶତ ଅଟ୍ଟାଳିକା ଏବଂ ଲତାପଂକ୍ତିସହିତ ସ୍ୱର୍ଣ୍ଣମୟ ଦିବ୍ୟ ତୋରଣମାନଙ୍କ ଦ୍ୱାରା ସେହି ମହାପୁରୀ ଲଙ୍କା ସୁଶୋଭିତ ହୋଇଅଛି । ଦେବ ଦେବପୁରୀକୁ ଦେଖିଲାପରି ହନୁମାନ୍ ଏହି ଲଙ୍କାପୁରୀକୁ ଦେଖିଲେ । ୧୬-୧୮ । ଶ୍ରୀମାନ୍ ହନୁମାନ୍ ପର୍ବତର ଶିଖରଦେଶରେ ପ୍ରତିଷ୍ଠିତ ଶତ ଶତ ପାଣ୍ଡୁରବର୍ଣ୍ଣ ସୁନ୍ଦର ଗୃହମାନଙ୍କରେ ଶୋଭିତ ହୋଇଥିବା ସାକ୍ଷାତ୍ ଦେବପୁରୀସଦୃଶ ଲଙ୍କାନଗରୀ ଦେଖିଲେ । ୧୯ । ଏହି ନଗରୀ ରାକ୍ଷସରାଜ ରାବଣ କର୍ତ୍ତୃକ ପାଳିତ ଏବଂ ବିଶ୍ୱକର୍ମାଙ୍କ ଦ୍ୱାରା ନିର୍ମିତ ହୋଇ ଆକାଶରେ ଭାସୁଥିଲାପରି ହନୁମାନ୍ ଦେଖିଲେ । ୨୦ । ମୃତ୍ତିକା ଏବଂ ପ୍ରସ୍ତର ପ୍ରାଚୀରସମୂହ ଏହାର ଜଘନ, ବହୁଜଳପୂର୍ଣ୍ଣ ସାଗର ଏବଂ ବନରାଜି ଏହାର ବସ୍ତ୍ର, ଶତଘ୍ନୀ ଏବଂ ଶୂଳସମୂହ ଏହାର କେଶାଗ୍ର ଏବଂ ଅଟ୍ଟାଳିକାରାଜି ଏହାର କର୍ଣ୍ଣଭୂଷଣ । ବିଶ୍ୱକର୍ମା ମନେ ମନେ ଚିନ୍ତର

ମନସେବ କୃତାଂ ଲଙ୍କାଂ ନିର୍ମିତାଂ ବିଶ୍ୱକର୍ମଣା ।
ଦ୍ୱାରମୁତ୍ତରମାସାଦ୍ୟ ଚିନ୍ତୟାମାସ ବାନରଃ । ୨୨ ।
କୈଳାସନିଲୟପ୍ରଖ୍ୟମାଲିଖନ୍ତମିବାମ୍ବରମ୍ ।
ଧ୍ରିୟମାଣ ମିବାକାଶମୁଚ୍ଛ୍ରିତୈର୍ଭବନୋତ୍ତମୈଃ । ୨୩ ।
ସଂପୂର୍ଣାଂ ରାକ୍ଷସୈର୍ଘୋରୈର୍ଗୁହାମାଶୀବିଷୈରିବ ।
ତସ୍ୟାଶ୍ଚ ମହତୀଂ ଗୁପ୍ତିଂ ସାଗରଂ ଚ ନିରୀକ୍ଷ୍ୟ ସଃ ।
ରାବଣଂ ଚ ରିପୁଂ ଘୋରଂ ଚିନ୍ତୟାମାସ ବାନରଃ । ୨୪ ।
ଆଗତ୍ୟାପୀହ ହରୟୋ ଭବିଷ୍ୟନ୍ତି ନିରର୍ଥକାଃ ।
ନ ହି ଯୁଦ୍ଧେନ ବୈ ଲଙ୍କା ଶକ୍ୟା ଜେତୁଂ ସୁରୈରପି । ୨୫ ।
ଇମାଂ ତୁ ବିଷମାଂ ଲଙ୍କାଂ ଦୁର୍ଗାଂ ରାବଣପାଳିତାମ୍ ।
ପ୍ରାପ୍ୟାପି ସୁମହାବାହୁଃ କିଂ କରିଷ୍ୟତି ରାଘବଃ । ୨୬ ।
ଅବକାଶୋ ନ ସାମ୍ନସ୍ତୁ ରାକ୍ଷସେଷ୍ୱଭିଗମ୍ୟତେ ।
ନ ଦାନସ୍ୟ ନ ଭେଦସ୍ୟ ନୈବ ଯୁଦ୍ଧସ୍ୟ ଦୃଶ୍ୟତେ । ୨୭ ।
ଚତୁର୍ଣାମେବ ହି ଗତିର୍ବାନରାଣାଂ ତରସ୍ୱିନାମ୍ ।
ବାଳିପୁତ୍ରସ୍ୟ ନୀଳସ୍ୟ ମମ ରାଜ୍ଞଶ୍ଚ ଧୀମତଃ । ୨୮ ।

---

ଏହି ଲଙ୍କାନଗରୀକୁ ନିର୍ମାଣ କରିଥିଲେ । ବାନର ହନୁମାନ୍ ଏହାର ଉତ୍ତରଦ୍ୱାରରେ ଉପସ୍ଥିତ ହୋଇ ଚିନ୍ତାକରିବାକୁ ଲାଗିଲେ । ୨୧-୨୨। ସେହି ଉତ୍ତରଦ୍ୱାର କୈଳାସ-ନିଳୟସଦୃଶ ଅତି ସମୁନ୍ନତ ଓ ଉତ୍କୃଷ୍ଟ ଗୃହମାନଙ୍କ ଦ୍ୱାରା ଆକାଶମଣ୍ଡଳକୁ ସତେ ଯେପରି ଟେକି ଧରିଅଛି । ସେହି ବାନର ସେଠାରେ ଉପସ୍ଥିତ ହୋଇ ବିଷାକ୍ତ ସର୍ପମାନଙ୍କ କର୍ତ୍ତୃକ ସୁରକ୍ଷିତ ପର୍ବତଗୁହାପରି, ଭୟଙ୍କର ରାକ୍ଷସମାନଙ୍କ ଦ୍ୱାରା ସୁରକ୍ଷିତ ଲଙ୍କାନଗରୀ ଏବଂ ତାହାର ପ୍ରଧାନରକ୍ଷକରୂପେ ରହିଥିବା ସମୁଦ୍ରକୁ ଦେଖି, ରାବଣ କପରି ଭୟଙ୍କର ଶତ୍ରୁ ତାହା ଚିନ୍ତାକରିବାକୁ ଲାଗିଲେ ।୨୩-୨୪। ବାନରମାନେ ଏଠାକୁ ଆସିଲେ ମଧ୍ୟ କିଛି କରିପାରିବେ ନାହିଁ; କାରଣ ଦେବତାମାନେ ମଧ୍ୟ ଯୁଦ୍ଧରେ ଲଙ୍କା ଜୟ କରିବାକୁ ସମର୍ଥ ହେବେ ନାହିଁ । ୨୫ । ମହାବାହୁ ରାମ ମଧ୍ୟ ଏହି ବୈଷମ୍ୟସମନ୍ୱିତ, ରାବଣରକ୍ଷିତ ଦୁର୍ଗମ ଲଙ୍କାରେ ଆସି ପହଞ୍ଚି କଣ କରିବେ ? ।୨୬। ଏହି ରାକ୍ଷସମାନଙ୍କ ସମ୍ପର୍କରେ ସାମ, ଦାନ, ଭେଦ ବା ଯୁଦ୍ଧଦ୍ୱାରା କୌଣସି ସୁବିଧା ହୋଇପାରିବ ବୋଲି ମୋତେ ଦେଖାଯାଉ ନାହିଁ ।୨୭। ବାଳିପୁତ୍ର, ନୀଳ, ମୁଁ ଏବଂ ଧୀମାନ୍ ରାଜା ସୁଗ୍ରୀବ କେବଳ ଏହି ଚାରି ବେଗବାନ୍ ବାନରଙ୍କର ଏଠାକୁ ଆସିପାରିବାର ସମ୍ଭାବନା ଦେଖାଯାଉଛି ।୨୮। ଯାହାହେଉ, ମୁଁ

ଯାବଜ୍ଜାନାମି ବୈଦେହୀଂ ଯଦି ଜୀବତି ବା ନ ବା ।
ତତ୍ରୈବ ଚିନ୍ତୟିଷ୍ୟାମି ଦୃଷ୍ଟ୍ୱା ତାଂ ଜନକାତ୍ମଜାମ୍ । ୨୯ ।
ତତଃ ସ ଚିନ୍ତୟାମାସ ମୁହୂର୍ତ୍ତଂ କପିକୁଞ୍ଜରଃ ।
ଗିରେଃ ଶୃଙ୍ଗେ ସ୍ଥିତସ୍ତସ୍ମିନ୍ ରାମସ୍ୟାଭ୍ୟୁଦୟଂ ତତଃ । ୩୦ ।
ଅନେନ ରୂପେଣ ମୟା ନ ଶକ୍ୟା ରକ୍ଷସାଂ ପୁରୀ ।
ପ୍ରବେଷ୍ଟୁଂ ରାକ୍ଷସୈର୍ଗୁପ୍ତା କ୍ରୂରୈର୍ବଲସମନ୍ୱିତୈଃ । ୩୧ ।
ମହୌଜସୋ ମହାବୀର୍ଯ୍ୟା ବଲବନ୍ତଶ୍ଚ ରାକ୍ଷସାଃ ।
ବଞ୍ଚନୀୟା ମୟା ସର୍ବେ ଜାନକୀଂ ପରିମାର୍ଗତା । ୩୨ ।
ଲକ୍ଷ୍ୟାଲକ୍ଷ୍ୟେଣ ରୂପେଣ ରାତ୍ରୌ ଲଙ୍କାପୁରୀ ମୟା ।
ପ୍ରାପ୍ତକାଲଂ ପ୍ରବେଷ୍ଟୁଂ ମେ କୃତ୍ୟଂ ସାଧୟିତୁଂ ମହତ୍ । ୩୩
ତାଂ ପୁରୀଂ ତାଦୃଶୀଂ ଦୃଷ୍ଟ୍ୱା ଦୁରାଧର୍ଷାଂ ସୁରାସୁରୈଃ ।
ହନୂମାଂଶ୍ଚିନ୍ତୟାମାସ ବିନିଃଶ୍ୱସ୍ୟ ମୁହୁର୍ମୁହୁଃ । ୩୪ ।
କେନୋପାୟେନ ପଶ୍ୟେୟଂ ମୈଥିଲୀଂ ଜନକାତ୍ମଜାମ୍ ।
ଅଦୃଷ୍ଟୋ ରାକ୍ଷସେନ୍ଦ୍ରେଣ ରାବଣେନ ଦୁରାତ୍ମନା । ୩୫ ।

---

ଏବେ ଯାଇ ଦେଖେଁ ବୈଦେହୀ ଜୀବିତା ଅଛନ୍ତି କି ନାହିଁ । ମୁଁ ଜାନକୀଙ୍କୁ ଆଗ ଦେଖି ସାରିଲାଉତ୍ତାରୁ ସେହିଠାରେ ଏହିସବୁ ବିଷୟ ଚିନ୍ତାକରିବି । ୨୯ । ଅନନ୍ତର ସେହି ବାନରଶ୍ରେଷ୍ଠ ହନୁମାନ୍ ସେହି ପର୍ବତଶୃଙ୍ଗରେ ଅବସ୍ଥାନ କରି ମୁହୂର୍ତ୍ତିକାଳ ରାମଙ୍କର ଇଷ୍ଟସାଧନ ବିଷୟ ମନେ ମନେ ଚିନ୍ତାକଲେ । ୩୦ । ବଳସମ୍ପନ୍ନ କ୍ରୂରସ୍ୱଭାବ ରାକ୍ଷସମାନଙ୍କଦ୍ୱାରା ରକ୍ଷିତ ଏହି ନଗରୀମଧ୍ୟରେ ମୁଁ ଏ ବେଶରେ ପ୍ରବେଶ କରିପାରିବି ନାହିଁ । ୩୧ । ଜାନକୀଙ୍କୁ ଅନ୍ୱେଷଣ କରିବାରେ ମୋତେ ଏହି ମହାତେଜସ୍ୱୀ, ମହାବୀର୍ଯ୍ୟସମ୍ପନ୍ନ, ମହାବଳବାନ୍ ରାକ୍ଷସମାନଙ୍କୁ ବଞ୍ଚନା କରିବାକୁ ପଡ଼ିବ । ୩୨ । ଅତଏବ ଅଲକ୍ଷ୍ୟରୂପରେ ମୁଁ ରାତିରେ ଲଙ୍କାପୁରୀରେ ପ୍ରବେଶ କରିବି । ଏହି ମହତ୍ କାର୍ଯ୍ୟ ସାଧନ କରିବାପାଇଁ ତାହାହିଁ ଉପଯୁକ୍ତ ସମୟ । ୩୩ । ହନୁମାନ୍ ଦେବ ଏବଂ ଅସୁରଙ୍କର ଅଜେୟ ସେହି ଲଙ୍କାପୁରୀକୁ ଦେଖି, ବାରମ୍ବାର ଦୀର୍ଘନିଃଶ୍ୱାସ ପରିତ୍ୟାଗ କରି ଏହିପରି ଚିନ୍ତା କରିବାକୁ ଲାଗିଲେ । ୩୪ । ମୁଁ କି ଉପାୟରେ ଦୁରାତ୍ମା ରାକ୍ଷସରାଜ ରାବଣକର୍ତ୍ତୃକ ଦୃଷ୍ଟ ନ ହୋଇ ଜନକନନ୍ଦିନୀ ମୈଥିଳୀଙ୍କୁ ଦେଖିପାରିବି ! ।୩୫। ତ୍ରିଭୁବନବିଦିତ ରାମଙ୍କର କାର୍ଯ୍ୟ କ'ଣ କଲେ ପଣ୍ଡ ହୋଇ-

ନ ବିନଶ୍ୟେତ୍‌କଥଂ କାର୍ଯ୍ୟଂ ରାମସ୍ୟ ବିଦିତାତ୍ମନଃ ।
ଏକାମେକସ୍ତୁ ପଶ୍ୟେୟଂ ରହିତେ ଜନକାତ୍ମଜାମ୍ । ୩୬ ।
ଭୂତାଶ୍ଚାର୍ଥା ବିନଶ୍ୟନ୍ତି ଦେଶକାଳବିରୋଧିତାଃ ।
ବିକ୍ଳବଂ ଦୂତମାସାଦ୍ୟ ତମଃ ସୂର୍ଯ୍ୟୋଦୟେ ଯଥା । ୩୭ ।
ଅର୍ଥାନର୍ଥାନ୍ତରେ ବୁଦ୍ଧିର୍ନିଶ୍ଚିତାପି ନ ଶୋଭତେ ।
ଘାତୟନ୍ତି ହି କାର୍ଯ୍ୟାଣି ଦୂତାଃ ପଣ୍ଡିତମାନିନଃ । ୩୮ ।
ନ ବିନଶ୍ୟେତ୍‌କଥଂ କାର୍ଯ୍ୟଂ ବୈକଲ୍ୟଂ ନ କଥଂ ଭବେତ୍ ।
ଲଙ୍ଘନଂ ଚ ସମୁଦ୍ରସ୍ୟ କଥଂ ନୁ ନ ଭବେଦ୍‌ବୃଥା । ୩୯ ।
ମୟି ଦୃଷ୍ଟେ ତୁ ରକ୍ଷୋଭିର୍ ରାମସ୍ୟ ବିଦିତାତ୍ମନଃ ।
ଭବେଦ୍‌ବ୍ୟର୍ଥମିଦଂ କାର୍ଯ୍ୟଂ ରାବଣାନର୍ଥମିଚ୍ଛତଃ । ୪୦ ।
ନ ହି ଶକ୍ୟଂ କ୍ୱଚିତ୍‌ସ୍ଥାତୁମବିଜ୍ଞାତେନ ରାକ୍ଷସୈଃ ।
ଅପି ରାକ୍ଷସରୂପେଣ କିମୁତାନ୍ୟେନ କେନଚିତ୍ । ୪୧ ।
ବାୟୁରପ୍ୟତ୍ର ନାଜ୍ଞାତଶ୍ଚରେଦିତି ମତିର୍ମମ ।
ନ ହ୍ୟସ୍ତ୍ୟବିଦିତଂ କିଂଚିଦ୍‌ରକ୍ଷସାଂ ଭୀମକର୍ମଣାମ୍ । ୪୨ ।

---

ଯିବ ନାହିଁ ଏବଂ ମୁଁ ଏକାକୀ ନିର୍ଜନ ସ୍ଥାନରେ ଜନକନନ୍ଦିନୀଙ୍କୁ ଏକାନ୍ତରେ ଦେଖି-ପାରିବି । ୩୬ । ସୂର୍ଯ୍ୟୋଦୟରେ ଅନ୍ଧକାର ଯେପରି ନଷ୍ଟ ହୋଇଯାଏ, ସେହିପରି ବିବେକହୀନ ଦୂତ ଦେଶକାଳବିରୁଦ୍ଧକାର୍ଯ୍ୟ କରିବାଦ୍ୱାରା ସିଦ୍ଧପ୍ରାୟ କାର୍ଯ୍ୟକୁ ମଧ୍ୟ ନଷ୍ଟକରିଦିଏ ।୩୭। ଇଷ୍ଟ ଏବଂ ଅନିଷ୍ଟ ବିଷୟରେ ନିଶ୍ଚିତ ହୋଇଥିବା ବୁଦ୍ଧିର ମଧ୍ୟ ଦୂତର ଦୋଷରେ ସୁପ୍ରକାଶିତ ହୋଇ ପାରେ ନାହିଁ । ପଣ୍ଡିତାଭିମାନୀ ଦୂତମାନେ ସମସ୍ତ କାର୍ଯ୍ୟ ବିନଷ୍ଟ କରିଦେଇଥାନ୍ତି । ୩୮ । ଅତଏବ କି ଉପାୟ ଅବଲମ୍ବନ କଲେ ଅବିମୃଶ୍ୟକାରିତା ହେବ ନାହିଁ, କାର୍ଯ୍ୟ ନଷ୍ଟ ହେବ ନାହିଁ ଏବଂ ମୁଁ ଯେ ସମୁଦ୍ର ଲଙ୍ଘନକରି ଆସିଛି ତାହା ବ୍ୟର୍ଥ ହେବ ନାହିଁ ।୩୯। ବିଦିତାତ୍ମା ରାମ ରାବଣର ଅନିଷ୍ଟ ଇଚ୍ଛାକରୁଛନ୍ତି; ସୁତରାଂ ରାକ୍ଷସମାନେ ଯଦି ମୋତେ ଦେଖିପାରନ୍ତି ତାହାହେଲେ ତାହାଙ୍କର ଏହି କାର୍ଯ୍ୟ ବ୍ୟର୍ଥ ହୋଇଯିବ । ୪୦ । ମୁଁ ରାକ୍ଷସରୂପ ଧଇଲେ ମଧ୍ୟ ରାକ୍ଷସମାନେ ନ ଜାଣି ଏଠାରେ ରହିପାରିବି ନାହିଁ । ଆଉ ଅନ୍ୟ ରୂପ ଧଇଲେ ବା କଥା କଅଣ ଅଛି । ୪୧ । ମୋର ମନେହୁଏ, ପବନ ମଧ୍ୟ ଏଠାରେ ଏମାନଙ୍କ ଅଜ୍ଞାତରେ ବିଚରଣ କରିପାରିବେ ନାହିଁ । ଫଳତଃ ଏ ଭୀମକର୍ମା ରାକ୍ଷସମାନଙ୍କର ଏଠାରେ କିଛିମାତ୍ର ଅବିଦିତ ରହିବ ନାହିଁ । ୪୨ । ଯଦି ମୁଁ

ଇହାହଂ ଯଦି ତିଷ୍ଠାମି ସ୍ୱେନ ରୂପେଣ ସଂବୃତଃ ।
ବିନାଶମୁପଯାସ୍ୟାମି ଭର୍ତ୍ତୁରର୍ଥଶ୍ଚ ହାସ୍ୟତେ । ୪୩ ।
ତଦହଂ ସ୍ୱେନ ରୂପେଣ ରଜନ୍ୟାଂ ହ୍ରସ୍ୱତାଂ ଗତଃ ।
ଲଙ୍କାମଭିପତିଷ୍ୟାମି ରାଘବସ୍ୟାର୍ଥସିଦ୍ଧୟେ । ୪୪ ।
ରାବଣସ୍ୟ ପୁରୀଂ ରାତ୍ରୌ ପ୍ରବିଶ୍ୟ ସୁଦୁରାସଦାମ୍ ।
ପ୍ରବିଶ୍ୟ ଭବନଂ ସର୍ବଂ ଦ୍ରକ୍ଷ୍ୟାମି ଜନକାତ୍ମଜାମ୍ ।୪୫ ।
ଇତି ନିଶ୍ଚିତ୍ୟ ହନୁମାନ୍ ସୂର୍ଯ୍ୟସ୍ୟାସ୍ତମୟଂ କପିଃ ।
ଆଚକାଙ୍କ୍ଷେ ତଦା ବୀରୋ ବୈଦେହ୍ୟା ଦର୍ଶନୋତ୍ସୁକଃ ।୪୬।
ସୂର୍ଯ୍ୟେ ଚାସ୍ତଂ ଗତେ ରାତ୍ରୌ ଦେହଂ ସଂକ୍ଷିପ୍ୟ ମାରୁତିଃ ।
ପୃଷଦଂଶକମାତ୍ରୋଽଥ ବଭୂବାଦ୍ଭୁତଦର୍ଶନଃ । ୪୭ ।
ପ୍ରଦୋଷକାଲେ ହନୁମାଂସ୍ତୂର୍ଣ୍ଣମୁତ୍ପୃତ୍ୟ ବୀର୍ଯ୍ୟବାନ୍ ।
ପ୍ରବିବେଶ ପୁରୀଂ ରମ୍ୟାଂ ପ୍ରବିଭକ୍ତମହାପଥାମ୍ । ୪୮ ।
ପ୍ରାସାଦମାଲାବିତତାଂ ସ୍ତମ୍ଭୈଃ କାଞ୍ଚନସଂନିଭୈଃ ।
ଶାତକୁମ୍ଭନିଭୈର୍ଜାଲୈର୍ଗନ୍ଧର୍ବନଗରୋପମାମ୍ । ୪୯ ।

---

ଏଠାରେ ନିଜରୂପ ଧରି ରହେଁ, ତେବେ ନିଶ୍ଚୟ ବିନଷ୍ଟ ହେବି ଏବଂ ପ୍ରଭୁଙ୍କର କାର୍ଯ୍ୟ ମଧ୍ୟ ନଷ୍ଟ ହେବ; ସୁତରାଂ ମୁଁ ସ୍ୱୀୟ ଶରୀରକୁ ସଙ୍କୁଚିତ କରି, ରାମଙ୍କର ଅର୍ଥସିଦ୍ଧି ନିମନ୍ତେ ରାତିରେ ଲଙ୍କାରେ ପ୍ରବେଶ କରିବି । ୪୩-୪୪ । ମୁଁ ରାତିରେ ଏହି ଅତି ଦୁର୍ଗମ ରାବଣପୁରୀରେ ପ୍ରବେଶ କରି ପ୍ରତି ଗୃହକୁ ଯାଇ ଜନକନନ୍ଦିନୀଙ୍କୁ ଖୋଜିବି । ୪୫ । ଏହି ପ୍ରକାର ଚିନ୍ତାକରି ବାନର ହନୁମାନ୍ ସୀତାଙ୍କୁ ଦେଖିବାପାଇଁ ଉତ୍ସୁକ ହୋଇ ସୂର୍ଯ୍ୟଙ୍କର ଅସ୍ତ ସମୟକୁ ପ୍ରତୀକ୍ଷା କରି ରହିଲେ । ୪୬ । ଅନନ୍ତର ସୂର୍ଯ୍ୟ ଅସ୍ତ ହୋଇ ରାତିହେବା ଉତ୍ତାରୁ ପବନନନ୍ଦନ ସ୍ୱୀୟ ଶରୀରକୁ ସଙ୍କୁଚିତ କରି ତାଆଁଶମାଛି କ୍ଷୁଦ୍ରକାୟ ହୋଇ ଦେଖିବାକୁ ଅଦ୍ଭୁତରୂପ ହେଲେ । ୪୭ । ସନ୍ଧ୍ୟାସମୟରେ ବୀର୍ଯ୍ୟବାନ୍ ହନୁମାନ୍ ତତ୍କ୍ଷଣାତ୍ ଡେଇଁପଡ଼ି ସୁବିଭକ୍ତ ମହାପଥମାନଙ୍କ ଦ୍ୱାରା ସୁସଜ୍ଜିତ ଲଙ୍କାପୁରୀରେ ପ୍ରବେଶ କଲେ । ୪୮ । ବହୁ ବିସ୍ତୃତ ପ୍ରାସାଦଶ୍ରେଣୀ, ସ୍ୱର୍ଣ୍ଣନିର୍ମିତ ସ୍ତମ୍ଭ ଏବଂ ସ୍ୱର୍ଣ୍ଣମୟ ଜାଲମାନଙ୍କ ଦ୍ୱାରା ଗନ୍ଧର୍ବନଗରପରି ଲଙ୍କା ସୁନ୍ଦର ଦେଖାଯାଉଥିଲା ।୪୯। ରାକ୍ଷସମାନଙ୍କର ଗୃହଗୁଡ଼ିକ

ସପ୍ତଭୌମାଷ୍ଟଭୌମୈଶ୍ଚ ସ ଦଦର୍ଶ ମହାପୁରୀମ୍ ।
ସ୍ଥଲୈଃ ସ୍ଫଟିକସଂକୀର୍ଣୈଃ କାର୍ତ୍ତସ୍ୱରବିଭୂଷିତୈଃ ।
ତୈସ୍ତୈଃ ଶୁଶୁଭିରେ ତାନି ଭବନାନ୍ୟତ୍ର ରକ୍ଷସାମ୍ । ୫୦ ।
କାଞ୍ଚନାନି ବିଚିତ୍ରାଣି ତୋରଣାନି ଚ ରକ୍ଷସାମ୍ ।
ଲଙ୍କାମୁଦ୍ଦ୍ୟୋତୟାମାସୁଃ ସର୍ବତଃ ସମଲଂକୃତାମ୍ । ୫୧ ।
ଅଚିନ୍ତ୍ୟାମଦ୍ଭୁତାକାରାଂ ଦୃଷ୍ଟ୍ୱା ଲଙ୍କାଂ ମହାକପିଃ ।
ଆସୀଦ୍‌ବିଷଣ୍ଣୋ ହୃଷ୍ଟଶ୍ଚ ବୈଦେହ୍ୟା ଦର୍ଶନୋତ୍ସୁକଃ । ୫୨ ।

ସ ପାଣ୍ଡୁରୋଦ୍ଧବିମାନମାଳିନୀମ୍
ମହାର୍ହଜାମ୍ବୂନଦଜାଲତୋରଣାମ୍ ।
ଯଶସ୍ୱିନୀଂ ରାବଣବାହୁପାଳିତାମ୍
କ୍ଷପାଚରୈର୍ଭୀମବଲୈଃ ସୁପାଳିତାମ୍ । ୫୩ ।

ଚନ୍ଦ୍ରୋଽପି ସାଚିବ୍ୟମିବାସ୍ୟ କୁର୍ବଂ-
ସ୍ତାରାଗଣୈର୍ମଧ୍ୟଗତୋ ବିରାଜନ୍ ।
ଜ୍ୟୋତ୍ସ୍ନାବିତାନେନ ବିତତ୍ୟ ଲୋକା-
ନୁତ୍ତିଷ୍ଠତେ ନୈକସହସ୍ରରଶ୍ମିଃ । ୫୪ ।

---

ସ୍ଫଟିକ ଏବଂ ସୁବର୍ଣ୍ଣବିଭୂଷିତ ସପ୍ତତଳ ଓ ଅଷ୍ଟତଳ ପ୍ରାସାଦସମୂହଦ୍ୱାରା ଅତିଶୟ ଶୋଭା ଧାରଣ କରିଥିବା ମହାନଗରୀକୁ ହନୁମାନ୍ ଦେଖିଲେ । ୫୦ । ରାକ୍ଷସମାନଙ୍କର ବିଚିତ୍ର ସ୍ୱର୍ଣ୍ଣନିର୍ମିତ ତୋରଣସମୂହ ସର୍ବତୋଭାବରେ ସମଲଂକୃତ ଲଙ୍କାନଗରୀକୁ ଉଦ୍ଭାସିତ କରୁଥିଲା । ୫୧ । ବୈଦେହୀଙ୍କୁ ଦେଖିବା ପାଇଁ ଉତ୍ସୁକ ମହାକପି ହନୁମାନ୍ ଏତାଦୃଶ ଅଚିନ୍ତ୍ୟ ଏବଂ ଅଦ୍ଭୁତାକାର ଲଙ୍କାନଗରୀ ଦର୍ଶନକରି ଯୁଗପତ୍ ବିଷଣ୍ଣ ଏବଂ ହର୍ଷାନ୍ୱିତ ହୋଇପଡ଼ିଲେ । ୫୨ । ସେ ଦେଖିଲେ, ରାବଣପାଳିତା ଯଶସ୍ୱିନୀ ଲଙ୍କାନଗରୀ ପରସ୍ପର ଶ୍ରେଣୀବଦ୍ଧ ବିମାନସମନ୍ୱିତ ମହାମୂଲ୍ୟ ସ୍ୱର୍ଣ୍ଣମୟ ଜାଲ ଓ ତୋରଣମାନଙ୍କ ଦ୍ୱାରା ଅଲଂକୃତ ଏବଂ ଭୀମବଳ ରାକ୍ଷସମାନଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ରହିଅଛି । ୫୩ । ସେତେବେଳେ ଚନ୍ଦ୍ର ବହୁସହସ୍ର ରଶ୍ମି ବିକିରଣକରି ଏବଂ ଜ୍ୟୋତ୍ସ୍ନାରୂପ ଚନ୍ଦ୍ରାତପଦ୍ୱାରା ସମୁଦାୟ ଲୋକକୁ ଆଚ୍ଛାଦିତ କରି, ଆକାଶମଧ୍ୟଗତ ତାରାମାନଙ୍କ ମଧ୍ୟରେ ବିରାଜମାନ ହୋଇ ତାହାଙ୍କର ସାହାଯ୍ୟ କରିବା ନିମନ୍ତେ ଯେପରିକି ଉଦିତ

ଶଙ୍ଖପ୍ରଭଂ କ୍ଷୀରମୃଣାଳବର୍ଣ-
ମୁଦ୍‌ଗଚ୍ଛମାନଂ ବ୍ୟବଭାସମାନମ୍ ।
ଦଦର୍ଶ ଚନ୍ଦ୍ରଂ ସ କପିପ୍ରବୀରଃ
ପୋପ୍ଲୂୟମାନଂ ସରସୀବ ହଂସମ୍ । ୫୫ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ
ସଂହିତାୟାଂ ସୁନ୍ଦରକାଣ୍ଡେ ନିଶାଗମପ୍ରଶଂସା
ନାମ ଦ୍ୱିତୀୟଃ ସର୍ଗଃ

---

ହେଉଛନ୍ତି । ୫୪ । ବାନରଶ୍ରେଷ୍ଠ ହନୂମାନ୍ ଦେଖିଲେ ସରୋବରମଧ୍ୟରେ ହଂସ ଯେପରି ଭାସମାନ ହେଉଥାଏ, ସେହିପରି ଦୁଗ୍ଧ ଏବଂ ମୃଣାଳବର୍ଣ୍ଣ ଶଙ୍ଖସଦୃଶ ପ୍ରଭାବଶିଷ୍ଟ ଚନ୍ଦ୍ର ମଧ୍ୟ ଭାସମାନ ହୋଇ ଉଦିତ ହେଉଛନ୍ତି । ୫୫ ।

# ତୃତୀୟଃ ସର୍ଗଃ

## ଲଙ୍କାଧିଦେବତାବିଜୟଃ

ସ ଲମ୍ବଶିଖରେ ଲମ୍ବେ ଲମ୍ବତୋୟଦସଂନିଭେ ।
ସତ୍ତ୍ୱମାସ୍ଥାୟ ମେଧାବୀ ହନୁମାନ୍ମାରୁତାତ୍ମଜଃ । ୧ ।
ନିଶି ଲଙ୍କାଂ ମହାସତ୍ତ୍ୱୋ ବିବେଶ କପିକୁଞ୍ଜରଃ ।
ରମ୍ୟକାନନତୋୟାଢ୍ୟାଂ ପୁରୀଂ ରାବଣପାଳିତାମ୍ । ୨ ।
ଶାରଦାମ୍ବୁଧରପ୍ରଖ୍ୟୈର୍ଭବନୈରୁପଶୋଭିତାମ୍ ।
ସାଗରୋପମନିର୍ଘୋଷାଂ ସାଗରାନିଲସେବିତାମ୍ । ୩ ।
ସୁପୁଷ୍ଟବଲସଂଗୁପ୍ତାଂ ଯଥୈବ ବିଟପାବତୀମ୍ ।
ଚାରୁତୋରଣନିର୍ୟୂହାଂ ପାଣ୍ଡୁରଦ୍ୱାରତୋରଣାମ୍ । ୪ ।
ଭୁଜଗାଚରିତାଂ ଗୁପ୍ତାଂ ଶୁଭ୍ରାଂ ଭୋଗବତୀମିବ ।
ତାଂ ସବିଦ୍ୟୁଦ୍‌ଘନାକୀର୍ଣ୍ଣାଂ ଜ୍ୟୋତିର୍ଗଣନିଷେବିତାମ୍ । ୫ ।

---

## ୩ୟ ସର୍ଗ

( ଲଙ୍କାର ଅଧିଷ୍ଠାତ୍ରୀଦେବତାଙ୍କ ପରାଜୟ )

ମେଧାବୀ ମହାବଳୀ କପିଶ୍ରେଷ୍ଠ ପବନନନ୍ଦନ ହନୁମାନ୍ ଅତ୍ୟୁଚ୍ଚ ଶିଖରବିଶିଷ୍ଟ ଦୀର୍ଘାକାର ମେଘସଦୃଶ 'ଲମ୍ବ' ପର୍ବତଉପରେ ରହି ସତ୍ତ୍ୱଗୁଣ ଆଶ୍ରୟକରି ରାତିରେ ରମଣୀୟ କାନନ ଓ ଜଳାଶୟ ଏବଂ ଶରତ୍‌କାଳୀନ ମେଘସଦୃଶ ଗୃହରାଜିରେ ସୁଶୋଭିତ ରାବଣପାଳିତ ଲଙ୍କାନଗରୀରେ ପ୍ରବେଶ କଲେ । ଏହି ନଗରୀ ସମୁଦ୍ର-ବାୟୁଦ୍ୱାରା ସୁସେବିତ ହେଉଥିଲା ଏବଂ ସମୁଦ୍ରଗର୍ଜନସଦୃଶ କୋଳାହଳପୂର୍ଣ୍ଣ ହୋଇଥିଲା । ୧-୩ । ଅତି ପରିପୁଷ୍ଟ ରାକ୍ଷସମାନେ ଏହାକୁ ସାବଧାନଭାବରେ ଜଗି ରହିଥିଲେ । ଏହାର ଅତି ସୁନ୍ଦର ତୋରଣମାନଙ୍କ ଉପରେ ମଦମତ୍ତ ହସ୍ତୀର ଚିତ୍ର ସ୍ଥାପିତ ହୋଇଥିଲା ଏବଂ ଶ୍ୱେତବର୍ଣ୍ଣ ଦ୍ୱାରଦେଶରେ ତୋରଣମାନ ବିରାଜିତ ଥିଲା । ଦେଖିବାକୁ ଏହା କୁବେରଙ୍କ ଅଳକାପୁରୀପରି ରମଣୀୟ ହୋଇଥିଲା । ୪ । ସର୍ପମାନଙ୍କ ଦ୍ୱାରା ବେଷ୍ଟିତ ହୋଇ ରହିଥିବାରୁ, ଭୋଗବତୀ (ପାତାଳପୁରୀ) ଯେପରି ସୁରକ୍ଷିତ ରହିଥାଏ, ସୁନ୍ଦର ଲଙ୍କାନଗରୀ ମଧ୍ୟ ସେହିପରି

ଚଣ୍ଡମାରୁତନିର୍ହ୍ରାଦାଂ ଯଥା ଚାପ୍ୟମରାବତୀମ୍ ।
ଶାତକୁମ୍ଭେନ ମହତା ପ୍ରାକାରେଣାଭିସଂବୃତାମ୍ । ୬ ।
କିଙ୍କିଣୀଜାଲଘୋଷାଭିଃ ପତାକାଭିରଲଂକୃତାମ୍ ।
ଆସାଦ୍ୟ ସହସା ହୃଷ୍ଟଃ ପ୍ରାକାରମଭିପେଦିବାନ୍ । ୭ ।
ବିସ୍ମୟାବିଷ୍ଟହୃଦୟଃ ପୁରୀମାଲୋକ୍ୟ ସର୍ବତଃ ।
ଜାମ୍ବୂନଦମୟୈର୍ଦ୍ୱାରୈର୍ବୈଦୂର୍ଯକୃତବେଦିକୈଃ । ୮ ।
ମଣିସ୍ଫଟିକମୁକ୍ତାଭିର୍ମଣିକୁଟ୍ଟିମଭୂଷିତୈଃ ।
ତପ୍ତହାଟକନିର୍ୟୂହୈ ରାଜତାମଲପାଣ୍ଡୁରୈଃ । ୯ ।
ବୈଦୂର୍ଯକୃତସୋପାନୈଃ ସ୍ଫାଟିକାନ୍ତରପାଂସୁଭିଃ ।
ଚାରୁସଂଜବନୋପେତୈଃ ଖମିବୋତ୍ପତିତୈଃ ଶୁଭୈଃ । ୧୦ ।
କ୍ରୌଞ୍ଚବର୍ହିଣସଂଘୁଷ୍ଟୈ ରାଜହଂସନିଷେବିତୈଃ ।
ତୂର୍ଯାଭରଣନିର୍ଘୋଷୈଃ ସର୍ବତଃ ପରିନାଦିତାମ୍ । ୧୧ ।
ବସ୍ୱୌକସାରପ୍ରତିମାଂ ସମୀକ୍ଷ୍ୟ ନଗରୀଂ ତତଃ ।
ଖମିବୋତ୍ପତିତାଂ ଲଙ୍କାଂ ଜହର୍ଷ ହନୁମାନ୍ କପିଃ । ୧୨ ।

---

ସୁରକ୍ଷିତ ଥିଲା । ତାହା ବିଦ୍ୟୁତ୍ ଗର୍ଭ ମେଘପୂର୍ଣ୍ଣ ଜ୍ୟୋତିଷ୍କପରିବୃତ ପ୍ରଚଣ୍ଡ ମାରୁତ-ନାଦିତ ଇନ୍ଦ୍ରଙ୍କ ଅମରାବତୀପରି ଶୋଭା ପାଉଥିଲା । ଏକ ବିଶାଳ ସ୍ୱର୍ଣ୍ଣନିର୍ମିତ ପ୍ରାଚୀର ଏହାକୁ ଚତୁର୍ଦ୍ଦିଗରେ ବେଷ୍ଟନ କରି ରହିଥିଲା । ଏହି ନଗରୀ କିଙ୍କିଣୀସମୂହଦ୍ୱାରା ପ୍ରତିଧ୍ୱନିତ ହେଉଥିବା ପତାକାମାନଙ୍କରେ ଅତିଶୟ ସୁଶୋଭିତ ହୋଇଥିଲା । ହନୁମାନ୍ ଏହିଠାରେ ପହଞ୍ଚି ଆନନ୍ଦିତ ହୋଇ ତତ୍କ୍ଷଣାତ୍ ଏହାର ପାଚେରୀ ଉପରେ ଯାଇଁ ବସିଲେ ।୬-୭। ସେ ଚତୁର୍ଦ୍ଦିଗରେ ଏହି ନଗରୀକୁ ନିରୀକ୍ଷଣ କରି ବିସ୍ମୟାବିଷ୍ଟ ହୋଇଗଲେ । ସେ ଦେଖିଲେ, ଲଙ୍କାର ଦ୍ୱାରଗୁଡ଼ିକ ସ୍ୱର୍ଣ୍ଣମୟ ଏବଂ ବେଦୀସମୂହ ବୈଦୂର୍ଯ୍ୟରେ ନିର୍ମିତ ଏବଂ ତାହାର ଚଟାଣଭୂମି ମଣି, ସ୍ଫଟିକ ଏବଂ ମୁକ୍ତାଦିଦ୍ୱାରା ଅଲଂକୃତ, ତୋରଣଦ୍ୱାରର ହସ୍ତୀମାନେ ତପ୍ତକାଞ୍ଚନରେ ଏବଂ ବିଶୁଦ୍ଧ ଶୁଭ୍ରବର୍ଣ୍ଣ ରୌପ୍ୟରେ ନିର୍ମିତ । ସୋପାନମାନଙ୍କର ଉପରିଭାଗ ବୈଦୂର୍ଯ୍ୟମୟ ଏବଂ ତାହା ସ୍ଫଟିକସଦୃଶ ଧୂଳିଶୂନ୍ୟ । ଏହାର ରମଣୀୟ ଚତୁଃଶାଳା ଗୃହଗୁଡ଼ିକ ଆକାଶକୁ ଉଠିଯିବାପରି ଦେଖାଯାଉଛି । କ୍ରୌଞ୍ଚ ଓ ମୟୂରମାନେ ସେଠାରେ ସର୍ବଦା ରବକରୁଛନ୍ତି ଓ ରାଜହଂସମାନେ ବିଚରଣ କରୁଅଛନ୍ତି । ତୂରୀ ଏବଂ ଅଳଙ୍କାରଧ୍ୱନିରେ ଏହା ଚତୁର୍ଦ୍ଦିଗରେ ପ୍ରତିଧ୍ୱନିତ ହେଉଅଛି । ହନୂମାନ୍ ଦେଖିଲେ, ଲଙ୍କାନଗରୀ ଆକାଶକୁ ସତେ ଯେପରି ସ୍ପର୍ଶ କରୁଅଛି । ସେ ଅଳକାପୁରୀସଦୃଶ

ତାଂ ସମୀକ୍ଷ୍ୟ ପୁରୀଂ ଲଙ୍କାଂ ରାକ୍ଷସାଧିପତେଃ ଶୁଭାମ୍ ।
ଅନୁତ୍ତମାମୃଦ୍ଧିମତୀଂ ଚିନ୍ତୟାମାସ ବୀର୍ଯ୍ୟବାନ୍ । ୧୩ ।
ନେୟମନ୍ୟେନ ନଗରୀ ଶକ୍ୟା ଧର୍ଷୟିତୁଂ ବଲାତ୍
ରକ୍ଷିତା ରାବଣବଲୈରୁଦ୍ୟତାୟୁଧପାଣିଭିଃ । ୧୪ ।
କୁମୁଦାଙ୍ଗଦୟୋର୍ବାପି ସୁଷେଣସ୍ୟ ମହାକପେଃ ।
ପ୍ରସିଦ୍ଧେୟଂ ଭବେଦ୍ ଭୂମିର୍ମୈନ୍ଦଦ୍ୱିବିଦୟୋରପି । ୧୫ ।
ବିବସ୍ୱତସ୍ତନୂଜସ୍ୟ ହରେଶ୍ଚ କୁଶପର୍ବଣଃ ।
ଋକ୍ଷସ୍ୟ କପିମୁଖସ୍ୟ ମମ ଚୈବ ଗତିର୍ଭବେତ୍ । ୧୬ ।
ସମୀକ୍ଷ୍ୟ ଚ ମହାବାହୋ ରାଘବସ୍ୟ ପରାକ୍ରମମ୍ ।
ଲକ୍ଷ୍ମଣସ୍ୟ ଚ ବିକ୍ରାନ୍ତମଭବତ୍ ପ୍ରୀତିମାନ୍ କପିଃ । ୧୭ ।
ତାଂ ରତ୍ନବସନୋପେତାଂ ଗୋଷ୍ଠାଗାରାବତଂସିକାମ୍ ।
ଯନ୍ତ୍ରାଗାରସ୍ତନୀମୃଦ୍ଧାଂ ପ୍ରମଦାମିବ ଭୂଷିତାମ୍ । ୧୮ ।
ତାଂ ନଷ୍ଟତିମିରାଂ ଦୀପୈର୍ଭାସ୍ୱରୈଶ୍ଚ ମହାଗୃହୈଃ ।
ନଗରୀଂ ରାକ୍ଷସେନ୍ଦ୍ରସ୍ୟ ସ ଦଦର୍ଶ ମହାକପିଃ । ୧୯ ।

---

ଏହି ନଗରୀକୁ ଦେଖି ଆନନ୍ଦିତ ହେଲେ । ୮-୧୨ । ବୀର୍ଯ୍ୟବାନ୍ ହନୁମାନ୍ ରାକ୍ଷସାଧିପତିଙ୍କର ଏହି ନିରୁପମସମୃଦ୍ଧିଶାଳିନୀ ସୁନ୍ଦରଲଙ୍କାନଗରୀକୁ ଦେଖି ମନେ ମନେ ଚିନ୍ତାକଲେ ।୧୩। ରାବଣର ସୈନ୍ୟମାନେ ହସ୍ତରେ ଶସ୍ତ୍ର ଉତ୍ତୋଳନପୂର୍ବକ ଏ ନଗରୀକୁ ରକ୍ଷା କରୁଅଛନ୍ତି । ସୁତରାଂ ଅନ୍ୟ କୌଣସି ବ୍ୟକ୍ତି ଏହାକୁ ବଳପୂର୍ବକ ଆକ୍ରମଣ କରିପାରିବ ନାହିଁ ।୧୪ । କୁମୁଦ, ଅଙ୍ଗଦ, ମହାକପି ସୁଷେଣ କିମ୍ବା ମୈନ୍ଦ ବା ଦ୍ୱିବିଦ ଏହି କେତେଜଣ ଏହି ପ୍ରସିଦ୍ଧ ସ୍ଥାନକୁ କେବଳ ଆସିପାରନ୍ତି । ୧୫ । ସୂର୍ଯ୍ୟପୁତ୍ର ସୁଗ୍ରୀବ, କୁଶପର୍ବସଦୃଶ ଲୋମବିଶିଷ୍ଟ କପିଶ୍ରେଷ୍ଠ ଋକ୍ଷ ଏବଂ ମୁଁ ଏଠାକୁ ଆସିପାରିବୁଁ ।୧୬। ସେତେବେଳେ ମହାବାହୁ ରାମଙ୍କର ପରାକ୍ରମ ଏବଂ ଲକ୍ଷ୍ମଣଙ୍କର ବିକ୍ରମ ଚିନ୍ତାକରି ହନୁମାନଙ୍କ ମନରେ ଆନନ୍ଦ ଜାତହେଲା । ୧୭ । ସେହି ମହାକପି ହନୁମାନ୍ ଦେଖିଲେ, ରାକ୍ଷସରାଜ ରାବଣର ଏହି ସମୃଦ୍ଧିଶାଳିନୀ ନଗରୀ ଅଳଙ୍କୃତା ରମଣୀସଦୃଶ ଶୋଭାପାଉଅଛି । ରତ୍ନରାଜି ଏହାର ବସନସ୍ୱରୂପ, ଗୋଷ୍ଠାଗାରସମୂହ ଏହାର କର୍ଣ୍ଣାଭରଣସଦୃଶ ଏବଂ ଯନ୍ତ୍ରାଗାରଗୁଡ଼ିକ ଏହାର ସ୍ତନସଦୃଶ । ଉଜ୍ଜ୍ୱଳପ୍ରଦୀପ ଏବଂ ବିଶାଳ ଗୃହମାନଙ୍କର ଦୀପ୍ତିଦ୍ୱାରା ଏ ନଗରୀର ଅନ୍ଧକାର ଦୂରୀଭୂତ ହୋଇଅଛି । ୧୮-୧୯ । ଅନନ୍ତର ବାନରଶ୍ରେଷ୍ଠ ମହାକପି

ଅଥ ସା ହରଶାର୍ଦ୍ଦୂଲଂ ପ୍ରବିଶନ୍ତଂ ମହାକପିମ୍ ।
ନଗରୀ ସ୍ୱେନ ରୂପେଣ ଦଦର୍ଶ ପବନାତ୍ମଜମ୍ । ୨୦ ।
ସା ତଂ ହରିବରଂ ଦୃଷ୍ଟ୍ୱା ଲଙ୍କା ରାବଣପାଳିତା ।
ସ୍ୱୟମେବୋତ୍ଥିତା ତତ୍ର ବିକୃତାନନଦର୍ଶନା । ୨୧ ।
ପୁରସ୍ତାତ୍ତସ୍ୟ ବୀରସ୍ୟ ବାୟୁସୂନୋରତଷ୍ଠତ ।
ମୁଞ୍ଚମାନା ମହାନାଦମବ୍ରବୀତ୍ପବନାତ୍ମଜମ୍ । ୨୨ ।
କସ୍ତ୍ୱଂ କେନ ଚ କାର୍ଯ୍ୟେଣ ଇହ ପ୍ରାପ୍ତୋ ବନାଳୟ ।
କଥୟସ୍ୱେହ ଯତ୍ତତ୍ତ୍ୱଂ ଯାବତ୍ ପ୍ରାଣା ଧରନ୍ତି ତେ ।୨୩ ।
ନ ଶକ୍ୟା ଖଲ୍ୱୟଂ ଲଙ୍କା ପ୍ରବେଷ୍ଟୁଂ ବାନର ତ୍ୱୟା ।
ରକ୍ଷିତା ରାବଣବଲୈରଭି ଗୁପ୍ତା ସମନ୍ତତଃ । ୨୪ ।
ଅଥ ତାମବ୍ରବୀଦ୍‌ବୀରୋ ହନୁମାନଗ୍ରତଃ ସ୍ଥିତାମ୍ ।
କଥୟିଷ୍ୟାମି ତତ୍ତ୍ୱଂ ଯନ୍ମାଂ ତ୍ୱଂ ପରିପୃଚ୍ଛସି । ୨୫।
କା ତ୍ୱଂ ବିରୂପନୟନା ପୁରଦ୍ୱାରେଽବତିଷ୍ଠସେ ।
କିମର୍ଥଂ ଚାପି ମାଂ କ୍ରୋଧାନ୍ନିର୍ଭର୍ତ୍ସୟସି ଦାରୁଣେ । ୨୬ ।
ହନୂମଦ୍‌ବଚନଂ ଶ୍ରୁତ୍ୱା ଲଙ୍କା ସା କାମରୂପିଣୀ ।
ଉବାଚ ବଚନଂ କ୍ରୁଦ୍ଧା ପରୁଷଂ ପବନାତ୍ମଜମ୍ । ୨୭ ।

---

ହନୁମାନ୍ ସେ ନଗରୀରେ ପ୍ରବେଶ କଲାବେଳେ ଲଙ୍କାନଗରୀ ସ୍ୱୟଂ ମୂର୍ତ୍ତିମତୀ ହୋଇ ତାଙ୍କୁ ଦେଖିଲେ । ୨୦ । ରାବଣପାଳିତା ଲଙ୍କାନଗରୀ ସେହି ବାନରଶ୍ରେଷ୍ଠଙ୍କୁ ଦେଖି ସ୍ୱୟଂ ବିକୃତବଦନା ଓ ବିକୃତଦର୍ଶନା ହୋଇ ଉଠି ଆସି ବାୟୁପୁତ୍ରଙ୍କ ସମ୍ମୁଖରେ ଠିଆ ହୋଇଗଲେ ଏବଂ ଘୋର ଗର୍ଜନକରି ତାଙ୍କୁ କହିଲେ ।୨୧-୨୨। "ହେ ବନବାସୀ ବାନର ! ଯାବତ୍ ତୋ ଦେହରେ ପ୍ରାଣ ଅଛି, ଠିକ୍‌କରି କହ, ତୁ କିଏ ଏବଂ କି କାର୍ଯ୍ୟରେ ବର୍ତ୍ତମାନ ଏଠାକୁ ଆସିଅଛୁ । ୨୩ । ହେ ବାନର ! ତୁ ଏ ଲଙ୍କାରେ ପ୍ରବେଶ କରିବାକୁ କଦାପି ସମର୍ଥ ହେବୁ ନାହିଁ । ଚତୁର୍ଦ୍ଦିଗରେ ରାବଣର ସୈନ୍ୟମାନଙ୍କ ଦ୍ୱାରା ଏହା ସର୍ବତୋଭାବରେ ସୁରକ୍ଷିତ ହୋଇ ରହିଅଛି"।୨୪। ଅନନ୍ତର ସମ୍ମୁଖରେ ଦଣ୍ଡାୟମାନ ହୋଇଥିବା ତାହାଙ୍କୁ ବୀର ହନୁମାନ୍ କହିଲେ, "ତୁମ୍ଭେ ମୋତେ ଯେଉଁ କଥା ପଚାରୁଛ, ମୁଁ ତାହାର ଯଥାର୍ଥ ଉତ୍ତର ଦେବି ।୨୫। କିନ୍ତୁ ହେ ବିକୃତାକ୍ଷି ବିରୂପନୟନେ ! ତୁମ୍ଭେ କିଏ ଏ ନଗରଦ୍ୱାରରେ ଠିଆହୋଇଅଛ, ଏବଂ କାହିଁକି ମୋତେ ଏପରି କ୍ରୋଧରେ ଭର୍ତ୍ସନା କରୁଅଛ" ।୨୬। ହନୁମାନଙ୍କର କଥା ଶୁଣି କାମରୂପିଣୀ ଲଙ୍କା କ୍ରୋଧାନ୍ୱିତ ହୋଇ କର୍କଶବାକ୍ୟରେ ପବନନନ୍ଦନଙ୍କୁ

ଅହଂ ରାକ୍ଷସରାଜସ୍ୟ ରାବଣସ୍ୟ ମହାତ୍ମନଃ ।
ଆଜ୍ଞାପ୍ରତୀକ୍ଷା ଦୁର୍ଧର୍ଷା ରକ୍ଷାମି ନଗରୀମିମାମ୍ । ୨୮ ।
ନ ଶକ୍ୟା ମାମବଜ୍ଞାୟ ପ୍ରବେଷ୍ଟୁଂ ନଗରୀ ତ୍ୱୟା ।
ଅଦ୍ୟ ପ୍ରାଣୈଃ ପରିତ୍ୟକ୍ତଃ ସ୍ୱପ୍‌ସ୍ୟସେ ନିହତୋ ମୟା । ୨୯।
ଅହଂ ହି ନଗରୀ ଲଙ୍କା ସ୍ୱୟମେବ ପ୍ଳବଙ୍ଗମ ।
ସର୍ବତଃ ପରିରକ୍ଷାମି ଅତସ୍ତେ କଥିତଂ ମୟା । ୩୦ ।
ଲଙ୍କାୟା ବଚନଂ ଶ୍ରୁତ୍ୱା ହନୁମାନ୍ମାରୁତାତ୍ମଜଃ ।
ଯତ୍ନବାନ୍ ସ ହରିଶ୍ରେଷ୍ଠଃ ସ୍ଥିତଃ ଶୈଳ ଇବାପରଃ । ୩୧ ।
ସ ତାଂ ସ୍ତ୍ରୀରୂପବିକୃତାଂ ଦୃଷ୍ଟ୍ୱା ବାନରପୁଙ୍ଗବଃ ।
ଆବଭାଷେଽଥ ମେଧାବୀ ସତ୍ତ୍ୱବାନ୍ ପ୍ଳବଗର୍ଷଭଃ । ୩୨।
ଦ୍ରକ୍ଷ୍ୟାମି ନଗରୀଂ ଲଙ୍କାଂ ସାଟ୍ଟପ୍ରାକାରତୋରଣାମ୍ ।
ଇତ୍ୟର୍ଥମିହ ସଂପ୍ରାପ୍ତଃ ପରଂ କୌତୂହଲଂ ହି ମେ । ୩୩ ।
ବନାନ୍ୟୁପବନାନୀହ ଲଙ୍କାୟାଃ କାନନାନି ଚ ।
ସର୍ବତୋ ଗୃହମୁଖ୍ୟାନି ଦ୍ରଷ୍ଟୁମାଗମନଂ ହି ମେ । ୩୪ ।

---

କହିଲେ । ୨୭ । "ମୁଁ ରାକ୍ଷସରାଜ ମହାତ୍ମା ରାବଣଙ୍କର ଆଜ୍ଞାନୁବର୍ତ୍ତିନୀ ହୋଇ ଏହି ଲଙ୍କାନଗରୀକୁ ଜଗିରହିଅଛି । ମୋତେ କେହି ପରାଜିତ କରିପାରିବେ ନାହିଁ । ୨୮ । ତୁ ମୋତେ ଅବଜ୍ଞାକରି ଏ ନଗରୀମଧ୍ୟରେ ପ୍ରବେଶ କରିପାରିବୁ ନାହିଁ । ତୁ ଆଜି ମୋଦ୍ୱାରା ନିହତ ହୋଇ ପ୍ରାଣପରିତ୍ୟାଗପୂର୍ବକ ଏହିଠାରେ ଶୋଇବୁ । ୨୯ । ହେ ବାନର ! ମୁଁ ନିଜେ ଲଙ୍କାନଗରୀ, ଏହାକୁ ମୁଁ ସର୍ବତୋଭାବରେ ରକ୍ଷାକରୁଅଛି । ସେଥିପାଇଁ ତୋତେ ଏ କଥା କହିଲି" ।୩୦ । ବାନରଶ୍ରେଷ୍ଠ ପବନନନ୍ଦନ ହନୁମାନ୍ ଲଙ୍କାର ଏହି କଥା ଶୁଣି ବିଶେଷ ଯତ୍ନବାନ୍ ହୋଇ ଅନ୍ୟ ଏକ ପର୍ବତଭଳି ଠିଆହୋଇ ରହିଲେ ।୩୧। ଅନନ୍ତର ବୀର୍ଯ୍ୟବାନ୍, ମେଧାବୀ,ବାନରଶ୍ରେଷ୍ଠ ହନୁମାନ୍ ସେହି ବିକୃତରୂପା ସ୍ତ୍ରୀରୂପଧାରିଣୀ ଲଙ୍କାଆଡ଼କୁ ଚାହିଁ କହିଲେ ।୩୨। "ମୁଁ ତୋରଣ, ପ୍ରାଚୀର ଏବଂ ଅଟ୍ଟାଳିକାଶୋଭିତ ଲଙ୍କାନଗରୀ ଦେଖିବି; ଏହି ଅଭିପ୍ରାୟରେ ଏଠାକୁ ଆସିଛି । ମୋର ବିଶେଷ କୌତୂହଳ ଜାତହୋଇଅଛି । ୩୩ । ଏଠାରେ ଲଙ୍କାର ବନ, ଉପବନ ଏବଂ କାନନ ତଥା ଉତ୍କୃଷ୍ଟ ଗୃହସକଳ ଦେଖିବାପାଇଁ

ତସ୍ୟ ତଦ୍‌ବଚନଂ ଶ୍ରୁତ୍ୱା ଲଙ୍କା ସା କାମରୂପିଣୀ ।
ଭୂୟ ଏବ ପୁନର୍ବାକ୍ୟଂ ବଭାଷେ ପରୁଷାକ୍ଷରମ୍ । ୩୫ ।
ମାମନିର୍ଜିତ୍ୟ ଦୁର୍ବୁଦ୍ଧେ ରାକ୍ଷସେଶ୍ୱରପାଲିତାମ୍ ।
ନ ଶକ୍ୟା ହ୍ୟଦ୍ୟ ତେ ଦ୍ରଷ୍ଟୁଂ ପୁରୀୟଂ ବାନରାଧମ । ୩୬
ତତଃ ସ ହରିଶାର୍ଦ୍ଦୂଲସ୍ତାମୁବାଚ ନିଶାଚରୀମ୍ ।
ଦୃଷ୍ଟ୍ୱା ପୁରୀମିମାଂ ଭଦ୍ରେ ପୁନର୍ଯାସ୍ୟେ ଯଥାଗତମ୍ । ୩୭ ।
ତତଃ କୃତ୍ୱା ମହାନାଦଂ ସା ବୈ ଲଙ୍କା ଭୟଙ୍କରମ୍ ।
ତଲେନ ବାନରଶ୍ରେଷ୍ଠଂ ତାଡ଼ୟାମାସ ବେଗିତା । ୩୮ ।
ତତଃ ସ ହରିଶାର୍ଦ୍ଦୂଲୋ ଲଙ୍କୟା ତାଡ଼ିତୋ ଭୃଶମ୍ ।
ନନାଦ ସୁମହାନାଦଂ ବୀର୍ଯବାନ୍ମାରୁତାତ୍ମଜଃ । ୩୯ ।
ତତଃ ସଂବର୍ତ୍ତୟାମାସ ବାମହସ୍ତସ୍ୟ ସୋଽଙ୍ଗୁଲୀଃ ।
ମୁଷ୍ଟିନାଭିଜଘାନୈନାଂ ହନୂମାନ୍ କ୍ରୋଧମୂର୍ଚ୍ଛିତଃ । ୪୦ ।
ସ୍ତ୍ରୀ ଚେତି ମନ୍ୟମାନେନ ନାତିକ୍ରୋଧଃ ସ୍ୱୟଂ କୃତଃ ।
ସା ତୁ ତେନ ପ୍ରହାରେଣ ବିହ୍ୱଳାଙ୍ଗୀ ନିଶାଚରୀ ।
ପପାତ ସହସା ଭୂମୌ ବିକୃତାନନଦର୍ଶନା । ୪୧ ।
ତତସ୍ତୁ ହନୁମାନ୍ ବୀରସ୍ତାଂ ଦୃଷ୍ଟ୍ୱା ବିନିପାତିତାମ୍ ।
କୃପାଂ ଚକାର ତେଜସ୍ୱୀ ମନ୍ୟମାନଃ ସ୍ତ୍ରିୟଂ ଚ ତାମ୍ । ୪୨ ।

---

ମୁଁ ଆଗମନ କରିଅଛି" ।୩୪। କାମରୂପିଣୀ ଲଙ୍କା ତାଙ୍କର ସେହି ବାକ୍ୟ ଶ୍ରବଣକରି ପୁନର୍ବାର କର୍କଶବଚନରେ କହିଲେ ।୩୫। ହେ ବାନରାଧମ ! ଏହି ପୁରୀ ରାକ୍ଷସରାଜ ରାବଣଦ୍ୱାରା ପାଳିତ ; ସୁତରାଂ ତୁ ମୋତେ ପରାସ୍ତ ନ କରି ଏ ନଗରୀକୁ ଦେଖିପାରିବୁ ନାହିଁ" ।୩୬। ଅନନ୍ତର କପିଶ୍ରେଷ୍ଠ ହନୂମାନ୍ ସେହି ରାକ୍ଷସରୂପିଣୀ ଲଙ୍କାଙ୍କୁ କହିଲେ "ହେ ଭଦ୍ରେ ! ମୁଁ ଏହି ନଗରୀ ଦର୍ଶନକରି ପୁନର୍ବାର ସ୍ୱସ୍ଥାନକୁ ଗୃଲିଯିବି" । ୩୭ । ଏହି କଥାରେ ଲଙ୍କାନଗରୀ ଭୟଙ୍କର ଚିତ୍କାରକରି ହନୁମାନଙ୍କୁ ଖୁବ୍ ଜୋରରେ ଚାପୁଡ଼ାଏ ମାରିଲେ । ୩୮ । ଅନନ୍ତର ବୀର୍ଯ୍ୟବାନ୍ ପବନନନ୍ଦନ ଲଙ୍କାକର୍ତ୍ତୃକ ଅତିଶୟ ତାଡ଼ିତ ହୋଇ ଘୋର ଚିତ୍କାରକଲେ । ୩୯ । ହନୁମାନ୍ କ୍ରୋଧରେ ହତଜ୍ଞାନ ହୋଇ ବାମହସ୍ତର ଅଙ୍ଗୁଳିକୁ ମୁଠାକରି ସେହି ମୁଷ୍ଟିଦ୍ୱାରା ଲଙ୍କାକୁ ପ୍ରହାରକଲେ ।୪୦। ସେ ଏହାଙ୍କୁ ସ୍ତ୍ରୀ ବୋଲି ଜାଣି ଅତି ବେଶି କ୍ରୋଧ କଲେ ନାହିଁ । ମାତ୍ର ସେହି ମୁଷ୍ଟିପ୍ରହାରରେ ସେ ବିକୃତଦର୍ଶନା ରାକ୍ଷସୀର ଅଙ୍ଗ ଥରିଉଠିଲା ଏବଂ ସେ ତତ୍‌କ୍ଷଣାତ୍ ଭୂତଳରେ ପତିତହେଲା । ୪୧ । ତାହାକୁ ଭୂଇଁରେ ପଡ଼ିଯିବାର ଦେଖି, ତେଜସ୍ୱୀ ପ୍ରାଜ୍ଞ ହନୂମାନ୍ 'ସ୍ତ୍ରୀ' ବୋଲି ବିଗ୍ଭରି ତାକୁ ଦୟାକଲେ । ୪୨ ।

ତତୋ ବୈ ଭୃଶମୁଦ୍‌ବିଗ୍ନା ଲଙ୍କା ସାଗ ଦ୍‌ଗଦାକ୍ଷରମ୍ ।
ଉବାଚାଗର୍ବିତଂ ବାକ୍ୟଂ ହନୂମନ୍ତଂ ପ୍ଲବଙ୍ଗମମ୍ । ୪୩ ।
ପ୍ରସୀଦ ସୁମହାବାହୋ ତ୍ରାୟସ୍ୱ ହରିସତ୍ତମ ।
ସମୟେ ସୌମ୍ୟ ତିଷ୍ଠନ୍ତି ସତ୍ତ୍ୱବନ୍ତୋ ମହାବଲାଃ । ୪୪ ।
ଅହଂ ତୁ ନଗରୀ ଲଙ୍କା ସ୍ୱୟମେବ ପ୍ଲବଙ୍ଗମ ।
ନିର୍ଜିତାହଂ ତ୍ୱୟା ବୀର ବିକ୍ରମେଣ ମହାବଲ । ୪୫ ।
ଇଦଂ ଚ ତଥ୍ୟଂ ଶୃଣୁ ମେ ବ୍ରୁବନ୍ତ୍ୟା ବୈ ହରୀଶ୍ୱର ।
ସ୍ୱୟଂ ସ୍ୱୟମ୍ଭୁବା ଦତ୍ତଂ ବରଦାନଂ ଯଥା ମମ । ୪୬ ।
ଯଦା ତ୍ୱାଂ ବାନରଃ କଶ୍ଚିଦ୍ ବିକ୍ରମାଦ୍‌ବଶମାନୟେତ୍ ।
*ତଦା ତ୍ୱୟା ହି ବିଜ୍ଞେୟଂ ରକ୍ଷସାଂ ଭୟମାଗତମ୍ । ୪୭ ।
ସ ହି ମେ ସମୟଃ ସୌମ୍ୟ ପ୍ରାପ୍ତୋଽଦ୍ୟ ତବଦର୍ଶନାତ୍ ।
ସ୍ୱୟମ୍ଭୂବିହିତଃ ସତ୍ୟୋ ନ ତସ୍ୟାସ୍ତି ବ୍ୟତିକ୍ରମଃ । ୪୮ ।

---

ଅନନ୍ତର ଲଙ୍କାଦେବୀ ଅତିଶୟ ଉଦ୍‌ବିଗ୍ନହୋଇ ଗଦ୍‌ଗଦ୍‌ସ୍ୱରରେ, ଗର୍ବଶୂନ୍ୟ ବାକ୍ୟରେ ବାନର ହନୁମାନଙ୍କୁ କହିଲେ ।୪୩ । "ହେ ମହାବାହୋ ବାନରଶ୍ରେଷ୍ଠ ! ତୁମ୍ଭେ ପ୍ରସନ୍ନ ହୋଇ ମୋତେ ପରିତ୍ରାଣକର । ହେ ସୌମ୍ୟ ! ବୀର୍ଯ୍ୟଶାଳୀ ମହାବଳ ବ୍ୟକ୍ତିମାନେ ସର୍ବଦା ନୈତିକବିଧାନ ମାନି ଚଳନ୍ତି (ଅର୍ଥାତ୍ ସ୍ତ୍ରୀହତ୍ୟା କରନ୍ତି ନାହିଁ ) । ୪୪ । ହେ ମହାବଳୀ ବାନର ! ମୁଁ ସ୍ୱୟଂ ଲଙ୍କାର ଅଧିଷ୍ଠାତ୍ରୀ ଦେବୀ । ତୁମ୍ଭେ ସ୍ୱୀୟ ବୀର୍ଯ୍ୟପ୍ରଭାବରେ ମୋତେ ସମ୍ପୂର୍ଣ୍ଣ ପରାସ୍ତ କରିଅଛ । ୪୫ । ହେ କପିଶ୍ରେଷ୍ଠ ! ସ୍ୱୟମ୍ଭୂ ବ୍ରହ୍ମା ନିଜେ ମୋତେ ଯେଉଁ ବର ଦାନକରିଥିଲେ ମୁଁ ତାହା କହୁଛି, ସେ ତଥ୍ୟକଥା ଶୁଣ ।୪୬। ସେ କହିଥିଲେ,"ଯେତେବେଳେ ତୁମ୍ଭଙ୍କୁ ଗୋଟିଏ ବାନର ବଳପ୍ରୟୋଗ କରି ବଶୀଭୂତ କରିବ, ସେତିକିବେଳେ ତୁମ୍ଭେ ଜାଣିବ ଯେ "ରାକ୍ଷସମାନଙ୍କର ଭୟ ଉପସ୍ଥିତ ହୋଇଛି" । ୪୭ । ସୌମ୍ୟ ! ଆଜି ତୁମ୍ଭର ଦର୍ଶନରେ ମୋର ସେହି ନିର୍ଦ୍ଧାରିତ ସମୟ ଆଗତ ହୋଇଅଛି । ବ୍ରହ୍ମା ଯାହା ବିଧାନ କରିଛନ୍ତି, ତାହା ନିଶ୍ଚୟ ସତ୍ୟ, ସେଥିରେ କୌଣସି ବ୍ୟତିକ୍ରମ ହେବ ନାହିଁ ।୪୮ ।

---

*—ରାବଣର ଦିଗ୍‌ବିଜୟ ସମୟରେ ନନ୍ଦିକେଶ୍ୱର "ଲଙ୍କା ବିନାଶ ପ୍ରାପ୍ତହେଉ" ବୋଲି ଅଭିଶାପ ଦେବାରୁ 'ଲଙ୍କା' ବ୍ରହ୍ମାଙ୍କ ନିକଟକୁ ଯାଇ ଆତ୍ମରକ୍ଷା ନିମନ୍ତେ ପ୍ରାର୍ଥନାକଲେ । ସେତେବେଳେ ବ୍ରହ୍ମା ତାଙ୍କୁ କହିଥିଲେ ଯେ "ତୋର ସଦ୍ୟ ବିନାଶର କୌଣସି ଆଶଙ୍କା ନାହିଁ, ତେବେ ଯେଉଁ ଦିନ ତୁ ବାନରହସ୍ତରେ ଅପମାନିତ ହେବୁ, ସେତିକିବେଳେ ତୋର ବିନାଶ ଅବଶ୍ୟମ୍ଭାବୀ ।"

ସୀତାନିମିତ୍ତଂ ରାଜ୍ଞସ୍ତୁ ରାବଣସ୍ୟ ଦୁରାତ୍ମନଃ ।
ରକ୍ଷସାଂ ଚୈବ ସର୍ବେଷାଂ ବିନାଶଃ ସମୁପାଗତଃ । ୪୯ ।
ତତ୍ ପ୍ରବିଶ୍ୟ ହରିଶ୍ରେଷ୍ଠ ପୁରୀଂ ରାବଣପାଳିତାମ୍ ।
ବିଧତ୍ସ୍ୱ ସର୍ବକାର୍ଯାଣି ଯାନି ଯାନୀହ କାଙ୍କ୍ଷସି । ୫୦ ।

ପ୍ରବିଶ୍ୟ ଶାପୋପହତାଂ ହରୀଶ୍ୱରଃ
ପୁରୀଂ ଶୁଭାଂ ରାକ୍ଷସମୁଖ୍ୟପାଳିତାମ୍ ।
ଯଦୃଚ୍ଛୟା ତ୍ୱଂ ଜନକାତ୍ମଜାଂ ସତୀମ୍
ବିମାର୍ଗ ସର୍ବତ୍ର ଗତୋ ଯଥାସୁଖମ୍ । ୫୧ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ସୁନ୍ଦରକାଣ୍ଡେ ଲଙ୍କାଧିଦେବତାବିଜୟୋ
ନାମ ତୃତୀୟଃ ସର୍ଗଃ

---

ସୀତାଙ୍କ ଲାଗି ଆଜି ଦୁରାତ୍ମା ରାଜା ରାବଣର ଏବଂ ସବୁ ରାକ୍ଷସଙ୍କର ବିନାଶ ଉପସ୍ଥିତ ହୋଇଅଛି । ୪୯। ଅତଏବ, ହେ ବାନରଶ୍ରେଷ୍ଠ ! ତୁମ୍ଭେ ରାବଣପାଳିତା ଏହି ନଗରୀ ମଧ୍ୟରେ ପ୍ରବେଶକର ତୁମ୍ଭ ଇଚ୍ଛା ଅନୁସାରେ ସମୁଦାୟ କାର୍ଯ୍ୟ କର । ୫୦ । ବାନରଶ୍ରେଷ୍ଠ ! ରାକ୍ଷସରାଜପାଳିତା ମନୋହର ଲଙ୍କାନଗରୀ ଶାପଗ୍ରସ୍ତା ହୋଇଅଛି । ତୁମ୍ଭେ ଏଥିରେ ପ୍ରବେଶକର ଏବଂ ସ୍ୱଚ୍ଛନ୍ଦରେ ସର୍ବତ୍ର ଯଥାସୁଖରେ ଗମନକରି ସତୀ ଜନକନନ୍ଦିନୀଙ୍କର ଅନ୍ୱେଷଣ କର" । ୫୧ ।

# ଚତୁର୍ଥଃ ସର୍ଗଃ

## ଲଙ୍କାପୁରୀପ୍ରବେଶଃ

ସ ନିର୍ଜିତ୍ୟ ପୁରୀଂ ଲଙ୍କାଂ ଶ୍ରେଷ୍ଠାଂ ତାଂ କାମରୂପିଣୀମ
ବିକ୍ରମେଣ ମହାତେଜା ହନୂମାନ୍ କପିସତ୍ତମଃ । ୧ ।
ଅଦ୍ୱାରେଣ ମହାବୀର୍ଯ୍ୟଃ ପ୍ରାକାରମବପ୍ଲୁବେ ।
ନିଶି ଲଙ୍କାଂ ମହାସତ୍ତ୍ୱୋ ବିବେଶ କପିକୁଞ୍ଜରଃ । ୨ ।
ପ୍ରବିଶ୍ୟ ନଗରୀଂ ଲଙ୍କାଂ କପିରାଜହିତଙ୍କରଃ ।
ଚକ୍ରେଽଥ ପାଦଂ ସବ୍ୟଂ ଚ ଶତ୍ରୂଣାଂ ସ ତୁ ମୂର୍ଦ୍ଧନି । ୩ ।
ପ୍ରବିଷ୍ଟଃ ସତ୍ତ୍ୱସଂପନ୍ନୋ ନିଶାୟାଂ ମାରୁତାତ୍ମଜଃ ।
ସ ମହାପଥମାସ୍ଥାୟ ମୁକ୍ତପୁଷ୍ପବିରାଜିତମ୍ । ୪ ।
ତତସ୍ତୁ ତାଂ ପୁରୀଂ ଲଙ୍କାଂ ରମ୍ୟାମଭିଯଯୌ କପିଃ ।
ହସିତୋତ୍କୃଷ୍ଟନିନଦୈସ୍ତୂର୍ଯ୍ୟଘୋଷପୁରସ୍କୃତୈଃ । ୫ ।
ବଜ୍ରାଙ୍କୁଶନିକାଶୈଶ୍ଚ ବଜ୍ରଜାଲବିଭୂଷିତୈଃ ।
ଗୃହମୁଖ୍ୟୈଃ ପୁରୀ ରମ୍ୟା ବଭାସେ ଦ୍ୟୌରିବାମ୍ବୁଦୈଃ । ୬ ।

---

## ୪ର୍ଥ ସର୍ଗ

### ( ଲଙ୍କାନଗରୀରେ ପ୍ରବେଶ )

ମହାବଳୀ, ମହାବୀର୍ଯ୍ୟ, ମହାତେଜା, କପିଶ୍ରେଷ୍ଠ ହନୁମାନ୍ ବିକ୍ରମଦ୍ୱାରା କାମରୂପିଣୀ ନଗରୀଶ୍ରେଷ୍ଠା ଲଙ୍କାକୁ ପରାଜିତ କରି ଦୁଆର ନ ଥିବା ସ୍ଥାନରେ ପାଚେରୀ ଉପରକୁ ଡେଇଁ ରାତିରେ ଲଙ୍କାଭିତରକୁ ପ୍ରବେଶକଲେ ।୧-୨। ବାନରରାଜ ସୁଗ୍ରୀବଙ୍କର ହିତକାରୀ ହନୁମାନ୍ ଲଙ୍କାନଗରୀରେ ପ୍ରବେଶକରି ଶତ୍ରୁମାନଙ୍କ ମସ୍ତକ ଉପରେ ବାମପାଦ ସ୍ଥାପନକଲେ । ୩ । ସତ୍ତ୍ୱସମ୍ପନ୍ନ ମାରୁତାତ୍ମଜ ପବନନନ୍ଦନ ରାତିରେ ସେହି ନଗରୀମଧ୍ୟରେ ପ୍ରବେଶକରି, ଝଡ଼ିପଡ଼ିଥିବା ପୁଷ୍ପରାଜିଦ୍ୱାରା ସୁଶୋଭିତ ପ୍ରଧାନ ରାଜପଥ ଅବଲମ୍ବନ କରି ଗଲେ । ୪ । ସେ ଏହି ରମଣୀୟ ଲଙ୍କାପୁରୀକୁ ଯାଇ ଦେଖିଲେ ଯେ, ତାହା ହାସ୍ୟନିନାଦରେ ଏବଂ ତୂରୀଧ୍ୱନିରେ ନିନାଦିତ ହେଉଅଛି । ୫ । ହୀରକରାଜିଦ୍ୱାରା ଅଳଂକୃତ ହୀରାର ଅଙ୍କୁଶସଦୃଶ ପ୍ରଧାନ ପ୍ରଧାନ ଗୃହରାଜିଦ୍ୱାରା ସେହି ରମ୍ୟନଗରୀ, ମେଘରାଜିଦ୍ୱାରା ଆକାଶ ଶୋଭାପାଇଲାପରି

ପ୍ରଜଜ୍ୱାଲ ତଦା ଲଙ୍କା ରକ୍ଷୋଗଣଗୃହୈଃ ଶୁଭୈଃ ।
ସିତାଭ୍ରସଦୃଶୈଶ୍ଚିତ୍ରୈଃ ପଦ୍ମସ୍ୱସ୍ତିକସଂସ୍ଥିତୈଃ । ୭ ।
*ବର୍ଧମାନଗୃହୈଶ୍ଚାପି ସର୍ବତଃ ସୁବିଭୂଷିତୈଃ ।
ତାଂ ଚିତ୍ରମାଲ୍ୟାଭରଣାଂ କପିରାଜହିତଙ୍କରଃ । ୮ ।
ରାଘବାର୍ଥେ ଚରନ୍ ଶ୍ରୀମାନ୍ ଦଦର୍ଶ ଚ ନନନ୍ଦ ଚ ।
ଭବନାଦ୍ଭବନଂ ଗଚ୍ଛନ୍ ଦଦର୍ଶ କପିକୁଞ୍ଜରଃ । ୯ ।
ବିବିଧାକୃତିରୂପାଣି ଭବନାନି ତତସ୍ତତଃ ।
ଶୁଶ୍ରାବ ରୁଚିରଂ ଗୀତଂ ତ୍ରିସ୍ଥାନସ୍ୱରଭୂଷିତମ୍ । ୧୦ ।
ସ୍ତ୍ରୀଣାଂ ମଦନବିଦ୍ଧାନାଂ ଦିବି ଚାପ୍ସରସାମିବ ।
ଶୁଶ୍ରାବ କାଞ୍ଚୀନିନଦଂ ନୂପୁରାଣାଂ ଚ ନିଃସ୍ୱନମ୍ । ୧୧ ।
ସୋପାନନିନଦାଂଶ୍ଚାପି ଭବନେଷୁ ମହାତ୍ମନାମ୍ ।
ଆସ୍ଫୋଟିତନିନାଦାଂଶ୍ଚ କ୍ଷ୍ୱେଡିତାଂଶ୍ଚ ତତସ୍ତତଃ । ୧୨ ।
ଶୁଶ୍ରାବ ଜପତାଂ ତତ୍ର ମନ୍ତ୍ରାନ୍ ରକ୍ଷୋଗୃହେଷୁ ବୈ ।
ସ୍ୱାଧ୍ୟାୟନିରତାଂଶ୍ଚୈବ ଯାତୁଧାନାନ୍ ଦଦର୍ଶ ସଃ । ୧୩ ।

---

ଶୋଭାପାଉଅଛି । ୬ । ଲଙ୍କାନଗରୀ, ଶୁଭ୍ରମେଘସଦୃଶ, ପଦ୍ମ ଏବଂ ସ୍ୱସ୍ତିକଖଚିତ ରାକ୍ଷସମାନଙ୍କର ବିଚିତ୍ର ରମଣୀୟ ଗୃହରାଜିଦ୍ୱାରା ଜାଜ୍ୱଲ୍ୟମାନ ହେଉଅଛି । ୭ । କପିରାଜ ସୁଗ୍ରୀବଙ୍କ ହିତାକାଂକ୍ଷୀ ଶ୍ରୀମାନ୍ ହନୁମାନ୍ ରାମଙ୍କର କାର୍ଯ୍ୟସିଦ୍ଧି ଉଦ୍ଦେଶ୍ୟରେ ଚାରିଆଡ଼େ ବୁଲି ସର୍ବତ୍ର 'ବର୍ଧମାନ' ଶ୍ରେଣୀର ଉତ୍କୃଷ୍ଟ ଗୃହମାନଙ୍କ ଦ୍ୱାରା ସୁଶୋଭିତ ବିଚିତ୍ର ମାଲ୍ୟ ଏବଂ ଅଳଙ୍କାରଶୋଭିତ ଲଙ୍କାନଗରୀକୁ ଦେଖି ଆନନ୍ଦିତ ହେଲେ । କପିଶ୍ରେଷ୍ଠ ଏହିପରି ଗୃହରୁ ଗୃହାନ୍ତରକୁ ଯାଇ ନାନାବିଧ ଆକୃତିବିଶିଷ୍ଟ ଗୃହମାନ ଚାରିଆଡ଼େ ଦେଖିବାକୁ ଲାଗିଲେ । ବକ୍ଷ, କଣ୍ଠ ଓ ମସ୍ତକ ଏହି ତିନି ସ୍ଥାନରୁ ବାହାରୁଥିବା ମନ୍ଦ୍ର, ମଧ୍ୟ ଓ ତାର ସ୍ୱର-ଅଳଂକୃତ ମନୋହର ଗୀତ, ସ୍ୱର୍ଗସ୍ଥ ଅପ୍‌ସରାମାନଙ୍କ ସଦୃଶ ମଦୋନ୍ମତ୍ତ ରମଣୀମାନଙ୍କର କାଞ୍ଚୀଶବ୍ଦ ଓ ନୂପୁରଶବ୍ଦ ଏବଂ ମହାତ୍ମାମାନଙ୍କର ଗୃହମାନଙ୍କରେ ସୋପାନ ଆରୋହଣଶବ୍ଦ ସେ ଶୁଣିଲେ । ସେ ସ୍ଥାନେ ସ୍ଥାନେ ବାହୁସ୍ଫୋଟ, ସିଂହଗର୍ଜନ ଏବଂ ରାକ୍ଷସମାନଙ୍କ ଗୃହରେ ମନ୍ତ୍ରଜପର ଶବ୍ଦ ଶୁଣିଲେ ଏବଂ ରାକ୍ଷସମାନଙ୍କୁ ବେଦାଧ୍ୟୟନରେ ରତ ଥିବାର

---

* ଶିଳ୍ପଶାସ୍ତ୍ର ଅନୁସାରେ ଏକ ନିର୍ଦ୍ଦିଷ୍ଟ ନକ୍‌ସାରେ ପ୍ରସ୍ତୁତ ରାଜଭବନକୁ 'ବର୍ଧମାନ' କୁହାଯାଏ । ପଦ୍ମ ଏବଂ ସ୍ୱସ୍ତିକ ମଧ୍ୟ ବିଭିନ୍ନପ୍ରକାର ଗୃହର ନାମ ।

ରାବଣସ୍ତବସଂଯୁକ୍ତାନ୍ ଗର୍ଜତୋ ରାକ୍ଷସାନପି ।
ରାଜମାର୍ଗଂ ସମାବୃତ୍ୟ ସ୍ଥିତଂ ରକ୍ଷୋଗଣଂ ମହତ୍ । ୧୪ ।
ଦଦର୍ଶ ମଧ୍ୟମେ ଗୁଲ୍ମେ ରାକ୍ଷସସ୍ୟ ଚରାନ୍ ବହୂନ୍ ।
ଦୀକ୍ଷିତାଞ୍ଜଟିଲାନ୍ମୁଣ୍ଡାନ୍ ଗୋଜିନାମ୍ବରବାସସଃ । ୧୫ ।
ଦର୍ଭମୁଷ୍ଟିପ୍ରହରଣାନଗ୍ନିକୁଣ୍ଡାୟୁଧାଂସ୍ତଥା ।
କୂଟମୁଦ୍ଗରପାଣୀଂଶ୍ଚ ଦଣ୍ଡାୟୁଧଧରାନପି । ୧୬ ।
ଏକାକ୍ଷାନେକକର୍ଣ୍ଣାଂଶ୍ଚ ଚଲଦେକପୟୋଧରାନ୍ ।
କରାଳାନ୍ ଭୁଗ୍ନବକ୍ତ୍ରାଂଶ୍ଚ ବିକଟାନ୍ ବାମନାଂସ୍ତଥା । ୧୭ ।
ଧନ୍ୱିନଃ ଖଡ୍ଗିନଶ୍ଚୈବ ଶତଘ୍ନୀମୁସଲାୟୁଧାନ୍ ।
ପରିଘୋତ୍ତମହସ୍ତାଂଶ୍ଚ ବିଚିତ୍ରକବଚୋଜ୍ଜ୍ୱଳାନ୍ । ୧୮ ।
ନାତିସ୍ଥୂଲାନ୍ନାତିକୃଶାନ୍ନାତିଦୀର୍ଘାତିହ୍ରସ୍ୱକାନ୍ ।
ନାତିଗୌରାନ୍ନାତିକୃଷ୍ଣାନ୍ନାତିକୁବ୍ଜାନ୍ନବାମନାନ୍ ।୧୯।
ବିରୂପାନ୍ ବହୁରୂପାଂଶ୍ଚ ସୁରୂପାଂଶ୍ଚ ସୁବର୍ଚସଃ ।
ପତାକାଧ୍ୱଜିନଶ୍ଚୈବ ଦଦର୍ଶ ବିବିଧାୟୁଧାନ୍ । ୨୦ ।

---

ଦେଖିଲେ । ୮-୧୩ । ସେ ରାବଣର ସ୍ତବମାନ ଉଚ୍ଚୈଃସ୍ୱରରେ ଉଚ୍ଚାରଣ କରୁଥିବା ରାକ୍ଷସମାନଙ୍କୁ ଦେଖିଲେ ଏବଂ ବିଶାଳ ରାକ୍ଷସସେନା ରାଜମାର୍ଗକୁ ପରିପୂର୍ଣ୍ଣ କରି ରହିଥିବାର ଦେଖିଲେ । ୧୪ । ଅନନ୍ତର ସେ ମଧ୍ୟମ ଦୁର୍ଗକୁ ଯାଇ ରାକ୍ଷସର ବହୁସଂଖ୍ୟକ ଚରଙ୍କୁ ଦେଖିଲେ । ସେମାନେ ମୁଣ୍ଡିତମସ୍ତକ, ଜଟାଧାରୀ, ଦୀକ୍ଷିତ ଏବଂ ଗୋରୁ ଓ ମୃଗଚର୍ମ ପରିଧାନ କରିଥିଲେ । କୁଶମୁଷ୍ଟି ସେମାନଙ୍କର ପ୍ରହରଣ ଏବଂ ଅଗ୍ନିକୁଣ୍ଡ ସେମାନଙ୍କର ଆୟୁଧ । ତାଙ୍କ ହାତରେ କୂଟ, ମୁଦ୍ଗର, ଦଣ୍ଡାୟୁଧ ରହିଛି ସେମାନଙ୍କ ଭିତରୁ କାହାର ଗୋଟିଏ କାନ, କାହାର ଗୋଟିଏ ଆଖି, କାହାର ବା ଗୋଟିଏ ମାତ୍ର ସ୍ତନ ଲମ୍ବିରହିଛି । କାହାର ମୁହଁ ବଙ୍କା, ଭୟଙ୍କର ଓ ବିକୃତ; କିଏ ବାମନ; ସମସ୍ତେ ଧନୁ ଧରିଛନ୍ତି, ଖଡ୍ଗ ଧରିଛନ୍ତି, ଶତଘ୍ନୀ ବା ମୁଷଳକୁ ଆୟୁଧ କରି ଧରିଛନ୍ତି, ଉତ୍ତମ ପରିଘ ହାତରେ ଧରିଛନ୍ତି ଏବଂ ସମସ୍ତଙ୍କର ଶରୀର ବିଚିତ୍ର କବଚରେ ସମୁଜ୍ଜ୍ୱଳ ହୋଇଅଛି । ୧୫-୧୮ । ସମସ୍ତେ ନାତିସ୍ଥୂଳ, ନାତିକୃଶ, ନାତିଦୀର୍ଘ, ନାତିହ୍ରସ୍ୱ, ନାତିଗୌର, ନାତିକୃଷ୍ଣ, ନାତିକୁବ୍ଜ ଓ ନାତିବାମନ; ସମସ୍ତେ ବିରୂପ, ବହୁରୂପ, ସୁରୂପ ଏବଂ ତେଜସ୍ୱୀ; ସମସ୍ତେ ପତାକା, ଧ୍ୱଜ ଏବଂ ବିବିଧ ଆୟୁଧ ଧାରଣ କରିଥିବାର ସେ ଦେଖିଲେ । ୧୯-୨୦ । ସେ ମହାକପି

ଶକ୍ତିବୃକ୍ଷାୟୁଧାଂଶ୍ଚୈବ ପଟ୍ଟିଶାଶନିଧାରିଣଃ ।
କ୍ଷେପଣୀପାଶହସ୍ତାଂଶ୍ଚ ଦଦର୍ଶ ସ ମହାକପିଃ । ୨୧ ।
ସ୍ରଗ୍ୱିଣସ୍ତ୍ୱନୁଲିପ୍ତାଂଶ୍ଚ ବରାଭରଣଭୂଷିତାନ୍ ।
ନାନାବେଷସମାୟୁକ୍ତାନ୍ ଯଥା ସ୍ୱୈରଚରାନ୍ ବହୂନ୍ । ୨୨ ।
ତୀକ୍ଷ୍ଣଶୂଳଧରାଂଶ୍ଚୈବ ବଜ୍ରିଣଶ୍ଚ ମହାବଲାନ୍ ।
ଶତସହସ୍ରମବ୍ୟଗ୍ରମାରକ୍ଷଂ ମଧ୍ୟମଂ କପିଃ । ୨୩ ।
ରକ୍ଷୋଽଧିପତିନିର୍ଦ୍ଦିଷ୍ଟଂ ଦଦର୍ଶାନ୍ତଃପୁରାଗ୍ରତଃ ।
ସ ତଦା ତଦ୍‌ଗୃହଂ ଦୃଷ୍ଟ୍ୱା ମହାହାଟକତୋରଣମ୍ । ୨୪ ।
ରାକ୍ଷସେନ୍ଦ୍ରସ୍ୟ ବିଖ୍ୟାତମଦ୍ରିମୂର୍ଦ୍ଧ୍ନି ପ୍ରତିଷ୍ଠିତମ୍ ।
ପୁଣ୍ଡରୀକାବତଂସାଭିଃ ପରିଖାଭିଃ ସମାବୃତମ୍ । ୨୫ ।
ପ୍ରାକାରାବୃତମତ୍ୟନ୍ତଂ ଦଦର୍ଶ ସ ମହାକପିଃ ।
ତ୍ରିବିଷ୍ଟପନିଭଂ ଦିବ୍ୟଂ ଦିବ୍ୟନାଦବିନାଦିତମ୍ । ୨୬ ।
ବାଜିହ୍ରେଷିତସଂଘୁଷ୍ଟମଦ୍‌ଭୂତୈଶ୍ଚ ହୟୈସ୍ତଥା ।
ରଥୈର୍ୟାନୈର୍ବିମାନୈଶ୍ଚ ତଥା ହୟଗଜୈଃ ଶୁଭୈଃ । ୨୭ ।
ବାରଣୈଶ୍ଚ ଚତୁର୍ଦ୍ଦନ୍ତୈଃ ଶ୍ୱେତାଭ୍ରନିଚୟୋପମୈଃ ।
ଭୂଷିତଂ ରୁଚିରଦ୍ୱାରଂ ମତ୍ତୈଶ୍ଚ ମୃଗପକ୍ଷିଭିଃ । ୨୮ ।

---

ଦେଖିଲେ, କେ ଆପଧରୂପେ ଶକ୍ତି ଧରିଛନ୍ତି, କେତେକ ବୃକ୍ଷ ଧରିଛନ୍ତି, କେତେକ ପଟ୍ଟିଶ, କେତେକ ବଜ୍ର, କେତେକ କ୍ଷେପଣୀ, କେତେକ ପାଶ ଧରିଛନ୍ତି । ୨୧ । ସେମାନେ ଦେହରେ ଅନୁଲେପନ ଲଗାଇଛନ୍ତି, ମାଳା ପିନ୍ଧିଛନ୍ତି, ଉତ୍କୃଷ୍ଟ ଆଭରଣ, ବିବିଧ ବେଶ ପିନ୍ଧି ବହୁସଂଖ୍ୟାରେ ନିଜର ଇଚ୍ଛା ଅନୁସାରେ ବିଚରଣ କରୁଛନ୍ତି । ୨୨ । ଅନନ୍ତର ସେ ବାନର ଦେଖିଲେ, ଶତ ସହସ୍ର ତୀକ୍ଷ୍ଣଶୂଳ ଏବଂ ବଜ୍ରଧାରୀ ମହାବଳୀ ରାକ୍ଷସ ମଧ୍ୟମ ଦୁର୍ଗକୁ ସତର୍କଭାବରେ ଜଗି ରହିଛନ୍ତି ।୨୩। ସେ ଅନ୍ତଃପୁର ସମ୍ମୁଖରେ ରାକ୍ଷସାଧିପତି ରାବଣର ନିର୍ଦ୍ଦିଷ୍ଟ ସୁବିଶାଳ;ସୁବର୍ଣ୍ଣତୋରଣଯୁକ୍ତ ଭବନ ଦର୍ଶନକଲେ । ୨୪ । ଏହି ଗୃହ ପର୍ବତଶିଖରରେ ପ୍ରତିଷ୍ଠିତ । ଏହାର ଚତୁର୍ଦ୍ଦିଗରେ ପଦ୍ମପୁଷ୍ପଦ୍ୱାରା ସୁଶୋଭିତ ପରିଖାମାନ ବେଢ଼ିରହିଅଛି । ତାହା ବିଶାଳ ପ୍ରାଚୀରଦ୍ୱାରା ବେଷ୍ଟିତ ହୋଇ ସାକ୍ଷାତ୍ ସ୍ୱର୍ଗସଦୃଶ ସ୍ୱର୍ଗୀୟ ଧ୍ୱନିରେ ନିନାଦିତ ହେଉଅଛି । ୨୫-୨୬ । ଅଶ୍ୱମାନଙ୍କର ହ୍ରେଷାରବରେ ଏହା ମୁଖରିତ ତଥା ଭୂଷଣ-ଧ୍ୱନିରେ ନିନାଦିତ ହେଉଅଛି । ସୁନ୍ଦର ରଥ, ଯାନ, ବିମାନ, ହସ୍ତୀ, ଅଶ୍ୱ, ଶ୍ୱେତ

ରକ୍ଷିତଂ ସୁମହାବୀର୍ଯୈର୍ଯାତୁଧାନୈଃ ସହସ୍ରଶଃ ।
ରାକ୍ଷସାଧିପତେର୍ଗୁପ୍ତମାବବେଶ ଗୃହଂ କପିଃ । ୨୯ ।
ସହେମଜାମ୍ବୂନଦଚକ୍ରବାଳମ୍
ମହାର୍ହମୁକ୍ତାମଣିଭୂଷିତାନ୍ତମ୍ ।
ପରାର୍ଧ୍ୟକାଳାଗୁରୁଚନ୍ଦନାକ୍ତମ୍
ସ ରାବଣାନ୍ତଃପୁରମାବବେଶ । ୩୦ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ସୁନ୍ଦରକାଣ୍ଡେ ଲଙ୍କାପୁରୀପ୍ରବେଶୋ
ନାମ ଚତୁର୍ଥଃ ସର୍ଗଃ

---

ମେଘଖଣ୍ଡସଦୃଶ ଚତୁର୍ଦନ୍ତ ହସ୍ତୀମାନଙ୍କ ଦ୍ୱାରା ତାହା ସୁଶୋଭିତ ହୋଇଅଛି ଏବଂ ତାହାର ରମଣୀୟଦ୍ୱାର ପ୍ରମତ୍ତ ମୃଗପକ୍ଷୀମାନଙ୍କଦ୍ୱାରା ସୁଶୋଭିତ ।୨୭-୨୮। ଏହି ଗୃହ ସହସ୍ର ସହସ୍ର ମହାବୀର୍ଯ୍ୟବାନ୍ ରାକ୍ଷସଙ୍କ ଦ୍ୱାରା ସୁରକ୍ଷିତ । ବାନର ହନୁମାନ୍ ରାକ୍ଷସାଧିପତିଙ୍କର ସେହି ଗୁପ୍ତଗୃହମଧ୍ୟରେ ପ୍ରବେଶ କଲେ । ୨୯ । ଏହାପରେ ସେ ରାବଣର ଅନ୍ତଃପୁର ଗୃହମଧ୍ୟରେ ପ୍ରବେଶକରି ଦେଖିଲେ, ତାହାର ପ୍ରାକାର-ସମୂହ ସ୍ୱର୍ଣ୍ଣନିର୍ମିତହୋଇ ସୁବର୍ଣ୍ଣରଞ୍ଜିତ ଚକ୍ରବାଳ ପରି ଶୋଭାପାଉଅଛି । ଏହାର ଅଭ୍ୟନ୍ତର ବହୁମୂଲ୍ୟମଣିମୁକ୍ତାଆଦି ଦ୍ୱାରା ଭୂଷିତ । ଅତି ଉତ୍କୃଷ୍ଟ କାଳାଗୁରୁ ଓ ଚନ୍ଦନଗନ୍ଧରେ ତାହା ସୁବାସିତ ହୋଇ ରହିଅଛି ।୩୦।

---

# ପଞ୍ଚମଃ ସର୍ଗଃ

ଭବନବିଚୟଃ

ତତଃ ସ ମଧ୍ୟଂ ଗତମଂଶୁମନ୍ତମ୍
ଜ୍ୟୋତ୍ସ୍ନାବିତାନଂ ମୁହୁରୁଦ୍ୱମନ୍ତମ୍ ।
ଦଦର୍ଶ ଧୀମାନ୍ ଭୁବି ଭାନୁମନ୍ତମ୍
ଗୋଷ୍ଠେ ବୃଷଂ ମତ୍ତମିବ ଭ୍ରମନ୍ତମ୍ ।୧।
ଲୋକସ୍ୟ ପାପାନି ବିନାଶୟନ୍ତମ୍
ମହୋଦଧିଂ ଚାପି ସମେଧୟନ୍ତମ୍ ।
ଭୂତାନି ସର୍ବାଣି ବିରାଜୟନ୍ତମ୍
ଦଦର୍ଶ ଶୀତାଂଶୁମଥାଭିଯାନ୍ତମ୍ ।୨।
ଯା ଭାତି ଲକ୍ଷ୍ମୀର୍ଭୁବି ମନ୍ଦରସ୍ଥା
ଯଥା ପ୍ରଦୋଷେଷୁ ଚ ସାଗରସ୍ଥା ।
ତଥୈବ ତୋୟେଷୁ ଚ ପୁଷ୍କରସ୍ଥା
ରରାଜ ସା ଚାରୁନିଶାକରସ୍ଥା ।୩।

---

## ୫ମ ସର୍ଗ

( ଭବନ ଅନ୍ୱେଷଣ )

ଅନନ୍ତର ବୁଦ୍ଧିମାନ୍ ହନୁମାନ୍ ସୂର୍ଯ୍ୟଙ୍କ ସଦୃଶ (ସମଧିକ) ପ୍ରକାଶମାନ, ଗୋଷ୍ଠମଧ୍ୟରେ ଭ୍ରମଣ କରୁଥିବା ମତ୍ତ ବୃଷଭସଦୃଶ ଚନ୍ଦ୍ରଙ୍କୁ ବାରମ୍ବାର ଜ୍ୟୋତ୍ସ୍ନାରାଶି ବିକିରଣ କରି ବିଚରଣ କରୁଥିବାର ଦେଖିଲେ ।୧। ଚନ୍ଦ୍ରଙ୍କର ଉଦୟରେ ସମଗ୍ର ଲୋକର ପାପରାଶି ବିନଷ୍ଟ ହେଉଅଛି, ମହୋଦଧି ପରିବର୍ଦ୍ଧିତ ହେଉଅଛି, ସମଗ୍ର ପ୍ରାଣିଜଗତ୍ ଶୋଭମାନ ହେଉଅଛି ।୨। ଯେଉଁ ଲକ୍ଷ୍ମୀ ପୃଥିବୀରେ ମନ୍ଦରପର୍ବତରେ ବିରାଜିତ, ପ୍ରଦୋଷକାଳରେ ସମୁଦ୍ରରେ ବିରାଜିତ ଏବଂ ଜଳମଧ୍ୟସ୍ଥିତ ପଦ୍ମପୁଷ୍ପରେ ବିରାଜିତ, ସେହି ଲକ୍ଷ୍ମୀ ମନୋହର ଚନ୍ଦ୍ରରେ ବିରାଜିତ ହୋଇଅଛନ୍ତି ।୩। ରୌପ୍ୟନିର୍ମିତ ପଞ୍ଜରମଧ୍ୟରେ ବିରାଜିତ ହଂସ,

ହଂସୋ ଯଥା ରାଜତପଞ୍ଜରସ୍ଥଃ
ସିଂହୋ ଯଥା ମନ୍ଦରକନ୍ଦରସ୍ଥଃ
ବୀରୋ ଯଥା ଗର୍ବିତକୁଞ୍ଜରସ୍ଥ-
ଶ୍ଚନ୍ଦ୍ରୋଽପି ବଭ୍ରାଜ ତଥାମ୍ବରସ୍ଥଃ । ୪ ।
ସ୍ଥିତଃ କକୁଦ୍ମାନିବ ତୀକ୍ଷ୍ଣଶୃଙ୍ଗୋ
ମହାଚଳଃ ଶ୍ୱେତ ଇବୋର୍ଦ୍ଧ୍ୱଶୃଙ୍ଗଃ ।
ହସ୍ତୀବ ଜାମ୍ବୂନଦବଦ୍ଧଶୃଙ୍ଗୋ
ବିଭାତି ଚନ୍ଦ୍ରଃ ପରିପୂର୍ଣ୍ଣଶୃଙ୍ଗଃ । ୫ ।
ବିନଷ୍ଟଶୀତାମ୍ବୁତୁଷାରପଙ୍କୋ
ମହାଗ୍ରହଗ୍ରାହବିନଷ୍ଟପଙ୍କଃ ।
ପ୍ରକାଶଲକ୍ଷ୍ମ୍ୟାଶ୍ରୟନିର୍ମଳାଙ୍କୋ
ରରାଜ ଚନ୍ଦ୍ରୋ ଭଗବାନ୍ ଶଶାଙ୍କଃ । ୬ ।
ଶିଲାତଳଂ ପ୍ରାପ୍ୟ ଯଥା ମୃଗେନ୍ଦ୍ରୋ
ମହାରଣଂ ପ୍ରାପ୍ୟ ଯଥା ଗଜେନ୍ଦ୍ରଃ ।
ରାଜ୍ୟଂ ସମାସାଦ୍ୟ ଯଥା ନରେନ୍ଦ୍ର-
ସ୍ତଥା ପ୍ରକାଶୋ ବିରରାଜ ଚନ୍ଦ୍ରଃ । ୭ ।

---

ମନ୍ଦର ପର୍ବତର ଗୁହାମଧ୍ୟରେ ବିରାଜିତ ସିଂହ ଏବଂ ଗର୍ବିତ ହସ୍ତୀ ଉପରେ ବିରାଜିତ ବୀର ଯୋଦ୍ଧା ପରି ଆକାଶମଣ୍ଡଳରେ ଚନ୍ଦ୍ର ଶୋଭାପାଉଥିଲେ । ୪ । ଚନ୍ଦ୍ରଙ୍କ ମଧ୍ୟସ୍ଥିତ ମୃଗର ଶୃଙ୍ଗ ସ୍ପଷ୍ଟ ପ୍ରକାଶିତ ତୀକ୍ଷ୍ଣଶୃଙ୍ଗ ବୃଷଭ, ଉନ୍ନତ ଶିଖରଯୁକ୍ତ ଶ୍ୱେତବର୍ଣ୍ଣ ମହାପର୍ବତ ଅଥବା ସୁବର୍ଣ୍ଣ ଗୁଡ଼ଣି ହୋଇଥିବା କୃତ୍ରିମ ଶୃଙ୍ଗବିଶିଷ୍ଟ ହସ୍ତୀପରିଶୋଭାପାଉଥିଲେ ।୫। ତାହାର ଶୀତଳ ଜଳବିନ୍ଦୁରୂପ ପଙ୍କ ତିରୋହିତ ହେବାରୁ ମହାଗ୍ରହ ସୂର୍ଯ୍ୟଙ୍କ କରଣସଂସ୍ରବରେ ଚନ୍ଦ୍ରଙ୍କର ମଳିନତା ଦୂର ହୋଇଅଛି । ସୁପ୍ରକାଶିତ ଲକ୍ଷ୍ମୀଙ୍କର ସଂଯୋଗହେତୁରୁ ଚନ୍ଦ୍ରଙ୍କର କଳଙ୍କ ଚିହ୍ନ ସ୍ପଷ୍ଟରୂପେ ପ୍ରକାଶିତ ହୋଇ ଶଶାଙ୍କ ଦେବ ସବିଶେଷ ଶୋଭମାନ ହୋଇଅଛନ୍ତି । ୬ । ସିଂହ ଶିଳାଖଣ୍ଡ ଉପରେ ଉପସ୍ଥିତ ହୋଇ ଯେପରି ଶୋଭାପାଏ, ଗଜେନ୍ଦ୍ର ମହାଯୁଦ୍ଧର ମଧ୍ୟବର୍ତ୍ତୀ ହୋଇ ଯେପରି ଶୋଭାପାଏ ଏବଂ ରାଜା ରାଜ୍ୟ ଲାଭକରି ଯେପରି ଶୋଭା ପାଆନ୍ତି, ପ୍ରକାଶମାନ ଚନ୍ଦ୍ର ସେହିପରି ଶୋଭାପାଉଥିଲେ । ୭ । ପ୍ରକାଶମାନ ଚନ୍ଦ୍ରଙ୍କର

ପ୍ରକାଶ ଚନ୍ଦ୍ରୋଦୟନଷ୍ଟଦୋଷଃ
ପ୍ରବୃଦ୍ଧରକ୍ଷଃପିଶିତାଶଦୋଷଃ ।
ରାମାଭିରାମେରିତଚିତ୍ତଦୋଷଃ
ସର୍ବପ୍ରକାଶୋ ଭଗବାନ୍ ପ୍ରଦୋଷଃ । ୮ ।
ତନ୍ତ୍ରୀସ୍ୱରାଃ କର୍ଣ୍ଣସୁଖାଃ ପ୍ରବୃତ୍ତାଃ
ସ୍ୱପନ୍ତି ନାର୍ଯ୍ୟଃ ପତିଭିଃ ସୁପୃକ୍ତାଃ ।
ନକ୍ତଂଚରାଶ୍ଚାପି ତଥା ପ୍ରବୃତ୍ତା
ବିହର୍ତୁମତ୍ୟଦ୍ଭୁତରୌଦ୍ରବୃତ୍ତାଃ । ୯ ।
ମତ୍ତପ୍ରମତ୍ତାନି ସମାକୁଲାନି
ରଥାଶ୍ୱଭଦ୍ରାସନସଂକୁଲାନି ।
ବୀରଶ୍ରିୟା ଚାପି ସମାକୁଲାନି
ଦଦର୍ଶ ଧୀମାନ୍ ସ କପିଃ କୁଲାନି । ୧୦ ।
ପରସ୍ପରଂ ଚାଧିକମାକ୍ଷିପନ୍ତି
ଭୁଜାଂଶ୍ଚ ପୀନାନଧିବିକ୍ଷିପନ୍ତି ।
ମତ୍ତପ୍ରଲାପାନଧିବିକ୍ଷିପନ୍ତି
ମତ୍ତାନି ଚାନ୍ୟୋନ୍ୟମଧିକ୍ଷିପନ୍ତି । ୧୧ ।

---

ଉଦୟହେତୁରୁ ଅନ୍ଧକାର ବିନଷ୍ଟ ହୋଇଅଛି, ରାକ୍ଷସମାନଙ୍କର ମାଂସଭକ୍ଷଣ ଦୋଷ ଅତିଶୟ ବର୍ଦ୍ଧିତ ହୋଇଅଛି, ରମଣୀମାନଙ୍କର ପ୍ରୀତି-ପ୍ରଦ ପ୍ରଣୟ-କଳହ ପରିତ୍ୟକ୍ତ ହୋଇଅଛି; ଏହିପରିଭାବରେ ପ୍ରଦୋଷକାଳ ସର୍ବଥା ଶୋଭାଯୁକ୍ତ ହୋଇଅଛି । ୮ । କର୍ଣ୍ଣ-ପ୍ରୀତିକର ବୀଣାଧ୍ୱନି ନିସୃତ ହେଉଅଛି, ରମଣୀମାନେ ପତିମାନଙ୍କଦ୍ୱାରା ଗାଢ଼ଭାବରେ ଆଲିଙ୍ଗିତ ହୋଇ ଶୟନ କରିଅଛନ୍ତି ଏବଂ ଅତିଶୟ ଅଦ୍ଭୁତ ତଥା ରୌଦ୍ରକର୍ମକାରୀ ନିଶାଚର ରାକ୍ଷସମାନେ ବିହାର କରିବାରେ ପ୍ରବୃତ୍ତ ହୋଇଅଛନ୍ତି । ୯ । ବୁଦ୍ଧିମାନ୍ ହନୁମାନ୍ ଦେଖିଲେ, ରାକ୍ଷସମାନଙ୍କର ଗୃହସମୂହ ରଥ, ଅଶ୍ୱ ଏବଂ ସିଂହାସନମାନଙ୍କରେ ପୂର୍ଣ୍ଣ ହୋଇଅଛି ଏବଂ ବୀରଶ୍ରୀସମନ୍ୱିତ ହୋଇ ମତ୍ତ ଏବଂ ପ୍ରମତ୍ତ ରାକ୍ଷସମାନଙ୍କ ଦ୍ୱାରା ସମାକୀର୍ଣ୍ଣ ହୋଇଅଛି । ୧୦ । ମଦମତ୍ତ ରାକ୍ଷସମାନେ ପରସ୍ପର ଅତ୍ୟଧିକ ବାଗ୍‌ବିତଣ୍ଡା କରୁଛନ୍ତି, କିଏ ବା ପୃଥୁଳ ହସ୍ତବିକ୍ଷେପସହକାରେ ଉନ୍ମତ୍ତ ପ୍ରଳାପବାକ୍ୟ ପ୍ରୟୋଗ କରୁଛି, କିଏ ବା ଉନ୍ମତ୍ତ

ରକ୍ଷାଂସିବକ୍ଷାଂସି ଚ ବିକ୍ଷିପନ୍ତି
ଗାତ୍ରାଣି କାନ୍ତାସୁ ଚ ବିକ୍ଷିପନ୍ତି ।
ରୂପାଣି ଚିତ୍ରାଣି ଚ ବିକ୍ଷିପନ୍ତି
ଦୃଢ଼ାନି ଚାପାନି ଚ ବିକ୍ଷିପନ୍ତି । ୧୨ ।
ଦଦର୍ଶ କାନ୍ତାଶ୍ଚ ସମାଲଭନ୍ତ୍ୟ-
ସ୍ତଥାପରାସ୍ତତ୍ର ପୁନଃ ସ୍ୱପନ୍ତ୍ୟଃ ।
ସୁରୂପବକ୍ତ୍ରାଶ୍ଚ ତଥା ହସନ୍ତ୍ୟଃ
କ୍ରୁଦ୍ଧାଃ ପରାଶ୍ଚାପି ବିନିଃଶ୍ୱସନ୍ତ୍ୟଃ । ୧୩ ।
ମହାଗଜୈଶ୍ଚାପି ତଥା ନଦଦ୍ଭିଃ
ସୁପୂଜିତୈଶ୍ଚାପି ତଥା ସୁସଦ୍ଭିଃ ।
ରରାଜ ବୀରୈଶ୍ଚ ବିନିଃଶ୍ୱସଦ୍ଭି-
ର୍ହ୍ରଦୋ ଭୁଜଙ୍ଗୈରିବ ନିଃଶ୍ୱସଦ୍ଭିଃ । ୧୪ ।
ବୁଦ୍ଧିପ୍ରଧାନାନ୍ ରୁଚିରାଭିଧାନାନ୍
ସଂଶ୍ରଦ୍ଦଧାନାଞ୍ଜଗତଃ ପ୍ରଧାନାନ୍ ।
ନାନାବିଧାନାନ୍ ରୁଚିରାଭିଧାନାନ୍
ଦଦର୍ଶ ତସ୍ୟାଂ ପୁରି ଯାତୁଧାନାନ୍ । ୧୫ ।

---

ହୋଇ ପରସ୍ପରକୁ ନିନ୍ଦା କରୁଛନ୍ତି । ୧୧ । ରାକ୍ଷସମାନେ କିଏ ବକ୍ଷଃସ୍ଥଳ ବିକ୍ଷିପ୍ତ କରୁଛନ୍ତି, କିଏ ବା ପତ୍ନୀମାନଙ୍କ ଉପରେ ନିଜର ଶରୀର ନିକ୍ଷେପ କରୁଛନ୍ତି, କିଏ ବା ବିବିଧ ବିଚିତ୍ର ବେଶ ଧାରଣ କରୁଛନ୍ତି, କିଏ ବା ଦୃଢ଼ଭାବରେ ଧନୁ ଆକର୍ଷଣ କରୁଛନ୍ତି । ୧୨ । ସେ ଦେଖିଲେ, ରମଣୀମାନେ କିଏ ଚନ୍ଦନଲେପନ କରୁଛନ୍ତି, ଆଉ କିଏ ଶୋଇରହିଛନ୍ତି, କିଏ ପ୍ରଫୁଲ୍ଲମୁଖରେ ହାସ୍ୟ କରୁଛନ୍ତି, କିଏ ବା କ୍ରୁଦ୍ଧ ହୋଇ ପଛରେ ପୁଣି ଦୀର୍ଘନିଃଶ୍ୱାସ ପରିତ୍ୟାଗ କରୁଛନ୍ତି । ୧୩ । ସେହି ପୁରୀ ସେତେବେଳେ ମଦମତ୍ତ ହସ୍ତୀମାନଙ୍କର ଗର୍ଜନ ଓ ମହାମାନ୍ୟ ସାଧୁଚରିତ ବୀରମାନଙ୍କର ନିଃଶ୍ୱାସ ଦ୍ୱାରା ଫଁ ଫଁ ହେଉଥିବା ସର୍ପପୂର୍ଣ୍ଣ ହ୍ରଦପରି ଶୋଭାପାଉଅଛି । ୧୪ । ସେ ସେହି ପୁରୀମଧ୍ୟରେ ଅତି ବୁଦ୍ଧିମାନ୍ ମନୋହର ନାମଧାରୀ, ବିବିଧ ବେଶଧାରୀ ଜଗତମଧ୍ୟରେ ପ୍ରଧାନ ଏବଂ ସୁନ୍ଦର ରାକ୍ଷସମାନଙ୍କୁ ଦେଖିଲେ ।୧୫। ସେ ନାନା ଗୁଣବିଶିଷ୍ଟ,ଆତ୍ମଗୁଣ

ନନନ୍ଦ ଦୃଷ୍ଟ୍ୱା ସ ଚ ତାନ୍ ସୁରୂପାନ୍-
ନାନାଗୁଣାନାତ୍ମଗୁଣାନୁରୂପାନ୍ ।
ବିଦ୍ୟୋତମାନାନ୍ ସ ଚ ତାନ୍ ସୁରୂପାନ୍
ଦଦର୍ଶ କାଂଶ୍ଚିଚ୍ଚ ପୁନର୍ବିରୂପାନ୍ । ୧୬ ।
ତତୋ ବରାର୍ହାଃ ସବିଶୁଦ୍ଧଭାବା-
ସ୍ତେଷାଂ ସ୍ତ୍ରିୟସ୍ତତ୍ର ମହାନୁଭାବାଃ ।
ପ୍ରିୟେଷୁ ପାନେଷୁ ଚ ସକ୍ତଭାବାଃ
ଦଦର୍ଶ ତାରା ଇବ ସୁପ୍ରଭାବାଃ । ୧୭ ।

ଶ୍ରିୟା ଜ୍ୱଲନ୍ତୀସ୍ତ୍ରପୟୋପଗୂଢ଼ା
ନିଶୀଥକାଲେ ରମଣୋପଗୂଢ଼ାଃ ।
ଦଦର୍ଶ କାଶ୍ଚିତ୍ ପ୍ରମଦୋପଗୂଢ଼ା
ଯଥା ବିହଙ୍ଗ୍ୟା ବିହଗୋପଗୂଢ଼ାଃ । ୧୮ ।

ଅନ୍ୟାଃ ପୁନର୍ହର୍ମ୍ୟତଲୋପବିଷ୍ଟା-
ସ୍ତତ୍ରପ୍ରିୟାଙ୍କେଷୁ ସୁଖୋପବିଷ୍ଟାଃ ।
ଭର୍ତ୍ତୁଃ ପରା ଧର୍ମପରା ନିବିଷ୍ଟା
ଦଦର୍ଶ ଧୀମାନ୍ମଦନୋପବିଷ୍ଟାଃ । ୧୯ ।
ଅପ୍ରାବୃତାଃ କାଞ୍ଚନରାଜିବର୍ଣ୍ଣାଃ
କାଶ୍ଚିତ୍ପରାର୍ଧ୍ୟାସ୍ତପନୀୟବର୍ଣ୍ଣାଃ ।

---

ସଦୃଶ ସ୍ୱରୂପବିଶିଷ୍ଟ ରାକ୍ଷସମାନଙ୍କୁ ଦେଖି ଏବଂ କୌଣସି କୌଣସି ବିରୂପ ରାକ୍ଷସମାନଙ୍କୁ ମଧ୍ୟ ଦେଖି ଆନନ୍ଦିତ ହେଲେ । ୧୬ । ଅନନ୍ତର ସେ ଦେଖିଲେ, ସେଠାରେ ତାରା-ସଦୃଶ ପ୍ରଭାବିଶିଷ୍ଟ ମହାନୁଭାବା ସତ୍ସ୍ୱଭାବା ନାରୀମାନେ ମଦ୍ୟପାନରେ ଏବଂ ପ୍ରିୟ ପତିମାନଙ୍କଠାରେ ବିଶେଷ ଆସକ୍ତ ହୋଇରହିଛନ୍ତି । ୧୭ । ପୁଣି ସେ ଦେଖିଲେ, ନିଶୀଥସମୟରେ ବିହଙ୍ଗୀ ବିହଙ୍ଗକର୍ତ୍ତୃକ ଆଲିଙ୍ଗିତ ହେଲାପରି, ନିଜ ନିଜ ସ୍ୱାମୀ-କର୍ତ୍ତୃକ ଆଲିଙ୍ଗିତ ହୋଇ କୌଣସି କୌଣସି ରମଣୀ ଲଜ୍ଜାଭିଭୂତା ହୋଇ ନିଜ ନିଜ ରୂପଲାବଣ୍ୟରେ ପ୍ରଜ୍ୱଳିତ ହେଉଛନ୍ତି । ୧୮ । ଧୀମାନ୍ ହନୁମାନ୍ ଦେଖିଲେ, ଅନ୍ୟ କୌଣସି କୌଣସି ଧର୍ମନିଷ୍ଠା, ସ୍ୱାମୀର ପ୍ରିୟତମା ରମଣୀ ମଦନାବିଷ୍ଟଚିତ୍ତା ହୋଇ ହର୍ମ୍ୟତଳରେ, କିଏ ବା ସ୍ୱାମୀର କୋଳରେ ଉପବିଷ୍ଟା ହୋଇଅଛନ୍ତି ।୧୯ । ସେ ପୁଣି ଦେଖିଲେ, ସ୍ୱର୍ଣ୍ଣବର୍ଣ୍ଣା, ଚନ୍ଦ୍ରସଦୃଶ ଉଜ୍ଜ୍ୱଳବର୍ଣ୍ଣବିଶିଷ୍ଟା କୌଣସି କୌଣସି

ପୁନଶ୍ଚ କାଶ୍ଚିଚ୍ଛଶଲକ୍ଷ୍ମବର୍ଣ୍ଣାଃ
କାନ୍ତପ୍ରହୀଣା ରୁଚିରାଙ୍ଗବର୍ଣ୍ଣାଃ । ୨୦ ।
ତତଃ ପ୍ରିୟାନ୍ ପ୍ରାପ୍ୟ ମନୋଭିରାମାନ
ସୁପ୍ରୀତିଯୁକ୍ତାଃ ସୁମନୋଭିରାମାଃ ।
ଗୃହେଷୁ ହୃଷ୍ଟାଃ ପରମାଭିରାମା
ହରିପ୍ରବୀରଃ ସ ଦଦର୍ଶ ରାମାଃ । ୨୧ ।
ଚନ୍ଦ୍ରପ୍ରକାଶାଶ୍ଚ ହି ବକ୍ତ୍ରମାଲା
ବକ୍ରାଃ ସୁପକ୍ଷ୍ମାଶ୍ଚ ସୁନେତ୍ରମାଲାଃ ।
ବିଭୂଷଣାନାଂ ଚ ଦଦର୍ଶ ମାଲାଃ
ଶତହ୍ରଦାନାମିବ ଚାରୁମାଲାଃ । ୨୨ ।
ନ ତ୍ବେବ ସୀତାଂ ପରମାଭିଜାତାମ୍
ପଥି ସ୍ଥିତେ ରାଜକୁଲେ ପ୍ରଜାତାମ୍ ।
ଲତାଂ ପ୍ରଫୁଲ୍ଲାମିବ ସାଧୁ ଜାତାମ୍
ଦଦର୍ଶ ତନ୍ବୀଂ ମନସାଭିଜାତାମ୍ । ୨୩ ।
ସନାତନେ ବର୍ତ୍ମନି ସଂନିବିଷ୍ଟାମ୍
ରାମେକ୍ଷଣୀଂ ତାଂ ମଦନାଭିବିଷ୍ଟାମ୍ ।
ଭର୍ତୁର୍ମନଃ ଶ୍ରୀମଦନୁପ୍ରବିଷ୍ଟାମ୍
ସ୍ତ୍ରୀଭ୍ୟଃ ପରାଭ୍ୟଶ୍ଚ ସଦା ବିଶିଷ୍ଟାମ୍ । ୨୪ ।

---

ରମଣୀ ଦେହରୁ ଆବରଣବସ୍ତ୍ର କାଢ଼ିଦେଇ ସ୍ୱାମୀ ବିରହରେ ନିଜର ରମଣୀୟ ଅଙ୍ଗବର୍ଣ୍ଣ ପ୍ରକାଶକରି ବସିରହିଛନ୍ତି । ୨୦ । ସେ ବାନରଶ୍ରେଷ୍ଠ ପୁଣି ଦେଖିଲେ, କୌଣସି କୌଣସି ରମଣୀ ନିଜର ମନୋରଞ୍ଜକ ସ୍ୱାମୀମାନଙ୍କୁ ପାଇ ସେମାନଙ୍କ ପ୍ରତି ଅତିଶୟ ପ୍ରୀତିଯୁକ୍ତା ହୋଇ ଆନନ୍ଦମନରେ ଗୃହମାନଙ୍କରେ ବସିଛନ୍ତି । ୨୧ । ଚନ୍ଦ୍ରସଦୃଶ ପ୍ରଭାବିଶିଷ୍ଟ ମୁଖପଂକ୍ତି, ବକ୍ରଦୃଷ୍ଟି ଓ ସୁକମାର ପକ୍ଷ୍ମବିଶିଷ୍ଟ ସୁନ୍ଦରୁ-ନେତ୍ରଶ୍ରେଣି ଏବଂ ବିଦ୍ୟୁତ୍‌ର ସୁନ୍ଦର ମାଳାସଦୃଶ ଦୀପ୍ୟମାନ ଅଳଙ୍କାରରାଜି ସେ ଦେଖିଲେ । ୨୨ । ଯେ ସତ୍‌ପଥବର୍ତ୍ତୀ ସୁମହତ୍ ରାଜବଂଶରେ ଜନ୍ମଗ୍ରହଣ କରିଛନ୍ତି, ଯେ ଅତିଶୟ ଆଭିଜାତ୍ୟସମ୍ପନ୍ନା, ଯେ ବିଧାତାଙ୍କର ମାନସିକ କଳ୍ପନାରେ ସୃଷ୍ଟ ହୋଇଥିଲେ, ପ୍ରଫୁଲ୍ଲିତ ଲତାସଦୃଶୀ ସେହି ସୁତନ୍ୱୀ ସୀତାଙ୍କୁ କିନ୍ତୁ ସେ ଦେଖି-ପାରିଲେ ନାହିଁ । ୨୩ । ଯେ ସର୍ବଦା ସନାତନ ଧର୍ମପଥରେ ନିବିଷ୍ଟ ରହିଛନ୍ତି, ରାମଙ୍କ ପ୍ରତି ଯାହାଙ୍କର ଦୃଷ୍ଟି ସର୍ବଦା ନିବିଷ୍ଟ ରହିଛି, ଯେ ସ୍ୱାମୀଙ୍କର ନିର୍ମଳମନରେ ସର୍ବଦା ପ୍ରବେଶକରି ରହିଛନ୍ତି ଏବଂ ଯେ ସମୁଦାୟ ଉତ୍କୃଷ୍ଟ ମହିଳାଙ୍କ ମଧ୍ୟରେ ସର୍ବଦା ବିଶେଷ ସ୍ଥାନ ଲାଭକରିଅଛନ୍ତି, ସେହି କାମପୀଡ଼ିତା ସୀତାଙ୍କୁ ସେ

ଉଷ୍ଣାର୍ଦ୍ଦିତାଂ ସାନୃସୃତାସ୍ରକଣ୍ଠୀମ୍
ପୁରା ବରାର୍ହୋତ୍ତମନିଷ୍କକଣ୍ଠୀମ୍ ।
ସୁଜାତପକ୍ଷ୍ମାମଭିରକ୍ତକଣ୍ଠୀମ୍
ବନେ ପ୍ରବୃତ୍ତାମିବ ନୀଳକଣ୍ଠୀମ୍ । ୨୫ ।
ଅବ୍ୟକ୍ତରେଖାମିବ ଚନ୍ଦ୍ରଲେଖାମ୍ ।
ପାଂସୁପ୍ରଦିଗ୍ଧାମିବ ହେମରେଖାମ୍ ।
କ୍ଷତପ୍ରରୂଢ଼ାମିବ ବର୍ଣ୍ଣରେଖାମ୍
ବାୟୁପ୍ରଭୁଗ୍ନାମିବ ମେଘରେଖାମ୍ । ୨୬ ।
ସୀତାମପଶ୍ୟନ୍ମନୁଜେଶ୍ୱରସ୍ୟ
ରାମସ୍ୟ ପତ୍ନୀଂ ବଦତାଂ ବରସ୍ୟ ।
ବଭୂବ ଦୁଃଖୋପହତଶ୍ଚିରସ୍ୟ
ପ୍ଲବଙ୍ଗମୋ ମନ୍ଦ ଇବାଚିରସ୍ୟ । ୨୭ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ସୁନ୍ଦରକାଣ୍ଡେ ଭବନବିଚୟୋ
ନାମ ପଞ୍ଚମଃ ସର୍ଗଃ ।

---

ଦେଖିଲେ ନାହିଁ । ୨୪। ଯେ ସ୍ୱାମିବିରହରେ ବଧୂରା ହୋଇ ସର୍ବଦା ଅଶ୍ରୁପୂର୍ଣ୍ଣକଣ୍ଠୀ ହୋଇ ରହିଛନ୍ତି, ପୂର୍ବେ ରାମଙ୍କ ସହବାସସମୟରେ ଅତ୍ୟୁତ୍କୃଷ୍ଟ ଭୂଷଣାଗ୍ରଗଣ୍ୟ ପଦକ ଯାହାଙ୍କ କଣ୍ଠଦେଶକୁ ଭୂଷିତ କରୁଥିଲା, ଯାହାଙ୍କର ପକ୍ଷ୍ମ ଅତି ସୁନ୍ଦର ଓ ସ୍ୱର ଅତି ମଧୁର ଏବଂ ଯେ ଅରଣ୍ୟମଧ୍ୟରେ ନୃତ୍ୟପରାୟଣା ମୟୂରୀପରି ମନୋହାରିଣୀ, ଯେ ସ୍ୱାମିବିରହରେ ସ୍ପଷ୍ଟ ପ୍ରକାଶିତ ହେଉ ନ ଥିବା ଚନ୍ଦ୍ରଲେଖାପରି ପାଂଶୁଲିପ୍ତ ସୁବର୍ଣ୍ଣରେଖାପରି, କ୍ଷତୋତ୍ପନ୍ନ ବର୍ଣ୍ଣରେଖାପରି ବା ବାୟୁବିତାଡ଼ିତ ମେଘରେଖାପରି ଅତି ଶୋଚନୀୟମୂର୍ତ୍ତି ଧାରଣକରିଛନ୍ତି, ମନୁଜେଶ୍ୱର ବାଗ୍ମିଶ୍ରେଷ୍ଠ ରାମଙ୍କର ସହଧର୍ମିଣୀ ସେହି ସୀତାଙ୍କୁ ଦୀର୍ଘକାଳ ଅନ୍ୱେଷଣକରି ମଧ୍ୟ ଦେଖିବାକୁ ନ ପାଇ କପିବର ହନୁମାନ୍ ଅତିଶୟ ଦୁଃଖିତ ହେଲେ ଏବଂ କିୟତ୍‌କାଳ ପାଇଁ ଶିଥିଳପ୍ରଯତ୍ନ ହୋଇପଡ଼ିଲେ । ୨୫-୨୭।

# ଷଷ୍ଠଃ ସର୍ଗଃ

## ରାବଣଗୃହାବେକ୍ଷଣମ୍

ସ ନିକାମଂ ବିମାନେଷୁ ବିଚରନ୍ କାମରୂପଧୃକ୍ ।
ବିଚଚାର କପିର୍ଲଙ୍କାଂ ଲାଘବେନ ସମନ୍ୱିତଃ । ୧ ।
ଆସସାଦ ଚ ଲକ୍ଷ୍ମୀବାନ୍ ରାକ୍ଷସେନ୍ଦ୍ରନିବେଶନମ୍ ।
ପ୍ରାକାରେଣାର୍କବର୍ଣ୍ଣେନ ଭାସ୍ୱରେଣାଭିସଂବୃତମ୍ । ୨ ।
ରକ୍ଷିତଂ ରାକ୍ଷସୈର୍ଭୀମୈଃ ସିଂହୈରିବ ମହଦ୍ୱନମ୍ ।
ସମୀକ୍ଷମାଣୋ ଭବନଂ ଚକାଶେ କପିକୁଞ୍ଜରଃ । ୩ ।
ରୂପ୍ୟକୋପହିତୈଶ୍ଚିତ୍ରୈସ୍ତୋରଣୈର୍ହେମଭୂଷଣୈ ।
ବିଚିତ୍ରାଭିଶ୍ଚ କକ୍ଷ୍ୟାଭିର୍ଦ୍ୱାରୈଶ୍ଚ ରୁଚିରୈର୍ବୃତମ୍ । ୪ ।
ଗଜାସ୍ଥିତୈର୍ମହାମାତ୍ରୈଃ ଶୂରୈଶ୍ଚ ବିଗତଶ୍ରମୈଃ ।
ଉପସ୍ଥିତମସଂହାର୍ଯୈର୍ହୟୈଃ ସ୍ୟନ୍ଦନଯାୟିଭିଃ । ୫ ।
ସିଂହବ୍ୟାଘ୍ରତନୁତ୍ରାଣୈର୍ଦାନ୍ତକାଞ୍ଚନରାଜତୈଃ ।
ଘୋଷବଦ୍ଭିର୍ବିଚିତ୍ରୈଶ୍ଚ ସଦା ବିଚରିତଂ ରଥୈଃ । ୬ ।

---

# ଷଷ୍ଠ ସର୍ଗ

## ( ରାବଣଗୃହଦର୍ଶନ )

କାମରୂପଧାରୀ ହନୁମାନ୍ ଏହି ସବୁ ଗୃହରେ ବିଚରଣ କରି କ୍ଷିପ୍ରଗତିରେ ପୁନର୍ବାର ଲଙ୍କାମଧ୍ୟରେ ବିଚରଣ କରିବାକୁ ଲାଗିଲେ ।୧। ଅନନ୍ତର ଶ୍ରୀମାନ୍ ହନୁମାନ୍ ରାକ୍ଷସରାଜ ରାବଣଗୃହରେ ପହଞ୍ଚିଲେ । ତାହା ସୂର୍ଯ୍ୟସଦୃଶ ବର୍ଣ୍ଣବିଶିଷ୍ଟ ଦେଦୀପ୍ୟମାନ ପ୍ରାଚୀରରେ ବେଷ୍ଟିତ ହୋଇଥିଲା । ୨ । ସିଂହମାନେ ଯେପରି ମହାବନକୁ ରକ୍ଷାକରନ୍ତି, ସେହିପରି ଭୀଷଣ ରାକ୍ଷସମାନଙ୍କ ଦ୍ୱାରା ଏହା ସୁରକ୍ଷିତ ହେଉଥିଲା । କପିଶ୍ରେଷ୍ଠ ହନୁମାନ୍ ଏହି ଗୃହକୁ ଚାହିଁ ଚାହିଁ କରି ଦେଖି ଦେଖି ନିଜର ଶୋଭା ବିସ୍ତାର କରିବାକୁ ଲାଗିଲେ । ୩। ସେହି ଗୃହ ବହୁ କକ୍ଷ୍ୟାସମନ୍ୱିତ ଏବଂ ମନୋହର ଦ୍ୱାରରେ ଶୋଭିତ । ଏହାର ତୋରଣମାନ ରୌପ୍ୟନିର୍ମିତ ଓ ସୁବର୍ଣ୍ଣଖଚିତ । ୪ । ଶ୍ରମହୀନ ବୀର ଗଜାରୋହୀ ମହାମାତ୍ରଗଣ ଏବଂ ଅପ୍ରତିହତବେଗଶାଳୀ ରଥବାହୀ ଅଶ୍ୱମାନେ ସେଠାରେ ରହିଥିଲେ । ୫ । ସିଂହ ଓ ବ୍ୟାଘ୍ରଚର୍ମଦ୍ୱାରା ଆଚ୍ଛାଦିତ, ସ୍ୱର୍ଣ୍ଣ, ରୌପ୍ୟ ଓ ହସ୍ତିଦନ୍ତଖଚିତ ବିଚିତ୍ର ରଥସବୁ ସେଠାରେ ସଶବ୍ଦରେ ସର୍ବଦା

ବହୁରତ୍ନସମାକୀର୍ଣ୍ଣଂ ପରାର୍ଧ୍ୟାସନଭୂଷିତମ୍ ।
ମହାରଥସମାବାସଂ ମହାରଥମହାସନମ୍ । ୭ ।
ଦୃଶ୍ୟୈଶ୍ଚ ପରମୋଦାରୈସ୍ତୈସ୍ତୈଶ୍ଚ ମୃଗପକ୍ଷିଭିଃ ।
ବିବିଧୈର୍ବହୁସାହସ୍ରୈଃ ପରିପୂର୍ଣ୍ଣଂ ସମନ୍ତତଃ । ୮ ।
ବିନୀତୈରନ୍ତପାଲୈଶ୍ଚ ରକ୍ଷୋଭିଶ୍ଚ ସୁରକ୍ଷିତମ୍ ।
ମୁଖ୍ୟାଭିଶ୍ଚ ବରସ୍ତ୍ରୀଭିଃ ପରିପୂର୍ଣ୍ଣଂ ସମନ୍ତତଃ । ୯ ।
ମୁଦିତପ୍ରମଦାରତ୍ନଂ ରାକ୍ଷସେନ୍ଦ୍ରନିବେଶନମ୍ ।
ବରାଭରଣସଂହ୍ରାଦୈଃ ସମୁଦ୍ରସ୍ୱନନିଃସ୍ୱନମ୍ । ୧୦ ।
ତଦ୍ରାଜଗୁଣସଂପନ୍ନଂ ମୁଖ୍ୟୈଶ୍ଚ ବରଚନ୍ଦନୈଃ ।
ମହାଜନସମାକୀର୍ଣ୍ଣଂ ସିଂହୈରିବ ମହଦ୍ୱନମ୍ । ୧୧ ।
ଭେରୀମୃଦଙ୍ଗାଭିରୁତଂ ଶଙ୍ଖଘୋଷବିନାଦିତମ୍ ।
ନିତ୍ୟାର୍ଚ୍ଚିତଂ ପର୍ବହୁତଂ ପୂଜିତଂ ରାକ୍ଷସୈଃ ସଦା । ୧୨ ।
ସମୁଦ୍ରମିବ ଗମ୍ଭୀରଂ ସମୁଦ୍ରସମନିଃସ୍ୱନମ୍ ।
ମହାତ୍ମନୋ ମହଦ୍ବେଶ୍ମ ମହାରତ୍ନପରିଚ୍ଛଦମ୍ । ୧୩ ।

---

ବିଚରଣ କରୁଥିଲା । ୬ । ନାନାବିଧ ରତ୍ନ, ଅତ୍ୟୁତ୍କୃଷ୍ଟ ଆସନ ଏବଂ ପାତ୍ର, ବଡ଼ ବଡ଼ ରଥ, ବଡ଼ ବଡ଼ ଆସନ ଏବଂ ମହାରଥୀମାନଙ୍କ ଦ୍ୱାରା ସେ ଗୃହ ପୂର୍ଣ୍ଣ ହୋଇଥିଲା । ୭। ଅତି ସୁନ୍ଦର ଏବଂ ସୁଦୃଶ୍ୟ ନାନା ଜାତୀୟ ବହୁ ସହସ୍ର ମୃଗ ଏବଂ ପକ୍ଷୀଙ୍କ ଦ୍ୱାରା ସେ ଗୃହ ଚାରିଆଡ଼େ ପୂର୍ଣ୍ଣ ହୋଇଥିଲା । ୮ । ସୀମାରକ୍ଷକ ସୁଶିକ୍ଷିତ ରାକ୍ଷସମାନେ ତାହାକୁ ଉତ୍ତମରୂପେ ଜଗିରହିଥିଲେ । ସେ ଗୃହ ସର୍ବତ୍ର ପ୍ରଧାନ ପ୍ରଧାନ ଉତ୍କୃଷ୍ଟ ରମଣୀମାନଙ୍କ ଦ୍ୱାରା ପରିପୂର୍ଣ୍ଣ ହୋଇଥିଲା ।୯ । ରାକ୍ଷସରାଜ ରାବଣର ସେହି ଘର ସ୍ତ୍ରୀରତ୍ନମାନଙ୍କର ଆନନ୍ଦଧ୍ୱନିରେ ପୂର୍ଣ୍ଣ ହୋଇଥିଲା ଏବଂ ଉତ୍କୃଷ୍ଟ ଅଳଙ୍କାରମାନଙ୍କ ଶବ୍ଦରେ ସମୁଦ୍ରଗର୍ଜନପରି ମୁଖରିତ ହେଉଥିଲା । ୧୦ । ସେହି ଗୃହ ରାଜଭବନୋଚିତ ସମସ୍ତ ଲକ୍ଷଣରେ ସମନ୍ୱିତ ଏବଂ ଉତ୍କୃଷ୍ଟ ଚନ୍ଦନଗନ୍ଧରେ ସୁବାସିତ ହେଉଥିଲା । ସିଂହମାନେ ମହାରଣ୍ୟରେ ପରି ରହିଥିଲାପରି ପ୍ରଧାନ ପ୍ରଧାନ ବ୍ୟକ୍ତିମାନଙ୍କଦ୍ୱାରା ତାହା ପରିପୂର୍ଣ୍ଣ ହୋଇଥିଲା । ୧୧। ଭେରୀ, ମୃଦଙ୍ଗ ଓ ଶଙ୍ଖଶବ୍ଦରେ ତାହା ନିନାଦିତ ହେଉଥିଲା। ଏବଂ ରାକ୍ଷସମାନେ ସର୍ବଦା ସେଠାରେ ଦେବାର୍ଚ୍ଚନା, ପୂଜା ଏବଂ ପର୍ବକାଳୀନ ହୋମଆଦି କରୁଥିଲେ ।୧୨। ମହାତ୍ମା ରାବଣଙ୍କର ସେହି ବିଶାଳଗୃହ ମହାମୂଲ୍ୟ ରତ୍ନଦ୍ୱାରା ବିଭୂଷିତ ହୋଇ ସମୁଦ୍ରପରି ଗମ୍ଭୀର ଦେଖାଯାଉଥିଲା ଏବଂ ସମୁଦ୍ରପରି ଶବ୍ଦାୟମାନ ହେଉଥିଲା । ୧୩ । ସେହି ମହାକପି

ମହାରତ୍ନସମାକୀର୍ଣ୍ଣଂ ଦଦର୍ଶ ସ ମହାକପିଃ ।
ବିରାଜମାନଂ ବପୁଷା ଗଜାଶ୍ୱରଥସଙ୍କୁଳମ୍ । ୧୪ ।
ଲଙ୍କାଭରଣମିତ୍ୟେବ ସୋଽମନ୍ୟତ ମହାକପିଃ ।
ଚଚାର ହନୁମାଂସ୍ତତ୍ର ରାବଣସ୍ୟ ସମୀପତଃ । ୧୫ ।
ଗୃହାଦ୍ ଗୃହଂ ରାକ୍ଷସାନାମୁଦ୍ୟାନାନି ଚ ସର୍ବଶଃ ।
ବୀକ୍ଷମାଣୋଽପ୍ୟସଂତ୍ରସ୍ତଃ ପ୍ରାସାଦାଂଶ୍ଚ ଚଚାର ସଃ । ୧୬ ।
ଅବପ୍ଲୁତ୍ୟ ମହାବେଗଃ ପ୍ରହସ୍ତସ୍ୟ ନିବେଶନମ୍ ।
ତତୋଽନ୍ୟତ୍ପୁପ୍ଲୁବେ ବେଶ୍ମ ମହାପାର୍ଶ୍ୱସ୍ୟ ବୀର୍ଯ୍ୟବାନ୍ । ୧୭।
ଅଥ ମେଘପ୍ରତୀକାଶଂ କୁମ୍ଭକର୍ଣ୍ଣନିବେଶନମ୍ ।
ବିଭୀଷଣସ୍ୟ ଚ ତଥା ପୁପ୍ଲୁବେ ସ ମହାକପିଃ । ୧୮ ।
ମହୋଦରସ୍ୟ ଚ ତଥା ବିରୂପାକ୍ଷସ୍ୟ ଚୈବ ହି ।
ବିଦ୍ୟୁଜ୍ଜିହ୍ୱସ୍ୟ ଭବନଂ ବିଦ୍ୟୁନ୍ମାଲେସ୍ତଥୈବ ଚ । ୧୯ ।
ବଜ୍ରଦଂଷ୍ଟ୍ରସ୍ୟ ଚ ତଥା ପୁପ୍ଲୁବେ ସ ମହାକପିଃ ।
ଶୁକସ୍ୟ ଚ ମହାବେଗଃ ସାରଣସ୍ୟ ଚ ଧୀମତଃ । ୨୦ ।
ତଥାଚେନ୍ଦ୍ରଜିତୋ ବେଶ୍ମ ଜଗାମ ହରିଯୂଥପଃ ।
ଜମ୍ବୁମାଲେଃ ସୁମାଲେଶ୍ଚ ଜଗାମ ହରିସତ୍ତମଃ । ୨୧ ।

---

ହନୁମାନ୍ ଦେଖିଲେ, ମହାମୂଲ୍ୟ ରତ୍ନ ଏବଂ ଗଜ, ଅଶ୍ୱ ଓ ରଥରେ ପରିପୂର୍ଣ୍ଣ ସେହି ଭବନ ନିଜର ଆକୃତିରେ ଉଦ୍‌ଭାସିତ ହୋଇଥିଲା । ୧୪ । ମହାକପି ହନୁମାନ୍ ଲଙ୍କାର ପ୍ରଧାନ ଭୂଷଣ ବୋଲି ଏହାକୁ ମନେକଲେ । ହନୁମାନ୍ ସେଠାରେ ରାବଣର ସମୀପବର୍ତ୍ତୀ ସ୍ଥାନମାନଙ୍କରେ ବିଚରଣ କରିବାକୁ ଲାଗିଲେ । ୧୫ । ସେହି ବାନର ରାକ୍ଷସମାନଙ୍କର ଏକ ଗୃହରୁ ଅନ୍ୟ ଗୃହକୁ ଯାଇ ଏବଂ ଉଦ୍ୟାନମାନ ଦେଖି ଦେଖି ନିର୍ଭୀକଭାବରେ ସେହି ପ୍ରାସାଦମାନଙ୍କରେ ବିଚରଣ କରିବାକୁ ଲାଗିଲେ । ୧୬ । ଅନନ୍ତର ମହାବେଗବାନ୍ ବୀର୍ଯ୍ୟଶାଳୀ ହନୁମାନ୍ ଡେଇଁ ପ୍ରହସ୍ତର ଗୃହକୁ ଗଲେ ଏବଂ ସେଠାରୁ ମହାପାର୍ଶ୍ୱର ଗୃହକୁ ଡେଇଁଲେ । ୧୭ । ଅନନ୍ତର ସେହି ମହାବାନର କୁମ୍ଭକର୍ଣ୍ଣର ମେଘସଦୃଶ ଗୃହ ଏବଂ ତତ୍ପରେ ବିଭୀଷଣର ଗୃହକୁ ଡେଇଁଲେ । ୧୮ । ତା' ପରେ ସେ ମହୋଦର, ବିରୂପାକ୍ଷ, ବିଦ୍ୟୁଜ୍ଜିହ୍ୱ, ବିଦ୍ୟୁନ୍ମାଳି ତଥା ବଜ୍ରଦଂଷ୍ଟ୍ରର ଗୃହକୁ ଡେଇଁଲେ । ଅନନ୍ତର ସେହି ମହାବେଗଶାଳୀ ବାନରଦଳପତି ଶୁକ, ଧୀମାନ୍ ସାରଣ ଏବଂ ଇନ୍ଦ୍ରଜିତଙ୍କର ଗୃହକୁ ମଧ୍ୟ ଗଲେ । ସେଠାରୁ ସେ-

ରଶ୍ମିକେତୋଶ୍ଚ ଭବନଂ ସୂର୍ଯ୍ୟଶତ୍ରୋସ୍ତଥୈବ ଚ ।
ବଜ୍ରକାୟସ୍ୟ ଚ ତଥା ପ୍ଲୁପ୍ଲୁବେ ସ ମହାକପିଃ । ୨୨ ।
ଧୂମ୍ରାକ୍ଷସ୍ୟାଥ ସଂପାତେର୍ଭବନଂ ମାରୁତାତ୍ମଜଃ ।
ବିଦ୍ୟୁଦ୍ରୂପସ୍ୟ ଭୀମସ୍ୟ ଘନସ୍ୟ ବିଘନସ୍ୟ ଚ । ୨୩ ।
ଶୁକନାଶସ୍ୟ ବକ୍ରସ୍ୟ ଶଠସ୍ୟ କପଟସ୍ୟ ଚ ।
ହ୍ରସ୍ୱକର୍ଣ୍ଣସ୍ୟ ଦଂଷ୍ଟ୍ରସ୍ୟ ଲୋମଶସ୍ୟ ଚ ରକ୍ଷସଃ । ୨୪ ।
ଯୁଦ୍ଧୋନ୍ମତ୍ତସ୍ୟ ମତ୍ତସ୍ୟ ଧ୍ୱଜଗ୍ରୀବସ୍ୟ ସାଦିନଃ ।
ବିଦ୍ୟୁଜ୍ଜିହ୍ୱଦ୍ୱିଜିହ୍ୱାନାଂ ତଥା ହସ୍ତିମୁଖସ୍ୟ ଚ ।୨୫ ।
କରାଳସ୍ୟ ବିଶାଳସ୍ୟ ଶୋଣିତାକ୍ଷସ୍ୟ ଚୈବ ହି ।
ପ୍ଲବମାନଃ କ୍ରମେଣୈବ ହନୂମାନ୍ମାରୁତାତ୍ମଜଃ । ୨୬ ।
ତେଷୁ ତେଷୁ ମହାର୍ହେଷୁ ଭବନେଷୁ ମହାଯଶାଃ ।
ତେଷାମୃଦ୍ଧିମତାମୃଦ୍ଧିଂ ଦଦର୍ଶ ସ ମହାକପିଃ । ୨୭ ।
ସର୍ବେଷାଂ ସମତିକ୍ରମ୍ୟ ଭବନାନି ସମନ୍ତତଃ ।
ଆସସାଦାଥ ଲକ୍ଷ୍ମୀବାନ୍ ରାକ୍ଷସେନ୍ଦ୍ରନିବେଶନମ୍ । ୨୮ ।
ରାବଣସ୍ୟୋପଶାୟିନ୍ୟୋ ଦଦର୍ଶ ହରିସତ୍ତମଃ ।
ବିଚରନ୍ ହରିଶାର୍ଦ୍ଦୂଲୋ ରାକ୍ଷସୀର୍ବିକୃତେକ୍ଷଣାଃ । ୨୯ ।

---

ଜାମ୍ବୁମାଳି ଓ ସୁମାଳିଙ୍କ ଗୃହକୁ ଗଲେ । ୧୯-୨୧ । ତା'ପରେ ସେ ରଶ୍ମିକେତୁ, ସୂର୍ଯ୍ୟଶତ୍ରୁ ଏବଂ ବଜ୍ରକାୟଙ୍କ ଗୃହକୁ ଡେଇଁଲେ । ୨୨ । ଅନନ୍ତର ପବନନନ୍ଦନ ହନୁମାନ୍ ଯଥାକ୍ରମରେ ଧୂମ୍ରାକ୍ଷ, ସମ୍ପାତି, ବିଦ୍ୟୁଦ୍‌ରୂପ, ଭୀଷଣାକୃତି ଘନ, ବିଘନ, ଶୁକନାସ, ବକ୍ର, ଶଠ, କପଟ, ହ୍ରସ୍ୱକର୍ଣ୍ଣ, ଦଂଷ୍ଟ୍ର, ଲୋମଶ, ଉନ୍ମତ୍ତ, ଯୁଦ୍ଧୋନ୍ମତ୍ତ, ଅଶ୍ୱାରୋହୀ, ଧ୍ୱଜଗ୍ରୀବ, ବିଦ୍ୟୁଜ୍ଜିହ୍ୱ, ଦ୍ୱିଜିହ୍ୱ, ହସ୍ତିମୁଖ, କରାଳ, ବିଶାଳ, ଶୋଣିତାକ୍ଷ ଏହି ସମସ୍ତ ରାକ୍ଷସଙ୍କ ଗୃହକୁ ଗମନକଲେ ।୨୩-୨୬। ସେହି ମହାଯଶା ବାନର ସେହି ସମସ୍ତ ମହାର୍ହ ଭବନମାନଙ୍କରେ ସେହି ସମୃଦ୍ଧିଶାଳୀ ରାକ୍ଷସମାନଙ୍କର ପରମସମୃଦ୍ଧି ଦେଖିବାକୁ ଲାଗିଲେ । ୨୭ । ଲକ୍ଷ୍ମୀବାନ୍ ହନୁମାନ୍ ଚାରିଆଡ଼େ ସବୁ ରାକ୍ଷସଙ୍କ ଗୃହ ଅତିକ୍ରମ କରି ରାକ୍ଷସରାଜ ରାବଣର ବାସଗୃହରେ ଆସି ଉପସ୍ଥିତ ହେଲେ । ୨୮ । ବାନରଶ୍ରେଷ୍ଠ ହନୁମାନ୍ ବୁଲି ବୁଲି ପାଳକର ରାବଣର ଶୋଇବା ସ୍ଥାନକୁ ଜଗିଥିବା ବିକୃତ-

ଶୂଳମୁଦ୍ଗରହସ୍ତାଂଶ୍ଚ ଶକ୍ତିତୋମରଧାରିଣଃ ।
ଦଦର୍ଶ ବିବିଧାନ୍ ଗୁଲ୍ମାଂସ୍ତସ୍ୟ ରକ୍ଷଃପତେର୍ଗୃହେ । ୩୦ ।
ରାକ୍ଷସାଂଶ୍ଚ ମହାକାୟାନ୍ନାନାପ୍ରହରଣୋଦ୍ୟତାନ୍ ।
ରକ୍ତାନ୍ ଶ୍ୱେତାନ୍ ସିତାଂଶ୍ଚାପି ହରୀଂଶ୍ଚାପି ମହାଜବାନ୍ । ୩୧ ।
କୁଳୀନାନ୍ ରୂପସମ୍ପନ୍ନାନ୍ ଗଜାନ୍ ପରଗଜାରୁଜାନ୍ ।
ଶିକ୍ଷିତାନ୍ ଗଜଶିକ୍ଷାୟାମୈରାବତସମାନ୍ ଯୁଧି । ୩୨ ।
ନିହନ୍ତୄନ୍ ପରସୈନ୍ୟାନାଂ ଗୃହେ ତସ୍ମିନ୍ ଦଦର୍ଶ ସଃ ।
କ୍ଷରତଶ୍ଚ ଯଥା ମେଘାନ୍ ସ୍ରବତଶ୍ଚ ଯଥା ଗିରୀନ୍ । ୩୩ ।
ମେଘସ୍ତନିତନିର୍ଘୋଷାନ୍ ଦୁର୍ଧର୍ଷାନ୍ ସମରେ ପରୈଃ ।
ସହସ୍ରଂ ବାହିନୀସ୍ତତ୍ର ଜାମ୍ବୂନଦପରିଷ୍କୃତାଃ । ୩୪ ।
ହେମଜାଲୈରବିଚ୍ଛିନ୍ନାସ୍ତରୁଣାଦିତ୍ୟସନ୍ନିଭାଃ ।
ଦଦର୍ଶ ରାକ୍ଷସେନ୍ଦ୍ରସ୍ୟ ରାବଣସ୍ୟ ନିବେଶନେ । ୩୫ ।
ଶିବିକା ବିବିଧାକାରାଃ ସ କପିର୍ମାରୁତାତ୍ମଜଃ ।
ଲତାଗୃହାଣି ଚିତ୍ରାଣି ଚିତ୍ରଶାଳାଗୃହାଣି ଚ । ୩୬ ।
କ୍ରୀଡ଼ାଗୃହାଣି ଚାନ୍ୟାନି ଦାରୁପର୍ବତକାନି ଚ ।
କାମସ୍ୟ ଗୃହକଂ ରମ୍ୟଂ ଦିବାଗୃହକମେବ ଚ । ୩୭ ।

---

ନିପୁଣା ରକ୍ଷସୀମାନଙ୍କୁ ଦେଖିଲେ । ୨୯ । ସେ ସେହି ରାକ୍ଷସରାଜର ଗୃହରେ ଶୂଳ, ମୁଦ୍ଗର, ଶକ୍ତି ଓ ତୋମରଧାରିଣୀ ରାକ୍ଷସୀମାନଙ୍କୁ ଏବଂ ନାନାବିଧ ପ୍ରତିହାରୀ ସୈନ୍ୟମାନଙ୍କୁ ଦେଖିଲେ । ୩୦ । ମହାକାୟ ରାକ୍ଷସମାନେ ଶସ୍ତ୍ର ଉତ୍ତୋଳନପୂର୍ବକ ସେଠାରେ ଜଗି ରହିଥିଲେ । ରକ୍ତ, ଶ୍ୱେତ, କୃଷ୍ଣ ଓ ହରିଦ୍ବର୍ଣ୍ଣ ମହାବେଗଶାଳୀ ଅଶ୍ୱମାନଙ୍କୁ, ଉତ୍କୃଷ୍ଟ ଜାତିର ରୂପବାନ୍ ଶତ୍ରୁପକ୍ଷୀୟ ହସ୍ତୀମାନଙ୍କର ପୀଡ଼ାପ୍ରଦ ସୁଶିକ୍ଷିତ ଓ ଯୁଦ୍ଧରେ ଐରାବତସଦୃଶ ଶତ୍ରୁସୈନ୍ୟମାନଙ୍କର ନିହନ୍ତା, ମେଘ ଓ ପର୍ବତସଦୃଶ ମଦ କ୍ଷରଣ କରୁଥିବା ଓ ମେଘସଦୃଶ ଗର୍ଜନକାରୀ, ଯୁଦ୍ଧରେ ଶତ୍ରୁର ଅଜେୟ ହସ୍ତୀମାନଙ୍କୁ ସେ ସେହି ଗୃହମଧ୍ୟରେ ଦେଖିଲେ । ରାକ୍ଷସରାଜ ରାବଣର ଗୃହରେ ସହସ୍ରସଂଖ୍ୟକ ସ୍ୱର୍ଣ୍ଣବିଭୂଷିତ ସୈନ୍ୟମାନଙ୍କୁ ସେ ଦେଖିଲେ; ଆଉ ନାନା ଆକାରର ସୁବର୍ଣ୍ଣର ଜାଲ ଛୁଆଣିହୋଇଥିବା, ବାଳସୂର୍ଯ୍ୟପରି ଦୀପ୍ତିମନ୍ତ ପାଲିଙ୍କୀମାନ ଦେଖିଲେ । ବିଚିତ୍ର ଲତାଗୃହ, ଚିତ୍ରଶାଳାଗୃହ, କ୍ରୀଡ଼ାଗୃହ ଏବଂ କାଷ୍ଠନିର୍ମିତ କୃତ୍ରିମ କ୍ରୀଡ଼ାପର୍ବତ, ରମଣୀୟ ରତିଗୃହ, ଦିବାକାଳୀନ ବିହାରଗୃହ

ଦଦର୍ଶ ରାକ୍ଷସେନ୍ଦ୍ରସ୍ୟ ରାବଣସ୍ୟ ନିବେଶନେ ।
ସ ମନ୍ଦରସମପ୍ରଖ୍ୟଂ ମୟୂରସ୍ଥାନସଂକୁଳମ୍ । ୩୮ ।
ଧ୍ୱଜଯଷ୍ଟିଭିରାକୀର୍ଣ୍ଣଂ ଦଦର୍ଶ ଭବନୋତ୍ତମମ୍ ।
ଅନନ୍ତରତ୍ନନିଚୟଂ ନିଧିଜାଲଂ ସମନ୍ତତଃ ।
ଧୀରନିଷ୍ଠିତକର୍ମାଙ୍ଗଂ ଗୃହଂ ଭୂତପତେରିବ । ୩୯ ।
ଅର୍ଚିର୍ଭିଶ୍ଚାପି ରତ୍ନାନାଂ ତେଜସା ରାବଣସ୍ୟ ଚ ।
ବିରରାଜ ଚ ତଦ୍ ବେଶ୍ମ ରଶ୍ମିବାନିବ ରଶ୍ମିଭିଃ । ୪୦ ।
ଜାମ୍ବୂନଦମୟାନ୍ୟେବ ଶୟନାନ୍ୟାସନାନି ଚ ।
ଭାଜନାନି ଚ ଶୁଭ୍ରାଣି ଦଦର୍ଶ ହରିଯୂଥପଃ । ୪୧ ।
ମଧ୍ୱାସବକୃତକ୍ଳେଦଂ ମଣିଭାଜନସଂକୁଳମ୍ ।
ମନୋରମମସଂବାଧଂ କୁବେରଭବନଂ ଯଥା । ୪୨ ।
ନୂପୁରାଣାଂ ଚ ଘୋଷେଣ କାଞ୍ଚୀନାଂ ନିଃସ୍ୱନେନ ଚ ।
ମୃଦଙ୍ଗତଳନିର୍ଘୋଷୈର୍ଘୋଷବଦ୍ଭିର୍ବିନାଦିତମ୍ । ୪୩ ।
ପ୍ରାସାଦସଂଘାତଯୁତଂ ସ୍ତ୍ରୀରତ୍ନଶତସଙ୍କୁଳମ୍ ।
ସୁବ୍ୟୂଢକକ୍ଷ୍ୟଂ ହନୂମାନ୍ ପ୍ରବିବେଶ ମହାଗୃହମ୍ । ୪୪ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ସୁନ୍ଦରକାଣ୍ଡେ ରାବଣଗୃହାବେକ୍ଷଣମ୍ ନାମ ଷଷ୍ଠଃ ସର୍ଗଃ ।

---

ଏ ସମସ୍ତ ମଧ୍ୟ ସେ ରାକ୍ଷସରାଜ ରାବଣର ଘରେ ଦେଖିଲେ । ସେ ଦେଖିଲେ, ରାବଣର ଗୃହ ଅତି ଉତ୍ତମ । ଏହା ମନ୍ଦର ପର୍ବତସଦୃଶ ମନୋହର, ମୟୂରସ୍ଥାନସମୂହରେ ପରିବ୍ୟାପ୍ତ. ଧ୍ୱଜସମୂହରେ ସମାକୀର୍ଣ୍ଣ ଏବଂ ଅସଂଖ୍ୟ ରତ୍ନ ଓ ନିଧିରେ ପରିପୂର୍ଣ୍ଣ । ସ୍ଥିରଚିତ୍ତ, ନିର୍ଭୀକ ରକ୍ଷକମାନେ ଭୂତପତିଙ୍କ ଗୃହପରି ସେ ଗୃହକୁ ଜଗି ରହିଛନ୍ତି । । ୩୧-୩୯ । ରତ୍ନମାନଙ୍କର ଜ୍ୟୋତି ଏବଂ ରାବଣର ତେଜର ପ୍ରଭାବରେ ସେ ଗୃହ କିରଣବିଭୂଷିତ ସୂର୍ଯ୍ୟଙ୍କ ପରି ଶୋଭାପାଉଥିଲା । ୪୦ । ବାନରଦଳପତି ହନୁମାନ୍ ସେଠାରେ ସୁନାର ପଲଙ୍କ ଏବଂ ଆସନମାନ ଓ ଶୁଭ୍ରବର୍ଣ୍ଣ ପାତ୍ରସମୂହ ଦେଖିଲେ । । ୪୧ । ସେହି ଗୃହ ମଧୁ ଓ ମଦ୍ୟରେ ଆର୍ଦ୍ର ହୋଇଛି ଏବଂ ମଣିମୟ ପାତ୍ରସମୂହରେ ପରିବ୍ୟାପ୍ତ ହୋଇ କୁବେରଙ୍କ ଗୃହସଦୃଶ ମନୋରମ ଏବଂ ବିଘ୍ନରହିତ ହୋଇଅଛି । । ୪୨ । ନୂପୁର, କାଞ୍ଚୀ, ମୃଦଙ୍ଗ ତଳ ଓ ଅନ୍ୟାନ୍ୟ ବାଦ୍ୟଶବ୍ଦରେ ତାହା ନିନାଦିତ ହେଉଅଛି । ବହୁ ଅଟ୍ଟାଳିକା ସେଠାରେ ଶ୍ରେଣୀବଦ୍ଧ ହୋଇ ରହିଅଛି ଏବଂ ଶତ ଶତ ସ୍ତ୍ରୀରତ୍ନ ସେଥିରେ ପରିପୂର୍ଣ୍ଣ ହୋଇଅଛନ୍ତି । ଏହାର କକ୍ଷଗୁଡ଼ିକ ଅତି ସୁରକ୍ଷିତ ମଧ୍ୟ ହୋଇଅଛି । ହନୁମାନ୍ ସେହି ମହାଗୃହରେ ପ୍ରବେଶ କଲେ ।୪୩-୪୪।

---

ଶୂଳମୁଦ୍ଗରହସ୍ତାଶ୍ଚ ଶକ୍ତିତୋମରଧାରିଣୀଃ ।
ଦଦର୍ଶ ବିବିଧାନ୍ ଗୁଲ୍ମାଂସ୍ତସ୍ୟ ରକ୍ଷଃପତେର୍ଗୃହେ ।୩୦।
ରାକ୍ଷସାଂଶ୍ଚ ମହାକାୟାନ୍ନାନାପ୍ରହରଣୋଦ୍ୟତାନ୍ ।
ରକ୍ତାନ୍ ଶ୍ୱେତାନ୍ ସିତାଂଶ୍ଚାପି ହରୀଂଶ୍ଚାପି ମହାଜବାନ୍ ।୩୧।
କୁଲୀନାନ୍ ରୂପସଂପନ୍ନାନ୍ଗଜାନ୍ ପରଗଜାରୁଜାନ୍ ।
ଶିକ୍ଷିତାନ୍ଗଜଶିକ୍ଷାୟାମୈରାବତସମାନ୍ ଯୁଧି ।୩୨।
ନିହନ୍ତୄନ୍ ପରସୈନ୍ୟାନାଂ ଗୃହେ ତସ୍ମିନ୍ ଦଦର୍ଶ ସଃ ।
କ୍ଷରତଶ୍ଚ ଯଥା ମେଘାନ୍ ସ୍ରବତଶ୍ଚ ଯଥା ଗିରୀନ୍ ।୩୩।
ମେଘସ୍ତନିତନିର୍ଘୋଷାନ୍ ଦୁର୍ଧର୍ଷାନ୍ ସମରେ ପରୈଃ ।
ସହସ୍ରଂ ବାହିନୀସ୍ତତ୍ର ଜାମ୍ବୂନଦପରିଷ୍କୃତାଃ ।୩୪।
ହେମଜାଲୈରବିଚ୍ଛିନ୍ନାସ୍ତରୁଣାଦିତ୍ୟସଂନିଭାଃ ।
ଦଦର୍ଶ ରାକ୍ଷସେନ୍ଦ୍ରସ୍ୟ ରାବଣସ୍ୟ ନିବେଶନେ ।୩୫।
ଶିବିକା ବିବିଧାକାରାଃ ସ କପିର୍ମାରୁତାତ୍ମଜଃ ।
ଲତାଗୃହାଣି ଚିତ୍ରାଣି ଚିତ୍ରଶାଳାଗୃହାଣି ଚ ।୩୬।
କ୍ରୀଡ଼ାଗୃହାଣି ଚାନ୍ୟାନି ଦାରୁପର୍ବତକାନି ଚ ।
କାମସ୍ୟ ଗୃହକଂ ରମ୍ୟଂ ଦିବାଗୃହକମେବ ଚ ।୩୭।

---

ନିପୁଣା ରାକ୍ଷସୀମାନଙ୍କୁ ଦେଖିଲେ ।୨୯। ସେ ସେହି ରାକ୍ଷସରାଜର ଗୃହରେ ଶୂଳ, ମୁଦ୍ଗର, ଶକ୍ତି ଓ ତୋମରଧାରିଣୀ ରାକ୍ଷସୀମାନଙ୍କୁ ଏବଂ ନାନାବିଧ ପ୍ରହରଣାସ୍ତ୍ର ସୈନ୍ୟମାନଙ୍କୁ ଦେଖିଲେ ।୩୦। ମହାକାୟ ରାକ୍ଷସମାନେ ଶସ୍ତ୍ର ଉତ୍ତୋଳନପୂର୍ବକ ସେଠାରେ ଜଗି ରହିଥିଲେ । ରକ୍ତ, ଶ୍ୱେତ, କୃଷ୍ଣ ଓ ହରିଦ୍‌ବର୍ଣ୍ଣ ମହାବେଗଶାଳୀ ଅଶ୍ୱମାନଙ୍କୁ, ଉତ୍କୃଷ୍ଟଜାତୀୟ ରୂପବାନ୍ ଶତ୍ରୁପକ୍ଷୀୟ ହସ୍ତୀମାନଙ୍କର ପୀଡ଼ାପ୍ରଦ ସୁଶିକ୍ଷିତ ଓ ଯୁଦ୍ଧରେ ଐରାବତସଦୃଶ ଶତ୍ରୁସୈନ୍ୟମାନଙ୍କର ନିହନ୍ତା, ମେଘ ଓ ପର୍ବତସଦୃଶ ମଦ କ୍ଷରଣ କରୁଥିବା ଓ ମେଘସଦୃଶ ଗର୍ଜନକାରୀ, ଯୁଦ୍ଧରେ ଶତ୍ରୁର ଅଜେୟ ହସ୍ତୀମାନଙ୍କୁ ସେ ସେହି ଗୃହମଧ୍ୟରେ ଦେଖିଲେ । ରାକ୍ଷସରାଜ ରାବଣର ଗୃହରେ ସହସ୍ରସଂଖ୍ୟକ ସ୍ୱର୍ଣ୍ଣବିଭୂଷିତ ସୈନ୍ୟମାନଙ୍କୁ ସେ ଦେଖିଲେ; ଆଉ ନାନା ଆକାରର ସୁବର୍ଣ୍ଣର ଜାଲ ଛିଆଣିହୋଇଥିବା, ବାଳସୂର୍ଯ୍ୟପରି ଦୀପ୍ତିମନ୍ତ ପାଲଙ୍କୀମାନ ଦେଖିଲେ । ବିଚିତ୍ର ଲତାଗୃହ, ଚିତ୍ରଶାଳାଗୃହ, କ୍ରୀଡ଼ାଗୃହ ଏବଂ କାଷ୍ଠନିର୍ମିତ କୃତ୍ରିମ କ୍ରୀଡ଼ାପର୍ବତ, ରମଣୀୟ ରତିଗୃହ, ଦିବାକାଳୀନ ବିହାରଗୃହ

ଦଦର୍ଶ ରାକ୍ଷସେନ୍ଦ୍ରସ୍ୟ ରାବଣସ୍ୟ ନିବେଶନେ ।
ସ ମନ୍ଦରସମପ୍ରଖ୍ୟଂ ମୟୂରସ୍ଥାନସଂକୁଳମ୍ । ୩୮ ।
ଧ୍ୱଜଯଷ୍ଟିଭିରାକୀର୍ଣ୍ଣଂ ଦଦର୍ଶ ଭବନୋତ୍ତମମ୍ ।
ଅନନ୍ତରତ୍ନନିଚୟଂ ନିଧିଜାଲଂ ସମନ୍ତତଃ ।
ଧୀରନିଷ୍ଠିତକର୍ମାଙ୍ଗଂ ଗୃହଂ ଭୂତପତେରିବ । ୩୯ ।
ଅର୍ଚିଭିଶ୍ଚାପି ରତ୍ନାନାଂ ତେଜସା ରାବଣସ୍ୟ ଚ ।
ବିରରାଜ ଚ ତଦ୍ ବେଶ୍ମ ରଶ୍ମିବାନିବ ରଶ୍ମିଭିଃ । ୪୦ ।
ଜାମ୍ବୂନଦମୟାନ୍ୟେବ ଶୟନାନ୍ୟାସନାନି ଚ ।
ଭାଜନାନି ଚ ଶୁଭ୍ରାଣି ଦଦର୍ଶ ହରିଯୂଥପଃ । ୪୧ ।
ମଧ୍ୱାସବକୃତକ୍ଳେଦଂ ମଣିଭାଜନସଂକୁଳମ୍ ।
ମନୋରମମସଂବାଧଂ କୁବେରଭବନଂ ଯଥା । ୪୨ ।
ନୂପୁରାଣାଂ ଚ ଘୋଷେଣ କାଞ୍ଚୀନାଂ ନିଃସ୍ୱନେନ ଚ ।
ମୃଦଙ୍ଗତଳନିର୍ଘୋଷୈର୍ଘୋଷବଦ୍ଭିର୍ବିନାଦିତମ୍ । ୪୩ ।
ପ୍ରାସାଦସଂଘାତଯୁତଂ ସ୍ତ୍ରୀରତ୍ନଶତସଙ୍କୁଳମ୍ ।
ସୁବ୍ୟୂଢ଼କକ୍ଷ୍ୟଂ ହନୁମାନ୍ ପ୍ରବିବେଶ ମହାଗୃହମ୍ । ୪୪ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ସୁନ୍ଦରକାଣ୍ଡେ ରାବଣଗୃହାବେକ୍ଷଣମ୍ ନାମ ଷଷ୍ଠଃ ସର୍ଗଃ ।

---

ଏ ସମସ୍ତ ମଧ୍ୟ ସେ ରାକ୍ଷସରାଜ ରାବଣର ଘରେ ଦେଖିଲେ । ସେ ଦେଖିଲେ, ରାବଣର ଗୃହ ଅତି ଉତ୍ତମ । ଏହା ମନ୍ଦର ପର୍ବତସଦୃଶ ମନୋହର, ମୟୂରସ୍ଥାନସମୂହରେ ପରିବ୍ୟାପ୍ତ, ଧ୍ୱଜସମୂହରେ ସମାକୀର୍ଣ୍ଣ ଏବଂ ଅସଂଖ୍ୟ ରତ୍ନ ଓ ନିଧିରେ ପରିପୂର୍ଣ୍ଣ । ସ୍ଥିରଚିତ୍ତ, ନିଷ୍ଠିକ ରକ୍ଷକମାନେ ଭୂତପତିଙ୍କ ଗୃହପରି ସେ ଗୃହକୁ ଜଗି ରହିଛନ୍ତି । । ୩୮-୩୯ । ରତ୍ନମାନଙ୍କର ଜ୍ୟୋତି ଏବଂ ରାବଣର ତେଜର ପ୍ରଭାବରେ ସେ ଗୃହ କିରଣବିଭୂଷିତ ସୂର୍ଯ୍ୟଙ୍କ ପରି ଶୋଭାପାଉଥିଲା । ୪୦ । ବାନରଦଳପତି ହନୁମାନ୍ ସେଠାରେ ସୁନାର ପଲଙ୍କ ଏବଂ ଆସନମାନ ଓ ଶୁଭ୍ରବର୍ଣ୍ଣ ପାତ୍ରସମୂହ ଦେଖିଲେ । । ୪୧ । ସେହି ଗୃହ ମଧୁ ଓ ମଦ୍ୟରେ ଆର୍ଦ୍ର ହୋଇଛି ଏବଂ ମଣିମୟ ପାତ୍ରସମୂହରେ ପରିବ୍ୟାପ୍ତ ହୋଇ କୁବେରଙ୍କ ଗୃହସଦୃଶ ମନୋରମ ଏବଂ ବାଧାରହିତ ହୋଇଅଛି । । ୪୨ । ନୂପୁର, କାଞ୍ଚୀ, ମୃଦଙ୍ଗ ତଳ ଓ ଅନ୍ୟାନ୍ୟ ବାଦ୍ୟଶବ୍ଦରେ ତାହା ନିନାଦିତ ହେଉଅଛି । ବହୁ ଅଟ୍ଟାଳିକା ସେଠାରେ ଶ୍ରେଣୀବଦ୍ଧ ହୋଇ ରହିଅଛି ଏବଂ ଶତ ଶତ ସ୍ତ୍ରୀରତ୍ନ ଏହିଁରେ ପରିପୂର୍ଣ୍ଣ ହୋଇଅଛନ୍ତି । ଏହାର କକ୍ଷଗୁଡ଼ିକ ଅତି ସୁରକ୍ଷିତ ମଧ୍ୟ ହୋଇଅଛି । ହନୁମାନ୍ ସେହି ମହାଗୃହରେ ପ୍ରବେଶ କଲେ ।୪୩-୪୪।

---

# ସପ୍ତମଃ ସର୍ଗଃ

## ପୁଷ୍ପକଦର୍ଶନମ୍

ସ ବେଶ୍ମଜାଲଂ ବଲବାନ୍ ଦଦର୍ଶ
ବ୍ୟାସକ୍ତବୈଦୂର୍ଯସୁବର୍ଣ୍ଣଜାଲମ୍ ।
ଯଥା ମହତ୍ ପ୍ରାବୃଷି ମେଘଜାଲମ୍
ବିଦ୍ୟୁତ୍ପିନଦ୍ଧଂ ସବିହଙ୍ଗଜାଲମ୍ ।୧।
ନିବେଶନାନାଂ ବିବିଧାଶ୍ଚ ଶାଲାଃ
ପ୍ରଧାନଶଙ୍ଖାୟୁଧଚାପଶାଲାଃ ।
ମନୋହରାଶ୍ଚାପି ପୁନର୍ବିଶାଲା
ଦଦର୍ଶ ବେଶ୍ମାଦ୍ରିଷୁ ଚନ୍ଦ୍ରଶାଳାଃ ।୨।
ଗୃହାଣି ନାନାବସୁରାଜିତାନି
ଦେବାସୁରୈଶ୍ଚାପି ସୁପୂଜିତାନି ।
ସର୍ବୈଶ୍ଚ ଦୋଷୈଃ ପରିବର୍ଜିତାନି
କପିର୍ଦଦର୍ଶ ସ୍ୱବଲାର୍ଜିତାନି ।୩।
ତାନି ପ୍ରଯତ୍ନାଭିସମାହିତାନି
ମୟେନ ସାକ୍ଷାଦିବ ନିର୍ମିତାନି ।

---

## ୭ମ ସର୍ଗ

### ( ପୁଷ୍ପକଦର୍ଶନ )

ବଳବାନ୍ ହନୁମାନ୍ ଦେଖିଲେ, ଗୃହମାନଙ୍କର ବାତାୟନସମୂହ ସୁବର୍ଣ୍ଣମୟ ଏବଂ ବୈଦୂର୍ଯ୍ୟମଣିରେ ଖଚିତ । ସେଥିରେ ପକ୍ଷୀମାନେ ବସିଥିବାରୁ ତାହା ବିଦ୍ୟୁଦ୍-ଜଡ଼ିତ ବର୍ଷାକାଳୀନ ମେଘରାଜିସଦୃଶ ଶୋଭପାଉଅଛି । ୧ । ଗୃହମାନଙ୍କର ନାନାପ୍ରକାର ପ୍ରକୋଷ୍ଠ ଉତ୍କୃଷ୍ଟ ଶଙ୍ଖ, ଆୟୁଧ ଏବଂ ଧନୁରେ ସୁସଜ୍ଜିତ ହୋଇ-ଅଛି । ସେହିସବୁ ପର୍ବତାକାର ଗୃହର ଶିଖରଦେଶରେ ଅତି ବିଶାଳ ଏବଂ ମନୋହର ଚନ୍ଦ୍ରଶାଳା ଗୃହମାନ ବିରାଜିତ ରହିଅଛି । ୨। ହନୁମାନ୍ ଦେଖିଲେ, ଏହି ସମସ୍ତ ଗୃହ ବିବିଧ ରତ୍ନରେ ସୁଶୋଭିତ, ଦେବାସୁରମାନଙ୍କ କର୍ତ୍ତୃକ ପୂଜିତ, ସର୍ବଦୋଷବିବର୍ଜିତ ଏବଂ ରାବଣର ନିଜ ବାହୁବଳରେ ଅର୍ଜିତ ।୩। ଲଙ୍କାଧିପତିଙ୍କର ସେହି ଗୃହସମୂହ ସାକ୍ଷାତ ମୟଦାନବ କର୍ତ୍ତୃକ ଅତି ଯତ୍ନସହକାରେ ନିର୍ମିତ ହୋଇ-

ମହୀତଲେ ସର୍ବଗୁଣୋତ୍ତରାଣି
ଦଦର୍ଶ ଲଙ୍କାଧିପତେର୍ଗୃହାଣି ।୪।

ତତୋ ଦଦର୍ଶୋଚ୍ଛ୍ରିତମେଘରୂପମ୍
ମନୋହରଂ କାଞ୍ଚନଚାରୁରୂପମ୍ ।
ରକ୍ଷୋଽଧିପସ୍ୟାତ୍ମବଳାନୁରୂପମ୍
ଗୃହୋତ୍ତମଂ ହ୍ୟପ୍ରତିରୂପରୂପମ୍ ।୫।

ମହୀତଲେ ସ୍ୱର୍ଗମିବ ପ୍ରକୀର୍ଣମ୍
ଶ୍ରିୟା ଜ୍ୱଲନ୍ତଂ ବହୁରତ୍ନକୀର୍ଣମ୍ ।
ନାନାତରୂଣାଂ କୁସୁମାବକୀର୍ଣମ୍
ଗିରେରିବାଗ୍ରଂ ରଜସାବକୀର୍ଣମ୍ ।୬।

ନାରୀପ୍ରବେକୈରିବ ଦୀପ୍ୟମାନମ୍
ତଡିଦ୍ଭିରମ୍ଭୋଧରମର୍ଚ୍ଚ୍ୟମାନମ୍ ।
ହଂସପ୍ରବେକୈରିବ ବାହ୍ୟମାନମ୍
ଶ୍ରିୟା ଯୁତଂ ଖେ ସୁକୃତାଂ ବିମାନମ୍ ।୭।

ଯଥା ନଗାଗ୍ରଂ ବହୁଧାତୁଚିତ୍ରମ୍
ଯଥା ନଭଶ୍ଚ ଗ୍ରହଚନ୍ଦ୍ରଚିତ୍ରମ୍ ।
ଦଦର୍ଶ ଯୁକ୍ତୀକୃତମେଘଚିତ୍ରମ୍
ବିମାନରତ୍ନଂ ବହୁରତ୍ନଚିତ୍ରମ୍ ।୮।

---

ଥିବାରୁ ଅତି ଉତ୍କୃଷ୍ଟ ଗୁଣରେ ତାହା ପୃଥିବୀରେ ଶ୍ରେଷ୍ଠତ୍ୱ ଲାଭ କରିଅଛି ।୪। ସେ ଦେଖିଲେ, ରାକ୍ଷସରାଜଙ୍କର ସେହି ସମସ୍ତ ମେଘସଦୃଶ ଉନ୍ନତ, ସୁବର୍ଣ୍ଣମୟ ଗୃହରାଜି ରାବଣର ନିଜ ବଳବୀର୍ଯ୍ୟର ଅନୁରୂପ ହୋଇଅଛି ଏବଂ ତାହାର ଉପମା ଦେଇହେବ ନାହିଁ ।୫। ଏହି ଗୃହସବୁ ବହୁ ରତ୍ନପୂର୍ଣ୍ଣ ହୋଇ ନିଜର ସୌନ୍ଦର୍ଯ୍ୟରେ ଜାଜ୍ୱଲ୍ୟମାନ ହେଉଥିବାରୁ ଭୂପୃଷ୍ଠରେ ପତିତ ସ୍ୱର୍ଗସଦୃଶ ଶୋଭାପାଉଅଛି । ଏହା ନାନାଜାତୀୟ ବୃକ୍ଷର ପୁଷ୍ପରେ ଅଳଙ୍କୃତ ହୋଇଥିବାରୁ ପୁଷ୍ପରେଣୁମଣ୍ଡିତ ପର୍ବତର ଅଗ୍ରଭାଗସଦୃଶ ଶୋଭାପାଉଅଛି ।୬। ସୁନ୍ଦରୀ ରମଣୀମାନଙ୍କ ଦ୍ୱାରା ଶୋଭମାନ ହୋଇ ଏହା ବିଦ୍ୟୁତ୍ଶୋଭିତ ମେଘସଦୃଶ କିମ୍ବା ଦିବ୍ୟହଂସମାନଙ୍କ ଦ୍ୱାରା ବାହ୍ୟମାନ, ଶ୍ରୀସମ୍ପନ୍ନ, ସୁକୃତିଶାଳୀ ପୁରୁଷମାନଙ୍କର ଆକାଶସ୍ଥ ବିମାନସଦୃଶ ଶୋଭା ପାଉଅଛି ।୭। ହନୂମାନ୍ ସେଠାରେ ବହୁ ଧାତୁବିଚିତ୍ରିତ ପର୍ବତାଗ୍ରସଦୃଶ, ଗ୍ରହଚନ୍ଦ୍ରବିଚିତ୍ରିତ ନଭୋମଣ୍ଡଳସଦୃଶ ଏବଂ ବହୁବର୍ଣ୍ଣବିଚିତ୍ରିତ ମନୋହର ମେଘସଦୃଶ, ବିବିଧରତ୍ନ-ଶୋଭିତ ରାବଣର ବିମାନଶ୍ରେଷ୍ଠ ପୁଷ୍ପକବିମାନ ଦେଖିଲେ ।୮। ଏହି ବିମାନର

ମହୀ କୃତା ପର୍ବତରାଜିପୂର୍ଣ୍ଣା
ଶୈଳାଃ କୃତା ବୃକ୍ଷବିତାନପୂର୍ଣ୍ଣାଃ ।
ବୃକ୍ଷାଃ କୃତାଃ ପୁଷ୍ପବିତାନପୂର୍ଣ୍ଣାଃ
ପୁଷ୍ପଂ କୃତଂ କେସରପତ୍ରପୂର୍ଣ୍ଣମ୍ । ୯ ।
କୃତାନି ବେଶ୍ମାନି ଚ ପାଣ୍ଡୁରାଣି
ତଥା ସୁପୁଷ୍ପା ଅପି ପୁଷ୍କରିଣ୍ୟଃ ।
ପୁନଶ୍ଚ ପଦ୍ମାନି ସକେସରାଣି
ବନାନି ଚିତ୍ରାଣି ସରୋବରାଣି । ୧୦ ।
ପୁଷ୍ପାହ୍ୱୟଂ ନାମ ବିରାଜମାନମ୍
ରତ୍ନପ୍ରଭାଭିଶ୍ଚ ବିଘୂର୍ଣ୍ଣମାନମ୍ ।
ବେଶ୍ମୋତ୍ତମାନାମପି ଚୋଚ୍ଚମାନମ୍
ମହାକପିସ୍ତତ୍ର ମହାବିମାନମ୍ । ୧୧ ।
କୃତାଶ୍ଚ ବୈଦୂର୍ଯ୍ୟମୟା ବିହଙ୍ଗା
ରୂପ୍ୟପ୍ରବାଳୈଶ୍ଚ ତଥା ବିହଙ୍ଗାଃ ।
ଚିତ୍ରାଶ୍ଚ ନାନାବସୁଭିର୍ଭୁଜଙ୍ଗା
ଜାତ୍ୟାନୁରୂପାସ୍ତୁରଗାଃ ଶୁଭାଙ୍ଗାଃ । ୧୨ ।
ପ୍ରବାଳଜାମ୍ବୁନଦପୁଷ୍ପପକ୍ଷାଃ
ସଲୀଳମାବର୍ଜିତଜିହ୍ମପକ୍ଷାଃ ।

---

ବସିବା ସ୍ଥାନ କୃତ୍ରିମ ପର୍ବତସମୂହରେ ପୂର୍ଣ୍ଣ ହୋଇଅଛି । ସେହି ପର୍ବତସମୂହ ପୁଣି ବୃକ୍ଷରୂପ ଚନ୍ଦ୍ରାତପରେ ଆଚ୍ଛାଦିତ । ପୁଣି ସେହି ବୃକ୍ଷରାଜି ପୁଷ୍ପମାନଙ୍କରେ ପରିପୂର୍ଣ୍ଣ ଏବଂ ସେହି ପୁଷ୍ପସମୂହ ପୁଣି କେଶରରାଜିରେ ପୂର୍ଣ୍ଣ । ୯ । ସେଥିରେ ପାଣ୍ଡୁରବର୍ଣ୍ଣ ବିବିଧଗୃହ, ଉତ୍ତମ ପୁଷ୍ପଶୋଭିତ ପୁଷ୍କରିଣୀ, କେଶରସମନ୍ୱିତ ପଦ୍ମ, ବିଚିତ୍ର ବନ ଏବଂ ସରୋବର ସକଳ ନିର୍ମିତ ହୋଇଅଛି ।୧୦ । ମହାକପି ହନୁମାନ୍ ସେଠାରେ ପୁଷ୍ପକ ନାମଧାରୀ ମହାବିମାନ ଦେଖିଲେ । ସେହି ବିମାନ ରତ୍ନପ୍ରଭାରେ ଉଜ୍ଜ୍ୱଳ ଏବଂ ଅତିଶୟ ଘୂର୍ଣ୍ଣମାନ । ଏହା ଅତି ଉତ୍କୃଷ୍ଟ ଗୃହଠାରୁ ମଧ୍ୟ ଅଧିକ ସୌନ୍ଦର୍ଯ୍ୟସମ୍ପନ୍ନ । ୧୧ । ସେଥିରେ ପ୍ରବାଳ, ରୌପ୍ୟ ଓ ବୈଦୂର୍ଯ୍ୟନିର୍ମିତ ବିହଙ୍ଗମମାନେ ନିର୍ମିତ ହୋଇଛନ୍ତି । ନାନାରତ୍ନନିର୍ମିତ ବିଚିତ୍ର ସର୍ପ ଏବଂ ସୁନ୍ଦର ଶରୀରବିଶିଷ୍ଟ ଭଲ ଜାତିଆ ଘୋଡ଼ାମାନେ ମଧ୍ୟ ଖଞ୍ଜା ହୋଇଛନ୍ତି । ୧୨ । ଯେଉଁ

କାମସ୍ୟ ସାକ୍ଷାଦିବ ଭ୍ରାନ୍ତ ପକ୍ଷାଃ
କୃତା ବିହଙ୍ଗାଃ ସୁମୁଖାଃ ସୁପକ୍ଷାଃ । ୧୩ ।
ନିୟୁଜ୍ୟମାନାଶ୍ଚ ଗଜାଃ ସୁହସ୍ତାଃ
ସକେସରାଶ୍ଚୋତ୍ପଲପତ୍ରହସ୍ତାଃ ।
ବଭୂବ ଦେବୀ ଚ କୃତା ସୁହସ୍ତା
ଲକ୍ଷ୍ମୀସ୍ତଥା ପଦ୍ମିନି ପଦ୍ମହସ୍ତା । ୧୪ ।
ଇତୀବ ତଦ୍‌ଗୃହମଭିଗମ୍ୟ ଶୋଭନମ୍
ସବିସ୍ମୟୋ ନଗମିବ ଚାରୁକନ୍ଦରମ୍ ।
ପୁନଶ୍ଚ ତତ୍ପରମସୁଗନ୍ଧି ସୁନ୍ଦରମ୍
ହିମାତ୍ୟୟେ ନଗମିବ ଚାରୁକନ୍ଦରମ୍ । ୧୫ ।
ତତଃ ସ ତାଂ କପିରଭିପତ୍ୟ ପୂଜିତାମ୍
ଚରନ୍ ପୁରୀଂ ଦଶମୁଖବାହୁପାଳିତାମ୍ –
ଅଦୃଶ୍ୟତାଂ ଜନକସୁତାଂ ସୁପୂଜିତାମ୍
ସୁଦୁଃଖିତଃ ପତିଗୁଣବେଗନିର୍ଜିତାମ୍ । ୧୬ ।
ତତସ୍ତଦା ବହୁବିଧଭାବିତାତ୍ମନଃ
କୃତାତ୍ମନୋ ଜନକସୁତାଂ ସୁବର୍ତ୍ମନଃ ।

---

ପକ୍ଷୀମାନଙ୍କର ପକ୍ଷସକଳ ପ୍ରବାଳ ଏବଂ ସ୍ୱର୍ଣ୍ଣନିର୍ମିତ ପୁଷ୍ପରେ ଅଳଂକୃତ, କୁଟିଳ ଏବଂ ଅବଲୀଳାକ୍ରମେ ସଙ୍କୁଚିତ ଏବଂ ବିସ୍ତାରିତ କରାଯାଇପାରିବ ଏବଂ ଯାହା ସାକ୍ଷାତ୍ କନ୍ଦର୍ପର ପକ୍ଷସଦୃଶ ଶୋଭମାନ; ସେହିପରି ସୁନ୍ଦରପକ୍ଷ ଏବଂ ସୁମୁଖସମ୍ପନ୍ନ ପକ୍ଷୀମାନେ ସେଥିରେ ରଚିତ ହୋଇ ରହିଛନ୍ତି । ୧୩ । ତହିଁରେ ପଦ୍ମପୂର୍ଣ୍ଣ ପୁଷ୍କରିଣୀ ମଧ୍ୟରେ ସୁନ୍ଦର ପଦ୍ମହସ୍ତରେ ପଦ୍ମସମନ୍ୱିତା ଲକ୍ଷ୍ମୀଦେବୀ ଏବଂ ସୁନ୍ଦର କେଶରବିଶିଷ୍ଟ ପଦ୍ମପୁଷ୍ପ ଧାରଣ କରିଥିବା ଅତି ସୁନ୍ଦର ଶୁଣ୍ଢବିଶିଷ୍ଟ ହସ୍ତୀମାନେ ନିର୍ମିତ ହୋଇଅଛନ୍ତି । ୧୪ । ଏହିପ୍ରକାର ମନୋହର ଗୁହାଯୁକ୍ତ ପର୍ବତସଦୃଶ ରାବଣର ଗୃହକୁ ଗମନକରି ହନୁମାନ୍ ବିସ୍ମିତ ହେଲେ । ଶୀତକାଳ ଶେଷରେ ଅର୍ଥାତ୍ ବସନ୍ତକାଳରେ ପରମସୁଗନ୍ଧ କୋଟରବିଶିଷ୍ଟ ବୃକ୍ଷପରି ସେ ଗୃହ ଅତି ସୁନ୍ଦର ହୋଇଥିଲା । ୧୫ । ଅନନ୍ତର ହନୁମାନ୍ ସେହି ରାବଣବାହୁବଳରକ୍ଷିତ ଅତି ପ୍ରଶଂସିତ ଲଙ୍କାନଗରୀରେ ବୁଲି ବୁଲି ଇତସ୍ତତଃ ବିଚରଣ କରିବାକୁ ଲାଗିଲେ; କିନ୍ତୁ ପତିଙ୍କର ଗୁଣ ସ୍ମରଣକରି ଅତିଶୟ ବିଷଣ୍ଣହୋଇଥିବା ସୁପୂଜିତା ଜନକନନ୍ଦିନୀଙ୍କୁ ନ ଦେଖି ସେ ନିରତିଶୟ ଦୁଃଖିତ ହେଲେ ।୧୬। ହନୁମାନଙ୍କର ଚିତ୍ତ ଅତି ସମ୍ମାନ-

**ଅପଶ୍ୟତୋଽଭବଦତୀବ ଦୁଃଖିତଂ ମନଃ**
**ସୁଚକ୍ଷୁଷଃ ପ୍ରବିଚରତୋ ମହାତ୍ମନଃ । ୧୭ ।**

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ସୁନ୍ଦରକାଣ୍ଡେ ପୁଷ୍ପକଦର୍ଶନମ୍ ନାମ ସପ୍ତମଃ ସର୍ଗଃ ।

---

ସ୍ୱଜନ; ସେ ସତ୍‌ପଥବର୍ତ୍ତୀ ଏବଂ ଶାସ୍ତ୍ରଚକ୍ଷୁସମ୍ପନ୍ନ ମହାତ୍ମା ଅଟନ୍ତି । ଜନକସୁତାଙ୍କୁ ନ ଦେଖିବାରୁ ତାଙ୍କର ମନ ଅତିଶୟ ଦୁଃଖିତ ହେଲା । ୧୭ ।

# ଅଷ୍ଟମଃ ସର୍ଗଃ

## ପୁଷ୍ପକାନୁବର୍ଣନମ୍

**ସ ତସ୍ୟ ମଧ୍ୟେ ଭବନସ୍ୟ ସଂସ୍ଥିତମ୍**
**ମହଦ୍‌ବିମାନଂ ମଣିରତ୍ନଚିତ୍ରିତମ୍ ।**
**ପ୍ରତପ୍ତଜାମ୍ବୂନଦଜାଲକୃତ୍ରିମମ୍**
**ଦଦର୍ଶ ଧୀମାନ୍ ପବନାତ୍ମଜଃ କପିଃ । ୧ ।**
**ତଦପ୍ରମେୟାପ୍ରତିକାରକୃତ୍ରିମମ୍**
**କୃତଂ ସ୍ୱୟଂ ସାଧ୍ୱିତି ବିଶ୍ୱକର୍ମଣା ।**
**ଦିବଂ ଗତେ ବାୟୁପଥେ ପ୍ରତିଷ୍ଠିତମ୍**
**ବ୍ୟରାଜତାଦିତ୍ୟପଥସ୍ୟ ଲକ୍ଷ୍ମବତ୍ । ୨ ।**

---

## ୮ମ ସର୍ଗ

( ପୁଷ୍ପକବିମାନର ବର୍ଣ୍ଣନା )

ପବନନନ୍ଦନ ଧୀର ହନୁମାନ୍ ସେହି ଗୃହମଧ୍ୟରେ ଥିବା ବହୁରତ୍ନଚିତ୍ରିତ, ତପ୍ତସୁବର୍ଣ୍ଣନିର୍ମିତ ଜାଲି ଲଗାହୋଇଥିବା ବିଶାଳ ପୁଷ୍ପକବିମାନକୁ ଦେଖିଲେ । ୧ । ସେହି ବିମାନ ନିରୂପମ ପ୍ରତିମାରାଜିଦ୍ୱାରା ଅଳଂକୃତ ହୋଇଥିଲା । ସ୍ୱୟଂ ବିଶ୍ୱକର୍ମା ଉତ୍ତମ ବିଧାନରେ ଏହା ନିର୍ମାଣ କରିଥିଲେ ଏବଂ ତାହା ଆକାଶମଧ୍ୟସ୍ଥ ବାୟୁପଥରେ ସୂର୍ଯ୍ୟପଥର ଏକ ସୁଶୋଭନ ଚିହ୍ନସ୍ୱରୂପ ବିରାଜିତ ଥିଲା ।୨। ସେଥିରେ ଏପରି କୌଣସି

ନ ତତ୍ର କିଂଚିନ୍ନ କୃତଂ ପ୍ରଯତ୍ନତୋ
ନ ତତ୍ର କିଂଚିନ୍ନ ମହାର୍ଘରତ୍ନବତ୍ ।
ନ ତେ ବିଶେଷା ନିୟତାଃ ସୁରେଷ୍ୱପି
ନ ତତ୍ର କିଂଚିନ୍ନ ମହାବିଶେଷବତ୍ । ୩ ।
ତପଃସମାଧାନପରାକ୍ରମାର୍ଜିତମ୍
ମନଃସମାଧାନବିଚାରଚାରିଣମ୍ ।
ଅନେକସଂସ୍ଥାନବିଶେଷନିର୍ମିତମ୍
ତତସ୍ତତସ୍ତୁଲ୍ୟବିଶେଷନିର୍ମିତମ୍ । ୪ ।
ମନଃ ସମାଧାୟ ତୁ ଶୀଘ୍ରଗାମିନମ୍
ଦୁରାସଦଂ ମାରୁତତୁଲ୍ୟଗାମିନମ୍ ।
ମହାତ୍ମନାଂ ପୁଣ୍ୟକୃତାଂ ମହର୍ଦ୍ଧିନାମ୍
ଯଶସ୍ୱିନାମଗ୍ର୍ୟମୁଦାମିବାଳୟମ୍ । ୫ ।
ବିଶେଷମାଲମ୍ବ୍ୟ ବିଶେଷସଂସ୍ଥିତମ୍
ବିଚିତ୍ରକୂଟଂ ବହୁକୂଟମଣ୍ଡିତମ୍ ।
ମନୋଭିରାମଂ ଶରଦିନ୍ଦୁନିର୍ମଳମ୍
ବିଚିତ୍ରକୂଟଂ ଶିଖରଂ ଗିରେର୍ଯଥା । ୬ ।

---

ଦ୍ରବ୍ୟ ନ ଥିଲା, ଯାହା କି ବିଶେଷ ଯତ୍ନର ସହିତ ନିର୍ମାଣ କରା ହୋଇ ନ ଥିଲା । ସେଥିରେ ଏପରି କୌଣସି ଜିନିଷ ନ ଥିଲା, ଯହିଁରେ ମହାମୂଲ୍ୟ ରତ୍ନ ଖଚିତ ହୋଇ ନ ଥିଲା । ଦେବତାମାନଙ୍କର ବିମାନରେ ମଧ୍ୟ ଏପରି ବିଶିଷ୍ଟ ଶିଳ୍ପନୈପୁଣ୍ୟ ଦେଖାଯାଏ ନାହିଁ ଏବଂ ଖୁବ୍ ବିଶିଷ୍ଟତା ନ ଥିବାଭଳି କୌଣସି ଦ୍ରବ୍ୟ ସେଥିରେ ନ ଥିଲା ।୩। ରାବଣ ତପସ୍ୟା ଓ ସମାଧିଲବ୍ଧ ପରାକ୍ରମ ସାହାଯ୍ୟରେ ଏହାକୁ ଅର୍ଜନ କରିଥିଲା । ଏହା ମନମଧ୍ୟରେ ସ୍ଥିରକରିଥିବା ବିଚାର ଅନୁସାରେ ସର୍ବତ୍ର ବିଚରଣକରି ପାରୁଥିଲା । ନାନାବିଧ ବିଶିଷ୍ଟ ରଚନାପ୍ରଣାଳୀ ଏବଂ ନାନା ସ୍ଥାନରୁ ସଂଗୃହୀତ ବିଶିଷ୍ଟ ଉପାଦାନଦ୍ୱାରା ଏହା ନିର୍ମିତ ହୋଇଥିଲା । ୪ । ଏହା ସମୃଦ୍ଧିଶାଳୀ ଯଶସ୍ୱୀ ପୁଣ୍ୟଶୀଳ ମହାତ୍ମାମାନଙ୍କର ଉତ୍କୃଷ୍ଟ ଆନନ୍ଦପ୍ରଦ ଗୃହସଦୃଶ ହୋଇଥିଲା ଏବଂ ମନର ଗତି ବୁଝି ବାୟୁସଦୃଶ ଅତି ଦ୍ରୁତଭାବରେ ଗମନ କରି ପାରୁଥିଲା; ସୁତରାଂ କେହି ତାହାକୁ ଅତିକ୍ରମ କରି ପାରୁ ନ ଥିଲେ ।୫। ଏହି ବିମାନ ବିଶେଷ ବିଶେଷ ଗତି ଅନୁସରଣ କରି ଶୂନ୍ୟପଥରେ ବିଚରଣ କରୁଥିଲା । ଏହା ବିଚିତ୍ର ଶିଖରଯୁକ୍ତ ଏବଂ ବହୁ ପ୍ରକୋଷ୍ଠସମନ୍ୱିତ ଥିଲା । ଏହା ଚିତ୍ତର ଆନନ୍ଦଦାୟକ, ଶରଚ୍ଚନ୍ଦ୍ରସଦୃଶ ନିର୍ମଳ ଏବଂ ବିଚିତ୍ର ଶୃଙ୍ଗସମୂହରେ ଅଳଂକୃତ ଗିରିଶିଖରସଦୃଶ ଶୋଭା

ବହନ୍ତି ଯଂ କୁଣ୍ଡଳଶୋଭିତାନନା
ମହାଶନା ବ୍ୟୋମଚରା ନିଶାଚରାଃ ।
ବିବୃତ୍ତବିଧ୍ୱସ୍ତବିଶାଳଲୋଚନା
ମହାଜବା ଭୂତଗଣାଃ ସହସ୍ରଶଃ । ୭ ।
ବସନ୍ତପୁଷ୍ପୋତ୍କରଚାରୁଦର୍ଶନମ୍
ବସନ୍ତମାସାଦପି ଚାରୁଦର୍ଶନମ୍ ।
ସ ପୁଷ୍ପକଂ ତତ୍ର ବିମାନମୁତ୍ତମମ୍
ଦଦର୍ଶ ତଦ୍‌ବାନରବୀରସତ୍ତମଃ । ୮ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ସୁନ୍ଦରକାଣ୍ଡେ ପୁଷ୍ପକାନୁବର୍ଣ୍ଣନମ୍ ନାମଅଷ୍ଟମଃ ସର୍ଗଃ ।

ଥାଉଥିଲା । ୭ । ଯେଉଁମାନଙ୍କର ଚକ୍ଷୁସମୂହ ଗୋଲାକାର, ଘୂର୍ଣ୍ଣାୟମାନ ଏବଂ ବିଶାଳ, ସେହିପରି ବହୁବେଗି, ଆକାଶଗାମୀ, କୁଣ୍ଡଳାଲଂକୃତ, ନିଶାଚର ଓ ସହସ୍ରସଂଖ୍ୟକ ମହାବେଗଶାଳୀ ଭୂତଗଣ ଏହି ବିମାନକୁ ବହନ କରନ୍ତି । ୭ । ବାନରବୀରଶ୍ରେଷ୍ଠ ହନୂମାନ ବସନ୍ତକାଳୋଦ୍ଭବ ପୁଷ୍ପସମୂହଦ୍ୱାରା ଅଲଂକୃତ, ବସନ୍ତମାସ ଅପେକ୍ଷା ଅଧିକତର କମନୀୟ ସେହି ଉତ୍କୃଷ୍ଟ ପୁଷ୍ପକବିମାନକୁ ସେଠାରେ ଦେଖିଲେ । ୮ ।

---

# ନବମଃ ସର୍ଗଃ

## ସଂକୁଳାନ୍ତଃପୁରମ୍

ତସ୍ୟାଲୟବରିଷ୍ଠସ୍ୟ ମଧ୍ୟେ ବିମଳମାୟତମ୍ ।
ଦଦର୍ଶ ଭବନଶ୍ରେଷ୍ଠଂ ହନୂମାନ୍ମାରୁତାତ୍ମଜଃ । ୧ ।
ଅର୍ଦ୍ଧଯୋଜନବିସ୍ତୀର୍ଣ୍ଣମାୟତଂ ଯୋଜନଂ ମହତ୍ ।
ଭବନଂ ରାକ୍ଷସେନ୍ଦ୍ରସ୍ୟ ବହୁପ୍ରାସାଦସଂକୁଳମ୍ । ୨ ।

---

## ୯ମ ସର୍ଗ

### ( ନାରୀବହୁଳ ଅନ୍ତଃପୁର ଦର୍ଶନ )

ପବନନନ୍ଦନ ହନୂମାନ୍ ସେହି ଉତ୍କୃଷ୍ଟ ଭବନମଧ୍ୟରେ ଏକ ଅତି ସୁନ୍ଦର ବିଶାଳ ଉତ୍ତମ ଭବନ ଦେଖିଲେ ।୧ । ରାକ୍ଷସରାଜର ଏହି ବିଶାଳଭବନ ବିସ୍ତାରରେ ଅର୍ଦ୍ଧଯୋଜନ ଏବଂ ଦୈର୍ଘ୍ୟରେ ଏକଯୋଜନ ଅଟେ ଏବଂ ତାହା ବହୁସଂଖ୍ୟକ

ମାର୍ଗମାଣସ୍ତୁ ବୈଦେହୀଂ ସୀତାମାୟତଲୋଚନାମ୍ ।
ସର୍ବତଃ ପରିଚକ୍ରାମ ହନୂମାନରିସୂଦନଃ । ୩ ।
ଉତ୍ତମଂ ରାକ୍ଷସାବାସଂ ହନୂମାନବଲୋକୟନ୍ ।
ଆସସାଦାଥ ଲକ୍ଷ୍ମୀବାନ୍ ରାକ୍ଷସେନ୍ଦ୍ରନିବେଶନମ୍ । ୪ ।
ଚତୁର୍ବିଷାଣୈର୍ଦ୍ୱିରଦୈସ୍ତ୍ରିବିଷାଣୈସ୍ତଥୈବ ଚ ।
ପରିକ୍ଷିପ୍ତମସଂବାଧଂ ରକ୍ଷ୍ୟମାଣମୁଦାୟୁଧୈଃ । ୫ ।
ରାକ୍ଷସୀଭିଶ୍ଚ ପତ୍ନୀଭୀ ରାବଣସ୍ୟ ନିବେଶନମ୍ ।
ଆହୃତାଭିଶ୍ଚ ବିକ୍ରମ୍ୟ ରାଜକନ୍ୟାଭିରାବୃତମ୍ । ୬ ।
ତନ୍ନକ୍ରମକରାକୀର୍ଣଂ ତିମିଙ୍ଗିଲଝଷାକୁଲମ୍ ।
ବାୟୁବେଗସମାଧୂତଂ ପନ୍ନଗୈରିବ ସାଗରମ୍ । ୭ ।
ଯା ହି ବୈଶ୍ରବଣେ ଲକ୍ଷ୍ମୀ ର୍ଯାଚେନ୍ଦ୍ରେ ହରିବାହନେ ।
ସା ରାବଣଗୃହେ ରମ୍ୟା ନିତ୍ୟମେବାନପାୟିନୀ । ୮ ।
ଯା ଚ ରାଜ୍ଞଃ କୁବେରସ୍ୟ ଯମସ୍ୟ ବରୁଣସ୍ୟ ଚ ।
ତାଦୃଶୀ ତଦ୍ୱିଶିଷ୍ଟା ବା ଋଦ୍ଧୀ ରକ୍ଷୋଗୃହେଷ୍ୱିହ । ୯ ।
ତସ୍ୟ ହର୍ମ୍ୟସ୍ୟ ମଧ୍ୟସ୍ଥଂ ବେଶ୍ମ ଚାନ୍ୟତ୍ସୁନିର୍ମିତମ୍ ।
ବହୁନିର୍ୟୂହସଂଯୁକ୍ତଂ ଦଦର୍ଶ ପବନାତ୍ମଜଃ । ୧୦ ।

---

ପ୍ରାସାଦରେ ପରିପୂର୍ଣ୍ଣ । ୨ । ଶତ୍ରୁସୂଦନ ହନୁମାନ୍ ବିଶାଳଲୋଚନା ବୈଦେହୀଙ୍କୁ ଅନ୍ୱେଷଣ କରି କରି ଗୃହଆଡ଼େ ବୁଲିବାକୁ ଲାଗିଲେ । ୩ । ଲକ୍ଷ୍ମୀବାନ୍ ହନୁମାନ ରାକ୍ଷସମାନଙ୍କର ଉତ୍ତମ ଗୃହମାନ ଦେଖି ଦେଖି ଶେଷରେ ରାକ୍ଷସେନ୍ଦ୍ର ରାବଣର ଗୃହରେ ପହଞ୍ଚିଲେ । ୪ । ସେହି ଗୃହ ଚତୁର୍ଦ୍ଦନ୍ତ ଓ ତ୍ରିଦନ୍ତ ହସ୍ତୀମାନଙ୍କ ଦ୍ୱାରା ପରିବ୍ୟାପ୍ତ । ରାକ୍ଷସମାନେ ଆୟୁଧ ଉତ୍ତୋଳନପୂର୍ବକ ତାହାକୁ ଅବାଧରେ ରକ୍ଷା କରୁଥିଲେ । ୫ । ରାବଣର ସେହି ଗୃହ ତାହାର ରାକ୍ଷସୀ ପତ୍ନୀମାନଙ୍କ ଦ୍ୱାରା ଏବଂ ବଳପ୍ରୟୋଗପୂର୍ବକ ଅଣା ହୋଇଥିବା ରାଜକନ୍ୟାମାନଙ୍କ ଦ୍ୱାରା ପରିପୂର୍ଣ୍ଣ ହୋଇ ନକ୍ର, ମକର, ତିମିଙ୍ଗିଳ, ମତ୍ସ୍ୟ ଓ ସର୍ପ-ପରିପୂର୍ଣ୍ଣ ଏବଂ ବାୟୁବେଗରେ ଆଲୋଡ଼ିତ ସମୁଦ୍ରପରି ବୋଧ ହେଉଥିଲା । ୬-୭ । କୁବେର ଏବଂ ହରିବାହନ ଇନ୍ଦ୍ରଙ୍କ ଗୃହରେ ଯେଉଁ ଲକ୍ଷ୍ମୀ ବିରାଜମାନ, ସେହି ଅବିନାଶୀ ସୌନ୍ଦର୍ଯ୍ୟ ରାବଣଗୃହରେ ସର୍ବଦା ବିଦ୍ୟମାନ । ୮ । ରାଜା କୁବେର, ଯମ, ବରୁଣଙ୍କ ଗୃହ ଯେପରି ସମୃଦ୍ଧିସଂପନ୍ନ, ସେହିପରି ବା ତା'ଠାରୁ ଅଧିକ ସମୃଦ୍ଧି ଏହି ରାକ୍ଷସଭବନମାନଙ୍କରେ ବିରାଜିତ । ୯ । ପବନନନ୍ଦନ ହନୁମାନ୍ ସେହି ପ୍ରାସାଦର ମଧ୍ୟବର୍ତ୍ତୀ ଆଉ ଗୋଟିଏ ସୁନିର୍ମିତ, ବହୁହସ୍ତିପରିବେଷ୍ଟିତ ଗୃହ

ବ୍ରହ୍ମଣୋଽର୍ଥେ କୃତଂ ଦିବ୍ୟଂ ଦିବି ଯଦ୍‌ବିଶ୍ୱକର୍ମଣା ।
ବିମାନଂ ପୁଷ୍ପକଂ ନାମ ସର୍ବରତ୍ନବିଭୂଷିତମ୍ । ୧୧ ।
ପରେଣ ତପସା ଲେଭେ ଯତ୍କୁବେରଃ ପିତାମହାତ୍ ।
କୁବେରମୋଜସା ଜିତ୍ୱା ଲେଭେ ତଦ୍ରାକ୍ଷସେଶ୍ୱରଃ । ୧୨ ।
ଈହାମୃଗସମାଯୁକ୍ତୈଃ କାର୍ତସ୍ୱରହିରଣ୍ମୟୈଃ ।
ସୁକୃତୈ ରାଜିତଂ ସ୍ତମ୍ଭୈଃ ପ୍ରଦୀପ୍ତମିବ ଚ ଶ୍ରିୟା । ୧୩ ।
ମେରୁମନ୍ଦରସଂକାଶୈରୁଲ୍ଲିଖଦ୍ଭିରିବାମ୍ବରମ୍ ।
କୂଟାଗାରୈଃ ଶୁଭାଗାରୈଃ ସର୍ବତଃ ସମଲଂକୃତମ୍ । ୧୪ ।
ଜ୍ୱଲନାର୍କପ୍ରତୀକାଶଂ ସୁକୃତଂ ବିଶ୍ୱକର୍ମଣା ।
ହେମସୋପାନଯୁକ୍ତଂ ଚ ଚାରୁପ୍ରବରବେଦିକମ୍ । ୧୫ ।
ଜାଲବାତାୟନୈର୍ଯୁକ୍ତଂ କାଞ୍ଚନୈଃ ସ୍ଫାଟିକୈରପି ।
ଇନ୍ଦ୍ରନୀଲମହାନୀଲମଣିପ୍ରବରବେଦିକମ୍ । ୧୬ ।
ବିଦ୍ରୁମେଣ ବିଚିତ୍ରେଣ ମଣିଭିଶ୍ଚ ମହାଧନୈଃ ।
ନିସ୍ତୁଲାଭିଶ୍ଚ ମୁକ୍ତାଭିସ୍ତଲେନାଭିବିରାଜିତମ୍ । ୧୭ ।
ଚନ୍ଦନେନ ଚ ରକ୍ତେନ ତପନୀୟନିଭେନ ଚ ।
ସୁପୁଣ୍ୟଗନ୍ଧିନା ଯୁକ୍ତମାଦିତ୍ୟତରୁଣୋପମମ୍ । ୧୮ ।

---

ଦେଖିଲେ । ୧୦ । ବିଶ୍ୱକର୍ମା ସ୍ୱର୍ଗରେ ଏହି ସର୍ବରତ୍ନାଲଂକୃତ 'ପୁଷ୍ପକ' ନାମକ ବିମାନକୁ ବ୍ରହ୍ମାଙ୍କ ନିମନ୍ତେ ନିର୍ମାଣ କରିଥିଲେ । ୧୧ । କୁବେର ଉତ୍କୃଷ୍ଟ ତପୋବଳରେ ପିତାମହ ବ୍ରହ୍ମାଙ୍କ ଠାରୁ ଏହାକୁ ପାଇଥିଲେ ଏବଂ ରାକ୍ଷସରାଜ ରାବଣ ବିକ୍ରମରେ କୁବେରଙ୍କୁ ଜୟ କରି ତାକୁ ପାଇଥିଲେ । ୧୨ । ଏହି ବିମାନ ସ୍ୱର୍ଣ୍ଣନିର୍ମିତ କୃତ୍ରିମ ମୃଗବିଶିଷ୍ଟ ସୁଗଠିତ ସ୍ତମ୍ଭସମୂହଦ୍ୱାରା ସୁଶୋଭିତ ହୋଇ ସତେ ଯେପରି ନିଜର ଶ୍ରୀରେ ପ୍ରଜ୍ୱଳିତ ହେଉଥିଲା । ୧୩ । ମେରୁ ଓ ମନ୍ଦରପର୍ବତ-ସଦୃଶ ଗଗନସ୍ପର୍ଶୀ କୂଟଗୃହ ଏବଂ ବିହାରଗୃହରାଜିଦ୍ୱାରା ଏହା ସର୍ବତୋଭାବରେ ଅଲଂକୃତ ହୋଇଅଛି । ୧୪ । ଅଗ୍ନି ଓ ସୂର୍ଯ୍ୟସଦୃଶ ପ୍ରଭାଶାଳୀ ଏହି ବିମାନକୁ ବିଶ୍ୱକର୍ମା ସୁନ୍ଦରରୂପେ ନିର୍ମାଣ କରିଥିଲେ । ଏହା ସ୍ୱର୍ଣ୍ଣମୟ ସୋପାନଯୁକ୍ତ ହୋଇ ଏବଂ ଉତ୍କୃଷ୍ଟ ବେଦୀରେ ଅଳଂକୃତ ହୋଇ ମନୋଜ୍ଞ ଦେଖାଯାଉଥିଲା । ୧୫ । ସୁବର୍ଣ୍ଣ ଓ ସ୍ଫଟିକରେ ତିଆରି ଜାଳିଦ୍ୱାର ଏହାର ବାତାୟନ ସବୁ ନିର୍ମିତ ହୋଇଅଛି ଏବଂ ଏହାର ଉତ୍କୃଷ୍ଟ ବେଦୀସମୂହ ଇନ୍ଦ୍ରନୀଳ ମହାନୀଳମଣିରେ ଗ୍ରଥିତ ହୋଇଅଛି । ୧୬ । ବିଚିତ୍ର ବିଦ୍ରୁମ, ମହାମୂଲ୍ୟ ମଣି ଓ ବର୍ତ୍ତୁଳାକୃତି ମୁକ୍ତାଦ୍ୱାରା ଏହାର ତଳଭାଗ ସୁଶୋଭିତ । ୧୭ । ସୂର୍ଯ୍ୟସଦୃଶ ପ୍ରଭାବିଶିଷ୍ଟ ପବିତ୍ର ଗନ୍ଧଯୁକ୍ତ ରକ୍ତଚନ୍ଦନରେ ଚର୍ଚ୍ଚିତ ହୋଇ ଏହା ବାଳସୂର୍ଯ୍ୟସଦୃଶ ଦେଖାଯାଉଥିଲା । ୧୮ ।

ବିମାନଂ ପୁଷ୍ପକଂ ଦିବ୍ୟମାରୁରୋହ ମହାକପିଃ ।
ତତ୍ରସ୍ଥଃ ସର୍ବତୋ ଗନ୍ଧଂ ପାନଭକ୍ଷ୍ୟାନ୍ନସଂଭବମ୍ । ୧୯ ।
ଦିବ୍ୟଂ ସଂମୂର୍ଚ୍ଛିତଂ ଜିଘ୍ରନ୍ରୂପବନ୍ତମିବାନଲମ୍ ।
ସ ଗନ୍ଧସ୍ତଂ ମହାସତ୍ତ୍ୱଂ ବନ୍ଧୁର୍ବନ୍ଧୁମିବୋତ୍ତମମ୍ । ୨୦ ।
ଇତ ଏହୀତ୍ୟୁବାଚେବ ତତ୍ର ଯତ୍ର ସ ରାବଣଃ ।
ତତସ୍ତାଂ ପ୍ରସ୍ଥିତଃ ଶାଲାଂ ଦଦର୍ଶ ମହତୀଂ ଶିବାମ୍ । ୨୧ ।
ରାବଣସ୍ୟ ମହାକାନ୍ତାଂ କାନ୍ତାମିବ ବରସ୍ତ୍ରିୟମ୍ ।
ମଣିସୋପାନବିକୃତାଂ ହେମଜାଲବିରାଜିତାମ୍ । ୨୨ ।
ସ୍ଫାଟିକୈରାବୃତତଲାଂ ଦନ୍ତାନ୍ତରିତରୂପିକାମ୍ ।
ମୁକ୍ତାବଜ୍ରପ୍ରବାଳୈଶ୍ଚ ରୂପ୍ୟଚାମୀକରୈରପି । ୨୩ ।
ବିଭୂଷିତାଂ ମଣିସ୍ତମ୍ଭୈଃ ସୁବହୁସ୍ତମ୍ଭଭୂଷିତାମ୍ ।
ସମୈ ଋଜୁଭିରତ୍ୟୁଚ୍ଚୈଃ ସମନ୍ତାତ୍ସୁବିଭୂଷିତୈଃ । ୨୪ ।
ସ୍ତମ୍ଭୈଃ ପକ୍ଷୈରିବାତ୍ୟୁଚ୍ଚୈର୍ଦିବଂ ସଂପ୍ରସ୍ଥିତାମିବ ।
ମହତ୍ୟା କୁଥୟାସ୍ତୀର୍ଣାଂ ପୃଥିବୀଲକ୍ଷଣାଙ୍କୟା । ୨୫ ।

---

ମହାକପି ହନୁମାନ୍ ସେହି ଦିବ୍ୟ ପୁଷ୍ପକବିମାନରେ ଆରୋହଣ କଲେ ଏବଂ ସେଥିରେ ଅବସ୍ଥାନ କରି, ପାନ ଏବଂ ଭକ୍ଷ୍ୟାନ୍ନସଂଭୂତ ଚତୁର୍ଦ୍ଦିଗବ୍ୟାପୀ ମନୋହର ଗନ୍ଧ ଆଘ୍ରାଣ କଲେ । ଏହି ବାୟୁ ସର୍ବତ୍ର ବ୍ୟାପ୍ତ ହୋଇ, ଯେପରି ସାକ୍ଷାତ୍ ଗନ୍ଧର ସ୍ୱରୂପ ଧାରଣ କରିଅଛି । ବନ୍ଧୁ ଯେପରି ପ୍ରିୟବନ୍ଧୁକୁ ଆହ୍ୱାନ କରେ, ସେହିପରି ସେହି ଗନ୍ଧ ମହାବଳୀ ହନୁମାନଙ୍କୁ ସତେ ଯେପରି କହିଲା, "ଯେଉଁ ସ୍ଥାନରେ ରାବଣ ଅଛନ୍ତି ସେହି ସ୍ଥାନକୁ ଆସ ।" ଅନନ୍ତର ସେ ସେଠାରୁ ଯାଇ ସେହି ବିଶାଳ ଏବଂ ସୁନ୍ଦର ଗୃହ ଦେଖିଲେ । ୧୯-୨୧ । ଏହି ଗୃହ ଅତିଶୟ ରମଣୀୟ ଏବଂ ଉତ୍କୃଷ୍ଟ ରମଣୀସଦୃଶ ରାବଣର ଅତିଶୟ ପ୍ରଣୟଭାଜନ, ତାହାର ସୋପାନଶ୍ରେଣୀ ମଣିରେ ସୁନ୍ଦରଭାବରେ ନିର୍ମିତ ଏବଂ ତାହା ସୁବର୍ଣ୍ଣ ଜାଲରେ ଶୋଭିତ । ୨୨ । ତାହାର ତଳଦେଶ ସ୍ଫଟିକ ପଥରରେ ଆବୃତ ଏବଂ ମଧ୍ୟଭାଗ ହସ୍ତିଦନ୍ତ, ମୁକ୍ତା, ବଜ୍ର, ପ୍ରବାଳ, ରୌପ୍ୟ ଓ ସୁବର୍ଣ୍ଣର ବିବିଧ ପ୍ରତିମାରେ ଶୋଭିତ । ୨୩ । ସମାନ, ସରଳ ଏବଂ ଅତି ଉଚ୍ଚ ବହୁସଂଖ୍ୟକ ମଣିସ୍ତମ୍ଭଦ୍ୱାରା ସେ ଗୃହ ବିଭୂଷିତ ହୋଇଅଛି । ସତେ ଯେପରି ଏହି ଗୃହ ଅତି ଉଚ୍ଚ ସ୍ତମ୍ଭରୂପକ ପକ୍ଷସାହାଯ୍ୟରେ ଆକାଶକୁ ଉଠି ଯାଉଅଛି । ପୃଥିବୀର ଚିହ୍ନସମନ୍ୱିତ ଏକ ବୃହତ୍ ଚିହ୍ନକମ୍ବଳ ସେହି ଗୃହରେ ବିସ୍ତୀର୍ଣ୍ଣ ହୋଇଅଛି । ୨୪-୨୫ । ଏହି ଗୃହ ସର୍ବସ୍ତ୍ରୀ ଗୃହସମେତ ସୁଶୋଭିତ, ପୃଥିବୀ ସଦୃଶ ବିସ୍ତୀର୍ଣ୍ଣ, ମଦମତ୍ତ ବିହଙ୍ଗମାନଙ୍କ ଶବ୍ଦରେ ମୁଖରିତ ଏବଂ ସ୍ୱର୍ଗୀୟ ଗନ୍ଧରେ

ପୃଥିବୀମିବ ବିସ୍ତୀର୍ଣାଂ ସରାଷ୍ଟ୍ରଗୃହଶାଳିନୀମ୍ ।
ନାଦିତାଂ ମତ୍ତବିହଗୈର୍ଦିବ୍ୟଗନ୍ଧାଧିବାସିତାମ୍ । ୨୬ ।
ପରାର୍ଧ୍ୟାସ୍ତରଣୋପେତାଂ ରକ୍ଷୋଽଧିପନିଷେବିତାମ୍ ।
ଧୂମ୍ରାମଗୁରୁଧୂପେନ ବିମଲାଂ ହଂସପାଣ୍ଡୁରାମ୍ । ୨୭ ।
ପତ୍ରପୁଷ୍ପୋପହାରେଣ କଲ୍ମାଷୀମିବ ସୁପ୍ରଭାମ୍ ।
ମନସୋ ମୋଦଜନନୀଂ ବର୍ଣସ୍ୟାପି ପ୍ରସାଧିନୀମ୍ । ୨୮ ।
ତାଂ ଶୋକନାଶିନୀଂ ଦିବ୍ୟାଂ ଶ୍ରିୟଃ ସଂଜନନୀମିବ ।
ଇନ୍ଦ୍ରିୟାଣୀନ୍ଦ୍ରିୟାର୍ଥୈସ୍ତୁ ପଞ୍ଚ ପଞ୍ଚଭିରୁତ୍ତମୈଃ । ୨୯ ।
ତର୍ପୟାମାସ ମାତେବ ତଦା ରାବଣପାଲିତା ।
ସ୍ୱର୍ଗୋଽୟଂ ଦେବଲୋକୋଽୟମିନ୍ଦ୍ରସ୍ୟାପି ପୁରୀ ଭବେତ୍ ।
ସିଦ୍ଧିର୍ବେୟଂ ପରା ହି ସ୍ୟାଦିତ୍ୟମନ୍ୟତ ମାରୁତିଃ । ୩୦ ।
ପ୍ରଧ୍ୟାୟତ ଇବାପଶ୍ୟତ୍ ପ୍ରଦୀପାଂସ୍ତତ୍ର କାଞ୍ଚନାନ୍ ।
ଧୂର୍ତାନିବ ମହାଧୂର୍ତୈର୍ଦେବନେନ ପରାଜିତାନ୍ । ୩୧ ।
ଦୀପାନାଂ ଚ ପ୍ରକାଶେନ ତେଜସା ରାବଣସ୍ୟ ଚ ।
ଅର୍ଚିର୍ଭିର୍ଭୂଷଣାନାଂ ଚ ପ୍ରଦୀପ୍ତେତ୍ୟଭ୍ୟମନ୍ୟତ । ୩୨ ।
ତତୋଽପଶ୍ୟତ୍କୁଥାସୀନଂ ନାନାବର୍ଣାମ୍ବରସ୍ରଜମ୍ ।
ସହସ୍ରଂ ବରନାରୀଣାଂ ନାନାବେଷବିଭୂଷିତମ୍ । ୩୩ ।

---

ସୁବାସିତ । ୨୬ । ଅତି ଉତ୍କୃଷ୍ଟ ବିଛଣାଚଦର ଏଥିରେ ବିଛାହୋଇଛି । ଅଗରୁ ଧୂପରେ ଏହା ଧୂମପୂର୍ଣ୍ଣ ହୋଇଅଛି ଏବଂ ହଂସସଦୃଶ ଶୁଭ୍ରବର୍ଣ୍ଣ ଓ ନିର୍ମଳ ହୋଇଛି । ରକ୍ଷାଧିପତି ସେହି ଗୃହରେ ବସିଅଛି । ୨୭ । ପତ୍ରପୁଷ୍ପଦ୍ୱାରା ଶୋଭିତ ହୋଇ ଏହି ଗୃହ ବିଚିତ୍ରବର୍ଣ୍ଣା ଯମଦଗ୍ନିଙ୍କ ଗାଭୀପରି ସୁନ୍ଦର ପ୍ରଭାବିଶିଷ୍ଟ, ମନର ଆନନ୍ଦଦାୟକ ଓ ଦେହକାନ୍ତିର ସଂସାଧକ ହୋଇଅଛି । ୨୮ । ସେହି ରାବଣରକ୍ଷିତ, ସୌନ୍ଦର୍ଯ୍ୟ ଉତ୍ପାଦନକାରୀ, ଶୋକନାଶକ ଭବନ, ମାତାସଦୃଶ ପଞ୍ଚେନ୍ଦ୍ରିୟର ଭୋଗ୍ୟବସ୍ତୁଦ୍ୱାରା ପଞ୍ଚେନ୍ଦ୍ରିୟଙ୍କୁ ତୃପ୍ତ କରିଦେଉଥିଲା । ପବନନନ୍ଦନ ହନୁମାନ୍ ଏହାକୁ ଦେଖି ମନେ ମନେ ଚିନ୍ତାକଲେ ଏହା ନିଶ୍ଚୟ ସାକ୍ଷାତ୍ ଦେବଲୋକ ସ୍ୱର୍ଗ କିମ୍ବା ଉତ୍କୃଷ୍ଟ ଇନ୍ଦ୍ରପୁରୀ ଅମରାବତୀ କିମ୍ବା ସାକ୍ଷାତ୍ ସିଦ୍ଧି ହେବ । । ୨୯-୩୦ । ତାହା ସୁବର୍ଣ୍ଣଦୀପମାଳାର ଆଲୋକରେ, ଅଳଙ୍କାରର ଜ୍ୟୋତିରେ ଏବଂ ରାବଣର ତେଜଃପ୍ରଭାବରେ ଅତିଶୟ ସମୁଜ୍ଜ୍ୱଳ ହୋଇଥିଲା । ରାବଣର ଶରୀର-ଦୀପ୍ତିରେ ଦୀପମାନଙ୍କର ଜ୍ୟୋତି ମ୍ଳାନ ହୋଇଯାଇ ଅତି ଧୂର୍ତ୍ତ ବ୍ୟକ୍ତିକର୍ତ୍ତୃକ ପରାଜିତ ସାଧାରଣ ଧୂର୍ତ୍ତ ବ୍ୟକ୍ତିପରି ସେ ଦୀପଗୁଡ଼ିକ ଚିନ୍ତାନ୍ୱିତ ହେଲାପରି ଦେଖାଯାଉଥିଲା । ୩୧-୩୨ । ଅନନ୍ତର ସେ ଦେଖିଲେ, ସହସ୍ର ସହସ୍ର ରମଣୀ ନାନା ବର୍ଣ୍ଣର ବସ୍ତ୍ର ଓ ମାଳା ପରିଧାନ କରି ଏବଂ ନାନା ବେଶରେ ବିଭୂଷିତ ହୋଇ

ପରବୃତ୍ତୈର୍ଦ୍ଧରାତ୍ରେ ତୁ ପାନନିଦ୍ରାବଶଂ ଗତମ୍ ।
କ୍ରୀଡ଼ିତ୍ୱୋପରତଂ ରାତ୍ରୌ ପ୍ରସୁପ୍ତଂ ବଲବତ୍ତଦା । ୩୪ ।
ତତ୍ ପ୍ରସୁପ୍ତଂ ବିରୁରୁଚେ ନିଃଶବ୍ଦାନ୍ତରଭୂଷିତମ୍ ।
ନିଃଶବ୍ଦହଂସଭ୍ରମରଂ ଯଥା ପଦ୍ମବନଂ ମହତ୍ । ୩୫ ।
ତାସାଂ ସଂବୃତଦାନ୍ତାନି ମୀଲିତାକ୍ଷୀଣି ମାରୁତିଃ ।
ଅପଶ୍ୟତ୍ପଦ୍ମଗନ୍ଧୀନି ବଦନାନି ସୁଯୋଷିତାମ୍ । ୩୬ ।
ପ୍ରବୁଦ୍ଧାନୀବ ପଦ୍ମାନି ତାସାଂ ଭୂତ୍ୱା କ୍ଷପାକ୍ଷୟେ ।
ପୁନଃ ସଂବୃତପତ୍ରାଣି ରାତ୍ରାବିବ ବଭୁସ୍ତଦା । ୩୭ ।
ଇମାନି ମୁଖପଦ୍ମାନି ନିୟତଂ ମତ୍ତଷଟ୍ପଦାଃ ।
ଅମ୍ବୁଜାନୀବ ଫୁଲ୍ଲାନି ପ୍ରାର୍ଥୟନ୍ତି ପୁନଃ ପୁନଃ । ୩୮।
ଇତି ଚାମନ୍ୟତ ଶ୍ରୀମାନୁପପତ୍ତ୍ୟା ମହାକପିଃ ।
ମେନେ ହି ଗୁଣତସ୍ତାନି ସମାନି ସଲିଲୋଦ୍ଭବୈଃ । ୩୯ ।
ସା ତସ୍ୟ ଶୁଶୁଭେ ଶାଲା ତାଭିଃ ସ୍ତ୍ରୀଭିର୍ବିରାଜିତା ।
ଶରଦୀବ ପ୍ରସନ୍ନା ଦ୍ୟୌସ୍ତାରାଭିରଭିଶୋଭିତା । ୪୦ ।

---

ଚିତ୍ରକମ୍ବଳ ଉପରେ ବସିରହିଛନ୍ତି । ୩୩ । ଅର୍ଦ୍ଧରାତ୍ର ଅତୀତ ହେବାରୁ ସେମାନେ ମଦ୍ୟପାନର ନିଶା ଏବଂ ନିଦ୍ରାର ବଶୀଭୂତ ହୋଇ, ବିହାରକ୍ରୀଡ଼ାରୁ ବିରତ ହୋଇ ଗାଢ଼ନିଦ୍ରାରେ ଶୋଇପଡ଼ିଛନ୍ତି । ୩୪ । ଏହିପରି ସମସ୍ତେ ଶୋଇପଡ଼ିବାରୁ ଏବଂ ଅଳଙ୍କାରମାନଙ୍କର ଝଙ୍କାର ଶବ୍ଦ ବନ୍ଦ ହୋଇଯିବାରୁ ରାବଣର ସେହି ଗୃହ ଭ୍ରମର ଓ ହଂସଧ୍ୱନିବିରହିତ ବୃହତ୍ ପଦ୍ମବନପରି ମନୋହର ଶୋଭା ଧାରଣ କରିଅଛି । ୩୫ । ଅନନ୍ତର ମାରୁତିନନ୍ଦନ ହନୁମାନ୍ ସେହି ସୁନ୍ଦରୀ ରମଣୀମାନଙ୍କର ପଦ୍ମଗନ୍ଧସମନ୍ୱିତ ବଦନମଣ୍ଡଳ ଅବଲୋକନ କଲେ । ସେମାନଙ୍କର ଚକ୍ଷୁସମୂହ ନିମୀଳିତ ହୋଇଯାଇଥିଲା ଓ ଦନ୍ତରାଜି ବିକଶିତ ହୋଇଥିଲା ।୩୬ । ସେମାନଙ୍କର ମୁଖମଣ୍ଡଳ ନିଶାଅବସାନରେ ପଦ୍ମପୁଷ୍ପପରି ପ୍ରସ୍ଫୁଟିତ ହୋଇ ପୁନର୍ବାର ନିଶାସମୟରେ ପାଖୁଡ଼ା ମୁଦ୍ରିତ ହୋଇ ଯାଇଥିବା ପଦ୍ମପୁଷ୍ପସଦୃଶ ପରମଶୋଭା ଧାରଣ କରିଥିଲା । । ୩୭ । ତାହାଦେଖି ମହାକପି ହନୁମାନ୍ ଯୁକ୍ତିସହକାରେ ବିବେଚନା କଲେ ଯେ ମତ୍ତ ଭ୍ରମରମାନେ ପ୍ରଫୁଲ୍ଲିତ ପଦ୍ମପୁଷ୍ପସଦୃଶ ଏହି ମୁଖକମଳମାନଙ୍କୁ ସତତ ଅଭିଳାଷ କରୁଅଛନ୍ତି । ୩୮ । ଏହିପରି ବିଚାର କରି ସେ ସେହି ସମସ୍ତ ମୁଖପଦ୍ମକୁ ଗୁଣରେ ଜଳଜାତ ପଦ୍ମସହିତ ତୁଳନା କଲେ । ୩୯ । ରାବଣର ଶୟନଗୃହ ଏହି ସକଳ ବରାଙ୍ଗନାଙ୍କ ଦ୍ୱାରା ଅଳଙ୍କୃତ ହୋଇ ଶରତ୍କାଳୀନ ନକ୍ଷତ୍ରବିଭୂଷିତ ସୁନିର୍ମଳ ନଭୋମଣ୍ଡଳସଦୃଶ ଶୋଭାପାଉଥିଲା । ୪୦ । ଶ୍ରୀମାନ୍ ରାକ୍ଷସରାଜ ରାବଣ

ସ ଚ ତାଭିଃ ପରିବୃତଃ ଶୁଶୁଭେ ରାକ୍ଷସାଧିପଃ ।
ଯଥା ହ୍ୟଡୁପତିଃ ଶ୍ରୀମାଂସ୍ତାରାଭିରିବ ସଂବୃତଃ । ୪୧ ।
ଯାଶ୍ଚ୍ୟବନ୍ତେଽମ୍ବରାତ୍ତାରାଃ ପୁଣ୍ୟଶେଷସମାବୃତାଃ ।
ଇମାସ୍ତାଃ ସଂଗତାଃ କୃତ୍ସ୍ନା ଇତି ମେନେ ହରିସ୍ତଦା । ୪୨।
ତାରାଣାମିବ ସୁବ୍ୟକ୍ତଂ ମହତୀନାଂ ଶୁଭାର୍ଚିଷାମ୍ ।
ପ୍ରଭାବର୍ଣ୍ଣପ୍ରସାଦାଶ୍ଚ ବିରେଜୁସ୍ତତ୍ର ଯୋଷିତାମ୍ । ୪୩ ।
ବ୍ୟାବୃତ୍ତକଚପୀନସ୍ରକ୍ପ୍ରକୀର୍ଣ୍ଣବରଭୂଷଣାଃ ।
ପାନବ୍ୟାୟାମକାଲେଷୁ ନିଦ୍ରୋପହତଚେତସଃ । ୪୪ ।
ବ୍ୟାବୃତ୍ତତିଲକାଃ କାଶ୍ଚିତ୍ କାଶ୍ଚିଦୁଦ୍‌ଭ୍ରାନ୍ତନୂପୁରାଃ ।
ପାର୍ଶ୍ୱେ ଗଳିତହାରାଶ୍ଚ କାଶ୍ଚିତ୍ପରମଯୋଷିତଃ । ୪୫ ।
ମୁକ୍ତାହାରାବୃତାଶ୍ଚାନ୍ୟା କାଶ୍ଚିତ୍ ପ୍ରସ୍ରସ୍ତବାସସଃ ।
ବ୍ୟାବଦ୍ଧରଶନାଦାମାଃ କିଶୋର୍ଯ ଇବ ବାହିତାଃ ।୪୬।
ଅକୁଣ୍ଡଳଧରାଶ୍ଚାନ୍ୟା ବିଚ୍ଛିନ୍ନମୃଦିତସ୍ରଜଃ ।
ଗଜେନ୍ଦ୍ରମୃଦିତାଃ ଫୁଲ୍ଲା ଲତା ଇବ ମହାବନେ । ୪୭ ।
ଚନ୍ଦ୍ରାଂଶୁକିରଣାଭାଶ୍ଚ ହାରାଃ କାସାଂଚଦୁଦ୍ଗତାଃ ।
ହଂସା ଇବ ବଭୁଃ ସୁପ୍ତାଃ ସ୍ତନମଧ୍ୟେଷୁ ଯୋଷିତାମ୍ । ୪୮ ।

---

ସେହି ରମଣୀମାନଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ନକ୍ଷତ୍ରମାଳାପରିବୃତ ଚନ୍ଦ୍ର-ସଦୃଶ ଶୋଭାପାଉଥିଲେ । ୪୧ । ହନୁମାନ୍ ସେତେବେଳେ ଭାବିଲେ, ଯେଉଁ ତାରାମାନେ ପୁଣ୍ୟକ୍ଷୟହେତୁ ଆକାଶରୁ ଖସିପଡ଼ୁଛନ୍ତି, ସେହିମାନେ ସମସ୍ତେ ସତେ ଯେପରି ଏଠାରେ ସମବେତ ହୋଇଅଛନ୍ତି । ୪୨ । ନିର୍ମଳପ୍ରଭାବିଶିଷ୍ଟ ସୁପ୍ରଷ୍ଟ ତାରକାରାଜିସଦୃଶ ସେହି ରମଣୀମାନଙ୍କର ଉଜ୍ଜ୍ୱଳକାନ୍ତି ଏବଂ ବର୍ଣ୍ଣର ସୁଷମା ଶୋଭାପାଉଥିଲା । ୪୩ । ସେହି ରମଣୀମାନେ ମଦ୍ୟପାନ ଓ ରତିଶ୍ରମବଶତଃ ନିଦ୍ରାରେ ଅଚେତନ ହେବାରୁ ସେମାନଙ୍କର ବିସ୍ରସ୍ତ କେଶକଳାପ, କୋମଳ ହାର ଏବଂ ଉତ୍କୃଷ୍ଟ ଭୂଷଣସମୂହ ଇତସ୍ତତଃ ବିକ୍ଷିପ୍ତ ହୋଇପଡ଼ିଥିଲା । ୪୪ । କାହାର କାହାର ଟିକିଲି ଖସିପଡ଼ିଥିଲା, କାହାର ବା ନୂପୁର ଖସିପଡ଼ିଥିଲା ଏବଂ କାହାର ହାରମାନ ଖସି ପାଖରେ ପଡ଼ିରହିଥିଲା ।୪୫। କାହାର ମୁକ୍ତାହାର ଛିନ୍ନ, କାହାର ବା ବସ୍ତ୍ର ବିସ୍ରସ୍ତ ଏବଂ କାହାର କଟିମେଖଳା ଛିଣ୍ଡିଯାଇ ସେ ବହନଶ୍ରାନ୍ତ କିଶୋରୀଘୋଟକୀପରି ଶୋଇ ରହିଥିଲେ ।୪୬। ଅନ୍ୟ କାହାର କାହାର କୁଣ୍ଡଳ ନ ଥିବାରୁ ଏବଂ ପୁଷ୍ପହାରଗୁଡ଼ିକ ବିଚ୍ଛିନ୍ନ ଓ ବିମର୍ଦ୍ଦିତ ହୋଇଯାଇଥିବାରୁ,ସେମାନେ ମହାବନରେ ହସ୍ତିଦଳିତ,ପ୍ରଫୁଲ୍ଲିତ ଲତାପରି ଶୋଭାପାଉଛନ୍ତି । ୪୭ । କୌଣସି କୌଣସି ରମଣୀଙ୍କର ଚନ୍ଦ୍ରକିରଣ

ଅପରାସାଂ ଚ ବୈଦୂର୍ଯାଃ କାଦମ୍ବା ଇବ ପକ୍ଷିଣଃ ।
ହେମସୂତ୍ରାଣି ଗୃନ୍ୟାସାଂ ଚକ୍ରବାକା ଇବାଭବନ୍ । ୪୯ ।
ହଂସକାରଣ୍ଡବୋପେତାଶ୍ଚକ୍ରବାକୋପଶୋଭିତାଃ ।
ଆପଗା ଇବ ତା ରେଜୁର୍ଜଘନୈଃ ପୁଳିନୈରିବ । ୫୦ ।
କିଙ୍କିଣୀଜାଲସଂକୋଶାସ୍ତା ହେମବିପୁଲାମ୍ବୁଜାଃ ।
ଭାବଗ୍ରାହା ଯଶସ୍ତୀରାଃ ସୁପ୍ତା ନଦ୍ୟ ଇବାବଭୁଃ । ୫୧ ।
ମୃଦୁଷ୍ୱଙ୍ଗେଷୁ କାସାଂଚିତ୍କୁଚାଗ୍ରେଷୁ ଚ ସଂସ୍ଥିତାଃ ।
ବୁଭୁବୁର୍ଭୂଷଣାନୀବ ଶୁଭା ଭୂଷଣରାଜୟଃ । ୫୨ ।
ଅଂଶୁକାନ୍ତାଶ୍ଚ କାସାଂଚିନ୍ମୁଖମାରୁତକମ୍ପିତାଃ ।
ଉପର୍ଯୁପରି ବକ୍ତ୍ରାଣାଂ ବ୍ୟାଧୂୟନ୍ତେ ପୁନଃ ପୁନଃ । ୫୩ ।
ତାଃ ପାତାକା ଇବୋଦ୍ଧୂତାଃ ପତ୍ନୀନାଂ ରୁଚିରପ୍ରଭାଃ ।
ନାନାବର୍ଣ୍ଣସୁବର୍ଣ୍ଣାନାଂ ବକ୍ତ୍ରମୂଳେଷୁ ରେଜିରେ । ୫୪ ।
ବବଲ୍ଗୁଶ୍ଚାତ୍ର କାଂସାଂଚିତ୍କୁଣ୍ଡଲାନି ଶୁଭାର୍ଚିଷାମ୍ ।
ମୁଖମାରୁତସମ୍ପର୍କୈର୍ମନ୍ଦଂ ମନ୍ଦଂ ଚ ଯୋଷିତାମ୍ । ୫୫ ।

---

ସଦୃଶ ଶୁଭ୍ରବର୍ଣ୍ଣ ହାର ବାହାରକୁ ବାହାରପଡ଼ି ପ୍ରସୁପ୍ତ ହଂସପରି ସ୍ତନଦ୍ୱୟମଧ୍ୟରେ ସୁନ୍ଦର ଦିଶୁଛି ।୪୮। ଅନ୍ୟ କାହାର ବୈଦୂର୍ଯ୍ୟମାଳା କଳହଂସପଂକ୍ତିସଦୃଶ ଏବଂ ଅନ୍ୟ କାହାର ସୁବର୍ଣ୍ଣହାର ଚକ୍ରବାକପଂକ୍ତିପରି ଶୋଭାପାଉଛି । ୪୯ । ସେହି ରମଣୀମାନେ ହଂସ ଓ କାରଣ୍ଡବଯୁକ୍ତ ତଥା ଚକ୍ରବାକଶୋଭିତ ନଦୀସଦୃଶ ଶୋଭାପାଉଥିଲେ ଏବଂ ସେମାନଙ୍କର ଜଘନ ନଦୀତୀରସ୍ଥ ବାଲୁକାଭୂମିପରି ସୁନ୍ଦର ଦିଶୁଥିଲା । ୫୦ । ଯଶ ସେମାନଙ୍କର ତୀରଦେଶ, ସେମାନଙ୍କର ବିଳାସ ଓ ବିଭ୍ରମାଦି ଭାବ ମକର ଓ କୁମ୍ଭୀରସଦୃଶ,ସେମାନଙ୍କର କିଙ୍କିଣୀଜାଲ ନଦୀର କୁଳୁକୁଳୁ ଧ୍ୱନି ଏବଂ ସ୍ୱର୍ଣ୍ଣ ଅଳଂକାର ସେହି ସବୁ ନଦୀର ପଦ୍ମସଦୃଶ ଦେଖାଯାଉଥିଲା । ଏହିପରି ସେମାନେ ସୁପ୍ତନଦୀପରି ଶୋଭାପାଉଥିଲେ । ୫୧ । କୌଣସି କୌଣସି ରମଣୀର ସୁକୋମଳ ଅଙ୍ଗରେ, କାହାର ବା କୁଚାଗ୍ରରେ ଯେଉଁସବୁ ନଖକ୍ଷତ ଉଦ୍ଭୂତ ଚିହ୍ନ ରହିଥିଲା, ସେ ସମସ୍ତ ଅଳଙ୍କାରର କାର୍ଯ୍ୟ କରୁଥିଲା ।୫୨। କାହାର ବସ୍ତ୍ରାଞ୍ଚଳ ମୁଖର ନିଃଶ୍ୱାସ ପବନରେ କମ୍ପିତ ହୋଇ ବଦନର ଉପରି ଭାଗରେ ବାରମ୍ବାର ଦୋହଲୁଥିଲା । ୫୩ । ସେଗୁଡିକ ନାନାବର୍ଣ୍ଣରଞ୍ଜିତ, ସୁବର୍ଣ୍ଣଚିହ୍ନନିର୍ମିତ, ସୁନ୍ଦର ପତାକାପରି ସେହି ସୁବର୍ଣ୍ଣବର୍ଣ୍ଣୀମାନଙ୍କ ମୁଖମଣ୍ଡଳରେ ଉଡୁଥିଲା । ୫୪ । କୌଣସି କୌଣସି କାନ୍ତିମତୀ କାମିନୀଙ୍କର କୁଣ୍ଡଳଗୁଡିକ ମୁଖର ନିଃଶ୍ୱାସବାୟୁସମ୍ପର୍କରେ ମନ୍ଦ

ଶର୍କରାସବଗନ୍ଧଃ ସ ପ୍ରକୃତ୍ୟା ସୁରଭିଃ ସୁଖଃ ।
ତାସାଂ ବଦନନିଃଶ୍ୱାସଃ ସିଷେବେ ରାବଣଂ ତଦା । ୫୬ ।
ରାବଣାନନଶଙ୍କାଶ୍ଚ କାଶ୍ଚିଦ୍ରାବଣଯୋଷିତଃ ।
ମୁଖାନି ଚ ସପତ୍ନୀନାମୁପାଜିଘ୍ରନ୍ ପୁନଃ ପୁନଃ । ୫୭ ।
ଅତ୍ୟର୍ଥଂ ସକ୍ତମନସୋ ରାବଣେ ତା ବରସ୍ତ୍ରିୟଃ ।
ଅସ୍ୱତନ୍ତ୍ରାଃ ସପତ୍ନୀନାଂ ପ୍ରିୟମେବାଚରଂସ୍ତଦା । ୫୮ ।
ବାହୂନୁପନିଧାୟାନ୍ୟାଃ ପାରିହାର୍ଯବିଭୂଷିତାଃ ।
ଅଂଶୁକାନି ଚ ରମ୍ୟାଣି ପ୍ରମଦାସ୍ତତ୍ର ଶିଶ୍ୟିରେ । ୫୯ ।
ଅନ୍ୟା ବକ୍ଷସି ଚାନ୍ୟସ୍ୟାସ୍ତସ୍ୟାଃ କାଚପୁନର୍ଭୁଜମ୍ ।
ଅପରା ତ୍ୱଙ୍କମନ୍ୟସ୍ୟାସ୍ତସ୍ୟାଶ୍ଚାପ୍ୟପରା କୁଚୌ । ୬୦ ।
ଊରୁପାର୍ଶ୍ୱକଟୀପୃଷ୍ଠମନ୍ୟୋନ୍ୟସ୍ୟ ସମାଶ୍ରିତାଃ ।
ପରସ୍ପରନିବିଷ୍ଟାଙ୍ଗ୍ୟୋ ମଦସ୍ନେହବଶାନୁଗାଃ । ୬୧ ।
ଅନ୍ୟୋନ୍ୟସ୍ୟାଙ୍ଗସଂସ୍ପର୍ଶାତ୍ ପ୍ରୀୟମାଣାଃ ସୁମଧ୍ୟମାଃ ।
ଏକୀକୃତଭୁଜାଃ ସର୍ବାଃ ସୁଷୁପୁସ୍ତତ୍ର ଯୋଷିତଃ । ୬୨ ।

---

ମଦଭରରେ ଆନ୍ଦୋଳିତ ହେଉଥିଲା ।୫୫। ସେତେବେଳେ ସେମାନଙ୍କର ସ୍ୱାଭାବିକ ସୁଗନ୍ଧି ବଦନରୁ ନିସୃତ ମୁଖସ୍ପର୍ଶ ନିଶ୍ୱାସବାୟୁ ମଦ୍ୟଗନ୍ଧରେ ଅଧିକତର ସୁଗନ୍ଧିତ ହୋଇ ରାବଣର ସୁଖୋତ୍ପାଦନ କରୁଥିଲା । ୫୬ । ରାବଣର କୌଣସି କୌଣସି ପତ୍ନୀ ଭ୍ରମରେ ରାବଣର ମୁଖ ବୋଲି ଭାବିକରି ବାରମ୍ବାର ସପତ୍ନୀମାନଙ୍କର ମୁଖ ଆଘ୍ରାଣ କରୁଥିଲେ । ୫୭ । ରାବଣର ସେହି ଉତ୍କୃଷ୍ଟ ଅଙ୍ଗନାମାନଙ୍କର ମନ ରାବଣଠାରେ ଏକାନ୍ତ ଆସକ୍ତ ହୋଇଥିବାରୁ ସେମାନେ ଆତ୍ମବିସ୍ମୃତା ହୋଇ ସପତ୍ନୀମାନଙ୍କର ପ୍ରିୟସାଧନ କରୁଥିଲେ । ୫୮ । ଅଙ୍ଗଦବିଭୂଷିତା ଅନ୍ୟ କେତେକ ରମଣୀ ବାହୁଦ୍ୱୟକୁ ଉପାଧାନସ୍ୱରୂପ ବ୍ୟବହାର କରି ରମଣୀୟ ପରିଧେୟ ବସ୍ତ୍ରର ଅଞ୍ଚଳ ମେଲାଇ ତହିଁ ଉପରେ ଶୋଇଥିଲେ । ୫୯ । କିଏ କାହାର ବକ୍ଷ ଉପରେ, କିଏ ବା କାହାର ଭୁଜ ଉପରେ, ପୁଣି କିଏ କାହାର କୋଡ଼ରେ, କିଏ ବା କାହାର କୁଚଯୁଗଳ ଉପରେ ଶୋଇଥିଲେ । ୬୦ । ଏହିରୂପେ ମାଦକତା ଏବଂ ପତିପ୍ରେମର ବଶବର୍ତ୍ତିନୀ ହୋଇ ଏହି ରମଣୀମାନେ ପରସ୍ପରର ଊରୁ, କଟୀ, ପାର୍ଶ୍ୱ ଓ ପୃଷ୍ଠଦେଶକୁ ଆଶ୍ରୟକରି ପରସ୍ପର ଛନ୍ଦାଛନ୍ଦି ହୋଇ ଶୋଇଥିଲେ । ୬୧ । ସେହି ସୁମଧ୍ୟମା କାମିନୀ ପରସ୍ପର ଅଙ୍ଗସ୍ପର୍ଶରେ ସୁଖ ଅନୁଭବ କରି ଭୁଜ ଛନ୍ଦାଛନ୍ଦି ହୋଇ

ଅନ୍ୟୋନ୍ୟଭୁଜସୂତ୍ରେଣ ସ୍ତ୍ରୀମାଲା ଗ୍ରଥିତା ହି ସା ।
ମାଲେବ ଗ୍ରଥିତା ସୂତ୍ରେ ଶୁଶୁଭେ ମତ୍ତଷଟ୍‌ପଦା । ୭୩ ।
ଲତାନାଂ ମାଧବେ ମାସି ଫୁଲ୍ଲାନାଂ ବାୟୁସେବନାତ୍ ।
ଅନ୍ୟୋନ୍ୟମାଲାଗ୍ରଥିତଂ ସଂସକ୍ତକୁସୁମୋଚ୍ଚୟମ୍ । ୭୪ ।
ପ୍ରତିବେଷ୍ଟିତସୁସ୍କନ୍ଧମନ୍ୟୋନ୍ୟଭ୍ରମରାକୁଳମ୍ ।
ଆସୀଦ୍ ବନମିବୋଦ୍ଧୂତଂ ସ୍ତ୍ରୀବନଂ ରାବଣସ୍ୟ ତତ୍ । ୭୫ ।
ଉଚିତେଷ୍ୱପି ସୁବ୍ୟକ୍ତଂ ନ ତାସାଂ ଯୋଷିତାଂ ତଦା ।
ବିବେକଂ ଶକ୍ୟମାଧାତୁଂ ଭୂଷଣାଙ୍ଗାମ୍ବରସ୍ରଜାମ୍ । ୭୬ ।
ରାବଣେ ସୁଖସଂବିଷ୍ଟେ ତାଃ ସ୍ତ୍ରିୟୋ ବିବିଧପ୍ରଭାଃ ।
ଜ୍ୱଲନ୍ତଃ କାଞ୍ଚନା ଦୀପାଃ ପ୍ରେକ୍ଷନ୍ତାନିମିଷା ଇବ । ୭୭ ।
ରାଜର୍ଷିବିପ୍ରଦୈତ୍ୟାନାଂ ଗନ୍ଧର୍ବାଣାଂ ଚ ଯୋଷିତଃ ।
ରକ୍ଷସାଂ ଚାଭବନ୍ କନ୍ୟାସ୍ତସ୍ୟ କାମବଶଂ ଗତାଃ । ୭୮ ।
ଯୁଦ୍ଧକାମେନ ତାଃ ସର୍ବା ରାବଣେନ ହୃତାଃ ସ୍ତ୍ରିୟଃ ।
ସମଦା ମଦନେନୈବ ମୋହିତାଃ କାଶ୍ଚିଦାଗତାଃ । ୭୯ ।

---

ଶୋଇଥିଲେ । ୭୨ । ପରସ୍ପରର ଭୁଜସୂତ୍ରରେ ଗ୍ରଥିତ ଏହି ରମଣୀପଂକ୍ତି, ଏକ ସୂତ୍ରରେ ଗ୍ରଥିତ ହୋଇ ଉନ୍ମତ୍ତ ଭ୍ରମର ବସିଥିବା ଫୁଲମାନ ମାଳାରେ ଗୁନ୍ଥା ହୋଇଥିବାପରି ସୁନ୍ଦର ଦିଶୁଥିଲା । ୭୩ । ରାବଣର ସେହି ରମଣୀ ବନ, ଚୈତ୍ରମାସରେ ପ୍ରଫୁଲ୍ଲିତ ଲତାମାନେ ବାୟୁହିଲ୍ଲୋଳରେ ପରସ୍ପର ଜଡ଼ିତ ହୋଇ ଗୁନ୍ଥାହୋଇଥିବା କୁସୁମସ୍ତବକର ମାଳାପରି ସୁନ୍ଦର ଦିଶୁଥିଲା । ସମସ୍ତ ଲତା ଏକସଙ୍ଗରେ ଗୋଟିଏ ସୁନ୍ଦର ବୃକ୍ଷର ସ୍କନ୍ଧଦେଶରେ ବେଢ଼ିରହିଲାପରି ସେମାନେ ରହିଥିଲେ ଏବଂ ଭ୍ରମରମାନେ ପରସ୍ପର ଆଡ଼କୁ ପ୍ରଧାବିତ ହେଉଥିଲେ, ରାବଣର ସେହି ରମଣୀ ବନ ଠିକ୍ ଏହିପରି ଶୋଭପାଉଥିଲା । ୭୪-୭୫ । ସେହି ରମଣୀମାନଙ୍କର ଅଳଙ୍କାର ପ୍ରଭୃତି ସ୍ୱସ୍ୱଭାବରେ ଯଥାସ୍ଥାନରେ ବିନ୍ୟସ୍ତ ହୋଇ ରହିଥିଲେ ମଧ୍ୟ କେଉଁଟି ଭୂଷଣ, କେଉଁଟି ବସ୍ତ୍ର, ବା କେଉଁଟି ପୁଷ୍ପହାର, ବା କଏ ସେମାନଙ୍କର ଅଙ୍ଗପ୍ରତ୍ୟଙ୍ଗ ତାହା ଠିକ୍ ଜାଣିହେଉ ନ ଥିଲା । ୭୬ । ରାବଣ ସୁଖରେ ଶୋଇଥିବାର ଜାଣି ଯେପରି କି ସେହି ଜ୍ୱଳନ୍ତ ସ୍ୱର୍ଣ୍ଣପ୍ରଦୀପମାନେ ଅନିମିଷଲୋଚନରେ ରାବଣର ସେହି ନାନାପ୍ରକାର ପ୍ରଭାବିଶିଷ୍ଟ ପତ୍ନୀମାନଙ୍କୁ ନିରୀକ୍ଷଣ କରୁଥିଲେ । ୭୭ । ରାଜର୍ଷି, ବ୍ରାହ୍ମଣ, ଦୈତ୍ୟ, ଗନ୍ଧର୍ବ ଓ ରାକ୍ଷସମାନଙ୍କର କନ୍ୟାମାନେ ରାବଣର କାମବଶବର୍ତ୍ତିନୀ ହୋଇଥିଲେ । ୭୮ । ସେ ସମସ୍ତଙ୍କ ମଧ୍ୟରୁ କାହାରି କାହାରିକୁ ରାବଣ ଯୁଦ୍ଧକରିବା ଅଭିଳାଷରେ ହରଣକରି ଆଣିଥିଲା । ଆଉ କେହି କେହି ମଦୋନ୍ମତ୍ତ ରମଣୀ

ନ ତତ୍ର କାଶ୍ଚିତ୍ ପ୍ରମଦାଃ ପ୍ରସହ୍ୟ
ବୀର୍ଯ୍ୟୋପପନ୍ନେନ ଗୁଣେନ ଲବ୍ଧାଃ ।
ନ ଚାନ୍ୟକାମାପି ନ ଚାନ୍ୟପୂର୍ବା
ବିନା ବରାର୍ହାଂ ଜନକାତ୍ମଜାଂ ତୁ । ୭୦ ।

ନ ଚାକୁଲୀନା ନ ଚ ହୀନରୂପା
ନାଦକ୍ଷିଣା ନାନୁପଚାରଯୁକ୍ତା ।
ଭାର୍ଯ୍ୟାଭବତ୍ତସ୍ୟ ନ ହୀନସତ୍ତ୍ୱା
ନ ଚାପି କାନ୍ତସ୍ୟ ନ କାମନୀୟା ।୭୧ ।
ବଭୂବ ବୁଦ୍ଧିସ୍ତୁ ହରୀଶ୍ୱରସ୍ୟ
ଯଦୀଦୃଶୀ ରାଘବଧର୍ମପତ୍ନୀ ।
ଇମା ମହାରାକ୍ଷସରାଜଭାର୍ଯ୍ୟାଃ
ସୁଜାତମସ୍ୟେତି ହି ସାଧୁବୁଦ୍ଧେଃ । ୭୨ ।
ପୁନଶ୍ଚ ସୋଽଚିନ୍ତୟଦାର୍ତ୍ତରୂପୋ
ଧ୍ରୁବଂ ବିଶିଷ୍ଟା ଗୁଣତୋ ହି ସୀତା ।

---

କାମମୋହିତା ହୋଇ ସ୍ୱୟଂ ସେଠାକୁ ଆସିଥିଲେ । ୬୯ । କେବଳ ବରବର୍ଣ୍ଣିନୀ ଜନକନନ୍ଦିନୀଙ୍କ ବ୍ୟତୀତ ଅନ୍ୟ କୌଣସି ରମଣୀକୁ ବୀର୍ଯ୍ୟଶାଳୀ ରାବଣ ବଳପୂର୍ବକ ହରଣକରି ସେଠାକୁ ଆଣି ନ ଥିଲା । ସେଠାରେ ଯେଉଁମାନେ ଥିଲେ, ସେମାନେ କେହି ଅନ୍ୟ କୌଣସି ପୁରୁଷକୁ କାମନା କରୁ ନ ଥିଲେ ବା ଅନ୍ୟ କୌଣସି ପୁରୁଷ ସହିତ ପୂର୍ବରୁ ବିବାହ କରି ନ ଥିଲେ । ୭୦ । ତାହାର ଭାର୍ଯ୍ୟାମାନଙ୍କ ମଧ୍ୟରେ କେହି ନୀଚକୁଳଜାତା, ଅସୁନ୍ଦରୀ, ଅକୁଶଳା, ଶିଷ୍ଟାଚାରଶୂନ୍ୟା, ଦୁର୍ବଳା ଅଥବା ସ୍ୱାମୀ ଯାହାକୁ ଇଚ୍ଛା ନ କରନ୍ତି ଏପରି କେହି ନ ଥିଲେ । ୭୧ । ସାଧୁବୁଦ୍ଧି ବାନରଶ୍ରେଷ୍ଠ ହନୁମାନ୍ ରାବଣର ଏହି ଧର୍ମପତ୍ନୀମାନଙ୍କୁ ଦେଖି ଭାବିଲେ, "ରାମଙ୍କର ଧର୍ମପତ୍ନୀ ସୀତା, ଏହି ରାକ୍ଷସରାଜର ଭାର୍ଯ୍ୟାମାନେ ଯେପରି ରାବଣପ୍ରତି ଅନୁରକ୍ତା ହୋଇଛନ୍ତି, ଠିକ ସେହିପରି ତା'ପ୍ରତି ଅନୁରକ୍ତା ହୋଇଥାଆନ୍ତେ, ତେବେ ରାବଣର ଭଲ ହୁଅନ୍ତା । ସେ ପୁଣି ଅତ୍ୟନ୍ତ କାତର ହୋଇ ଭାବିଲେ, 'ନା, ସୀତା ନିଶ୍ଚୟ ଅଦ୍ଭୁତା ଆଉ ଶ୍ରେଷ୍ଠଗୁଣସମ୍ପନ୍ନା ; ଏଥିରେ ସନ୍ଦେହ ନାହିଁ । ଲଙ୍କାଧିପତି

**ଅଥାୟୁମସ୍ୟାଂ କୃତକାନ୍ତହାମ୍ପା**
**ଲଙ୍କେଶ୍ୱରଃ କଷ୍ଟମନାର୍ଯକର୍ମ । ୭୩ ।**

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ
ସଂହିତାୟାଂ ସୁନ୍ଦରକାଣ୍ଡେ ସଂକୁଲାନ୍ତଃପୁରମ୍
ନାମ ନବମଃ ସର୍ଗଃ ।

---

ମହାତ୍ମା ରାବଣ ତାଙ୍କୁ ହରଣକରିବା ଦ୍ୱାରା ତାଙ୍କ ପ୍ରତି ଅତି କଷ୍ଟଦାୟକ ଅନାର୍ଯ୍ୟ ବ୍ୟବହାର କରିଅଛି । ୭୨-୭୩ ।

---

# ଦଶମଃ ସର୍ଗଃ

## ମନ୍ଦୋଦରୀଦର୍ଶନମ୍

**ତତ୍ର ଦିବ୍ୟୋପମଂ ମୁଖ୍ୟଂ ସ୍ଫାଟିକଂ ରତ୍ନଭୂଷିତମ୍ ।**
**ଅବେକ୍ଷମାଣୋ ହନୁମାନ୍ ଦଦର୍ଶ ଶୟନାସନମ୍ । ୧ ।**
**ଦାନ୍ତକାଞ୍ଚନଚିତ୍ରାଙ୍ଗୈର୍ବୈଦୂର୍ଯୈଶ୍ଚ ବରାସନୈଃ ।**
**ମହାର୍ହାସ୍ତରଣୋପେତୈରୁପପନ୍ନଂ ମହାଧନୈଃ । ୨ ।**
**ତସ୍ୟ ଚୈକତମେ ଦେଶେ ଦିବ୍ୟମାଲୋପଶୋଭିତମ୍ ।**
**ଦଦର୍ଶ ପାଣ୍ଡୁରଂ ଛତ୍ରଂ ତାରାଧିପତିସଂନିଭମ୍ । ୩ ।**

---

# ୧୦ମ ସର୍ଗ

## ( ହନୁମାନଙ୍କର ମନ୍ଦୋଦରୀଦର୍ଶନ )

ଅନନ୍ତର ସେଠାରେ ହନୁମାନ୍ ଘର ଆଡ଼କୁ ଚାହିଁ ଚାହିଁ ରତ୍ନବିଭୂଷିତ ସ୍ଫଟିକମୟ ଏକ ଦିବ୍ୟ ଉତ୍କୃଷ୍ଟ ପଲଙ୍କ ବେଦୀ ଦେଖିଲେ । ୧ । ହସ୍ତିଦନ୍ତ ଓ ସୁବର୍ଣ୍ଣ ପାଦଯୁକ୍ତ, ବୈଦୂର୍ଯ୍ୟନିର୍ମିତ, ଅତି ମୂଲ୍ୟବାନ୍ ଉତ୍କୃଷ୍ଟ ପଲଙ୍କମାନ ତାହା ଉପରେ ରଖାଯାଇଥିଲା ଏବଂ ସେହି ପଲଙ୍କମାନଙ୍କ ଉପରେ ଖୁବ୍ ମୂଲ୍ୟବାନ୍ ବିଛଣା-ଚଦରମାନ ବିଛା ହୋଇଥିଲା । ୨ । ସେହି ବେଦୀର ଗୋଟିଏ ସ୍ଥାନରେ ସେ ଚନ୍ଦ୍ରସଦୃଶ ଦୀପ୍ତିମନ୍ତ ମାଳାଶୋଭିତ ଏକ ଶ୍ୱେତବର୍ଣ୍ଣ ଛତ୍ର ଦେଖିଲେ । ୩ ।

ଜାତରୂପପରିକ୍ଷିପ୍ତଂ ଚନ୍ଦ୍ରଭାନୋଃ ସମପ୍ରଭମ୍ ।
ଅଶୋକମାଲାବିତତଂ ଦଦର୍ଶ ପରମାସନମ୍ । ୪ ।
ବାଲବ୍ୟଜନହସ୍ତାଭିର୍ବୀଜ୍ୟମାନଂ ସମନ୍ତତଃ ।
ଗନ୍ଧୈଶ୍ଚ ବିବିଧୈର୍ଜୁଷ୍ଟଂ ବରଧୂପେନ ଧୂପିତମ୍ । ୫ ।
ପରମାସ୍ତରଣାସ୍ତୀର୍ଣମାବିକାଜିନସଂବୃତମ୍ ।
ଦାମଭିର୍ବରମାଲ୍ୟାନାଂ ସମନ୍ତାଦୁପଶୋଭିତମ୍ । ୬ ।
ତସ୍ମିଞ୍ଜୀମୂତସଂକାଶଂ ପ୍ରଦୀପ୍ତୋଜ୍ଜ୍ୱଲକୁଣ୍ଡଲମ୍ ।
ଲୋହିତାକ୍ଷଂ ମହାବାହୁଂ ମହାରଜତବାସସମ୍ । ୭ ।
ଲୋହିତେନାନୁଲିପ୍ତାଙ୍ଗଂ ଚନ୍ଦନେନ ସୁଗନ୍ଧିନା ।
ସନ୍ଧ୍ୟାରକ୍ତମିବାକାଶେ ତୋୟଦଂ ସତଡିଦ୍‌ଗଣମ୍ । ୮ ।
ବୃତମାଭରଣୈର୍ଦିବ୍ୟୈଃ ସ୍ୱରୂପଂ କାମରୂପିଣମ୍ ।
ସବୃକ୍ଷବନଗୁଲ୍ମାଢ଼୍ୟଂ ପ୍ରସୁପ୍ତମିବ ମନ୍ଦରମ୍ । ୯ ।
କ୍ରୀଡ଼ିତ୍ୱୋପରତଂ ରାତ୍ରୌ ବରାଭରଣଭୂଷିତମ୍ ।
ପ୍ରିୟଂ ରାକ୍ଷସକନ୍ୟାନାଂ ରାକ୍ଷସାନାଂ ସୁଖାବହମ୍ । ୧୦ ।

---

ସେହିଠାରେ ସେ ସ୍ୱର୍ଣ୍ଣମଣ୍ଡିତ, ଅଶୋକମାଳାଶୋଭିତ, ସୂର୍ଯ୍ୟସଦୃଶ ପ୍ରଭାବିଶିଷ୍ଟ, ଗୋଟିଏ ଉତ୍କୃଷ୍ଟ ପଲଙ୍କ ଦେଖିଲେ । ୪ । ଏହାର ଚତୁର୍ଦ୍ଦିଗରେ ସ୍ତ୍ରୀମାନେ ଚାମରହସ୍ତରେ ଠିଆହୋଇ ଆଲଟ କରୁଥିଲେ । ସେଠାରେ ନାନାବିଧ ସୁବାସିତ ଦ୍ରବ୍ୟ ରଖାଯାଇଥିଲା ଏବଂ ଉତ୍କୃଷ୍ଟ ଧୂପର ଧୂଆଁ ଦିଆଯାଉଥିଲା । ୫ । ଏହି ପଲଙ୍କରେ ଉତ୍କୃଷ୍ଟ ବିଛଣାଚଦର ବିଛାଯାଇଥିଲା, ମେଷଚର୍ମଦ୍ୱାରା ଏହା ଆବୃତ ହୋଇଥିଲା ଏବଂ ଚାରିଆଡ଼େ ସୁନ୍ଦର ପୁଷ୍ପମାଳାମାନଙ୍କ ଦ୍ୱାରା ଏହା ସୁଶୋଭିତ ହୋଇଥିଲା । ୬ । ସେହି ଦୀପ୍ତିମନ୍ତ ପଲଙ୍କ ଉପରେ ରାକ୍ଷସାଧିପତି ବୀର ରାବଣ ଶୋଇରହିଥିବାର ସେ ଦେଖିଲେ । ତାହାର ବର୍ଣ୍ଣ ମେଘସଦୃଶ, କର୍ଣ୍ଣରେ ଉତ୍କୃଷ୍ଟ କୁଣ୍ଡଳ ଦୀପ୍ତି ପ୍ରକାଶ କରୁଛି, ଚକ୍ଷୁ ଲୋହିତବର୍ଣ୍ଣ, ବାହୁ ଅତି ବିଶାଳ ଏବଂ ସ୍ୱର୍ଣ୍ଣସୂତ୍ରର ବସ୍ତ୍ର ପରିଧାନ କରିଛି, ସର୍ବାଙ୍ଗ ରକ୍ତଚନ୍ଦନରେ ଭୂଷିତ ହୋଇଛି । ଯେପରି ବିଦ୍ୟୁତ୍‌ରାଜିସମନ୍ୱିତ ସନ୍ଧ୍ୟାକାଳୀନ ମେଘ ଆକାଶରେ ଶୋଭାପାଏ ସେହିପରି ସେ ଶୋଭାପାଉଛି । ତାହାର ରୂପ ଅତି ମନୋହର, ସେ ଦିବ୍ୟ ଅଳଙ୍କାରମାନଙ୍କ ଦ୍ୱାରା ଶୋଭିତ ହୋଇଛି । ଏହିପରିଭାବରେ କାମରୂପୀ ରାବଣ ବୃକ୍ଷ, ଗୁଳ୍ମ ଓ ବନଶୋଭିତ ମନ୍ଦରପର୍ବତ ଶୋଇ ରହିଥିବା ପରି

ପୀତ୍ୱାପ୍ୟୁପରତଂ ଚାପି ଦଦର୍ଶ ସ ମହାକପିଃ ।
ଭାସ୍ୱରେ ଶୟନେ ବୀରଂ ପ୍ରସୁପ୍ତଂ ରାକ୍ଷସାଧିପମ୍ । ୧୧ ।
ନିଃଶ୍ୱସନ୍ତଂ ଯଥା ନାଗଂ ରାବଣଂ ବାନରୋତ୍ତମଃ ।
ଆସାଦ୍ୟ ପରମୋଦ୍ୱିଗ୍ନଃ ସୋଽପାସର୍ପତ୍ସୁଭୀତବତ୍ ।୧୨।
ଅଥାରୋହଣମାସାଦ୍ୟ ବେଦିକାନ୍ତରମାଶ୍ରିତଃ ।
କ୍ଷୀବଂ ରାକ୍ଷସଶାର୍ଦୂଳଂ ପ୍ରେକ୍ଷତେ ସ୍ମ ମହାକପିଃ ।୧୩।
ଶୁଶୁଭେ ରାକ୍ଷସେନ୍ଦ୍ରସ୍ୟ ସ୍ୱପତଃ ଶୟନଂ ଶୁଭମ୍ ।
ଗନ୍ଧହସ୍ତିନି ସଂବିଷ୍ଟଂ ଯଥା ପ୍ରସ୍ରବଣଂ ମହତ୍ । ୧୪ ।
କାଞ୍ଚନାଙ୍ଗଦସଂନଦ୍ଧୌ ଦଦର୍ଶ ସ ମହାତ୍ମନଃ ।
ବିକ୍ଷିପ୍ତୌ ରାକ୍ଷସେନ୍ଦ୍ରସ୍ୟ ଭୁଜାବିନ୍ଦ୍ରଧ୍ୱଜୋପମୌ । ୧୫ ।
ଐରାବତବିଷାଣାଗ୍ରୈରାପୀଡ଼ନକୃତବ୍ରଣୌ ।
ବଜ୍ରୋଲ୍ଲିଖିତପୀନାଂସୌ ବିଷ୍ଣୁଚକ୍ରପରିକ୍ଷତୌ । ୧୬ ।
ପୀନୌ ସମସୁଜାତାଂସୌ ସଙ୍ଗତୌ ବଳସଂଯୁତୌ ।
ସୁଲକ୍ଷଣନଖାଙ୍ଗୁଷ୍ଠୌ ସ୍ୱଙ୍ଗୁଲୀୟକଲକ୍ଷିତୌ । ୧୭ ।

---

ଦେଖା ଯାଉଅଛି । ରାକ୍ଷସମାନଙ୍କର ସୁଖଦାୟକ ଏବଂ ରାକ୍ଷସୀମାନଙ୍କର ପ୍ରିୟ ରାବଣ ଉତ୍କୃଷ୍ଟ ଅଳଙ୍କାରମାନଙ୍କରେ ଭୂଷିତ ହୋଇ, ମଦ୍ୟପାନ ଏବଂ ବିହାର-କ୍ରୀଡ଼ା ଶେଷରେ ବିଶ୍ରାମ କରୁଅଛି । ୭-୧୧ । ବାନରଶ୍ରେଷ୍ଠ ହନୁମାନ୍ ହସ୍ତୀପରି ନିଶ୍ୱାସ ମାରୁଥିବା ରାବଣ ନିକଟରେ ପହଞ୍ଚି ଅତିଶୟ ଉଦ୍ୱିଗ୍ନ ଏବଂ ଭୀତ ହୋଇ ପଛକୁ ଘୁଞ୍ଚି ଆସିଲେ । ୧୨ । ଅନନ୍ତର ସେ ମହାକପି ହନୂମାନ୍ ସୋପାନରେ ଚଢ଼ି ଗୋଟିଏ ବେଦୀ ଆଡ଼ୁଆଳରେ ରହି ସେ ମଦମତ୍ତ ରାକ୍ଷସସିଂହ ରାବଣକୁ ଦେଖିବାକୁ ଲାଗିଲେ । ୧୩ । ରାକ୍ଷସରାଜ ଶୋଇଥିବାରୁ ତାହାର ସେହି ଉତ୍କୃଷ୍ଟ ପଲଙ୍କ, ସୁଗନ୍ଧ ମଦସ୍ରାବୀ ହସ୍ତିକର୍ତ୍ତୃକ ଅଧିରୂଢ଼ ବୃହତ୍ ପ୍ରସ୍ରବଣପରି ଶୋଭା ପାଉଥିଲା । ୧୪ । ହନୁମାନ୍ ଦେଖିଲେ, ମହାତ୍ମା ରାକ୍ଷସରାଜର ସୁବର୍ଣ୍ଣ ଅଙ୍ଗଦ-ଭୂଷିତ ଭୁଜଦ୍ୱୟ ଇନ୍ଦ୍ରଧ୍ୱଜସଦୃଶ ଶଯ୍ୟାରେ ବିକ୍ଷିପ୍ତ ହୋଇ ଡ଼ିରହିଅଛି । ୧୫ । ତାହାର ଏହି ବାହୁଦ୍ୱୟରେ ଐରାବତ ହସ୍ତୀର ଦନ୍ତାଘାତଜନିତ କ୍ଷତଚିହ୍ନ ରହିଅଛି । ସ୍କନ୍ଧଦେଶରେ ବଜ୍ରାଘାତର କ୍ଷତଚିହ୍ନ ଓ ବିଷ୍ଣୁଙ୍କ ଚକ୍ରର କ୍ଷତଚିହ୍ନ ରହିଛି । ୧୬ । ଏହି ବାହୁଦ୍ୱୟ ଅତି ସ୍ଥୂଳ, ସ୍କନ୍ଧଦ୍ୱୟ ସମାନ ଓ ସୁଗୋଲ, ବାହୁଦ୍ୱୟ ବଳିଷ୍ଠ, ନଖ ଏବଂ ଅଙ୍ଗୁଷ୍ଠ ଉତ୍ତମ ଲକ୍ଷଣଯୁକ୍ତ ଏବଂ ତାହା ଉତ୍ତମ ଅଙ୍ଗୁରୀୟଦ୍ୱାରା ସୁଶୋଭିତ ହୋଇଅଛି । ୧୭ । ସେହି ବାହୁଦ୍ୱୟ ପରିଘସଦୃଶ ଦୀର୍ଘ

ସଂବୃତ୍ତୌ ପରିଘାକାରୌ ବୃତ୍ତୌ କରିକରୋପମୌ ।
ବିକ୍ଷିପ୍ତୌ ଶୟନେ ଶୁଭ୍ରେ ପଞ୍ଚଶୀର୍ଷାବିବୋରଗୌ । ୧୮ ।
ଶଶକ୍ଷତଜକଳ୍ପେନ ସୁଶୀତେନ ସୁଗନ୍ଧିନା ।
ଚନ୍ଦନେନ ପରାର୍ଦ୍ଧ୍ୟେନ ସ୍ୱନୁଲିପ୍ତୌ ସ୍ୱଳଂକୃତୌ । ୧୯ ।
ଉତ୍ତମସ୍ତ୍ରୀବିମୃଦିତୌ ଗନ୍ଧୋତ୍ତମନିଷେବିତୌ ।
ଯକ୍ଷପନ୍ନଗଗନ୍ଧର୍ବଦେବଦାନବରାବିଣୌ । ୨୦ ।
ଦଦର୍ଶ ସ କପିସ୍ତସ୍ୟ ବାହୂ ଶୟନସଂସ୍ଥିତୌ ।
ମନ୍ଦରସ୍ୟାନ୍ତରେ ସୁପ୍ତୌ ମହାହୀ ରୁଷିତାବିବ । ୨୧ ।
ତାଭ୍ୟାଂ ସ ପରିପୂର୍ଣ୍ଣାଭ୍ୟାମୁଭାଭ୍ୟାଂ ରାକ୍ଷସେଶ୍ୱରଃ ।
ଶୁଶୁଭେଽଚଳସଂକାଶଃ ଶୃଙ୍ଗାଭ୍ୟାମିବ ମନ୍ଦରଃ । ୨୨ ।
ଚୂତପୁନ୍ନାଗସୁରଭିର୍ବକୁଳୋତ୍ତମସଂଯୁତଃ ।
ମୃଷ୍ଟାନ୍ନରସସଂଯୁକ୍ତଃ ପାନଗନ୍ଧପୁରଃସରଃ । ୨୩ ।
ତସ୍ୟ ରାକ୍ଷସରାଜସ୍ୟ ନିଶ୍ଚକ୍ରାମ ମହାମୁଖାତ୍ ।
ଶୟାନସ୍ୟ ବିନିଃଶ୍ୱାସଃ ପୂରୟନ୍ନିବ ତଦ୍‌ଗୃହମ୍ । ୨୪ ।

---

ଏବଂ ହସ୍ତିଶୁଣ୍ଡସଦୃଶ ଗୋଲାକାର ଓ ସୁଗଠିତ । ଦୁଇଟି ପଞ୍ଚଶୀର୍ଷ ସର୍ପପରି ସେ ବାହୁ ଦୁଇଟି ଶୁଭ୍ରବର୍ଣ୍ଣ ଶଯ୍ୟା ଉପରେ ଛୁଟିହୋଇ ପଡ଼ିରହିଅଛି । ୧୮ । ସେହି ବାହୁଦ୍ୱୟ ଶଶକର ରୁଧିରସଦୃଶ ରକ୍ତବର୍ଣ୍ଣ, ସୁଗନ୍ଧ ସୁଶୀତଳ ଉତ୍‌କୃଷ୍ଟ ଚନ୍ଦନଚର୍ଚ୍ଚିତ ହୋଇଅଛି ଓ ଉତ୍ତମ ଅଳଙ୍କାରଶୋଭିତ ହୋଇଅଛି । ୧୯ । ସେହି ବାହୁଦ୍ୱୟ ଉତ୍‌କୃଷ୍ଟ ରମଣୀମାନଙ୍କ ଦ୍ୱାରା ବିମର୍ଦ୍ଦିତ ଏବଂ ଉତ୍‌କୃଷ୍ଟ ଗନ୍ଧଦ୍ରବ୍ୟ ଦ୍ୱାରା ନିଷେବିତ । ଏହା ଯକ୍ଷ, ନାଗ, ଗନ୍ଧର୍ବ, ଦେବ ଓ ଦାନବଗଣଙ୍କର ଭୟ-ଉତ୍ପାଦନ କରାଇଥାଏ । ୨୦ । ବାନର ହନୂମାନ୍ ଦେଖିଲେ, ମନ୍ଦରପର୍ବତର ପାର୍ଶ୍ୱଦେଶରେ ଦୁଇଟି ରୋଷାନ୍ୱିତ ମହାସର୍ପ ଶୋଇ ରହିଥିଲାପରି ରାବଣର ବାହୁଦ୍ୱୟ ଶଯ୍ୟା ଉପରେ ପଡ଼ିରହିଛି । ୨୧ । ପର୍ବତୋପମ ରାକ୍ଷସରାଜ ରାବଣ ଏହି ସର୍ବଲକ୍ଷଣସମ୍ପନ୍ନ ବାହୁଦ୍ୱୟଦ୍ୱାରା ଦୁଇଟି ଶୃଙ୍ଗବିଶିଷ୍ଟ ମନ୍ଦରପର୍ବତପରି ଶୋଭା ପାଉଅଛି । ୨୨ । ସେହି ରାକ୍ଷସସିଂହର ବିଶାଳ ମୁଖରନ୍ଧ୍ରରୁ ଚୂତ, ପୁନ୍ନାଗ ଓ ବକୁଳ ପୁଷ୍ପର ସୁଗନ୍ଧଯୁକ୍ତ, ଷଡ଼୍‌ରସସମ୍ପନ୍ନ ଘୃତପକ୍ୱାନ୍ନ ଏବଂ ମଦ୍ୟର ସୁଗନ୍ଧ-ମିଶ୍ରିତ ନିଶ୍ୱାସ ବାୟୁ ବହିର୍ଗତ ହୋଇ ସେହି ଗୃହକୁ ପୂର୍ଣ୍ଣ କରିଦେଉଅଛି । ୨୩-୨୪।

ମୁକ୍ତାମଣିବିଚିତ୍ରେଣ କାଞ୍ଚନେନ ବିରାଜିତା ।
ମୁକୁଟେନାପବୃତ୍ତେନ କୁଣ୍ଡଳୋଜ୍ଜ୍ୱଳିତାନନମ୍ । ୨୫ ।
ରକ୍ତଚନ୍ଦନଦିଗ୍ଧେନ ତଥା ହାରେଣ ଶୋଭିନା ।
ପୀନାୟତବିଶାଳେନ ବକ୍ଷସାଭିବିରାଜିତା । ୨୬ ।
ପାଣ୍ଡୁରେଣାପବିଦ୍ଧେନ କ୍ଷୌମେଣ କ୍ଷତଜେକ୍ଷଣମ୍ ।
ମହାର୍ହେଣ ସୁସଂବୀତଂ ପୀତେନୋତ୍ତରବାସସା । ୨୭ ।
ମାଷରାଶିପ୍ରତୀକାଶଂ ନିଃଶ୍ୱସନ୍ତଂ ଭୁଜଙ୍ଗବତ୍ ।
ଗାଙ୍ଗେ ମହତି ତୋୟାନ୍ତେ ପ୍ରସୁପ୍ତମିବ କୁଞ୍ଜରମ୍ । ୨୮ ।
ଚତୁର୍ଭିଃ କାଞ୍ଚନୈର୍ଦୀପୈର୍ଦୀପ୍ୟମାନଂ ଚତୁର୍ଦ୍ଦିଶମ୍ ।
ପ୍ରକାଶୀକୃତସର୍ବାଙ୍ଗଂ ମେଘଂ ବିଦ୍ୟୁଦ୍‌ଗଣୈରିବ । ୨୯ ।
ପାଦମୂଲଗତାଶ୍ଚାପି ଦଦର୍ଶ ସୁମହାତ୍ମନଃ ।
ପତ୍ନୀଃ ସ ପ୍ରିୟଭାର୍ଯ୍ୟସ୍ୟ ତସ୍ୟ ରକ୍ଷଃପତେର୍ଗୃହେ । ୩୦ ।
ଶଶିପ୍ରକାଶବଦନା ବରକୁଣ୍ଡଳଭୂଷଣାଃ ।
ଅମ୍ଳାନମାଲ୍ୟାଭରଣା ଦଦର୍ଶ ହରିଯୂଥପଃ । ୩୧ ।

---

ମୁକ୍ତାମଣିବିରାଜିତ ସୁବର୍ଣ୍ଣମୁକୁଟ ମୁଣ୍ଡରୁ କଡ଼ା ହୋଇଯାଇଥିବାରୁ ତାହାର ମୁଖମଣ୍ଡଳ କୁଣ୍ଡଳର ଦୀପ୍ତିଦ୍ୱାରା ସମୁଜ୍ଜ୍ୱଳ ହୋଇଅଛି । ୨୫ । ତାହାର ପୃଥୁଳ ବିଶାଳ ବକ୍ଷସ୍ଥଳ ରକ୍ତଚନ୍ଦନଲିପ୍ତ ହୋଇ ମନୋହର ହାରରେ ଶୋଭା ପାଉଅଛି । ୨୬ । ତାହାର ଚକ୍ଷୁଦ୍ୱୟ ରକ୍ତବର୍ଣ୍ଣ ହୋଇଅଛି, ପରିଧାନ ଅକ୍ଷତ, ଶୁଭ୍ର ପଟ୍ଟବସ୍ତ୍ର ଏବଂ ପୀତବର୍ଣ୍ଣ ମହାମୂଲ୍ୟ ଉତ୍ତରୀୟ ବସ୍ତ୍ର ଉତ୍ତମରୂପେ ଶରୀରରେ ପ୍ରସାରିତ ହୋଇ ରହିଅଛି । ୨୭ । ବିରି-ଗଦାପରି କୃଷ୍ଣବର୍ଣ୍ଣ ସେହି ରାକ୍ଷସ ସର୍ପସଦୃଶ ନିଶ୍ୱାସ ତ୍ୟାଗ କରୁଛି । ଗଙ୍ଗାର ଅଗାଧଜଳପ୍ରାନ୍ତରେ ପ୍ରସୁପ୍ତ ମହାଗଜସଦୃଶ ସେ ଶୋଇରହିଛି । ୨୮ । ଚାରୋଟି ସ୍ୱର୍ଣ୍ଣପ୍ରଦୀପ ଚାରିଦିଗକୁ ଆଲୋକିତ କରୁଛି । ବିଦ୍ୟୁତ୍‌ମାନଙ୍କ ଦ୍ୱାରା ମେଘ ପ୍ରକାଶିତ ହେଲାପରି ଏହି ଆଲୋକଦ୍ୱାରା ତାହାର ସମସ୍ତ ଶରୀର ପ୍ରକାଶିତ ହେଉଅଛି । ୨୯ । ବାନରଦଳପତି ହନୁମାନ୍ ଦେଖିଲେ, ସେହି ରାକ୍ଷସରାଜ ପତ୍ନୀପ୍ରିୟ ମହାତ୍ମା ରାବଣର ଗୃହରେ ତାହାର ପ୍ରିୟପତ୍ନୀମାନେ ପାଦତଳରେ ଶୋଇରହିଛନ୍ତି । ସେମାନଙ୍କ ମୁଖ ଚନ୍ଦ୍ରମଣ୍ଡଳସଦୃଶ ପ୍ରକାଶିତ ହେଉଛି । ସେମାନେ ଅତି ମନୋରମ କୁଣ୍ଡଳରେ ଏବଂ ତାଜା ଫୁଲମାଳ ଓ ଅନ୍ୟାନ୍ୟ ଅଳଙ୍କାରରେ ଭୂଷିତା ହୋଇଛନ୍ତି । ୩୦-୩୧ । ସେ ବାନର ଦେଖିଲେ,

ନୃତ୍ୟବାଦିତ୍ରକୁଶଳା ରାକ୍ଷସେନ୍ଦ୍ରଭୁଜାଙ୍କଗାଃ ।
ବରାଭରଣଧାରିଣ୍ୟୋ ନିଷଣ୍ଣା ଦଦୃଶେ କପିଃ । ୩୨
ବଜ୍ରବୈଦୂର୍ଯ୍ୟଗର୍ଭାଣି ଶ୍ରବଣାନ୍ତେଷୁ ଯୋଷିତାମ୍ ।
ଦଦର୍ଶ ତାପନୀୟାନି କୁଣ୍ଡଳାନ୍ୟଙ୍ଗଦାନି ଚ । ୩୩ ।
ତାସାଂ ଚନ୍ଦ୍ରୋପମୈର୍ବକ୍ତ୍ରୈଃ ଶୁଭୈର୍ଲଳିତକୁଣ୍ଡଳୈଃ ।
ବିରାଜିତବିମାନଂ ତଦ୍ଭାଭିସ୍ତାରାଗଣୈରିବ । ୩୪ ।
ମଦବ୍ୟାୟାମଖିନ୍ନାସ୍ତା ରାକ୍ଷସେନ୍ଦ୍ରସ୍ୟ ଯୋଷିତଃ ।
ତେଷୁ ତେଷ୍ୱବକାଶେଷୁ ପ୍ରସୁପ୍ତାସ୍ତନୁମଧ୍ୟମାଃ । ୩୫ ।
ଅଙ୍ଗହାରୈସ୍ତଥୈବାନ୍ୟା କୋମଳୈର୍ନୃତ୍ୟଶାଳିନୀ ।
ବିନ୍ୟସ୍ତଶୁଭସର୍ବାଙ୍ଗୀ ପ୍ରସୁପ୍ତା ବରବର୍ଣ୍ଣିନୀ । ୩୬ ।
କାଚିଦ୍‌ବୀଣାଂ ପରିଷ୍ୱଜ୍ୟ ପ୍ରସୁପ୍ତା ସଂପ୍ରକାଶତେ ।
ମହାନଦୀପ୍ରକୀର୍ଣ୍ଣେବ ନଳିନୀ ପୋତମାଶ୍ରିତା । ୩୭ ।
ଅନ୍ୟକକ୍ଷଗତେନୈବ ମଡ୍‌ଡୁକେନାସିତେକ୍ଷଣା ।
ପ୍ରସୁପ୍ତା ଭାମିନୀ ଭାତି ବାଳପୁତ୍ରେବ ବତ୍ସଳା । ୩୮ ।

ରାକ୍ଷସରାଜ ରାବଣର ଅଙ୍କଶାୟିନୀ, ନୃତ୍ୟବାଦ୍ୟକୁଶଳା, ଉତ୍ତମ ଅଳଙ୍କାରଧାରିଣୀ କାମିନୀମାନେ ସେଠାରେ ଶୋଇରହିଛନ୍ତି । ୩୨ । ସେମାନଙ୍କର କର୍ଣ୍ଣପ୍ରାନ୍ତରେ ହୀରକ ଓ ବୈଡ଼ୂର୍ଯ୍ୟମଣିଖଚିତ ସୁବର୍ଣ୍ଣକୁଣ୍ଡଳ ଏବଂ ତାଡ଼ସବୁ ଶୋଭାପାଉଅଛି । ୩୩ ।ସେମାନଙ୍କର ମନୋହର କୁଣ୍ଡଳଭୂଷିତ ମୁଖରାଜିଦ୍ୱାରା ସେହି ଗୃହ ତାରାଗଣବିଭୂଷିତ ଆକାଶମଣ୍ଡଳପରି ଶୋଭାପାଉଅଛି । ୩୪ । ମଦନିଶା ଏବଂ ଚିତ୍ତଶ୍ରମରେ କ୍ଲାନ୍ତହୋଇ ସେହି ରାକ୍ଷସରାଜର କ୍ଷୀଣକଟୀ ପତ୍ନୀମାନେ ଯେ ଯେଉଁଠାରେ ସୁବିଧା ପାଇଛନ୍ତି, ଶୋଇପଡ଼ିଛନ୍ତି । ୩୫ । କୌଣସି କୌଣସି ବରାଙ୍ଗନା ନିଦ୍ରିତାବସ୍ଥାରେ କୋମଳ ଅଙ୍ଗ ବିକ୍ଷେପ କରି ନୃତ୍ୟ କରୁଛନ୍ତି । ସେ ସମସ୍ତଙ୍କର ସୁନ୍ଦର ଅଙ୍ଗ ପ୍ରତ୍ୟଙ୍ଗ ଇତସ୍ତତଃ ବିକ୍ଷିପ୍ତ ହୋଇପଡ଼ିଛି । ୩୬ । କେହି ବୀଣାକୁ ଆଲିଙ୍ଗନକରି ଶୋଇଥିବାରୁ ବୋଧହେଉଛି, ଯେପରି କି ମହାନଦୀ ପ୍ରବାହରେ ଭାସମାନ କୌଣସି ମୃଣାଳଯୁକ୍ତ ପଦ୍ମପୁଷ୍ପ ନୌକାଦେହରେ ଆସି ଲାଗିଯାଇଛି । ୩୭ । ଅନ୍ୟ କୌଣସି କୃଷ୍ଣନୟନା ରମଣୀ କାଖରେ ଡମ୍ବରୁଟିଏ

ପଟହଂ ଚାରୁସର୍ବାଙ୍ଗୀ ନ୍ୟସ୍ୟ ଶେତେ ଶୁଭସ୍ତନୀ ।
ଚିରସ୍ୟ ରମଣଂ ଲବ୍ଧ୍ୱା ପରିଷ୍ୱଜ୍ୟେବ କାମିନୀ । ୩୯ ।
କାଚିଦ୍ ବୀଣାଂ ପରିଷ୍ୱଜ୍ୟ ସୁପ୍ତା କମଲଲୋଚନା ।
ବରଂ ପ୍ରିୟତମଂ ଗୃହ୍ୟ ସକାମେବ ହି କାମିନୀ । ୪୦ ।
ବିପଞ୍ଚୀଂ ପରିଗୃହ୍ୟାନ୍ୟା ନିୟତା ନୃତ୍ୟଶାଳିନୀ ।
ନିଦ୍ରାବଶମନୁପ୍ରାପ୍ତା ସହକାନ୍ତେବ ଭାମିନୀ । ୪୧ ।
ଅନ୍ୟା କନକସଂକାଶୈର୍ମୃଦୁପୀନୈର୍ମନୋରମୈଃ ।
ମୃଦଙ୍ଗଂ ପରିବଧ୍ୟାଙ୍ଗୈଃ ପ୍ରସୁପ୍ତା ମତ୍ତଲୋଚନା । ୪୨ ।
ଭୁଜପାର୍ଶ୍ୱାନ୍ତରସ୍ଥେନ କକ୍ଷଗେଣ କୃଶୋଦରୀ ।
ପଣବେନ ସହାନିନ୍ଦ୍ୟା ସୁପ୍ତା ମଦକୃତଶ୍ରମା । ୪୩ ।
ଡିଣ୍ଡିମଂ ପରିଗୃହ୍ୟାନ୍ୟା ତଥୈବାସକ୍ତଡିଣ୍ଡିମା ।
ପ୍ରସୁପ୍ତା ତରୁଣଂ ବତ୍ସମୁପଗୂହ୍ୟେବ ଭାମିନୀ । ୪୪ ।
କାଚିଦାଡ଼ମ୍ବରଂ ନାରୀ ଭୁଜସଂଭୋଗପୀଡ଼ିତମ୍ ।
କୃତ୍ୱା କମଲପତ୍ରାକ୍ଷୀ ପ୍ରସୁପ୍ତା ମଦମୋହିତା । ୪୫ ।

---

ଜାକିଧରି ଶୋଇଛି, ଦେଖିଲେ ବୋଧ ହେଉଛି, ଯେପରି କୌଣସି ପୁତ୍ରବତ୍ସଳା କାମିନୀ ଶିଶୁପୁତ୍ରକୁ କୋଡ଼ରେ ଧରି ଶୋଇଛି ।୩୮। କୌଣସି ସର୍ବାଙ୍ଗସୁନ୍ଦରୀ ସୁନ୍ଦରସ୍ତନବିଶିଷ୍ଟା ରମଣୀ ପଟହ ଆଲିଙ୍ଗନକରି ଶୋଇଛି, ଯେପରି ଦୀର୍ଘକାଳ ପରେ ପ୍ରିୟପତିକୁ ପାଇ ତାହାକୁ ଗାଢ଼ଭାବରେ ଆଲିଙ୍ଗନକରି ଶୋଇଛି । ୩୯ । କୌଣସି ପଦ୍ମଲୋଚନା ବୀଣା ଆଲିଙ୍ଗନକରି ଶୋଇଛି, ଯେପରି କ କୌଣସି କାମାତୁରା କାମିନୀ ଏକାନ୍ତରେ ତାହାର ପତିକୁ ଆଲିଙ୍ଗନକରି ଶୋଇରହିଛି ।୪୦। ନିୟତନୃତ୍ୟଶାଳିନୀ କୌଣସି ରମଣୀ ବେହେଲକୁ ହାତରେ ଧରି ନିଦ୍ରାରେ ଅଭିଭୂତ ହୋଇଥିବାରୁ ନିଜ ସ୍ୱାମୀ ସହିତ ଶୋଇଥିବାପରି ଦିଶୁଛି । ୪୧ । କୌଣସି ମଦିରେକ୍ଷଣା, ସୁକୋମଳ, ପୃଥୁଳ, ମନୋହର ସ୍ୱର୍ଣ୍ଣସଦୃଶ ଅଙ୍ଗରେ ମୃଦଙ୍ଗକୁ ଗାଢ଼ଭାବରେ ଜାକିଧରି ଶୋଇପଡ଼ିଛି ।୪୨। ଅନ୍ୟ କୌଣସି କୃଶୋଦରୀ ରତିଶ୍ରମରେ କ୍ଳାନ୍ତହୋଇ କାଖରେ ଥିବା ପଣବକୁ ବାହୁପାଶରେ ବାନ୍ଧି ଶୋଇରହିଛି । ୪୩ । ଡିଣ୍ଡିମପ୍ରିୟା କୌଣସି ରମଣୀ ଡିଣ୍ଡିମ ଆଲିଙ୍ଗନକରି ବାଳକପୁତ୍ରକୁ କୋଡ଼ରେ ଧରିଲାପରି ନିଦ୍ରାରେ ଅଭିଭୂତା ହୋଇଛି ।୪୪। କୌଣସି ପଦ୍ମଲୋଚନା ମଦମୋହିତା ହୋଇ ଭୁଜପାଶରେ ଆଡ଼ମ୍ବର ଯନ୍ତ୍ର ଧରି ଶୋଇପଡ଼ିଛି ।୪୫। ଅନ୍ୟ ଗୋଟିଏ ଭାମିନୀ ଜଳକଳଶ ଆଲିଙ୍ଗନ କରି ଶୋଇରହିଛି ।

**କଲଶୀମପବଧ୍ୟାନ୍ୟା ପ୍ରସୁପ୍ତା ଭ୍ରାନ୍ତ ଭାମିନୀ ।**
**ବସନ୍ତେ ପୁଷ୍ପଶବଲା ମାଲେବ ପରିମାର୍ଜିତା । ୪୬ ।**
**ପାଣିଭ୍ୟାଂ ଚ କୁଚୌ କାଚିତ୍ ସୁବର୍ଣକଲଶୋପମୌ ।**
**ଉପଗୂହ୍ୟାବଲା ସୁପ୍ତା ନିଦ୍ରାବଲମୁପାଗତା । ୪୭ ।**
**ଅନ୍ୟା କମଲପତ୍ରାକ୍ଷୀ ପୂର୍ଣେନ୍ଦୁସଦୃଶାନନା ।**
**ଅନ୍ୟାମାଲିଙ୍ଗ୍ୟ ସୁଶ୍ରୋଣୀଂ ନିଦ୍ରାବଶମୁପାଗତା । ୪୮ ।**
**ଆତୋଦ୍ୟାନି ବିଚିତ୍ରାଣି ପରିଷ୍ୱଜ୍ୟ ବରସ୍ତ୍ରିୟଃ ।**
**ନିପୀଡ୍ୟ ଚ କୁଚୈଃ ସୁପ୍ତାଃ କାମିନ୍ୟଃ କାମୁକାନିବ । ୪୯ ।**
**ତାସାମେକାନ୍ତବିନ୍ୟସ୍ତେ ଶୟାନାଂ ଶୟନେ ଶୁଭେ ।**
**ଦଦର୍ଶ ରୂପସଂପନ୍ନାମପରାଂ ସ କପିଃ ସ୍ତ୍ରିୟମ୍ । ୫୦ ।**
**ମୁକ୍ତାମଣିସମାଯୁକ୍ତୈର୍ଭୂଷଣୈଃ ସୁବିଭୂଷିତାମ୍ ।**
**ବିଭୂଷୟନ୍ତୀମିବ ଚ ସ୍ୱଶ୍ରିୟା ଭବନୋତ୍ତମମ୍ । ୫୧ ।**
**ଗୌରୀଂ କନକବର୍ଣାଭାମିଷ୍ଟାମନ୍ତଃପୁରେଶ୍ୱରୀମ୍ ।**
**କପିର୍ମନ୍ଦୋଦରୀଂ ତତ୍ର ଶୟାନାଂ ଚାରୁରୂପିଣୀମ୍ । ୫୨ ।**

---

ସେହି କଳଶଜଳରେ ତା'ର ଦେହ ଓଦାହୋଇ ବସନ୍ତକାଳରେ ପାଣି ଛିଞ୍ଚାହୋଇଥିବା ନାନାବର୍ଣ୍ଣର ପୁଷ୍ପମାଳାପରି ଦେଖାଯାଉଛି । ୪୬ । କୌଣସି ଅବଳା ହାତଦୁଇଟିରେ ସୁନାର କଳଶପରି ସ୍ତନଦ୍ୱୟ ଘୋଡ଼ାଇ ନିଦ୍ରାଭିଭୂତ ହୋଇ ଶୋଇପଡ଼ିଛି । ୪୭ । ପୂର୍ଣ୍ଣଚନ୍ଦ୍ରମୁଖୀ, ପଦ୍ମଲୋଚନା ଅନ୍ୟ ଏକ ରମଣୀ ଅନ୍ୟ ଗୋଟିଏ ସୁନିତମ୍ବିନୀ ରମଣୀକୁ ଆଲିଙ୍ଗନ କରି ନିଦରେ ଶୋଇଯାଇଛି ।୪୮ । କୌଣସି କାମାତୁରା ରମଣୀ କାମୁକ ପୁରୁଷକୁ ଆଲିଙ୍ଗନ କଲାପରି, କୌଣସି କୌଣସି ରମଣୀ ନିଜ ନିଜର ବିଚିତ୍ର ବୀଣାଗୁଡ଼ିକୁ ଆଲିଙ୍ଗନ କରି ଏବଂ କୁଚଦ୍ୱାରା ତାହାକୁ ମର୍ଦ୍ଦିତ କରି ଶୋଇ ରହିଛନ୍ତି । ୪୯ । ବାନର ହନୁମାନ୍ ଦେଖିଲେ, ଏହି ରମଣୀମାନଙ୍କ ଶଯ୍ୟାଠାରୁ ପୃଥକ୍ ସ୍ଥାନରେ ଆଉ ଗୋଟିଏ ମନୋହର ଶଯ୍ୟାରେ ଅନ୍ୟ ଗୋଟିଏ ରୂପବତୀ ରମଣୀ ଶୋଇରହିଛି । ୫୦ । ସେ ମୁକ୍ତାମଣିଯୁକ୍ତ ବିବିଧ ଭୂଷଣରେ ଭୂଷିତା ହୋଇଛି ଏବଂ ନିଜରୂପରେ ଏହି ଉତ୍କୃଷ୍ଟ ଭବନକୁ ଭୂଷିତ କରିଅଛି । ୫୧ । ତାହାର ବର୍ଣ୍ଣ ଗୌର, କାନ୍ତି କନକସଦୃଶ । ସେହି ରୂପବତୀ ସୁନ୍ଦରୀ ରାବଣର ପ୍ରିୟମହିଷୀ ଅନ୍ତଃପୁରାଧୀଶ୍ୱରୀ 'ମନ୍ଦୋଦରୀ' । ସେ ସେଠାରେ ଶୋଇଥିବାର ହନୁମାନ୍ ଦେଖିଲେ । ୫୨ । ବାନରଯୂଥପତି ମହାବାହୁ ପବନନନ୍ଦନ ସେହି ସର୍ବାଭରଣ-

ସ ତାଂ ଦୃଷ୍ଟ୍ୱା ମହାବାହୁ ର୍ଭୂଷିତାଂ ମାରୁତାତ୍ମଜଃ ।
ତର୍କୟାମାସ ସୀତେତି ରୂପଯୌବନସଂପଦା ।
ହର୍ଷେଣ ମହତା ଯୁକ୍ତୋ ନନନ୍ଦ ହରିଯୂଥପଃ । ୫୩ ।

ଆସ୍ଫୋଟୟାମାସ ଚୁଚୁମ୍ବ ପୁଚ୍ଛମ୍
ନନନ୍ଦ ଚିକ୍ରୀଡ଼ ଜଗୌ ଜଗାମ ।
ସ୍ତମ୍ଭାନାରୋହନ୍ନିପପାତ ଭୂମୌ
ନିଦର୍ଶୟନ୍ ସ୍ୱାଂ ପ୍ରକୃତିଂ କପୀନାମ୍ । ୫୪ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ସୁନ୍ଦରକାଣ୍ଡେ ମନ୍ଦୋଦରୀଦର୍ଶନଂନାମ ଦଶମଃ ସର୍ଗଃ ।

---

# ଏକାଦଶଃ ସର୍ଗଃ

## ପାନଭୂମିବିଚୟଃ

ଅବଧୂୟ ଚ ତାଂ ବୁଦ୍ଧିଂ ବଭୂବାବସ୍ଥିତସ୍ତଦା ।
ଜଗାମ ଚାପରାଂ ଚିନ୍ତାଂ ସୀତାଂ ପ୍ରତି ମହାକପିଃ । ୧ ।
ନ ରାମେଣ ବିୟୁକ୍ତା ସା ସ୍ୱପ୍ତୁମର୍ହତି ଭାମିନୀ ।
ନ ଭୋକ୍ତୁଂ ନାପ୍ୟଲଂକର୍ତୁଂ ନ ପାନମୁପସେବିତୁମ୍ । ୨ ।

---

ଭୂଷିତା ମନ୍ଦୋଦରୀର ରୂପଯୌବନସମ୍ପଦ ଦେଖି ତାହାଙ୍କୁ ହିଁ 'ସୀତା' ବୋଲି ବିଚାରି ଅତିଶୟ ଆନନ୍ଦିତ ହେଲେ । ୫୩ । ହନୂମାନ୍ ନିଜର ବାନରସ୍ୱଭାବ ଦେଖାଇ ବାହୁ ପିଟି, ଲାଙ୍ଗୁଡ଼ କାମୁଡ଼ି, ଆନନ୍ଦରେ ନାଚିଲେ, ଗୀତ ଗାଇଲେ ଏବଂ ଖମ୍ବ ଉପରେ ଚଢ଼ିଯାଇ ପୁଣି ତଳକୁ ଡେଇଁପଡ଼ିବାକୁ ଲାଗିଲେ । ୫୪ ।

---

## ୧୧ଶ ସର୍ଗ

### ( ମଦ୍ୟପାନସ୍ଥାନ ଅନ୍ୱେଷଣ )

ମହାକପି ହନୁମାନ୍ ପରେ ପୂର୍ବ ଚିନ୍ତା ମନରୁ ଦୂର କରିଦେଇ ସ୍ଥିରଭାବରେ ବସିଲେ ଏବଂ ସୀତାଙ୍କ ବିଷୟରେ ଅନ୍ୟପ୍ରକାର ଚିନ୍ତା କରିବାକୁ ଲାଗିଲେ । ୧ । ସେ ଭାବିଲେ, "ସୀତା କଦାପି ସ୍ୱାମୀ ବିରହରେ ଶୋଇବା, ଭୋଜନ କରିବା, ଅଳଙ୍କାର ପିନ୍ଧିବା ବା ମଦ୍ୟପାନରେ ଆସକ୍ତ ହେବାକୁ ସମର୍ଥ ହେବେ ନାହିଁ ।

ନାନ୍ୟଂ ନରମୁପାସ୍ଥାତୁଂ ସୁରାଣାମପି ଚେଶ୍ୱରମ୍ ।
ନ ହି ରାମସମଃ କଶ୍ଚିଦ୍‌ବିଦ୍ୟତେ ତ୍ରିଦଶେଷ୍ୱପି ।୩।
ଅନ୍ୟେୟମିତି ନିଶ୍ଚିତ୍ୟ ଭୂୟସ୍ତତ୍ର ଚଚାର ସଃ ।
ପାନଭୂମୌ ହରିଶ୍ରେଷ୍ଠଃ ସୀତାସଂଦର୍ଶନୋତ୍ସୁକଃ । ୪ ।
କ୍ରୀଡ଼ିତେନାପରାଃ କ୍ଳାନ୍ତା ଗୀତେନ ଚ ତଥାପରାଃ ।
ନୃତ୍ତେନ ଚାପରାଃ କ୍ଳାନ୍ତାଃ ପାନବିପ୍ରହତାସ୍ତଥା । ୫ ।
ମୁରଜେଷୁ ମୃଦଙ୍ଗେଷୁ ଚେଳିକାସୁ ଚ ସଂସ୍ଥିତାଃ ।
ତଥାସ୍ତରଣମୁଖ୍ୟେଷୁ ସଂବିଷ୍ଟାଶ୍ଚାପରାଃ ସ୍ତ୍ରିୟଃ । ୬ ।
ଅଙ୍ଗନାନାଂ ସହସ୍ରେଣ ଭୂଷିତେନ ବିଭୂଷଣୈଃ ।
ରୂପସଂଲାପଶୀଳେନ ଯୁକ୍ତଗୀତାର୍ଥଭାଷିଣା । ୭ ।
ଦେଶକାଳାଭିଯୁକ୍ତେନ ଯୁକ୍ତବାକ୍ୟାଭିଧାୟିନୀ ।
ରତାଭିରତସଂସୁପ୍ତଂ ଦଦର୍ଶ ହରିଯୂଥପଃ । ୮ ।
ଅନ୍ୟତ୍ରାପି ବରସ୍ତ୍ରୀଣାଂ ରୂପସଂଲାପଶାୟିନାମ୍ ।
ସହସ୍ରଂ ଯୁବତୀନାଂ ତୁ ପ୍ରସୁପ୍ତଂ ସ ଦଦର୍ଶ ହ । ୯ ।

---

ସାକ୍ଷାତ୍ ଇନ୍ଦ୍ର ହେଲେ ମଧ୍ୟ ସେ କଦାପି ପରପୁରୁଷର ସେବା କରିବେ ନାହିଁ, କାରଣ ଦେବତାମାନଙ୍କ ମଧ୍ୟରେ ସୁଦ୍ଧା ରାମଙ୍କ ସଦୃଶ ବ୍ୟକ୍ତି କେହି ନାହିଁ ।୨-୩। ସୁତରାଂ ଏ ଅନ୍ୟ କୌଣସି ରମଣୀ" ଏହି ପ୍ରକାର ନିଷ୍ପତ୍ତି କରି କପିଶ୍ରେଷ୍ଠ ହନୁମାନ୍ ସୀତାଙ୍କୁ ଦେଖିବାପାଇଁ ଉତ୍କଣ୍ଠିତ ହୋଇ ପୁନର୍ବାର ପାନଭୂମିରେ ବିଚରଣ କରିବାକୁ ଲାଗିଲେ । ୪ । ସେ ଦେଖିଲେ, କେତେକ କାମିନୀ ଅକ୍ଷକ୍ରୀଡ଼ା କରି, କେତେକ ସଙ୍ଗୀତ ଗାନକରି, କେତେକ ନୃତ୍ୟରେ କ୍ଳାନ୍ତହୋଇ, ଏବଂ ଆଉ କେତେକ ମଦ୍ୟପାନରେ ବିହ୍ୱଳ ହୋଇ ରହିଛନ୍ତି । ଅନ୍ୟ ମହିଳାମାନେ କିଏ ମୁରଜ, କିଏ ମୃଦଙ୍ଗ, କିଏ ବା କାଞ୍ଚୁଲିକୁ ଆଶ୍ରାକରି ଶୋଇପଡ଼ିଛନ୍ତି; କେହି କେହି ବା ଉତ୍କୃଷ୍ଟ ବିଛଣାଗୃହର ଉପରେ ଶୋଇଛନ୍ତି । ବାନରଦଳପତି ହନୁମାନ୍ ଦେଖିଲେ, ସେହି ପାନଭୂମିରେ ଅଳଙ୍କାରବିଭୂଷିତା ସହସ୍ର ସହସ୍ର ଅଙ୍ଗନା ପରସ୍ପର ରୂପବର୍ଣ୍ଣନାପୂର୍ବକ ଭଲ ଭଲ ସଙ୍ଗୀତର ଅର୍ଥ ପ୍ରକାଶ କରୁଛନ୍ତି ଏବଂ ଦେଶ-କାଳୋପଯୋଗୀ ସୁକ୍ତିଯୁକ୍ତ ବାକ୍ୟ ପ୍ରୟୋଗ କରୁଛନ୍ତି । ଏହି କାମିନୀମାନେ ରତିକ୍ରିୟାରୁ ବିରତ ହୋଇ ଗାଢ଼ନିଦ୍ରାରେ ଶୋଇପଡ଼ିଛନ୍ତି । ୫-୮ । ବାନର-ଯୂଥପତି ଦେଖିଲେ, ଅନ୍ୟତ୍ର ମଧ୍ୟ ସହସ୍ର କାମିନୀ ରତିକ୍ରୀଡ଼ାରୁ ବିରତ ହୋଇ

ଦେଶକାଲାଭିଯୁକ୍ତଂ ତୁ ଯୁକ୍ତବାକ୍ୟାଭିଧାୟି ଚ ।
ରତ୍ତାବରତ୍ତସଂସୁପ୍ତଂ ଦଦର୍ଶ ହରିଯୂଥପଃ । ୧୦ ।
ତାସାଂ ମଧ୍ୟେ ମହାବାହୁଃ ଶୁଶୁଭେ ରାକ୍ଷସେଶ୍ୱରଃ ।
ଗୋଷ୍ଠେ ମହତି ମୁଖ୍ୟାନାଂ ଗବାଂ ମଧ୍ୟେ ଯଥା ବୃଷଃ । ୧୧ ।
ସ ରାକ୍ଷସେନ୍ଦ୍ରଃ ଶୁଶୁଭେ ତାଭିଃ ପରିବୃତଃ ସ୍ୱୟମ୍ ।
କରେଣୁଭିର୍ଯଥାରଣ୍ୟେ ପରିକୀର୍ଣ୍ଣୋ ମହାଦ୍ୱିପଃ । ୧୨ ।
ସର୍ବକାମୈରୁପେତାଂ ଚ ପାନଭୂମିଂ ମହାତ୍ମନଃ ।
ଦଦର୍ଶ କପିଶାର୍ଦ୍ଦୂଳସ୍ତସ୍ୟ ରକ୍ଷଃପତେର୍ଗୃହେ । ୧୩ ।
ମୃଗାଣାଂ ମହିଷାଣାଂ ଚ ବରାହାଣାଂ ଚ ଭାଗଶଃ ।
ତତ୍ର ନ୍ୟସ୍ତାନି ମାଂସାନି ପାନଭୂମୌ ଦଦର୍ଶ ସଃ । ୧୪ ।
ରୌକ୍ମେଷୁ ଚ ବିଶାଲେଷୁ ଭାଜନେଷ୍ୱପ୍ୟଭକ୍ଷିତାନ୍ ।
ଦଦର୍ଶ କପିଶାର୍ଦ୍ଦୂଳୋ ମୟୂରାନ୍ କୁକ୍କୁଟାଂସ୍ତଥା । ୧୫ ।
ବରାହବାର୍ଦ୍ଧ୍ରୀଣସକାନ୍ଦଧିସୌବର୍ଚ୍ଚଲାୟୁତାନ୍ ।
ଶଲ୍ୟାନ୍ମୃଗମୟୂରାଂଶ୍ଚ ହନୂମାନନ୍ୱବୈକ୍ଷତ । ୧୬ ।
କୃକଲାନ୍ ବିବିଧାଂଶ୍ଛାଗାଞ୍ଛଶକାନର୍ଦ୍ଧଭକ୍ଷିତାନ୍ ।
ମହିଷାନେକଶଲ୍ୟାଂଶ୍ଚ ଚ୍ଛେଦାଂଶ୍ଚ କୃତନିଷ୍ଠିତାନ୍ । ୧୭ ।

---

ଗାଢ଼ନିଦ୍ରାରେ ଶୋଇ ରହିଛନ୍ତି ଏବଂ ସ୍ୱପ୍ନରେ ଦେଶକାଳୋପଯୋଗୀ ବାକ୍ୟ ପ୍ରୟୋଗ କରୁଛନ୍ତି ।୯-୧୦। ସେମାନଙ୍କ ମଧ୍ୟରେ ମହାବାହୁ ରାକ୍ଷସରାଜ ରାବଣ ଏକ ବିଶାଳ ଗୋଷ୍ଠରେ ଉତ୍କୃଷ୍ଟ ଗାଭୀମାନଙ୍କ ମଧ୍ୟରେ ବୃଷଭସଦୃଶ ଶୋଭାପାଉଅଛି ।୧୧। ରାକ୍ଷସରାଜ ରାବଣ ସେହି ରମଣୀମାନଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ଅରଣ୍ୟ ମଧ୍ୟରେ ହସ୍ତିନୀଗଣପରିବୃତ ମହାଗଜସଦୃଶ ଶୋଭାପାଉଛି । ୧୨ । କପିଶ୍ରେଷ୍ଠ ହନୁମାନ୍ ସେହି ମହାତ୍ମା ରାକ୍ଷସପତିର ଗୃହରେ ସମସ୍ତ ଭୋଗ୍ୟବସ୍ତୁପରିପୂର୍ଣ୍ଣ ସୁରାପାନଭୂମି ଦର୍ଶନକଲେ । ୧୩ । ସେ ଦେଖିଲେ, ସେହି ପାନଭୂମିର ସ୍ଥାନେ ସ୍ଥାନେ ମୃଗ, ମହିଷ ଓ ବରାହମାନଙ୍କର ମାଂସ ଭାଗ ଭାଗ ହୋଇ ସଜ୍ଜିତ ହୋଇ ରଖାଯାଇଅଛି ।୧୪। ବିଶାଳ ସ୍ୱର୍ଣ୍ଣମୟ ପାତ୍ରମାନଙ୍କରେ ଅଭକ୍ଷିତ, କୁକ୍କୁଟ ଓ ମୟୂର-ମାଂସମାନ ଥୁଆହୋଇଥିବାର କପିଶ୍ରେଷ୍ଠ ଦେଖିଲେ । ୧୫ । ବରାହ ଏବଂ ଗଣ୍ଡାମାଂସ ଦଧି ଓ ଲବଣାଦି ମସଲାଯୁକ୍ତ ହୋଇ ରହିଥିବା ତଥା ମୃଗ ଓ ମୟୂରମାଂସ ଶଲ୍ୟପାକ ହୋଇ ରହିଥିବାର ହନୂମାନ୍ ଦେଖିଲେ । ୧୬ । ଅର୍ଦ୍ଧଭକ୍ଷିତ କୃକଳ, ନାନାବିଧ ଛାଗ, ଶଶକ ଏବଂ ପାକକରା ହୋଇଥିବା କଟା ମହିଷମାଂସ ଗୋଟିଏ

ଲେହ୍ୟାନ୍ୟୁଚ୍ଚାବଚାନ୍ୟତ୍ର ପେୟାନ୍ୟପି ଚ ଭୂରିଶଃ ।
ତଥାମ୍ଳଲବଣୋତ୍ତଂସୈର୍ବିବିଧୈ ରାଗଖାଣ୍ଡବୈଃ । ୧୮ ।
ମହାନୂପୁରକେୟୂରୈରପବିଦ୍ଧୈର୍ମହାଧନୈଃ ।
ପାନଭାଜନବିକ୍ଷିପ୍ତୈଃ ଫଳୈଶ୍ଚ ବିବିଧୈରପି । ୧୯ ।
କୃତପୁଷ୍ପୋପହାରା ଭୂରଧିକାଂ ପୁଷ୍ୟତି ଶ୍ରିୟମ୍ ।
ତତ୍ର ତତ୍ର ଚ ବିନ୍ୟସ୍ତୈଃ ସୁଶ୍ଳିଷ୍ଟଶୟନାସନୈଃ । ୨୦ ।
ପାନଭୂମିର୍ବିନା ବହ୍ନିଂ ପ୍ରଦୀପ୍ତେବୋପଲକ୍ଷ୍ୟତେ ।
ବହୁପ୍ରକାରୈର୍ବିବିଧୈର୍ବରସଂସ୍କାରସଂସ୍କୃତୈଃ । ୨୧ ।
ମାଂସୈଃ କୁଶଳସଂଯୁକ୍ତୈଃ ପାନଭୂମିଗତୈଃ ପୃଥକ୍ ।
ଦିବ୍ୟାଃ ପ୍ରସନ୍ନା ବିବିଧାଃ ସୁରାଃ କୃତସୁରା ଅପି । ୨୨ ।
ଶର୍କରାସବମାଧ୍ୱୀକାଃ ପୁଷ୍ପାସବଫଳାସବାଃ ।
ବାସଚୂର୍ଣ୍ଣୈଶ୍ଚ ବିବିଧୈର୍ମୃଷ୍ଟାସ୍ତୈସ୍ତୈଃ ପୃଥକ୍‌ପୃଥକ୍ । ୨୩ ।
ସଂତତା ଶୁଶୁଭେ ଭୂମିର୍ମାଲ୍ୟୈଶ୍ଚ ବହୁସଂସ୍ଥିତୈଃ ।
ହିରଣ୍ମୟୈଶ୍ଚ କଳଶୈର୍ଭାଜନୈଃ ସ୍ଫାଟିକୈରପି । ୨୪ ।
ଜାମ୍ବୂନଦମୟୈଶ୍ଚାନ୍ୟୈଃ କରକୈରଭିସଂବୃତା ।
ରାଜତେଷୁ ଚ କୁମ୍ଭେଷୁ ଜାମ୍ବୂନଦମୟେଷୁ ଚ । ୨୫ ।

---

ଲୁହାଶଲ୍ୟ ଦେହରେ ଗୁନ୍ଥାହୋଇ ରହିଥିବାର ଏବଂ ଅମ୍ଳ ଓ ଲବଣଯୁକ୍ତ ବିବିଧ ରାଗ ଏବଂ ଶର୍କରାମିଶ୍ରିତ ଉତ୍କୃଷ୍ଟ ଉତ୍କୃଷ୍ଟ ଧରଣର ନାନାବିଧ ଲେହ୍ୟ ଏବଂ ପେୟ ଦ୍ରବ୍ୟମାନ ସେ ଦେଖିଲେ । ୧୭-୧୮ । ସ୍ଖଳିତ ଉତ୍କୃଷ୍ଟ ମହାମୂଲ୍ୟ ନେପୁର, କେୟୁର ଏବଂ ଇତସ୍ତତଃ ବିକ୍ଷିପ୍ତ ପାନପାତ୍ର ଏବଂ ବିବିଧ ଫଳାଦିଦ୍ୱାରା ସେହି ପାନଭୂମି ପୁଷ୍ପଶୋଭିତ ହେଲାପରି ଅଧିକ ଶୋଭା ଧାରଣ କରିଅଛି । ସ୍ଥାନେ ସ୍ଥାନେ ସୁସଜ୍ଜିତ ଶଯ୍ୟା ଏବଂ ଆସନାଦିଦ୍ୱାରା ସେହି ପାନଭୂମି ବିନା ଅଗ୍ନିରେ ମଧ ପ୍ରଜ୍ୱଳିତ ହେଲାପରି ଦେଖାଯାଉଅଛି । ନାନାବିଧ ଦ୍ରବ୍ୟମିଶ୍ରିତ, ଉତ୍କୃଷ୍ଟ ପାଚକଦ୍ୱାରା ପାକ ହୋଇଥିବା ବିବିଧ ମାଂସ ସହିତ ନାନାବିଧ ନିର୍ମଳ ଦିବ୍ୟ ସୁରା ଏବଂ କୃତ୍ରିମ ସୁରା ତଥା ବିବିଧ ଗନ୍ଧଚୂର୍ଣ୍ଣମିଶ୍ରିତ ଶର୍କରାସବ, ମାଧ୍ୱୀକ ପୁଷ୍ପାସବ ଓ ଫଳାସବମାନ ପୃଥକ୍ ପୃଥକ୍ ଭାବରେ ସେହି ପାନଭୂମିରେ ସୁସଜ୍ଜିତ ହୋଇ ରହିଅଛି । ୧୯-୨୩ । ନାନାଭାବରେ ସଜ୍ଜିତ ପୁଷ୍ପମାଳା, ହିରଣ୍ମୟ କଳସ, ସ୍ଫଟିକନିର୍ମିତ ପାନପାତ୍ର ଏବଂ ସ୍ୱର୍ଣ୍ଣମୟ ସଢ଼େଇମାନଙ୍କ ଦ୍ୱାରା ସେ ଭୂମି ସମାଚ୍ଛନ୍ନ ହୋଇ ରହିଅଛି । ସେଠାରେ ରୌପ୍ୟ ଏବଂ ସୁବର୍ଣ୍ଣ କୁମ୍ଭମାନଙ୍କରେ ଉତ୍କୃଷ୍ଟ ପାନୀୟ ଦ୍ରବ୍ୟମାନ ପ୍ରଚୁରପରିମାଣରେ

ପାନଶ୍ରେଷ୍ଠାଂ ତଥା ଭୂମିଂ କପିସ୍ତତ୍ର ଦଦର୍ଶ ହ ।
ସୋଽପଶ୍ୟଚ୍ଛାତକୁମ୍ଭାନି ସୀଧୋର୍ମଣିମୟାନି ଚ ।୨୬।
ତାନି ତାନି ଚ ପୂର୍ଣ୍ଣାନି ଭାଜନାନି ମହାକପିଃ ।
କ୍ୱଚିଦର୍ଦ୍ଧାବଶେଷାଣି କ୍ୱଚିତ୍ପୀତାନ୍ୟଶେଷତଃ ।୨୭।
କ୍ୱଚିନ୍ନୈବ ପ୍ରପୀତାନି ପାନାନି ଚ ଦଦର୍ଶ ହ ।
କ୍ୱଚିଦ୍ଭକ୍ଷ୍ୟାଂଶ୍ଚ ବିବିଧାନ୍ କ୍ୱଚିତ୍ପାନଂ ବିଭାଗଶଃ ।୨୮।
କ୍ୱଚିଦର୍ଦ୍ଧାବଶେଷାଣି ପଶ୍ୟନ୍ ବୈ ବିଚଚାର ହ ।
ଶୟନାନ୍ୟତ୍ର ନାରୀଣାଂ ଶୂନ୍ୟାନି ବହୁଧା ପୁନଃ ।
ପରସ୍ପରଂ ସମାଶ୍ଲିଷ୍ୟ କାଶ୍ଚିତ୍ସୁପ୍ତା ବରାଙ୍ଗନାଃ ।୨୯।
କାଚିଚ୍ଚ ବସ୍ତ୍ରମନ୍ୟସ୍ୟ ଅପହୃତ୍ୟୋପଗୂହ୍ୟ ଚ ।
ଉପଗମ୍ୟାଲ ।ବସୁପ୍ତା ନିଦ୍ରାବଲପରାଜିତା ।୩୦।
ତାସାମୁଚ୍ଛ୍ୱାସବାତେନ ବସ୍ତ୍ରଂ ମାଲ୍ୟଂ ଚ ଗାତ୍ରଜମ୍ ।
ନାତ୍ୟର୍ଥଂ ସ୍ପନ୍ଦତେ ଚିତ୍ରଂ ପ୍ରାପ୍ୟ ମନ୍ଦମିବାନିଲମ୍ ।୩୧।
ଚନ୍ଦନସ୍ୟ ଚ ଶୀତସ୍ୟ ସୀଧୋର୍ମଧୁରସସ୍ୟ ଚ ।
ବିବିଧସ୍ୟ ଚ ମାଲ୍ୟସ୍ୟ ପୁଷ୍ପସ୍ୟ ବିବିଧସ୍ୟ ଚ ।୩୨।

---

ରହିଥିବାର ସେ ଦେଖିଲେ । ଆଉ ମଧ୍ୟ ସେ ଦେଖିଲେ, ସୁବର୍ଣ୍ଣ ଓ ମଣିମୟ ପାତ୍ରସବୁ ମଦ୍ୟରେ ପୂର୍ଣ୍ଣହୋଇ ରହିଅଛି । ୨୪-୨୬ । କୌଣସି ପାତ୍ରର ସୁରା ଅର୍ଦ୍ଧାବଶିଷ୍ଟ ରହିଅଛି ଏବଂ କୌଣସି କୌଣସିଥିରୁ ସବୁ ପିଆ ହୋଇଯାଇଅଛି । ୨୭ । କୌଣସି କୌଣସି ପାତ୍ରରୁ ମଦ୍ୟ ଆଦୌ ପିଅହୋଇ ନାହିଁ । କୌଣସି କୌଣସି ସ୍ଥାନରେ ନାନାବିଧ ଭକ୍ଷଦ୍ରବ୍ୟ ଓ ପାନୀୟ ମଦ୍ୟ ସ୍ଥାନେ ସ୍ଥାନେ ବିଭାଗକ୍ରମେ ବିନ୍ୟସ୍ତ କରାହୋଇଅଛି । ୨୮ । କେଉଁଠାରେ ବା ଅର୍ଦ୍ଧାବଶିଷ୍ଟ ପାତ୍ରମାନ ପଡ଼ିରହିଅଛି । ଏ ସମସ୍ତ ଦେଖି ଦେଖି ହନୁମାନ୍ ବିଚରଣ କରିବାକୁ ଲାଗିଲେ । କେତେକ ସୁନ୍ଦରୀ ପରସ୍ପରକୁ ଆଲିଙ୍ଗନ କରି ଶୋଇଥିବାରୁ ଅନେକ ପଲଙ୍କ ଶୂନ୍ୟ ପଡ଼ିରହିଅଛି । ୨୯ । କୌଣସି ଅବଳା ନିଦ୍ରାବଶରେ ଅନ୍ୟର ଶଯ୍ୟାକୁ ଯାଇ ତାହାର ବସ୍ତ୍ର ଆକର୍ଷଣପୂର୍ବକ ନିଜ ଦେହରେ ବେଢ଼େଇ ହୋଇ ଶୋଇ ପଡ଼ିଅଛି । ।୩୦ । ସେମାନଙ୍କର ନିଶ୍ୱାସ ବାୟୁଦ୍ୱାରା ସ୍ପନ୍ଦିତ ହୋଇ ଶରୀରସଂଲଗ୍ନ ବିଚିତ୍ର ବସ୍ତ୍ର ଓ ମାଲ୍ୟ ଈଷତ୍ ଆନ୍ଦୋଳିତ ହେଉଅଛି । ୩୧ । ଶୀତଳ ଚନ୍ଦନ, ମଦ୍ୟ, ମଧୁର ରସ, ବିବିଧ ମାଲ୍ୟ, ବିବିଧ ପୁଷ୍ପ ଓ ଚନ୍ଦନରେ ସ୍ନାନ କରିଥିବା କାମିନୀମାନଙ୍କର ଶରୀର, ଗନ୍ଧ ତଥା ଧୂପ ପ୍ରଭୃତି ସୁଗନ୍ଧି ଦ୍ରବ୍ୟର ନାନାବିଧ ଗନ୍ଧ ବହନ କରି ବାୟୁ

ବହୁଧା ମାରୁତସ୍ତସ୍ୟ ଗନ୍ଧଂ ବିବିଧମୁଦ୍‌ବହନ୍ ।
ସ୍ନାନାନାଂ ଚନ୍ଦନାନାଂ ଚ ଧୂପାନାଂ ଚୈବ ମୂର୍ଚ୍ଛିତଃ । ୩୩ ।
ପ୍ରବବୌ ସୁରଭିର୍ଗନ୍ଧୋ ବିମାନେ ପୁଷ୍ପକେ ତଦା ।
ଶ୍ୟାମାବଦାତାସ୍ତତ୍ରାନ୍ୟାଃ କାଶ୍ଚିତ୍‌କୃଷ୍ଣା ବରାଙ୍ଗନାଃ । ୩୪ ।
କାଶ୍ଚିତ୍‌କାଞ୍ଚନବର୍ଣାଙ୍ଗୀଃ ପ୍ରମଦା ରାକ୍ଷସାଳୟେ ।
ତାସାଂ ନିଦ୍ରାବଶତ୍ୱାଚ୍ଚ ମଦନେନ ବିମୂର୍ଚ୍ଛିତମ୍ । ୩୫ ।
ପଦ୍ମିନୀନାଂ ପ୍ରସୁପ୍ତାନାଂ ରୂପମାସୀଦ୍‌ ଯଥୈବ ହି ।
ଏବଂ ସର୍ବମଶେଷେଣ ରାବଣାନ୍ତଃପୁରଂ କପିଃ ।
ଦଦର୍ଶ ସ ମହାତେଜା ନ ଦଦର୍ଶ ଚ ଜାନକୀମ୍ । ୩୬ ।

ନିରୀକ୍ଷମାଣଶ୍ଚ ତତସ୍ତାଃ ସ୍ତ୍ରିୟଃ ସ ମହାକପିଃ ।
ଜଗାମ ମହତୀଂ ଶଙ୍କାଂ ଧର୍ମସାଧ୍ୱସଶଙ୍କିତଃ । ୩୭ ।
ପରଦାରାବରୋଧସ୍ୟ ପ୍ରସୁପ୍ତସ୍ୟ ନିରୀକ୍ଷଣମ୍ ।
ଇଦଂ ଖଲୁ ମମାତ୍ୟର୍ଥଂ ଧର୍ମଲୋପଂ କରିଷ୍ୟତି । ୩୮ ।
ନ ହି ମେ ପରଦାରାଣାଂ ଦୃଷ୍ଟିର୍ବିଷୟବର୍ତ୍ତିନୀ ।
ଅୟଂ ଚାତ୍ର ମୟା ଦୃଷ୍ଟଃ ପରଦାରପରିଗ୍ରହଃ । ୩୯ ।

---

ପ୍ରବାହିତ ହୋଇ ସେହି ଗନ୍ଧରେ ପୁଷ୍ପକ ବିମାନକୁ ସୁଗନ୍ଧିତ କରୁଅଛି । ସେଠାରେ ସେ ରାକ୍ଷସଗୃହରେ ରମଣୀମାନଙ୍କ ମଧ୍ୟରେ କେତେକ ଉଜ୍ଜ୍ୱଳା, ଶ୍ୟାମବର୍ଣ୍ଣା, କେତେକ କୃଷ୍ଣବର୍ଣ୍ଣା ଆଉ କେତେକ ହେମବର୍ଣ୍ଣା ରମଣୀ ଥିଲେ । ସେମାନେ ରତିକ୍ଲାନ୍ତା ହୋଇ ନିଦ୍ରାଭିଭୂତା ହୋଇଥିବାରୁ ସେମାନଙ୍କର ରୂପ ପ୍ରସୁପ୍ତ ପଦ୍ମପୁଷ୍ପପରି ଦେଖାଯାଉଥିଲା । ମହାତେଜା ବାନର ହନୁମାନ୍ ଏହିପରିଭାବରେ ରାବଣର ଅନ୍ତଃପୁର ତନ୍ନ ତନ୍ନ କରି ଦେଖିଲେ; ମାତ୍ର କୌଣସିଠାରେ ଜନକନନ୍ଦିନୀଙ୍କୁ ଦେଖିପାରିଲେ ନାହିଁ । ୩୨-୩୬ । ଏହି ସମସ୍ତ ରମଣୀଙ୍କୁ ଦେଖି ମହାକପି ହନୁମାନ୍ ଧର୍ମନାଶ ଶଙ୍କାରେ ଭୀତ ହୋଇ ଅତିଶୟ ଚିନ୍ତାନ୍ୱିତ ହୋଇପଡ଼ିଲେ । ୩୭ । ସେ ଭାବିଲେ, "ମୁଁ ଯେ ଅନ୍ତଃପୁର ମଧ୍ୟରେ ଶୋଇରହିଥିବା ପରସ୍ତ୍ରୀମାନଙ୍କୁ ଦେଖୁଛି, ଏଥିରେ ମୋର ନିଶ୍ଚୟ ଗୁରୁତର ଧର୍ମହାନି ହେବ । ୩୮ । ମୋର ଦୃଷ୍ଟି କେବେ ପରସ୍ତ୍ରୀମାନଙ୍କ ଉପରେ ପଡ଼େ ନାହିଁ । ଏଠାରେ ରାବଣ ପରସ୍ତ୍ରୀମାନଙ୍କୁ ଗ୍ରହଣ କରିଥିବାର ମୁଁ ଦେଖିଲି" । ୩୯ । ମନସ୍ୱୀ ହନୁମାନ୍ ପ୍ରମାଣ-

ତସ୍ୟ ପ୍ରାଦୁରଭୂଚ୍ଚିନ୍ତା ପୁନରନ୍ୟା ମନସ୍ୱିନଃ ।
ନିଶ୍ଚିତୈକାନ୍ତଚିତ୍ତସ୍ୟ କାର୍ଯନିଶ୍ଚୟଦର୍ଶିନୀ । ୪୦ ।
କାମଂ ଦୃଷ୍ଟା ମୟା ସର୍ବା ବିଶ୍ୱସ୍ତା ରାବଣସ୍ତ୍ରିୟଃ ।
ନ ତୁ ମେ ମନସା କିଂଚିଦ୍‌ବୈକୃତ୍ୟମୁପପଦ୍ୟତେ । ୪୧ ।
ମନୋ ହି ହେତୁଃ ସର୍ବେଷାମିନ୍ଦ୍ରିୟାଣାଂ ପ୍ରବର୍ତ୍ତନେ ।
ଶୁଭାଶୁଭାସ୍ୱବସ୍ଥାସୁ ତଚ୍ଚ ମେ ସୁବ୍ୟବସ୍ଥିତମ୍ । ୪୨ ।
ନାନ୍ୟତ୍ର ହି ମୟା ଶକ୍ୟା ବୈଦେହୀ ପରିମାର୍ଗିତୁମ୍ ।
ସ୍ତ୍ରିୟୋ ହି ସ୍ତ୍ରୀଷୁ ଦୃଶ୍ୟନ୍ତେ ସଦା ସଂପରିମାର୍ଗଣେ । ୪୩ ।
ଯସ୍ୟ ସତ୍ତ୍ୱସ୍ୟ ଯା ଯୋନିସ୍ତସ୍ୟାଂ ତତ୍ପରିମାର୍ଗ୍ୟତେ ।
ନ ଶକ୍ୟଂ ପ୍ରମଦା ନଷ୍ଟା ମୃଗୀଷୁ ପରିମାର୍ଗିତୁମ୍ । ୪୪ ।
ତଦିଦଂ ମାର୍ଗିତଂ ତାବଚ୍ଛୁଦ୍ଧେନ ମନସା ମୟା ।
ରାବଣାନ୍ତଃପୁରେ ସର୍ବଂ ଦୃଶ୍ୟତେ ନ ଚ ଜାନକୀ । ୪୫ ।
ଦେବଗନ୍ଧର୍ବକନ୍ୟାଶ୍ଚ ନାଗକନ୍ୟାଶ୍ଚ ବୀର୍ଯବାନ୍ ।
ଅବେକ୍ଷମାଣୋ ହନୁମାନ୍ନୈବାପଶ୍ୟତ ଜାନକୀମ୍ । ୪୬ ।

---

ସିଦ୍ଧ ସିଦ୍ଧାନ୍ତ ବିଷୟରେ ଏକାନ୍ତଚିତ୍ତ ହୋଇ ପରଚିନ୍ତା କରୁ କରୁ ତାଙ୍କ ମନରେ ଆଉ ଅନ୍ୟ ଚିନ୍ତା ଜାଗ୍ରତ ହେଲା । ୪୦ । ସେ ଭାବିଲେ, "ଅବଶ୍ୟ ମୁଁ ବିଶ୍ୱସ୍ତଭାବରେ ନିଦ୍ରିତ ଥିବା ରାବଣପତ୍ନୀମାନଙ୍କୁ ଯଥେଷ୍ଟଭାବରେ ଦେଖିଲି; କିନ୍ତୁ ଏହା ଦ୍ୱାରା ତ ମୋ ମନରେ ଲେଶମାତ୍ର ବିକାର ଜାତ ହୋଇନାହିଁ । ୪୧ । ମନହିଁ ଇନ୍ଦ୍ରିୟମାନଙ୍କୁ ଶୁଭ ଏବଂ ଅଶୁଭ କାର୍ଯ୍ୟରେ ପ୍ରବର୍ତ୍ତିତ କରାଇଥାଏ, ଅଥଚ ମୋର ସେ ମନ ସମ୍ପୂର୍ଣ୍ଣ ସୁବ୍ୟବସ୍ଥିତ ହୋଇ ରହିଅଛି । ୪୨ । ପୁଣି ମୁଁ ତ ଆଉ ଅନ୍ୟ ସ୍ଥାନରେ ସୀତାଙ୍କୁ ଅନ୍ୱେଷଣ କରି ପାରନ୍ତି ନାହିଁ; କାରଣ ଲୋକେ ସ୍ତ୍ରୀଲୋକଙ୍କ ମଧ୍ୟରେ ହିଁ ସ୍ତ୍ରୀଲୋକଙ୍କୁ ସର୍ବଥା ଅନ୍ୱେଷଣ କରିଥାନ୍ତି । ୪୩ । ଯେ ପ୍ରାଣୀର ଯେ ଜାତି ତାକୁ ସେହି ଜାତିମଧ୍ୟରେ ହିଁ ଅନ୍ୱେଷଣ କରିବାକୁ ହୁଏ । ସ୍ତ୍ରୀଲୋକ ହଜିଗଲେ ତ ଆଉ ତାକୁ ହରିଣୀମାନଙ୍କ ମଧ୍ୟରେ ଖୋଜିବାର କଥା ନୁହେଁ । ୪୪ । ସୁତରାଂ ବିଶୁଦ୍ଧହୃଦୟରେ ରାବଣର ଏହି ଅନ୍ତଃପୁରର ସମସ୍ତ ସ୍ଥାନ ଅନ୍ୱେଷଣ କଲି; ମାତ୍ର ସୀତାଙ୍କୁ ଦେଖୁ ନାହିଁ" । ୪୫ । ବୀର୍ଯ୍ୟବାନ୍ ହନୁମାନ୍ ଦେବକନ୍ୟା, ଗନ୍ଧର୍ବକନ୍ୟା ଏବଂ ନାଗକନ୍ୟାମାନଙ୍କ ମଧ୍ୟରେ ପର୍ଯ୍ୟବେକ୍ଷଣ କରି ମଧ୍ୟ ସୀତାଙ୍କୁ ଦେଖିଲେ ନାହିଁ । ୪୬ ।

ତାମପଶ୍ୟନ୍‌କପିସ୍ତତ୍ର ପଶ୍ୟଂଶ୍ଚାନ୍ୟା ବରସ୍ତ୍ରିୟଃ ।
ଅପକ୍ରମ୍ୟ ତଦା ବୀରଃ ପ୍ରସ୍ଥାତୁମୁପଚକ୍ରମେ ।୪୭।
ସ ଭୂୟଃ ସର୍ବତଃ ଶ୍ରୀମାନ୍ମାରୁତିର୍ଯତ୍ନମାଶ୍ରିତଃ ।
ଆପାନଭୂମିମୁତ୍ସୃଜ୍ୟ ତାଂ ବିଚେତୁଂ ପ୍ରଚକ୍ରମେ ।୪୮।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତ୍ସହସ୍ରିକାୟାଂ ସଂହିତାୟାଂ ସୁନ୍ଦରକାଣ୍ଡେ ପାନଭୂମିବିଚୟୋ ନାମ ଏକାଦଶଃ ସର୍ଗଃ ।

---

# ଦ୍ୱାଦଶଃ ସର୍ଗଃ

## ହନୂମଦ୍‌ବିଷାଦଃ

ସ ତସ୍ୟ ମଧ୍ୟେ ଭବନସ୍ୟ ସଂସ୍ଥିତୋ
ଲତାଗୃହାଂଶ୍ଚିତ୍ରଗୃହାନ୍ନିଶାଗୃହାନ୍ ।
ଜଗାମ ସୀତାଂ ପ୍ରତିଦର୍ଶନୋତ୍ସୁକୋ
ନ ଚୈବ ତାଂ ପଶ୍ୟତି ଚାରୁଦର୍ଶନାମ୍ ।୧।

---

ବୀର ବାନର ହନୁମାନ୍ ସୀତାଙ୍କୁ ନ ଦେଖି ଏବଂ ଅନ୍ୟ ବରାଙ୍ଗନାମାନଙ୍କୁ ଦେଖି, ସେଠାରୁ ବହିର୍ଗତ ହୋଇ ପ୍ରସ୍ଥାନ କରିବାକୁ ଉଦ୍ୟତ ହେଲେ ।୪୭। ଶ୍ରୀମାନ୍ ହନୁମାନ୍ ପାନଭୂମି ପରିତ୍ୟାଗ କରି ପୁନର୍ବାର ଯତ୍ନସହକାରେ ସୀତାଙ୍କୁ ଖୋଜିବାରେ ଲାଗିଲେ ।୪୮।

---

## ୧୨ଶ ସର୍ଗ

( ହନୁମାନଙ୍କର ବିଷାଦ )

ହନୁମାନ୍ ରାବଣର ସେହି ପ୍ରାସାଦ ମଧ୍ୟରେ ରହି ସୀତାଙ୍କୁ ଦେଖିବା ପାଇଁ ଉତ୍ସୁକ ହୋଇ ସମସ୍ତ ଲତାଗୃହ, ଚିତ୍ରଗୃହ ଏବଂ ନିଶାକାଳୀନ ଶୟନଗୃହ ପ୍ରଭୃତିକୁ ଗମନ କଲେ, କିନ୍ତୁ ସୁଶୋଭନା ସୀତାଙ୍କୁ କୌଣସିଠାରେ ଦେଖିଲେ

ସ ଚିନ୍ତୟାମାସ ତତୋ ମହାକପିଃ
ପ୍ରିୟାମପଶ୍ୟନ୍ରଘୁନନ୍ଦନସ୍ୟ ତାମ୍ ।
ଧ୍ରୁବଂ ନ ସୀତା ଧ୍ରିୟତେ ଯଥା ନ ମେ
ବିଚିନ୍ୱତୋ ଦର୍ଶନମେତି ମୈଥିଳୀ । ୨ ।
ସା ରାକ୍ଷସାନାଂ ପ୍ରବରେଣ ଜାନକୀ
ସ୍ୱଶୀଲସଂରକ୍ଷଣତତ୍ପରା ସତୀ ।
ଅନେନ ନୂନଂ ପ୍ରତିଦୁଷ୍ଟକର୍ମଣା
ହତା ଭବେଦାର୍ଯ୍ୟପଥେ ପରେ ସ୍ଥିତା । ୩ ।
ବିରୂପରୂପା ବିକୃତା ବିବର୍ଚସୋ
ମହାନନା ଦୀର୍ଘବିରୂପଦର୍ଶନାଃ ।
ସମୀକ୍ଷ୍ୟ ତା ରାକ୍ଷସରାଜଯୋଷିତୋ
ଭୟାଦ୍ୱିନଷ୍ଟା ଜନକେଶ୍ୱରାତ୍ମଜା । ୪ ।
ସୀତାମଦୃଷ୍ଟ୍ୱା ହ୍ୟନବାପ୍ୟ ପୌରୁଷମ୍
ବିହୃତ୍ୟ କାଲଂ ସହ ବାନରୈଶ୍ଚିରମ୍ ।
ନ ମେଽସ୍ତି ସୁଗ୍ରୀବସମୀପଗା ଗତିଃ
ସୁତୀକ୍ଷ୍ଣଦଣ୍ଡୋ ବଲବାଂଶ୍ଚ ବାନରଃ । ୫ ।

---

ନାହିଁ । ୧ । ଅନନ୍ତର ମହାବାନର ହନୁମାନ୍ ରଘୁନନ୍ଦନ ରାମଙ୍କର ପ୍ରେୟସୀଙ୍କୁ ନ ଦେଖି ଚିନ୍ତିଲେ, "ଯେହେତୁ ମୁଁ ଚିନ୍ନ ଚିନ୍ନ କରି ଅନ୍ୱେଷଣ କଲେ ମଧ୍ୟ ମୈଥିଳୀ ମୋ ଦୃଷ୍ଟିରେ ପଡ଼ୁନାହାନ୍ତି; ସୁତରାଂ ସୀତା ନିଶ୍ଚୟ ଆଉ ଜୀବନ ଧରି ନାହାନ୍ତି । ୨ । ବାଳା ଜାନକୀ ପତିବ୍ରତା ଅଟନ୍ତି, ସୁତରାଂ ସେ ନିଜର ଚରିତ୍ର ରକ୍ଷା କରିବା ପାଇଁ ତତ୍ପରହୋଇ ଉତ୍ତମ ଆର୍ଯ୍ୟପଥରେ ଅଟଳ ରହିଥିବା ହେତୁରୁ ନିଶ୍ଚୟ ଏହି ପ୍ରସିଦ୍ଧ ଦୁରାଚାରୀ ରାକ୍ଷସକର୍ତ୍ତୃକ ନିହତ ହୋଇଥିବେ । ୩ । କିମ୍ବା ରାକ୍ଷସରାଜ ରାବଣର ବିରୂପରୂପା, ବିକୃତବର୍ଣ୍ଣା, ବିସ୍ତୃତବଦନା, ଦୀର୍ଘବିକୃତ-ନୟନା ରମଣୀମାନଙ୍କୁ ଦେଖି ଜନକରାଜନନ୍ଦିନୀ ଭୟରେ ପ୍ରାଣତ୍ୟାଗ କରିଥିବେ । ୪ । ସୀତାଙ୍କୁ ନ ପାଇ ନିଜ ପୌରୁଷର ଫଳ ଲାଭ ନ କରି ବାନରମାନଙ୍କ ସହିତ ମୁଁ ବହୁକାଳ ଅତିବାହିତ କଲିଣି; ସୁତରାଂ ମୋର ଆଉ ସୁଗ୍ରୀବଙ୍କ ନିକଟକୁ ଯିବାର ଉପାୟ ନାହିଁ, କାରଣ ସେ ବଳବାନ୍ ବାନରପତି ଅପରାଧୀ ପ୍ରତି କଠୋର ଦଣ୍ଡବିଧାନ କରିଥାନ୍ତି । ୫ । ମୁଁ ସମଗ୍ର ଅନ୍ତଃପୁର ଅନ୍ୱେଷଣ କଲି;

ଦୃଷ୍ଟମନ୍ତଃପୁରଂ ସର୍ବଂ ଦୃଷ୍ଟା ରାକ୍ଷସଯୋଷିତଃ ।
ନ ସୀତା ଦୃଶ୍ୟତେ ସାଧ୍ୱୀ ବୃଥା ଜାତୋ ମମ ଶ୍ରମଃ । ୬ ।
କିଂ ନୁ ମାଂ ବାନରାଃ ସର୍ବେ ଗତଂ ବକ୍ଷ୍ୟନ୍ତି ସଂଗତାଃ ।
ଗତ୍ୱା ତତ୍ର ତ୍ୱୟା ବୀର କିଂ କୃତଂ ତଦ୍ ବଦସ୍ୱ ନଃ । ୭ ।
ଅଦୃଷ୍ଟ୍ୱା କିଂ ପ୍ରବକ୍ଷ୍ୟାମି ତାମହଂ ଜନକାତ୍ମଜାମ୍ ।
ଧ୍ରୁବଂ ପ୍ରାୟମୁପାସିଷ୍ୟେ କାଳସ୍ୟ ବ୍ୟତିବର୍ତ୍ତନେ । ୮ ।
କିଂ ବା ବକ୍ଷ୍ୟତି ବୃଦ୍ଧଶ୍ଚ ଜାମ୍ବବାନଙ୍ଗଦଶ୍ଚ ସଃ ।
ଗତଂ ପାରଂ ସମୁଦ୍ରସ୍ୟ ବାନରାଶ୍ଚ ସମାଗତାଃ । ୯ ।
ଅନିର୍ବେଦଃ ଶ୍ରିୟୋ ମୂଲମନିର୍ବେଦଃ ପରଂ ସୁଖମ୍ ।
ଭୂୟସ୍ତତ୍ର ବିଚେଷ୍ୟାମି ନ ଯତ୍ର ବିଚୟଃ କୃତଃ । ୧୦ ।
ଅନିର୍ବେଦୋ ହି ସତତଂ ସର୍ବାର୍ଥେଷୁ ପ୍ରବର୍ତ୍ତକଃ ।
କରୋତି ସଫଳଂ ଜନ୍ତୋଃ କର୍ମ ଯଚ୍ଚ କରୋତି ସଃ । ୧୧ ।
ତସ୍ମାଦନିର୍ବେଦକରଂ ଯତ୍ନଂ ଚେଷ୍ଟେଽହମୁତ୍ତମମ୍ ।
ଅଦୃଷ୍ଟାଂଶ୍ଚ ବିଚେଷ୍ୟାମି ଦେଶାନ୍ ରାବଣପାଳିତାନ୍ । ୧୨ ।

---

ରାବଣର ପତ୍ନୀମାନଙ୍କୁ ଦେଖିଲି; ମାତ୍ର ସାଧ୍ୱୀ ସୀତା ଦେଖାପଡ଼ିଲେ ନାହିଁ । ସୁତରାଂ ମୋର ସମସ୍ତ ଶ୍ରମ ବୃଥା ହେଲା । ୬ । ମୁଁ ଫେରିଗଲେ ବାନରମାନେ ସମସ୍ତେ ମିଳି କ'ଣ ମୋତେ କହିବେ ! ସେମାନେ ପଚାରିବେ, "ହେ ବୀର ! ତୁମେ ସେଠାକୁ ଯାଇ କ'ଣ କଲ ତାହା ଆମ୍ଭମାନଙ୍କୁ କହ ?" । ୭ । ମୁଁ ସେହି ଜନକନନ୍ଦିନୀଙ୍କୁ ନ ଦେଖି ସେମାନଙ୍କୁ ବା କଅଣ କହିବି ? ସୁତରାଂ ଏତେକାଳ ଯେ ବିତିଗଲା, ମୁଁ ଏବେ ନିଶ୍ଚୟ ଅନଶନ ବ୍ରତ କରି ପ୍ରାଣତ୍ୟାଗ କରିବି । ୮ । ମୁଁ ସମୁଦ୍ର ପାରିହୋଇ ଫେରିଗଲେ ବୃଦ୍ଧ ଜାମ୍ବବାନ୍ କ'ଣ କହିବେ, ଅଙ୍ଗଦ ବା କ'ଣ କହିବ ଏବଂ ଅନ୍ୟ ସମବେତ ବାନରମାନେ ବା କ'ଣ କହିବେ ? ୯ । ଅଥବା ଉତ୍ସାହ ହିଁ ସମସ୍ତ ମଙ୍ଗଳର ମୂଳ ଏବଂ ଉତ୍ସାହ ହିଁ ପରମସୁଖର ହେତୁ, ସୁତରାଂ ମୁଁ ଯେଉଁ ଯେଉଁ ସ୍ଥାନ ଅନୁସନ୍ଧାନ ନ କରିଛି, ସେହି ସେହି ସ୍ଥାନ ପୁନର୍ବାର ଅନ୍ୱେଷଣ କରିବି । ୧୦ । ଉତ୍ସାହ ହିଁ ମନୁଷ୍ୟକୁ ସର୍ବଦା ସବୁ କାର୍ଯ୍ୟରେ ପ୍ରବର୍ତ୍ତାଇଥାଏ । ପ୍ରାଣୀ ଉତ୍ସାହାନ୍ୱିତ ହୋଇ ଯେଉଁ କାର୍ଯ୍ୟ କରେ, ତାହାର ସେହି କାର୍ଯ୍ୟ ସଫଳ ହୁଏ । ୧୧ । ଅତଏବ ମୁଁ ଉତ୍ସାହଜନକ ଦୃଢ଼ ଯତ୍ନସହକାରେ ଚେଷ୍ଟା କରିବି ଏବଂ ରାବଣ-ରକ୍ଷିତ ଯେଉଁ ଯେଉଁ ଅଞ୍ଚଳ ଦେଖି ନାହିଁ, ସେ ସବୁ ସ୍ଥାନରେ ଅନ୍ୱେଷଣ

ଆପାନଶାଲାବିଚିତାସ୍ତଥା ପୁଷ୍ପଗୃହାଣି ଚ ।
ଚିତ୍ରଶାଲାଶ୍ଚ ବିଚିତା ଭୂୟଃ କ୍ରୀଡ଼ାଗୃହାଣି ଚ । ୧୩ ।
ନିଷ୍କୁଟାନ୍ତରରଥ୍ୟାଶ୍ଚ ବିମାନାନି ଚ ସର୍ବଶଃ ।
ଇତି ସଂଚିନ୍ତ୍ୟ ଭୂୟୋଽପି ବିଚେତୁମୁପଚକ୍ରମେ । ୧୪ ।
ଭୂମୀଗୃହାଂଶ୍ଚୈତ୍ୟଗୃହାନ୍ ଗୃହାତିଗୃହକାନପି ।
ଉତ୍ପତନ୍ନିପତଂଶ୍ଚାପି ତିଷ୍ଠନ୍ ଗଚ୍ଛନ୍ ପୁନଃ କ୍ୱଚିତ୍ । ୧୫ ।
ଅପାବୃଣ୍ୱଂଶ୍ଚ ଦ୍ୱାରାଣି କପାଟାନ୍ୟବଘଟ୍ଟୟନ୍ ।
ପ୍ରବିଶନ୍ନିଷ୍ପତଂଶ୍ଚାପି ପ୍ରପତନ୍ନୁତ୍ପତନ୍ନିବ । ୧୬ ।
ସର୍ବମପ୍ୟବକାଶଂ ସ ବିଚଚାର ମହାକପିଃ ।
ଚତୁରଙ୍ଗୁଳମାତ୍ରୋଽପି ନାବକାଶଃ ସ ବିଦ୍ୟତେ ।
ରାବଣାନ୍ତଃପୁରେ ତସ୍ମିନ୍ ଯଂ କପିର୍ନ ଜଗାମ ସଃ । ୧୭ ।
ପ୍ରାକାରାନ୍ତରବୀଥ୍ୟଶ୍ଚ ବେଦିକାଶ୍ଚୈତ୍ୟସଂଶ୍ରୟାଃ ।
ଶ୍ୱଭ୍ରାଶ୍ଚ ପୁଷ୍କରିଣ୍ୟଶ୍ଚ ସର୍ବଂ ତେନାବଲୋକିତମ୍ । ୧୮ ।
ରାକ୍ଷସ୍ୟୋ ବିବିଧାକାରା ବିରୂପା ବିକୃତାସ୍ତଥା ।
ଦୃଷ୍ଟା ହନୁମତା ତତ୍ର ନ ତୁ ସା ଜନକାତ୍ମଜା । ୧୯ ।

---

କରିବି । ୧୨ । ମୁଁ ସମସ୍ତ ପାନଗୃହ ଓ ପୁଷ୍ପ ଗୃହ ଅନ୍ୱେଷଣ କରିଛି, ଚିତ୍ରଶାଳା ଓ କ୍ରୀଡ଼ାଗୃହସମୂହ ମଧ୍ୟ ବାରଂବାର ଅନ୍ୱେଷଣ କରିଛି । ୧୩ । ବାହାର ଉଦ୍ୟାନ ମଧ୍ୟରେ ଥିବା ପଥମାନ ଏବଂ ବିମାନଗୁଡ଼ିକ ମଧ୍ୟ ସର୍ବତୋଭାବରେ ଅନ୍ୱେଷଣ କରିଅଛି ।" ସେ ଏହିପରି ଚିନ୍ତାକରି ପୁଣି ଅନ୍ୱେଷଣ କରିବାକୁ ଆରମ୍ଭ କଲେ । । ୧୪ । ମହାକପି ହନୁମାନ୍ ସମସ୍ତ ଭୂମଧ୍ୟସ୍ଥ ଗୃହ, ଚୈତ୍ୟ ଗୃହ ଓ ଗୃହର ଉପରେ ଥିବା ଗୃହମାନ, ଉପରକୁ ଚଢ଼ି, ତଳକୁ ଓହ୍ଲାଇ, କେଉଁଠି ବା ଠିଆ ହୋଇ, କେଉଁଠି ବା ପୁଣି ଯାଇ ଆସି, ଦୁଆର ମେଲେଇ, କେଉଁଠି କବାଟ ଭାଙ୍ଗି, କେଉଁଠି ଘର ଭିତରେ ପଶି, ପୁଣି ବାହାରି ପଡ଼ି, ଉଠି, ସବୁ ସ୍ଥାନରେ ବିଚରଣ କରିବାକୁ ଲାଗିଲେ । ସେ ରାବଣର ସମୁଦାୟ ଅନ୍ତଃପୁର ଏପରିଭାବରେ ଖୋଜିଲେ ଯେ, ସେଠାରେ ଚାରି ଆଙ୍ଗୁଳପରିମିତ ଜାଗା ବାକି ରହିଲା ନାହିଁ, ଯେଉଁଠାକୁ ହନୁମାନ୍ ନ ଯାଇଥିଲେ । ୧୫-୧୭ । ହନୁମାନ୍ ପ୍ରାଚୀର ମଧ୍ୟରେ ଥିବା ଗଳିରାସ୍ତା ଓ ଚୈତ୍ୟ ସନ୍ନିକଟ ସଂଲଗ୍ନ ଥିବା ବେଦୀ, ଗହ୍ୱର, ପୁଷ୍କରିଣୀ ପ୍ରଭୃତି ସବୁ ସ୍ଥାନ ଦେଖିଲେ । ୧୮ । ସେ ସବୁ ସ୍ଥାନରେ କେବଳ ବିକୃତ, ବିରୂପ, ବିବିଧାକାର ରାକ୍ଷସୀଙ୍କୁ ଦେଖିଲେ; କିନ୍ତୁ ଜନକଦୁହିତା ସୀତାଙ୍କୁ ହନୁମାନ୍ ଦେଖିବାକୁ ପାଇଲେ

ରୂପେଣାପ୍ରତିମା ଲୋକେ ପରା ବିଦ୍ୟାଧରସ୍ତ୍ରିୟଃ ।
ଦୃଷ୍ଟା ହନୁମତା ତତ୍ର ନ ତୁ ରାଘବନନ୍ଦିନୀ । ୨୦ ।
ନାଗକନ୍ୟା ବରାରୋହାଃ ପୂର୍ଣ୍ଣଚନ୍ଦ୍ରନିଭାନନାଃ ।
ଦୃଷ୍ଟା ହନୁମତା ତତ୍ର ନ ତୁ ସା ଜନକାତ୍ମଜା । ୨୧ ।
ପ୍ରମଥ୍ୟ ରାକ୍ଷସେନ୍ଦ୍ରେଣ ନାଗକନ୍ୟା ବଲାଦ୍ଧୃତାଃ ।
ଦୃଷ୍ଟା ହନୂମତା ତତ୍ର ନ ସା ଜନକନନ୍ଦିନୀ । ୨୨ ।
ସୋଽପଶ୍ୟଂସ୍ତାଂ ମହାବାହୁଃ ପଶ୍ୟଂଶ୍ଚାନ୍ୟା ବରସ୍ତ୍ରିୟଃ ।
ବିଷସାଦ ମହାବାହୁର୍ହନୂମାନ୍ମାରୁତାତ୍ମଜଃ । ୨୩ ।
ଉଦ୍ୟୋଗଂ ବାନରେନ୍ଦ୍ରାଣାଂ ପ୍ଲବନଂ ସାଗରସ୍ୟ ଚ ।
ବ୍ୟର୍ଥଂ ବୀକ୍ଷ୍ୟାନିଲସୁତଶ୍ଚିନ୍ତାଂ ପୁନରୁପାଗତଃ । ୨୪ ।
ଅବତୀର୍ଯ୍ୟ ବିମାନାଚ୍ଚ ହନୂମାନ୍ମାରୁତାତ୍ମଜଃ ।
ଚିନ୍ତାମୁପଜଗାମାଥ ଶୋକୋପହତଚେତନଃ । ୨୫ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ
ସଂହିତାୟାଂ ସୁନ୍ଦରକାଣ୍ଡେ ହନୂମଦ୍‌ବିଷାଦୋ
ନାମ ଦ୍ୱାଦଶଃ ସର୍ଗଃ

---

ନାହିଁ । ୧୯ । ହନୂମାନ୍ ସେଠାରେ ଜଗତରେ ଅପ୍ରତିମରୂପସଂପନ୍ନା ପ୍ରଧାନ ବିଦ୍ୟାଧରୀମାନଙ୍କୁ ଦେଖିଲେ; କିନ୍ତୁ ରାମଙ୍କର ପ୍ରିୟତମାଙ୍କୁ ଦେଖିବାକୁ ପାଇଲେ ନାହିଁ । ୨୦ । ପୂର୍ଣ୍ଣଚନ୍ଦ୍ରବଦନା ସୁଶ୍ରୋଣୀ ନାଗକନ୍ୟାମାନଙ୍କୁ ହନୂମାନ୍ ସେଠାରେ ଦେଖିଲେ; କିନ୍ତୁ ସୁମଧ୍ୟମା ସୀତାଙ୍କୁ ଦେଖିଲେ ନାହିଁ । ୨୧ । ରାକ୍ଷସରାଜ ରାବଣ ବଳପ୍ରୟୋଗପୂର୍ବକ ହରଣ କରି ଯେଉଁ ଆସିଥିବା ନାଗକନ୍ୟାଙ୍କୁ ହନୂମାନ୍ ସେଠାରେ ଦେଖିଲେ; କିନ୍ତୁ ଜନକନନ୍ଦିନୀଙ୍କୁ ଦେଖିପାରିଲେ ନାହିଁ । ୨୨ । ମହାବାହୁ ପବନ ନନ୍ଦନ ହନୁମାନ୍ ଅନ୍ୟ ଉତ୍ତମ ରମଣୀମାନଙ୍କୁ ଦେଖି ଏବଂ ସୀତାଙ୍କୁ ନ ଦେଖି ଅତିଶୟ ବିଷଣ୍ଣ ହୋଇପଡ଼ିଲେ । ୨୩ । ବାୟୁସୁତ ପ୍ରଧାନ ପ୍ରଧାନ ବାନରମାନଙ୍କର ଉଦ୍‌ଯୋଗ ଏବଂ ସାଗର ସମୁଦ୍ରଲଙ୍ଘନ ବ୍ୟର୍ଥ ହେବାର ଦେଖି, ପୁଣି ଚିନ୍ତାନ୍ୱିତ ହୋଇପଡ଼ିଲେ । ୨୪ । ଅନନ୍ତର ପବନନନ୍ଦନ ହନୂମାନ୍ ବିମାନରୁ ଅବତରଣ କରି ଶୋକରେ ହତଜ୍ଞାନ ହୋଇ ଚିନ୍ତାନ୍ୱିତ ହୋଇ-ପଡ଼ିଲେ । ୨୫ ।

---

# ତ୍ରୟୋଦଶଃ ସର୍ଗଃ

## ହନୂମନ୍ନିର୍ବେଦଃ

ବିମାନାତ୍ତୁ ସ ସଂକ୍ରମ୍ୟ ପ୍ରାକାରଂ ହରିଯୂଥପଃ ।
ହନୂମାନ୍ୱେଗବାନାସୀଦ୍ୟଥାବିଦ୍ୟୁଦ୍ ଘନାନ୍ତରେ । ୧ ।
ସଂପରିକ୍ରମ୍ୟ ହନୂମାନ୍ରାବଣସ୍ୟ ନିବେଶନମ୍ ।
ଅଦୃଷ୍ଟ୍ୱା ଜାନକୀଂ ସୀତାମବ୍ରବୀଦ୍ ବଚନଂ କପିଃ । ୨ ।
ଭୂୟିଷ୍ଠଂ ଲୋଳିତା ଲଙ୍କା ରାମସ୍ୟ ଚରତା ପ୍ରିୟମ୍ ।
ନ ହି ପଶ୍ୟାମି ବୈଦେହୀଂ ସୀତାଂ ସର୍ବାଙ୍ଗଶୋଭନାମ୍ । ୩ ।
ପଲ୍ୱଲାନି ତଟାକାନି ସରାଂସି ସରିତସ୍ତଥା ।
ନଦ୍ୟୋଽନୂପବନାନ୍ତାଶ୍ଚ ଦୁର୍ଗାଶ୍ଚ ଧରଣୀଧରାଃ । ୪ ।
ଲୋଳିତା ବସୁଧା ସର୍ବା ନ ଚ ପଶ୍ୟାମି ଜାନକୀମ୍ ।
ଇହ ସମ୍ପାତିନା ସୀତା ରାବଣସ୍ୟ ନିବେଶନେ ।
ଆଖ୍ୟାତା ଗୃଧ୍ରରାଜେନ ନ ଚ ସା ଦୃଶ୍ୟତେ ନୁ କିମ୍ । ୫ ।
କିନ୍ତୁ ସୀତାଥ ବୈଦେହୀ ମୈଥିଳୀ ଜନକାତ୍ମଜା ।
ଉପତିଷ୍ଠେତ ବିବଶା ରାବଣେନ ହୃତା ବଳାତ୍ । ୬ ।

---

## ୧୩ଶ ସର୍ଗ

### ( ହନୁମାନଙ୍କର ହତାଶ )

ବାନରଶ୍ରେଷ୍ଠ ହନୁମାନ୍ ବିମାନରୁ ଅବତରଣ କରି ଓ ପ୍ରାଚୀର ଉପରେ ଆରୋହଣକରି, ମେଘମଧ୍ୟସ୍ଥିତ ବିଦ୍ୟୁତ୍ ପରି ଅଧିକତର ବେଗଯୁକ୍ତ ହେଲେ । ୧ । ହନୁମାନ୍ ରାବଣର ଘରସାକ ଘୁରିଆଡ଼େ ବୁଲି ଜନକନନ୍ଦିନୀ ସୀତାଙ୍କୁ ନ ଦେଖି ମନେ ମନେ କହିଲେ । ୨ । "ହାୟ ! ରାମଙ୍କର ପ୍ରିୟକାର୍ଯ୍ୟ କରିବା ଉଦ୍ଦେଶ୍ୟରେ ମୁଁ ଲଙ୍କାର ଅଧିକାଂଶ ସ୍ଥାନ ବୁଲିଲି; କିନ୍ତୁ ସେ ସର୍ବାଙ୍ଗସୁନ୍ଦରୀ ବିଦେହନନ୍ଦିନୀ ସୀତାଙ୍କୁ କୌଣସିଠାରେ ଦେଖିଲି ନାହିଁ । ୩ । ମୁଁ ସମସ୍ତ ପଲ୍ୱଳ, ତଡ଼ାଗ, ସରୋବର, ନଦୀ, ନଦୀର ଉପକୂଳଦେଶ, ବନପ୍ରାନ୍ତ ଏବଂ ଦୁର୍ଗମ ପର୍ବତ ପ୍ରଭୃତି ସମଗ୍ର ବସୁଧା ଖୋଜିଲି; କିନ୍ତୁ ଜାନକୀଙ୍କୁ ଦେଖିଲି ନାହିଁ । ଗୃଧ୍ରରାଜ ସମ୍ପାତି କହିଥିଲେ ଯେ, 'ସୀତା ଏଇଠାରେ ରାବଣ ଘରେ ଅଛି'; କିନ୍ତୁ ମୁଁ ତ ତାଙ୍କୁ ଏଠାରେ ଦେଖିନାହିଁ ? । ୪-୫ । ରାବଣ ବଳପୂର୍ବକ ହରଣ କରିବାଦ୍ୱାରା କ'ଣ ଆଉ ଜନକନନ୍ଦିନୀ ବୈଦେହୀ ସୀତା ତାଙ୍କୁ ବାଧ୍ୟହୋଇ ସେବାକରୁଛନ୍ତି; ଅଥବା ରାକ୍ଷସ

କ୍ଷିପ୍ରମୁତ୍ପତତୋ ମନ୍ୟେ ସୀତାମାଦାୟ ରାକ୍ଷସଃ ।
ବିଭ୍ୟତୋ ରାମବାଣାନାମନ୍ତରା ପତିତା ଭବେତ୍ । ୭ ।
ଅଥବା ହ୍ରିୟମାଣାୟାଃ ପଥି ସିଦ୍ଧନିଷେବିତେ ।
ମନ୍ୟେ ପତିତମାର୍ଯାୟା ହୃଦୟଂ ପ୍ରେକ୍ଷ୍ୟ ସାଗରମ୍ । ୮ ।
ରାବଣସ୍ୟୋରୁବେଗେନ ଭୁଜାଭ୍ୟାଂ ପୀଡ଼ିତେନ ଚ ।
ତୟା ମନ୍ୟେ ବିଶାଳାକ୍ଷ୍ୟା ତ୍ୟକ୍ତଂ ଜୀବିତମାର୍ଯୟା । ୯ ।
ଉପର୍ୟୁପରି ସା ନୂନଂ ସାଗରଂ କ୍ରମତସ୍ତଦା ।
ବିଚେଷ୍ଟମାନା ପତିତା ସମୁଦ୍ରେ ଜନକାତ୍ମଜା । ୧୦ ।
ଅହୋ କ୍ଷୁଦ୍ରେଣ ଚାନେନ ରକ୍ଷନ୍ତୀ ଶୀଳମାତ୍ମନଃ ।
ଅବନ୍ଧୁର୍ଭକ୍ଷିତା ସୀତା ରାବଣେନ ତପସ୍ୱିନୀ । ୧୧ ।
ଅଥବା ରାକ୍ଷସେନ୍ଦ୍ରସ୍ୟ ପତ୍ନୀଭିରସିତେକ୍ଷଣା ।
ଅଦୁଷ୍ଟା ଦୁଷ୍ଟଭାବାଭିର୍ଭକ୍ଷିତା ସା ଭବିଷ୍ୟତି । ୧୨ ।
ଅଥବା ନିହତା ମନ୍ୟେ ରାବଣସ୍ୟ ନିବେଶନେ ।
ଭୃଶଂ ଲାଲପ୍ୟତେ ବାଲା ପଞ୍ଜରସ୍ଥେବ ଶାରିକା । ୧୩ ।
ଜନକସ୍ୟ କୁଲେ ଜାତା ରାମପତ୍ନୀ ସୁମଧ୍ୟମା ।
କଥମୁତ୍ପଲପତ୍ରାକ୍ଷୀ ରାବଣସ୍ୟ ବଶଂ ବ୍ରଜେତ୍ । ୧୪ ।

---

ରାବଣ ସୀତାଙ୍କୁ ଘେନି ରାମଙ୍କର ଶରଭୟରେ ଦ୍ରୁତବେଗରେ ଉପରେ ଉଡ଼ି-ଆସିଲା ବେଳେ ବାଟରେ ସୀତା ଅବା ପଡ଼ି ଯାଇଥିବେ ! । ୬-୭ । କିମ୍ବା ସିଦ୍ଧଗଣ-ସେବିତ ଶୂନ୍ୟପଥରେ ରାବଣ ହରଣକରି ଆଣିବାବେଳେ ସମୁଦ୍ରକୁ ଦେଖି ତାଙ୍କର ଜୀବନ ବାହାରି ଯାଇଥିବ । ୮ । କିମ୍ବା ସେହି ବିଶାଳାକ୍ଷୀ ଆର୍ଯ୍ୟା ସୀତା ରାବଣର ଉରୁ ଏବଂ ଭୁଜଦ୍ୱାରା ପୀଡ଼ିତା ହୋଇ ଜୀବନ ବିସର୍ଜନ କରିଦେଇଛନ୍ତି । ୯ । କିମ୍ବା ସମୁଦ୍ର ଲଙ୍ଘନ କଲାବେଳେ ବାରମ୍ବାର ଛଟପଟ ହେଉଥିବା ଫଳରେ ଜନକନନ୍ଦିନୀ ସମୁଦ୍ରରେ ପଡ଼ିଯାଇଛନ୍ତି । ୧୦ । ଅଥବା ସୀତା ନିଜର ପାତିବ୍ରତ୍ୟ ରକ୍ଷା କରିବା ପାଇଁ ଚେଷ୍ଟା କରିବାରୁ ଏ କ୍ଷୁଦ୍ର ନୀଚମତି ରାବଣ ଅନାଥା ତପସ୍ୱିନୀ ସୀତାଙ୍କୁ ଭକ୍ଷଣ କରିଦେଇଅଛି । ୧୧ । ଅଥବା ରାକ୍ଷସରାଜର ଦୁଷ୍ଟସ୍ୱଭାବା ପତ୍ନୀମାନେ ସେ ସଚ୍ଚରିତ୍ରବା କୃଷ୍ଣଲୋଚନା ସୀତାଙ୍କୁ ଭକ୍ଷଣ କରି ଦେଇଛନ୍ତି । ୧୨ । କିମ୍ବା ରାବଣର ଘରେ କୌଣସି ଗୁପ୍ତ ସ୍ଥାନରେ ରଖାହୋଇ ସୀତା ପିଞ୍ଜରାବଦ୍ଧ ଶାରୀପରି ଅତିଶୟ ବିଳାପ କରୁଅଛନ୍ତି । ୧୩ । ନୀଳୋତ୍ପଳ ଦଳସଦୃଶ ଚକ୍ଷୁବିଶିଷ୍ଟା ସୁମଧ୍ୟମା ରାମପତ୍ନୀ ଜନକଙ୍କ ବଂଶରେ ଜନ୍ମଗ୍ରହଣ କରିଛନ୍ତି, ସୁତରାଂ ସେ ବା

ବିନଷ୍ଟା ବା ପ୍ରଣଷ୍ଟା ବା ମୃତା ବା ଜନକାତ୍ମଜା ।
ରାମସ୍ୟ ପ୍ରିୟଭାର୍ଯସ୍ୟ ନ ନିବେଦୟିତୁଂ କ୍ଷମମ୍ । ୧୫ ।
ନିବେଦ୍ୟମାନେ ଦୋଷଃ ସ୍ୟାଦ୍ଦୋଷଃ ସ୍ୟାଦନିବେଦନେ ।
କଥଂ ନୁ ଖଲୁ କର୍ତବ୍ୟଂ ବିଷମଂ ପ୍ରତିଭାତି ମେ । ୧୬ ।
ଅସ୍ମିନ୍ନେବଂଗତେ କାର୍ଯେ ପ୍ରାପ୍ତକାଲଂ କ୍ଷମଂ ଚ କିମ୍ ।
ଭବେଦିତି ମତଂ ଭୂୟୋ ହନୁମାନ୍ ପ୍ରବିଚାରୟନ୍ । ୧୭ ।
ଯଦି ସୀତାମଦୃଷ୍ଟ୍ୱାହଂ ବାନରେନ୍ଦ୍ରପୁରୀମିତଃ ।
ଗମିଷ୍ୟାମି ତତଃ କୋ ମେ ପୁରୁଷାର୍ଥୋ ଭବିଷ୍ୟତି । ୧୮ ।
ମମେଦଂ ଲଙ୍ଘନଂ ବ୍ୟର୍ଥଂ ସାଗରସ୍ୟ ଭବିଷ୍ୟତି ।
ପ୍ରବେଶଶ୍ଚୈବ ଲଙ୍କାୟା ରାକ୍ଷସାନାଂ ଚ ଦର୍ଶନମ୍ । ୧୯ ।
କିଂ ବା ବକ୍ଷ୍ୟତି ସୁଗ୍ରୀବୋ ହରୟୋ ବାପି ସଂଗତାଃ ।
କିଷ୍କିନ୍ଧାମନୁସଂପ୍ରାପ୍ତଂ ତୌ ବା ଦଶରଥାତ୍ମଜୌ । ୨୦ ।
ଗତ୍ୱା ତୁ ଯଦି କାକୁତ୍ସ୍ଥଂ ବକ୍ଷ୍ୟାମି ପରୁଷଂ ବଚଃ ।
ନ ଦୃଷ୍ଟେତି ମୟା ସୀତା ତତସ୍ତ୍ୟକ୍ଷ୍ୟତି ଜୀବିତମ୍ । ୨୧ ।

---

କାହିଁକି ରାବଣର ବଶୀଭୂତା ହୋଇଥିବେ ? । ୧୪ । ରାମ ନିଜ ଭାର୍ଯ୍ୟାପ୍ରତି ପ୍ରଣୟାସକ୍ତ; ସୁତରାଂ ଜନକନନ୍ଦିନୀ ନଷ୍ଟା କୁପଥଗାମିନୀ ବା ମୃତ ହୋଇଯାଇଛନ୍ତି, ଏକଥା ମୁଁ କଦାପି ରାମଙ୍କୁ ନିବେଦନ କରିପାରିବି ନାହିଁ । ୧୫ । ନିବେଦନ କଲେ ମଧ୍ୟ ଦୋଷ, ନିବେଦନ ନ କଲେ ମଧ୍ୟ ଦୋଷ ହେବ । ଏ ଉଭୟ ମୋତେ ବିଷମ ବୋଧହେଉଛି; ସୁତରାଂ ଏ କ୍ଷେତ୍ରରେ କର୍ତ୍ତବ୍ୟ କ'ଣ ? ।୧୬। କାର୍ଯ୍ୟର ଏହିପରି ଅବସ୍ଥା ଉପସ୍ଥିତ ହୋଇଥିବା ସ୍ଥଳରେ ବର୍ତ୍ତମାନ ସମୟୋଚିତ କର୍ତ୍ତବ୍ୟ କ'ଣ ?" ହନୁମାନ୍ ଏହିକଥା ମନେ ମନେ ବାରମ୍ବାର ଚିନ୍ତା କରିବାକୁ ଲାଗିଲେ ।୧୭। "ଯଦି ସୀତାଙ୍କୁ ନ ଦେଖି ମୁଁ ଏଠାରୁ ବାନରରାଜ ସୁଗ୍ରୀବଙ୍କ ନଗରୀକୁ ଫେରିଯାଏ, ତାହାହେଲେ ମୋର କି ପୁରୁଷାର୍ଥ ହେବ ? । ୧୮ । ମୋର ଏହି ସମୁଦ୍ର ଲଙ୍ଘନ, ଲଙ୍କାପ୍ରବେଶ ଏବଂ ରାକ୍ଷସମାନଙ୍କର ଦର୍ଶନ ଏ ସମସ୍ତ ବୃଥା ହେବ । ୧୯ । ମୁଁ କିଷ୍କିନ୍ଧାରେ ଯାଇ ପହଞ୍ଚିଲେ ସୁଗ୍ରୀବ ମୋତେ କ'ଣ କହିବେ ? ବାନରମାନେ ବା ମୋ ନିକଟକୁ ଆସି କ'ଣ କହିବେ ? ଦଶରଥନନ୍ଦନ ଦୁହେଁ ବା ମୋତେ କ'ଣ କହିବେ?।୨୦। ମୁଁ ଯାଇ ଯଦି କାକୁତ୍ସ୍ଥନନ୍ଦନ ରାମଙ୍କୁ ଏହି ନିଦାରୁଣ କଥା କହେଁ ଯେ ମୁଁ ସୀତାଙ୍କୁ ଦେଖିପାରିଲି ନାହିଁ, ତାହାହେଲେ ସେ ନିଶ୍ଚୟ ଜୀବନ ବିସର୍ଜନ

ପରୁଷଂ ଦାରୁଣଂ ତୀକ୍ଷ୍ଣଂ କ୍ରୂରମିନ୍ଦ୍ରିୟତାପନମ୍ ।
ସୀତାନିମିତ୍ତଂ ଦୁର୍ବାକ୍ୟଂ ଶ୍ରୁତ୍ୱା ସ ନ ଭବିଷ୍ୟତି ।୨୨।
ତଂ ତୁ କୃଚ୍ଛ୍ରଗତଂ ଦୃଷ୍ଟ୍ୱା ପଞ୍ଚତ୍ୱଗତମାନସମ୍ ।
ଭୃଶାନୁରକ୍ତୋ ମେଧାବୀ ନ ଭବିଷ୍ୟତି ଲକ୍ଷ୍ମଣଃ ।୨୩।
ବିନଷ୍ଟୌ ଭ୍ରାତରୌ ଶ୍ରୁତ୍ୱା ଭରତୋଽପି ମରିଷ୍ୟତି ।
ଭରତଂ ଚ ମୃତଂ ଦୃଷ୍ଟ୍ୱା ଶତ୍ରୁଘ୍ନୋ ନ ଭବିଷ୍ୟତି ।୨୪।
ପୁତ୍ରାନ୍ମୃତାନ୍ ସମୀକ୍ଷ୍ୟାଥ ନ ଭବିଷ୍ୟନ୍ତି ମାତରଃ ।
କୌସଲ୍ୟା ଚ ସୁମିତ୍ରା ଚ କୈକେୟୀ ଚ ନ ସଂଶୟଃ ।୨୫।
କୃତଜ୍ଞଃ ସତ୍ୟସନ୍ଧଶ୍ଚ ସୁଗ୍ରୀବଃ ପ୍ଲବଗାଧିପଃ ।
ରାମଂ ତଥାଗତଂ ଦୃଷ୍ଟ୍ୱା ତତସ୍ତ୍ୟକ୍ଷ୍ୟତି ଜୀବିତମ୍ ।୨୬।
ଦୁର୍ମନା ବ୍ୟଥିତା ଦୀନା ନିରାନନ୍ଦା ତପସ୍ୱିନୀ ।
ପୀଡ଼ିତା ଭର୍ତୃଶୋକେନ ରୁମା ତ୍ୟକ୍ଷତି ଜୀବିତମ୍ ।୨୭।
ବାଳିଜେନ ତୁ ଦୁଃଖେନ ପୀଡ଼ିତା ଶୋକକର୍ଶିତା ।
ପଞ୍ଚତ୍ୱମାଗତା ରାଜ୍ଞୀ ତାରାପି ନ ଭବିଷ୍ୟତି ।୨୮।

---

କରିଦେବେ ।୨୧। ନିଦାରୁଣ, ଭୟଙ୍କର, ଅସହ୍ୟ, ଉଗ୍ର, ଇନ୍ଦ୍ରିୟର ସନ୍ତାପପ୍ରଦ, ସୀତାବିଷୟକ ଅଶୁଭ ସମ୍ବାଦ ଶୁଣିଲେ ସେ କଦାପି ବଞ୍ଚି ରହିବେ ନାହିଁ ।୨୨। ତାଙ୍କୁ ଶୋକାଭିଭୂତ ହୋଇ ପ୍ରାଣତ୍ୟାଗ କରିବାର ମନସ୍ଥ କରିବାର ଦେଖିଲେ, ନିରନ୍ତର ଅନୁରକ୍ତ ମେଧାବୀ ଲକ୍ଷ୍ମଣ ମଧ୍ୟ ଆଉ ଜୀବିତ ରହିବେ ନାହିଁ ।୨୩। ଭାଇଦୁହେଁ ମାରିଯାଇଛନ୍ତି ଶୁଣିଲେ ଭରତ ମଧ୍ୟ ମରିଯିବେ । ଭରତ ମରିଯିବାର ଦେଖିଲେ ଶତ୍ରୁଘ୍ନ ମଧ୍ୟ ଆଉ ବଞ୍ଚି ରହିବେ ନାହିଁ ।୨୪। ଅନନ୍ତର ପୁତ୍ରମାନଙ୍କୁ ମୃତହେବାର ଦେଖିଲେ ରାଜମାତା କୌଶଲ୍ୟା, ସୁମିତ୍ରା ଓ କୈକେୟୀ ମଧ୍ୟ ବଞ୍ଚିବେ ନାହିଁ । ଏଥିରେ ଲେଶମାତ୍ର ସନ୍ଦେହ ନାହିଁ ।୨୫। ବାନରରାଜ ସୁଗ୍ରୀବ କୃତଜ୍ଞ ଏବଂ ସତ୍ୟପ୍ରତିଜ୍ଞ ଅଟନ୍ତି । ସେ ରାମଙ୍କର ଏପରି ଅବସ୍ଥା ଦେଖିଲେ ନିଶ୍ଚୟ ପ୍ରାଣତ୍ୟାଗ କରିବେ ।୨୬। ତାହାହେଲେ ଦୁର୍ମନା, ବ୍ୟଥିତା, ଦୁଃଖଭାବାପନ୍ନା, ନିରାନନ୍ଦା ତପସ୍ୱୀ ରୁମା ମଧ୍ୟ ଶୋକରେ ଅତିଶୟ ଅଭିଭୂତ ହୋଇ ପ୍ରାଣତ୍ୟାଗ କରିବେ ।୨୭। ଶୋକକର୍ଶିତା ରାଜ୍ଞୀ ତାରା ବାଳୀର ମୃତ୍ୟୁହେତୁ ଦୁଃଖାଭିଭୂତା ହୋଇ ରହିଛନ୍ତି; ସୁତରାଂ ସେ ମଧ୍ୟ ମରିଯିବେ, ଆଉ ରହିବେ ନାହିଁ ।୨୮।

ମାତାପିତ୍ରୋର୍ବିନାଶେନ ସୁଗ୍ରୀବବ୍ୟସନେନ ଚ ।
କୁମାରୋଽପ୍ୟଙ୍ଗଦସ୍ତସ୍ମାଦ୍ ବିଜହିଷ୍ୟତି ଜୀବିତମ୍ । ୨୯ ।
ଭର୍ତୃଜେନ ତୁ ଦୁଃଖେନ ଅଭିଭୂତା ବନୌକସଃ ।
ଶିରାଂସ୍ୟଭିହନିଷ୍ୟନ୍ତି ତଳୈର୍ମୁଷ୍ଟିଭିରେବ ଚ । ୩୦ ।
ସାନ୍ତ୍ୱନାନୁପ୍ରଦାନେନ ମାନେନ ଚ ଯଶସ୍ୱିନା ।
ଲାଳିତାଃ କପିନାଥେନ ପ୍ରାଣାଂସ୍ତ୍ୟକ୍ଷ୍ୟନ୍ତି ବାନରାଃ । ୩୧ ।
ନ ବନେଷୁ ନ ଶୈଳେଷୁ ନ ନିରୋଧେଷୁ ବା ପୁନଃ ।
କ୍ରୀଡ଼ାମନୁଭବିଷ୍ୟନ୍ତି ସମେତ୍ୟ କପିକୁଞ୍ଜରାଃ । ୩୨ ।
ସପୁତ୍ରଦାରାଃ ସାମାତ୍ୟା ଭର୍ତୃବ୍ୟସନପୀଡ଼ିତାଃ ।
ଶୈଳାଗ୍ରେଭ୍ୟଃ ପତିଷ୍ୟନ୍ତି ସମେତ୍ୟ ବିଷମେଷୁ ଚ । ୩୩ ।
ବିଷମୁଦ୍ବନ୍ଧନଂ ବାପି ପ୍ରବେଶଂ ଜ୍ୱଳନସ୍ୟ ବା ।
ଉପବାସମଥୋ ଶସ୍ତ୍ରଂ ପ୍ରଚରିଷ୍ୟନ୍ତି ବାନରାଃ । ୩୪ ।
ଘୋରମାରୋଦନଂ ମନ୍ୟେ ଗତେ ମୟି ଭବିଷ୍ୟତି ।
ଇକ୍ଷ୍ୱାକୁକୁଳନାଶଶ୍ଚ ନାଶଶ୍ଚୈବ ବନୌକସାମ୍ । ୩୫ ।

---

ମାତା ଓ ପିତାଙ୍କ ବିନାଶରେ ଏବଂ ସୁଗ୍ରୀବଙ୍କ ବିନାଶରେ ରାଜକୁମାର ଅଙ୍ଗଦ ମଧ୍ୟ ଜୀବନ ତ୍ୟାଗ କରିବେ ? । ୨୯ । ବନବାସୀ ବାନରମାନେ ମଧ୍ୟ ପ୍ରଭୁଙ୍କର ବିୟୋଗଜନିତ ଦୁଃଖରେ ଅଭିଭୂତ ହୋଇ ମସ୍ତକରେ କରାଘାତ ଓ ମୁଷ୍ଟି ଆଘାତ କରିବେ । ୩୦ । ଯଶସ୍ୱୀ ବାନରରାଜ ସୁଗ୍ରୀବଙ୍କ କର୍ତ୍ତୃକ ସାନ୍ତ୍ୱନା-ବାକ୍ୟ, ସମ୍ମାନ ଏବଂ ଦାନାଦିଦ୍ୱାରା ଲାଳିତପାଳିତ ବାନରମାନେ ତାହାହେଲେ ନିଶ୍ଚୟ ପ୍ରାଣବିସର୍ଜନ କରିବେ । ୩୧ । ବାନରଶ୍ରେଷ୍ଠମାନେ ବନ, ଶୈଳ ବା ଆବୃତ ସ୍ଥାନରେ ଆଉ ଏକତ୍ର ହୋଇ କ୍ରୀଡ଼ା ଆଦି ଉପଭୋଗ କରିବେ ନାହିଁ । । ୩୨ । ସେମାନେ ପ୍ରଭୁଙ୍କର ଶୋକରେ ସନ୍ତପ୍ତ ହୋଇ ପୁତ୍ରଗଣ ଓ ଅମାତ୍ୟମାନଙ୍କ ସହିତ ପର୍ବତଶିଖରମାନଙ୍କ ଉପରୁ ବିଷମ ସ୍ଥାନକୁ ପତିତ ହେବେ । ୩୩ । ବାନର-ମାନେ ବିଷଭକ୍ଷଣ, ଉଦ୍‌ବନ୍ଧନ, ଅଗ୍ନିପ୍ରବେଶ, ଉପବାସ କିମ୍ବା ନିଜ ଦେହରେ ଅସ୍ତ୍ରଚାଳନ କରି ପ୍ରାଣ ତ୍ୟାଗକରିବେ । ୩୪ । ମୁଁ ଦେଖୁଛି, ମୁଁ ପ୍ରତ୍ୟାଗମନ କଲେ ଘୋର କ୍ରନ୍ଦନଧ୍ୱନି ଉତ୍ଥିତ ହେବ, ଇକ୍ଷ୍ୱାକୁକୁଳର ବିନାଶ ହେବ ଏବଂ ବନବାସୀ ବାନରମାନଙ୍କର ମଧ୍ୟ ବିନାଶ ହେବ । ୩୫ । ଅତଏବ ମୁଁ କଦାପି

ସୋଽହଂ ନୈବ ଗମିଷ୍ୟାମି କିଷ୍କିନ୍ଧାଂ ନଗରୀମିତଃ ।
ନ ହି ଶକ୍ଷ୍ୟାମ୍ୟହଂ ଦ୍ରଷ୍ଟୁଂ ସୁଗ୍ରୀବଂ ମୈଥିଲୀଂ ବିନା । ୩୬ ।
ମୟ୍ୟଗଚ୍ଛତି ଚେହସ୍ଥେ ଧର୍ମାତ୍ମାନୌ ମହାରଥୌ ।
ଆଶୟା ତୌ ଧରିଷ୍ୟେତେ ବାନରାଶ୍ଚ ତରସ୍ୱିନଃ । ୩୭ ।
ହସ୍ତାଦାନୋ ମୁଖାଦାନୋ ନିୟତୋ ବୃକ୍ଷମୂଳିକଃ ।
ବାନପ୍ରସ୍ଥୋ ଭବିଷ୍ୟାମି ଅଦୃଷ୍ଟ୍ୱା ଜନକାତ୍ମଜାମ୍ । ୩୮ ।
ସାଗରାନୂପଜେ ଦେଶେ ବହୁମୂଳଫଲୋଦକେ ।
ଚିତାଂ କୃତ୍ୱା ପ୍ରବେକ୍ଷ୍ୟାମି ସମିଦ୍ଧମରଣୀସୁତମ୍ । ୩୯ ।
ଉପବିଷ୍ଟସ୍ୟ ବା ସମ୍ୟଗ୍ଲିଙ୍ଗିନଂ ସାଧୟିଷ୍ୟତଃ ।
ଶରୀରଂ ଭକ୍ଷୟିଷ୍ୟନ୍ତି ବାୟସାଃ ଶ୍ୱାପଦାନି ଚ । ୪୦ ।
ଇଦଂ ମହର୍ଷିଭିର୍ଦୃଷ୍ଟଂ ନିର୍ଯାଣମିତି ମେ ମତିଃ ।
ସମ୍ୟଗାପଃ ପ୍ରବେକ୍ଷ୍ୟାମି ନ ଚେତ୍ପଶ୍ୟାମି ଜାନକୀମ୍ । ୪୧ ।
ସୁଜାତମୂଳା ସୁଭଗା କୀର୍ତ୍ତିମାଲା ଯଶସ୍ୱିନୀ ।
ପ୍ରଭଗ୍ନା ଚିରରାତ୍ରାୟ ମମ ସୀତାମପଶ୍ୟତଃ । ୪୨ ।

---

ଏଠାରୁ କିଷ୍କିନ୍ଧାନଗରୀକୁ ଫେରିଯିବି ନାହିଁ । ମୁଁ ମୈଥିଳୀଙ୍କୁ ନ ଦେଖି ସୁଗ୍ରୀବଙ୍କ ସହିତ କଦାପି ସାକ୍ଷାତ କରିପାରିବି ନାହିଁ । ୩୬ । ମୁଁ ଯଦି ଫେରି ନ ଯାଇ ଏହିଠାରେ ରହେଁ, ତାହାହେଲେ ସେ ଦୁଇ ମହାତ୍ମା ମହାରଥୀ ରାମ, ଲକ୍ଷ୍ମଣ ଏବଂ ବେଗବାନ୍ ବାନରମାନେ ଆଶାରେ ଜୀବନ ଧରି ରହିଥିବେ । ୩୭ । ମୁଁ ସୀତାଙ୍କୁ ନ ଦେଖିଲେ ହସ୍ତ ବା ମୁଖରେ ଅକସ୍ମାତ୍ ପତିତ ଫଳାଦିମାନ ଭକ୍ଷଣକରି ସଂଯତଭାବରେ ବୃକ୍ଷମୂଳରେ ବସି ବାନପ୍ରସ୍ଥ ଧର୍ମ ଅବଲମ୍ବନ କରିବି । ୩୮ । ଅଥବା ମୁଁ ବହୁ ଫଳମୂଳ ଏବଂ ଜଳପୂର୍ଣ୍ଣ ସମୁଦ୍ର ଉପକୂଳରେ ଚିତା ପ୍ରସ୍ତୁତ କରି ଅରଣୀକାଷ୍ଠ ସମୁତ୍ପନ୍ନ ପ୍ରଜ୍ୱଳିତ ଅଗ୍ନିରେ ପ୍ରବେଶ କରିବି । ୩୯ । କିମ୍ବା ମୁଁ ବସିରହି ସମ୍ୟଗ୍ ଭାବରେ ବାନପ୍ରସ୍ଥବ୍ରତ ଆଚରଣ କରୁଥିବା ଅବସ୍ଥାରେ ଶ୍ୱାପଦ ଓ ବାୟସମାନେ ମୋର ଶରୀର ଭକ୍ଷଣ କରିବେ । ୪୦ । ମୋର ମନେହୁଏ, ଋଷିମାନେ ମୁକ୍ତିର ଏହି ପଥ ମଧ୍ୟ ଦେଖାଇଯାଇଛନ୍ତି । ଯଦି ମୁଁ ସୀତାଙ୍କୁ ନ ଦେଖେଁ ତାହାହେଲେ ନିଶ୍ଚୟ ସଲିଳମଧ୍ୟରେ ପ୍ରବେଶ କରିବି । ୪୧ । ଉତ୍କୃଷ୍ଟ କାର୍ଯ୍ୟକରି ମୁଁ ଯେ କୀର୍ତ୍ତି ଉପାର୍ଜନ କରିଥିଲି, ବର୍ତ୍ତମାନ ସୀତାଙ୍କୁ ନ ଦେଖିବାଦ୍ୱାରା ସେହି ସମସ୍ତ ବିଖ୍ୟାତ କୀର୍ତ୍ତି ଚିରକାଳପାଇଁ ଲୋପ ହୋଇଯାଇଅଛି । ୪୨ । ସେହି କୃଷ୍ଣନୟନା ସୀତାଙ୍କୁ

ତାପସୋ ବା ଭବିଷ୍ୟାମି ନିୟତୋ ବୃକ୍ଷମୂଳକଃ ।
ନେତଃ ପ୍ରତିଗମିଷ୍ୟାମି ତାମଦୃଷ୍ଟ୍ୱାଽସିତେକ୍ଷଣାମ୍ । ୪୩ ।
ଯଦି ତୁ ପ୍ରତିଗଚ୍ଛାମି ସୀତାମନଧିଗମ୍ୟ ତାମ୍ ।
ଅଙ୍ଗଦଃ ସହିତଃ ସର୍ବୈର୍ବାନରୈର୍ନ ଭବିଷ୍ୟତି । ୪୪ ।
ବିନାଶେ ବହବୋ ଦୋଷା ଜୀବନ୍ ପ୍ରାପ୍ନୋତି ଭଦ୍ରକମ୍ ।
ତସ୍ମାତ୍ ପ୍ରାଣାନ୍ଧରିଷ୍ୟାମି ଧ୍ରୁବୋ ଜୀବତି ସଂଗମଃ । ୪୫ ।
ଏବଂ ବହୁବିଧଂ ଦୁଃଖଂ ମନସା ଧାରୟନ୍ ମୁହୁଃ ।
ନାଧ୍ୟଗଚ୍ଛତ୍ତଦା ପାରଂ ଶୋକସ୍ୟ କପିକୁଞ୍ଜରଃ । ୪୬ ।
ତତୋ ବିକ୍ରମମାସାଦ୍ୟ ଧୈର୍ଯ୍ୟବାନ୍କପିକୁଞ୍ଜରଃ ।
ରାବଣଂ ବା ବଧିଷ୍ୟାମି ଦଶଗ୍ରୀବଂ ମହାବଳମ୍ ।
କାମମସ୍ତୁ ହୃତା ସୀତା ପ୍ରତ୍ୟାଚୀର୍ଣଂ ଭବିଷ୍ୟତି । ୪୭ ।
ଅଥବୈନଂ ସମୁତ୍କ୍ଷିପ୍ୟ ଉପର୍ୟୁପରି ସାଗରମ୍ ।
ରାମାୟୋପହରିଷ୍ୟାମି ପଶୁଂ ପଶୁପତେରିବ । ୪୮ ।
ଇତି ଚିନ୍ତାସମାପନ୍ନଃ ସୀତାମନଧିଗମ୍ୟ ତାମ୍ ।
ଧ୍ୟାନଶୋକପରୀତାତ୍ମା ଚିନ୍ତୟାମାସ ବାନରଃ । ୪୯ ।

---

ନ ଦେଖିଲେ ମୁଁ ନିୟମଧାରୀ ତପସ୍ୱୀ ହୋଇ ଗଛମୂଳରେ ବାସକରିବି ପଛକେ, ଏଠାରୁ କଦାପି ଫେରିଯିବି ନାହିଁ । ୪୩। ସୀତାଙ୍କୁ ନ ପାଇ ମୁଁ ଯଦି ଏଠାରୁ ଫେରି-ଯାଏଁ, ତାହାହେଲେ ଅଙ୍ଗଦ ସେହି ସମସ୍ତ ବାନରଙ୍କ ସହିତ ଆଉ ବଞ୍ଚି ରହିବେ ନାହିଁ । ୪୪ । ଅଥବା ମରିଗଲେ ନାନା ଦୋଷ ଅଛି, କିନ୍ତୁ ଜୀବିତ ଥିଲେ ଅନେକ ଶୁଭ କାର୍ଯ୍ୟ କରିହେବ; ସୁତରାଂ ମୁଁ ପ୍ରାଣ ରଖିବି । ଜୀବିତ ରହିଥିଲେ ସୁଖସଂଯୋଗ ଅବଶ୍ୟ ହେବ" ।୪୫। କପିଶ୍ରେଷ୍ଠ ହନୂମାନ୍ ମନେ ମନେ ବାରମ୍ବାର ଏହିପରି ନାନା ଦୁଃଖ-ଚିନ୍ତା କରି ସେତେବେଳେ ଶୋକର ଅନ୍ତ ପାଇଲେ ନାହିଁ । । ୪୬ । ଅନନ୍ତର ଧୈର୍ଯ୍ୟଶାଳୀ କପିଶ୍ରେଷ୍ଠ ହନୁମାନ୍ ବିକ୍ରମ ଅବଲମ୍ବନପୂର୍ବକ ଚିନ୍ତାକଲେ, "ନ ହେଲେ, ମୁଁ ଦଶଗ୍ରୀବ ରାବଣକୁ ହିଁ ସଂହାର କରିବି; ତେବେ ଯାଇ ସୀତାଙ୍କ ଅପହରଣର ଯଥେଷ୍ଟ ପ୍ରତିଶୋଧ ହେବ । ୪୭ । ଅଥବା ମୁଁ ଏହି ରାବଣକୁ ସମୁଦ୍ରରେ ବାରମ୍ବାର ନିକ୍ଷେପ କରି ପଶୁପତି ଶିବଙ୍କ ନିକଟରେ 'ପଶୁ' ସଦୃଶ ରାମଙ୍କୁ ଉପହାର ଦେବି" ।୪୮। ସୀତାଙ୍କୁ ନ ପାଇ ଏହିପରି ଚିନ୍ତାକୁଳ ହୋଇ ହନୁମାନ୍ ଶୋକମଗ୍ନଚିତ୍ତରେ ଚିନ୍ତା କରିବାକୁ ଲାଗିଲେ ।୪୯। "ଯେପର୍ଯ୍ୟନ୍ତ ମୁଁ

ଯାବତ୍ସୀତାଂ ନ ପଶ୍ୟାମି ରାମପତ୍ନୀଂ ଯଶସ୍ୱିନୀମ୍ ।
ତାବଦେତାଂ ପୁରୀଂ ଲଙ୍କାଂ ବିଚିନୋମି ପୁନଃ ପୁନଃ । ୫୦ ।
ସଂପାତିବଚନାଚ୍ଚାପି ରାମଂ ଯଦ୍ୟାନୟାମ୍ୟହମ୍ ।
ଅପଶ୍ୟନ୍ରାଘବୋ ଭାର୍ଯାଂ ନିର୍ଦହେତ୍ସର୍ବବାନରାନ୍ । ୫୧ ।
ଇହୈବ ନିୟତାହାରୋ ବତ୍ସ୍ୟାମି ନିୟତେନ୍ଦ୍ରିୟଃ ।
ନ ମତ୍କୃତେ ବିନଶ୍ୟେୟୁଃ ସର୍ବେ ତେ ନରବାନରାଃ । ୫୨ ।
ଅଶୋକବନିକା ଚେୟଂ ଦୃଶ୍ୟତେ ଯା ମହାଦ୍ରୁମା ।
ଇମାମଧିଗମିଷ୍ୟାମି ନ ହୀୟଂ ବିଚିତା ମୟା । ୫୩ ।
ବସୂନ୍ ରୁଦ୍ରାଂସ୍ତଥାଦିତ୍ୟାନଶ୍ୱିନୌ ମରୁତୋଽପି ଚ ।
ନମସ୍କୃତ୍ୱା ଗମିଷ୍ୟାମି ରକ୍ଷସାଂ ଶୋକବର୍ଧନଃ । ୫୪ ।
ଜିତ୍ୱା ତୁ ରାକ୍ଷସାନ୍ ଦେବୀମିକ୍ଷ୍ୱାକୁକୁଲନନ୍ଦିନୀମ୍ ।
ସଂପ୍ରଦାସ୍ୟାମି ରାମାୟ ସିଦ୍ଧିମିବ ତପସ୍ୱିନେ । ୫୫ ।
ସ ମୁହୂର୍ତ୍ତମିବ ଧ୍ୟାତ୍ୱା ଚିନ୍ତାବଗ୍ରଥିତେନ୍ଦ୍ରିୟଃ ।
ଉଦତିଷ୍ଠନ୍ ମହାବାହୁର୍ହନୁମାନ୍ମାରୁତାତ୍ମଜଃ । ୫୬ ।

---

ତପସ୍ୱିନୀ ରାମପ୍ରିୟା ସୀତାଙ୍କୁ ନ ଦେଖିଛି, ସେ ପର୍ଯ୍ୟନ୍ତ ଏହି ଲଙ୍କାପୁରୀକୁ ବାରମ୍ବାର ଅନ୍ୱେଷଣ କରିବି । ୫୦ । ସମ୍ପାତିଙ୍କ କଥାନୁସାରେ ହିଁ ଯଦି ମୁଁ ରାମଙ୍କୁ ଏଠାକୁ ଘେନିଆସେ, ତେବେ ସେ ଏଠାରେ ତାଙ୍କ ଭାର୍ଯ୍ୟାଙ୍କୁ ନ ଦେଖି ସବୁ ବାନରଙ୍କୁ ଦଗ୍ଧ କରିଦେବେ । ୫୧ । ସୁତରାଂ ମୁଁ ନିୟତାହାର ଓ ସଂଯତେନ୍ଦ୍ରିୟ ହୋଇ ଏହିଠାରେହିଁ ବାସକରିବି, ଯେପରିକି ମୋ ଲାଗି ନର ବାନରମାନେ ସମସ୍ତେ ନଷ୍ଟ ନ ହୁଅନ୍ତି । ୫୨ । ଏହି ଯେଉଁ ବିଶାଳ ବୃକ୍ଷରାଜିସମନ୍ୱିତ ବୃହତ୍ ଅଶୋକବନ ଦେଖାଯାଉଛି, ତାକୁ ତ ମୁଁ ଅନ୍ୱେଷଣ କରି ନାହିଁ, ଅତଏବ ସେ ବନକୁ ମୁଁ ଯିବି । ୫୩ । ବସୁଗଣ, ରୁଦ୍ରଗଣ, ଆଦିତ୍ୟଗଣ, ଅଶ୍ୱିନୀକୁମାରଦ୍ୱୟ ଏବଂ ମରୁଦ୍-ଗଣଙ୍କୁ ନମସ୍କାର କରି ରାକ୍ଷସମାନଙ୍କର ଶୋକବର୍ଦ୍ଧକ ହୋଇ ମୁଁ ଏହି ବନକୁ ଯିବି । ୫୪ । ମୁଁ ରାକ୍ଷସମାନଙ୍କୁ ଜୟକରି ତପସ୍ୱୀଙ୍କୁ ସିଦ୍ଧି ପ୍ରଦାନ କଲାପରି ଇକ୍ଷ୍ୱାକୁକୁଳର ଆନନ୍ଦଦାୟିନୀ ସୀତାଦେବୀଙ୍କୁ ନେଇ ରାମଙ୍କୁ ସମର୍ପଣ କରିବି” । ୫୫ । ଚିନ୍ତାବ୍ୟାକୁଳଚିତ୍ତେନ୍ଦ୍ରିୟ ମହାବାହୁ ପବନନନ୍ଦନ ହନୁମାନ୍ ମୁହୂର୍ତ୍ତେ କାଳ ଏହିପରି ଭାବନା କରି ଶେଷରେ ଉଠିଲେ । ୫୬ । “ରାମ ଓ ଲକ୍ଷ୍ମଣଙ୍କୁ

ନମୋଽସ୍ତୁ ରାମାୟ ସଲକ୍ଷ୍ମଣାୟ
ଦେବ୍ୟୈ ଚ ତସ୍ୟୈ ଜନକାତ୍ମଜାୟୈ ।
ନମୋଽସ୍ତୁ ରୁଦ୍ରେନ୍ଦ୍ରଯମାନିଲେଭ୍ୟୋ
ନମୋଽସ୍ତୁ ଚନ୍ଦ୍ରାଗ୍ନିମରୁଦ୍ଗଣେଭ୍ୟଃ । ୫୭ ।
ସ ତେଭ୍ୟସ୍ତୁ ନମସ୍କୃତ୍ୱା ସୁଗ୍ରୀବାୟ ଚ ମାରୁତିଃ ।
ଦିଶଃ ସର୍ବାଃ ସମାଲୋକ୍ୟ ସୋଽଶୋକବନିକାଂ ପ୍ରତି । ୫୮ ।
ସ ଗତ୍ୱା ମନସା ପୂର୍ବମଶୋକବନିକାଂ ଶୁଭାମ୍ ।
ଉତ୍ତରଂ ଚିନ୍ତୟାମାସ ବାନରୋ ମାରୁତାତ୍ମଜଃ । ୫୯ ।
ଧ୍ରୁବଂ ତୁ ରକ୍ଷୋବହୁଳା ଭବିଷ୍ୟତି ବନାକୁଳା ।
ଅଶୋକବନିକା ପୁଣ୍ୟା ସର୍ବସଂସ୍କାରସଂସ୍କୃତା । ୬୦ ।
ରକ୍ଷିଣଶ୍ଚାତ୍ର ବିହିତା ନୂନଂ ରକ୍ଷନ୍ତି ପାଦପାନ୍ ।
ଭଗବାନପି ବିଶ୍ୱାତ୍ମା ନାତିକ୍ଷୋଭଂ ପ୍ରବାତି ବୈ । ୬୧ ।
ସଂକ୍ଷିପ୍ତୋଽୟଂ ମୟାତ୍ମା ଚ ରାମାର୍ଥେ ରାବଣସ୍ୟ ଚ ।
ସିଦ୍ଧିଂ ଦିଶନ୍ତୁ ମେ ସର୍ବେ ଦେବାଃ ସର୍ଷିଗଣାସ୍ତ୍ୱିହ । ୬୨ ।
ବ୍ରହ୍ମା ସ୍ୱୟଂଭୂର୍ଭଗବାନ୍ ଦେବାଶ୍ଚୈବ ତପସ୍ୱିନଃ ।
ସିଦ୍ଧିମଗ୍ନିଶ୍ଚ ବାୟୁଶ୍ଚ ପୁରୁହୂତଶ୍ଚ ବଜ୍ରଭୃତ୍ । ୬୩ ।

---

ନମସ୍କାର, ସେହି ଦେବୀ ଜନକନନ୍ଦିନୀଙ୍କୁ ନମସ୍କାର, ରୁଦ୍ର, ଇନ୍ଦ୍ର, ଯମ ଓ ପବନଙ୍କୁ ନମସ୍କାର, ଚନ୍ଦ୍ର, ଅଗ୍ନି ଓ ମରୁଦ୍‌ଗଣଙ୍କୁ ନମସ୍କାର” । ୫୭। ହନୁମାନ୍ ସେ ସମସ୍ତଙ୍କୁ ଓ ସୁଗ୍ରୀବଙ୍କୁ ନମସ୍କାର କରି, ସମସ୍ତ ଦିଗକୁ ବିଶେଷଭାବରେ ପର୍ଯ୍ୟବେକ୍ଷଣ କରି ଅଶୋକବନ ଆଡ଼କୁ ଗଲେ । ୫୮ । ପବନନନ୍ଦନ ହନୁମାନ ପ୍ରଥମେ ମନେ ମନେ ରମଣୀୟ ଅଶୋକବନକୁ ଯାଇ ତଦନନ୍ତର କ’ଣ କରିବାକୁ ହେବ, ତାହା ଚିନ୍ତା କରିବାକୁ ଲାଗିଲେ ।୫୯। “ବିବିଧବନ-ସଙ୍କୁଳ,ଜଳସେଚନାଦି ବ୍ୟବସ୍ଥା ଉଦ୍ଦେଶ୍ୟରେ ନାନା କୃତ୍ରିମ ଜଳପ୍ରଣାଳୀ ଦ୍ୱାରା ସଂସ୍କୃତ ଏହି ପୁଣ୍ୟ ଅଶୋକବନରେ ନିଶ୍ଚୟ ବହୁସଂଖ୍ୟକ ରାକ୍ଷସ ଥିବେ । ୬୦ । ଏଠାରେ ନିଶ୍ଚୟ ଅନେକ ରକ୍ଷକ ନିଯୁକ୍ତ ହୋଇ ବୃକ୍ଷମାନଙ୍କୁ ଜଗିଥିବେ, ଭଗବାନ୍ ସର୍ବାତ୍ମା ବାୟୁ ମଧ୍ୟ ସେଠାରେ ପ୍ରବଳ ବେଗରେ ବହୁ ନ ଥିବେ । ୬୧ । ଅତଏବ ରାମଙ୍କ କାର୍ଯ୍ୟସାଧନନିମନ୍ତେ ରାବଣ ଯେପରି ନ ଦେଖି ପାରିବ, ସେଥିପାଇଁ ମୁଁ ମୋର ଶରୀରକୁ ସଙ୍କୁଚିତ କଲି । ଋଷିଗଣ ଓ ଦେବଗଣ ଏହି କାର୍ଯ୍ୟରେ ମୋତେ ସିଦ୍ଧି ପ୍ରଦାନ କରନ୍ତୁ । ୬୨ । ଭଗବାନ୍ ସ୍ୱୟଂଭୂ ବ୍ରହ୍ମା, ଦେବଗଣ, ତପସ୍ୱିଗଣ, ଅଗ୍ନି, ବାୟୁ, ବଜ୍ରଧାରୀ ଇନ୍ଦ୍ର,

ବରୁଣଃ ପାଶହସ୍ତଶ୍ଚ ସୋମାଦିତ୍ୟୌ ତଥୈବ ଚ ।
ଅଶ୍ୱିନୌ ଚ ମହାତ୍ମାନୌ ମରୁତଃ ଶର୍ବ ଏବ ଚ । ୭୪ ।
ସିଦ୍ଧିଂ ସର୍ବାଣି ଭୂତାନି ଭୂତାନାଂ ଚୈବ ଯଃ ପ୍ରଭୁଃ ।
ଦାସ୍ୟନ୍ତି ମମ ଯେ ଚାନ୍ୟେଽପ୍ୟଦୃଷ୍ଟାଃ ପଥି ଗୋଚରାଃ ।୭୫ ।

ତଦୁନ୍ନସଂ ପାଣ୍ଡୁରଦନ୍ତମବ୍ରଣମ୍
ଶୁଚିସ୍ମିତଂ ପଦ୍ମପଲାଶଲୋଚନମ୍ ।
ଦ୍ରକ୍ଷ୍ୟେ ତଦାର୍ଯାବଦନଂ କଦା ନ୍ୱହମ୍
ପ୍ରସନ୍ନତାରାଧିପତୁଲ୍ୟଦର୍ଶନମ୍ । ୭୬ ।
କ୍ଷୁଦ୍ରେଣ ହୀନେନ ନୃଶଂସମୂର୍ତ୍ତିନା
ସୁଦାରୁଣାଲଂକୃତବେଷଧାରିଣା ।
ବଲାଭିଭୂତା ହ୍ୟବଲା ତପସ୍ୱିନୀ
କଥଂ ନୁ ମେ ଦୃଷ୍ଟିପଥେଽଦ୍ୟ ସା ଭବେତ୍ । ୭୭ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ସୁନ୍ଦରକାଣ୍ଡେ ହନୁମନ୍ନିର୍ବେଦୋ ନାମ ସପ୍ତଦଶଃ ସର୍ଗଃ ।

---

ପାଶହସ୍ତ ବରୁଣ, ଚନ୍ଦ୍ର, ସୂର୍ଯ୍ୟ, ମହାତ୍ମା ଅଶ୍ୱିନୀକୁମାରଯୁଗଳ, ସମୁଦାୟ ମରୁଦ୍‌ଗଣ, ସକଳ ଭୂତଗଣ ତଥା ଭୂତପତି ଏବଂ ଅନ୍ୟ ଯେଉଁମାନେ ଅଦୃଶ୍ୟଭାବରେ ରହି ପଥରେ ବିଚରଣ କରୁଛନ୍ତି, ସେମାନେ ସମସ୍ତେ ମୋତେ ସିଦ୍ଧି ପ୍ରଦାନ କରନ୍ତୁ । । ୭୩-୭୫ । ଆହା, ମୁଁ କେବେ ଆର୍ଯ୍ୟା ସୀତାଙ୍କର ଉନ୍ନତ ନାସାବିଶିଷ୍ଟ, ଶୁକ୍ଳ ଦନ୍ତପଂକ୍ତିଶୋଭିତ, ଅକ୍ଷତ, ପବିତ୍ର ହାସ୍ୟସମନ୍ୱିତ, ପଦ୍ମପଲାଶନୟନବିଶିଷ୍ଟ, ଚନ୍ଦ୍ରସଦୃଶ ପ୍ରୀତିଶାଳୀ, ପ୍ରସନ୍ନ ବଦନ ଦର୍ଶନ କରିବି ? । ୭୬ । ନୀଚ, ପାପୀ, ନିଷ୍ଠୁରକର୍ମୀ ରାବଣ ସୁଦାରୁଣ ଛଦ୍ମବେଶ ଧାରଣ କରି ବଳପ୍ରୟୋଗପୂର୍ବକ ତପସ୍ୱିନୀ ଅବଳା ସୀତାଙ୍କୁ ଅଭିଭୂତ କରି ଅଛି । ଆହା ! ଏବେ କ'ଣ କଲେ ସେ ମୋ ଦୃଷ୍ଟିପଥରେ ପଡ଼ିବେ ? । ୭୭।

# ଚତୁର୍ଦ୍ଦଶଃ ସର୍ଗଃ

## ଅଶୋକବନିକାବିଚୟଃ

ସ ମୁହୂର୍ତ୍ତମିବ ଧ୍ୟାତ୍ୱା ମନସାଚାଧିଗମ୍ୟ ତାମ୍ ।
ଅବପ୍ଳୁତୋ ମହାତେଜାଃ ପ୍ରାକାରଂ ତସ୍ୟ ବେଶ୍ମନଃ । ୧ ।
ସ ତୁ ସଂହୃଷ୍ଟସର୍ବାଙ୍ଗଃ ପ୍ରାକାରସ୍ଥୋ ମହାକପିଃ ।
ପୁଷ୍ପିତାଗ୍ରାନ୍ ବସନ୍ତାଦୌ ଦଦର୍ଶ ବିବିଧାନ୍ ଦ୍ରୁମାନ୍ । ୨ ।
ସାଲାନଶୋକାନ୍ ଭବ୍ୟାଂଶ୍ଚ ଚମ୍ପକାଂଶ୍ଚ ସୁପୁଷ୍ପିତାନ୍ ।
ଉଦ୍ଦାଲକାନ୍ନାଗବୃକ୍ଷାଂଶ୍ଚୂତାନ୍କପିମୁଖାନପି ।୩।
ଅଥାମ୍ରବଣସଂଛନ୍ନାଂ ଲତାଶତସମନ୍ୱିତାମ୍ ।
ଜ୍ୟାମୁକ୍ତ ଇବ ନାରାଚଃ ପୁପ୍ଳୁବେ ବୃକ୍ଷବାଟିକାମ୍ । ୪ ।
ସ ପ୍ରବିଶ୍ୟ ବିଚିତ୍ରାଂ ତାଂ ବିହଗୈରଭିନାଦିତାମ୍ ।
ରାଜତୈଃ କାଞ୍ଚନୈଶ୍ଚୈବ ପାଦପୈଃ ସର୍ବତୋ ବୃତାମ୍ ।୫।
ବିହଗୈର୍ମୃଗସଙ୍ଘୈଶ୍ଚ ବିଚିତ୍ରାଂ ଚିତ୍ରକାନନାମ୍ ।
ଉଦିତାଦିତ୍ୟସଂକାଶାଂ ଦଦର୍ଶ ହନୁମାନ୍ ବଲୀ । ୬ ।

---

## ୧୪ଶ ସର୍ଗ

( ଅଶୋକବନରେ ଅନ୍ୱେଷଣ )

ମହାତେଜା ହନୁମାନ୍ ମୁହୂର୍ତ୍ତେକାଳ ଏହିପରି ଚିନ୍ତା କରି ଏବଂ ମନ ମଧ୍ୟରେ ସୀତାଙ୍କୁ ଧ୍ୟାନ କରି ସେହି ଗୃହର ପ୍ରାଚୀର ଉପରକୁ ଡେଇଁଲେ । ୧ । ମହାକପି ହନୁମାନ୍ ପ୍ରାଚୀର ଉପରେ ବସି ବସନ୍ତ ଋତୁର ପ୍ରଥମ ସମୟରେ ପୁଷ୍ପସମନ୍ୱିତ ନାନାଜାତୀୟ ବୃକ୍ଷ ଦେଖିଲେ ଏବଂ ଆନନ୍ଦରେ ତାଙ୍କର ସର୍ବାଙ୍ଗ ପୁଲକିତ ହେଲା ।୨। ସେ ସେଠାରେ ପୁଷ୍ପିତ ଶାଳ, ଅଶୋକ, ଭବ୍ୟ, ଚମ୍ପକ, ଉଦ୍ଧାଳକ (ଓଜ), ନାଗେଶ୍ୱର, କପିମୁଖାକୃତି ଫଳବିଶିଷ୍ଟ ଚୂତବୃକ୍ଷଗୁଡ଼ିକୁ ଦେଖିଲେ । ୩ । ଅନନ୍ତର ସେ ଧନୁର୍ଗୁଣମୁକ୍ତ ଶରସଦୃଶ କ୍ଷିପ୍ରଗତିରେ ଆମ୍ରବନପରିପୂର୍ଣ୍ଣ ଓ ଶତ ଶତ ଲତାପୂର୍ଣ୍ଣ ଉପବନକୁ ଡେଇଁଲେ । ୪ । ବଳବାନ୍ ହନୁମାନ୍ ସେଠାରେ ପ୍ରବେଶ କରି ଦେଖିଲେ, ଏହି ବାଟିକା ଅତି ବିଚିତ୍ର, ନାନାଜାତୀୟ ପକ୍ଷୀ ଚତୁର୍ଦ୍ଦିଗରେ ରବ କରୁଛନ୍ତି, ରୌପ୍ୟ ଓ ସୁବର୍ଣ୍ଣ ବର୍ଣ୍ଣର ବୃକ୍ଷସକଳ ଏହାକୁ ସର୍ବତ୍ର ଆବୃତ କରି ରହିଛନ୍ତି, ନାନାପ୍ରକାର ମୃଗ ଓ ପକ୍ଷୀମାନଙ୍କ ଦ୍ୱାରା ଏହାର କାନନ ବିଚିତ୍ର ଶୋଭା ଧାରଣକରି ଉଦୀୟମାନ ସୂର୍ଯ୍ୟଙ୍କ ପରି ସୁନ୍ଦର ଦେଖାଯାଉଛି । ୫-୬ । ଏହା ନାନାବିଧ ପୁଷ୍ପ-

ବୃତାଂ ନାନାବିଧୈର୍ବୃକ୍ଷୈଃ ପୁଷ୍ପୋପଗଫଲୋପଗୈଃ ।
କୋକିଲୈର୍ଭୃଙ୍ଗରାଜୈଶ୍ଚ ମତ୍ତୈର୍ନିତ୍ୟଂ ନିଷେବିତାମ୍ । ୭ ।
ପ୍ରହୃଷ୍ଟମନୁଜାଂ କାଲେ ମୃଗପକ୍ଷିମଦାକୁଲାମ୍ ।
ମତ୍ତବର୍ହିଣସଂଘୁଷ୍ଟାଂ ନାନାଦ୍ୱିଜଗଣାଯୁତାମ୍ । ୮ ।
ମାର୍ଗମାଣୋ ବରାରୋହାଂ ରାଜପୁତ୍ରୀମନିନ୍ଦିତାମ୍ ।
ସୁଖପ୍ରସୁପ୍ତାନ୍ ବିହଗାନ୍ବୋଧୟାମାସ ବାନରଃ । ୯ ।
ଉତ୍ପତଦ୍‌ଭିର୍ଦ୍ୱିଜଗଣୈଃ ପକ୍ଷୈର୍ବାତୈଃ ସମାହତାଃ ।
ଅନେକ ବର୍ଣା ବିବିଧା ମୁମୁଚୁଃ ପୁଷ୍ପବୃଷ୍ଟୟଃ । ୧୦ ।
ପୁଷ୍ପାବକୀର୍ଣଃ ଶୁଶୁଭେ ହନୂମାନ୍ମାରୁତାତ୍ମଜଃ ।
ଅଶୋକବନିକାମଧ୍ୟେ ଯଥା ପୁଷ୍ପମୟୋ ଗିରିଃ । ୧୧ ।
ଦିଶଃ ସର୍ବାଭିଧାବନ୍ତଂ ବୃକ୍ଷଷଣ୍ଡଗତଂ କପିମ୍ ।
ଦୃଷ୍ଟ୍ୱା ସର୍ବାଣି ଭୂତାନି ବସନ୍ତ ଇତି ମେନିରେ । ୧୨ ।
ବୃକ୍ଷେଭ୍ୟଃ ପତିତୈଃ ପୁଷ୍ପୈରବକୀର୍ଣାଃ ପୃଥଗ୍ୱିଧୈଃ ।
ରରାଜ ବସୁଧା ତତ୍ର ପ୍ରମଦେବ ବିଭୂଷିତା । ୧୩ ।
ତରସ୍ୱିନା ତେ ତରବସ୍ତରସା ବହୁକମ୍ପିତାଃ ।
କୁସୁମାନି ବିଚିତ୍ରାଣି ସସୃଜୁଃ କପିନା ତଦା । ୧୪ ।

---

ଫଳସମନ୍ୱିତ ବୃକ୍ଷରେ ଆବୃତ ହୋଇ ରହିଛି ଏବଂ ମତ୍ତ କୋକିଳ ଓ ଭୃଙ୍ଗମାନେ ସତତ ଏଠାରେ ବାସ କରୁଛନ୍ତି । ୭ । ସେଠାରେ ମନୁଷ୍ୟମାନେ ସର୍ବଦା ହୃଷ୍ଟଚିତ୍ତ ହୋଇ ରହିଛନ୍ତି ଏବଂ ମୃଗ ଓ ପକ୍ଷୀମାନେ ମଦମତ୍ତ ହୋଇ କୋଳାହଳ କରୁଛନ୍ତି, ମୟୂରମାନେ ଉନ୍ମତ୍ତ ହୋଇ କେକାରବ କରୁଛନ୍ତି ଏବଂ ନାନା ଜାତିର ପକ୍ଷୀ ବାସ କରୁଛନ୍ତି । ୮ । ହନୁମାନ୍ ବରାରୋହା ଅନିନ୍ଦିତା ରାଜନନ୍ଦିନୀ ସୀତାଙ୍କୁ ଅନ୍ୱେଷଣ କରୁ କରୁ ସୁଖରେ ଶୋଇଥିବା ପକ୍ଷୀମାନଙ୍କର ନିଦ ଭାଙ୍ଗିଦେଲେ । ୯ । ପକ୍ଷୀମାନେ ଉଡ଼ିଯିବାରୁ ସେମାନଙ୍କର ପକ୍ଷର ପବନାଘାତରେ ବିବିଧ ବୃକ୍ଷ ନାନାବର୍ଣ୍ଣର ପୁଷ୍ପବୃଷ୍ଟି କରିବାକୁ ଲାଗିଲେ । ୧୦ । ପବନନନ୍ଦନ ହନୁମାନ୍ ପୁଷ୍ପଦ୍ୱାରା ଆଚ୍ଛନ୍ନ ହୋଇ ଅଶୋକବନମଧ୍ୟରେ ପୁଷ୍ପମୟ ପର୍ବତସଦୃଶ ଶୋଭାପାଇଲେ ।୧୧। ସେ ବୃକ୍ଷ ଉପରେ ଚଢ଼ି ଇତସ୍ତତଃଧାବିତ ହେବାରୁ ପ୍ରାଣିସକଳ ତାଙ୍କୁ ଦେଖି ମୂର୍ତ୍ତିମାନ୍ ବସନ୍ତ ବୋଲି ମନେକଲେ ।୧୨। ବୃକ୍ଷମାନଙ୍କରୁ ଝଡ଼ିବା ପୁଷ୍ପମାନଙ୍କରେ ସମାଚ୍ଛନ୍ନ ହୋଇ ସେ ସ୍ଥାନର ବସୁଧା ଅଳଙ୍କାରବିଭୂଷିତା ରମଣୀପରି ଶୋଭା ଧାରଣକଲା । । ୧୩ । ବେଗବାନ୍ ହନୁମାନଙ୍କର ବେଗରେ ଅତିଶୟ କମ୍ପିତ ହୋଇ ବୃକ୍ଷମାନେ ସେତେବେଳେ ନାନା ବର୍ଣ୍ଣର ପୁଷ୍ପରାଶି ବିସର୍ଜନ କରିବାକୁ ଲାଗିଲେ । ୧୪ ।

ନିର୍ଧୂତପତ୍ରଶିଖରାଃ ଶୀର୍ଣପୁଷ୍ପଫଳା ଦ୍ରୁମାଃ ।
ନିକ୍ଷିପ୍ତବସ୍ତ୍ରାଭରଣା ଧୂର୍ତ୍ତା ଇବ ପରାଜିତାଃ । ୧୫ ।
ହନୂମତା ବେଗବତା କମ୍ପିତାସ୍ତେ ନଗୋତ୍ତମାଃ ।
ପୁଷ୍ପପତ୍ରଫଳାନ୍ୟାଶୁ ମୁମୁଚୁଃ ଫଳଶାଳିନଃ । ୧୬ ।
ବିହଙ୍ଗସଂଘୈର୍ହୀନାସ୍ତେ ସ୍କନ୍ଧମାତ୍ରାଶ୍ରୟା ଦ୍ରୁମାଃ ।
ବଭୂବୁରଗମାଃ ସର୍ବେ ମାରୁତେନ ବିନିର୍ଧୂତାଃ । ୧୭ ।
ବିଧୂତକେଶୀ ଯୁବତିର୍ଯଥା ମୃଦିତବର୍ଣ୍ଣକା ।
ନିପୀତଶୁଭଦନ୍ତୋଷ୍ଠୀ ନଖୈର୍ଦନ୍ତୈଶ୍ଚ ବିକ୍ଷତା । ୧୮ ।
ତଥା ଲାଙ୍ଗୂଲହସ୍ତୈସ୍ତୁ ଚରଣାଭ୍ୟାଂ ଚ ମର୍ଦିତା ।
ତଥୈବାଶୋକବନିକା ପ୍ରଭଗ୍ନବନପାଦପା । ୧୯ ।
ମହାଲତାନାଂ ଦାମାନି ବ୍ୟଧମତ୍ତରସା କପିଃ ।
ଯଥା ପ୍ରାବୃଷି ବେଗେନ ମେଘଜାଲାନି ମାରୁତଃ । ୨୦ ।
ସ ତତ୍ର ମଣିଭୂମିଶ୍ଚ ରାଜତୀଶ୍ଚ ମନୋରମାଃ ।
ତଥା କାଞ୍ଚନଭୂମୀଶ୍ଚ ବିଚରନ୍ଦଦୃଶେ କପିଃ । ୨୧ ।

---

ବୃକ୍ଷମାନଙ୍କର ପତ୍ର ଓ ଅଗ୍ରଭାଗ ବିଶେଷ ଆନ୍ଦୋଳିତ ହେବାରୁ; ପତ୍ର, ଫଳ ଓ ପୁଷ୍ପ ଝଡ଼ିପଡ଼ିବାରୁ ଏବଂ ଅଗଡ଼ାଳମାନ ଭାଙ୍ଗିଗଲାରୁ, ଯୁଆଖେଳିବା ବ୍ୟକ୍ତି ପରାଜିତ ହୋଇ ବସ୍ତ୍ର ଓ ଅଳଙ୍କାର କାଢ଼ି ପକାଇଦେଇ ଠିଆହେଲାପରି ସେ ବୃକ୍ଷମାନେ ଦେଖାଗଲେ । ୧୫ । ବେଗବାନ୍ ହନୁମାନ୍‌ଙ୍କଦ୍ୱାରା କମ୍ପିତ ହୋଇ ଫଳଶାଳୀ ଉତ୍କୃଷ୍ଟ ବୃକ୍ଷମାନେ ତତ୍‌କ୍ଷଣାତ୍ ପତ୍ର, ପୁଷ୍ପ ଓ ଫଳ ପରିତ୍ୟାଗ କରିବାକୁ ଲାଗିଲେ । ୧୬ । ପକ୍ଷୀମାନେ ଦଳଦଳ ହୋଇ ଉଡ଼ିଯିବାରୁ ଏବଂ ବୃକ୍ଷମାନଙ୍କର କେବଳ ଗଣ୍ଡିହିଁ ଅବଶିଷ୍ଟ ରହିବାରୁ, ପବନଦ୍ୱାରା ଭାଙ୍ଗିଭୁଙ୍ଗି ଯାଇଥିବା ବୃକ୍ଷପରି ସେମାନେ ଆଉ କାହାର ଆଶ୍ରୟଯୋଗ୍ୟ ହୋଇ ରହିଲେ ନାହିଁ । ୧୭ । ହନୁମାନଙ୍କର ଲାଙ୍ଗୁଳ, ହସ୍ତ ଓ ଚରଣଦ୍ୱାରା ବିମର୍ଦ୍ଦିତ ହୋଇ ଅଶୋକବନର ବୃକ୍ଷ ସବୁ ଭାଙ୍ଗିଭୁଙ୍ଗିଗଲା । ବୋଧ ହେଲା, ଯେପରିକି କୌଣସି ଯୁବତୀର କେଶରାଜି ଆଲୁଳାୟିତ, ଅଙ୍ଗରାଗବିମର୍ଦ୍ଦିତ, ସୁନ୍ଦର ଦନ୍ତ ଓ ଓଷ୍ଠ ଚୁମ୍ବିତ ଏବଂ ଶରୀର ନଖ ଓ ଦନ୍ତ ଆଘାତରେ କ୍ଷତବିକ୍ଷତ ହୋଇଯାଇଅଛି । ୧୮-୧୯ । ବର୍ଷାକାଳରେ ବାୟୁ ଯେପରି ମେଘମାନଙ୍କୁ ଛିନ୍ନ ବିଚ୍ଛିନ୍ନ କରିଦିଏ, ସେହିପରି ବାନର ହନୁମାନ୍ ନିଜର ବେଗଦ୍ୱାରା ବଡ଼ ବଡ଼ ଲତାଗୁଡ଼ିକ ଛିନ୍ନ ବିଚ୍ଛିନ୍ନ କରିଦେଲେ । ୨୦ । ସେଠାରେ ବିଚରଣ କରୁ କରୁ ହନୁମାନ୍ ମଣିମୟ, ରୌପ୍ୟମୟ ଓ ସ୍ୱର୍ଣ୍ଣମୟ

ବାପୀଶ୍ଚ ବିବିଧାକାରାଃ ପୂର୍ଣ୍ଣାଃ ପରମବାରିଣା ।
ମହାର୍ହୈର୍ମଣିସୋପାନୈରୁପପନ୍ନାସ୍ତତସ୍ତତଃ । ୨୨ ।
ମୁକ୍ତାପ୍ରବାଳସିକତାଃ ସ୍ଫାଟିକାନ୍ତରକୁଟ୍ଟିମାଃ ।
କାଞ୍ଚନୈସ୍ତରୁଭିଶ୍ଚିତ୍ରୈସ୍ତୀରଜୈରୁପଶୋଭିତାଃ । ୨୩ ।
ଫୁଲ୍ଲପଦ୍ମୋତ୍ପଳବନାଶ୍ଚକ୍ରବାକୋପଶୋଭିତାଃ ।
ନତ୍ୟୂହରୁତସଂଘୁଷ୍ଟା ହଂସସାରସନାଦିତାଃ । ୨୪ ।
ଦୀର୍ଘାଭିଦ୍ରୁମଯୁକ୍ତାଭିଃ ସରିଦ୍‌ଭିଶ୍ଚ ସମନ୍ତତଃ ।
ଅମୃତୋପମତୋୟାଭିଃ ଶିବାଭିରୁପସଂସ୍କୃତାଃ । ୨୫ ।
ଲତାଶତୈରବତତାଃ ସଂତାନକୁସୁମାବୃତାଃ ।
ନାନାଗୁଲ୍ମାବୃତବନାଃ କରବୀରକୃତାନ୍ତରାଃ । ୨୬ ।
ତତୋଽମ୍ବୁଧରସଂକାଶଂ ପ୍ରବୃଦ୍ଧଶିଖରଂ ଗିରିମ୍ ।
ବିଚିତ୍ରକୂଟଂ କୂଟୈଶ୍ଚ ସର୍ବତଃ ପରିବାରିତମ୍ । ୨୭।
ଶିଳାଗୃହୈରବତତଂ ନାନାବୃକ୍ଷସମାବୃତମ୍ ।
ଦଦର୍ଶ କପିଶାର୍ଦୂଲୋ ରମ୍ୟଂ ଜଗତିପର୍ବତମ୍ । ୨୮ ।

---

ମନୋହର ଭୂମିମାନ ଦର୍ଶନକଲେ ।୨୧ । ସେ ସ୍ଥାନରେ ଉତ୍କୃଷ୍ଟ ଜଳପୂର୍ଣ୍ଣ ନାନା ଆକାରର ବାପୀମାନ ସେ ଦେଖିଲେ । ଏହିସବୁ ବାପୀରେ ନାନାବିଧ ମହାମୂଲ୍ୟ ମଣି-ନିର୍ମିତ ସୋପାନମାନ ରହିଅଛି । ୨୨ ।ସେମାନଙ୍କର ସିକତା ମୁକ୍ତା ଓ ପ୍ରବାଳଯୁକ୍ତ ଏବଂ ଆଭ୍ୟନ୍ତରିଣ ଶଯ୍ୟା ସ୍ଫଟିକଦ୍ୱାରା ନିର୍ମିତ । ତୀରଦେଶ ବିଚିତ୍ର ସ୍ୱର୍ଣ୍ଣମୟ ବୃକ୍ଷରାଜିରେ ଶୋଭିତ । ୨୩ । ଏହି ସମସ୍ତ ବାପୀରେ ପଦ୍ମ, ଉତ୍ପଳମାନ ଫୁଟି ରହିଅଛି, ଚକ୍ରବାକମାନେ ଶୋଭାବୃଦ୍ଧି କରୁଅଛନ୍ତି ଏବଂ ଡାହୁକ, ହଂସ ଓ ସାରସମାନେ ରବ କରୁଛନ୍ତି । ୨୪ । ଏହି ଅଶୋକବନର ଚତୁର୍ଦ୍ଦିଗରେ ସୁଦୀର୍ଘ ସରିତ୍‌ମାନ ରହିଅଛି । କୂଳସ୍ଥିତ ବୃକ୍ଷରାଜିଦ୍ୱାରା ତାହା ଶୋଭା ପାଉଅଛି ଏବଂ ସେମାନଙ୍କର ଜଳ ଅମୃତସଦୃଶ ସୁସ୍ୱାଦୁ ଏବଂ ସ୍ୱଚ୍ଛ । ୨୫ । ଶତ ଶତ ଲତା ଆସି ଏଥିରେ ଅବନତ ହୋଇ ପଡ଼ିଅଛି ଏବଂ ସେ ସବୁର ସନ୍ତାନସଦୃଶ ପୁଷ୍ପରାଜି ଦ୍ୱାରା ଏହି ସରିତ୍‌ମାନ ଆଚ୍ଛନ୍ନ ହୋଇ ରହିଅଛି । ଏମାନଙ୍କର ତୀରସ୍ଥ ବନ ଗୁଳ୍ମମାନଙ୍କ ଦ୍ୱାରା ଆଚ୍ଛାଦିତ ହୋଇଅଛି ଏବଂ ମଝିରେ ମଝିରେ କରବୀର ବୃକ୍ଷମାନ ରହିଅଛି । ୨୬ । ଅନନ୍ତର ବାନରଶ୍ରେଷ୍ଠ ହନୁମାନ୍ ଉନ୍ନତଶିଖର ଓ ବିଚିତ୍ର ଶୃଙ୍ଗସମ୍ପନ୍ନ ଶିଳାଗୃହରାଜିଦ୍ୱାରା ପରିବ୍ୟାପ୍ତ, ନାନା ବୃକ୍ଷରେ ସମାବୃତ ମେଘ-ତୁଲ୍ୟ ରମଣୀୟ ଜଗତି ନାମକ ପର୍ବତ ଦେଖିଲେ । ୨୭-୨୮ । ସେ ଦେଖିଲେ,

ଦଦର୍ଶ ଚ ନଗାତ୍ତସ୍ମାନ୍ନଦୀଂ ନିପତିତାଂ କପିଃ ।
ଅଙ୍କାଦିବ ସମୁତ୍ପତ୍ୟ ପ୍ରିୟସ୍ୟ ପତିତାଂ ପ୍ରିୟାମ୍ । ୨୯ ।
ଜଲେ ନିପତିତାଗ୍ରୈଶ୍ଚ ପାଦପୈରୁପଶୋଭିତାମ୍ ।
ବାର୍ଯ୍ୟମାଣାମିବ କ୍ରୁଦ୍ଧାଂ ପ୍ରମଦାଂ ପ୍ରିୟବନ୍ଧୁଭିଃ । ୩୦ ।
ପୁନରାବୃତ୍ତତୋୟାଂ ଚ ଦଦର୍ଶ ସ ମହାକପିଃ ।
ପ୍ରସନ୍ନାମିବ କାନ୍ତସ୍ୟ କାନ୍ତାଂ ପୁନରୁପସ୍ଥିତାମ୍ । ୩୧ ।
ତସ୍ୟାଦୂରାତ୍ ପଦ୍ମିନ୍ୟୋ ନାନାଦ୍ୱିଜଗଣାୟୁତାଃ ।
ଦଦର୍ଶ କପିଶାର୍ଦ୍ଦୂଲୋ ହନୂମାନ୍ମାରୁତାତ୍ମଜଃ । ୩୨ ।
କୃତ୍ରିମାଂ ଦୀର୍ଘିକାଂ ଚାପି ପୂର୍ଣ୍ଣାଂ ଶୀତେନ ବାରିଣା ।
ମଣିପ୍ରବରସୋପାନାଂ ମୁକ୍ତାସିକତଶୋଭିତାମ୍ । ୩୩ ।
ବିବିଧୈର୍ମୃଗସଙ୍ଘୈଶ୍ଚ ବିଚିତ୍ରାଂ ଚିତ୍ରକାନନାମ୍ ।
ପ୍ରାସାଦୈଃ ସୁମହଦ୍ଭିଶ୍ଚ ନିର୍ମିତୈର୍ବିଶ୍ୱକର୍ମଣା । ୩୪ ।
କାନନୈଃ କୃତ୍ରିମୈଶ୍ଚାପି ସର୍ବତଃ ସମଲଂକୃତାମ୍ ।
ଯେ କେଚତ୍ପାଦପାସ୍ତତ୍ର ପୁଷ୍ପୋପଗଫଲୋପଗାଃ । ୩୫ ।

---

ଏହି ପର୍ବତରୁ ଗୋଟିଏ ନଦୀ ତଳକୁ ବହିଆସୁଛି; ସତେ ଯେପରି କୌଣସି ପ୍ରଣୟିନୀ ନିଜର ପ୍ରିୟତମର ଅଙ୍କ ପରିତ୍ୟାଗ କରି ଭୂତଳରେ ପଡ଼ିରହିଅଛି । ୨୯ । ବୃକ୍ଷମାନଙ୍କର ଅଗ୍ରଭାଗମାନ ଜଳମଧ୍ୟରେ ପଡ଼ି ଏହାର ଶୋଭା ବୃଦ୍ଧି କରୁଅଛି । ବୋଧ ହେଉଛି, ଯେପରିକି କୌଣସି ରମଣୀ କ୍ରୁଦ୍ଧା ହୋଇ ସ୍ୱାମୀଙ୍କୁ ପରିତ୍ୟାଗ କରି ଯାଉଥିବାବେଳେ ତାର ପ୍ରିୟ ବନ୍ଧୁମାନେ ତାଙ୍କୁ ବାରଣ କରୁଛନ୍ତି । ୩୦ । ମହାକପି ଦେଖିଲେ, ସେ ନଦୀର ଜଳ ଖଣ୍ଡେଦୂର ଯାଇ ପୁଣି ସେ ପର୍ବତ ଆଡ଼କୁ ଫେରି ଆସୁଅଛି, ଯେପରିକି ସେ କାମିନୀ ପୁଣି ପ୍ରସନ୍ନା ହୋଇ ନିଜ କାନ୍ତ ନିକଟରେ ଆସି ଉପସ୍ଥିତ ହେଉଅଛି । ୩୧ । ପବନନନ୍ଦନ ବାନରଶ୍ରେଷ୍ଠ ହନୁମାନ୍ ଦେଖିଲେ, ଏହି ନଦୀର ଅଳ୍ପ ଦୂରରେ ନାନା ପକ୍ଷିସମାଚ୍ଛନ୍ନ ପଦ୍ମସରୋବରମାନ ରହିଅଛି । ୩୨ । ସେ ଶୀତଳ ଜଳରେ ପରିପୂର୍ଣ୍ଣ ଗୋଟିଏ କୃତ୍ରିମ ଦୀର୍ଘିକା ମଧ୍ୟ ଦେଖିଲେ । ଏହାର ସୋପାନରାଜି ଉତ୍କୃଷ୍ଟ ମଣିନିର୍ମିତ ଏବଂ ମୁକ୍ତାମୟ ସିକତା ଏହାର ଶୋଭା ସମ୍ପାଦନ କରୁଅଛି । ୩୩ । ବିବିଧ ମୃଗମାନଙ୍କ ଦ୍ୱାରା ସୁଶୋଭିତ ବନରାଜି ଏହାକୁ ବିଚିତ୍ର ଶୋଭା ପ୍ରଦାନ କରିଅଛି । ବିଶ୍ୱକର୍ମାଙ୍କ ନିର୍ମିତ ବୃହତ୍ ବୃହତ୍ ଅଟ୍ଟାଳିକାସମୂହ ଏବଂ କୃତ୍ରିମ କାନନମାନ ଏହାକୁ ସର୍ବତ୍ର ଅଳଙ୍କୃତ କରି ରହିଅଛି । ସେଠାରେ ଯେତେ ଗଛ ଅଛନ୍ତି, ସେମାନେ ସମସ୍ତେ ପୁଷ୍ପବାନ୍ ଓ

ସଚ୍ଛନ୍ନାଃ ସବିତର୍ଦ୍ଦୀକାଃ ସର୍ବେ ସୌବର୍ଣବେଦ୍ଦକାଃ ।
ଲତାପ୍ରତାନୈର୍ବହୁଭିଃ ପର୍ଣୈଶ୍ଚ ବହୁଭିର୍ବୃତାମ୍ ।୩୬ ।
କାଞ୍ଚନୀଂ ଶିଂଶପାମେକାଂ ଦଦର୍ଶ ସ ମହାକପିଃ ।
ବୃତାଂ ହେମମୟୀଭିସ୍ତୁ ବେଦ୍ଦକାଭିଃ ସମନ୍ତତଃ । ୩୭ ।
ସୋଽପଶ୍ୟଦ୍ଭୂମିଭାଗାଂଶ୍ଚ ନଗପ୍ରସ୍ରବଣାନି ଚ ।
ସୁବର୍ଣବୃକ୍ଷାନପରାନ୍ଦଦର୍ଶ ଶିଖିସଂନିଭାନ୍ । ୩୮ ।
ତେଷାଂ ଦ୍ରୁମାଣାଂ ପ୍ରଭୟା ମେରୋରିବ ଦିବାକରଃ ।
ଅମନ୍ୟତ ତଦା ବୀରଃ କାଞ୍ଚନୋଽସ୍ମୀତି ସର୍ବତଃ । ୩୯ ।
ତାନ୍ କାଞ୍ଚନାନ୍ ବୃକ୍ଷଗଣାନ୍ମାରୁତେନ ପ୍ରକମ୍ପିତାନ୍ ।
କିଙ୍କିଣୀଶତନିର୍ଘୋଷାନ୍ଦୃଷ୍ଟ୍ୱା ବିସ୍ମୟମାଗମତ୍ । ୪୦ ।
ସୁପୁଷ୍ପିତାଗ୍ରାନ୍ରୁଚିରାଂସ୍ତରୁଣାଙ୍କୁରପଲ୍ଲବାନ୍ ।
ତମାରୁହ୍ୟ ମହାବେଗଃ ଶିଂଶପାଂ ପର୍ଣସଂବୃତାମ୍ । ୪୧ ।
ଇତୋ ଦ୍ରକ୍ଷ୍ୟାମି ବୈଦେହୀଂ ରାମଦର୍ଶନଲାଲସାମ୍ ।
ଇତଶ୍ଚେତଶ୍ଚ ଦୁଃଖାର୍ତ୍ତାଂ ସଂପତନ୍ତୀଂ ଯଦୃଚ୍ଛୟା । ୪୨ ।

---

ଫଳବାନ୍ ହୋଇଛନ୍ତି । ସେମାନଙ୍କର ଆକାର ଛତ୍ରସଦୃଶ ସୁଦୃଶ୍ୟ ଏବଂ ସମସ୍ତଙ୍କ ମୂଳରେ ସୁବର୍ଣ୍ଣନିର୍ମିତ ବେଦୀ ଓ ବିତର୍ଦ୍ଦିକାମାନ ରହିଅଛି । ବାନର ହନୁମାନ୍ ସେଠାରେ ସୁବର୍ଣ୍ଣବର୍ଣ୍ଣର ଏକ ଶିଂଶପା ବୃକ୍ଷ ଦେଖିଲେ । ଏହା ବହୁବିଧ ଲତାତନ୍ତୁ ଦ୍ୱାରା ଜଡ଼ିତ ହୋଇଅଛି ଏବଂ ଏହାର ମୂଳଦେଶର ଚତୁର୍ଦ୍ଦିଗରେ ହେମମୟ ବେଦ୍ଦକାମାନ ଶୋଭା ପାଉଅଛି । ୩୪--୩୭ । ହନୁମାନ୍ ବିବିଧ ଭୂମିଭାଗ, ପର୍ବତ, ପ୍ରସ୍ରବଣ ଏବଂ ମୟୂରସଦୃଶ ସୁନ୍ଦର ସୁବର୍ଣ୍ଣ ବର୍ଣ୍ଣର ବୃକ୍ଷମାନ ଦେଖିଲେ । ୩୮ । ସୁମେରୁର ସମ୍ପର୍କରେ ସୂର୍ଯ୍ୟ ଯେପରି ଉଜ୍ଜ୍ୱଳ ହୁଅନ୍ତି, ସେହିପରି ଏହି ସମସ୍ତ ବୃକ୍ଷର ପ୍ରଭାରେ ପ୍ରଭାନ୍ୱିତ ହୋଇ ସେତେବେଳେ ବୀର ହନୁମାନ୍ ମନେକଲେ ଯେ "ମୁଁ ସଂପୂର୍ଣ୍ଣ ସ୍ୱର୍ଣ୍ଣମୟ ହୋଇଯାଇଅଛି" ।୩୯। ବାୟୁଚାଳିତ ଶତ ଶତ କିଙ୍କିଣୀଶବ୍ଦ ନିନାଦିତ, ସୁନ୍ଦର ପୁଷ୍ପଶାଳୀ, ନୂତନ ଅଙ୍କୁର ଓ ପଲ୍ଲବଶୋଭିତ ଏହି ରମଣୀୟ ପତ୍ରାଚ୍ଛାଦିତ ଶିଂଶପା ବୃକ୍ଷକୁ ଦେଖି ମହାବେଗଶାଳୀ ହନୁମାନ୍ ଅତିଶୟ ଆଶ୍ଚର୍ଯ୍ୟାନ୍ୱିତ ହେଲେ ଏବଂ ସେହି ବୃକ୍ଷରେ ଚଢ଼ି ଭାବିଲେ । ୪୦-୪୧ । "ବୈଦେହୀ ଦୁଃଖରେ ସନ୍ତପ୍ତହୋଇ ରାମଙ୍କୁ ଦେଖିବା ଲାଳସାରେ ସ୍ୱେଚ୍ଛାକ୍ରମେ ଇତସ୍ତତଃ ବୁଲି ବୁଲି ଏଠାକୁ ଆସିଲେ, ମୁଁ ଏହିଠାରେ ରହି ତାଙ୍କୁ ଦେଖିବି । ୪୨ । ସେହି ଦୁରାତ୍ମା

ଅଶୋକବନିକାଚେୟଂ ଦୃଢ଼ଂ ରମ୍ୟା ଦ୍ରୁମୈର୍ମନଃ ।
ଚନ୍ଦନୈଶ୍ଚମ୍ପକୈଶ୍ଚାପି ବକୁଳୈଶ୍ଚ ବିଭୂଷିତା । ୪୩ ।
ଇୟଂ ଚ ନଳିନୀ ରମ୍ୟା ଦ୍ୱିଜସଙ୍ଘନିଷେବିତା ।
ଇମାଂ ସା ରାଜମହିଷୀ ନୂନମେଷ୍ୟତି ଜାନକୀ । ୪୪ ।
ଅଥବା ମୃଗଶାବାକ୍ଷୀ ବନସ୍ୟାସ୍ୟ ବିଚକ୍ଷଣା ।
ବନମେଷ୍ୟତି ସାଦେ୍ୟହ ରାମଚନ୍ଦ୍ରାଧିକର୍ଷିତା । ୪୫ ।
ରାମଶୋକାଭିସଂତପ୍ତା ସା ଦେବୀ ବାମଲୋଚନା ।
ବନବାସରତା ନିତ୍ୟମେଷ୍ୟତେ ବନଚାରିଣୀ । ୪୬ ।
ବନେଚରାଣାଂ ସତତଂ ନୂନଂ ସ୍ପୃହୟତେ ପୁରା ।
ରାମସ୍ୟ ଦୟିତା ଭାର୍ଯ୍ୟା ଜନକସ୍ୟ ସୁତା ସତୀ । ୪୭ ।
ସଂଧ୍ୟାକାଲମନାଃ ଶ୍ୟାମା ଧ୍ରୁବମେଷ୍ୟତି ଜାନକୀ ।
ନଦୀଂ ଚେମାଂ ଶୁଭଜଲାଂ ସଂଧ୍ୟାର୍ଥେ ବରବର୍ଣ୍ଣିନୀ । ୪୮ ।
ତସ୍ୟାଶ୍ଚାପ୍ୟନୁରୂପେୟମଶୋକବନିକା ଶୁଭା ।
ଶୁଭା ଯା ପାର୍ଥିବେନ୍ଦ୍ରସ୍ୟ ପତ୍ନୀ ରାମସ୍ୟ ସଂମତା । ୪୯ ।
ଯଦି ଜୀବତି ସା ଦେବୀ ତାରାଧିପନିଭାନନା ।
ଆଗମିଷ୍ୟତି ସାବଶ୍ୟମିମାଂ ଶୀତଜଲାଂ ନଦୀମ୍ । ୫୦ ।

---

ରାବଣର ଏହି ଅଶୋକବନ ଚମ୍ପକ, ଚନ୍ଦନ ଓ ବକୁଳ ବୃକ୍ଷଦ୍ୱାରା ବିଭୂଷିତ ହୋଇ ଅତିଶୟ ରମଣୀୟ ହୋଇଅଛି । ୪୩ । ପକ୍ଷିଗୋଷ୍ଠୀସେବିତ ଏହି ପଦ୍ମ-ସରୋବର ରହି ଅଛି । ରାଜମହିଷୀ ଜାନକୀ ନିଶ୍ଚୟ ଏ ସରୋବରକୁ ଆସିବେ । ୪୪ । ଅଥବା ମୃଗନୟନା ସୀତା ଏ ଅଶୋକବନର ସବୁ ଅଞ୍ଚଳ କଥା ଭଲ କରି ଜାଣିଥିବେ । ସେ ରାମଙ୍କ ଚିନ୍ତାରେ ଆକୃଷ୍ଟହୋଇ ଆଜ ଏ ବନକୁ ଆସିବେ । ୪୫ । ସୁନ୍ଦରନୟନା ସୀତା ବନବାସରେ ରହିବାକୁ ଅଭ୍ୟସ୍ତ । ସେ ରାମଙ୍କ ଶୋକରେ ଅତିସଂତପ୍ତା ହୋଇ ବନରେ ବିଚରଣ କରିବାକୁ ପ୍ରତ୍ୟହ ଆସୁଥିବେ । ୪୬ । ରାମଙ୍କର ପ୍ରିୟଭାର୍ଯ୍ୟା ସାଧ୍ୱୀ ଜନକନନ୍ଦିନୀ ପୂର୍ବେ ସର୍ବଦା ବନଚାରୀ ପଶୁ ପକ୍ଷୀମାନଙ୍କୁ ଭଲ ପାଉଥିଲେ । ୪୭ । ସୁନ୍ଦରୀ ଜାନକୀଙ୍କର ସନ୍ଧ୍ୟା ସମୟରେ ସନ୍ଧ୍ୟା ଉପାସନା କରିବାରେ ନିଷ୍ଠା ଅଛି; ସୁତରାଂ ସେ ବରବର୍ଣ୍ଣିନୀ ସନ୍ଧ୍ୟା ଉପାସନା କରିବା ପାଇଁ ଏହି ସୁନିର୍ମଳ ଜଳପୂର୍ଣ୍ଣ ନଦୀକୁ ନିଶ୍ଚୟ ଆସିବେ । ୪୮ । ଯେଉଁ ମଙ୍ଗଳମୟୀ ସୀତା ରାଜେନ୍ଦ୍ର ରାମଙ୍କର ଅଭିମତପତ୍ନୀ ଅଟନ୍ତି, ତାଙ୍କ ନିମନ୍ତେ ଏ ପବିତ୍ର ଅଶୋକବନ ବିଶେଷ ଉପଯୁକ୍ତ ସ୍ଥାନ ଅଟେ । ୪୯ । ସେ ଚନ୍ଦ୍ରାନନା ଦେବୀ ଯଦି ଜୀବିତା ଥାଆନ୍ତି, ତେବେ ଏହି ଶୀତଳ ଜଳପୂର୍ଣ୍ଣ ନଦୀକୁ ଅବଶ୍ୟ ଆସିବେ" । ୫୦ । ମହାତ୍ମା ହନୁମାନ୍

ଏବଂ ତୁ ଗତ୍ୱା ହନୁମାନ୍ମହାତ୍ମା
ପ୍ରତୀକ୍ଷମାଣୋ ମନୁଜେନ୍ଦ୍ରପତ୍ନୀମ୍ ।
ଅବେକ୍ଷମାଣଶ୍ଚ ଦଦର୍ଶ ସର୍ବମ୍
ସୁପୁଷ୍ପିତେ ପର୍ଣଘନେ ନିଲୀନଃ । ୫୧ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ସୁନ୍ଦରକାଣ୍ଡେ ଅଶୋକବନିକାବିଚୟୋ ନାମ ଚତୁର୍ଦଶଃ ସର୍ଗଃ ।

---

# ପଞ୍ଚଦଶଃ ସର୍ଗଃ

## ସୀତୋପଲମ୍ଭଃ

ସ ବୀକ୍ଷମାଣସ୍ତତ୍ରସ୍ଥୋ ମାର୍ଗମାଣଶ୍ଚ ମୈଥିଲୀମ୍ ।
ଅବେକ୍ଷମାଣଶ୍ଚ ମହୀଂ ସର୍ବାଂ ତାମନ୍ୱବୈକ୍ଷତ । ୧ ।
ସଂତାନକଲତାଭିଶ୍ଚ ପାଦପୈରୁପଶୋଭିତାମ୍ ।
ଦିବ୍ୟଗନ୍ଧରସୋପେତାଂ ସର୍ବତଃ ସମଲଂକୃତାମ୍ । ୨ ।

---

ଏହିପରି ମନରେ ଚିନ୍ତା କରି ସେହି ରାଜେନ୍ଦ୍ରପତ୍ନୀଙ୍କର ପ୍ରତୀକ୍ଷାରେ ନିବିଡ଼ପତ୍ର ଓ ସୁନ୍ଦର ପୁଷ୍ପଯୁକ୍ତ ସେହି ଶିଂଶପା ବୃକ୍ଷରେ ଲୁଚି ରହି ଗୁରି ଆଡ଼କୁ ଚାହିଁ ସବୁ ଦେଖିବାକୁ ଲାଗିଲେ । ୫୧ ।

---

## ୧୫ଶ ସର୍ଗ

### ( ସୀତାଙ୍କ ଦର୍ଶନ )

ଅନନ୍ତର ହନୁମାନ୍ ସେହି ବୃକ୍ଷରେ ରହି ଗୁରିଆଡ଼କୁ ଚାହିଁ ମୈଥିଳୀଙ୍କୁ ଅନ୍ୱେଷଣ କରୁ କରୁ ସମସ୍ତ ଭୂଭାଗ ପର୍ଯ୍ୟବେକ୍ଷଣପୂର୍ବକ ସେହି ଅଶୋକବନକୁ ଦେଖିବାକୁ ଲାଗିଲେ । ୧ । ସେ ଦେଖିଲେ, ସଂତାନକ ଲତା ଓ ବୃକ୍ଷସମୂହଦ୍ୱାରା ଚତୁର୍ଦ୍ଦିଗରେ ସେବିତ ହୋଇ ଏହି ବନ ସ୍ୱର୍ଗୀୟ ଗନ୍ଧପୂର୍ଣ୍ଣ ହୋଇ ନନ୍ଦନକାନନ ସଦୃଶ ଶୋଭାପାଉଅଛି । ଏଥିରେ ମୃଗ ଓ ପକ୍ଷୀମାନେ ସର୍ବଦା ପ୍ରହୃଷ୍ଟହୋଇ ରହିଛନ୍ତି ।

ତାଂ ସ ନନ୍ଦନସଂକାଶାଂ ମୃଗପକ୍ଷିଭିରାବୃତାମ୍ ।
ହର୍ମ୍ୟପ୍ରାସାଦସଂବାଧାଂ କୋକିଲାକୁଲନିଃସ୍ୱନାମ୍ । ୩ ।
କାଞ୍ଚନୋତ୍ପଲପଦ୍ମାଭିର୍ବାପୀଭିରୁପଶୋଭିତାମ୍ ।
ବହ୍ୱାସନକୁଥୋପେତାଂ ବହୁଭୂମିଗୃହାୟୁତାମ୍ । ୪ ।
ସର୍ବର୍ତୁକୁସୁମୈଃ ରମ୍ୟୈଃ ଫଳବଦ୍ଭିଶ୍ଚ ପାଦପୈଃ ।
ପୁଷ୍ପିତାନାମଶୋକାନାଂ ଶ୍ରିୟା ସୂର୍ଯୋଦୟପ୍ରଭାମ୍ । ୫ ।
ପ୍ରଦୀପ୍ତାମିବ ତତ୍ରସ୍ଥୋ ମାରୁତିଃ ସମୁଦୈକ୍ଷତ ।
ନିଷ୍ପତ୍ରଶାଖାଂ ବିହଗୈଃ କ୍ରିୟମାଣାମିବାସକୃତ୍ । ୬ ।
ବିନିଷ୍ପତଦ୍ଭିଃ ଶତଶଶ୍ଚିତ୍ରୈଃ ପୁଷ୍ପାବତଂସକୈଃ ।
ସମୂଲପୁଷ୍ପରଚିତୈରଶୋକୈଃ ଶୋକନାଶନୈଃ । ୭ ।
ପୁଷ୍ପଭାରାତିଭାରୈଶ୍ଚ ସ୍ପୃଶଦ୍ଭିରିବ ମେଦିନୀମ୍ ।
କର୍ଣିକାରୈଃ କୁସୁମିତୈଃ କିଂଶୁକୈଶ୍ଚ ସୁପୁଷ୍ପିତୈଃ । ୮ ।
ସ ଦେଶଃ ପ୍ରଭୟା ତେଷାଂ ପ୍ରଦୀପ୍ତ ଇବ ସର୍ବତଃ ।
ପୁଂନାଗାଃ ସପ୍ତପର୍ଣାଶ୍ଚ ଚମ୍ପକୋଦ୍ଦାଲକାସ୍ତଥା । ୯ ।

---

ଏହା ହର୍ମ୍ୟ ଓ ପ୍ରାସାଦଗଣରେ ପରିପୂର୍ଣ୍ଣ ଏବଂ କୋକିଳମାନେ ଆକୁଳହୋଇ ସେଠାରେ ରବ କରୁଛନ୍ତି । ୨-୩ । ସ୍ୱର୍ଣ୍ଣମୟ ଉତ୍ପଳ ଓ ପଦ୍ମପୂର୍ଣ୍ଣ ବାପୀମାନ ଏହାର ଶୋଭା ସମ୍ପାଦନ କରୁଅଛି, ବହୁସଂଖ୍ୟକ ଆସନ ଓ କମ୍ବଳ ଏଠାରେ ପଡ଼ି ରହିଅଛି ଏବଂ ଏଠାରେ ଭୂଗର୍ଭମଧ୍ୟରେ ନିର୍ମିତ ବହୁସଂଖ୍ୟକ ଗୃହ ରହିଅଛି । ୪ । ସବୁ ଋତୁରେ ଜାତ ହେଉଥିବା ରମଣୀୟ ପୁଷ୍ପ ଏବଂ ଫଳଶାଳୀ ବୃକ୍ଷମାନ ଏଠାରେ ରହିଅଛି । ପୁଷ୍ପିତ ଅଶୋକବୃକ୍ଷମାନଙ୍କର କାନ୍ତିରେ ଏଠାରେ ସୂର୍ଯ୍ୟୋଦୟର ପ୍ରଭା ବିସ୍ତାରିତ ହୋଇ ରହିଅଛି । ୫ । ହନୁମାନ୍ ସେଠାରେ ଅବସ୍ଥାନ କରି ଦେଖିଲେ ଯେ ପକ୍ଷୀମାନଙ୍କ ଦ୍ୱାରା ବୃକ୍ଷସବୁ ପୂର୍ଣ୍ଣହୋଇ ରହିଥିବାରୁ ସେମାନଙ୍କର ପତ୍ର ଓ ଶାଖାମାନ ଆଦୌ ଦେଖାଯାଉ ନାହିଁ । ୬ । ଏହି ପକ୍ଷୀମାନେ ବିଚିତ୍ର ପୁଷ୍ପରେ ସୁଶୋଭିତ ହୋଇ ଶତ ଶତ ସଂଖ୍ୟାରେ ଗଛଉପରୁ ତଳକୁ ପଡ଼ୁଛନ୍ତି । ଶୋକନାଶକ ଅଶୋକବୃକ୍ଷଗୁଡ଼ିକ ମୂଳଠାରୁ ବରାବର ପୁଷ୍ପରେ ଖୁନ୍ଦିହୋଇ ରହିଛନ୍ତି । ୭ । ଏହି ସବୁ କୁସୁମିତ ଅଶୋକ, କର୍ଣ୍ଣିକାର ଏବଂ ପଳାଶବୃକ୍ଷ ପୁଷ୍ପଭାରଜନିତ ଅତିଭାରରେ ନମ୍ର ହୋଇ ସତେ ଯେପରି ମେଦିନୀକୁ ସ୍ପର୍ଶ କରୁଅଛି । ୮ । ଏମାନଙ୍କର ପ୍ରଭାରେ ସେ ସ୍ଥାନ ଯେପରି ସର୍ବତ୍ର ପ୍ରଦୀପ୍ତ ହୋଇ ଉଠିଅଛି । ପୁନ୍ନାଗ

ବିବୃଦ୍ଧମୂଳା ବହବଃ ଶୋଭନ୍ତେ ସ୍ମ ସୁପୁଷ୍ପିତାଃ ।
ଶାତକୁମ୍ଭନିଭାଃ କେଚିତ୍କେଚିଦଗ୍ନିଶିଖପ୍ରଭାଃ । ୧୦ ।
ନୀଲାଞ୍ଜନନିଭାଃ କେଚିତ୍ତତ୍ରାଶୋକାଃ ସହସ୍ରଶଃ ।
ନନ୍ଦନଂ ବିବୁଧୋଦ୍ୟାନଂ ଚିତ୍ରଂ ଚୈତ୍ରରଥଂ ଯଥା । ୧୧ ।
ଅତିବୃତ୍ତମିବାଚିନ୍ତ୍ୟଂ ଦିବ୍ୟଂ ରମ୍ୟଂ ଶ୍ରିୟା ଯୁତମ୍ ।
ଦ୍ୱିତୀୟମିବ ଚାକାଶଂ ପୁଷ୍ପଜ୍ୟୋତିର୍ଗଣାଯୁତମ୍ । ୧୨ ।
ପୁଷ୍ପରତ୍ନଶତୈଶ୍ଚିତ୍ରଂ ପଞ୍ଚମଂ ସାଗରଂ ଯଥା ।
ସର୍ବର୍ତୁପୁଷ୍ପୈର୍ନିଚିତଂ ପାଦପୈର୍ମଧୁଗନ୍ଧିଭିଃ । ୧୩ ।
ନାନାନିନାଦୈରୁଦ୍ୟାନଂ ରମ୍ୟଂ ମୃଗଗଣଦ୍ୱିଜୈଃ ।
ଅନେକଗନ୍ଧପ୍ରବହଂ ପୁଣ୍ୟଗନ୍ଧଂ ମନୋହରମ୍ । ୧୪ ।
ଶୈଳେନ୍ଦ୍ରମିବ ଗନ୍ଧାଢ୍ୟଂ ଦ୍ୱିତୀୟଂ ଗନ୍ଧମାଦନମ୍ ।
ଅଶୋକବନିକାୟାଂ ତୁ ତସ୍ୟାଂ ବାନରପୁଙ୍ଗବଃ । ୧୫ ।
ସ ଦଦର୍ଶାବିଦୂରସ୍ଥଂ ଚୈତ୍ୟପ୍ରାସାଦମୂର୍ଚ୍ଛ୍ରିତମ୍ ।
ମଧ୍ୟେ ସ୍ତମ୍ଭସହସ୍ରେଣ ସ୍ଥିତଂ କୈଳାସପାଣ୍ଡୁରମ୍ । ୧୬ ।

---

ବହୁସଂଖ୍ୟକ ଚପୋଲଙ୍ଗ, ଛତିଆନା ଏବଂ ଓଉ ଗଛ ସବୁ ସୁନ୍ଦର ପୁଷ୍ପରେ ପୁଷ୍ପିତ ହୋଇ ଶୋଭା ପାଉଅଛି । ସେହି ବନରେ ସହସ୍ର ସହସ୍ର ଅଶୋକ ବୃକ୍ଷ ରହିଛି । ସେଥି ମଧ୍ୟରୁ କେତେକ ସୁବର୍ଣ୍ଣବର୍ଣ୍ଣ, କେତେକ ଅଗ୍ନିଶିଖାତୁଲ୍ୟ ପ୍ରଭାଶାଳୀ ଏବଂ ଆଉ କେତେକ ନୀଳାଞ୍ଜନସଦୃଶ ହୋଇ ତାହା ଦେବୋଦ୍ୟାନ ନନ୍ଦନବନପରି ଆନନ୍ଦଦାୟକ ଏବଂ କୁବେରଙ୍କର ଚୈତ୍ରରଥବନପରି ବିଚିତ୍ର ଦେଖାଯାଉଛି ।୯-୧୧। ଏହି ଅଚିନ୍ତ୍ୟ ରମଣୀୟ ଶ୍ରୀସମ୍ପନ୍ନ ଦିବ୍ୟ କାନନ ପୁଷ୍ପରୂପ ନକ୍ଷତ୍ରମଣ୍ଡଳରେ ପରିବ୍ୟାପ୍ତ ହୋଇ ଦ୍ୱିତୀୟ ଆକାଶ ପ୍ରାୟ ଶୋଭାପାଉଛି ।୧୨। ଶତ ଶତ ପୁଷ୍ପରୂପ ରତ୍ନ ଥିବାରୁ ବୋଧହେଉଛି, ଯେପରି ଏହା ପଞ୍ଚମ ସାଗର । ସର୍ବ ଋତୁର କୁସୁମଶାଳୀ ମଧୁଗନ୍ଧପୂର୍ଣ୍ଣ ବୃକ୍ଷସକଳ ଏହି ଉଦ୍ୟାନର ଶ୍ରୀ ସମ୍ପାଦନ କରୁଅଛି ଏବଂ ବିବିଧ ମୃଗପକ୍ଷିରବଦ୍ୱାରା ଏହା ଅତି ରମଣୀୟ ହୋଇଅଛି । ନାନାପ୍ରକାର ଗନ୍ଧ ଉଦ୍ୟାନ ମଧ୍ୟରେ ପ୍ରବାହିତ ହେଉଥିବାରୁ ଏହା ଗନ୍ଧଯୁକ୍ତ ଅନ୍ୟ ଏକ ଗନ୍ଧମାଦନ ପର୍ବତପରି ହୋଇଅଛି । ଏହି ଅଶୋକବନମଧ୍ୟରେ ବାନରଶ୍ରେଷ୍ଠ ହନୂମାନ୍ ଦେଖିଲେ, ଦୂରରେ ଗୋଟିଏ ଅତ୍ୟୁନ୍ନତ ଚୈତ୍ୟପ୍ରାସାଦ ସହସ୍ରେ ସ୍ତମ୍ଭ ଉପରେ ସ୍ଥାପିତ ହୋଇ ରହିଅଛି ଏବଂ ଏହା କୈଳାସପର୍ବତ ପରି ଶୁକ୍ଳବର୍ଣ୍ଣ ଦେଖାଯାଉଅଛି ।୧୩-୧୬। ଏହାର ସୋପାନଗୁଡ଼ିକ ପ୍ରବାଳରେ ନିର୍ମିତ ହୋଇଛି

ପ୍ରବାଲକୃତସୋପାନଂ ତପ୍ତକାଞ୍ଚନବେଦିକମ୍ ।
ମୁଷ୍ଣନ୍ତମିବ ଚକ୍ଷୂଂଷି ଦ୍ୟୋତମାନମିବ ଶ୍ରିୟା ।୧୭ ।
ନିର୍ମଲଂ ପ୍ରାଂଶୁଭାବତ୍ୱାଦୁଲ୍ଲିଖନ୍ତମିବାମ୍ବରମ୍ ।
ତତୋ ମଲିନସଂବୀତାଂ ରାକ୍ଷସୀଭିଃ ସମାବୃତାମ୍ । ୧୮ ।
ଉପବାସକୃଶାଂ ଦୀନାଂ ନିଃଶ୍ୱସନ୍ତୀଂ ପୁନଃ ପୁନଃ ।
ଦଦର୍ଶ ଶୁକ୍ଲପକ୍ଷାଦୌ ଚନ୍ଦ୍ରରେଖାମିବାମଲାମ୍ । ୧୯ ।
ମନ୍ଦଂ ପ୍ରଖ୍ୟାୟମାନେନ ରୂପେଣ ରୁଚିରପ୍ରଭାମ୍ ।
ପିନଦ୍ଧାଂ ଧୂମଜାଲେନ ଶିଖାମିବ ବିଭାବସୋଃ । ୨୦ ।
ପୀତେନୈକେନ ସଂବୀତାଂ କ୍ଲିଷ୍ଟେନୋତ୍ତମବାସସା ।
ସପଙ୍କାମନଲଂକାରାଂ ବିପଦ୍ମାମିବ ପଦ୍ମିନୀମ୍ । ୨୧ ।
ପୀଡ଼ିତାଂ ଦୁଃଖସନ୍ତପ୍ତାଂ ପରିକ୍ଷୀଣାଂ ତପସ୍ୱିନୀମ୍ ।
ଗ୍ରହେଣାଙ୍ଗାରକେଣେବ ପୀଡ଼ିତାମିବ ରୋହିଣୀମ୍ । ୨୨ ।
ଅଶ୍ରୁପୂର୍ଣମୁଖୀଂ ଦୀନାଂ କୃଶାମନଶନେନ ଚ ।
ଶୋକଧ୍ୟାନପରାଂ ଦୀନାଂ ନିତ୍ୟଂ ଦୁଃଖପରାୟଣାମ୍ । ୨୩ ।

---

ଓ ବେଦିକାଗୁଡ଼ିକ ତପ୍ତକାଞ୍ଚନରେ ନିର୍ମିତ ହୋଇଅଛି । ତାହା ସୌନ୍ଦର୍ଯ୍ୟରେ ଦୀପ୍ତ ହୋଇ ଚକ୍ଷୁକୁ ଉଷ୍ମ କରିଦେଉଛି । ୧୭ । ଏହି ସ୍ୱଚ୍ଛ ପ୍ରାସାଦ ଉଚ୍ଚତା-ହେତୁରୁ ଆକାଶକୁ ସ୍ପର୍ଶ କଲାପରି ଦେଖାଯାଉଛି । ଅନନ୍ତର ହନୁମାନ୍ ସେଠାରେ ମଳିନବେଶା, ରାକ୍ଷସୀପରିବେଷ୍ଟିତା, ଶୁକ୍ଳପକ୍ଷର ଆରମ୍ଭରେ ଚନ୍ଦ୍ରସଦୃଶ, ଉପବାସକୃଶା ସୀତାଙ୍କୁ ବାରମ୍ବାର ନିଶ୍ୱାସ ପକାଇ ଦୀନଭାବରେ ବସିଥିବାର ଦେଖିଲେ । ୧୮-୧୯ । ତାଙ୍କର ମନୋହରପ୍ରଭାବିଶିଷ୍ଟ ରୂପ ଅତକ୍ଷୀଣଭାବରେ ବ୍ୟକ୍ତ ହେଉଥିବାରୁ ସେ ଧୂମରାଶିସମାଚ୍ଛନ୍ନ ଅଗ୍ନିଶିଖାସଦୃଶ ଦେଖାଯାଉଥିଲେ । । ୨୦ । ସେ ଖଣ୍ଡିଏମାତ୍ର ଜୀର୍ଣ୍ଣ ପୀତବର୍ଣ୍ଣ ପଟ୍ଟବସ୍ତ୍ର ପିନ୍ଧି ଓ ଅଳଙ୍କାରବିହୀନା ହୋଇ-ଥିବାରୁ ପଙ୍କପୂର୍ଣ୍ଣ ପଦ୍ମପୁଷ୍ପହୀନ ସରୋବରପରି ଦେଖାଯାଉଥିଲେ । ୨୧ । ତପସ୍ୱିନୀ ସୀତା ଦୁଃଖସନ୍ତପ୍ତା, ପୀଡ଼ିତା ଏବଂ ମ୍ଳାନ ହୋଇଥିବାରୁ ମଙ୍ଗଳଗ୍ରହ ଦ୍ୱାରା ପୀଡ଼ିତା ରୋହିଣୀ ନକ୍ଷତ୍ରସଦୃଶ ଦେଖାଯାଉଥିଲେ । ୨୨ । ତାଙ୍କର ମୁଖ ଅଶ୍ରୁରେ ପୂର୍ଣ୍ଣ ହୋଇଅଛି, ଉପବାସହେତୁରୁ ସେ କ୍ଷୀଣ ହୋଇଯାଇଛନ୍ତି, ଶୋକ ଏବଂ ଚିନ୍ତାରେ ସତତ ଦୁଃଖକାତର ହୋଇ ରହିଛନ୍ତି । ୨୩ । ସେ ନିକର

ପ୍ରିୟଂ ଜନମପଶ୍ୟନ୍ତୀଂ ପଶ୍ୟନ୍ତୀଂ ରାକ୍ଷସୀଗଣମ୍ ।
ସ୍ୱଗଣେନ ମୃଗୀଂ ହୀନାଂ ଶ୍ୱଗଣେନାବୃତାମିବ । ୨୪ ।
ନୀଲନାଗାଭୟା ବେଣ୍ୟା ଜଘନଂ ଗତୟୈକୟା ।
ନୀଲୟା ନୀରଦାପାୟେ ବନରାଜ୍ୟା ମହୀମିବ । ୨୫ ।
ସୁଖାର୍ହାଂ ଦୁଃଖସନ୍ତପ୍ତାଂ ବ୍ୟସନାନାମକୋବିଦାମ୍ ।
ତାଂ ବିଲୋକ୍ୟ ବିଶାଲାକ୍ଷୀମଧିକଂ ମଲିନାଂ କୃଶାମ୍ । ୨୬ ।
ତର୍କୟାମାସ ସୀତେତି କାରଣୈରୁପପାଦିଭିଃ ।
ହ୍ରିୟମାଣା ତଦା ତେନ ରକ୍ଷସା କାମରୂପିଣା । ୨୭ ।
ଯଥାରୂପା ହି ଦୃଷ୍ଟା ସା ତଥାରୂପେୟମଙ୍ଗନା ।
ପୂର୍ଣଚନ୍ଦ୍ରାନନାଂ ସୁଭ୍ରୂଂ ଚାରୁବୃତ୍ତପୟୋଧରାମ୍ । ୨୮ ।
କୁର୍ବନ୍ତୀଂ ପ୍ରଭୟା ଦେବୀଂ ସର୍ବା ବିତିମିରା ଦିଶଃ ।
ତାଂ ନୀଲକଣ୍ଠୀଂ ବିମ୍ବୋଷ୍ଠୀଂ ସୁମଧ୍ୟାଂ ସୁପ୍ରତିଷ୍ଠିତାମ୍ । ୨୯ ।
ସୀତାଂ ପଦ୍ମପଲାଶାକ୍ଷୀଂ ମନ୍ମଥସ୍ୟ ରତିଂ ଯଥା ।
ଇଷ୍ଟାଂ ସର୍ବସ୍ୟ ଜଗତଃ ପୂର୍ଣଚନ୍ଦ୍ରପ୍ରଭାମିବ । ୩୦ ।

---

ପ୍ରିୟଜନଙ୍କୁ ନ ଦେଖି କେବଳ ରାକ୍ଷସୀଙ୍କୁ ଦେଖୁଛନ୍ତି; ସୁତରାଂ ନିଜଗୋଷ୍ଠ-ବିଚ୍ୟୁତା, ଶ୍ୱାନପରିବୃତା ମୃଗୀପରି ତାଙ୍କ ଅବସ୍ଥା ହୋଇଅଛି । ୨୪ । ତାଙ୍କର ନୀଳନାଗସଦୃଶ ଏକମାତ୍ର ବେଣୀ ଜଘନପର୍ଯ୍ୟନ୍ତ ଲମ୍ବିପଡ଼ିଥିବାରୁ ବୋଧହେଉଛି, ଯେପରିକି ବର୍ଷାଋତୁ ଶେଷରେ ପୃଥିବୀ ନୀଳବର୍ଣ୍ଣ ବନରାଜିଦ୍ୱାରା ବେଷ୍ଟିତା ହୋଇ ଶୋଭାପାଉଅଛି । ୨୫ । ସେ ସର୍ବଦା ସୁଖଭୋଗର ଯୋଗ୍ୟା, ଦୁଃଖ କଣ ଜାଣନ୍ତି ନାହିଁ, ମାତ୍ର ଏବେ ଦୁଃଖରେ ନିତାନ୍ତ ସନ୍ତାପିତ ହୋଇଅଛନ୍ତି । ହନୁମାନ୍ ସେହି ଅତ୍ୟଧିକ ମଳିନା, କୃଶାଙ୍ଗୀ, ଆୟତଲୋଚନାଙ୍କୁ ଦେଖି, ବିଶ୍ୱାସଯୋଗ୍ୟ ନାନା କାରଣରୁ ସ୍ଥିରକଲେ ଯେ ଏ ନିଶ୍ଚୟ ସୀତା । ସେ ବିଚାରିଲେ, କାମରୂପୀ ରାକ୍ଷସ ଯେତେବେଳେ ସୀତାଙ୍କୁ ହରଣକରି ନେଇ ଆସୁଥିଲା, ସେତେବେଳେ ସେ ଯେପରି ଦେଖାଯାଉଥିଲେ, ଏ ରମଣୀ ସେହିପରି ଦେଖାଯାଉଛନ୍ତି । ପୂର୍ଣ୍ଣଚନ୍ଦ୍ରବଦନା, ସୁଭ୍ରୂ, ସୁନ୍ଦର ଓ ସୁଗୋଲ ପୟୋଧରଧାରିଣୀ, ଦେବୀ ନିଜର ପ୍ରଭାରେ ଦିଗ-ମାନଙ୍କର ଅନ୍ଧକାର ନାଶ କରିଦେଉଅଛନ୍ତି । ତାହାଙ୍କର କଣ୍ଠ ଇନ୍ଦ୍ର-ନୀଳମଣିଦ୍ୱାରା ନୀଳବର୍ଣ୍ଣ ହୋଇଅଛି । ଓଷ୍ଠ ବିମ୍ବସଦୃଶ, କଟିଦେଶ ସୁଶୋଭନ ଏବଂ ସମସ୍ତ ଶରୀର ସୁସମ୍ବଦ୍ଧ । ପଦ୍ମପଲାଶାକ୍ଷୀ ସୀତା ମଦନର ରତି ଏବଂ ପୂର୍ଣ୍ଣଚନ୍ଦ୍ରର ଜ୍ୟୋତ୍ସ୍ନାସଦୃଶ ସମଗ୍ର ଜଗତର ପ୍ରିୟା ।୨୬-୩୦। ସେହି ସୁଚାରୁ

ଭୂମୌ ସୁତନୁମାସୀନାଂ ନିୟତା ମିବ ତାପସୀମ୍ ।
ନିଃଶ୍ୱାସବହୁଳାଂ ଭୀରୁଂ ଭୁଜଗେନ୍ଦ୍ରବଧୂମିବ । ୩୧ ।
ଶୋକଜାଲେନ ମହତା ବିତତେନ ନ ରାଜତୀମ୍ ।
ସଂସକ୍ତାଂ ଧୂମଜାଲେନ ଶିଖାମିବ ବିଭାବସୋଃ । ୩୨ ।
ତାଂ ସ୍ମୃତୀମିବ ସଂଦିଗ୍ଧାମୃଦ୍ଧିଂ ନିପତିତାମିବ ।
ବିହତାମିବ ଚ ଶ୍ରଦ୍ଧାମାଶାଂ ପ୍ରତିହତାମିବ । ୩୩ ।
ସୋପସର୍ଗାଂ ଯଥା ସିଦ୍ଧିଂ ବୁଦ୍ଧିଂ ସକଲୁଷାମିବ ।
ଅଭୂତେନାପବାଦେନ କୀର୍ତ୍ତିଂ ନିପତିତାମିବ । ୩୪ ।
ରାମୋପରୋଧବ୍ୟଥିତାଂ ରକ୍ଷୋଗଣନିପୀଡ଼ିତାମ୍ ।
ଅବଲାଂ ମୃଗଶାବାକ୍ଷୀଂ ବୀକ୍ଷମାଣାଂ ତତସ୍ତତଃ । ୩୫ ।
ବାଷ୍ପାମ୍ବୁପରିପୂର୍ଣେନ କୃଷ୍ଣବକ୍ରାକ୍ଷିପକ୍ଷ୍ମଣା ।
ବଦନେନାପ୍ରସନ୍ନେନ ନିଃଶ୍ୱସନ୍ତୀଂ ପୁନଃ ପୁନଃ । ୩୬ ।
ମଲପଙ୍କଧରାଂ ଦୀନାଂ ମଣ୍ଡନାର୍ହାମମଣ୍ଡିତାମ୍ ।
ପ୍ରଭାଂ ନକ୍ଷତ୍ରରାଜସ୍ୟ କାଲମେଘୈରିବାବୃତାମ୍ । ୩୭ ।

---

ବ୍ରତପରାୟଣା ତାପସୀପରି ଭୂତଳରେ ଉପବେଶନ କରିଅଛନ୍ତି । ସେ ଖୁବ ସର୍ପରାଜ ବଧୂପରି ଘନ ଘନ ନିଶ୍ୱାସ ତ୍ୟାଗ କରୁଅଛନ୍ତି । ୩୧ । ମହତ୍ ଶୋକ-ଜାଲରେ ଆଚ୍ଛନ୍ନ ହୋଇ ସେ ଆଉ ଶୋଭାପାଉ ନାହାନ୍ତି; ସତେ ଯେପରି ଅଗ୍ନିର ଶିଖା ଧୂମରାଶିରେ ଆବୃତହୋଇ ରହିଅଛି । ୩୨ । ତାଙ୍କର ଅବସ୍ଥା ଅସ୍ପଷ୍ଟାର୍ଥ ଓ ସନ୍ଦେହପୂର୍ଣ୍ଣ ସ୍ମୃତିପରି, ଅଧୋଗତିପ୍ରାପ୍ତ ସମୃଦ୍ଧି ସଦୃଶ, ଅପହତ ଶ୍ରଦ୍ଧାସଦୃଶ, ପ୍ରତିହତ ଆଶାସଦୃଶ, ବିଘ୍ନରାଶିପୂର୍ଣ୍ଣ ସିଦ୍ଧିସଦୃଶ, କଳୁଷିତ ବୁଦ୍ଧିସଦୃଶ ଏବଂ ଅଯଥା ଅପବାଦଗ୍ରସ୍ତ କୀର୍ତ୍ତିସଦୃଶ ଶୋଚନୀୟ ହୋଇପଡ଼ିଅଛି । ୩୩–୩୪ । ରାମଙ୍କ ସେବାରେ ବ୍ୟାଘାତ ହେବାରୁ, ବ୍ୟଥିତା ହୋଇ, ପୁଣି ରାକ୍ଷସମାନଙ୍କ ଦ୍ୱାରା ନିତାନ୍ତ ନିପୀଡ଼ିତା ହୋଇ ସେ ମୃଗନୟନା ଅବଳା କରୁଣଭାବରେ ଇତସ୍ତତଃ ଦୃଷ୍ଟିନିକ୍ଷେପ କରୁଛନ୍ତି ।୩୫। ସେ ତାଙ୍କର କୃଷ୍ଣ ଓ କୁଞ୍ଚିତପକ୍ଷ୍ମଶୋଭିତ ଅଶ୍ରୁପରିପୂର୍ଣ୍ଣ ଅପ୍ରସନ୍ନ-ବଦନରୁ ମୁହୁର୍ମୁହୁ ନିଶ୍ୱାସ ଛାଡ଼ୁଛନ୍ତି ।୩୬। ସେ ସର୍ବଥା ଭୂଷଣପରିଧାନ କରିବାର ଯୋଗ୍ୟା ହେଲେ ମଧ୍ୟ ବର୍ତ୍ତମାନ ଭୂଷଣହୀନା ହୋଇଛନ୍ତି ଏବଂ ମଳପଙ୍କଲିପ୍ତ ହୋଇ ଦୀନଭାବ ଧାରଣ କରିଥିବାରୁ କାଳମେଘଦ୍ୱାରା ଆବୃତ ଚନ୍ଦ୍ରଙ୍କ ପ୍ରଭାପରି ଦେଖା-

ତସ୍ୟ ସଂଦିଦେହେ ବୁଦ୍ଧିସ୍ତଥା ସୀତାଂ ନିରୀକ୍ଷ୍ୟ ଚ ।
ଆମ୍ନାୟାନାମଯୋଗେନ ବିଦ୍ୟାଂ ପ୍ରଶିଥିଳାମିବ । ୩୮ ।
ଦୁଃଖେନ ବୁବୁଧେ ସୀତାଂ ହନୂମାନନଲଂକୃତାମ୍ ।
ସଂସ୍କାରେଣ ଯଥା ହୀନାଂ ବାଚମର୍ଥାନ୍ତରଂ ଗତାମ୍ । ୩୯।
ତାଂ ସମୀକ୍ଷ୍ୟ ବିଶାଳାକ୍ଷୀଂ ରାଜପୁତ୍ରୀମନିନ୍ଦିତାମ୍ ।
ତର୍କୟାମାସ ସୀତେତି କାରଣୈରୁପପାଦୟନ୍ । ୪୦ ।
ବୈଦେହ୍ୟା ଯାନି ଚାଙ୍ଗେଷୁ ତଦା ରାମୋଽନ୍ୱକୀର୍ତ୍ତୟତ୍ ।
ତାନ୍ୟାଭରଣଜାଲାନି ଗାତ୍ରଶୋଭୀନ୍ୟଲକ୍ଷୟତ୍ । ୪୧ ।
ସୁକୃତୌ କର୍ଣ୍ଣବେଷ୍ଟୌ ଚ ଶ୍ୱଦଂଷ୍ଟ୍ରୌ ଚ ସୁସଂସ୍ଥିତୌ ।
ମଣିବିଦ୍ରୁମଚିତ୍ରାଣି ହସ୍ତେଷ୍ୱାଭରଣାନି ଚ । ୪୨ ।
ଶ୍ୟାମାନି ଚିରଯୁକ୍ତତ୍ୱାତ୍ତଥା ସଂସ୍ଥାନବନ୍ତି ଚ ।
ତାନ୍ୟେବୈତାନି ମନ୍ୟେଽହଂ ଯାନି ରାମୋଽନ୍ୱକୀର୍ତ୍ତୟତ୍ ।୪୩।
ତତ୍ର ଯାନ୍ୟବହୀନାନି ତାନ୍ୟହଂ ନୋପଲକ୍ଷୟେ ।
ଯାନ୍ୟସ୍ୟା ନାବହୀନାନି ତାନୀମାନି ନ ସଂଶୟଃ । ୪୪ ।

---

ଯାଉଛନ୍ତି ।୩୭। ବେଦଜ୍ଞାନ ଅଭାବରେ ବିଦ୍ୟା ଯେପରି ଶିଥିଳ ଏବଂ ସନ୍ଦେହାତ୍ମକ ହୋଇଯାଏ, ସେହିପରି ହନୁମାନ୍ ସୀତା ନିରୀକ୍ଷଣ କରନ୍ତେ ତାଙ୍କ ମନରେ ସନ୍ଦେହ ଜାତହେଲା । ୩୮ । ହନୂମାନ୍ ସୀତାଙ୍କୁ ଅଳଙ୍କାରବିହୀନା ଦେଖି ବ୍ୟାକରଣ ସଂସ୍କାରହୀନ ଅର୍ଥାନ୍ତରପ୍ରତିପାଦକ ବାକ୍ୟପରି ବହୁ କଷ୍ଟରେ ତାଙ୍କୁ ଚିହ୍ନିଲେ । ୩୯ । ଅନିନ୍ଦ୍ୟରୂପା ବିଶାଳନୟନା ରାଜପୁତ୍ରୀଙ୍କୁ ଦେଖି ନାନାଯୁକ୍ତିତର୍କଦ୍ୱାରା ସେ ସ୍ଥିରକଲେ ଯେ ଏ ନିଶ୍ଚୟ ସୀତା ।୪୦। ରାମ ସୀତାଙ୍କ ଶରୀରରେ ଯେଉଁସବୁ ଅଳଙ୍କାର ଥିବାର କହିଥିଲେ, ସେହି ସମସ୍ତ ଅଳଙ୍କାର ସେ ତାଙ୍କ ଶରୀରରେ ଥିବାର ମଧ୍ୟ ଲକ୍ଷ୍ୟକଲେ । ୪୧। ସେ ଭାବିଲେ, "ଏହି ଯେଉଁ ସୁଗଠିତ ବାଘନଖ ଦୁଇଟି ଏହାଙ୍କ କର୍ଣ୍ଣରେ ସୁସମ୍ବଦ୍ଧ ହୋଇ ରହିଅଛି ଏବଂ ହସ୍ତରେ ଏହି ଯେଉଁ ମଣିମୁକ୍ତାଖଚିତ ଅଳଙ୍କାରମାନ ରହିଅଛି, ତାହା ବହୁକାଳ ସଂସ୍କାର ଅଭାବରେ ମଳିନ ହୋଇଯାଇ-ଥିଲେ ମଧ୍ୟ, ରାମ ଯେଉଁସବୁ ଅଳଙ୍କାର କଥା କହିଥିଲେ, ଏ ନିଶ୍ଚୟ ସେହି ଅଳଙ୍କାର ।୪୨-୪୩। ସେଥିମଧ୍ୟରୁ ଯେଉଁଗୁଡ଼ିକ ସେ ଋଷ୍ୟମୂକ ପର୍ବତରେ ପକାଇଦେଇଥିଲେ, ମୁଁ କେବଳ ସେଗୁଡ଼ିକ ଦେଖୁନାହିଁ; କିନ୍ତୁ ଯେଉଁଗୁଡ଼ିକ ସେ ଫିଙ୍ଗି ନ ଥିଲେ ଏଗୁଡ଼ିକ ସେହି ଅଳଙ୍କାର, ଏଥିରେ ସନ୍ଦେହ ନାହିଁ । ୪୪ । ଏହାଙ୍କର ଯେଉଁ ସୁବର୍ଣ୍ଣମୟ

ପୀତଂ କନକପଟ୍ଟାଭଂ ସ୍ରସ୍ତଂ ତଦ୍‌ବସନଂ ଶୁଭମ୍ ।
ଉତ୍ତରୀୟଂ ନଗାସକ୍ତଂ ତଦା ଦୃଷ୍ଟଂ ପ୍ଲବଙ୍ଗମୈଃ ।୪୫।
ଭୂଷଣାନି ଚ ମୁଖ୍ୟାନି ଦୃଷ୍ଟାନି ଧରଣୀତଳେ ।
ଅନୟୈବୋପବଦ୍ଧାନି ସ୍ୱନବନ୍ତି ମହାନ୍ତି ଚ । ୪୬ ।
ଇଦଂ ଚିରଗୃହୀତତ୍ୱାଦ୍ ବସନଂ କ୍ଲିଷ୍ଟବତ୍ତରମ୍ ।
ତଥାପ୍ୟନୂନଂ ତଦ୍‌ବର୍ଣ୍ଣଂ ତଥା ଶ୍ରୀମଦ୍ ଯଥେତରମ୍ । ୪୮ ।
ଇୟଂ କନକବର୍ଣ୍ଣାଙ୍ଗୀ ରାମସ୍ୟ ମହିଷୀ ପ୍ରିୟା ।
ପ୍ରଣଷ୍ଟାପି ସତୀ ଯସ୍ୟ ମନସୋ ନ ପ୍ରଣଶ୍ୟତି । ୪୮ ।
ଇୟଂ ସା ଯତ୍କୃତେ ରାମଶ୍ଚତୁର୍ଭିରିହ ତପ୍ୟତେ ।
କାରୁଣ୍ୟେନାନୃଶଂସ୍ୟେନ ଶୋକେନ ମଦନେନ ଚ । ୪୯ ।
ସ୍ତ୍ରୀ ପ୍ରଣଷ୍ଟେତି କାରୁଣ୍ୟାଦାଶ୍ରିତେତ୍ୟାନୃଶଂସ୍ୟତଃ ।
ପତ୍ନୀ ନଷ୍ଟେତି ଶୋକେନ ପ୍ରିୟେତି ମଦନେନ ଚ । ୫୦ ।
ଅସ୍ୟା ଦେବ୍ୟା ଯଥା ରୂପମଙ୍ଗପ୍ରତ୍ୟଙ୍ଗସୌଷ୍ଠବମ୍ ।
ରାମସ୍ୟ ଚ ତଥା ରୂପଂ ତସ୍ୟେୟମସିତେକ୍ଷଣା । ୫୧ ।

---

ଚନ୍ଦ୍ରବିଶିଷ୍ଟ ପୀତବର୍ଣ୍ଣ ଉତ୍ତରୀୟ ବସ୍ତ୍ର ସ୍ଖଳିତହୋଇ ପର୍ବତରେ ପତିତ ହୋଇଥିଲା, ତାକୁହିଁ ସେତେବେଳେ ବାନରମାନେ ଦେଖିଥିଲେ; ଏ କାଢ଼ି ଫିଙ୍ଗିଦେବାରୁ ଯେଉଁସବୁ ମହାମୂଲ୍ୟ ଉତ୍ତମ ଅଳଙ୍କାର ଶବ୍ଦକରି ଧରଣୀତଳେ ପତିତ ହୋଇଥିଲା, ତାହା ଆମ୍ଭେମାନେ ଦେଖିଅଛୁଁ । ୪୫-୪୬ । ଅନେକଦିନ ପିନ୍ଧିଥିବାରୁ ଏହାଙ୍କର ପରିଧେୟ ବସ୍ତ୍ର ଅତିଶୟ ଜୀର୍ଣ୍ଣ ହୋଇଯାଇଛି; ତଥାପି ଏହାର ବର୍ଣ୍ଣ ସେହି ଅନ୍ୟ ଉତ୍ତରୀୟ ବସ୍ତ୍ରପରି ରହିଅଛି । ୪୭ । ଯେ ନିରୁଦ୍ଦିଷ୍ଟ ହୋଇଥିଲେ ମଧ୍ୟ ରାମଙ୍କ ମନରୁ ଅନ୍ତର୍ହିତ ହୋଇ ନାହାନ୍ତି, ଏ ସୁବର୍ଣ୍ଣବର୍ଣ୍ଣା ସେହି ରାମଙ୍କର ପ୍ରିୟମହିଷୀ । ୪୮ । ରାମ ଯାହାଙ୍କ ଲାଗି ବର୍ତ୍ତମାନ କାରୁଣ୍ୟ, ଆନୃଶଂସ୍ୟ, ପରିତାପ ଏବଂ ମଦନଦ୍ୱାରା ଏକସଙ୍ଗରେ ପ୍ରପୀଡ଼ିତ ହେଉଛନ୍ତି, ଏ ନିଶ୍ଚୟ ସେହି ।୪୯। ସ୍ତ୍ରୀ ଅପହୃତା ହୋଇଛନ୍ତି ଏଥିଲାଗି କାତରତା, ତାଙ୍କର ଆଶ୍ରିତା ଏଥିଲାଗି ଦୟା, ପତ୍ନୀ ହଜିଯାଇଛନ୍ତି ବୋଲି ଶୋକ ଏବଂ 'ପ୍ରିୟତମା' ହେତୁରୁ ମଦନ ତାଙ୍କୁ ଦଗ୍ଧ କରୁଅଛି । ୫୦ । ଏ ଦେବୀଙ୍କର ଯେଉଁପରି ରୂପଲାବଣ୍ୟ ଓ ଅଙ୍ଗପ୍ରତ୍ୟଙ୍ଗର ସୌଷ୍ଠବ ଏବଂ ରାମଙ୍କର ଯେ-ପ୍ରକାର ରୂପ, ସେଥିରୁ ବୋଧହେଉଛି, ଏ କୃଷ୍ଣନୟନା ନିଶ୍ଚୟ ତାଙ୍କର । ୫୧ ।

ଅସ୍ୟା ଦେବ୍ୟା ମନସ୍ତସ୍ମିଂସ୍ତସ୍ୟ ଚାସ୍ୟାଂ ପ୍ରତିଷ୍ଠିତମ୍ ।
ତେନେୟଂ ସ ଚ ଧର୍ମାତ୍ମା ମୁହୂର୍ତ୍ତମପି ଜୀବତି । ୫୨ ।
ଦୁଷ୍କରଂ କୃତବାନ୍ ରାମୋ ହୀନୋ ଯଦନୟା ପ୍ରଭୁଃ ।
ଧାରୟତ୍ୟାତ୍ମନୋ ଦେହଂ ନ ଶୋକେନାବସୀଦତି । ୫୩ ।
ଏବଂ ସୀତାଂ ତଥା ଦୃଷ୍ଟ୍ୱା ହୃଷ୍ଟଃ ପବନସମ୍ଭବଃ ।
ଜଗାମ ମନସା ରାମଂ ପ୍ରଶଶଂସ ଚ ତଂ ପ୍ରଭୁମ୍ । ୫୪ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ସୁନ୍ଦରକାଣ୍ଡେ ସୀତୋପଲମ୍ଭୋ ନାମ ପଞ୍ଚଦଶଃ ସର୍ଗଃ ।

---

## ଷୋଡଶଃ ସର୍ଗଃ

### ହନୂମତ୍‌ପରୀତାପଃ

ପ୍ରଶସ୍ୟ ତୁ ପ୍ରଶସ୍ତବ୍ୟାଂ ସୀତାଂ ତାଂ ହରିପୁଙ୍ଗବଃ ।
ଗୁଣାଭିରାମଂ ରାମଂ ଚ ପୁନଶ୍ଚିନ୍ତାପରୋଽଭବତ୍ । ୧ ।

---

ଦେବୀଙ୍କର ମନ ତାଙ୍କଠାରେ ଏବଂ ତାଙ୍କର ମନ ଏହାଙ୍କଠାରେ ଦୃଢ଼ଭାବରେ ସ୍ଥାପିତ । ସେହିହେତୁରୁ ଏ ଏବଂ ସେ ଧର୍ମାତ୍ମା ଏହି ମୁହୂର୍ତ୍ତପର୍ଯ୍ୟନ୍ତ ବଞ୍ଚିରହିଛନ୍ତି ।୫୨। ଏହାଙ୍କ ବିରହରେ ପ୍ରଭୁ ରାମ ଯେ ଶୋକରେ ଅବସନ୍ନ ନ ହୋଇ ନିଜର ଦେହଧାରଣ କରିଛନ୍ତି, ଏହା ଅତି ଦୁଃସାଧ୍ୟ କାର୍ଯ୍ୟ ବୋଲି କହିବାକୁ ହେବ" । ୫୩ । ପବନନନ୍ଦନ ସୀତାଙ୍କୁ ସେତେବେଳେ ଏହିପରିଭାବରେ ଦେଖି ହୃଷ୍ଟଚିତ୍ତରେ ମନେ ମନେ ରାମଙ୍କ ନିକଟକୁ ଚାଲିଗଲେ ଏବଂ ସେହି ପ୍ରଭୁଙ୍କୁ ପ୍ରଶଂସା କରିବାକୁ ଲାଗିଲେ । ୫୪ ।

---

## ୧୬ଶ ସର୍ଗ

### ( ହନୁମାନଙ୍କର ମନୋବେଦନା )

ବାନରଶ୍ରେଷ୍ଠ ହନୁମାନ୍ ପ୍ରଶଂସନୀୟା ସୀତା ଏବଂ ରମଣୀୟ ଗୁଣସମ୍ପନ୍ନ ରାମଙ୍କର ଗୁଣକୀର୍ତ୍ତନ କରିସାରି ପୁନର୍ବାର ଚିନ୍ତାମଗ୍ନହେଲେ । ୧ । ମୁହୂର୍ତ୍ତମାତ୍ର

ସ ମୁହୂର୍ତ୍ତମିବ ଧ୍ୟାତ୍ୱା ବାଷ୍ପପର୍ଯ୍ୟାକୁଲେକ୍ଷଣଃ ।
ସୀତାମାଶ୍ରିତ୍ୟ ତେଜସ୍ୱୀ ହନୁମାନ୍ ବିଲଲାପ ହ ।୨।
ମାନ୍ୟା ଗୁରୁବିନୀତସ୍ୟ ଲକ୍ଷ୍ମଣସ୍ୟ ଗୁରୁପ୍ରିୟା ।
ଯଦି ସୀତା ହି ଦୁଃଖାର୍ତ୍ତା କାଲୋ ହି ଦୁରତିକ୍ରମଃ ।୩।
ରାମସ୍ୟ ବ୍ୟବସାୟଜ୍ଞା ଲକ୍ଷ୍ମଣସ୍ୟ ଚ ଧୀମତଃ ।
ନାତ୍ୟର୍ଥଂ କ୍ଷୁଭ୍ୟତେ ଦେବୀ ଗଙ୍ଗେବ ଜଲଦାଗମେ ।୪।
ତୁଲ୍ୟଶୀଲବୟୋବୃତ୍ତାଂ ତୁଲ୍ୟାଭିଜନଲକ୍ଷଣାମ୍ ।
ରାଘବୋଽର୍ହତି ବୈଦେହୀଂ ତଂ ଚେୟମସିତେକ୍ଷଣା ।୫।
ତାଂ ଦୃଷ୍ଟ୍ୱା ନବହେମାଭାଂ ଲୋକକାନ୍ତାମିବ ଶ୍ରିୟମ୍ ।
ଜଗାମ ମନସା ରାମଂ ବଚନଂ ଚେଦମବ୍ରବୀତ୍ ।୬।

ଅସ୍ୟା ହେତୋ ବିଶାଲାକ୍ଷ୍ୟା ହତୋ ବାଲୀ ମହାବଲଃ ।
ରାବଣପ୍ରତିମୋ ବୀର୍ଯ୍ୟେ କବନ୍ଧଶ୍ଚ ନିପାତିତଃ ।୭।

ବିରାଧଶ୍ଚ ହତଃ ସଂଖ୍ୟେ ରାକ୍ଷସୋ ଭୀମବିକ୍ରମଃ ।
ବନେ ରାମେଣ ବିକ୍ରମ୍ୟ ମହେନ୍ଦ୍ରେଣେବ ଶମ୍ବରଃ ।୮।

---

ଚିନ୍ତାକରି ତେଜସ୍ୱୀ ହନୁମାନ୍ ବାଷ୍ପପୂର୍ଣ୍ଣ ନୟନରେ ସୀତାଙ୍କ ଲାଗି ବିଳାପ କରିବାକୁ ଲାଗିଲେ ।୨। ସେ ଭାବିଲେ, "ଗୁରୁଭକ୍ତ ଲକ୍ଷ୍ମଣଙ୍କର ଗୁରୁପତ୍ନୀ ଏବଂ ମାନନୀୟା ହୋଇ ମଧ୍ୟ ଯଦି ସୀତାଙ୍କୁ ଏପରି ଦୁଃଖକାତର ହେବାକୁ ପଡ଼ିଲା, ତେବେ କାଳକୁ ଅତିକ୍ରମ କରିବା ଦୁଃସାଧ୍ୟ ବୋଲି ବୁଝିବାକୁ ହେବ ।୩। ସୀତାଦେବୀ ରାମ ଏବଂ ଧୀମାନ୍ ଲକ୍ଷ୍ମଣଙ୍କର ପରାକ୍ରମ ଜାଣନ୍ତି; ସେହିହେତୁରୁ ବର୍ଷାଗମରେ ଗଙ୍ଗାନଦୀପରି ଅତିମାତ୍ରାରେ କ୍ଷୁବ୍ଧହୋଇ ପଡ଼ିନାହାନ୍ତି ।୪। ସ୍ୱଭାବ, ବୟସ ଚରିତ, କୁଳ ଓ ସୁଲକ୍ଷଣ ବିଷୟରେ ଉଭୟେ ସମାନ ହୋଇଥିବାରୁ ସୀତା ରାମଙ୍କର ଉପଯୁକ୍ତା ଏବଂ ରାମ ମଧ୍ୟ ଏ କୃଷ୍ଣନୟନାଙ୍କର ଏକାନ୍ତ ଉପଯୁକ୍ତ" ।୫। ହନୁମାନ୍ ସ୍ୱଚ୍ଛସୁବର୍ଣ୍ଣବର୍ଣ୍ଣା, ଲକ୍ଷ୍ମୀଙ୍କ ପରି ଲୋକମାନଙ୍କର ଆନନ୍ଦଦାୟିନୀ ସେହି ସୀତାଙ୍କୁ ଦେଖି ମନମଧ୍ୟରେ ରାମଙ୍କ କଥା ଚିନ୍ତାକଲେ ଏବଂ କହିଲେ ।୬। "ଏହି ବିଶାଳାକ୍ଷୀ ସୀତାଙ୍କ ଲାଗିହିଁ ମହାବଳବାନ୍ ବାଳୀ ନିହତହେଲା ଏବଂ ରାବଣସଦୃଶ ବୀର୍ଯ୍ୟବାନ୍ କବନ୍ଧ ମଧ୍ୟ ନିହତହେଲା ।୭। ଇନ୍ଦ୍ର ଯେପରି ସମ୍ବରାସୁରକୁ ନାଶକରିଥିଲେ, ସେହିପରି ବନମଧ୍ୟରେ ବିକ୍ରମ ପ୍ରକାଶକରି ରାମ ଏହାଙ୍କ ଲାଗି ଭୀମପରାକ୍ରମଶାଳୀ ବିରାଧକୁ ଯୁଦ୍ଧରେ ମାରିଲେ ।୮। ଜନସ୍ଥାନରେ

ଚତୁର୍ଦ୍ଦଶ ସହସ୍ରାଣି ରକ୍ଷସାଂ ଭୀମକର୍ମଣାମ୍ ।
ନିହତାନି ଜନସ୍ଥାନେ ଶରୈରଗ୍ନିଶିଖୋପମୈଃ । ୯ ।
ଖରଶ୍ଚ ନିହତଃ ସଂଖ୍ୟେ ତ୍ରିଶିରାଶ୍ଚ ନିପାତିତଃ ।
ଦୂଷଣଶ୍ଚ ମହାତେଜା ରାମେଣ ବିଦିତାତ୍ମନା । ୧୦ ।
ଐଶ୍ୱର୍ଯ୍ୟଂ ବାନରାଣାଂ ଚ ଦୁର୍ଲଭଂ ବାଲିପାଳିତମ୍ ।
ଅସ୍ୟା ନିମିତ୍ତେ ସୁଗ୍ରୀବଃ ପ୍ରାପ୍ତବାଂଲ୍ଲୋକବିଶ୍ରୁତଃ । ୧୧ ।
ସାଗରଶ୍ଚ ମୟାକ୍ରାନ୍ତଃ ଶ୍ରୀମାନ୍ନଦନଦୀପତିଃ ।
ଅସ୍ୟା ହେତୋର୍ବିଶାଲାକ୍ଷ୍ୟାଃ ପୁରୀ ଚେୟଂ ନିରୀକ୍ଷିତା । ୧୨ ।
ଯଦି ରାମ ସମୁଦ୍ରାନ୍ତାଂ ମେଦିନୀଂ ପରିବର୍ତ୍ତୟେତ୍ ।
ଅସ୍ୟାଃ କୃତେ ଜଗଚ୍ଚାପି ଯୁକ୍ତମିତ୍ୟେବ ମେ ମତିଃ । ୧୩ ।
ରାଜ୍ୟଂ ବା ତ୍ରିଷୁ ଲୋକେଷୁ ସୀତା ବା ଜନକାତ୍ମଜା ।
ତ୍ରୈଲୋକ୍ୟରାଜ୍ୟଂ ସକଳଂ ସୀତାୟା ନାପ୍ନୁୟାତ୍କଳାମ୍ ୧୪ ।
ଇୟଂ ସା ଧର୍ମଶୀଳସ୍ୟ ଜନକସ୍ୟ ମହାତ୍ମନଃ ।
ସୁତା ମୈଥିଲରାଜସ୍ୟ ସୀତା ଭର୍ତ୍ତୃଦୃଢ଼ବ୍ରତା । ୧୫ ।
ଉତ୍ଥିତା ମେଦିନୀଂ ଭିତ୍ତ୍ୱା କ୍ଷେତ୍ରେ ହଳମୁଖକ୍ଷତେ ।
ପଦ୍ମରେଣୁନିଭୈଃ କୀର୍ଣ୍ଣା ଶୁଭୈଃ କେଦାରପାଂସୁଭିଃ । ୧୬ ।

---

ଚୌଦ ସହସ୍ର ଭୀମକର୍ମା ରାକ୍ଷସ ଅଗ୍ନିଶିଖାସଦୃଶ ଶରରାଜିଦ୍ୱାରା ନିହତହୋଇଲେ । ୯ । ମହାତ୍ମା ରାମ ଏହାଙ୍କଲାଗି ଖର, ତ୍ରିଶିର ଏବଂ ମହାତେଜା ଦୂଷଣକୁ ନିପାତକଲେ ।୧୦। ଜଗତବିଖ୍ୟାତ ସୁଗ୍ରୀବ ଏହାଙ୍କ ହେତୁରୁହିଁ ବାଳିପାଳିତ ବାନରମାନଙ୍କ ଉପରେ ଦୁର୍ଲ୍ଲଭ ଆଧିପତ୍ୟ ପ୍ରାପ୍ତହୋଇଲେ । ୧୧ । ଏହି ବିଶାଳାକ୍ଷୀଙ୍କ ଲାଗି ମୁଁ ନଦ-ନଦୀପତି ସୌନ୍ଦର୍ଯ୍ୟସମ୍ପନ୍ନ ସମୁଦ୍ରକୁ ଲଙ୍ଘନ କଲି ଏବଂ ଏ ଲଙ୍କାପୁରୀ ଆସି ଦେଖିଲି । ୧୨ । ଏହାଙ୍କ ଲାଗି ରାମ ଯଦି ସମଗ୍ର ସସାଗରା ପୃଥିବୀ ଏବଂ ନିଖିଳ ଜଗତକୁ ଓଲଟପାଲଟ କରିଦିଅନ୍ତି, ତାହାହେଲେ ତାହା ମଧ୍ୟ ଉପଯୁକ୍ତ ହେବ ବୋଲି ମୋର ମନେହୁଏ ।୧୩। ତ୍ରୈଲୋକ୍ୟର ରାଜତ୍ୱ ଏବଂ ଜନକନନ୍ଦିନୀ ସୀତା ଏ ଉଭୟମଧ୍ୟରେ ତୁଳନାକଲେ ସମଗ୍ର ତ୍ରୈଲୋକ୍ୟ ରାଜ୍ୟ ମଧ୍ୟ ସୀତାଙ୍କର ଗୋଟିଏମାତ୍ର କଳାସଙ୍ଗେ ସମାନ ହେବ ନାହିଁ । ୧୪ । ଏ ସେହି ଧର୍ମଶୀଳ ମିଥିଳାଧୀଶ୍ୱର ଜନକରାଜାଙ୍କର କନ୍ୟା ଦୃଢ଼ପତିବ୍ରତା ସୀତା ପଦ୍ମରେଣୁସଦୃଶ ଶସ୍ୟକ୍ଷେତ୍ରର ପବିତ୍ର ଧୂଳିରେ ଆଚ୍ଛନ୍ନହୋଇ ହଳଦ୍ୱାରା ବିଦାରିତ କ୍ଷେତ୍ରରୁ ଭୂମିଭେଦକରି ଉତ୍ଥିତ ହୋଇଥିଲେ । ୧୫-୧୬ ।

ବିକ୍ରାନ୍ତସ୍ୟାର୍ଯ୍ୟଶୀଲସ୍ୟ ସଂଯୁଗେଷ୍ୱନିବର୍ତ୍ତିନଃ ।
ସ୍ନୁଷା ଦଶରଥସ୍ୟୈଷା ଜ୍ୟେଷ୍ଠା ରାଜ୍ଞୋ ଯଶସ୍ୱିନୀ । ୧୭ ।
ଧର୍ମଜ୍ଞସ୍ୟ କୃତଜ୍ଞସ୍ୟ ରାମସ୍ୟ ବିଦିତାତ୍ମନଃ ।
ଇୟଂ ସା ଦୟିତା ଭାର୍ଯ୍ୟା ରାକ୍ଷସୀବଶମାଗତା । ୧୮ ।
ସର୍ବାନ୍ ଭୋଗାନ୍ ପରିତ୍ୟଜ୍ୟ ଭର୍ତ୍ତୃସ୍ନେହବଳାତ୍କୃତା ।
ଅଚିନ୍ତୟିତ୍ୱା କଷ୍ଟାନି ପ୍ରବିଷ୍ଟା ନିର୍ଜ୍ଜନଂ ବନମ୍ । ୧୯ ।
ସଂତୁଷ୍ଟା ଫଳମୂଳେନ ଭର୍ତ୍ତୃଶୁଶ୍ରୂଷଣେରତା ।
ଯା ପରାଂ ଭଜତେ ପ୍ରୀତିଂ ବନେଽପି ଭବନେ ଯଥା । ୨୦ ।
ସେୟଂ କନକବର୍ଣ୍ଣାଙ୍ଗୀ ନିତ୍ୟସୁସ୍ମିତଭାଷିଣୀ ।
ସହତେ ଯାତନାମେତାମନର୍ଥାନାମଭାଗିନୀ । ୨୧ ।
ଇମାଂ ତୁ ଶୀଳସଂପନ୍ନାଂ ଦ୍ରଷ୍ଟୁମିଚ୍ଛତି ରାଘବଃ ।
ରାବଣେନ ପ୍ରମଥିତାଂ ପ୍ରପାମିବ ପିପାସିତଃ । ୨୨ ।
ଅସ୍ୟା ନୂନଂ ପୁନର୍ଲ୍ଲାଭାଦ୍ରାଘବଃ ପ୍ରୀତିମେଷ୍ୟତି ।
ରାଜା ରାଜ୍ୟପରିଭ୍ରଷ୍ଟଃ ପୁନଃ ପ୍ରାପ୍ୟେବ ମେଦିନୀମ୍ । ୨୩ ।
କାମଭୋଗୈଃ ପରିତ୍ୟକ୍ତା ହୀନା ବନ୍ଧୁଜନେନ ଚ ।
ଧାରୟତ୍ୟାତ୍ମନୋ ଦେହଂ ତତ୍ସମାଗମକାଂକ୍ଷିଣୀ । ୨୪ ।

---

ଏ ସେହି ଆର୍ଯ୍ୟସ୍ୱଭାବ, ଯୁଦ୍ଧରେ ଅପରାଙ୍ମୁଖ, ରାଜା ଦଶରଥଙ୍କର ଯଶସ୍ୱିନୀ ଜ୍ୟେଷ୍ଠା-ପୁତ୍ରବଧୂ । ୧୭ । ଏ ସେହି ଧର୍ମଜ୍ଞ, କୃତଜ୍ଞ, ବିଦିତାତ୍ମା ରାମଙ୍କର ପ୍ରିୟତମା ଭାର୍ଯ୍ୟା, ଏବେ ରାକ୍ଷସୀମାନଙ୍କର ବଶବର୍ତ୍ତିନୀ ହୋଇଛନ୍ତି । ୧୮ । ସେ ସ୍ୱାମିସ୍ନେହର ବଶବର୍ତ୍ତିନୀ ହୋଇ, ସମସ୍ତ ରାଜଭୋଗ ପରିତ୍ୟାଗ କରି, କୌଣସି କଷ୍ଟକୁ ଭ୍ରୂକ୍ଷେପ ନ କରି, ନିର୍ଜନ ବନରେ ପ୍ରବେଶ କରିଥିଲେ । ୧୯ । ସେ ସ୍ୱାମୀ ଶୁଶ୍ରୂଷାପରାୟଣା ହୋଇ ଏବଂ ଫଳମୂଳ ଆହାରରେ ସନ୍ତୁଷ୍ଟହୋଇ ବନରେ ହିଁ ମଧ୍ୟ ନିଜ ଘରପରି ଉତ୍କୃଷ୍ଟ ପ୍ରୀତିଲାଭ କରୁଥିଲେ । ୨୦ । ଯେ କେବେ କୌଣସି ବିପଦ ଭୋଗି ନ ଥିଲେ ଏବଂ ସର୍ବଦା ହସି ହସି ବାକ୍ୟାଳାପ କରୁଥିଲେ, ସେହି ହେମାଙ୍ଗୀ ସୀତା ଏବେ ଏହି ଯାତନା ସହୁଅଛନ୍ତି । ୨୧ । ତୃଷାର୍ତ୍ତ ବ୍ୟକ୍ତି ପାଣିଯୁଆ ଶାଳା ଦେଖିବା ପାଇଁ ଉତ୍କଣ୍ଠିତ ହେଲାପରି, ରାବଣକର୍ତ୍ତୃକ ନିପୀଡ଼ିତା ଏହି ସଚ୍ଚରିତ୍ରସମ୍ପନ୍ନା ସୀତାଙ୍କୁ ଦେଖିବାପାଇଁ ରାମ ଇଚ୍ଛାକରୁଛନ୍ତି । ୨୨ । ରାଜ୍ୟଚ୍ୟୁତ ରାଜା ପୁନର୍ବାର ରାଜ୍ୟ ପାଇଲେ ଯେପରି ଆନନ୍ଦିତ ହୁଅନ୍ତି, ଏହାଙ୍କୁ ପୁନର୍ବାର ପାଇଲେ ରାଘବ ନିଶ୍ଚୟ ସେହିପରି ପ୍ରୀତିଲାଭ କରିବେ । ୨୩ । ଏ ମଧ୍ୟ କାମଭୋଗରୁ ବଞ୍ଚିତା ଏବଂ ବନ୍ଧୁଜନଙ୍କଠାରୁ ବିଚ୍ଛିନ୍ନହୋଇ

ନୈଷା ପଶ୍ୟତି ରାକ୍ଷସ୍ୟୋ ନେମାନ୍ ପୁଷ୍ପଫଳଦ୍ରୁମାନ୍ ।
ଏକସ୍ଥହୃଦୟା ନୂନଂ ରାମମେବାନୁପଶ୍ୟତି । ୨୫ ।
ଭର୍ତ୍ତା ନାମ ପରଂ ନାର୍ଯ୍ୟାଃ ଶୋଭନଂ ଭୂଷଣାଦପି ।
ଏଷା'ହି ରହିତା ତେନ ଶୋଭନାର୍ହା ନ ଶୋଭତେ । ୨୬ ।
ଦୁଷ୍କରଂ କୁରୁତେ ରାମୋ ହୀନୋ ଯଦନୟା ପ୍ରଭୁଃ ।
ଧାରୟତ୍ୟାତ୍ମନୋ ଦେହଂ ନ ଦୁଃଖେନାବସୀଦତି । ୨୭ ।
ଇମାମସିତକେଶାନ୍ତାଂ ଶତପତ୍ରନିଭେକ୍ଷଣାମ୍ ।
ସୁଖାର୍ହାଂ ଦୁଃଖିତାଂ ଜ୍ଞାତ୍ୱା ମମାପି ବ୍ୟଥିତଂ ମନଃ । ୨୮ ।

କ୍ଷିତିକ୍ଷମା ପୁଷ୍କରସଂନିଭେକ୍ଷଣା
ଯା ରକ୍ଷିତା ରାଘବଲକ୍ଷ୍ମଣାଭ୍ୟାମ୍ ।
ସା ରାକ୍ଷସୀଭିର୍ବିକୃତେକ୍ଷଣାଭିଃ
ସଂରକ୍ଷ୍ୟତେ ସଂପ୍ରତି ବୃକ୍ଷମୂଲେ ॥ ୨୯ ।
ହିମହତନଳିନୀବ ନଷ୍ଟଶୋଭା
ବ୍ୟସନପରମ୍ପରୟା ନିପୀଡ଼୍ୟମାନା ।
ସହଚରରହିତେବ ଚକ୍ରବାକୀ
ଜନକସୁତା କୃପଣାଂ ଦଶାଂ ପ୍ରପନ୍ନା । ୩୦ ।

---

ତାଙ୍କର ସହିତ ମିଳିତହେବା ଅଭିଳାଷରେ ନିଜର ଦେହଧରି ରହିଛନ୍ତି । ୨୪ । ଏ ରାକ୍ଷସୀମାନଙ୍କ ଆଡ଼କୁ କିମ୍ବା ଏହି ପୁଷ୍ପଫଳପୂର୍ଣ୍ଣ ବୃକ୍ଷ ଆଡ଼କୁ ମୋଟେ ଚାହୁଁ ନାହାନ୍ତି; କେବଳ ଏକାଗ୍ରମନରେ ରାମଙ୍କୁହିଁ ଚିନ୍ତାକରୁଛନ୍ତି ।୨୫। ନାରୀମାନଙ୍କର ସ୍ୱାମୀହିଁ ଭୂଷଣ ଅପେକ୍ଷା ଅଧିକତର ସୌନ୍ଦର୍ଯ୍ୟ ସମ୍ପାଦକ, ସେଥିପାଇଁ ଏହି ସ୍ୱାମି-ବିରହିତା ସୀତା ଅଳଙ୍କାର ପରିଧାନଯୋଗ୍ୟା ହେଲେ ମଧ୍ୟ ଶୋଭାପାଉନାହାନ୍ତି ।୨୬। ପ୍ରଭୁ ରାମ ଯେ ଏହାଙ୍କ ବିରହରେ ନିଜର ଦେହ ଧାରଣକରି ରହିଛନ୍ତି ଏବଂ ଦୁଃଖରେ ଅବସନ୍ନ ହୋଇ ପଡ଼ୁ ନାହାନ୍ତି, ତଦ୍ଦ୍ୱାରା ସେ ନିଶ୍ଚୟ ଦୁଃସାଧ୍ୟ କାର୍ଯ୍ୟସାଧନ କରୁଅଛନ୍ତି । ୨୭ । ଏହି କୃଷ୍ଣକେଶା, ପଦ୍ମପଲାଶଲୋଚନା, ସୁଖଯୋଗ୍ୟା ସୀତାଙ୍କୁ ଏପରି ଦୁଃଖିତା ଜାଣି ମୋର ମନ ମଧ୍ୟ ବ୍ୟଥିତ ହେଉଅଛି ।୨୮। ପୃଥିବୀସଦୃଶ ଧୈର୍ଯ୍ୟ-ଶାଳିନୀ ପଦ୍ମଲୋଚନା ଯେଉଁ ସୀତାଙ୍କୁ ରାମ ଲକ୍ଷ୍ମଣ ଦୁହେଁ ଜଗିରହିଥିଲେ, ବର୍ତ୍ତମାନ ତାଙ୍କୁ ବିକୃତଦର୍ଶନା ରାକ୍ଷସୀମାନେ ବୃକ୍ଷମୂଳରେ ଜଗିରହିଛନ୍ତି । ୨୯ । ଉପର୍ଯ୍ୟୁପରି ବ୍ୟସନଦ୍ୱାରା ନିତାନ୍ତ ପୀଡ଼ିତହୋଇ ହିମପୀଡ଼ିତ ପଦ୍ମପୁଷ୍ପପରି ଏହାଙ୍କର ସୌନ୍ଦର୍ଯ୍ୟ ନଷ୍ଟହୋଇପଡ଼ିଅଛି । ଜନକନନ୍ଦିନୀ ନିଜର ପ୍ରିୟବିରହିତ ଚକ୍ରବାକୀପରି ବର୍ତ୍ତମାନ

ଅସ୍ୟା ହ୍ରି ପୁଷ୍ପାବନତାଗ୍ରଶାଖାଃ
ଶୋକଂ ଦୃଢ଼ଂ ବୈ ଜନୟନ୍ତ୍ୟଶୋକାଃ ।
ହିମବ୍ୟପାୟେନ ଚ ଶୀତରଶ୍ମି-
ରଭ୍ୟୁତ୍ଥିତୋ ନୈକସହସ୍ରରଶ୍ମିଃ । ୩୧ ।
ଇତ୍ୟେବମର୍ଥଂ କପିରନ୍ୱବେକ୍ଷ୍ୟ
ସୀତେୟମିତ୍ୟେବ ତୁ ଜାତବୁଦ୍ଧିଃ ।
ସଂଶ୍ରିତ୍ୟ ତସ୍ମିନ୍ନିଷସାଦ ବୃକ୍ଷେ
ବଲୀ ହରୀଣାମୃଷଭସ୍ତରସ୍ୱୀ । ୩୨ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତସହସ୍ରିକାୟାମ୍ ସଂହିତାୟାଂ ସୁନ୍ଦରକାଣ୍ଡେ ହନୂମତ୍‌ପରିତାପୋ ନାମ ଷୋଡ଼ଶଃ ସର୍ଗଃ ।

---

# ସପ୍ତଦଶଃ ସର୍ଗଃ

## ରାକ୍ଷସୀପରିବାରଃ

ତତଃ କୁମୁଦଷଣ୍ଡାଭୋ ନିର୍ମଲଂ ନିର୍ମଲୋଦୟଃ ।
ପ୍ରଜଗାମ ନଭଶ୍ଚନ୍ଦ୍ରୋ ହଂସୋ ନୀଲମିବୋଦକମ୍ । ୧ ।

---

ଶୋଚନୀୟ ଦଶା ଲାଭ କରିଅଛନ୍ତି । ୩୦ । ପୁଷ୍ପଭାରନତ ଅଶୋକବୃକ୍ଷମାନଙ୍କର ଅଗ୍ରଶାଖାସବୁ ଏହାଙ୍କ ମନରେ ଗଭୀର ଶୋକ ଜାତ କରାଉଅଛନ୍ତି । ଶୀତଋତୁର ଶେଷରେ ସହସ୍ର କିରଣ ବିସ୍ତାରକରି ଉଦିତ ହୋଇଥିବା ଚନ୍ଦ୍ର ମଧ୍ୟ ଏହାଙ୍କର ଶୋକ ଜନ୍ମାଉଅଛନ୍ତି" ।୩୧। ବଳଶାଳୀ ବେଗବାନ୍ ବାନରଶ୍ରେଷ୍ଠ ହନୁମାନ୍ ଏହିପରି ସମସ୍ତ ବିଷୟ ପର୍ଯ୍ୟାଲୋଚନା କରି 'ଏ ନିଶ୍ଚୟ ସୀତା' ଏହି କଥା ମନରେ ସ୍ଥିରକରି ସେହି ବୃକ୍ଷକୁ ଆଶ୍ରୟକରି ଅବସ୍ଥାନ କରିବାକୁ ଲାଗିଲେ । ୩୨ ।

---

## ୧୭ଶ ସର୍ଗ

( ରାକ୍ଷସୀପରିବେଷ୍ଟିତା ସୀତା )

ଅନନ୍ତର ସ୍ୱଚ୍ଛଭାବରେ ପ୍ରକାଶିତ କୁମୁଦରାଜସଦୃଶ ଶୁଭ୍ରବର୍ଣ୍ଣ ଚନ୍ଦ୍ର, ହଂସ ନୀଳଜଳରାଶିମଧ୍ୟକୁ ଗମନ କଲପରି ନିର୍ମଳ ନଭୋମଣ୍ଡଳରେ ଅଧିକ ଉର୍ଦ୍ଧ୍ୱକୁ

ସାହାଯ୍ୟମିବ କୁର୍ବନ୍ ସ ପ୍ରଭୟା ନିର୍ମଳପ୍ରଭଃ ।
ଚନ୍ଦ୍ରମା ରଶ୍ମିଭିଃ ଶୀତୈଃ ସିଷେବେ ପବନାତ୍ମଜମ୍ । ୨ ।
ସ ଦଦର୍ଶ ତତଃ ସୀତାଂ ପୂର୍ଣ୍ଣଚନ୍ଦ୍ରନିଭାନନାମ୍ ।
ଶୋକଭାରୈରିବ ନ୍ୟସ୍ତାଂ ଭାରୈର୍ନାବମିବାମ୍ଭସି । ୩ ।
ଦିଦୃକ୍ଷମାଣୋ ବୈଦେହୀଂ ହନୂମାନ୍ମାରୁତାତ୍ମଜଃ ।
ସ ଦଦର୍ଶାବିଦୂରସ୍ଥା ରାକ୍ଷସୀର୍ଘୋରଦର୍ଶନାଃ । ୪ ।
ଏକାକ୍ଷୀମେକକର୍ଣ୍ଣାଂ ଚ କର୍ଣ୍ଣପ୍ରାବରଣାଂ ତଥା ।
ଅକର୍ଣ୍ଣାଂ ଶଙ୍କୁକର୍ଣ୍ଣାଂ ଚ ମସ୍ତକୋଚ୍ଛ୍ୱାସନାସିକାମ୍ । ୫ ।
ଅତିକାୟୋତ୍ତମାଙ୍ଗୀଂ ଚ ତନୁଦୀର୍ଘଶିରୋଧରାମ୍ ।
ଧ୍ୱସ୍ତକେଶୀଂ ତଥାକେଶୀଂ କେଶକମ୍ବଳଧାରିଣୀମ୍ । ୬ ।
ଲମ୍ବକର୍ଣ୍ଣଲଲାଟାଂ ଚ ଲମ୍ବୋଦରପୟୋଧରାମ୍ ।
ଲମ୍ବୋଷ୍ଠୀଂ ଚିବୁକୋଷ୍ଠୀଂ ଚ ଲମ୍ବାସ୍ୟାଂ ଲମ୍ବଜାନୁକାମ୍ ।୭।
ହ୍ରସ୍ୱାଂ ଦୀର୍ଘାଂ ଚ କୁବ୍ଜାଂ ଚ ବିକଟାଂ ବାମନାଂ ତଥା ।
କରାଳାଂ ଭୁଗ୍ନବକ୍ତ୍ରାଂ ଚ ପିଙ୍ଗାକ୍ଷୀଂ ବିକୃତାନନାମ୍ । ୮ ।

---

ଗମନ କଲେ । ୧ । ନିର୍ମଳପ୍ରଭ ଚନ୍ଦ୍ର ନିଜର ପ୍ରଭାଦ୍ୱାରା ପବନନନ୍ଦନଙ୍କର ସାହାଯ୍ୟକରି ଶୀତଳ ଜ୍ୟୋତ୍ସ୍ନାରାଜିଦ୍ୱାରା ତାଙ୍କର ସେବା କରିବାକୁ ଲାଗିଲେ । ୨ । ଅନନ୍ତର ହନୁମାନ୍ ଦେଖିଲେ, ଭାରାକ୍ରାନ୍ତ ନୌକା ଯେପରି ଜଳରେ ମଗ୍ନହୁଏ; ପୂର୍ଣ୍ଣଚନ୍ଦ୍ରବଦନା ସୀତା ସେହିପରି ଶୋକଭାରାକ୍ରାନ୍ତା ଏବଂ ଚିନ୍ତାମଗ୍ନା ହୋଇ ରହିଛନ୍ତି । ୩ । ପବନନନ୍ଦନ ହନୁମାନ୍ ବୈଦେହୀଙ୍କୁ ଦେଖିବାପାଇଁ ଇଚ୍ଛାକରି ଗଛଆଡ଼େ ଚାହିଁ ଚାହିଁ ଅନତିଦୂରରେ ବସିରହିଥିବା ଘୋରଦର୍ଶନା ରାକ୍ଷସୀମାନଙ୍କୁ ଦେଖିଲେ । ୪ । କାହାର ଗୋଟିଏ କର୍ଣ୍ଣ, କାହାର ଗୋଟିଏ ଚକ୍ଷୁ, କାହାର ବା କର୍ଣ୍ଣ ସମସ୍ତ ମୁଖକୁ ଘୋଡ଼ାଇ ପକାଇଛି, କାହାର ମୋଟେ କର୍ଣ୍ଣ ନାହିଁ, କାହାର ବା କର୍ଣ୍ଣ ଶଙ୍କୁସଦୃଶ, କାହାର ବା ନାସିକା ଉର୍ଦ୍ଧ୍ୱକୁ ମସ୍ତକ ଉପରକୁ ଉଠିଯାଇଛି । ୫ । କାହାର ମସ୍ତକ ଅତି ବିଶାଳ, କାହାର ବା ଗ୍ରୀବା ସରୁ ଓ ଦୀର୍ଘ, କାହାର କେଶ ଆଲୁଳାୟିତ ହୋଇଛି, କାହାର ବା କେଶ ଆଦୌ ନାହିଁ, ପୁଣି କାହାର ଶରୀର-ଲୋମ ତାକୁ କମ୍ବଳପରି ଘୋଡ଼ାଇପକାଇଛି । ୬ । କାହାର କର୍ଣ୍ଣ ଓହଳିପଡ଼ିଛି, କାହାର ଲଲାଟ ଅତି ଲମ୍ବ, କାହାର ଉଦର ଲମ୍ବମାନ, କାହାର କୁଚ ଅତି ଲମ୍ବମାନ, କାହାର ଓଷ୍ଠ ଚିବୁକଦେଶରେ ସନ୍ନିବେଶିତ, କାହାର ମୁଖ ଅତି ଲମ୍ବ, ପୁଣି କାହାର ବା ଜାନୁ ଅତି ଲମ୍ବ । ୭ । କିଏ ଖର୍ବ, କିଏ ଦୀର୍ଘ, କିଏ କୁବ୍ଜ, କିଏ ବିକଟ, କିଏ ବାମନ, କାହାର ଭୟଙ୍କର ଆକୃତି, କାହାର ବା ବଦନ ଅତି ଭିତରକୁ

ବକ୍ରାଭାଃ ପିଙ୍ଗଳାଃ କାଳୀଃ କ୍ରୋଧନାଃ କଳହପ୍ରିୟାଃ ।
କାଳାସ୍ତ୍ରସମହାଶଙ୍ଖକୂଟମୁଦ୍ଗରଧାରିଣୀଃ । ୯ ।
ବରାହମୃଗଶାର୍ଦ୍ଦୂଳମହିଷାଜଶିବାମୁଖାଃ ।
ଗଜୋଷ୍ଟ୍ରହସ୍ତପାଦାଶ୍ଚ ସ୍କନ୍ଧାନ୍ତର୍ଗିରସୋଽପରାଃ । ୧୦ ।
ଏକହସ୍ତୈକପାଦାଶ୍ଚ ଖରକର୍ଣ୍ଣ୍ୟଶ୍ୱକର୍ଣ୍ଣିକାଃ ।
ଗୋକର୍ଣ୍ଣୀର୍ହସ୍ତିକର୍ଣ୍ଣୀଶ୍ଚ ହରିକର୍ଣ୍ଣୀସ୍ତଥାପରାଃ । ୧୧ ।
ଅତିନାସାଶ୍ଚ କାଶ୍ଚିତ୍ତ ଚର୍ପକ୍ନାସା ଅନାସିକାଃ ।
ଗଜସଂଜ୍ଞଭନାସାଶ୍ଚ ଲଲାଟୋର୍ଦ୍ଧ୍ୱସନାସିକାଃ । ୧୨ ।
ହସ୍ତିପାଦା ମହାପାଦା ଗୋପାଦାଃ ପାଦଚୂଳକାଃ ।
ଅତିମାଂସଶିରୋଗ୍ରୀବା ଅତିମାଂସକୁଚୋଦରୀଃ । ୧୩ ।
ଅତିମାଂସାସ୍ୟନେତ୍ରାଶ୍ଚ ଦୀର୍ଘଜିହ୍ୱାନନାସ୍ତଥା ।
ଅଜାମୁଖୀର୍ହସ୍ତିମୁଖୀର୍ଗୋମୁଖୀଃ ସୂକରୀମୁଖୀଃ । ୧୪ ।

---

ପଶିଯାଇଛି, କାହାର ଚକ୍ଷୁ ପିଙ୍ଗଳବର୍ଣ୍ଣ, ତାହା ମୁଖ ଅତି ବକ୍ର ।୮। କେ ଏ ଅତି ବକ୍ର, କେ ଏ ପିଙ୍ଗଳବର୍ଣ୍ଣ, କେ ଏ କୃଷ୍ଣବର୍ଣ୍ଣ, କେ ଏ କୋପନସ୍ୱଭାବ, କେ ଏ କଳହପ୍ରିୟ; ଏ ସମସ୍ତେ କୃଷ୍ଣବର୍ଣ୍ଣ ଦର ମହାଶଙ୍ଖ ଏବଂ କୂଟ ମୁଦ୍ଗରେ ହସ୍ତରେ ଧାରଣ କରିଛନ୍ତି ।୯। କାହାର ମୁଖ ବରାହପରି, କାହାର ମୃଗପରି, କାହାର ବ୍ୟାଘ୍ରପରି, କାହାର ମହିଷପରି, କାହାର ମେଷପରି, କାହାର ବା ଶୃଗାଳପରି, କାହାର ବା ପାଦ ଉଷ୍ଟ୍ରପାଦପରି, କାହାର ହାତୀପାଦପରି, କାହାର ଘୋଡ଼ାପାଦପରି, କାହାର ମସ୍ତକ ଶରୀର ଭିତରକୁ ପଶିଯାଇଛି ।୧୦। କାହାର ଗୋଟିଏମାତ୍ର ହାତ ଅଛି, କାହାର ବା ଗୋଟିଏ ମାତ୍ର ପାଦ ଅଛି, କାହାର କାନ ଗଧକାନପରି, କାହାର ଘୋଡ଼ାକାନପରି, କାହାର ଗୋରୁକାନପରି କାହାର ହାତୀକାନପରି; କାହାର ବା ସିଂହକାନପରି ।୧୧। କାହାର ନାକ ଅତି ବଡ଼, କାହାର ନାକ ବଙ୍କା, କାହାର ବା ମୋଟେ ନାକ ନାହିଁ, ତାହାର ନା ହାତୀଶୁଣ୍ଢପରି, ପୁଣି କାହାର ନାକ ଏକାବେଳକେ କପାଳକୁ ଉଠିଯାଇଛି ।୧୨। କାହାର ପାଦ ହସ୍ତି ପାଦସଦୃଶ, କାହାର ପାଦ ଅତି ବିଶାଳ, କାହାର ଗୋରୁପାଦପରି, କାହାର ବା ପାଦରେ ମୁଣ୍ଡବାଳପରି ବାଳଉଠିଛି, କାହାର ମସ୍ତକ ବା ଗ୍ରୀବା ଅତି ବୃହତ୍, କାହାର ଉଦର ଏବଂ କୁଚ ଅତି ବଡ଼ ।୧୩। କାହାର ମୁଖ, କାହାର ବା ଚକ୍ଷୁ ଅତି ବୃହତ୍, କାହାର ବା ବଦନମଣ୍ଡଳ ଅତି ଦୀର୍ଘ, କେ ଏ ଅଜାମୁଖୀ, କେ ଏ ହସ୍ତିମୁଖୀ, କେ ଏ ଗୋମୁଖୀ, କେ ଏ ଶୂକରମୁଖୀ, କେ ଏ ଅଶ୍ୱମୁଖୀ, କେ ଏ ଗର୍ଦ୍ଦଭମୁଖୀ, କୌଣସି

ହ୍ରସ୍ୱୋଷ୍ଠ୍ୟଃ ଖରବକ୍ତ୍ରାଶ୍ଚ ରାକ୍ଷସୀର୍ଘୋରଦର୍ଶନାଃ ।
ଶୂଳମୁଦ୍‌ଗରହସ୍ତାଶ୍ଚ କ୍ରୋଧନାଃ କଳହପ୍ରିୟାଃ । ୧୫ ।
କରାଳଧୂମ୍ରକେଶୀନେର୍ୟା ରାକ୍ଷସୀର୍ବିକୃତାନନାଃ ।
ପିବନ୍ତୀଃ ସତତଂ ପାନଂ ସୁରାମାଂସସଦାପ୍ରିୟାଃ । ୧୬ ।
ମାଂସଶୋଣିତଦିଗ୍ଧାଙ୍ଗୀର୍ମାଂସଶୋଣିତଭୋଜନାଃ ।
ତା ଦଦର୍ଶ କପିଶ୍ରେଷ୍ଠୋ ରୋମହର୍ଷଣଦର୍ଶନାଃ । ୧୭ ।
ସ୍କନ୍ଧବନ୍ତମୁପାସୀନାଃ ପରିବାର୍ଯ୍ୟ ବନସ୍ପତିମ୍ ।
ତସ୍ୟାଧସ୍ତାଚ ତାଂ ଦେବୀଂ ରାଜପୁତ୍ରୀମନିନ୍ଦିତାମ୍ । ୧୮ ।
ଲକ୍ଷୟାମାସ ଲକ୍ଷ୍ମୀବାନ୍ ହନୂମାଞ୍ଜନକାତ୍ମଜାମ୍ ।
ନିଷ୍ପ୍ରଭାଂ ଶୋକସଂତପ୍ତାଂ ମଳସଂକୁଳମୂର୍ଦ୍ଧଜାମ୍ । ୧୯ ।
କ୍ଷୀଣପୁଣ୍ୟାଂ ଚ୍ୟୁତାଂ ଭୂମୌ ତାରାଂ ନିପତିତାମିବ ।
ଚାରିତ୍ରବ୍ୟପଦେଶାଢ୍ୟାଂ ଭର୍ତ୍ତୃଦର୍ଶନଦୁର୍ଗତାମ୍ । ୨୦ ।
ଭୂଷଣୈରୁତ୍ତମୈର୍ହୀନାଂ ଭର୍ତ୍ତୃବାତ୍ସଲ୍ୟଭୂଷିତାମ୍ ।
ରାକ୍ଷସାଧିପସଂରୁଦ୍ଧାଂ ବନ୍ଧୁଭିଶ୍ଚ ବିନାକୃତାମ୍ । ୨୧ ।

---

କୌଣସି ରାକ୍ଷସୀ ଦେଖିବାକୁ ଅତି ଭୟଙ୍କର, କୌଣସି କୌଣସି କୋପନପ୍ରକୃତି କଳହପ୍ରିୟ ରାକ୍ଷସୀମାନେ ହାତରେ ଶୂଳ ବା ମୁଦ୍‌ଗର ଧରିଛନ୍ତି ।୧୪-୧୫। କୌଣସିଂ କୌଣସି ବିକୃତବଦନା ଭୟଙ୍କରୀ ରାକ୍ଷସୀଙ୍କର କେଶ ଧୂମ୍ରବର୍ଣ୍ଣ; ଏମାନେ ସମସ୍ତେ ସର୍ବଦା ମଦ୍ୟପାନ କରୁଛନ୍ତି । ସେମାନେ ସବୁବେଳେ ମାଂସ ଓ ମଦ୍ୟକୁ ଭଲପାଆନ୍ତି । ୧୬ । ସମସ୍ତଙ୍କ ଦେହରେ ମାଂସ ଏବଂ ରକ୍ତ ବୋଳାହୋଇଛି; କାରଣ ଏମାନେ ସବୁବେଳେ ମାଂସ ଏବଂ ରକ୍ତ ଭୋଜନ କରନ୍ତି । ବାନରଶ୍ରେଷ୍ଠ ହନୁମାନ୍ ଦେଖିଲେ, ଏହି ଘୋରଦର୍ଶନା ରାକ୍ଷସୀମାନେ ଏକ ବିଶାଳକାଣ୍ଡବିଶିଷ୍ଟ ବୃକ୍ଷକୁ ବେଢ଼ି ବସି ରହିଛନ୍ତି । ସେହି ବୃକ୍ଷର ତଳେ ଶ୍ରୀମାନ୍ ହନୁମାନ୍ ସର୍ବାଙ୍ଗସୁନ୍ଦରୀ ରାଜନନ୍ଦିନୀ ଦେବୀ ଜନକନନ୍ଦିନୀଙ୍କୁ ଦେଖିଲେ । ସେ ଅତି ନିଷ୍ପ୍ରଭା ଶୋକସନ୍ତପ୍ତା ହୋଇଛନ୍ତି ଏବଂ ତାଙ୍କର କେଶସମୂହ ମଳଲିପ୍ତ ହୋଇ ନିତାନ୍ତ ଆଲୁଳାୟିତ ହୋଇଅଛି । ୧୭-୧୯ । ପୁଣ୍ୟ କ୍ଷୟହେଲେ ତାରା ଯେପରି ଭୂତଳରେ ପତିତ ହୁଏ, ସେ ସେହିପରି ହୋଇଅଛନ୍ତି । ତାଙ୍କର କୁଳମର୍ଯ୍ୟାଦା ଏବଂ ପାତିବ୍ରତ୍ୟ ଅତି ପ୍ରସିଦ୍ଧ । ବର୍ତ୍ତମାନ ସ୍ୱାମୀଙ୍କ ଦର୍ଶନ ତାଙ୍କର ଅତିଶୟ ଦୁର୍ଲ୍ଲଭ ହୋଇପଡ଼ିଅଛି । ୨୦ । ତାଙ୍କ ଦେହରେ କୌଣସି ଉତ୍କୃଷ୍ଟ ଅଳଙ୍କାର ନାହିଁ । ବର୍ତ୍ତମାନ ସ୍ୱାମୀଙ୍କ ପ୍ରତି ସ୍ନେହହିଁ ତାଙ୍କର ଏକମାତ୍ର ଭୂଷଣହୋଇ ରହିଅଛି । ରାକ୍ଷସାଧିପତି ତାଙ୍କୁ ଅବରୁଦ୍ଧ କରି ରଖିଅଛି ଓ ସେ ନିଜର ବନ୍ଧୁମାନଙ୍କଠାରୁ ବିଚ୍ଛିନ୍ନ ହୋଇଯାଇଛନ୍ତି । ୨୧ ।

ନିଯୂଥାଂ ସିଂହସଂରୁଦ୍ଧାଂ ବଦ୍ଧାଂ ଗଜବଧୂମିବ ।
ଚନ୍ଦ୍ରରେଖାଂ ପୟୋଦାନ୍ତେ ଶାରଦାଭ୍ରୈରିବାବୃତାମ୍ । ୨୨ ।
କ୍ଲିଷ୍ଟରୂପାମସଂସ୍ପର୍ଶାଦଯୁକ୍ତାମିବ ବଲ୍ଲକୀମ୍ ।
ସ ତାଂ ଭର୍ତୃହିତେ ଯୁକ୍ତାମଯୁକ୍ତାଂ ରକ୍ଷସାଂ ବଶେ । ୨୩ ।
ଅଶୋକବନିକାମଧ୍ୟେ ଶୋକସାଗରମାପ୍ଲୁତାମ୍ ।
ତାଭିଃ ପରିବୃତାଂ ତତ୍ର ସଗ୍ରହାମିବ ରୋହିଣୀମ୍ । ୨୪ ।
ଦଦର୍ଶ ହନୁମାଂସ୍ତତ୍ର ଲତାମକୁସୁମାମିବ ।
ସା ମଳେନ ଚ ଦିଗ୍ଧାଙ୍ଗୀ ବପୁଷା ଚାପ୍ୟଲଂକୃତା ।
ମୃଣାଳୀ ପଙ୍କଦିଗ୍ଧେବ ବିଭାତି ଚ ନ ଭାତି ଚ । ୨୫ ।
ମଳିନେନ ତୁ ବସ୍ତ୍ରେଣ ପରିକ୍ଲିଷ୍ଟେନ ଭାମିନୀମ୍ ।
ସଂବୃତାଂ ମୃଗଶାବାକ୍ଷୀଂ ଦଦର୍ଶ ହନୁମାନ୍ କପିଃ । ୨୬ ।
ତାଂ ଦେବୀଂ ଦୀନବଦନାମଦୀନାଂ ଭର୍ତୃତେଜସା ।
ରକ୍ଷିତାଂ ସ୍ୱେନ ଶୀଲେନ ସୀତାମସିତଲୋଚନାମ୍ । ୨୭ ।
ତାଂ ଦୃଷ୍ଟ୍ୱା ହନୁମାନ୍ ସୀତାଂ ମୃଗଶାବନିଭେକ୍ଷଣାମ୍ ।
ମୃଗକନ୍ୟାମିବ ତ୍ରସ୍ତାଂ ବୀକ୍ଷମାଣାଂ ସମନ୍ତତଃ । ୨୮ ।

---

ଯୂଥଭ୍ରଷ୍ଟ ବଦ୍ଧହସ୍ତିନୀ ସିଂହକର୍ତ୍ତୃକ ଆକ୍ରାନ୍ତ ହେଲାପରି ତାଙ୍କ ଅବସ୍ଥା ହୋଇଛି । ବର୍ଷାଋତୁ ଶେଷରେ ଶରତ୍କାଳୀନ ମେଘରାଶିଦ୍ୱାରା ଆବୃତ ଚନ୍ଦ୍ରରେଖାପରି ସେ ଦେଖାଯାଉଛନ୍ତି । ୨୨ । ସ୍ୱାମୀଙ୍କ ସ୍ପର୍ଶ ଅଭାବରେ ତାଙ୍କର ସୌନ୍ଦର୍ଯ୍ୟ ବହୁକାଳ ଅବ୍ୟବହୃତ ହୋଇଥିବା ବୀଣାଯନ୍ତ୍ରପରି ମ୍ଳାନ ହୋଇଯାଇଅଛି । ସେ ସର୍ବଦା ସ୍ୱାମୀଙ୍କର ହିତସାଧନରେ ନିଯୁକ୍ତ ରହିଥାନ୍ତି । ରାକ୍ଷସର ବଶୀଭୂତା ହୋଇ ରହିବାକୁ ସେ ଏକାନ୍ତ ଅଯୋଗ୍ୟା । ୨୩ । ଅଶୋକ ବନମଧ୍ୟରେ ସେ ଶୋକସାଗରରେ ନିମଗ୍ନହୋଇ ଗ୍ରହଗ୍ରସ୍ତା ରୋହିଣୀଙ୍କ ପରି ଏହି ସମସ୍ତ ରାକ୍ଷସୀଙ୍କ କର୍ତ୍ତୃକ ପରିବୃତା ହୋଇ ରହିଛନ୍ତି । ୨୪ । ହନୁମାନ୍ ଏହି ବନରେ ତାଙ୍କୁ କୁସୁମହୀନ ଲତାସଦୃଶ ଦେଖିଲେ । ତାଙ୍କର ଶରୀର ମଳଲିପ୍ତ ହୋଇଥିବାରୁ ସୁନ୍ଦର ଶରୀରରେ ଅଳଙ୍କାର ଥିଲେ ମଧ୍ୟ ପଙ୍କଜଡ଼ିତ ପଦ୍ମପୁଷ୍ପସଦୃଶ ସେ ପ୍ରକାଶିତ ହୋଇ ମଧ୍ୟ ପ୍ରକାଶିତ ହେଉ ନାହାନ୍ତି । ୨୫ । ବାନର ହନୁମାନ୍ ଦେଖିଲେ, ମୃଗନୟନା ସୀତା ଖଣ୍ଡିଏମାତ୍ର ମଳିନ ଜୀର୍ଣ୍ଣ ବସ୍ତ୍ର ପରିଧାନକରି ରହିଛନ୍ତି । ୨୬ । ସେ ଦେବୀଙ୍କର ବଦନ ଅତି ତେଜୋହୀନ ହୋଇଅଛି, ମାତ୍ର ସ୍ୱାମୀଙ୍କର ପରାକ୍ରମରେ ବିଶ୍ୱାସ ଥିବାରୁ ମନର ଦମ୍ଭ ନଷ୍ଟ ହୋଇ ନାହିଁ । କୃଷ୍ଣନୟନା ସୀତା କେବଳ ନିଜର ସଚ୍ଚରିତ୍ରବଳରେ ନିଜକୁ ରକ୍ଷାକରି ରହିଛନ୍ତି । ୨୭ । ହନୁମାନ୍ ଦେଖିଲେ, ସେ ତ୍ରସ୍ତା ମୃଗିଣୀସଦୃଶ ଇତସ୍ତତଃ ଦୃଷ୍ଟିସଞ୍ଚାଳନାକରି ଯେପରି କି ନିଃଶ୍ୱାସ

ଦହନ୍ତୀମିବ ନିଃଶ୍ୱାସୈର୍ବୃକ୍ଷାନ୍ ପଲ୍ଲବଧାରିଣଃ ।
ସଂଘାତମିବ ଶୋକାନାଂ ଦୁଃଖସ୍ୟୋର୍ମିମିବୋତ୍ଥିତାମ୍ ।୨୯।
ତାଂ କ୍ଷାମାଂ ସୁବିଭକ୍ତାଙ୍ଗୀଂ ବିନାଭରଣଶୋଭିନୀମ୍ ।
ପ୍ରହର୍ଷମତୁଲଂ ଲେଭେ ମାରୁତିଃ ପ୍ରେକ୍ଷ୍ୟ ମୈଥିଲୀମ୍ ।୩୦।
ହର୍ଷଜାନି ଚ ସୋଽଶ୍ରୂଣି ତାଂ ଦୃଷ୍ଟ୍ୱା ମଦିରେକ୍ଷଣାମ୍ ।
ମୁମୋଚ ହନୂମାଂସ୍ତତ୍ର ନମଶ୍ଚକ୍ରେ ଚ ରାଘବମ୍ ।୩୧।
ନମସ୍କୃତ୍ୱାଥ ରାମାୟ ଲକ୍ଷ୍ମଣାୟ ଚ ବୀର୍ଯ୍ୟବାନ୍ ।
ସୀତାଦର୍ଶନସଂହୃଷ୍ଟୋ ହନୁମାନ୍ ସଂବୃତୋଽଭବତ୍ ।୩୨।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ସୁନ୍ଦରକାଣ୍ଡେ ରାକ୍ଷସୀପରିବାରୋ ନାମ ସପ୍ତଦଶଃ ସର୍ଗଃ ।

---

# ଅଷ୍ଟାଦଶଃ ସର୍ଗଃ

## ରାବଣାଗମନମ୍

ତଥା ବିପ୍ରେକ୍ଷମାଣସ୍ୟ ବନଂ ପୁଷ୍ପିତପାଦପମ୍ ।
ବିଚିନ୍ୱତଶ୍ଚ ବୈଦେହୀଂ କିଂଚିଚ୍ଛେଷା ନିଶାଭବତ୍ ।୧।

---

ଦ୍ୱାରା ପଲ୍ଲବଶାଳୀ ବୃକ୍ଷମାନଙ୍କୁ ଦହନକରି ଦେଉଅଛନ୍ତି । ସେ ସାକ୍ଷାତ ଶୋକରାଶି, ଯେପରି ଦୁଃଖର ତରଙ୍ଗପରି ଉତ୍ଥିତ ହୋଇଅଛି । ସେହି କ୍ଷୀଣାଙ୍ଗୀଙ୍କର ଅଙ୍ଗସମୂହ ସମାନ ଅନୁପାତରେ ଗଢ଼ାଯାଇଛି ଏବଂ ଅଳଙ୍କାର ନ ଥାଇ ମଧ୍ୟ ସେ ଶୋଭାପାଉଛନ୍ତି । ହନୁମାନ୍ ଏହିପରି ଅବସ୍ଥାରେ ମୈଥିଳୀଙ୍କୁ ଦେଖି ଅନୁପମ ଆନନ୍ଦ ଲଭକଲେ । ୨୮-୩୦ । ସେ ମଦିରେକ୍ଷଣାଙ୍କୁ ଦେଖି ହନୁମାନଙ୍କ ଚକ୍ଷୁରୁ ଆନନ୍ଦାଶ୍ରୁ ନିର୍ଗତ ହେଲା ଏବଂ ସେ ରାମଚନ୍ଦ୍ରଙ୍କ ଉଦ୍ଦେଶ୍ୟରେ ନମସ୍କାର କଲେ ।୩୧। ବୀର୍ଯ୍ୟବାନ୍ ହନୁମାନ୍ ରାମ ଏବଂ ଲକ୍ଷ୍ମଣଙ୍କ ଉଦ୍ଦେଶ୍ୟରେ ନମସ୍କାର କରି ସୀତାଙ୍କୁ ଦେଖି ଅତିଶୟ ଆନନ୍ଦିତ ହୋଇ ସେ ବୃକ୍ଷରେ ଲୁଚି ରହିଲେ । ୩୨ ।

---

## ୧୮ଶ ସର୍ଗ

## ( ରାବଣର ଆଗମନ )

ଅନନ୍ତର ହନୁମାନ୍ ପୁଷ୍ପିତ ବୃକ୍ଷରାଜିଶୋଭିତ ଏହି ବନକୁ ନିରୀକ୍ଷଣ କରି ବୈଦେହୀଙ୍କୁ ପୁଷ୍ପଭବରେ ଦେଖିବା ପାଇଁ ପ୍ରତୀକ୍ଷା କରୁ କରୁ ରାତ୍ରି ପ୍ରାୟ ଶେଷ

ଷଡ଼ଙ୍ଗବେଦବିଦୁଷାଂ କ୍ରତୁପ୍ରବରଯାଜିନାମ୍ ।
ଶୁଶ୍ରାବ ବ୍ରହ୍ମଘୋଷାନ୍ ସ ବିରାତ୍ରେ ବ୍ରହ୍ମରକ୍ଷସାମ୍ ।୨।
ଅଥ ମଙ୍ଗଳବାଦ୍ୟୈଶ୍ଚ ଶବ୍ଦୈଃ ଶ୍ରୋତ୍ରମନୋହରୈଃ ।
ପ୍ରାବୁଧ୍ୟତ ମହାବାହୁର୍ଦଶଗ୍ରୀବୋ ମହାବଳଃ ।୩।
ବିବୁଧ୍ୟ ତୁ ମହାଭାଗୋ ରାକ୍ଷସେନ୍ଦ୍ରଃ ପ୍ରତାପବାନ୍ ।
ସ୍ରସ୍ତମାଲ୍ୟାମ୍ବରଧରୋ ବୈଦେହୀମନ୍ୱଚିନ୍ତୟତ୍ ।୪।
ଭୃଶଂ ନିୟୁକ୍ତସ୍ତସ୍ୟାଂ ଚ ମଦନେନ ମଦୋତ୍କଟଃ ।
ନ ତୁ ତଂ ରାକ୍ଷସଃ କାମଂ ଶଶାକାତ୍ମନି ଗୂହିତୁମ୍ ।୫।
ସ ସର୍ବାଭରଣୈର୍ୟୁକ୍ତୋ ବିଭ୍ରଚ୍ଛ୍ରିୟମନୁତ୍ତମାମ୍ ।
ତାଂ ନଗୈର୍ବିବିଧୈର୍ଜୁଷ୍ଟାଂ ସର୍ବପୁଷ୍ପଫଳୋପଗୈଃ ।୬।
ବୃତାଂ ପୁଷ୍କରିଣୀଭିଶ୍ଚ ନାନାପୁଷ୍ପୋପଶୋଭିତାମ୍ ।
ସଦାମତ୍ତୈଶ୍ଚ ବିହଗୈର୍ବିଚିତ୍ରାଂ ପରମାଦ୍ଭୁତୈଃ ।୭।
ଈହାମୃଗୈଶ୍ଚ ବିବିଧୈର୍ବୃତାଂ ଦୃଷ୍ଟିମନୋହରୈଃ ।
ବୀଥୀଃ ସଂପ୍ରେକ୍ଷମାଣଶ୍ଚ ମଣିକାଞ୍ଚନତୋରଣାଃ ।୮।

---

ହୋଇ ଆସିଲା ।୧। ଅନନ୍ତର ରାତ୍ରି ଶେଷ ହୋଇ ଆସିବାରୁ ସେ ଷଡ଼ଙ୍ଗବେଦବିତ୍ ଉତ୍କୃଷ୍ଟ ଯଜ୍ଞକାରୀ ବ୍ରହ୍ମରାକ୍ଷସମାନଙ୍କର ବେଦଧ୍ୱନି ଶ୍ରବଣ କଲେ । ଅନନ୍ତର ଶ୍ରୁତି-ମନୋହର ମଙ୍ଗଳବାଦ୍ୟ ଶବ୍ଦ ଶୁଣି ମହାବଳୀ ମହାବାହୁ ଦଶାନନ ଜାଗରିତ ହେଲା ।୨-୩। ସେହି ମହାଭାଗ ପ୍ରତାପଶାଳୀ ରାକ୍ଷସରାଜ, ସ୍ରସ୍ତମାଲ୍ୟ ଏବଂ ବସ୍ତ୍ର ଦେହରେ ଥାଇ ଜାଗରିତ ହେବାମାତ୍ରକେ ବୈଦେହୀଙ୍କୁ ଚିନ୍ତା କରିବାକୁ ଲାଗିଲା ।୪। ସେହି ମଦୋନ୍ମତ୍ତ ରାକ୍ଷସ କନ୍ଦର୍ପପୀଡ଼ାରେ ଉନ୍ମତ୍ତ ହୋଇ ସୀତାଙ୍କ ପ୍ରତି ଅତିଶୟ ଆସକ୍ତ ହୋଇପଡ଼ିଥିଲା; ସୁତରାଂ ସେ ନିଜର କାମପ୍ରବୃତ୍ତିକୁ ନିଜ ଭିତରେ ଗୋପନ କରି ରଖିବାକୁ ସମର୍ଥ ହେଲା ନାହିଁ ।୫। ସେ ସମସ୍ତ ଆଭରଣ ପରିଧାନପୂର୍ବକ ଅପୂର୍ବ ଶୋଭା ଧାରଣକରି ନିବିଡ଼ ବୃକ୍ଷପରିପୂର୍ଣ୍ଣ ଅଶୋକ-ବନରେ ଆସି ପ୍ରବେଶକଲା । ସେହି ଅଶୋକବନ ସବୁ ଋତୁର ପୁଷ୍ପ ଓ ଫଳ-ସମନ୍ୱିତ, ନାନାବିଧ ବୃକ୍ଷରେ ପରିପୂର୍ଣ୍ଣ । ସେଥିରେ ପୁଷ୍କରିଣୀମାନ ରହିଛି । ନାନାଜାତିର ପୁଷ୍ପରେ ତାହା ସୁଶୋଭିତ ହୋଇଛି, ସର୍ବଦା ମତ୍ତ ଥିବା ଅତି ଅଦ୍ଭୁତ ପକ୍ଷୀମାନଙ୍କ ଦ୍ୱାରା ବିଚିତ୍ରିତ ହୋଇଛି, ଦୃଷ୍ଟିମନୋହର ନାନାପ୍ରକାର ଚିତ୍ରିତ ମୃଗରେ ପୂର୍ଣ୍ଣ ହୋଇଛି, ସେଥିରେ ନାନା ଜାତିର ମୃଗ ପରିପୂର୍ଣ୍ଣ ହୋଇ ରହିଛନ୍ତି ଏବଂ ତାହା ଝଡ଼ି ପଡ଼ିଥିବା ଫଳମାନଙ୍କରେ ପରିବ୍ୟାପ୍ତ ହୋଇରହିଛି ।

ନାନାମୃଗଗଣାକୀର୍ଣାଂ ଫଳୈଃ ପ୍ରପତିତୈର୍ବୃତାମ୍ ।
ଅଶୋକବନିକାମେବ ପ୍ରାବିଶତ୍ସଂତତଦ୍ରୁମାମ୍ । ୯ ।
ଅଙ୍ଗନାଃ ଶତମାତ୍ରଂ ତୁ ତଂ ବ୍ରଜନ୍ତମନୁବ୍ରଜନ୍ ।
ମହେନ୍ଦ୍ରମିବ ପୌଲସ୍ତ୍ୟଂ ଦେବଗନ୍ଧର୍ବଯୋଷିତଃ । ୧୦ ।
ଦୀପିକାଃ କାଞ୍ଚନୀଃ କାଶ୍ଚିଜ୍ଜଗୃହୁସ୍ତତ୍ର ଯୋଷିତଃ ।
ବାଲବ୍ୟଜନହସ୍ତାଶ୍ଚ ତାଲବୃନ୍ତାନି ଚାପରାଃ । ୧୧ ।
କାଞ୍ଚନୈଶ୍ଚୈବ ଭୃଙ୍ଗାରୈର୍ଜହ୍ରୁଃ ସଲିଲମଗ୍ରତଃ ।
ମଣ୍ଡଲାଗ୍ରା ବୃସୀଶ୍ଚୈବ ଗୃହ୍ୟାନ୍ୟାଃ ପୃଷ୍ଠତୋ ଯଯୁଃ ।୧୨ ।
କାଚିଦ୍ରତ୍ନମୟୀଂ ପାତ୍ରୀଂ ପୂର୍ଣାଂ ପାନସ୍ୟ ଭ୍ରାଜତୀମ୍ ।
ଦକ୍ଷିଣା ଦକ୍ଷିଣେନୈବ ତଦା ଜଗ୍ରାହ ପାଣିନା । ୧୩ ।
ରାଜହଂସପ୍ରତୀକାଶଂ ଛତ୍ରଂ ପୂର୍ଣଶଶିପ୍ରଭମ୍ ।
ସୌବର୍ଣଦଣ୍ଡମପରା ଗୃହୀତ୍ୱା ପୃଷ୍ଠତୋ ଯଯୌ । ୧୪ ।
ନିଦ୍ରାମଦପରୀତାକ୍ଷ୍ୟୋ ରାବଣସ୍ୟୋତ୍ତମସ୍ତ୍ରିୟଃ ।
ଅନୁଜଗ୍ମୁଃ ପତିଂ ବୀରଂ ଘନଂ ବିଦ୍ୟୁଲ୍ଲତା ଇବ । ୧୫ ।
ବ୍ୟାବିଦ୍ଧହାରକେୟୂରାଃ ସମାମୃଦିତବର୍ଣକାଃ ।
ସମାଗଲିତକେଶାନ୍ତାଃ ସସ୍ୱେଦବଦନାସ୍ତଥା । ୧୬ ।

---

ରାବଣ ମଣିକାଞ୍ଚନନିର୍ମିତ ତୋରଣଦ୍ୱାର ଶୋଭିତ ବଜାରମାନ ଦେଖି ଦେଖି ଆସିଲା । ୭-୯ । ଏକ ଶତ ଦେବ-ଗନ୍ଧର୍ବରମଣୀ ଇନ୍ଦ୍ରଙ୍କ ସଦୃଶ ପୁଲସ୍ତ୍ୟ-ନନ୍ଦନ ରାବଣର ଅନୁଗମନ କଲେ ।୧୦। ସେମାନଙ୍କ ମଧ୍ୟରୁ କୌଣସି କୌଣସି କାମିନୀ ହସ୍ତରେ ସୁବର୍ଣ୍ଣଦୀପ ଧରିଥିଲେ, କିଏ ଚାମର ଓ ବ୍ୟଜନ, କିଏ ବା ତାଳପତ୍ର ପଙ୍ଖା ଧରିଥିଲା । ୧୧ । କେହି କେହି ଜଳପୂର୍ଣ୍ଣ ସୁବର୍ଣ୍ଣକଳଶ ଧରି ଆଗେ ଆଗେ ଚାଲିଲେ; ଅନ୍ୟ କେହି କେହି ମଣ୍ଡଳରଚିତ କୁଶାସନ ଧରି ପଛେ ପଛେ ଗଲେ । କୌଣସି ସେବାଦକ୍ଷା ପ୍ରଣୟିନୀ ଦକ୍ଷିଣ ହସ୍ତରେ ମଦ୍ୟପୂର୍ଣ୍ଣ ରତ୍ନମୟ ପାତ୍ର ଧାରଣ କରିଥିଲା । ୧୩ । କିଏ ବା ରାଜହଂସସଦୃଶ ପୂର୍ଣ୍ଣଚନ୍ଦ୍ରପରି ପ୍ରଭାବିଶିଷ୍ଟ, ସୁବର୍ଣ୍ଣ ଦଣ୍ଡଯୁକ୍ତ, ଶ୍ୱେତବର୍ଣ୍ଣ ଛତ୍ର ଧାରଣକରି ପଛେ ପଛେ ଗମନକଲା । ୧୪ । ଏହିପରି ରାବଣର ଶ୍ରେଷ୍ଠ ମହିଷୀମାନେ ନିଦ୍ରା ଏବଂ ନିଶାରେ ଅଳସଲୋଚନା ହୋଇ ବିଦ୍ୟୁଲ୍ଲତା ମେଘକୁ ଅନୁସରଣ କଲାପରି ବୀର ପତିର ଅନୁଗମନ କଲେ । ୧୫ । ସେମାନଙ୍କର ହାର ଓ ତାଡ଼ମାନ ଛିନ୍ନ ସ୍ଥାନଚ୍ୟୁତ ହୋଇଥିଲା, ଶରୀରର ଅନୁଲେପନ ପୋଛି ହୋଇ ଯାଇଥିଲା, କେଶକଳାପ ବିସ୍ରସ୍ତ ହୋଇଥିଲା ଏବଂ

ଘୂର୍ଣନ୍ତ୍ୟୋ ମଦଶେଷେଣ ନିଦ୍ରୟା ଚ ଶୁଭାନନାଃ ।
ସ୍ୱେଦକ୍ଲିଷ୍ଟାଙ୍ଗକୁସୁମାଃ ସମାଲ୍ୟାକୁଲମୂର୍ଧଜାଃ । ୧୭ ।
ପ୍ରୟାନ୍ତଂ ନୈଋତପତିଂ ନାର୍ଯୋ ମଦିରଲୋଚନାଃ ।
ବହୁମାନାଚ୍ଚ କାମାଚ୍ଚ ପ୍ରିୟଭାର୍ଯାସ୍ତମନ୍ୱୟୁଃ । ୧୮ ।
ସ ଚ କାମପରାଧୀନଃ ପତିସ୍ତାସାଂ ମହାବଲଃ ।
ସୀତାସକ୍ତମନା ମନ୍ଦୋ ମଦାଞ୍ଚିତଗତିର୍ବଭୌ । ୧୯ ।
ତତଃ କାଞ୍ଚୀନିନାଦଂ ଚ ନୂପୁରାଣାଂ ଚ ନିଃସ୍ୱନମ୍ ।
ଶୁଶ୍ରାବ ପରମସ୍ତ୍ରୀଣାଂ କପିର୍ମାରୁତନନ୍ଦନଃ । ୨୦ ।
ତଂ ଚାପ୍ରତିମକର୍ମାଣମଚିନ୍ତ୍ୟବଲପୌରୁଷମ୍ ।
ଦ୍ୱାରଦେଶମନୁପ୍ରାପ୍ତଂ ଦଦର୍ଶ ହନୁମାନ୍ କପିଃ । ୨୧ ।
ଦୀପିକାଭିରନେକାଭିଃ ସମନ୍ତାଦବଭାସିତମ୍ ।
ଗନ୍ଧତୈଳାବସିକ୍ତାଭିର୍ଧ୍ରିୟମାଣାଭିରଗ୍ରତଃ । ୨୨ ।
କାମଦର୍ପମଦୈର୍ଯୁକ୍ତଂ ଜିହ୍ମତାମ୍ରାୟତେକ୍ଷଣମ୍ ।
ସମକ୍ଷମିବ କନ୍ଦର୍ପମପବିଦ୍ଧଶରାସନମ୍ । ୨୩ ।

---

ମୁଖମଣ୍ଡଳରେ ସ୍ୱେଦବିନ୍ଦୁ ଦେଖା ଯାଉଥିଲା । ୧୬ । ମଦନଶା ଶେଷରେ ଓ ନିଦ୍ରାହେତୁ ଏହି ମହିଳାମାନଙ୍କର ଶରୀର ଘୂର୍ଣ୍ଣିତ ହେଉଥିଲା ଏବଂ ସେମାନଙ୍କର ଅଙ୍ଗ କୁସୁମ ସ୍ୱେଦକ୍ଲିଷ୍ଟ ହୋଇଥିଲା ଏବଂ ମାଲ୍ୟ ସହିତ କେଶରାଜି ଆଲୁଳାୟିତ ହେଉଥିଲା ।୧୭।ଏହିପରି ମଦିରେକ୍ଷଣା ପ୍ରିୟତମା ପତ୍ନୀମାନେ ସ୍ୱାମୀପ୍ରତି ବହୁମାନବଶତଃ ତଥା ନିଜର କାମପ୍ରବୃତ୍ତିହେତୁ ଯାହା କରୁଥିବା ରାକ୍ଷସପତିର ଅନୁଗମନ କଲେ ।୧୮। ସେମାନଙ୍କର ସ୍ୱାମୀ ମହାବଳୀ ମଦମତ୍ତ ରାବଣ କାମପରତନ୍ତ୍ରତାହେତୁରୁ ସୀତାଙ୍କ ପ୍ରତି ଆସକ୍ତମନା ହୋଇ ମଦମତ୍ତଭାବରେ ଗତି କରୁଥିଲା । ୧୯ । ଅନନ୍ତର ପବନନନ୍ଦନ ହନୁମାନ୍ ସେହି ମନୋରମା ରମଣୀମାନଙ୍କର କାଞ୍ଚୀ ଏବଂ ନୂପୁରଶବ୍ଦ ଶୁଣିଲେ । ୨୦ । କପି ହନୁମାନ୍ ଦେଖିଲେ, ସେହି ଅନନ୍ୟସାଧାରଣକର୍ମା ଅଭାବନୀୟ ବଳପୌରୁଷଶାଳୀ ରାବଣ ଦ୍ୱାରଦେଶରେ ଉପସ୍ଥିତ ହୋଇଅଛି । ୨୧ । ସମ୍ମୁଖରେ ରାକ୍ଷସୀମାନେ ଗନ୍ଧତୈଳପୂର୍ଣ୍ଣ ବହୁସଂଖ୍ୟକ ଦୀପ ଧରି ଆଗେ ଆଗେ ଯାଉଥିବାରୁ ତାହାର ସମଗ୍ର ଶରୀର ସ୍ପଷ୍ଟଭାବରେ ପ୍ରକାଶିତ ହୋଇଅଛି । ୨୨ । କାମ, ଦର୍ପ ଓ ମଦମତ୍ତତା ତା'ଠାରେ ପୂର୍ଣ୍ଣ; ତାହାର ନୟନ ବିଶାଳ, କୁଟିଳ ଓ ତାମ୍ରବର୍ଣ୍ଣହୋଇଅଛି । ସାକ୍ଷାତ୍ କନ୍ଦର୍ପ ଧନୁତ୍ୟାଗ କରି ସତେ ଯେପରି ସମ୍ମୁଖରେ ଆସି ଉପସ୍ଥିତ ହୋଇଛି । ୨୩ । ରାବଣ ମଥିତ

ମଥିତାମୃତଫେନାଭମରଜୋବସ୍ତ୍ରମୁତ୍ତମମ୍ ।
ସପୁଷ୍ପମବକର୍ଷନ୍ତଂ ବିମୁକ୍ତଂ ସକ୍ତମଙ୍ଗଦେ । ୨୪ ।
ତଂ ପତ୍ରବିଟପେ ଲୀନଃ ପତ୍ରପୁଷ୍ପଶତାବୃତଃ ।
ସମୀପମୁପସଂକ୍ରାନ୍ତଂ ବିଜ୍ଞାତୁମୁପଚକ୍ରମେ । ୨୫ ।
ଅବେକ୍ଷମାଣସ୍ତୁ ତଦା ଦଦର୍ଶ କପିକୁଞ୍ଜରଃ ।
ରୂପଯୌବନସମ୍ପନ୍ନା ରାବଣସ୍ୟ ବରସ୍ତ୍ରିୟଃ । ୨୬ ।
ତାଭିଃ ପରିବୃତୋ ରାଜା ସୁରୂପାଭିର୍ମହାଯଶାଃ ।
ତନ୍ମୃଗଦ୍ୱିଜସଂଘୁଷ୍ଟଂ ପ୍ରବିଷ୍ଟଂ ପ୍ରମଦାବନମ୍ । ୨୭ ।
କ୍ଷୀବୋ ବିଚିତ୍ରାଭରଣଃ ଶଙ୍କୁକର୍ଣ୍ଣୋ ମହାବଳଃ ।
ତେନ ବିଶ୍ରବସଃ ପୁତ୍ରଃ ସ ଦୃଷ୍ଟୋ ରାକ୍ଷସାଧିପଃ । ୨୮ ।
ବୃତଃ ପରମନାରୀଭିସ୍ତାରାଭିରିବ ଚନ୍ଦ୍ରମାଃ ।
ତଂ ଦଦର୍ଶ ମହାତେଜାସ୍ତେଜୋବନ୍ତଂ ମହାକପିଃ । ୨୯ ।
ରାବଣୋଽୟଂ ମହାବାହୁରିତି ସଂଚିନ୍ତ୍ୟ ବାନରଃ ।
ସୋଽୟମେବ ପୁରା ଶେତେ ପୁରମଧ୍ୟେ ଗୃହୋତ୍ତମେ ।
ଅବପ୍ଲୁତୋ ମହାତେଜା ହନୁମାନ୍ମାରୁତାତ୍ମଜଃ । ୩୦ ।

---

ଅମୃତଫେନସଦୃଶ, ନିର୍ମଳ ଶୁଭ୍ର ଉତ୍ତମ, ପୁଷ୍ପଚର୍ଚ୍ଚିତ ବସ୍ତ୍ରଟି ବାହୁକଙ୍କଣରେ ଲଗି-ଯାଇଥିବାରୁ ତାହାକୁ ଟାଣି ଛଡ଼ାଉଥିଲା । ୨୪ । ସେ ନିକଟକୁ ଆସିବାରୁ ହନୁମାନ୍ ସାନ୍ଦ୍ରପତ୍ରପୁଷ୍ପମଧ୍ୟରେ ଲୁଚିରହି ତାହାକୁ ଭଲକରି ଦେଖି ଚିହ୍ନିବାକୁ ଚେଷ୍ଟାକଲେ । । ୨୫ । ବାନରଶ୍ରେଷ୍ଠ ହନୁମାନ୍ ଘୂରି ଘୂରି ରାବଣର ରୂପଯୌବନସମ୍ପନ୍ନା ଶ୍ରେଷ୍ଠ ରମଣୀମାନଙ୍କୁ ଦେଖିଲେ । ୨୬ । ମହାଯଶସ୍ୱୀ ରାଜା ରାବଣ ସେହି ରୂପବତୀ ରମଣୀମାନଙ୍କଦ୍ୱାରା ପରିବୃତ ହୋଇ ପଶୁ ପକ୍ଷୀପୂର୍ଣ୍ଣ ସେହି ପ୍ରମୋଦଉଦ୍ୟାନରେ ପ୍ରବେଶକଲା । ୨୭ । ମଦମତ୍ତ, ବିଚିତ୍ର ଅଳଙ୍କାରଧାରୀ, ମହାବଳବାନ୍, ଶଙ୍କୁକର୍ଣ୍ଣ, ବିଶ୍ରବାନନ୍ଦନ, ରାକ୍ଷସରାଜ ରାବଣକୁ ପ୍ରବେଶ ସମୟରେ ହନୁମାନ୍ ଦେଖିଲେ ।୨୮ । ମହାତେଜସ୍ୱୀ କପିଶ୍ରେଷ୍ଠ ହନୁମାନ୍ ତେଜସ୍ୱୀ ରାବଣକୁ, ଚନ୍ଦ୍ର ତାରାଗଣବେଷ୍ଟିତ ହେଲାପରି ଏହି ବରନାରୀମାନଙ୍କଦ୍ୱାରା ପରିବେଷ୍ଟିତ ହେବାର ଦେଖିଲେ । ୨୯ । ହନୁମାନ ଭାବିଲେ, "ମୁଁ ଏଥିପୂର୍ବରୁ ଲଙ୍କାପୁରମଧ୍ୟରେ ଉତ୍କୃଷ୍ଟ ଗୃହରେ ଯାହାକୁ ଶୋଇଥିବାର ଦେଖିଥିଲି, ଏ ନିଶ୍ଚୟ ସେହି ମହାବାହୁ ରାବଣ । ୩୦ । ପବନନନ୍ଦନ

ସ ତଥାପ୍ୟୁଗ୍ରତେଜାଃ ସନ୍ନ୍ଧର୍ଷିତସ୍ତସ୍ୟ ତେଜସା ।
ପତ୍ରଗୁହ୍ମାନ୍ତରେ ସକ୍ତୋ ମତିମାନ୍ ସଂବୃତୋଽଭବତ୍ । ୩୧ ।
ସ ତାମସିତକେଶାନ୍ତାଂ ସୁଶ୍ରୋଣୀଂ ସଂହତସ୍ତନୀମ୍ ।
ଦିଦୃକ୍ଷୁରସିତାପାଙ୍ଗୀମୁପାବର୍ତ୍ତତ ରାବଣଃ । ୩୨ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତସହସ୍ରିକାୟାମ୍ ସଂହିତାୟାଂ ସୁନ୍ଦରକାଣ୍ଡେ ରାବଣାଗମନଂ ନାମ ଅଷ୍ଟାଦଶଃ ସର୍ଗଃ ।

---

# ଏକୋନବିଂଶଃ ସର୍ଗଃ

## କୃଚ୍ଛ୍ରଗତସୀତୋପମାଃ

ତସ୍ମିନ୍ନେବ ତତଃ କାଲେ ରାଜପୁତ୍ରୀ ତ୍ୱନିନ୍ଦିତା ।
ରୂପଯୌବନସମ୍ପନ୍ନଂ ଭୂଷଣୋତ୍ତମଭୂଷିତମ୍ । ୧ ।
ତତୋ ଦୃଷ୍ଟ୍ୱୈବ ବୈଦେହୀ ରାବଣଂ ରାକ୍ଷସାଧିପମ୍ ।
ପ୍ରାବେପତ ବରାରୋହା ପ୍ରବାତେ କଦଲୀ ଯଥା । ୨ ।

---

ମହାତେଜସ୍ୱୀ ହନୁମାନ୍ ଅତିତେଜସ୍ୱୀହେଲେ ମଧ୍ୟ ରାବଣର ତେଜଃପ୍ରଭାବରେ ବିଚଳିତ ହୋଇ, ପତ୍ରଗହଳ ଶାଖାମଧ୍ୟରେ ଲୁଚିରହିଲେ । ୩୧ । ରାବଣ କୃଷ୍ଣକେଶୀ, ସ୍ଥୂଳ-ନିତମ୍ବିନୀ, ସୁସମ୍ବଦ୍ଧପୟୋଧରା ସୀତାଙ୍କୁ ଦେଖିବା ଅଭିଳାଷରେ ତାଙ୍କ ଆଡ଼କୁ ଅଗ୍ରସର ହେଲା । ୩୨ ।

---

## ୧୯ଶ ସର୍ଗ

( ବିପନ୍ନା ସୀତାଙ୍କ ବର୍ଣ୍ଣନା )

ଅନନ୍ତର ଅନିନ୍ଦ୍ୟରୂପା ରାଜନନ୍ଦିନୀ ବୈଦେହୀ ରୂପଯୌବନସମ୍ପନ୍ନ ଉତ୍କୃଷ୍ଟ ଅଳଙ୍କାରରେ ବିଭୂଷିତ ରାକ୍ଷସାଧିପତି ରାବଣକୁ ଦେଖିବାମାତ୍ରେ ବାୟୁବେଗରେ କଦଳୀବୃକ୍ଷସଦୃଶ ଥରିବାକୁ ଲାଗିଲେ । ୧-୨ । ବିଶାଳନୟନା ବରବର୍ଣ୍ଣିନୀ ସୀତା

ଊରୁଭ୍ୟାମୁଦରଂ ଛାଦ୍ୟ ବାହୁଭ୍ୟାଂ ଚ ପୟୋଧରୌ ।
ଉପବିଷ୍ଟା ବିଶାଳାକ୍ଷୀ ରୁଦତୀ ବରବର୍ଣ୍ଣିନୀ । ୩ ।
ଦଶଗ୍ରୀବସ୍ତୁ ବୈଦେହୀଂ ରକ୍ଷିତାଂ ରାକ୍ଷସୀଗଣୈଃ ।
ଦଦର୍ଶ ଦୀନାଂ ଦୁଃଖାର୍ତ୍ତାଂ ନାବଂ ସନ୍ନାମିବାର୍ଣ୍ଣବେ । ୪ ।
ଅସଂବୃତାୟାମାସୀନାଂ ଧରଣ୍ୟାଂ ସଂଶିତବ୍ରତାମ୍ ।
ଛିନ୍ନାଂ ପ୍ରପତିତାଂ ଭୂମୌ ଶାଖାମିବ ବନସ୍ପତେଃ । ୫ ।
ମଲମଣ୍ଡନଦିଗ୍ଧାଙ୍ଗୀଂ ମଣ୍ଡନାର୍ହାମମଣ୍ଡନାମ୍ ।
ମୃଣାଳୀ ପଙ୍କଦିଗ୍ଧେବ ବିଭାତି ନ ବିଭାତି ଚ । ୬ ।
ସମୀପଂ ରାଜସିଂହସ୍ୟ ରାମସ୍ୟ ବିଦିତାତ୍ମନଃ ।
ସଂକଳ୍ପହୟସଂଯୁକ୍ତୈର୍ଯାନ୍ତୀମିବ ମନୋରଥୈଃ । ୭ ।
ଶୁଷ୍ୟନ୍ତୀଂ ରୁଦତୀମେକାଂ ଧ୍ୟାନଶୋକପରାୟଣାମ୍ ।
ଦୁଃଖସ୍ୟାନ୍ତମପଶ୍ୟନ୍ତୀଂ ରାମାଂ ରାମମନୁବ୍ରତାମ୍ । ୮ ।
ଚେଷ୍ଟମାନାମଥାବିଷ୍ଟାଂ ପନ୍ନଗେନ୍ଦ୍ରବଧୂମିବ ।
ଧୂପ୍ୟମାନାଂ ଗ୍ରହେଣେବ ରୋହିଣୀଂ ଧୂମକେତୁନା । ୯ ।

---

ଊରୁଦ୍ୱୟଦ୍ୱାରା ଉଦରକୁ ଏବଂ ବାହୁଦ୍ୱୟଦ୍ୱାରା କୁଚଦ୍ୱୟକୁ ଆଚ୍ଛାଦିତ କରି ବସି କାନ୍ଦିବାକୁ ଲାଗିଲେ । ୩ । ଦଶାନନ ଦେଖିଲା, ସୀତା ରାକ୍ଷସୀମାନଙ୍କଦ୍ୱାରା ରକ୍ଷିତା-ହୋଇ ସମୁଦ୍ରରେ ମଗ୍ନନାବସଦୃଶ ଦୁଃଖରେ କାତରା ହୋଇ ରହିଛନ୍ତି । ୪ । ବ୍ରତଧାରିଣୀ ସୀତା ଅନାବୃତ ଭୂମି ଉପରେ ବସିଥିବାରୁ ଗୋଟିଏ ବୃକ୍ଷର ଶାଖା ଭାଙ୍ଗିଯାଇ ଭୂମିରେ ପଡ଼ିଥିଲାପରି ଦେଖାଯାଉଥିଲେ । ୫। ତାଙ୍କ ଶରୀରର ଭୂଷଣମାନ ମଳପୂର୍ଣ୍ଣ ହୋଇଯାଇଛି । ସେ ଅଳଙ୍କାର ପିନ୍ଧିବାର ଯୋଗ୍ୟା ହେଲେ ମଧ୍ୟ ଅଳଙ୍କାର ପିନ୍ଧି ନାହାନ୍ତି; ସୁତରାଂ ପଙ୍କଲିପ୍ତ ପଦ୍ମପୁଷ୍ପସଦୃଶ ଉତ୍ତମଭାବରେ ପ୍ରକାଶିତ ହେଉ ନାହାନ୍ତି ।୬। ସେ ନିଜର ସଂକଳ୍ପରୂପ ଅଶ୍ୱଯୁକ୍ତ ମନରୂପକ ରଥରେ ବସି ବିଦିତାତ୍ମା ରାଜସିଂହ ରାମଙ୍କ ନିକଟକୁ ମନେ ମନେ ଯାଉଛନ୍ତି ।୭। ସେ ରାମା ରାମଗତପ୍ରାଣା ହୋଇ ଶୁଖିଯାଉଛନ୍ତି, ସର୍ବଦା ରୋଦନ କରୁଛନ୍ତି, କେବଳ ଚିନ୍ତା ଓ ଶୋକକୁ ଆଶ୍ରୟ କରି ରହିଛନ୍ତି ଏବଂ ଦୁଃଖର ଶେଷସୀମା ଦେଖିପାରୁ ନାହାନ୍ତି ।୮। ମନ୍ତ୍ରରୁଦ୍ଧ ସର୍ପରାଜବଧୂପରି ସେ ଛଟପଟ ହେଉଛନ୍ତି, ଯେପରିକି ଧୂମକେତୁ ଗ୍ରହଦ୍ୱାରା ରୋହିଣୀ ଉତ୍ପୀଡ଼ିତା ହେଉଅଛନ୍ତି ।୯। ଆତ୍ମବାନ୍ ସତ୍‌ସ୍ୱଭାବସମ୍ପନ୍ନ ଧର୍ମିଷ୍ଠକୁଳରେ

ବୃତ୍ତଶୀଲେ କୁଲେ ଜାତାମାତ୍ମବତି ଧାର୍ମିକେ ।
ପୁନଃ ସଂସ୍କାରମାପନ୍ନାଂ ଜାତାମିବ ଚ ଦୁଷ୍କୁଲେ । ୧୦ ।
ସନ୍ନାମିବ ମହାକୀର୍ତ୍ତିଂ ଶ୍ରଦ୍ଧାମିବ ବିମାନିତାମ୍ ।
ପ୍ରଜ୍ଞାମିବ ପରିକ୍ଷୀଣାମାଶାଂ ପ୍ରତିହତାମିବ । ୧୧ ।
ଆୟତୀମିବ ବିଧ୍ୱସ୍ତାମାଜ୍ଞାଂ ପ୍ରତିହତାମିବ ।
ଦୀପ୍ତାମିବ ଦିଶଂ କାଲେ ପୂଜାମପହୃତାମିବ । ୧୨ ।
ପୌର୍ଣ୍ଣମାସୀମିବ ନିଶାଂ ତମୋଗ୍ରସ୍ତେନ୍ଦୁମଣ୍ଡଲାମ୍ ।
ପଦ୍ମିନୀମିବ ବିଧ୍ୱସ୍ତାଂ ହତଶୂରାଂ ଚମୂମିବ । ୧୩ ।
ପ୍ରଭାମିବ ତମୋଧ୍ୱସ୍ତାମୁପକ୍ଷୀଣାମିବାପଗାମ୍ ।
ବେଦୀମିବ ପରାମୃଷ୍ଟାଂ ଶାନ୍ତାମଗ୍ନିଶିଖାମିବ । ୧୪ ।
ଉତ୍କୃଷ୍ଟପର୍ଣ୍ଣକମଲାଂ ବିତ୍ରାସିତବିହଙ୍ଗମାମ୍ ।
ହସ୍ତିହସ୍ତପରାମୃଷ୍ଟାମାକୁଲାମିବ ପଦ୍ମିନୀମ୍ । ୧୫ ।
ପତିଶୋକାତୁରାଂ ଶୁଷ୍କାଂ ନଦୀଂ ବିସ୍ରାବିତାମିବ ।
ପରୟା ମୃଜୟା ହୀନାଂ କୃଷ୍ଣପକ୍ଷେ ନିଶାମିବ । ୧୬ ।

---

ସେ ଜାତହୋଇଛନ୍ତି; କିନ୍ତୁ ଦୁଷ୍କୁଳରେ ଜନ୍ମହୋଇଥିବା ରମଣୀ ବିବାହାନ୍ତ ସଂସ୍କାରରେ ସଂସ୍କୃତ ହେଲାପରି ମଳିନ ଦେଖାଯାଉଛନ୍ତି । ୧୦ । ତାଙ୍କୁ ଦେଖିଲେ ବୋଧହେଉଅଛି, ଯେପରି ମହତୀ କୀର୍ତ୍ତି ଅବସନ୍ନ ହୋଇପଡ଼ିଛି ବା ଶ୍ରଦ୍ଧା ଅପମାନିତ ହୋଇଅଛି; କିମ୍ବା ପ୍ରଜ୍ଞା କ୍ଷୀଣ ହୋଇଯାଇଅଛି, ଆଶା ପ୍ରତିହତ ହୋଇଯାଇଅଛି, ମନଃସଂଯମ ବିନଷ୍ଟ ହୋଇଅଛି, ରାଜାଜ୍ଞା ପ୍ରତିହତ ହୋଇଅଛି, ଦିଗସମୂହ ଉତ୍ପାତ ସମୟରେ ପ୍ରଜ୍ୱଳିତ ହୋଇଅଛି, ପୂଜା ନଷ୍ଟ ହୋଇଅଛି ବା ପୂର୍ଣ୍ଣିମାର ଚନ୍ଦ୍ରମଣ୍ଡଳ ତମୋଗ୍ରସ୍ତ ହୋଇଅଛି, ପଦ୍ମିନୀ ବିମର୍ଦ୍ଦିତ ହୋଇଅଛି, ସୈନ୍ୟବାହିନୀ ଅଧିନାୟକ-ହୀନ ହୋଇଅଛି, ସୂର୍ଯ୍ୟଙ୍କର ପ୍ରଭା ଅନ୍ଧକାରରେ ବିଧ୍ୱସ୍ତ ହୋଇଅଛି, ନଦୀ କ୍ଷୀଣତୋୟା ହୋଇଅଛି । ଯଜ୍ଞବେଦୀ ପତିତ ବ୍ୟକ୍ତିକର୍ତ୍ତୃକ ଆକ୍ରାନ୍ତ ହୋଇଅଛି, ଅଗ୍ନିଶିଖା ଲିଭିଯାଇଅଛି ବା ଯେପରିକି ହସ୍ତୀର ଶୁଣ୍ଡାଘାତରେ ପଦ୍ମସରୋବର ବିପର୍ଯ୍ୟସ୍ତ ହୋଇଅଛି ଓ ତାହାର ପକ୍ଷୀମାନେ ବିତ୍ରାସିତ ଏବଂ ପଦ୍ମପୁଷ୍ପ ଓ ପତ୍ରସବୁ ଉପୁଡ଼ା ହୋଇଯାଇଅଛି । ୧୧-୧୫ । ସେ ପତିଶୋକରେ କାତର ହୋଇ, ଶୁଖିଯାଇ, ପାଣି ନିଗିଡ଼ିଯାଇଥିବା ନଦୀପରି ଦେଖାଯାଉଛନ୍ତି । ତାଙ୍କର ଅଙ୍ଗମାର୍ଜନା ନ ହେଉଥିବାରୁ ସେ କୃଷ୍ଣପକ୍ଷ ରାତ୍ରିପରି ମଳିନା ଦେଖାଯାଉଛନ୍ତି । ୧୬ ।

ସୁକୁମାରୀଂ ସୁଜାତାଙ୍ଗୀଂ ରତ୍ନଗର୍ଭଗୃହୋଚିତାମ୍ ।
ତପ୍ୟମାନାମିବୋଷ୍ଣେନ ମୃଣାଳୀମଚିରୋଦ୍ଧୃତାମ୍ । ୧୭ ।
ଗୃହୀତାଂ ଲଡ଼ିତାଂ ସ୍ତମ୍ଭେ ଯୂଥପେନ ବିନାକୃତାମ୍ ।
ନିଃଶ୍ୱସନ୍ତୀଂ ସୁଦୁଃଖାର୍ତ୍ତାଂ ଗଜରାଜବଧୂମିବ । ୧୮ ।
ଏକୟା ଦୀର୍ଘୟା ବେଣ୍ୟା ଶୋଭମାନାମଯତ୍ନତଃ ।
ନୀଲୟା ନୀରଦାପାୟେ ବନରାଜ୍ୟା ମହୀମିବ ।୧୯ ।
ଉପବାସେନ ଶୋକେନ ଧ୍ୟାନେନ ଚ ଭୟେନ ଚ ।
ପରିକ୍ଷୀଣାଂ କୃଶାଂ ଦୀନାମଲ୍ପାହାରାଂ ତପୋଧନାମ୍ । ୨୦ ।
ଆୟାଚମାନାଂ ଦୁଃଖାର୍ତ୍ତାଂ ପ୍ରାଞ୍ଜଳିଂ ଦେବତାମିବ ।
ଭାବେନ ରଘୁମୁଖ୍ୟସ୍ୟ ଦଶଗ୍ରୀବପରାଭବମ୍ । ୨୧ ।
ସମୀକ୍ଷମାଣାଂ ରୁଦତୀମନିନ୍ଦିତାମ୍
ସୁପକ୍ଷ୍ମତାମ୍ରାୟତଶୁକ୍ଳଲୋଚନାମ୍ ।
ଅନୁବ୍ରତାଂ ରାମମତୀବ ମୈଥିଲୀମ୍
ପ୍ରଲୋଭୟାମାସ ବଧାୟ ରାବଣଃ । ୨୨ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ସୁନ୍ଦରକାଣ୍ଡେ କୃଚ୍ଛ୍ରଗତସୀତୋପମା ନାମ ଏକୋନବିଂଶଃ ସର୍ଗଃ ।

---

ସୁକୁମାରୀ ଅଙ୍ଗସୌଷ୍ଠବସମ୍ପନ୍ନା, ରତ୍ନମୟ ଗୃହରେ ବାସକରିବା ଯୋଗ୍ୟା ସୀତା, ବର୍ତ୍ତମାନ ଶୋକସନ୍ତପ୍ତା ହୋଇ ଅଳ୍ପସମୟ ପୂର୍ବରୁ ଉପଡ଼ାଯାଇଥିବା ପଦ୍ମମୃଣାଳ ଖରାରେ ଶୁଖିଯାଇଥିବାପରି ଦିଶୁଛନ୍ତି । ୧୭ । ଗଜରାଜବଧୂ ଧରାହୋଇ ଖମ୍ବରେ ବନ୍ଧାହୋଇ ଯୂଥପତିର ବିରହରେ କାତର ହୋଇ ଦୀର୍ଘ ନିଃଶ୍ୱାସ ପକାଇଲାପରି ସେ ଦୀର୍ଘ ନିଃଶ୍ୱାସ ପକାଉଛନ୍ତି । ୧୮ । ଅଯତ୍ନବଦ୍ଧ କେମାଝ ଦୀର୍ଘବେଣୀ ଲମ୍ବିପଡ଼ିଥିବାରୁ ବର୍ଷାଋତୁ ଶେଷରେ ନୀଳବର୍ଣ୍ଣ ମେଘରାଜିଦ୍ୱାରା ମେଦିନୀ ଯେପରି ଶୋଭାପାଏ, ସେ ସେହିପରି ଶୋଭାପାଉଛନ୍ତି । ୧୯ । ଉପବାସ, ଶୋକ, ଚିନ୍ତା ଓ ଭୟରେ ସେ ନିତାନ୍ତ କ୍ଷୀଣହୋଇ ଯାଇଛନ୍ତି ଏବଂ ଅଳ୍ପ ଆହାର କରି ତପସ୍ୱିନୀପରି ରହିଛନ୍ତି ।୨୦। ସେ ଦୁଃଖରେ କାତର ହୋଇ କରଯୋଡ଼ି ଇଷ୍ଟଦେବତାସଦୃଶ ରଘୁକୁଳର ମୁଖ୍ୟ ରାମଚନ୍ଦ୍ରଙ୍କ ନିକଟରେ ଦଶଗ୍ରୀବ ରାବଣର ପରାଭବ ପ୍ରାର୍ଥନା କରୁଅଛନ୍ତି । ୨୧ । ଅନିନ୍ଦିତା ସୀତା ରୋଦନ କରି କରି ସୁପକ୍ଷ୍ମଶୋଭିତ, ଲୋହିତପ୍ରାନ୍ତ, ଦୀର୍ଘ ଶୁଭ୍ର-ଲୋଚନରେ ଇତସ୍ତତଃ ଦୃଷ୍ଟି ନିକ୍ଷେପ କରୁଛନ୍ତି । ରାବଣ ରାମଙ୍କ ପ୍ରତି ଏକାନ୍ତ ଅନୁବ୍ରତା ଜାନକୀଙ୍କୁ, ନିଜର ମୃତ୍ୟୁକୁ ଆହ୍ୱାନ କରି, ପ୍ରଲୋଭିତ କରିବାକୁ ଲାଗିଲା ।୨୨।

---

# ବିଂଶଃ ସର୍ଗଃ

## ପ୍ରଣୟପ୍ରାର୍ଥନା

ସ ତାଂ ପରିବୃତାଂ ଦୀନାଂ ନିରାନନ୍ଦାଂ ତପସ୍ୱିନୀମ୍ ।
ସାକାରୈର୍ମଧୁରୈର୍ବାକ୍ୟୈର୍ନ୍ୟଦର୍ଶୟତ ରାବଣଃ । ୧ ।
ମାଂ ଦୃଷ୍ଟ୍ୱା ନାଗନାସୋରୁ ଗୂହମାନା ସ୍ତନୋଦରମ୍ ।
ଅଦର୍ଶନମିବାତ୍ମାନଂ ଭୟାନ୍ନେତୁଂ ତ୍ୱମିଚ୍ଛସି । ୨ ।
କାମୟେ ତ୍ୱାଂ ବିଶାଲାକ୍ଷି ବହୁମନ୍ୟସ୍ୱ ମାଂ ପ୍ରିୟେ ।
ସର୍ବାଙ୍ଗଗୁଣସମ୍ପନ୍ନେ ସର୍ବଲୋକମନୋହରେ । ୩ ।
ନେହ କେଚିନ୍ମନୁଷ୍ୟା ବା ରାକ୍ଷସାଃ କାମରୂପିଣଃ ।
ବ୍ୟପସର୍ପତୁ ତେ ସୀତେ ଭୟଂ ମତ୍ତଃ ସମୁତ୍ଥିତମ୍ । ୪ ।
ସ୍ୱଧର୍ମୋ ରକ୍ଷସାଂ ଭୀରୁ ସର୍ବଦୈବ ନ ସଂଶୟଃ ।
ଗମନଂ ବା ପରସ୍ତ୍ରୀଣାଂ ହରଣଂ ସଂପ୍ରମଥ୍ୟ ବା । ୫ ।
ଏବଂ ଚୈବମକାମାଂ ତ୍ୱାଂ ନ ଚ ସ୍ପ୍ରକ୍ଷ୍ୟାମି ମୈଥିଳି ।
କାମଂ କାମଃ ଶରୀରେ ମେ ଯଥାକାମଂ ପ୍ରବର୍ତ୍ତତାମ୍ । ୬ ।

---

## ୨୦ଶ ସର୍ଗ

### ( ରାବଣର ପ୍ରଣୟପ୍ରାର୍ଥନା )

ଅନନ୍ତର ରାବଣ ଆକାର, ଇଙ୍ଗିତ ଏବଂ ମଧୁର ବାକ୍ୟରେ ରାକ୍ଷସୀପରିବୃତା, ଦୀନଭାବାପନ୍ନା, ତପସ୍ୱିନୀ ସୀତାଙ୍କୁ ନିଜର ଅଭିପ୍ରାୟ ଜଣାଇଲେ ।୧। "ହେ କରଭୋରୁ ! ତୁମ୍ଭେ ମୋତେ ଦେଖି କୁଚ ଏବଂ ଉଦରକୁ ଯେ ଘୋଡ଼ାଉଅଛ, ସେଥିରୁ ବୋଧ ହେଉଛି ଯେ ତୁମ୍ଭେ ଭୟରେ ନିଜକୁ ମୋତେ ନ ଦେଖାଇବାକୁ ଇଚ୍ଛାକରୁଛ । । ୨ । ହେ ସର୍ବାଙ୍ଗଗୁଣସମ୍ପନ୍ନା, ସର୍ବଲୋକସୁନ୍ଦରୀ, ବିଶାଳାକ୍ଷି, ପ୍ରିୟେ ! ମୁଁ ତୁମ୍ଭଙ୍କୁ ପାଇବାକୁ କାମନା କରୁଛି; ତୁମ୍ଭେ ମୋତେ ବହୁମାନ କର । ୩ । ହେ ସୀତେ ! ଏଠାରେ କୌଣସି ମନୁଷ୍ୟ ବା କାମରୂପୀ ରାକ୍ଷସ ନାହାନ୍ତି, ସୁତରାଂ ମୋଠାରୁ ଜାତ ହୋଇଥିବା ତୁମ୍ଭର ଭୟ ଦୂର ହୋଇଯାଉ । ୪ । ହେ ଭୀରୁ ! ପରସ୍ତ୍ରୀମାନଙ୍କ ନିକଟକୁ ଯିବା ବା ବଳପୂର୍ବକ ପରସ୍ତ୍ରୀ ହରଣ କରିବା ଏହା ସର୍ବଦା ରାକ୍ଷସମାନଙ୍କର ଧର୍ମ; ଏଥିରେ ସନ୍ଦେହ ନାହିଁ । ୫ । ତଥାପି ହେ ମୈଥିଳି ! ତୁମ୍ଭେ ନିଜେ ଇଚ୍ଛା ନ କରୁଥିବାରୁ ମୋର ଶରୀରରେ ଯଥେଚ୍ଛଭାବରେ କାମ ପ୍ରବର୍ତ୍ତିତ

ଦେବ ନୈବ ଭୟଂ କାର୍ଯଂ ମଯି ବିଶ୍ୱସିହି ପ୍ରିୟେ ।
ପ୍ରଣୟସ୍ୱ ଚ ତତ୍ତ୍ୱେନ ମୈବଂ ଭୂଃ ଶୋକଲାଲସା । ୭ ।
ଏକବେଣୀ ଅଧଃଶଯ୍ୟା ଧ୍ୟାନଂ ମଲିନମମ୍ବରମ୍ ।
ଅସ୍ଥାନେଽପ୍ୟୁପବାସଶ୍ଚ ନୈତାନ୍ୟୌପୟିକାନି ତେ । ୮ ।
ବିଚିତ୍ରାଣି ଚ ମାଲ୍ୟାନି ଚନ୍ଦନାନ୍ୟଗୁରୂଣି ଚ ।
ବିବିଧାନି ଚ ବାସାଂସି ଦିବ୍ୟାନ୍ୟାଭରଣାନି ଚ । ୯ ।
ମହାର୍ହାଣି ଚ ଯାନାନି ଶୟନାନ୍ୟାସନାନି ଚ ।
ଗୀତଂ ନୃତ୍ୟଂ ଚ ବାଦ୍ୟଂ ଚ ଲଭ ମାଂ ପ୍ରାପ୍ୟ ମୈଥିଲି । ୧୦।
ସ୍ତ୍ରୀରତ୍ନମସି ମୈବଂ ଭୂଃ କୁରୁ ଗାତ୍ରେଷୁ ଭୂଷଣମ୍ ।
ମାଂ ପ୍ରାପ୍ୟ ହି କଥଂ ବା ସ୍ୟାସ୍ତ୍ୱମନର୍ହା ସୁବିଗ୍ରହେ । ୧୧ ।
ଇଦଂ ତେ ଚାରୁ ସଂଜାତଂ ଯୌବନଂ ହ୍ୟତିବର୍ତ୍ତତେ ।
ଯଦତୀତଂ ପୁନର୍ନୈତି ସ୍ରୋତଃ ସ୍ରୋତସ୍ୱିନାମିବ । ୧୨ ।
ତ୍ୱାଂ କୃତ୍ୱୋପରତୋ ମନ୍ୟେ ରୂପକର୍ତ୍ତା ସ ବିଶ୍ୱକୃତ୍ ।
ନ ହି ରୂପୋପମା ହ୍ୟନ୍ୟା ତବାସ୍ତି ଶୁଭଦର୍ଶନେ । ୧୩ ।

---

ହେଲେ ସୁଦ୍ଧା ମୁଁ ତୁମ୍ଭଙ୍କୁ ସ୍ପର୍ଶ କରିବି ନାହିଁ । ୬ । ହେ ଦେବି ! ତୁମ୍ଭେ ଭୟ କର ନାହିଁ । ପ୍ରିୟେ ! ତୁମ୍ଭେ ମୋଠାରେ ବିଶ୍ୱାସକର । ତୁମ୍ଭେ ଯଥାର୍ଥ-ରୂପେ ମୋ ପ୍ରତି ପ୍ରଣୟକର; ଏପରି ଶୋକାକୁଳ ହୁଅ ନାହିଁ । ୭ । ଏକବେଣୀ, ଭୂମିଶଯ୍ୟା, ଚିନ୍ତା, ମଳିନବସ୍ତ୍ର ଏବଂ ଅଯଥା ଉପବାସ ଏ ସମସ୍ତ ତୁମ୍ଭର ଉପଯୁକ୍ତ ନୁହେଁ ।୮। ହେ ମୈଥିଳି ! ତୁମ୍ଭେ ମୋତେ ଲାଭକରି ବିଚିତ୍ର ମାଲ୍ୟ, ଚନ୍ଦନ ଏବଂ ଅଗୁରୁ, ବିବିଧ ବସ୍ତ୍ର, ନାନାପ୍ରକାର ଦିବ୍ୟ ଅଳଙ୍କାର, ମହାମୂଲ୍ୟ ବିବିଧ ଯାନ,ଆସନ ଓ ଶଯ୍ୟା ଏବଂ ଗୀତ,ନୃତ୍ୟ ଓ ବାଦ୍ୟ ଉପଭୋଗ କର ।୯-୧୦। ତୁମ୍ଭେ ସ୍ତ୍ରୀରତ୍ନ, ସୁତରାଂ ଏପରି ହୁଅ ନାହିଁ; ଶରୀରରେ ଅଳଙ୍କାର ପରିଧାନକର । ମୋତେ ଲାଭକରି ତୁମ୍ଭେ କିପରି ଉତ୍ତମ ଅଳଙ୍କାରର ଯୋଗ୍ୟ ନ ହେବ ? । ୧୧ । ସୁନ୍ଦରଭାବରେ ଜାତ ହୋଇଥିବା ତୁମ୍ଭର ଏହି ଯୌବନ ଅତିକ୍ରାନ୍ତ ହୋଇଯାଉଛି । ଯୌବନ ସ୍ରୋତସ୍ୱିନୀର ସ୍ରୋତପରି ଥରେ ଅତିକ୍ରାନ୍ତ ହୋଇଗଲେ ଆଉ ଫେରି ଆସେ ନାହିଁ । ୧୨ । ସୁନ୍ଦରି ! ରୂପସ୍ରଷ୍ଟା ବିଧାତା ତୁମ୍ଭଙ୍କୁ ହିଁ ନିର୍ମାଣକରି ନିଜ କାର୍ଯ୍ୟରୁ ବିରତ ହୋଇଅଛନ୍ତି; କାରଣ, ଅନ୍ୟ କୌଣସି କାମିନୀ ସହିତ ତୁମ୍ଭ ରୂପର ତୁଳନା ହୋଇ ନ ପାରେ । ୧୩ । ବୈଦେହି ! ଏପରି କେଉଁ ପୁରୁଷ

ତ୍ୱାଂ ସମାସାଦ୍ୟ ବୈଦେହି ରୂପଯୌବନଶାଳିନୀମ୍ ।
କଃ ପୁନର୍ନାତିବର୍ତ୍ତେତ ସାକ୍ଷାଦପି ପିତାମହଃ । ୧୪ ।
ଯଦ୍ୟଦ୍‌ପଶ୍ୟାମି ତେ ଗାତ୍ରଂ ଶୀତାଂଶୁସଦୃଶାନନେ ।
ତସ୍ମିଂସ୍ତସ୍ମିନ୍ ପୃଥୁଶ୍ରୋଣି ଚକ୍ଷୁର୍ମମ ନିବଧ୍ୟତେ । ୧୫ ।
ଭବ ମୈଥିଲି ଭାର୍ଯ୍ୟା ମେ ମୋହମେତଂ ବିସର୍ଜୟ ।
ବହ୍ୱୀନାମୁତ୍ତମସ୍ତ୍ରୀଣାଂ ମମାଗ୍ରମହିଷୀ ଭବ । ୧୬ ।
ଲୋକେଭ୍ୟୋ ଯାନି ରତ୍ନାନି ସଂପ୍ରମଥ୍ୟାହୃତାନି ମେ ।
ତାନି ମେ ଭୀରୁ ସର୍ବାଣି ରାଜ୍ୟଂ ଚୈବ ଦଦାମି ତେ । ୧୭ ।
ବିଜିତ୍ୟ ପୃଥିବୀଂ ସର୍ବାଂ ନାନାନଗରମାଳିନୀମ୍ ।
ଜନକାୟ ପ୍ରଦାସ୍ୟାମି ତବ ହେତୋର୍ବିଳାସିନି । ୧୮ ।
ନେହ ପଶ୍ୟାମି ଲୋକେଽନ୍ୟଂ ଯୋ ମେ ପ୍ରତିବଳୋ ଭବେତ୍ ।
ପଶ୍ୟ ମେ ସୁମହଦ୍‌ବୀର୍ଯ୍ୟମପ୍ରତିଦ୍ୱନ୍ଦ୍ୱମାହବେ । ୧୯ ।
ଅସକୃତ୍‌ସଂଯୁଗେ ଭଗ୍ନା ମୟା ବିମୃଦିତଧ୍ୱଜାଃ ।
ଅଶକ୍ତାଃ ପ୍ରତ୍ୟନୀକେଷୁ ସ୍ଥାତୁଂ ମମ ସୁରାସୁରାଃ । ୨୦ ।

---

ଅଛି ଯେ ରୂପଯୌବନଶାଳିନୀ ତୁମ୍ଭଙ୍କୁ ପାଇ ତା'ର ମନ ବିଚଳିତ ନ ହେବ ? ସାକ୍ଷାତ୍ ବ୍ରହ୍ମା ମଧ୍ୟ ବିଚଳିତ ହୋଇଯିବେ । ୧୪ । ହେ ପୃଥୁଳନିତମ୍ବିନି, ଚନ୍ଦ୍ରାନନେ ! ମୁଁ ତୁମ୍ଭର ଯେଉଁ ଯେଉଁ ଅଙ୍ଗ ଦେଖୁଛି, ସେହି ସେହି ଅଙ୍ଗରେ ମୋର ମନ ଏକାବେଳକେ ଲାଗି ରହୁଛି । ୧୫ । ମୈଥିଳି ! ତୁମ୍ଭେ ମୋର ଭାର୍ଯ୍ୟା ହୁଅ, ଏ ମୋହ ବିସର୍ଜନ କର । ମୋର ବହୁସଂଖ୍ୟକ ଉତ୍ତମ ପତ୍ନୀଙ୍କ ମଧ୍ୟରେ ତୁମ୍ଭେ ପ୍ରଧାନ ମହିଷୀ ହୁଅ । ୧୬ । ଭୀରୁ ! ମୁଁ ସମଗ୍ର ଲୋକ ଜୟକରି ଯେଉଁସବୁ ରତ୍ନ ଆହରଣ କରିଆଣିଛି ସେ ସମସ୍ତ ତୁମ୍ଭର ଏବଂ ଏ ସମଗ୍ର ରାଜ୍ୟ ମଧ୍ୟ ତୁମଙ୍କୁ ଦାନ କରୁଛି । ୧୭ । ହେ ବିଳାସିନି ! ମୁଁ ତୁମ୍ଭଲାଗି ନାନାନଗରମାଳା-ବିଭୂଷିତା ନିଖିଳ ପୃଥିବୀକୁ ଜୟକରି ଜନକଙ୍କୁ ପ୍ରଦାନ କରିବି । ୧୮ । ଯୁଦ୍ଧରେ ମୋର ପ୍ରତିଦ୍ୱନ୍ଦୀ ହେବ, ଇହଲୋକରେ ଏପରି କାହାରିକୁ ମୁଁ ଦେଖୁନାହିଁ । ଦେଖ, ମୋର ସୁମହତ୍ ପରାକ୍ରମ ଯୁଦ୍ଧରେ ଅପ୍ରତିଦ୍ୱନ୍ଦୀ ହୋଇଅଛି । ୧୯ । ଯୁଦ୍ଧରେ ମୁଁ ଦେବତା ଏବଂ ଅସୁରମାନଙ୍କୁ ବାରମ୍ବାର ପରାଜିତ କରି, ସେମାନଙ୍କର ପତାକାକୁ ବିମର୍ଦ୍ଦିତ କରିଦେଇଅଛି; ସୁତରାଂ ସେମାନେ ସମ୍ପୂର୍ଣ୍ଣ ହତୋତ୍ସାହ ହୋଇ ଆଉ ମୋ ସମ୍ମୁଖରେ ରହି ପ୍ରତିଦ୍ୱନ୍ଦୀରୂପେ ଯୁଦ୍ଧ କରିବାକୁ ସମର୍ଥ ହେବେ ନାହିଁ । ୨୦ ।

ଇଚ୍ଛ ମାଂ କ୍ରିୟତାମଦ୍ୟ ପ୍ରତିକର୍ମ ତବୋତ୍ତମମ୍ ।
ସୁପ୍ରଭାଣ୍ୟବସକ୍ତାନ୍ତାଂ ତବାଙ୍ଗେ ଭୂଷଣାନି ହି । ୨୧ ।
ସାଧୁ ପଶ୍ୟାମି ତେ ରୂପଂ ସୁୟୁକ୍ତଂ ପ୍ରତିକର୍ମଣା ।
ପ୍ରତିକର୍ମାଭିସଂଯୁକ୍ତା ଦାକ୍ଷିଣ୍ୟେନ ବରାନନେ । ୨୨ ।
ଭୁଂକ୍ଷ୍ୱ ଭୋଗାନ୍ ଯଥାକାମଂ ପିବ ଭୀରୁ ରମସ୍ୱ ଚ ।
ଯଥେଷ୍ଟଂ ଚ ପ୍ରୟଚ୍ଛ ତ୍ୱଂ ପୃଥିବୀଂ ବା ଧନାନି ଚ । ୨୩ ।
ଲଲସ୍ୱ ମୟି ବିସ୍ରବ୍ଧା ଧୃଷ୍ଟମାଜ୍ଞାପୟସ୍ୱ ଚ ।
ମତ୍ପ୍ରସାଦାଲ୍ଲଲନ୍ତ୍ୟାଶ୍ଚ ଲଲନ୍ତାଂ ବାନ୍ଧବାସ୍ତବ । ୨୪ ।
ଋଦ୍ଧିଂ ମମାନୁପଶ୍ୟ ତ୍ୱଂ ଶ୍ରିୟଂ ଭଦ୍ରେ ଯଶସ୍ୱିନି ।
କିଂ କରିଷ୍ୟସି ରାମେଣ ସୁଭଗେ ଚୀରବାସସା । ୨୫ ।
ନିକ୍ଷିପ୍ତବିଜୟୋ ରାମୋ ଗତଶ୍ରୀର୍ବନଗୋଚରଃ ।
ବ୍ରତୀ ସ୍ଥଣ୍ଡିଲଶାୟୀ ଚ ଶଙ୍କେ ଜୀବତି ବା ନ ବା । ୨୬ ।
ନ ହି ବୈଦେହି ରାମସ୍ତ୍ୱାଂ ଦ୍ରଷ୍ଟୁଂ ବାପ୍ୟୁପଲଭ୍ୟତେ ।
ପୁରୋବଲାକୈରସିତୈର୍ମେଘୈର୍ଜ୍ୟୋତ୍ସ୍ନାମିବାବୃତାମ୍ । ୨୭ ।

---

ତୁମ୍ଭେ ମୋତେ ଇଚ୍ଛାକର, ତୁମ୍ଭର ଉତ୍ତମ ବେଶଭୂଷା ଆଜ କରାହେଉ, ପ୍ରଭାବଶିଷ୍ଟ ଅଳଙ୍କାରସମୂହ ତୁମ୍ଭ ଅଙ୍ଗରେ ସଜ୍ଜିତ ହେଉ । ୨୧ । ତୁମ୍ଭେ ବେଶଭୂଷାରେ ସଜ୍ଜିତ ହେଲେ ତୁମ୍ଭର ରୂପ ଯେପରି ସୁନ୍ଦର ହେବ, ତାହା ମୁଁ ବେଶ୍ ଦେଖିପାରୁଛି, ସୁରୁବଦନେ ! ମୋ ପ୍ରତି ଦୟାକରି ତୁମ୍ଭେ ବେଶଭୂଷାରେ ସୁସଜ୍ଜିତ ହୁଅ । ୨୨ । ଭୀରୁ ! ତୁମ୍ଭେ ସ୍ୱେଚ୍ଛାକ୍ରମେ ବିବିଧ ଭୋଗ୍ୟବସ୍ତୁ ଭୋଗକର, ଯଥେଚ୍ଛ ସୁରା ପାନକର ଓ ବିହାର କର ଅଥବା ଯେତେ ଇଚ୍ଛା ସେତେ ଭୂମି ବା ଧନ ଦାନକର । ୨୩। ବିଶ୍ୱସ୍ତଭାବରେ ମୋଠାରୁ ବାଞ୍ଛିତ ବସ୍ତୁ ପ୍ରାର୍ଥନାକର ଏବଂ ପ୍ରଗଲ୍ଭଭାବରେ ମୋତେ ଆଜ୍ଞାକର । ତୁମ୍ଭେ ମୋତେ ପ୍ରାର୍ଥନାକଲେ ମୋ ଅନୁଗ୍ରହରୁ ତୁମ୍ଭ ବନ୍ଧୁମାନଙ୍କର ମନକାମନା ମଧ୍ୟ ପୂର୍ଣ୍ଣ ହେବ ।୨୪ । ହେ ଯଶସ୍ୱିନି, ଭଦ୍ରେ ! ତୁମ୍ଭେ ମୋର ଶ୍ରୀସମୃଦ୍ଧି ଏବଂ ଯଶ ଆଡ଼କୁ ଦୃଷ୍ଟିଦିଅ । ସୌଭାଗ୍ୟବତି ! ତୁମ୍ଭେ ବଲ୍କଲ-ପରିଧାନକାରୀ ରାମକୁ ନେଇ କ'ଣ କରିବ । ୨୫। ରାମ ବିଜୟର ଆଶା ଛାଡ଼ି-ସାରିଛି । ସେ ବର୍ତ୍ତମାନ ଶ୍ରୀଭ୍ରଷ୍ଟ,ବନବାସୀ,ବ୍ରତାଚାରୀ ଏବଂ ଭୂତଳଶାୟୀ ହୋଇଅଛି । ଏତେଦିନ ସେ ଆଉ ଜୀବିତ ଅଛି କି ନାହିଁ, ସେ ବିଷୟରେ ମଧ୍ୟ ମୋର ଆଶଙ୍କା ହୁଏ ।୨୬। ବୈଦେହି ! ବକପଂକ୍ତିର ପଛରେ ଥିବା କୃଷ୍ଣବର୍ଣ୍ଣ ମେଘଦ୍ୱାରା ଆଚ୍ଛନ୍ନ ଚନ୍ଦ୍ର

ନ ଗୃପେ ମମହସ୍ତାତ୍ତ୍ୱାଂ ପ୍ରାପ୍ତୁମର୍ହତି ରାଘବଃ ।
ହିରଣ୍ୟକଶିପୁଃ କୀର୍ତ୍ତିମିନ୍ଦ୍ରହସ୍ତଗତାମିବ । ୨୮ ।
ଚାରୁସ୍ମିତେ ଚାରୁଦତି ଚାରୁନେତ୍ରେ ବିଳାସିନି ।
ମନୋ ହରସି ମେ ଭୀରୁ ସୁପର୍ଣଃ ପନ୍ନଗଂ ଯଥା । ୨୯ ।
କ୍ଲିଷ୍ଟକୌଶେୟବସନାଂ ତନ୍ୱୀମପ୍ୟନଲଂକୃତାମ୍ ।
ତ୍ୱାଂ ଦୃଷ୍ଟ୍ୱା ସ୍ୱେଷୁ ଦାରେଷୁ ରତିଂ ନୋପଲଭାମ୍ୟହମ୍ ।୩୦ ।
ଅନ୍ତଃପୁରନିବାସିନ୍ୟଃ ସ୍ତ୍ରିୟଃ ସର୍ବଗୁଣାନ୍ୱିତାଃ ।
ଯାବତ୍ୟୋ ମମ ସର୍ବାସାମୈଶ୍ୱର୍ଯଂ କୁରୁ ଜାନକି । ୩୧ ।
ମମ ହ୍ୟସିତକେଶାନ୍ତେ ତ୍ରୈଲୋକ୍ୟପ୍ରବରାସ୍ତ୍ରିୟଃ ।
ତାସ୍ତ୍ୱାଂ ପରିଚରିଷ୍ୟନ୍ତି ଶ୍ରିୟମପ୍ସରସୋ ଯଥା । ୩୨ ।
ଯାନି ବୈଶ୍ରବଣେ ସୁଭ୍ରୁ ରତ୍ନାନି ଚ ଧନାନି ଚ ।
ତାନି ଲୋକାଂଶ୍ଚ ସୁଶ୍ରୋଣି ମୟା ଭୁଂକ୍ଷ୍ୱ ଯଥାସୁଖମ୍ । ୩୩।
ନ ରାମସ୍ତପସା ଦେବି ନ ବଲେନ ଚ ବିକ୍ରମୈଃ ।
ନ ଧନେନ ମୟା ତୁଲ୍ୟସ୍ତେଜସା ଯଶସାପି ବା । ୩୪ ।

---

ଜ୍ୟୋତ୍ସ୍ନାପରି ରାମ ଆଉ ତୁମ୍ଭଙ୍କୁ ଦେଖିପାରିବ ନାହିଁ ।୨୭। ହିରଣ୍ୟକଶିପୁ ଯେପରି ଇନ୍ଦ୍ରଙ୍କ ହସ୍ତଗତ କୀର୍ତ୍ତିକୁ ପୁନର୍ବାର ପାଇପାରି ନ ଥିଲା, ସେହିପରି ମୋ ହସ୍ତଗତ ତୁମ୍ଭଙ୍କୁ ରାମ ଆଉ ପାଇପାରିବ ନାହିଁ । ୨୮ । ହେ ସୁଦନ୍ତି, ଚାରୁଲୋଚନେ, ବିଳାସିନି, ଭୀରୁ ! ଗରୁଡ଼ ସର୍ପକୁ ହରଣ କଲାପରି ତୁମ୍ଭେ ମୋର ମନକୁ ହରୁଛ । ୨୯ । ତୁମ୍ଭେ ଏକମାତ୍ର ମଳିନ ପଟ୍ଟବସ୍ତ୍ର ପରିଧାନ କରି ରହିଅଛ, କ୍ଷୀଣ ହୋଇ ଯାଇଛ ଏବଂ ତୁମ୍ଭ ଦେହରେ କୌଣସି ଅଳଙ୍କାର ନାହିଁ; ତଥାପି ତୁମ୍ଭଙ୍କୁ ଦେଖି ମୋର ନିଜ ସ୍ତ୍ରୀଙ୍କଠାରେ ଆଉ ପ୍ରୀତି ହେଉ ନାହିଁ । ୩୦ । ଜାନକି ! ମୋର ଅନ୍ତଃପୁରରେ ସର୍ବଗୁଣସମ୍ପନ୍ନା ଯେତେ ରମଣୀ ଅଛନ୍ତି, ତୁମ୍ଭେ ସେ ସମସ୍ତଙ୍କ ଉପରେ ପ୍ରଭୁତ୍ୱ କର । ୩୧ । ହେ କୃଷ୍ଣକେଶି ! ମୋର ସ୍ତ୍ରୀମାନେ ତ୍ରିଭୁବନମଧ୍ୟରେ ଶ୍ରେଷ୍ଠ ଅଟନ୍ତି । ଅପ୍ସରାମାନେ ଯେପରି ଲକ୍ଷ୍ମୀଙ୍କର ସେବା କରନ୍ତି, ସେହିପରି ସେମାନେ ସମସ୍ତେ ତୁମ୍ଭର ପରିଚର୍ଯ୍ୟା କରିବେ । ୩୨ । ହେ ସୁଶ୍ରୋଣି ! କୁବେରଙ୍କ ନିକଟରେ ଯାହା କିଛି ଧନରତ୍ନ ଅଛି, ମୋ ସହିତ ମିଶି ଯଥାସୁଖରେ ସେ ସମସ୍ତ ଏବଂ ଏ ସମୁଦାୟ ଲୋକ ଉପଭୋଗ କର ।୩୩। ଦେବି ! କି ତପସ୍ୟା, କି ବଳ, କି ବିକ୍ରମ, କି ଧନ, କି ତେଜ, କି ଯଶ; କାହିଁରେ ହେଲେ ରାମ ମୋ ସହିତ ସମାନ ନୁହେଁ । ୩୪ ।

ପିବ ବିହର ରମସ୍ୱ ଭୁଂକ୍ଷ୍ୱ ଭୋଗାନ୍
ଧନନିଚୟଂ ପ୍ରଦଦାମି ମେଦିନୀଂ ଚ ।
ମୟି ଲଲ ଲଲନେ ଯଥାସୁଖଂ ତ୍ୱମ୍
ତ୍ୱୟି ଚ ସମେତ୍ୟ ଲଲନ୍ତୁ ବାନ୍ଧବାସ୍ତେ । ୩୫ ।
କୁସୁମିତତରୁଜାଲସଂତତାନି
ଭ୍ରମରଯୁତାନି ସମୁଦ୍ରତୀରଜାନି ।
କନକବିମଲହାରଭୂଷିତାଙ୍ଗି
ବିହର ମୟା ସହ ଭୀରୁ କାନନାନି । ୩୬ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ସୁନ୍ଦରକାଣ୍ଡେ ପ୍ରଣୟପ୍ରାର୍ଥନା ନାମ ବିଂଶଃ ସର୍ଗଃ ।

---

# ଏକବିଂଶଃ ସର୍ଗଃ

## ରାବଣତୃଣୀକରଣମ୍

ତସ୍ୟ ତଦ୍‌ବଚନଂ ଶ୍ରୁତ୍ୱା ସୀତା ରୌଦ୍ରସ୍ୟ ରକ୍ଷସଃ ।
ଆର୍ତ୍ତା ଦୀନସ୍ୱରା ଦୀନଂ ପ୍ରତ୍ୟୁବାଚ ତତଃ ଶନୈଃ । ୧ ।

---

ତୁମ୍ଭେ ପାନକର, ବିହାରକର, ରମଣକର ଏବଂ ସମସ୍ତ ଭୋଗ ଉପଭୋଗକର । ମୁଁ ଏ ସମସ୍ତ ଧନରାଶି ଏବଂ ପୃଥିବୀକୁ ତୁମ୍ଭକୁ ଦେଇଦେଉଛି । ଲଲନେ ! ତୁମ୍ଭେ ମୋ ସହିତ ମନଇଚ୍ଛା ସୁଖରେ କ୍ରୀଡ଼ାକର ଏବଂ ତୁମ୍ଭର ବନ୍ଧୁଜନମାନେ ତୁମ୍ଭ ସହିତ ଏକତ୍ର ହୋଇ ମନୋବାଞ୍ଛା ପୂର୍ତ୍ତି କରନ୍ତୁ ।୩୫। ଭୀରୁ ! ତୁମ୍ଭେ ବିମଳ ସୁବର୍ଣ୍ଣ-ହାରରେ ଭୂଷିତ ହୋଇ ମୋ ସହିତ ପୁଷ୍ପିତବୃକ୍ଷନିଚୟବ୍ୟାପ୍ତ, ଭ୍ରମରସଙ୍କୁଳ, ସମୁଦ୍ରତୀରଜାତ କାନନସମୂହରେ ବିହାରକର । ୩୬ ।

---

## ୨୧ଶ ସର୍ଗ

( ରାବଣକୁ ତୃଣବତ୍ ପ୍ରତ୍ୟାଖ୍ୟାନ )

ଅନନ୍ତର ସେହି ରୁଦ୍ର ରାକ୍ଷସର କଥା ଶୁଣି ସୀତା କାତର ହୋଇ ଦୀନଭାବରେ କ୍ଷୀଣସ୍ୱରରେ ଆସ୍ତେ ଆସ୍ତେ ଉତ୍ତରଦେଲେ । ୧ । ତପସ୍ୱିନୀ ସୀତା ଦୁଃଖରେ

ଦୁଃଖାର୍ତ୍ତା ରୁଦତୀ ସୀତା ବେପମାନା ତପସ୍ୱିନୀ ।
ଚିନ୍ତୟନ୍ତୀ ବରାରୋହା ପତିମେବ ପତିବ୍ରତା । ୨ ।
ତୃଣମନ୍ତରତଃ କୃତ୍ୱା ପ୍ରତ୍ୟୁବାଚ ଶୁଚିସ୍ମିତା ।
ନିବର୍ତ୍ତୟ ମନୋ ମତ୍ତଃ ସ୍ୱଜନେ ପ୍ରୀୟତାଂ ମନଃ । ୩ ।
ନ ମାଂ ପ୍ରାର୍ଥୟିତୁଂ ଯୁକ୍ତସ୍ତ୍ୱଂ ସିଦ୍ଧିମିବ ପାପକୃତ୍ ।
ଅକାର୍ଯ୍ୟଂ ନ ମୟା କାର୍ଯ୍ୟମେକପତ୍ନ୍ୟା ବିଗର୍ହିତମ୍ । ୪ ।
କୁଳଂ ସଂପ୍ରାପ୍ତୟା ପୁଣ୍ୟଂ କୁଳେ ମହତି ଜାତୟା ।
ଏବମୁକ୍ତ୍ୱା ତୁ ବୈଦେହୀ ରାବଣଂ ତଂ ଯଶସ୍ୱିନୀ । ୫ ।
ରାବଣଂ ପୃଷ୍ଠତଃ କୃତ୍ୱା ଭୂୟୋ ବଚନମବ୍ରବୀତ୍ ।
ନାହମୌପୟିକୀ ଭାର୍ଯ୍ୟା ପରଭାର୍ଯ୍ୟା ସତୀ ତବ । ୬ ।
ସାଧୁଧର୍ମମବେକ୍ଷସ୍ୱ ସାଧୁ ସାଧୁବ୍ରତଂ ଚର ।
ଯଥା ତବ ତଥାନ୍ୟେଷାଂ ରକ୍ଷ୍ୟା ଦାରା ନିଶାଚର । ୭ ।
ଆତ୍ମାନମୁପମାଂ କୃତ୍ୱା ସ୍ୱେଷୁ ଦାରେଷୁ ରମ୍ୟତାମ୍ ।
ଅତୁଷ୍ଟଂ ସ୍ୱେଷୁ ଦାରେଷୁ ଚପଳଂ ଚପଳେନ୍ଦ୍ରିୟମ୍ ।
ନୟନ୍ତି ନିକୃତପ୍ରଜ୍ଞଂ ପରଦାରାଃ ପରାଭବମ୍ । ୮ ।

---

କାତର ହୋଇ ରୋଦନ କରିବାକୁ ଲାଗିଲେ ଓ ତାଙ୍କର ଦେହ ଥରିବାକୁ ଲାଗିଲା । ପତିବ୍ରତା ସୁନ୍ଦରୀ ମନେ ମନେ ପତିଙ୍କୁହିଁ ଚିନ୍ତା କରିବାକୁ ଲାଗିଲେ । ୨ । ପବିତ୍ର-ହାସ୍ୟମୁଖୀ ସୀତା ଉଭୟଙ୍କ ମଧ୍ୟରେ ତୃଣ ବ୍ୟବଧାନ ରଖି କହିଲେ, "ମୋଠାରୁ ମନକୁ ନିବୃତ୍ତ କର ଏବଂ ନିଜ ସ୍ତ୍ରୀମାନଙ୍କ ପ୍ରତି ମନମଧ୍ୟରେ ପ୍ରୀତି ସ୍ଥାପନକର । ୩ । ପାପକାରୀ ଲୋକ ଯେପରି ସିଦ୍ଧି ପ୍ରାର୍ଥନା କରିପାରେ ନାହିଁ, ସେହିପରି ତୁ ମୋତେ ପ୍ରାର୍ଥନା କରିବାର ଯୋଗ୍ୟ ନୋହୁ । ମୁଁ ଏକ-ପତିବ୍ରତା, କୌଣସିମତେ ନିନ୍ଦିତ ଅକାର୍ଯ୍ୟ କରିପାରିବି ନାହିଁ । ମୁଁ ଉଚ୍ଚକୁଳରେ ଜନ୍ମ ହୋଇଛି ଏବଂ ପବିତ୍ରକୁଳ ପାଇଛି ।" ଯଶସ୍ୱିନୀ ସୀତା ରାବଣକୁ ଏହିପରି କହି ତା' ଆଡ଼କୁ ପିଠିକରି ପୁଣି କହିଲେ, "ମୁଁ ପରସ୍ତ୍ରୀ ଏବଂ ସତୀ; ସୁତରାଂ ତୋର ଉପଭୋଗଯୋଗ୍ୟ ନୁହେଁ । ୪-୬ । ହେ ନିଶାଚର ! ଉତ୍ତମ ଧର୍ମପ୍ରତି ଦୃଷ୍ଟି ରଖ, ସାଧୁବ୍ରତ ଆଚରଣ କର; ଯେପରି ନିଜର ସେହିପରି ଅନ୍ୟର ଭାର୍ଯ୍ୟାକୁ ରକ୍ଷାକରିବା ତୋର କର୍ତ୍ତବ୍ୟ । ୭ । ତୁ ନିଜକୁ ଉପମାକରି ସ୍ୱୀୟ ଭାର୍ଯ୍ୟାମାନଙ୍କଠାରେ ରତ ହୁଅ । ଯେଉଁ ବ୍ୟକ୍ତି ନିଜ ପତ୍ନୀମାନଙ୍କ-ଠାରେ ଅସନ୍ତୁଷ୍ଟ, ସେହି ଚଞ୍ଚଳମତି, ଚପଳେନ୍ଦ୍ରିୟ, ବୁଦ୍ଧିହୀନ ବ୍ୟକ୍ତିକୁ ପରସ୍ତ୍ରୀମାନେ

ଇହ ସନ୍ତୋ ନ ବା ସନ୍ତି ସତୋ ବା ନାନୁବର୍ତ୍ତସେ ।
ଯଥା ହି ବିପରୀତା ତେ ବୁଦ୍ଧିରାଚାରବର୍ଜିତା । ୯ ।
ବଚୋ ମିଥ୍ୟାପ୍ରଣୀତାତ୍ମା ପଥ୍ୟମୁକ୍ତଂ ବିଚକ୍ଷଣୈଃ ।
ରାକ୍ଷସାନାମଭାବାୟ ତ୍ୱଂ ବା ନ ପ୍ରତିପଦ୍ୟସେ । ୧୦ ।
ଅକୃତାତ୍ମାନମାସାଦ୍ୟ ରାଜାନମନୟେ ରତମ୍ ।
ସମୃଦ୍ଧାନି ବିନଶ୍ୟନ୍ତି ରାଷ୍ଟ୍ରାଣି ନଗରାଣି ଚ । ୧୧ ।
ତଥୈବ ତ୍ୱାଂ ସମାସାଦ୍ୟ ଲଙ୍କା ରତ୍ନୌଘସଂକୁଲା ।
ଅପରାଧାତ୍ତବୈକସ୍ୟ ନଚିରାଦ୍ ବିନଶିଷ୍ୟତି । ୧୨ ।
ସ୍ୱକୃତୈର୍ହନ୍ୟମାନସ୍ୟ ରାବଣାଦୀର୍ଘଦର୍ଶିନଃ ।
ଅଭିନନ୍ଦନ୍ତି ଭୂତାନି ବିନାଶେ ପାପକର୍ମଣଃ । ୧୩ ।
ଏବଂ ତ୍ୱାଂ ପାପକର୍ମାଣଂ ବକ୍ଷ୍ୟନ୍ତି ନିକୃତା ଜନାଃ ।
ଦିଷ୍ଟ୍ୟୈତଦ୍‌ବ୍ୟସନଂ ପ୍ରାପ୍ତୋ ରୌଦ୍ର ଇତ୍ୟେବ ହର୍ଷିତାଃ ।୧୪ ।
ଶକ୍ୟା ଲୋଭୟିତୁଂ ନାହମୈଶ୍ୱର୍ଯ୍ୟେଣ ଧନେନ ବା ।
ଅନନ୍ୟା ରାଘବେଣାହଂ ଭାସ୍କରେଣ ଯଥା ପ୍ରଭା । ୧୫ ।

---

ପରାଭବ ହୋଇଥାନ୍ତି ।୮। ତୋର ଯେପରି ସଦାଚାରହୀନ ବିପରୀତ ବୁଦ୍ଧି ଦେଖୁଛି, ସେଥିରୁ ବୋଧହେଉଛି, ଏ ସ୍ଥାନରେ ସାଧୁଲୋକ ନାହାନ୍ତି କିମ୍ବା ତୁ ସାଧୁଲୋକମାନଙ୍କର ଅନୁବର୍ତ୍ତନ କରୁନାହୁଁ । ବିଚକ୍ଷଣ ବ୍ୟକ୍ତିମାନେ ତୋତେ ନିଶ୍ଚୟ ହିତକଥା କହିଥିବେ; ମାତ୍ର ତୁ ରାକ୍ଷସକୁଳର ବିନାଶନିମନ୍ତେ ତାହା ମିଥ୍ୟା ବୋଲି ବିଚାରି,ଅଶ୍ରଦ୍ଧା କରି ସେ ଉପଦେଶ ଗ୍ରହଣ କରୁନାହୁଁ ।୯-୧୦। ତୋପରି ଦୁର୍ଦ୍ଦାନ୍ତପରାୟଣ ଅଶିକ୍ଷିତ ରାଜାକୁ ପାଇଲେ, ଅତି ସମୃଦ୍ଧିଶାଳୀ ରାଜ୍ୟ ଓ ନଗରମାନ ବିନାଶପ୍ରାପ୍ତ ହୋଇଥାଏ । ସେହିପରି ତୋତେ ପାଇ ଏହି ରତ୍ନପୂର୍ଣ୍ଣ ଲଙ୍କା କେବଳ ତୋହରି ଅପରାଧରେ ଶୀଘ୍ର ବିନଷ୍ଟ ହେବ । ହେ ରାବଣ ! ଯେଉଁ ଅଦୂରଦର୍ଶୀ ଲୋକ ନିଜକୃତ କର୍ମଦୋଷରେ ମରିବାକୁ ଯାଉଥାଏ, ସେହି ପାପକର୍ମୀର ବିନାଶରେ ସମସ୍ତ ପ୍ରାଣୀ ଆନନ୍ଦିତ ହୋଇଥାନ୍ତି । ସେହିପରି ତୁ ଯେଉଁମାନଙ୍କୁ କଷ୍ଟ ଦେଇଛୁ, ପାପକର୍ମୀ ତୁ ମଲେ ସେମାନେ ସମସ୍ତେ ସହର୍ଷରେ କହିବେ, 'ଆମମାନଙ୍କର ପରମ ଭାଗ୍ୟ ଯେ, ଏ ଦୁରାତ୍ମା ଏ ବ୍ୟସନ ପ୍ରାପ୍ତ ହୋଇଅଛି ।' ଐଶ୍ୱର୍ଯ୍ୟ ବା ଧନଦ୍ୱାରା ତୁ ମୋତେ ପ୍ରଲୋଭିତ କରିପାରିବୁ ନାହିଁ । ସୂର୍ଯ୍ୟରଶ୍ମି ଯେପରି ସୂର୍ଯ୍ୟ ବ୍ୟତୀତ ଆଉ କାହାରି ନୁହେ, ମୁଁ ମଧ୍ୟ ସେହିପରି ଏକମାତ୍ର ରାମଙ୍କର; ଆଉ କାହାରି ନୁହେ ।୧୧-୧୫।ସେହି ଲୋକନାଥଙ୍କର ସତ୍‌କର୍ମନିରତ ଭୁଜକୁ ଆଶ୍ରୟକରି ମୁଁ ପୁଣି ଅନ୍ୟ କାହାର ଭୁଜ

ଉପଧାସ୍ୟ ଭୁଜଂ ତସ୍ୟ ଲୋକନାଥସ୍ୟ ସତ୍କୃତମ୍ ।
କଥଂ ନାମୋପଧାସ୍ୟାମି ଭୁଜମନ୍ୟସ୍ୟ କସ୍ୟଚିତ୍ । ୧୬ ।
ଅହମୌପୟିକୀ ଭାର୍ଯ୍ୟା ତସ୍ୟୈବ ଚ ଧରାପତେଃ ।
ବ୍ରତସ୍ନାତସ୍ୟ ବିଦ୍ୟେବ ବିପ୍ରସ୍ୟ ବିଦିତାତ୍ମନଃ । ୧୭ ।
ସାଧୁ ରାବଣ ରାମେଣ ମାଂ ସମାନୟ ଦୁଃଖିତାମ୍ ।
ବନେ ବାସିତୟା ସାର୍ଦ୍ଧଂ କରେଣ୍ୱେବ ଗଜାଧିପମ୍ । ୧୮ ।
ମିତ୍ରମୌପୟିକଂ କର୍ତ୍ତୁଂ ରାମଃ ସ୍ଥାନଂ ପରୀପ୍ସତା ।
ବଧଂ ଚାନିଚ୍ଛତା ଘୋରଂ ତ୍ୱୟାସୌ ପୁରୁଷର୍ଷଭଃ । ୧୯ ।
ବିଦିତଃ ସର୍ବଧର୍ମଜ୍ଞଃ ଶରଣାଗତବତ୍ସଳଃ ।
ତେନ ମୈତ୍ରୀ ଭବତୁ ତେ ଯଦି ଜୀବିତୁମିଚ୍ଛସି । ୨୦ ।
ପ୍ରସାଦୟସ୍ୱ ତ୍ୱଂ ଚୈନଂ ଶରଣାଗତବତ୍ସଳମ୍ ।
ମାଂ ଚାସ୍ମୈ ପ୍ରୟତୋ ଭୂତ୍ୱା ନିର୍ଯାତୟିତୁମର୍ହସି । ୨୧।
ଏବଂ ହି ତେ ଭବେତ୍ ସ୍ୱସ୍ତି ସମ୍ପ୍ରଦାୟ ରଘୂତ୍ତମେ ।
ଅନ୍ୟଥା ତ୍ୱଂ ହି କୁର୍ବାଣଃ ପରାଂ ପ୍ରାପ୍ସ୍ୟସି ଚାପଦମ୍ । ୨୨।
ବର୍ଜୟେଦ୍ ବଜ୍ରମୁତ୍ସୃଷ୍ଟଂ ବର୍ଜୟେଦନ୍ତକଶ୍ଚିରମ୍ ।
ତ୍ୱଦ୍‌ବିଧଂ ନ ତୁ ସଂକ୍ରୁଦ୍ଧୋ ଲୋକନାଥଃ ସ ରାଘବଃ । ୨୩ ।

---

ଆଶ୍ରୟ କରିବ କିପରି ? ୧୬। ଆତ୍ମଜ୍ଞାନୀ ବ୍ରତସ୍ନାୟୀ ବ୍ରାହ୍ମଣର ବ୍ରହ୍ମବିଦ୍ୟାପରି ମୁଁ ସେହି ବସୁଧାଧିପତିଙ୍କର ଉପଭୋଗ୍ୟା ଭାର୍ଯ୍ୟା ଅଟେଁ । ହେ ରାବଣ ! ତୋର ମଙ୍ଗଳ ହେଉ, ବନମଧ୍ୟରେ ଉତ୍ସୁକା ହସ୍ତିନୀକୁ ଯେପରି ଗଜପତି ନିକଟକୁ ନେଇଯାନ୍ତି, ତୁ ସେହିପରି ଦୁଃଖକାତର ମୋତେ ରାମଙ୍କ ସହିତ ସମ୍ମିଳିତ କରାଇଦିଅ । ଯଦି ନିଜର ଅଧିକାର ରକ୍ଷା କରିବାକୁ ଇଚ୍ଛାଥାଏ ଏବଂ ନିଜର ବଧ ଇଚ୍ଛା ନ କରୁଥାଉ ତେବେ ପୁରୁଷଶ୍ରେଷ୍ଠ ରାମଙ୍କ ସହିତ ମିତ୍ରତା କରିବା ତୋର ସର୍ବଥା ଉଚିତ । ସେ ଶରଣାଗତବତ୍ସଳ ଏବଂ ଧର୍ମଜ୍ଞ ବୋଲି ସର୍ବତ୍ର ବିଖ୍ୟାତ । ଯଦି ଜୀବିତ ରହିବାକୁ ଇଚ୍ଛାଥାଏ, ତେବେ ତାହାଙ୍କ ସହିତ ତୋର ମୈତ୍ରୀ ସଂସ୍ଥାପିତ ହେଉ । ୧୭-୨୦ । ସେହି ଶରଣାଗତବତ୍ସଳ ରାମଙ୍କୁ ତୁ ପ୍ରସନ୍ନ କର । ଭକ୍ତିସହକାରେ ମୋତେ ନେଇ ତାଙ୍କ ନିକଟରେ ଅର୍ପଣ କରିବା ତୋର କର୍ତ୍ତବ୍ୟ । ୨୧ । ଏହିପରି ରଘୁଶ୍ରେଷ୍ଠଙ୍କୁ ସମର୍ପଣ କରିବାଦ୍ୱାରହିଁ ତୋର ସ୍ୱସ୍ତିଲାଭ ହେବ । ଅନ୍ୟଥା କଲେ ତୁ ଘୋର ବିପଦରେ ପଡ଼ିବୁ । ୨୨ । ନିକ୍ଷିପ୍ତ ହୋଇଥିବା ବଜ୍ର ତୋତେ ଛାଡ଼ିଦେଇ-ପାରେ, ଯମ ମଧ୍ୟ ତୋତେ ବହୁକାଳ ଛାଡ଼ିଦେଇ ପାରନ୍ତି; କିନ୍ତୁ ସେ ଲୋକନାଥ ରାମ

ରାମସ୍ୟ ଧନୁଷଃ ଶବ୍ଦଂ ଶ୍ରୋଷ୍ୟସି ତ୍ୱଂ ମହାସ୍ୱନମ୍ ।
ଶତକ୍ରତୁବିସୃଷ୍ଟସ୍ୟ ନିର୍ଘୋଷମଶନେରିବ । ୨୪ ।
ଇହ ଶୀଘ୍ରଂ ସୁପର୍ବାଣୋ ଜ୍ୱଳିତାସ୍ୟା ଇବୋରଗାଃ ।
ଇଷବୋ ନିପତିଷ୍ୟନ୍ତି ରାମଲକ୍ଷ୍ମଣଲକ୍ଷିତାଃ । ୨୫ ।
ରକ୍ଷାଂସି ନିହନିଷ୍ୟନ୍ତଃ ପୁର୍ଯାମସ୍ୟାଂ ନ ସଂଶୟଃ ।
ଅସଂପାତଂ କରିଷ୍ୟନ୍ତି ପତନ୍ତଃ କଙ୍କବାସସଃ । ୨୬ ।
ରାକ୍ଷସେନ୍ଦ୍ରମହାସର୍ପାନ୍ ସ ରାମଗରୁଡୋ ମହାନ୍ ।
ଉଦ୍ଧରିଷ୍ୟତି ବେଗେନ ବୈନତେୟ ଇବୋରଗାନ୍ । ୨୭ ।
ଅପନେଷ୍ୟତି ମାଂ ଭର୍ତ୍ତା ତ୍ୱତ୍ତଃ ଶୀଘ୍ରମରିନ୍ଦମଃ ।
ଅସୁରେଭ୍ୟଃ ଶ୍ରିୟଂ ଦୀପ୍ତାଂ ବିଷ୍ଣୁସ୍ତ୍ରିଭିରିବ କ୍ରମୈଃ । ୨୮ ।
ଜନସ୍ଥାନେ ହତସ୍ଥାନେ ନିହତେ ରକ୍ଷସାଂ ବଲେ ।
ଅଶକ୍ତେନ ତ୍ୱୟା ରକ୍ଷଃ କୃତମେତଦସାଧୁ ବୈ । ୨୯ ।
ଆଶ୍ରମଂ ତତ୍ତୟୋଃ ଶୂନ୍ୟଂ ପ୍ରବିଶ୍ୟ ନରସିଂହୟୋଃ ।
ଗୋଚରଂ ଗତୟୋର୍ଭ୍ରାତ୍ରୋରପନୀତା ତ୍ୱୟାଧମ । ୩୦ ।

---

କ୍ରୁଦ୍ଧହେଲେ ତୋପରି ଲୋକକୁ କଦାପି ଛାଡ଼ିବେ ନାହିଁ । ୨୩ । ଇନ୍ଦ୍ରଙ୍କ ନିକ୍ଷିପ୍ତ ବଜ୍ରର ଗର୍ଜନପରି ତୁ ରାମଙ୍କ ଧନୁର ମହାଶବ୍ଦ ଶ୍ରବଣକରିବୁ ।୨୪। ରାମ ଲକ୍ଷ୍ମଣଙ୍କର ନାମାଙ୍କିତ, ଉତ୍ତମ ପର୍ବବିଶିଷ୍ଟ ବାଣମାନେ ଜ୍ୱଳିତମୁଖ ସର୍ପଗଣଙ୍କ ପରି ଶୀଘ୍ର ଏହି ଲଙ୍କାରେ ପତିତ ହୋଇ ଏହି ନଗରୀର ଗୃହଆଡ଼ ରାକ୍ଷସମାନଙ୍କୁ ସଂହାର କରିବେ ସେହି କଙ୍କପକ୍ଷଯୁକ୍ତ ଶରମାନେ ଏଠାରେ ପଡ଼ିଲେ, ତିଳେମାତ୍ର ସ୍ଥାନ ବାକି ରହିବ ନାହିଁ । ୨୫-୨୬ । ଗରୁଡ଼ ବେଗରେ ମହାସର୍ପମାନଙ୍କୁ ଉତ୍ତୋଳନକଲା ପରି ରାମରୂପୀ ଗରୁଡ଼ ରାକ୍ଷସେନ୍ଦ୍ରରୂପୀ ସର୍ପମାନଙ୍କୁ ଉତ୍ତୋଳନ କରିବେ । ୨୭ । ବିଷ୍ଣୁ ଯେପରି ତିନିଗୋଟି ପଦକ୍ଷେପଦ୍ୱାରା ଅସୁରମାନଙ୍କଠାରୁ ସମୁଜ୍ଜ୍ୱଳ ଲକ୍ଷ୍ମୀଙ୍କୁ ଉଦ୍ଧାର କରିଥିଲେ, ଶତ୍ରୁସୂଦନ ମୋର ସ୍ୱାମୀ ସେହିପରି ଶୀଘ୍ର ତୋ ହସ୍ତରୁ ମୋତେ ଉଦ୍ଧାର କରିବେ । । ୨୮ । ଧ୍ୱସ୍ତ ବିଧ୍ୱସ୍ତ ଜନସ୍ଥାନରେ ରାକ୍ଷସବଳ ନିହତ ହେବାଉତ୍ତାରୁ, ହେ ରାକ୍ଷସ ! ତୁ ସ୍ୱୟଂ ଅଶକ୍ତ ହୋଇ ଏହି ଅନାର୍ଯ୍ୟୋଚିତ କର୍ମ କରିଅଛୁ ।୨୯ ରେ ଅଧମ ! ସେହି ନରସିଂହ ଭ୍ରାତୃଦ୍ୱୟ ମୃଗର ବୃତ୍ତାନ୍ତ ଜାଣିବାପାଇଁ ବହିର୍ଗତ ହୋଇ-ଯିବାରୁ ତୁ ଶୂନ୍ୟ ଆଶ୍ରମରେ ପ୍ରବେଶକରି ମୋତେ ଅପହରଣ କରିଅଛୁ ।୩୦।କୁକୁର

ନ ହି ଗନ୍ଧମୁପାଘ୍ରାୟ ରାମ ଲକ୍ଷ୍ମଣୟୋସ୍ତ୍ୱୟା ।
ଶକ୍ୟଂ ସନ୍ଦର୍ଶନେ ସ୍ଥାତୁଂ ଶୁନା ଶାର୍ଦ୍ଦୂଳୟୋରିବ । ୩୧ ।
ତସ୍ୟ ତେ ବିଗ୍ରହେ ତାଭ୍ୟାଂ ଯୁଗଗ୍ରହଣମସ୍ଥିରମ୍ ।
ବୃତ୍ରସ୍ୟେବେନ୍ଦ୍ରବାହୁଭ୍ୟାଂ ବାହୋରେକସ୍ୟ ନିଗ୍ରହଃ । ୩୨ ।
କ୍ଷିପ୍ରଂ ତବ ସନାଥୋ ମେ ରାମଃ ସୌମିତ୍ରିଣା ସହ ।
ତୋୟମଳ୍ପମିବାଦିତ୍ୟଃ ପ୍ରାଣାନାଦାସ୍ୟତେ ଶରୈଃ । ୩୩ ।
ଗିରିଂ କୁବେରସ୍ୟ ଗତୋଽଥ ବାଲୟମ୍
ସଭାଂ ଗତୋ ବା ବରୁଣସ୍ୟ ରାଜ୍ଞଃ ।
ଅସଂଶୟଂ ଦାଶରଥେର୍ନ ମୋକ୍ଷ୍ୟସେ
ମହାଦ୍ରୁମଃ କାଳହତୋଽଶନେରିବ । ୩୪ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତସହସ୍ରିକାୟାମ୍ ସଂହିତାୟାଂ ସୁନ୍ଦରକାଣ୍ଡେ ରାବଣତୃଣୀକରଣଂ ନାମ ଏକବିଂଶଃ ସର୍ଗଃ ।

---

ଯେପରି ବ୍ୟାଘ୍ରର ଗନ୍ଧ ପାଇ ତାହା ସମ୍ମୁଖରେ ରହିନପାରେ, ତୁ ସେହିପରି ସେହି ଶାର୍ଦ୍ଦୂଳ ତୁଲ୍ୟ ରାମଲକ୍ଷଣ ଦୁହିଙ୍କର ଦେଖା ପାଇଥିଲେ ଆଉ ସେଠାରେ ରହିପାରି ନ ଥାନ୍ତୁ ।୩୧। ସେ ଦୁହିଁଙ୍କ ସହିତ ତୋର ଯୁଦ୍ଧହେଲେ ତୋର ସହାୟ, ସମ୍ପତ୍ତି ସ୍ଥିର ରହିବ ନାହିଁ । ବୃତ୍ରାସୁରର ଏକ ବାହୁ ଯେପରି ଇନ୍ଦ୍ରଙ୍କର ଦୁଇ ବାହୁଦ୍ୱାରା ପରାଜିତ ହୋଇଥିଲା, ତୁ ସେହିପରି ପରାସ୍ତ ହେବୁ ।୩୨। ସୂର୍ଯ୍ୟ ଯେପରି ସ୍ୱଳ୍ପଜଳ ଶୋଷଣ କରନ୍ତି, ମୋର ପ୍ରାଣନାଥ ରାମ ସେହିପରି ଲକ୍ଷ୍ମଣଙ୍କ ସାହାଯ୍ୟରେ ଶୀଘ୍ର ଶରଦ୍ୱାରା ତୋର ପ୍ରାଣ ଆକର୍ଷଣ କରିବେ ।୩୩। ତୁ କୁବେରାଳୟ କୈଳାସ ପର୍ବତକୁ ଗମନକର ବା ରାଜା ବରୁଣଙ୍କ ସଭାକୁ ଯାଅ, ମହାବୃକ୍ଷ ଯେପରି ବଜ୍ରାଘାତରେ ପତିତ ହୁଏ, କାଳହତ ତୁ ମଧ୍ୟ ସେହିପରି ଦାଶରଥିଙ୍କ ହାତରୁ ମୁକ୍ତି ପାଇବୁ ନାହିଁ” । ୩୪ ।

# ଦ୍ୱାବିଂଶଃ ସର୍ଗଃ

## ମାସଦ୍ୱୟାବଧିକରଣମ୍

ସୀତାୟା ବଚନଂ ଶ୍ରୁତ୍ୱା ପୁରୁଷଂ ରାକ୍ଷସେଶ୍ୱରଃ ।
ପ୍ରତ୍ୟୁବାଚ ତତଃ ସୀତାଂ ବିପ୍ରିୟଂ ପ୍ରିୟଦର୍ଶନାମ୍ । ୧ ।
ଯଥା ଯଥା ସାନ୍ତ୍ୱୟିତା ବଶ୍ୟଃ ସ୍ତ୍ରୀଣାଂ ତଥା ତଥା ।
ଯଥା ଯଥା ପ୍ରିୟଂ ବକ୍ତା ପରିଭୂତସ୍ତଥା ତଥା । ୨ ।
ସଂନିୟଚ୍ଛତି ମେ କ୍ରୋଧଂ ତ୍ୱୟି କାମଃ ସମୁତ୍ଥିତଃ ।
ଦ୍ରବତୋଽମାର୍ଗମାସାଦ୍ୟ ହୟାନିବ ସୁସାରଥିଃ । ୩ ।
ବାମଃ କାମୋ ମନୁଷ୍ୟାଣାଂ ଯସ୍ମିନ୍ କିଲ ନିବଧ୍ୟତେ ।
ଜନେ ତସ୍ମିଂସ୍ତ୍ୱନୁକ୍ରୋଶଃ ସ୍ନେହଶ୍ଚ କିଲ ଜାୟତେ । ୪ ।
ଏତସ୍ମାତ୍କାରଣାନ୍ନ ତ୍ୱାଂ ଘାତୟାମି ବରାନନେ ।
ବଧାର୍ହାମବମାନାର୍ହାଂ ମିଥ୍ୟାପ୍ରବ୍ରଜନେ ରତାମ୍ । ୫ ।
ପୁରୁଷାଣି ହି ବାକ୍ୟାନି ଯାନି ଯାନି ବ୍ରବୀଷି ମାମ୍ ।
ତେଷୁ ତେଷୁ ବଧୋ ଯୁକ୍ତସ୍ତବ ମୈଥିଲି ଦାରୁଣଃ । ୬ ।

---

## ୨୨ଶ ସର୍ଗ

(ରାବଣର ଦୁଇମାସ କାଳ ଅବଧି)

ସୀତାଙ୍କର ସେହିପରି କଠୋର ବାକ୍ୟ ଶ୍ରବଣକରି ରାକ୍ଷସାଧିପ ରାବଣ ପ୍ରିୟଦର୍ଶନା ସୀତାଙ୍କୁ ଅପ୍ରିୟ ବାକ୍ୟରେ ଉତ୍ତରଦେଲା ।୧। "ସଚରାଚର ଦେଖାଯାଏ ଯେ ପୁରୁଷ ସ୍ତ୍ରୀକୁ ଯେତେ ସାନ୍ତ୍ୱନା କରେ, ସ୍ତ୍ରୀଠାରୁ ସେତିକି ଆଦର ପାଇଥାଏ; କିନ୍ତୁ ମୁଁ ତୋତେ ଯେତିକି ପ୍ରିୟକଥା କହୁଛି, ତୁ ସେତିକି ମୋତେ ପରାଭୂତ କରୁଅଛୁ । ୨ । ତୋ ଉପରେ ମୋର କ୍ରୋଧ ହେଉଅଛି; ମାତ୍ର ଭଲ ସାରଥି ଅପଥରେ ଧାବିତ ଅଶ୍ୱମାନଙ୍କୁ ଯେପରି ସଂଯତ କରିରଖେ, ତୋପ୍ରତି ସମୁତ୍ଥିତ କାମ ସେହିପରି ଏ କ୍ରୋଧକୁ ସଂଯତ କରି ରଖିଅଛି । ୩ । ମନୁଷ୍ୟମାନଙ୍କ ପକ୍ଷରେ କାମ ନିଦାରୁଣ । ଯାହାପ୍ରତି କାମ ଜାତହୁଏ, ସେ କ୍ରୋଧର ପାତ୍ର ହେଲେ ମଧ୍ୟ ତାପ୍ରତି ଅନୁକମ୍ପା ଏବଂ ସ୍ନେହ ଜାତ ହୋଇଥାଏ । ୪ । ହେ ସୁନ୍ଦରମୁଖି ! ସେହିହେତୁରୁ ମୁଁ ତୋତେ ବଧ କରୁ ନାହିଁ; କିନ୍ତୁ ତୁ ବଧ ଏବଂ ଅପମାନର ଯୋଗ୍ୟପାତ୍ର, ତୁ କେବଳ ଲୋକଦେଖାଣିଆ ଭାବରେ ତାପସବ୍ରତ ଧାରଣକରିଅଛୁ । ୫ । ହେ ମୈଥିଳି ! ତୁ ମୋତେ ଯେତେ ଯେତେ କଠୋର ବାକ୍ୟ କହୁଲୁଣି, ତାହାର ପ୍ରତ୍ୟେକଟି ନିମନ୍ତେ

ଏବମୁକ୍ତ୍ଵା ତୁ ବୈଦେହୀଂ ରାବଣୋ ରାକ୍ଷସାଧିପଃ ।
କ୍ରୋଧସଂରମ୍ଭସଂଯୁକ୍ତଃ ସୀତାମୁତ୍ତରମ ବ୍ରବୀତ୍ ॥ ୭ ॥
ଦ୍ୱୌ ମାସୌ ରକ୍ଷିତବ୍ୟୌ ମେ ଯୋଽବଧିସ୍ତେ ମୟା କୃତଃ ।
ତତଃ ଶୟନମାରୋହ ମମ ତ୍ଵଂ ବରବର୍ଣ୍ଣିନୀ ॥ ୮ ॥
ଦ୍ଵାଭ୍ୟାମୂର୍ଦ୍ଧ୍ଵଂ ତୁ ମାସାଭ୍ୟାଂ ଭର୍ତ୍ତାରଂ ମାମନିଚ୍ଛତୀମ୍ ।
ମମ ତ୍ଵାଂ ପ୍ରାତରାଶାର୍ଥେ ସୂଦାଶ୍ଛେତ୍ସ୍ୟନ୍ତି ଖଣ୍ଡଶଃ ॥ ୯ ॥
ତାଂ ଭର୍ତ୍ସ୍ୟମାନାଂ ସଂପ୍ରେକ୍ଷ୍ୟ ରାକ୍ଷସେନ୍ଦ୍ରେଣ ଜାନକୀମ୍ ।
ଦେବଗନ୍ଧର୍ବକନ୍ୟାସ୍ତା ବିଷେଦୁର୍ବିକୃତେକ୍ଷଣାଃ ॥ ୧୦ ॥
ଓଷ୍ଠପ୍ରକାରୈରପରା ନେତ୍ରୈର୍ବକ୍ତ୍ରୈସ୍ତଥାପରାଃ ।
ସୀତାମାଶ୍ୱାସୟାମାସୁସ୍ତର୍ଜିତାଂ ତେନ ରକ୍ଷସା ॥ ୧୧ ॥
ତାଭିରାଶ୍ୱାସିତା ସୀତା ରାବଣଂ ରାକ୍ଷସାଧିପମ୍ ।
ଉବାଚାତ୍ମହିତଂ ବାକ୍ୟଂ ବୃତ୍ତଶୌଣ୍ଡୀର୍ଯଗର୍ବିତମ୍ ॥ ୧୨ ॥
ନୂନଂ ନ ତେ ଜନଃ କଶ୍ଚିଦସ୍ତି ନିଃଶ୍ରେୟସି ସ୍ଥିତଃ ।
ନିବାରୟତି ଯୋ ନ ତ୍ଵାଂ କର୍ମଣୋଽସ୍ମାଦ୍ବିଗର୍ହିତାତ୍ ॥ ୧୩ ॥

---

ତୋତେ ନିଷ୍ଟୁର ଭାବରେ ବଧକରିବା ଉଚିତ” ।୬। ରାକ୍ଷସରାଜ ରାବଣ ବିଦେହନନ୍ଦିନୀ ସୀତାଙ୍କୁ କ୍ରୋଧ ଏବଂ ଦର୍ପସହକାରେ ଏହି କଥା କହି ପୁଣି କହିଲା । ୭ । “ମୁଁ ତୋତେ ଯେଉଁ ଦୁଇ ମାସ ଅବଧି ଦେଇଅଛି, ତାହା ପାଳନ କରିବି । ହେ ବରାନନେ ! ତା’ପରେ ତୋତେ ମୋ ଶଯ୍ୟାରେ ଆରୋହଣ କରିବାକୁ ହେବ । ୮ । ଦୁଇ ମାସ ଅତୀତ ହେଲାଉତ୍ତାରୁ ଯଦି ତୁ ମୋତେ ଭର୍ତ୍ତାରୂପେ ଭଜନ କରିବାକୁ ଇଚ୍ଛା ନ କରୁ, ତେବେ ମୋର ସୂପକାରମାନେ ମୋର ପ୍ରାତର୍ଭୋଜନ ନିମନ୍ତେ ତୋତେ ଖଣ୍ଡ ଖଣ୍ଡ କରି ଛେଦନ କରିବେ” । ୯ । ରାକ୍ଷସରାଜ ଏହିପରି ଜାନକୀଙ୍କୁ ଭର୍ତ୍ସନା କରିବାର ଦେଖି ସେଠାରେ ଥିବା ଦେବ ଗନ୍ଧର୍ବ କନ୍ୟାମାନେ ସମସ୍ତେ ଅତିଶୟ ବିଷଣ୍ଣହେଲେ ।୧୦। କେହି ଓଷ୍ଠ, କେହି ନେତ୍ର, କେହି ବା ମୁଖଭଙ୍ଗିଦ୍ଵାରା ଇଙ୍ଗିତକରି ସେହି ରାକ୍ଷସ ନର୍ଯାତିତା ଜାନକୀଙ୍କୁ ଆଶ୍ଵାସନା ଦେବାକୁ ଲାଗିଲେ । ୧୧ । ସୀତା ସେମାନଙ୍କର ଆଶ୍ଵାସନା ପାଇ ନିଜର ସଦାଚାର ଏବଂ ରାମଙ୍କ ଶୌର୍ଯ୍ୟରେ ବିଶ୍ଵାସହେତୁ ଗର୍ବିତ ବାକ୍ୟରେ ରାକ୍ଷସାଧିପ ରାବଣକୁ ତା’ ନିଜର ହିତକର କଥା କହିଲେ । ୧୨ । “ବୋଧହେଉଛି, ତୋର ହିତ କାମନା କରିବାଭଳି କୌଣସି ଲୋକ ନାହାଁନ୍ତି; ଥିଲେ ସେ ନିଶ୍ଚୟ ଏଗର୍ହିତ କାର୍ଯ୍ୟକରିବାକୁ ତୋତେ ନିବାରଣ କରୁଥାନ୍ତା ।୧୩। ମୁଁ ଇନ୍ଦ୍ରଙ୍କର

ମାଂ ତ୍ୱ ଧର୍ମାତ୍ମନଃ ପତ୍ନୀଂ ଶଚୀମିବ ଶଚୀପତେଃ ।
ତ୍ୱଦନ୍ୟସ୍ତ୍ରିଷୁ ଲୋକେଷୁ ପ୍ରାର୍ଥୟେନ୍ମନସାପି କଃ । ୧୪ ।
ରାକ୍ଷସାଧମ ରାମସ୍ୟ ଭାର୍ଯାମମିତତେଜସଃ ।
ଉକ୍ତବାନସି ଯତ୍ପାପଂ କ୍ୱ ଗତସ୍ତସ୍ୟ ମୋକ୍ଷ୍ୟସେ । ୧୫ ।
ଯଥା ଦୃପ୍ତଶ୍ଚ ମାତଙ୍ଗଃ ଶଶଶ୍ଚ ସହିତୋ ବନେ ।
ତଥା ଦ୍ୱିରଦବଦ୍ରାମସ୍ତ୍ୱଂ ନୀଚ ଶଶବତ୍ ସ୍ମୃତଃ । ୧୬ ।
ସ ତ୍ୱମିକ୍ଷ୍ୱାକୁନାଥଂ ବୈ କ୍ଷିପନ୍ନିହ ନ ଲଜ୍ଜସେ ।
ଚକ୍ଷୁଷୋର୍ବିଷୟେ ତସ୍ୟ ନ ଯାବଦୁପଗଚ୍ଛସି । ୧୭ ।
ଇମେ ତେ ନୟନେ କ୍ରୂରେ ବିକୃତେ କୃଷ୍ଣପିଙ୍ଗଲେ ।
କ୍ଷିତୌ ନ ପତତେ କସ୍ମାନ୍ମାମନାର୍ଯ ନିରୀକ୍ଷତଃ । ୧୮ ।
ତସ୍ୟ ଧର୍ମାତ୍ମନଃ ପତ୍ନୀଂ ସ୍ନୁଷାଂ ଦଶରଥସ୍ୟ ଚ ।
କଥଂ ବ୍ୟାହରତୋ ମାଂ ତେ ନ ଜିହ୍ୱା ପାପ ଶୀର୍ଯତେ । ୧୯ ।
ଅସଂଦେଶାତ୍ତୁ ରାମସ୍ୟ ତପସଶ୍ଚାନୁପାଲନାତ୍ ।
ନ ତ୍ୱାଂ କୁର୍ମି ଦଶଗ୍ରୀବ ଭସ୍ମ ଭସ୍ମାର୍ହ ତେଜସା ।୨୦।

---

ଶଚୀପରି ଧର୍ମାତ୍ମା ରାମଙ୍କର ଧର୍ମପତ୍ନୀ । ତ୍ରିଭୁବନରେ ତୋଭିନ୍ନ ଆଉ କିଏ ଏପରି ଅଛି, ଯେ ମୋତେ ମନରେ ମଧ୍ୟ କାମନା କରନ୍ତା ? ୧୪ । ହେ ରାକ୍ଷସାଧମ ! ତୁ ଅମିତତେଜା ରାମଙ୍କ ଭାର୍ଯ୍ୟାକୁ ଯେଉଁ ପାପକଥା କହିଲୁ, କେଉଁଠାକୁ ଯାଇଁ ସେଥିରୁ ପରିତ୍ରାଣ ପାଇବୁ ?।୧୫ । ବନମଧ୍ୟରେ ଯେପରି ଦର୍ପିତ ମାତଙ୍ଗ ଏବଂ ଶଶକ ଏକତ୍ର ରହନ୍ତି, ସେହିପରି ରାମ ଯେବେ ମାତଙ୍ଗ ହୁଅନ୍ତି, ତେବେ ତୁ ନୀଚ ଶଶକସଦୃଶ ଅଟୁ । ୧୬ । ତାଦୃଶ ତୁ ଯେପର୍ଯ୍ୟନ୍ତ ଇକ୍ଷ୍ୱାକୁନାଥ ରାମଙ୍କର ଦୃଷ୍ଟିରେ ପତିତ ନ ହୋଇଛୁ,ତେତିକବେଳଯାଏ ରଘୁନାଥ ରାମଙ୍କର ନିନ୍ଦାକରି ଲଜ୍ଜିତ ହେଉନାହୁଁ ।୧୭। ହେ ଅନାର୍ଯ୍ୟ ! ତୁ ଅସତ୍ ଭାବରେ ମୋ ପ୍ରତି ଦୃଷ୍ଟି ନିକ୍ଷେପକରୁଛୁ , ତଥାପି ତୋର ଏହି କୃଷ୍ଣପିଙ୍ଗଳବର୍ଣ୍ଣ, କ୍ରୂର,ବିକୃତ,ନୟନଦ୍ୱୟ ଭୂମିରେ ଖସି ପଡ଼ୁନାହିଁ କାହିଁକି ? ।୧୮। ରେ ପାପିଷ୍ଠ ! ମୁଁ ସେହି ଧର୍ମାତ୍ମା ରାମଙ୍କର ପତ୍ନୀ ଏବଂ ଦଶରଥଙ୍କର ପୁତ୍ରବଧୂ । ମୋତେ ଏପରି କୁକଥା କହି ତୋର ଜିହ୍ୱା ଖସି ପଡ଼ୁନାହିଁ କାହିଁକି ?। ୧୯ । ଦଶଗ୍ରୀବ ! ରାମଙ୍କର ଆଦେଶ ନ ଥିବାରୁ ଏବଂ ମୁଁ ତାପସବ୍ରତ ପାଳନ କରୁଥିବାରୁ ତୁ ଭସ୍ମୀଭୂତ ହେବାର ଯୋଗ୍ୟ ହେଲେ ମଧ୍ୟ ମୁଁ ନିଜର ତେଜରେ

ନାପହର୍ତ୍ତୁମହଂ ଶକ୍ୟା ତସ୍ୟ ରାମସ୍ୟ ଧୀମତଃ ।
ବଧ୍ୟସ୍ତ୍ୱଂ ବଧାର୍ଥାସ୍ମି ବହ୍ନତୋ ନାତ୍ର ସଂଶୟଃ । ୨୧ ।
ଶୂରେଣ ଧନଦଭ୍ରାତ୍ରା ବଲୈଃ ସମୁଦିତେନ ଚ ।
ଅପୋହ୍ୟ ରାମଂ କସ୍ମାଚ୍ଚିଦ୍ଦାରଚୌର୍ଯ୍ୟଂ ତ୍ୱୟା କୃତମ୍ । ୨୨ ।
ସୀତାୟା ବଚନଂ ଶ୍ରୁତ୍ୱା ରାବଣୋ ରାକ୍ଷସାଧିପଃ ।
ବିବୃତ୍ୟ ନୟନେ କ୍ରୂରେ ଜାନକୀମନ୍ୱବୈକ୍ଷତ । ୨୩ ।
ନୀଲଜୀମୂତସଂକାଶୋ ମହାଭୁଜଶିରୋଧରଃ ।
ସିଂହସତ୍ତ୍ୱଗତଃ ଶ୍ରୀମାନ୍ଦୀପ୍ତଜିହ୍ୱୋଗ୍ରଲୋଚନଃ । ୨୪ ।
ଚଲାଗ୍ରମୁକୁଟପ୍ରାଂଶୁଶ୍ଚିତ୍ରମାଲ୍ୟାନୁଲେପନଃ ।
ରକ୍ତମାଲ୍ୟାମ୍ବରଧରସ୍ତପ୍ତାଙ୍ଗଦବିଭୂଷଣଃ । ୨୫ ।
ଶ୍ରୋଣୀସୂତ୍ରେଣ ମହତା ମେଚକେନ ସୁସଂବୃତଃ ।
ଅମୃତୋତ୍ପାଦନେ ନଦ୍ଧୋ ଭୁଜଙ୍ଗେନେବ ମନ୍ଦରଃ । ୨୬ ।
ତାଭ୍ୟାଂ ସ ପରିପୂର୍ଣାଭ୍ୟାଂ ଭୁଜାଭ୍ୟାଂ ରାକ୍ଷସେଶ୍ୱରଃ ।
ଶୁଶୁଭେଽଚଲସଂକାଶଃ ଶୃଙ୍ଗାଭ୍ୟାମିବ ମନ୍ଦରଃ * । ୨୭ ।

---

ତୋତେ ଭସ୍ମ କରି ଦେଉ ନାହିଁ । ୨୦ । ତୁ କଦାପି ସେହି ଧୀମାନ୍ ରାମଙ୍କଠାରୁ ମୋତେ ଅପହରଣ କରିପାରି ନ ଥାନ୍ତ; ନିଶ୍ଚୟ ତୋର ବଧ ନିମନ୍ତେ ବିଧାତା ମୋତେ ଏହା ଘଟାଇ ଅଛନ୍ତି, ଏଥିରେ ସନ୍ଦେହ ନାହିଁ । ୨୧ । ତୁ ବୀର ଏବଂ କୁବେରଙ୍କର ଭାଇ, ତୁ ବଳରେ ମଧ୍ୟ ପରିପୁଷ୍ଟ । ତୁ କହେତୁରୁ ରାମଙ୍କୁ ଅପସାରିତ କରି ନେଇ ତାଙ୍କ ଭାର୍ଯ୍ୟାକୁ ଚୋରିକରି ଆଣିଲୁ ? । ୨୨ । ସୀତାଙ୍କ କଥା ଶୁଣି ରାକ୍ଷସାଧିପ ରାବଣ କ୍ରୂର ନୟନଦ୍ୱୟ ଘୂର୍ଣ୍ଣନକରି ଜାନକୀଙ୍କ ଆଡ଼କୁ ଦୃଷ୍ଟିପାତ କରିବାକୁ ଲାଗିଲା । । ୨୩ । ରାବଣ ଦେଖିବାକୁ ନୀଳ ମେଘସଦୃଶ, ତାହାର ବାହୁ ଓ ଗ୍ରୀବା ଦୀର୍ଘ ଏବଂ ପ୍ରଶସ୍ତ, ଗମନ ସିଂହସଦୃଶ ପରାକ୍ରାନ୍ତ, ଜିହ୍ୱା ଓ ଲୋଚନ ଦୀପ୍ତ ଏବଂ ପ୍ରଖର, ଆକୃତି ଅତିଦୀର୍ଘ, ମୁକୁଟର ଅଗ୍ରଭାଗ ସଂଚଳିତ ହେଉଅଛି; କଣ୍ଠରେ ବିଚିତ୍ର ମାଲ୍ୟ, ଶରୀରରେ ନାନାବିଧ ଅନୁଲେପନ ରହିଅଛି । ଶ୍ରୀମାନ୍ ରାବଣ ରକ୍ତମାଲ୍ୟ, ରକ୍ତବସ୍ତ୍ର ଏବଂ ସମୁଜ୍ଜ୍ୱଳ ହସ୍ତାଭରଣ ଧାରଣ କରିଥିଲା, ବୃହତ୍ ମେଖଳା କଟିଦେଶରେ ପରିଧାନ କରିଥିଲା, ଯେପରି କି, ଅମୃତମନ୍ଥନ ସମୟରେ ମନ୍ଦର ପର୍ବତ ଭୁଜଙ୍ଗଦ୍ୱାରା ବେଷ୍ଟିତ ହୋଇ ରହିଅଛି । ୨୩-୨୭ । ସେହି ରାକ୍ଷସାଧିପତି

---

* ଏଠାରେ ରାବଣର ଦୁଇଟି ମାତ୍ର ବାହୁ ବର୍ଣ୍ଣିତ ହୋଇଅଛି । ଏଥିରୁ ଜଣାଯାଏ, ରାବଣର ସ୍ୱଭାବତଃ ଦୁଇଟି ମାତ୍ର ହାତ । ଯୁଦ୍ଧବେଳେ ବା ଇଚ୍ଛାକରିବାମାତ୍ରେ ତାହାର ୨୦ଟି ହାତ ହୋଇଯାଏ ।

ତରୁଣାଦିତ୍ୟବର୍ଣ୍ଣାଭ୍ୟାଂ କୁଣ୍ଡଳାଭ୍ୟାଂ ବିଭୂଷିତଃ ।
ରକ୍ତପଲ୍ଲବପୁଷ୍ପାଭ୍ୟାମଶୋକାଭ୍ୟାମିବାଚଳଃ । ୨୮ ।
ସ କଳ୍ପବୃକ୍ଷପ୍ରତିମୋ ବସନ୍ତ ଇବ ମୂର୍ତ୍ତିମାନ୍ ।
ଶ୍ମଶାନଚୈତ୍ୟପ୍ରତିମୋ ଭୂଷିତୋଽପି ଭୟଙ୍କରଃ । ୨୯ ।
ଅବେକ୍ଷମାଣୋ ବୈଦେହୀଂ କୋପସଂରକ୍ତଲୋଚନଃ ।
ଉବାଚ ରାବଣଃ ସୀତାଂ ଭୁଜଙ୍ଗ ଇବ ନିଃଶ୍ୱସନ୍ । ୩୦ ।
ଅନୟେନାଭିସଂପନ୍ନମର୍ଥହୀନମନୁବ୍ରତେ ।
ନାଶୟାମ୍ୟହମଦ୍ୟ ତ୍ୱାଂ ସୂର୍ଯ୍ୟଃ ସନ୍ଧ୍ୟାମିବୌଜସା । ୩୧ ।
ଇତ୍ୟୁକ୍ତ୍ୱା ମୈଥିଲୀଂ ରାଜା ରାବଣଃ ଶତ୍ରୁରାବଣଃ ।
ସଂଦଦର୍ଶ ତତଃ ସର୍ବା ରାକ୍ଷସୀର୍ଘୋରଦର୍ଶନାଃ । ୩୨ ।
ଏକାକ୍ଷୀମେକକର୍ଣ୍ଣାଂ ଚ କର୍ଣ୍ଣପ୍ରାବରଣାଂ ତଥା ।
ଗୋକର୍ଣ୍ଣୀଂ ହସ୍ତିକର୍ଣ୍ଣୀଂ ଚ ଲମ୍ବକର୍ଣ୍ଣୀମକର୍ଣ୍ଣିକାମ୍ ।୩୩ ।

---

ଦୁଇ ସ୍ଥୂଳବାହୁଦ୍ୱାରା ଦୁଇ ଶୃଙ୍ଗବିଶିଷ୍ଟ ମନ୍ଦରପର୍ବତପରି ଶୋଭାପାଉଥିଲା ।୨୭ । ବାଳସୂର୍ଯ୍ୟସମ ବର୍ଣ୍ଣବିଶିଷ୍ଟ କୁଣ୍ଡଳ ଦୁଇଟି ତାହାର ଶୋଭା ସମ୍ପାଦନ କରୁଥିଲା । ବୋଧ ହେଉଥିଲା, ଯେପରି କି ଗୋଟିଏ ପର୍ବତ ଦୁଇଟି ରକ୍ତପଲ୍ଲବ ଏବଂ ରକ୍ତ-ପୁଷ୍ପଧାରୀ ଅଶୋକ ବୃକ୍ଷରେ ଶୋଭିତ ହୋଇଅଛି । ୨୮ । କଳ୍ପବୃକ୍ଷସଦୃଶ ଏବଂ ମୂର୍ତ୍ତିମାନ୍ ବସନ୍ତ ପରି ଭୂଷିତ ହୋଇଥିଲେ ମଧ୍ୟ ଶ୍ମଶାନସ୍ଥ ଚୈତ୍ୟବୃକ୍ଷପରି ତାହାକୁ ଦେଖିଲେ ଭୟ ହେଉଥିଲା । ୨୯ । ରାବଣ କ୍ରୋଧରେ ରକ୍ତଚକ୍ଷୁ ହୋଇ ସୀତାଙ୍କୁ କଟମଟ କରି ଚାହିଁ ସର୍ପସଦୃଶ ଫଁ ଫଁ ନିଃଶ୍ୱାସ ପକାଇ ତାହାଙ୍କୁ କହିଲା । ୩୦ । "ତୁ ଯେ ବ୍ରତ ପାଳନ କରୁଅଛୁ ତାହା ଅର୍ଥହୀନ ଏବଂ ନୀତିବିଗର୍ହିତ । ସୂର୍ଯ୍ୟ ଯେପରି ନିଜର ତେଜରେ ପ୍ରାତଃକାଳୀନ ଅନ୍ଧକାର ନାଶକରେ, ସେହିପରି ମୁଁ ତୋତେ ଆଜି ନାଶ କରିବି" । ୩୧ । ଶତ୍ରୁର ଭୟ ଉତ୍ପାଦନକାରୀ ରାବଣ ମୈଥିଳୀଙ୍କୁ ଏହିପ୍ରକାର କହି ଘୋରଦର୍ଶନା ରାକ୍ଷସୀମାନଙ୍କ ଆଡ଼କୁ ଦୃଷ୍ଟି ନିକ୍ଷେପ କଲା । ୩୨ । ଏହି ସବୁ ରାକ୍ଷସଙ୍କ ମଧ୍ୟରେ କାହାର ଗୋଟିଏ ଆଖି, କାହାର ଗୋଟିଏ କାନ, କାହାର କାନ ମୁହଁକୁ ଘୋଡ଼ାଇ ପକାଇଛି, କାହାର କାନ ଗୋରୁ କାନପରି, କାହାର କାନ ହାତୀକାନପରି, କାହାର କାନ ଅତିଲମ୍ବା, କାହାର ବା ଆଦୌ କାନ ନାହିଁ ।୩୩। କିଏ ହସ୍ତିପାଦୀ, କିଏ ଅଶ୍ୱପାଦୀ, କିଏ

ହସ୍ତିପାଦ୍ୟଶ୍ୱପାଦ୍ୟୌ ଚ ଗୋପଦୀଂ ପାଦଚୂଳିକାମ୍ ।
ଏକାକ୍ଷୀମେକପାଦୀଂ ଚ ପୃଥୁପାଦୀମପାଦିକାମ୍ । ୩୪ ।
ଅତିମାତ୍ରଶିରୋଗ୍ରୀବାମତିମାତ୍ରକୁଚୋଦରୀମ୍ ।
ଅତିମାତ୍ରାସ୍ୟନେତ୍ରାଂ ଚ ଦୀର୍ଘଜିହ୍ୱାନଖାମପି । ୩୫ ।
ଅନାସିକାଂ ସିଂହମୁଖୀଂ ଗୋମୁଖୀଂ ସୂକରୀମୁଖୀମ୍ ।
ଯଥା ମଦ୍‌ବଶଗା ସୀତା କ୍ଷିପ୍ରଂ ଭବତି ଜାନକୀ । ୩୬ ।
ତଥା କୁରୁତ ରାକ୍ଷସ୍ୟଃ ସର୍ବା କ୍ଷିପ୍ରଂ ସମେତ୍ୟ ବା ।
ପ୍ରତିଲୋମାନୁଲୋମୈଶ୍ଚ ସାମଦାନାଦିଭେଦନୈଃ । ୩୭ ।
ଆବର୍ଜୟତ ବୈଦେହୀଂ ଦଣ୍ଡସ୍ୟୋଦ୍ୟମନେନ ଚ ।
ଇତି ପ୍ରତିସମାଦିଶ୍ୟ ରାକ୍ଷସେନ୍ଦ୍ରଃ ପୁନଃ ପୁନଃ । ୩୮ ।
କାମମନ୍ୟୁପରୀତାତ୍ମା ଜାନକୀଂ ପ୍ରତି ଗର୍ଜତି ।
ଉପଗମ୍ୟ ତତଃ କ୍ଷିପ୍ରଂ ରାକ୍ଷସୀ ଧାନ୍ୟମାଳିନୀ ⁕ । ୩୯ ।
ପରିଷ୍ୱଜ୍ୟ ଦଶଗ୍ରୀବମିଦଂ ବଚନମବ୍ରବୀତ୍ ।
ମୟା କ୍ରୀଡ଼ ମହାରାଜ ସୀତୟା କିଂ ତବାନୟା । ୪୦ ।

---

ଗୋପଦୀ, କାହାର ବା ପାଦରେ ଗୋଛାଏ ବାଳ ଅଛି । କାହାର ଗୋଟିଏ ଆଖି, କାହାର ଗୋଟିଏ ପାଦ, କାହାର ପାଦ ଅତି ସ୍ଥୂଳ, କାହାର ବା ଆଦୌ ପାଦ ନାହିଁ । ୩୪ । କାହାର ମସ୍ତକ ଓ ଗ୍ରୀବା ଅତି ବୃହତ୍, କାହାର ବା ଉଦର ଓ ସ୍ତନ ଅତି ଅଡ଼, କାହାର ବା ମୁଖ ଓ ଚକ୍ଷୁର ଆକାର ଅତି ବୃହତ୍, କାହାର ବା ଜିହ୍ୱା ଓ ନଖ ଅତି ବିଶାଳ ।୩୫। କାହାର ନାସିକା ନାହିଁ, କାହାର ବା ମୁଖ ସିଂହମୁଖପରି, କାହାର ଗୋମୁଖପରି,କାହାର ବା ଘୁଷୁରିମୁଖପରି । ରାବଣ ଏହି ସମସ୍ତ ଘୋରଦର୍ଶନା ରାକ୍ଷସୀଙ୍କୁ ଆଦେଶ ଦେଲା । "ହେ ରାକ୍ଷସୀଗଣ ! ସୀତା ସତ୍ୱର ଯେପରି ମୋର ବଶକୁ ଆସିବ, ତୁମେମାନେ ସମସ୍ତେ ମିଶି ସେ ବିଷୟରେ ଚେଷ୍ଟା କର । ପ୍ରତିକୂଳ ବ୍ୟବହାରଦ୍ୱାରା ହେଉ ବା ଅନୁକୂଳ ବ୍ୟବହାରରେ ହେଉ କିମ୍ବା ସାମ, ଦାନ ବା ଭେଦଦ୍ୱାରା ହେଉ ଅଥବା ଦଣ୍ଡ ଉତ୍ତୋଳନ କରିବାଦ୍ୱାରା ହେଉ ସୀତାକୁ ମୋ ପ୍ରତି ଆସକ୍ତ କରାଅ ।"ରାକ୍ଷସରାଜ ରାବଣ ବାରମ୍ବାର ଏହିପ୍ରକାର ଆଦେଶକରି କାମ ଏବଂ କ୍ରୋଧରେ ଅଭିଭୂତ ହୋଇ ଜାନକୀଙ୍କ ପ୍ରତି ଗର୍ଜନ କରିବାକୁ ଲାଗିଲା । ଅନନ୍ତର ଧାନ୍ୟମାଳିନୀ ନାମକ ରାକ୍ଷସୀ ସତ୍ୱର ଦଶଗ୍ରୀବ ରାବଣ ନିକଟକୁ ଯାଇ ତାହାକୁ ଆଲିଙ୍ଗନକରି କହିଲା, "ହେ ମହାରାଜ ! ମୋ ସହିତ ବିହାରକର, ଏ ସୀତାରେ

---

⁕ ଧାନ୍ୟମାଳିନୀ ରାବଣର କନିଷ୍ଠା ରାଣୀ ଏବଂ ଅତିକାୟର ମାତା ।

ବିବର୍ଣ୍ଣାୟା କୃପଣାୟା ମାନୁଷ୍ୟା ରାକ୍ଷସେଶ୍ୱର ।
ନୂନମସ୍ୟାଂ ମହାରାଜ ନ ବିଦ୍ୟାନ୍ ଭୋଗସତ୍ତମାନ୍ । ୪୧ ।
ବିଦଧାତ୍ୟମରଶ୍ରେଷ୍ଠସ୍ତବ ବାହୁବଲାର୍ଜିତାନ୍ ।
ଅକାମାଂ କାମୟାନସ୍ୟ ଶରୀରମୁପତପ୍ୟତେ । ୪୨ ।
ଇଚ୍ଛନ୍ତୀଂ କାମୟାନସ୍ୟ ପ୍ରୀତିର୍ଭବତି ଶୋଭନା ।
ଏବମୁକ୍ତସ୍ତୁ ରାକ୍ଷସ୍ୟା ସମୁତ୍କ୍ଷିପ୍ତସ୍ତତୋ ବଲୀ ।
ପ୍ରହସନ୍ମେଘସଂକାଶୋ ରାକ୍ଷସଃ ସ ନ୍ୟବର୍ତ୍ତତ । ୪୩ ।
ପ୍ରସ୍ଥିତଃ ସ ଦଶଗ୍ରୀବଃ କମ୍ପୟନ୍ନିବ ମେଦିନୀମ୍ ।
ଜ୍ୱଲଦ୍‌ଭାସ୍କରସଂକାଶଂ ପ୍ରବିବେଶ ନିବେଶନମ୍ । ୪୪ ।
ଦେବଗନ୍ଧର୍ବକନ୍ୟାଶ୍ଚ ନାଗକନ୍ୟାଶ୍ଚ ତାସ୍ତତଃ ।
ପରିବାର୍ଯ ଦଶଗ୍ରୀବଂ ପ୍ରବିଶୁସ୍ତା ଗୃହୋତ୍ତମମ୍ । ୪୫ ।
ସ ମୈଥିଲୀଂ ଧର୍ମପରାମବସ୍ଥିତାମ୍
ପ୍ରବେପମାନାଂ ପରିଭର୍ତ୍ସ୍ୟ ରାବଣଃ ।
ବିହାୟ ସୀତାଂ ମଦନେନ ମୋହିତଃ
ସ୍ୱମେବ ବେଶ୍ମ ପ୍ରବିବେଶ ରାବଣଃ । ୪୬ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ସୁନ୍ଦରକାଣ୍ଡେ ମାସଦ୍ୱୟାବଧିକରଣଂ ନାମ ଦ୍ୱାବିଂଶଃ ସର୍ଗଃ ।

---

ଭୁମ୍ବର କ ଦରକାର ?୩୬-୪୦ । ହେ ରାକ୍ଷସେଶ୍ୱର ! ସୀତା ବିବର୍ଣ୍ଣା, ଦୁଃଖିନୀ ଏବଂ ମାନବୀ । ହେ ମହାରାଜ ! ତୁମ୍ଭେ ବାହୁବଳରେ ଯେଉଁ ସମସ୍ତ ଉତ୍କୃଷ୍ଟ ଭୋଗ୍ୟବସ୍ତୁ ଆହରଣ କରିଅଛ, ନିଶ୍ଚୟ ଦେବରାଜ ଏହା ଅଦୃଷ୍ଟରେ ସେସବୁ ଲେଖି ନାହାନ୍ତି । ଯେଉଁ ବ୍ୟକ୍ତି ଅକାମା ସ୍ତ୍ରୀକୁ କାମନାକରେ ତାହାର ଶରୀର ଦଗ୍ଧ ହେଉଥାଏ, ପୁଣି ଅଭିଳାଷିଣୀ କାମିନୀକୁ ଯେଉଁ ପୁରୁଷ କାମନାକରେ ତାହାର ପ୍ରୀତି ଅତି ସୁନ୍ଦର ।” ସେ ରାକ୍ଷସୀ ଏହିପରି କହନ୍ତେ ଅତି କ୍ଷୁବ୍ଧ ବଳବାନ୍ ମେଘସଦୃଶ ରାକ୍ଷସ ରାବଣ ହସି ହସି ନିବୃତ୍ତ ହେଲା ।୪୧-୪୩। ଅନନ୍ତର ଦଶାନନ ମେଦିନୀକୁ କମ୍ପିତ କରି ସେଠାରୁ ପ୍ରସ୍ଥାନକଲା । ସେ ପ୍ରଦୀପ୍ତ ସୂର୍ଯ୍ୟସଦୃଶ ଗୃହରେ ପ୍ରବେଶ କଲା । ୪୪ । ତା ସଙ୍ଗରେ ଥିବା ଦେବ, ଗନ୍ଧର୍ବ ଓ ନାଗକନ୍ୟାମାନେ ସମସ୍ତେ ଚତୁର୍ଦ୍ଦିଗରୁ ରାବଣକୁ ବେଷ୍ଟନକରି ସେହି ଉତ୍କୃଷ୍ଟ ଗୃହମଧ୍ୟରେ ପ୍ରବେଶକଲେ । ୪୫ । ରାବଣ ଧର୍ମପରାୟଣା,ସ୍ଥିରହୃଦୟା,କମ୍ପିତଦେହା, ସୀତାଙ୍କୁ ଭର୍ତ୍ସନା କରିସାରି ତାଙ୍କୁ ଛାଡ଼ି ମଦନରେ ମୋହିତ ହୋଇ ନିଜ ଗୃହମଧ୍ୟରେ ପ୍ରବେଶ କଲା । ୪୬ ।

---

# ତ୍ରୟୋବିଂଶଃ ସର୍ଗଃ

## ରାକ୍ଷସୀପ୍ରରୋଚନମ୍

ଇତ୍ୟୁକ୍ତ୍ୱା ମୈଥିଲୀଂ ରାଜା ରାବଣଃ ଶତ୍ରୁରାବଣଃ ।
ସନ୍ଦିଶ୍ୟ ଚ ତତଃ ସର୍ବା ରାକ୍ଷସୀର୍ନିର୍ଜଗାମ ହ । ୧ ।
ନିଷ୍କ୍ରାନ୍ତେ ରାକ୍ଷସେନ୍ଦ୍ରେ ତୁ ପୁନରନ୍ତଃପୁରଂ ଗତେ ।
ରାକ୍ଷସ୍ୟୋ ଭୀମରୂପାସ୍ତାଃ ସୀତାଂ ସମଭିଦୁଦ୍ରୁବୁଃ । ୨ ।
ତତଃ ସୀତାମୁପାଗମ୍ୟ ରାକ୍ଷସ୍ୟଃ କ୍ରୋଧମୂର୍ଚ୍ଛିତାଃ ।
ପରଂ ପରୁଷୟା ବାଚା ବୈଦେହୀମିଦମବ୍ରୁବନ୍ । ୩ ।
ପୌଲସ୍ତ୍ୟସ୍ୟ ବରିଷ୍ଠସ୍ୟ ରାବଣସ୍ୟ ମହାତ୍ମନଃ ।
ଦଶଗ୍ରୀବସ୍ୟ ଭାର୍ଯ୍ୟା ତ୍ୱଂ ସୀତେ ନ ବହୁ ମନ୍ୟସେ । ୪ ।
ତତସ୍ତ୍ୱେକଜଟା ନାମ ରାକ୍ଷସୀ ବାକ୍ୟମବ୍ରବୀତ୍ ।
ଆମନ୍ତ୍ର୍ୟ କ୍ରୋଧତାମ୍ରାକ୍ଷୀ ସୀତାଂ କରତଲୋଦରୀମ୍ । ୫ ।
ପ୍ରଜାପତୀନାଂ ଷଣ୍ଣାଂ ତୁ ଚତୁର୍ଥୋଽୟଂ ପ୍ରଜାପତିଃ ।
ମାନସୋ ବ୍ରହ୍ମଣଃ ପୁତ୍ରଃ ପୁଲସ୍ତ୍ୟ ଇତି ବିଶ୍ରୁତଃ । ୬ ।

---

## ୨୩ଶ ସର୍ଗ

( ରାକ୍ଷସୀମାନଙ୍କର ପ୍ରରୋଚନା )

ଶତ୍ରୁମାନଙ୍କର ଭୟ ଉତ୍ପାଦନକାରୀ ରାଜା ରାବଣ ମୈଥିଳୀଙ୍କୁ ଏହିପ୍ରକାର କହି ଏବଂ ସମସ୍ତ ରାକ୍ଷସୀଙ୍କୁ ଆଦେଶ ଦେଇ ସେଠାରୁ ବାହାରିଗଲେ । ୧ । ରାକ୍ଷସରାଜ ସେଠାରୁ ବାହାରିଯାଇ ଅନ୍ତଃପୁରମଧ୍ୟରେ ପ୍ରବେଶ କରିବାପରେ ସେହି ଭୀଷଣରୂପା ରାକ୍ଷସୀମାନେ ସୀତାଙ୍କ ଆଡ଼କୁ ଧାଇଁ ଆସିଲେ । ୨ । ଅନନ୍ତର ସେହି ରାକ୍ଷସୀମାନେ କ୍ରୋଧରେ ହତଜ୍ଞାନ ହୋଇ ବୈଦେହନନ୍ଦନୀ ସୀତାଙ୍କ ନିକଟକୁ ଯାଇ ଅତି କଠୋରବାକ୍ୟରେ ତାଙ୍କୁ କହିଲେ । ୩ । "ହେ ସୀତେ ! ପୁଲସ୍ତ୍ୟନନ୍ଦନ, ଲୋକଶ୍ରେଷ୍ଠ, ଦଶଗ୍ରୀବ ମହାତ୍ମା ରାବଣର ଭାର୍ଯ୍ୟା ହେବାକୁ ତୁ ବହୁ ଭାଗ୍ୟ ମନେ କରୁନାହୁଁ ?। ୪ । ଅନନ୍ତର ଏକଜଟା ନାମକ ରାକ୍ଷସୀ କ୍ରୋଧରେ ଚକ୍ଷୁକୁ ତାମ୍ରବର୍ଣ୍ଣ କରି କରତଳଦ୍ୱାରା ଉଦରକୁ ଆବୃତ କରି ରଖିଥିବା ସୀତାଙ୍କୁ ସମ୍ବୋଧନ କରି କହିଲା । ୫ । "ବ୍ରହ୍ମାଙ୍କର ମାନସଜାତ ପୁତ୍ର ଛଅ ପ୍ରଜାପତିଙ୍କ ମଧ୍ୟରେ ଚତୁର୍ଥ ପ୍ରଜାପତି ପୁଲସ୍ତ୍ୟ ନାମରେ ବିଖ୍ୟାତ ଅଟନ୍ତି । ୬ । ପୁଲସ୍ତ୍ୟଙ୍କର ମାନସ ପୁତ୍ର

ପୁଲସ୍ତ୍ୟସ୍ୟ ତୁ ତେଜସ୍ୱୀ ମହର୍ଷିର୍ମାନସଃ ସୁତଃ ।
ନାମ୍ନା ସ ବିଶ୍ରବା ନାମ ପ୍ରଜାପତିସମପ୍ରଭଃ । ୭ ।
ତସ୍ୟ ପୁତ୍ରୋ ବିଶାଳାକ୍ଷି ରାବଣଃ ଶତ୍ରୁରାବଣଃ ।
ତସ୍ୟ ତ୍ୱଂ ରାକ୍ଷସେନ୍ଦ୍ରସ୍ୟ ଭାର୍ଯ୍ୟା ଭବିତୁମର୍ହସି । ୮ ।
ମୟୋକ୍ତଂ ଚାରୁସର୍ବାଙ୍ଗି ବାକ୍ୟଂ କିଂ ନାନୁମନ୍ୟସେ ।
ତତୋ ହରିଜଟା ନାମ ରାକ୍ଷସୀ ବାକ୍ୟମବ୍ରବୀତ୍ । ୯ ।
ବିବୃତ୍ୟ ନୟନେ କୋପାନ୍ମାର୍ଜାରସଦୃଶେକ୍ଷଣା ।
ଯେନ ଦେବାସ୍ତ୍ରୟସ୍ତ୍ରିଂଶଦ୍ଦେବରାଜଶ୍ଚ ନିର୍ଜିତାଃ । ୧୦ ।
ତସ୍ୟ ତ୍ୱଂ ରାକ୍ଷସେନ୍ଦ୍ରସ୍ୟ ଭାର୍ଯ୍ୟା ଭବିତୁମର୍ହସି ।
ବୀର୍ଯ୍ୟୋତ୍ସିକ୍ତସ୍ୟ ଶୂରସ୍ୟ ସଂଗ୍ରାମେଷ୍ୱନିବର୍ତ୍ତିନଃ ।
ବଲିନୋ ବୀର୍ଯ୍ୟଯୁକ୍ତସ୍ୟ ଭାର୍ଯ୍ୟା ତ୍ୱଂ କିଂ ନ ଲପ୍ସ୍ୟସେ । ୧୧ ।
ପ୍ରିୟାଂ ବହୁମତାଂ ଭାର୍ଯ୍ୟାଂ ତ୍ୟକ୍ତ୍ୱା ରାଜା ମହାବଲଃ ।
ସର୍ବାସାଂ ଚ ମହାଭାଗାଂ ତ୍ୱାମୁପୈଷ୍ୟତି ରାବଣଃ । ୧୨ ।
ସମୃଦ୍ଧଂ ସ୍ତ୍ରୀସହସ୍ରେଣ ନାନାରତ୍ନୋପଶୋଭିତମ୍ ।
ଅନ୍ତଃପୁରଂ ତଦୁତ୍ସୃଜ୍ୟ ତ୍ୱାମୁପୈଷ୍ୟତି ରାବଣଃ । ୧୩ ।

---

ସେହି ତେଜସ୍ୱୀ ମହର୍ଷି ତାଙ୍କର ନାମ ବିଶ୍ରବା । ତାଙ୍କର ପ୍ରଭାବ ପ୍ରଜାପତିଙ୍କ ସଦୃଶ ଅଟେ । ୭ । ହେ ବିଶାଳାକ୍ଷି ! ଶତ୍ରୁମାନଙ୍କର ଭୟପ୍ରଦ ରାବଣ ସେହି ବିଶ୍ରବାଙ୍କର ପୁତ୍ର । ସେହି ରାକ୍ଷସେନ୍ଦ୍ରଙ୍କର ଭାର୍ଯ୍ୟା ହେବା ତୁମର ଉଚିତ । ୮ । ହେ ସର୍ବାଙ୍ଗସୁନ୍ଦରି ! ମୁଁ କହିବା କଥାକୁ ତୁ କାହିଁକି ଅନୁମୋଦନ କରୁନାହୁଁ ?।" ଅନନ୍ତର ହରିଜଟା ନାମକ ରାକ୍ଷସୀ କ୍ରୋଧରେ ନିଜର ମାର୍ଜାରସଦୃଶ ନୟନଦ୍ୱୟ ଘୂର୍ଣ୍ଣିତ କରି କହିଲା, "ଯାହାକର୍ତ୍ତୃକ ତ୍ରୟସ୍ତ୍ରିଂଶତ୍ ଦେବତାଗଣ ଏବଂ ଦେବରାଜ ଇନ୍ଦ୍ର ପରାଜିତ ହୋଇଅଛନ୍ତି, ସେହି ରାକ୍ଷସେନ୍ଦ୍ରର ଭାର୍ଯ୍ୟା ହେବା ତୁମର ଉଚିତ । ତାଙ୍କର ବୀର୍ଯ୍ୟ ଅତି ପ୍ରବଳ । ସେ ବୀର, ଯୁଦ୍ଧରେ କେବେ ପଛଘୁଞ୍ଚା ଦିଅନ୍ତି ନାହିଁ । ସେ ବଳବାନ୍ ଏବଂ ବୀର୍ଯ୍ୟଶାଳୀ । ତୁମେ ତାଙ୍କର ଭାର୍ଯ୍ୟାହେବାକୁ ଇଚ୍ଛା କରୁନାହଁ କାହିଁକି ? । ୯-୧୧ । ମହାବଳୀ ରାଜା ରାବଣ ନିଜର ଭାଗ୍ୟବତୀ, ପରମ ଆଦୃତା ପ୍ରିୟଭାର୍ଯ୍ୟାଙ୍କୁ ଛାଡ଼ି ତୁମ୍ଭ ନିକଟକୁ ଆସିବେ । ତାଙ୍କର ଅନ୍ତଃପୁର ସହସ୍ର ସ୍ତ୍ରୀମାନଙ୍କ ଦ୍ୱାରା ଅତି ସମୃଦ୍ଧଶାଳୀ ଏବଂ ନାନାରତ୍ନରେ ସୁଶୋଭିତ । ରାବଣ ସେ ଅନ୍ତଃପୁର ତ୍ୟାଗକରି ତୁମ ନିକଟରେ ଉପସ୍ଥିତ ହେବେ" । ୧୨-୧୩ । ବିକଟା ନାମକ ଅନ୍ୟ

ଅନ୍ୟା ତୁ ବିକଟା ନାମ ରାକ୍ଷସୀ ବାକ୍ୟମବ୍ରବୀତ୍ ।
ଅସକୃଦ୍ଭୀମବୀର୍ଯେଣ ନାଗା ଗନ୍ଧର୍ବଦାନବାଃ ।
ନିର୍ଜିତାଃ ସମରେ ଯେନ ସ ତେ ପାର୍ଶ୍ୱମୁପାଗତଃ । ୧୪ ।
ତସ୍ୟ ସର୍ବସମୃଦ୍ଧସ୍ୟ ରାବଣସ୍ୟ ମହାତ୍ମନଃ ।
କିମଦ୍ୟ ରାକ୍ଷସେନ୍ଦ୍ରସ୍ୟ ଭାର୍ଯା ତ୍ୱଂ ନେଚ୍ଛସେଽଧମେ । ୧୫ ।
ତତସ୍ତାଂ ଦୁର୍ମୁଖୀ ନାମ ରାକ୍ଷସୀ ବାକ୍ୟମବ୍ରବୀତ୍ ।
ଯସ୍ୟ ସୂର୍ଯୋ ନ ତପତି ଭୀତୋ ଯସ୍ୟ ଚ ମାରୁତଃ ।
ନ ବାତି ସ୍ମାୟତାପାଙ୍ଗି କିଂ ତ୍ୱଂ ତସ୍ୟ ନ ତିଷ୍ଠସି । ୧୬ ।
ପୁଷ୍ପବୃଷ୍ଟିଂ ଚ ତରବୋ ମୁମୁଚୁର୍ଯସ୍ୟ ବୈ ଭୟାତ୍ ।
ଶୈଳାଃ ସୁସ୍ରୁବୁଃ ପାନୀୟଂ ଜଲଦାଶ୍ଚ ଯଦେଚ୍ଛତି । ୧୭ ।
ତସ୍ୟ ନୈରୃତରାଜସ୍ୟ ରାଜରାଜସ୍ୟ ଭାମିନି ।
କିଂ ତ୍ୱଂ ନ କୁରୁଷେ ବୁଦ୍ଧିଂ ଭାର୍ଯାର୍ଥେ ରାବଣସ୍ୟ ହି । ୧୮ ।
ସାଧୁ ତେ ତତ୍ତ୍ୱତୋ ଦେବି କଥିତଂ ସାଧୁ ଭାମିନି ।
ଗୃହାଣ ସୁସ୍ମିତେ ବାକ୍ୟମନ୍ୟଥା ନ ଭବିଷ୍ୟସି । ୧୯ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ସୁନ୍ଦରକାଣ୍ଡେ ରାକ୍ଷସୀପ୍ରରୋଚନଂ ନାମ ନବପଞ୍ଚାଶଃ ସର୍ଗଃ ।

---

ଏକ ରାକ୍ଷସୀ କହିଲା, "ଯେ ବାରମ୍ବାର ଯୁଦ୍ଧରେ ଦେବତା, ନାଗ, ଗନ୍ଧର୍ବ ଓ ଦାନବମାନଙ୍କୁ ସମ୍ପୂର୍ଣ୍ଣରୂପେ ପରାଜିତ କରିଛନ୍ତି, ସେ ତୁମ୍ଭ ନିକଟରେ ଆସି ଉପସ୍ଥିତ ହୋଇଛନ୍ତି । ୧୪ । ହେ ଅଧମେ ! ସେହି ସର୍ବସମୃଦ୍ଧିସମ୍ପନ୍ନ ରାକ୍ଷସେନ୍ଦ୍ର ମହାତ୍ମା ରାବଣର ଭାର୍ଯ୍ୟା ହେବାକୁ ତୁମେ ଆଜ କାହିଁକି ଇଚ୍ଛା କରୁନାହଁ ?" ।୧୫। ଅନନ୍ତର ଦୁର୍ମୁଖୀ ନାମକ ରାକ୍ଷସୀ କହିଲା, "ଯାହାର ଭୟରେ ସୂର୍ଯ୍ୟ ଉତ୍ତାପ ଦାନ କରନ୍ତି ନାହିଁ ଏବଂ ବାୟୁ ପ୍ରବାହିତ ହୁଅନ୍ତି ନାହିଁ, ହେ ବିସ୍ତୃତଲୋଚନେ ! ତୁମେ ତାଙ୍କ ପାଖରେ ରହୁନାହଁ କାହିଁକି ? । ୧୬-୧୭ । ଯାହାର ଭୟରେ ବୃକ୍ଷମାନେ ପୁଷ୍ପବୃଷ୍ଟି କରନ୍ତି, ପର୍ବତମାନେ ଏବଂ ମେଘମାନେ ଜଳଦାନ କରନ୍ତି, ହେ ଭାମିନି ! ସେହି ରାଜରାଜ ରାକ୍ଷସରାଜ ରାବଣର ଭାର୍ଯ୍ୟା ହେବାପାଇଁ ତୁ ମନ କରୁନାହୁଁ କାହିଁକି ? ୧୮। ହେ ସୁହାସିନି ! ଆମ୍ଭେମାନେ ତଥ୍ୟ କଥା ଏବଂ ଭଲ କଥା ତୋତେ କହୁଛୁଁ, ତୁ ତାହା ଗ୍ରହଣ କର । ତାହା ନ କଲେ ତୁ ବଞ୍ଚିରହିବୁ ନାହିଁ" ।୧୯।

# ଚତୁର୍ବିଂଶଃ ସର୍ଗଃ

## ରାକ୍ଷସୀନିର୍ଭର୍ତ୍ସନମ୍

ତତଃ ସୀତାଂ ସମସ୍ତାସ୍ତା ରାକ୍ଷସ୍ୟୋ ବିକୃତାନନାଃ ।
ପରୁଷଂ ପରୁଷାନର୍ହାମୂଚୁସ୍ତଦ୍ୱାକ୍ୟମପ୍ରିୟମ୍ । ୧ ।
କିଂ ତ୍ୱମନ୍ତଃପୁରେ ସୀତେ ସର୍ବଭୂତମନୋରମେ ।
ମହାର୍ହଶୟନୋପେତେ ନ ବାସ ମନୁମନ୍ୟସେ । ୨ ।
ମାନୁଷେ ମାନୁଷସ୍ୟୈବ ଭାର୍ଯା ତ୍ୱଂ ବହୁ ମନ୍ୟସେ ।
ପ୍ରତ୍ୟାହର ମନୋ ରାମାନ୍ନୈବଂ ଜାତୁ ଭବିଷ୍ୟସି । ୩ ।
ତ୍ରୈଲୋକ୍ୟବସୁଭୋକ୍ତାରଂ ରାବଣଂ ରାକ୍ଷସେଶ୍ୱରମ୍ ।
ଭର୍ତାରମୁପସଙ୍ଗମ୍ୟ ବିହରସ୍ୱ ଯଥାସୁଖମ୍ । ୪ ।
ମାନୁଷୀ ମାନୁଷଂ ତଂ ତୁ ରାମମିଚ୍ଛସି ଶୋଭନେ ।
ରାଜ୍ୟାଦ୍ ଭ୍ରଷ୍ଟମସିଦ୍ଧାର୍ଥଂ ବିକ୍ଳବନ୍ତମନିନ୍ଦିତେ । ୫ ।
ରାକ୍ଷସୀନାଂ ବଚଃ ଶ୍ରୁତ୍ୱା ସୀତା ପଦ୍ମନିଭେକ୍ଷଣା ।
ନେତ୍ରାଭ୍ୟାମଶ୍ରୁପୂର୍ଣାଭ୍ୟାମିଦଂ ବଚନମବ୍ରବୀତ୍ । ୬ ।

---

## ୨୪ଶ ସର୍ଗ

### (ରାକ୍ଷସୀମାନଙ୍କର ଭର୍ତ୍ସନା)

ଅନନ୍ତର ସେହି ବିକୃତମୁଖୀ ରାକ୍ଷସୀମାନେ ସମସ୍ତେ ଏକତ୍ର ମିଳି କର୍କଶବାକ୍ୟର ଅଯୋଗ୍ୟା ସୀତାଙ୍କୁ କଠୋର ଏବଂ ଅପ୍ରିୟ ବାକ୍ୟରେ କହିଲେ ।୧। "ହେ ସୀତେ ! ତୁ କାହିଁକି ସର୍ବପ୍ରାଣୀଙ୍କ ନିମନ୍ତେ ମନୋହର ମହାମୂଲ୍ୟ ଶଯ୍ୟା-ସମନ୍ୱିତ ଅନ୍ତଃପୁରରେ ବାସ କରିବାକୁ ଅନୁମୋଦନ କରୁନାହୁଁ । ୨ । ହେ ମାନବି ତୁ ମନୁଷ୍ୟର ଭାର୍ଯ୍ୟା ହେବାକୁହିଁ ବଡ଼ ମନେକରୁଛୁ; ରାମଠାରୁ ମନକୁ ନିବୃତ୍ତ କର; କାରଣ, ତୋର କଦାପି ତା ସହିତ ମିଳନ ହେବ ନାହିଁ । ୩ । ତ୍ରିଭୁବନର ସମସ୍ତ ଐଶ୍ୱର୍ଯ୍ୟ ଭୋଗ କରୁଥିବା ରାକ୍ଷସ-ରାଜ ରାବଣକୁ ସ୍ୱାମି ରୂପରେ ପାଇ ଯଥାସୁଖରେ ବିହାରକର ।୪। ହେ ଅନିନ୍ଦିତେ ! ତୁ ମାନବୀ, ସେଥିଲାଗି ମନୁଷ୍ୟ ରାମ ରାଜ୍ୟଭ୍ରଷ୍ଟ, ଅସିଦ୍ଧକାମ ଏବଂ ବିପଦଗ୍ରସ୍ତ ହୋଇଥିଲେ ମଧ୍ୟ ତୁ ସେହି ରାମକୁ ହିଁ କାମନା କରୁଅଛୁ" ।୫। କମଳଲୋଚନା ସୀତା ରାକ୍ଷସୀମାନଙ୍କର କଥା ଶୁଣି ଚକ୍ଷୁ ଦୁଇଟି ଲୋତକରେ ପୂର୍ଣ୍ଣ କରି କହିଲେ । ୬ । "ତୁମେ ସମସ୍ତେ ମିଳିତ ହୋଇ ଏହି

ଯଦିଦଂ ଲୋକବିଦ୍ୱିଷ୍ଟମୁଦାହରଥ ସଙ୍ଗତାଃ ।
ନୈତନ୍ମନସି ବାକ୍ୟଂ ମେ କିଲ୍ୱିଷଂ ପ୍ରତିଭାତି ବଃ । ୭ ।
ନ ମାନୁଷୀ ରାକ୍ଷସସ୍ୟ ଭାର୍ଯ୍ୟା ଭବିତୁମର୍ହତି ।
କାମଂ ଖାଦତ ମାଂ ସର୍ବା ନ କରିଷ୍ୟାମି ବୋ ବଚଃ । ୮ ।
ଦୀନୋ ବା ରାଜ୍ୟହୀନୋ ବା ଯୋ ମେ ଭର୍ତ୍ତା ସ ମେ ଗୁରୁଃ ।
ତଂ ନିତ୍ୟମନୁରକ୍ତାସ୍ମି ଯଥା ସୂର୍ଯ୍ୟଂ ସୁବର୍ଚ୍ଚଳା । ୯ ।
ଯଥା ଶଚୀ ମହାଭାଗା ଶକ୍ରଂ ସମୁପତିଷ୍ଠତି ।
ଅରୁନ୍ଧତୀ ବଶିଷ୍ଠଂ ଚ ରୋହିଣୀ ଶଶିନଂ ଯଥା । ୧୦ ।
ଲୋପାମୁଦ୍ରା ଯଥାଗସ୍ତ୍ୟଂ ସୁକନ୍ୟା ଚ୍ୟବନଂ ଯଥା ।
ସାବିତ୍ରୀ ସତ୍ୟବନ୍ତଂ ଚ କପିଳଂ ଶ୍ରୀମତୀ ଯଥା । ୧୧ ।
ସୌଦାସଂ ମଦୟନ୍ତୀବ କେଶିନୀ ସଗରଂ ଯଥା ।
ନୈଷଧଂ ଦମୟନ୍ତୀବ ଭୈମୀ ପତିମନୁବ୍ରତା । ୧୨ ।
ତଥାହମିକ୍ଷ୍ୱାକୁବରଂ ରାମଂ ପତିମନୁବ୍ରତା ।
ସୀତାୟା ବଚନଂ ଶ୍ରୁତ୍ୱା ରାକ୍ଷସ୍ୟଃ କ୍ରୋଧମୂର୍ଚ୍ଛିତାଃ ।
ଭର୍ତ୍ସୟନ୍ତି ସ୍ମ ପରୁଷୈର୍ବାକ୍ୟୈ ରାବଣଚୋଦିତାଃ । ୧୩ ।

---

ଯେ କଥା କହୁଛ ଏହା ଲୋକବିରୁଦ୍ଧ ଏବଂ ପାପ ବୋଲି ମୋ ମନରେ ଆଦୌ ସ୍ଥାନ ପାଉ ନାହିଁ । ୭ । ମାନବୀ ରାକ୍ଷସର ଭାର୍ଯ୍ୟା ହେବା ଉଚିତ ନୁହେ । ତୁମ୍ଭର ଇଚ୍ଛା ହେଲେ ତୁମ୍ଭେ ସମସ୍ତେ ମୋତେ ଖାଇପକାଅ । ମୁଁ ତୁମ୍ଭମାନଙ୍କ କଥା କରିବି ନାହିଁ । ୮ । ଦୁଃଖୀ ହୁଅନ୍ତୁ ବା ରାଜ୍ୟହୀନ ହୁଅନ୍ତୁ ଯେ ମୋର ଭର୍ତ୍ତା, ସେହି ମୋର ଗୁରୁ । ସୁବର୍ଚ୍ଚଳା ଯେପରି ସୂର୍ଯ୍ୟଙ୍କର ଅନୁରକ୍ତା ମୁଁ ସେହିପରି ରାମଙ୍କର ସତତ ଅନୁରକ୍ତା ଅଟେଁ । ୯ । ଯେପରି ମହାଭାଗା ଶଚୀ ଇନ୍ଦ୍ରଙ୍କର ସେବା କରନ୍ତି, ଅରୁନ୍ଧତୀ ଯେପରି ବଶିଷ୍ଠଙ୍କର, ରୋହିଣୀ ଯେପରି ଚନ୍ଦ୍ରଙ୍କର, ଲୋପାମୁଦ୍ରା ଯେପରି ଅଗସ୍ତ୍ୟଙ୍କର, ସୁକନ୍ୟା ଯେପରି ଚ୍ୟବନଙ୍କର, ସାବିତ୍ରୀ ଯେପରି ସତ୍ୟବାନଙ୍କର, ଶ୍ରୀମତୀ ଯେପରି କପିଳଙ୍କର, ମଦୟନ୍ତୀ ଯେପରି ସୌଦାସଙ୍କର, କେଶିନୀ ଯେପରି ସଗରଙ୍କର, ଭୀମକନ୍ୟା ଦମୟନ୍ତୀ ଯେପରି ନଳଙ୍କର ସତତ ଅନୁବର୍ତ୍ତିନୀ ଥିଲେ, ମୁଁ ସେହିପରି ଇକ୍ଷ୍ୱାକୁଶ୍ରେଷ୍ଠ ପତି ରାମଙ୍କର ଅନୁବ୍ରତା ଅଟେଁ ।" ସୀତାଙ୍କର ଏହି କଥା ଶୁଣି ରାକ୍ଷସୀମାନେ କ୍ରୋଧରେ ହତଜ୍ଞାନହୋଇ ରାବଣର ପ୍ରରୋଚନା ପାଇଥିବାରୁ କଠୋର ବାକ୍ୟରେ ତାଙ୍କୁ ଭର୍ତ୍ସନା କରିବାକୁ ଲାଗିଲେ । ୧୦-୧୩ ।

ଅବଲୀନଃ ସ ନିର୍ବାକ୍ୟୋ ହନୁମାନ୍ ଶିଂଶପାଦ୍ରୁମେ ।
ସୀତାଂ ସଂତର୍ଜୟନ୍ତୀସ୍ତା ରାକ୍ଷସୀରଶୃଣୋତ୍କପିଃ । ୧୪ ।
ତାମଭିକ୍ରମ୍ୟ ସଂରବ୍ଧା ବେପମାନାଂ ସମନ୍ତତଃ ।
ଭୃଶଂ ସଂଲିଲିହୁର୍ଦୀପ୍ତାନ୍ ପ୍ରଲମ୍ବାନ୍ ଦଶନଚ୍ଛଦାନ୍ । ୧୫ ।
ଊଚୁଶ୍ଚ ପରମକ୍ରୁଦ୍ଧାଃ ପ୍ରଗୃହ୍ୟାଶୁ ପରଶ୍ୱଧାନ୍ ।
ନେୟମର୍ହତି ଭର୍ତ୍ତାରଂ ରାବଣଂ ରାକ୍ଷସାଧିପମ୍ । ୧୬ ।
ସଂଭର୍ତ୍ସ୍ୟମାନା ଭୀମାଭୀ ରାକ୍ଷସୀଭିର୍ବରାଙ୍ଗନା ।
ସା ବାଷ୍ପମପମାର୍ଜନ୍ତୀ ଶିଂଶପାଂ ତାମୁପାଗମତ୍ । ୧୭ ।
ତତସ୍ତାଂ ଶିଂଶପାଂ ସୀତା ରାକ୍ଷସୀଭିଃ ସମାବୃତା ।
ଅଭିଗମ୍ୟ ବିଶାଲାକ୍ଷୀ ତସ୍ଥୌ ଶୋକପରିପ୍ଲୁତା । ୧୮ ।
ତାଂ କୃଶାଂ ଦୀନବଦନାଂ ମଳିନାମ୍ବରବାସିନୀମ୍ ।
ଭର୍ତ୍ସୟାଂଚକ୍ରିରେ ଭୀମା ରାକ୍ଷସ୍ୟସ୍ତାଃ ସମନ୍ତତଃ । ୧୯ ।
ତତସ୍ତୁ ବିନତା ନାମ ରାକ୍ଷସୀ ଭୀମଦର୍ଶନା ।
ଅବ୍ରବୀତ୍କୁପିତାକାରା କରାଳା ନିର୍ଣ୍ଣତୋଦରୀ । ୨୦ ।

---

ହନୁମାନ୍ ନିର୍ବାକ୍ ହୋଇ ଶିଂଶପା ବୃକ୍ଷରେ ଲୁଚି ରହିଥିଲେ । ରାକ୍ଷସୀମାନେ ସୀତାଙ୍କୁ ଯେ ଭର୍ତ୍ସନା କଲେ ସେ ସମସ୍ତ ସେ ଶୁଣିଲେ । ୧୪ । ସେହି କ୍ରୋଧାନ୍ୱିତା ରାକ୍ଷସୀମାନେ କମ୍ପିତକଳେବରା ସୀତାଙ୍କର ନିକଟକୁ ଯାଇ ତାଙ୍କୁ ଚତୁର୍ଦ୍ଦିଗରୁ ବେଷ୍ଟନକରି ଲମ୍ବମାନ, ପ୍ରଦୀପ୍ତ ଓଷ୍ଠମାନ ବାରମ୍ବାର ଲେହନ କରିବାକୁ ଲାଗିଲେ । । ୧୫ । ସେମାନେ ଅତିଶୟ କ୍ରୁଦ୍ଧ ହୋଇ ଶୀଘ୍ର ପରଶୁ ଆଦି ଗ୍ରହଣପୂର୍ବକ କହିଲେ, "ଏ ରାକ୍ଷସରାଜ ରାବଣଙ୍କୁ ସ୍ୱାମୀ କରି ପାଇବାର ଉପଯୁକ୍ତ ନୁହେଁ "। ୧୬ । ଭୀମରୂପା ରାକ୍ଷସୀମାନଙ୍କ କର୍ତ୍ତୃକ ଏହିପରି ତିରସ୍କୃତା ହୋଇ ବରାଙ୍ଗନା ସୀତା ଲୁହ ପୋଛୁ ପୋଛୁ, ସେହି ଶିଂଶପା ବୃକ୍ଷନିକଟକୁ ଆସିଲେ । ୧୭ । ଅନନ୍ତର ରାକ୍ଷସୀଙ୍କ ଦ୍ୱାରା ପରିବେଷ୍ଟିତା ହୋଇ ବିଶାଳଲୋଚନା ସୀତା, ସେହି ଶିଂଶପା ବୃକ୍ଷନିକଟକୁ ଆସି ଶୋକରେ ନିମଗ୍ନା ହୋଇ ସେଠାରେ ଅବସ୍ଥାନ କଲେ । ୧୮ । ସେହି ଭୟଙ୍କର ରାକ୍ଷସୀମାନେ କୃଶଆଙ୍ଗୀ କ୍ଷୀଣା, ମ୍ଳାନବଦନା, ମଳିନ ବସ୍ତ୍ରଧାରିଣୀ ସୀତାଙ୍କୁ ଭର୍ତ୍ସନା କରିବାକୁ ଲାଗିଲେ । ୧୯ । ଅନନ୍ତର ଦେଖିବାକୁ ଭୟଙ୍କରୀ, କୋପନମୂର୍ତ୍ତି, ଅତି-ନିମ୍ନୋଦରା ବିନତା ନାମକ ରାକ୍ଷସୀ କହିଲା । ୨୦ । "ସୀତେ ! ତୁମ୍ଭେ ଏପର୍ଯ୍ୟନ୍ତ

ସୀତେ ପର୍ଯ୍ୟାପ୍ତମେତାବଦ୍ ଭର୍ତ୍ତୁଃ ସ୍ନେହଃ ପ୍ରଦର୍ଶିତଃ ।
ସର୍ବତ୍ରାତିକୃତଂ ଭଦ୍ରେ ବ୍ୟସନାୟୋପକଳ୍ପତେ ॥ ୨୧ ॥
ପରିତୁଷ୍ଟାସ୍ମି ଭଦ୍ରଂ ତେ ମାନୁଷସ୍ତେ କୃତୋ ବିଧିଃ ।
ମମାପି ତୁ ବଚଃ ପଥ୍ୟଂ ବ୍ରୁବନ୍ତ୍ୟାଃ କୁରୁ ମୈଥିଳୀ ॥୨୨ ॥
ରାବଣଂ ଭଜ ଭର୍ତ୍ତାରଂ ଭର୍ତ୍ତାରଂ ସର୍ବରକ୍ଷସାମ୍ ।
ବିକ୍ରାନ୍ତମାପତନ୍ତଂ ଚ ସୁରେଶମିବ ବାସବମ୍ ॥ ୨୩ ॥
ଦକ୍ଷିଣଂ ତ୍ୟାଗଶୀଳଂ ଚ ସର୍ବସ୍ୟ ପ୍ରିୟବାଦିନମ୍ ।
ମାନୁଷଂ କୃପଣଂ ରାମଂ ତ୍ୟକ୍ତ୍ୱା ରାବଣମାଶ୍ରୟ ॥ ୨୪ ॥
ଦିବ୍ୟାଙ୍ଗରାଗା ବୈଦେହି ଦିବ୍ୟାଭରଣଭୂଷିତା ।
ଅଦ୍ୟ ପ୍ରଭୃତି ଲୋକାନାଂ ସର୍ବେଷାମୀଶ୍ୱରୀ ଭବ ॥୨୫॥
ଅଗ୍ନେଃ ସ୍ୱାହା ଯଥା ଦେବୀ ଶଚୀବେନ୍ଦ୍ରସ୍ୟ ଶୋଭନେ ।
କିଂ ତେ ରାମେଣ ବୈଦେହି କୃପଣେନ ଗତାୟୁଷା ॥ ୨୬ ॥
ଏତଦୁକ୍ତଂ ଚ ମେ ବାକ୍ୟଂ ଯଦି ତ୍ୱଂ ନ କରିଷ୍ୟସି ।
ଅସ୍ମିନ୍ ମୁହୂର୍ତ୍ତେ ସର୍ବାସ୍ତ୍ୱାଂ ଭକ୍ଷୟିଷ୍ୟାମହେ ବୟମ୍ ॥ ୨୭ ॥

---

ସ୍ୱାମୀଙ୍କ ପ୍ରତି ଯେ ସ୍ନେହ ଦେଖାଇଲ ତାହା ଯଥେଷ୍ଟ ହୋଇଅଛି; କିନ୍ତୁ ହେ ଭଦ୍ରେ, ସବୁ ବିଷୟରେ ଅତିମାତ୍ରା କରିବା ଦୁଃଖର କାରଣ ହୋଇଥାଏ ।୨୧ । ହେ ଭଦ୍ରେ, ମୈଥିଳି ! ମୁଁ ତୁମ ପ୍ରତି ଅତିଶୟ ସନ୍ତୁଷ୍ଟ । ତୁମର ମଙ୍ଗଳ ହେଉ । ମନୁଷ୍ୟର ଯେ ବିଧି ରକ୍ଷାକରିବାର କଥା ତାହା ତୁମେ କରିଅଛ । ଏବେ ମୁଁ ଯେ ହିତକଥା କହୁଛି, ତାହା କର । ୨୨ । ତୁମେ ସବୁ ରାକ୍ଷସଙ୍କର ଅଧିପତି ରାବଣଙ୍କୁ ପତିରୂପରେ ଭଜନା କର । ସେ ସୁରେଶ୍ୱର ଇନ୍ଦ୍ରଙ୍କପରି ବିକ୍ରମସହକାରେ ଶତ୍ରୁର ସମ୍ମୁଖୀନ ହୋଇଥାନ୍ତି । ୨୩ । ସେ ସମସ୍ତଙ୍କ ପ୍ରତି ଦୟାବାନ୍, ତ୍ୟାଗୀ ଏବଂ ସମସ୍ତଙ୍କ ପ୍ରତି ପ୍ରିୟଭାଷୀ; ସୁତରାଂ ଦୁର୍ଦ୍ଦଶାଗ୍ରସ୍ତ ମନୁଷ୍ୟ ରାମଙ୍କୁ ଛାଡ଼ି ରାବଣଙ୍କୁ ଆଶ୍ରୟକର ।୨୪। ବୈଦେହି ! ତୁମେ ଦିବ୍ୟ ଅଙ୍ଗରାଗ ଓ ଦିବ୍ୟ ଭୂଷଣରେ ଭୂଷିତା ହୋଇ ଆଜିଠାରୁ ସବୁ ଲୋକର ଈଶ୍ୱରୀ ହୁଅ । ୨୫ । ଶୋଭନେ ! ଇନ୍ଦ୍ରଙ୍କର ଶଚୀ ଯେପରି ଏବଂ ଅଗ୍ନିଙ୍କର ସ୍ୱାହା ଯେପରି, ତୁମେ ରାବଣଙ୍କର ସେହିପରି ହୁଅ । ବୈଦେହି ! ରାମ ଅଳ୍ପାୟୁ, ଦୁର୍ଦ୍ଦଶାଗ୍ରସ୍ତ; ସୁତରାଂ ତୁମର ତାଙ୍କଠାରେ କି ପ୍ରୟୋଜନ ? ।୨୬ । ମୁଁ ଏ ଯେଉଁ କଥା କହିଲି, ତାହା ଯଦି ତୁମେ ନ କର, ତେବେ ଏହି ମୁହୂର୍ତ୍ତରେ ଆମେ

ଅନ୍ୟା ତୁ ବିକଟା ନାମ ଲମ୍ବମାନପୟୋଧରା ।
ଅବ୍ରବୀତ୍କୁପିତା ସୀତାଂ ମୁଷ୍ଟିମୁଦ୍ୟମ୍ୟ ତର୍ଜତୀ । ୨୮ ।
ବହୂନ୍ୟପ୍ରିୟରୂପାଣି ବଚନାନି ସୁଦୁର୍ମତେ ।
ଅନୁକ୍ରୋଶାନ୍ମୃଦୁତ୍ୱାଚ ସୋଢ଼ାନି ତବ ମୈଥିଳି । ୨୯ ।
ନ ଚ ନଃ କୁରୁଷେ ବାକ୍ୟଂ ହିତଂ କାଲପୁରସ୍କୃତମ୍ ।
ଆନୀତାସି ସମୁଦ୍ରସ୍ୟ ପାରମନ୍ୟୈର୍ଦୁରାସଦମ୍ । ୩୦ ।
ରାବଣାନ୍ତଃପୁରେ ଘୋରେ ପ୍ରବିଷ୍ଟା ଚାସି ମୈଥିଳି ।
ରାବଣସ୍ୟ ଗୃହେ ରୁଦ୍ଧା ଅସ୍ମାଭିସ୍ତ୍ୱଭିରକ୍ଷିତା । ୩୧ ।
ନ ତ୍ୱାଂ ଶକ୍ତଃ ପରିତ୍ରାତୁମପି ସାକ୍ଷାତ୍ପୁରନ୍ଦରଃ ।
କୁରୁଷ୍ୱ ହିତବାଦିନ୍ୟା ବଚନଂ ମମ ମୈଥିଳି । ୩୨ ।
ଅଲମଶ୍ରୁନିପାତେନ ତ୍ୟଜ ଶୋକମନର୍ଥକମ୍ ।
ଭଜ ପ୍ରୀତିଂ ପ୍ରହର୍ଷଂ ଚ ତ୍ୟଜନ୍ତୀ ନିତ୍ୟଦୈନ୍ୟତାମ୍ । ୩୩ ।
ସୀତେ ରାକ୍ଷସରାଜେନ ପରିକ୍ରୀଡ଼ ଯଥାସୁଖମ୍ ।
ଜାନୀମହେ ଯଥା ଭୀରୁ ସ୍ତ୍ରୀଣାଂ ଯୌବନମଧ୍ରୁବମ୍ । ୩୪ ।

---

ସମସ୍ତେ ତୁମ୍ଭଙ୍କୁ ଭକ୍ଷଣ କରିବୁଁ" । ୨୭ । ବିକଟା ନାମକ ଆଉ ଏକ ଲମ୍ବିତସ୍ତନୀ ରାକ୍ଷସୀ କ୍ରୁଦ୍ଧ ହୋଇ ମୁଷ୍ଟି ଉଦ୍ୟତ କରି ତର୍ଜନପୂର୍ବକ କହିଲା । ୨୮ । "ହେ ଦୁର୍ବୁଦ୍ଧେ ମୈଥିଳି ! ତୁ ଅନେକ ଅପ୍ରିୟ କଥା କହି ସାରିଅଛୁ । ତୋପ୍ରତି ଦୟା ଏବଂ କୋମଳତାହେତୁରୁ ତୋର ସେ ସବୁ କଥା ଆମ୍ଭେମାନେ ସହିଅଛୁଁ । ୨୯ । ତୁ ଆମ୍ଭମାନଙ୍କର କାଳୋଚିତ ହିତକଥା କରୁନାହୁଁ । ମୈଥିଳି ! ତୁ ସମୁଦ୍ରର ପରପାରକୁ ଅଣା ହୋଇଅଛୁ । ଏଠାକୁ ଅନ୍ୟ କେହି ଆସିପାରିବେ ନାହିଁ, ପୁଣି ତୁ ରାବଣର ଘୋର ଅନ୍ତଃପୁରମଧ୍ୟରେ ପ୍ରବେଶ କରିଛୁ । ରାବଣର ଗୃହମଧ୍ୟରେ ତୁ ଅବରୁଦ୍ଧା ହୋଇଛୁ ଏବଂ ଆମ୍ଭେମାନେ ସତର୍କଭାବରେ ତୋତେ ଜଗି ରହିଛୁଁ; ସୁତରାଂ ସ୍ୱୟଂ ଇନ୍ଦ୍ର ମଧ୍ୟ ତୋତେ ପରିତ୍ରାଣ କରିବାକୁ ସମର୍ଥ ହେବେ ନାହିଁ । ମୈଥିଳି ! ତୁ ହିତଭାଷିଣୀ ମୋର କଥା କର । ୩୦-୩୨ । ଅଶ୍ରୁପାତ କରିବାର ପ୍ରୟୋଜନ ନାହିଁ, ଅକାରଣ ଶୋକ ପରିତ୍ୟାଗକର । ଏହି ସନ୍ତତଦୀନତା ପରିତ୍ୟାଗକରି ପ୍ରୀତି ଓ ଆନନ୍ଦ ଉପଭୋଗକର । ୩୩ । ସୀତେ ! ରାକ୍ଷସରାଜଙ୍କ ସହିତ ଯଥା-ସୁଖରେ ବିହାରକର । ଭୀରୁ ! ଆମ୍ଭେମାନେ ଜାଣୁ, ସ୍ତ୍ରୀଲୋକର ଯୌବନ ଅସ୍ଥାୟୀ, ସୁତରାଂ ଯୌବନ ଅନ୍ତର୍ଦ୍ଧାନ ନ ହେଉଣୁ ସୁଖ ଲାଭକର । ରମଣୀୟ ଉଦ୍ୟାନ ଏବଂ

ଯାବନ୍ତ ତେ ବ୍ୟକ୍ତକ୍ରାମେତ୍ତାବଦ୍ଧୁଃଖମହାପ୍ନୁହି ।
ଉଦ୍ୟାନାନି ଚ ରମ୍ୟାଣି ପର୍ବତୋପବନାନି ଚ । ୩୫ ।
ସହ ରାକ୍ଷସରାଜେନ ଚର ତ୍ୱଂ ମଦିରେକ୍ଷଣେ ।
ସ୍ତ୍ରୀସହସ୍ରାଣି ତେ ଦେବି ବଶେ ସ୍ଥାସ୍ୟନ୍ତି ସୁନ୍ଦରି । ୩୬ ।
ରାବଣଂ ଭଜ ଭର୍ତାରଂ ଭର୍ତାରଂ ସର୍ବରକ୍ଷସାମ୍ ।
ଉତ୍ପାଟ୍ୟ ବା ତେ ହୃଦୟଂ ଭକ୍ଷୟିଷ୍ୟାମି ମୈଥିଳି ।୩୭ ।
ଯଦି ମେ ବ୍ୟାହୃତଂ ବାକ୍ୟଂ ନ ଯଥାବତ୍କରିଷ୍ୟସି ।
ତତଶ୍ଚଣ୍ଡୋଦରୀ ନାମ ରାକ୍ଷସୀ କ୍ରୂରଦର୍ଶନା । ୩୮ ।
ଭ୍ରାମୟନ୍ତୀ ମହଚ୍ଛୂଲମିଦଂ ବଚନମବ୍ରବୀତ୍ । ।
ଇମାଂ ହରିଣଶାବାକ୍ଷୀଂ ତ୍ରାସୋତ୍କମ୍ପପୟୋଧରାମ୍ । ୩୯ ।
ରାବଣେନ ହୃତାଂ ଦୃଷ୍ଟ୍ୱା ଦୌହୃଦୋ ମେ ମହାନୟମ୍ ।
ଯକୃତ୍ପ୍ଲୀହଂ ମହତ୍କ୍ରୋଡ଼ଂ ହୃଦୟଂ ଚ ସବନ୍ଧନମ୍ । ୪୦ ।
ଗାତ୍ରାଣ୍ୟପି ତଥା ଶୀର୍ଷଂ ଖାଦେୟମିତି ମେ ମତିଃ ।
ତତସ୍ତୁ ପ୍ରଘସା ନାମ ରାକ୍ଷସୀ ବାକ୍ୟମବ୍ରବୀତ୍ । ୪୧ ।
ବିଶସ୍ୟେମାଂ ତତଃ ସର୍ବାଃ ସମାନ୍ କୁରୁତ ପିଣ୍ଡକାନ୍ ।
ବିଭଜାମ ତତଃ ସର୍ବା ବିବାଦୋ ମେ ନ ରୋଚତେ । ୪୨ ।

---

ପର୍ବତ ଉପବନମାନଙ୍କରେ, ହେ ମଦିରେକ୍ଷଣେ ! ତୁମ୍ଭେ ରାକ୍ଷସରାଜଙ୍କ ସହିତ ବିଚରଣ କର । ହେ ସୁନ୍ଦରି, ଦେବି ! ସହସ୍ର ସହସ୍ର ସ୍ତ୍ରୀ ତୁମ୍ଭର ବଶୀଭୂତା ହୋଇ ରହିବେ । ୩୪-୩୬ । ମୈଥିଳି ! ତୁମ୍ଭେ ସବୁ ରାକ୍ଷସଙ୍କର ପ୍ରଭୁ ରାବଣଙ୍କୁ ସ୍ୱାମିରୂପେ ଭଜନା କର । ମୋ କଥା ଯଦି ତୁମ୍ଭେ ଯଥାବିହିତ ପ୍ରକାରରେ ନ କର, ତାହାହେଲେ ମୈଥିଳି ! ତୁମ୍ଭର ହୃତ୍‌ପିଣ୍ଡକୁ ମୁଁ ଉତ୍ପାଟନ କରି ଭକ୍ଷଣ କରିବି ।" ଅନନ୍ତର କ୍ରୂରଦର୍ଶନା ଚଣ୍ଡୋଦରୀ ନାମକ ରାକ୍ଷସୀ ବୃହତ୍ ଶୂଳ ଘୂର୍ଣ୍ଣିତ କରି କହିଲା, "ଏହି ମୃଗନୟନା ଭୟକମ୍ପିତସ୍ତନୀ ସୀତାକୁ ରାବଣ ହରଣ କରି ଆଣିବାର ଦେଖିଲାଦିନୁଁ ମୋର ଅତିଶୟ ଦୋହଦ (ଅଭିଳାଷ) ହୋଇଅଛି ଯେ, ମୁଁ ଏହାର ଯକୃତ୍, ପ୍ଲୀହା, ସ୍ଥୂଳ ପାର୍ଶ୍ୱଦ୍ୱୟ, ନାଡ଼ୀବନ୍ଧନ ସହିତ ହୃତପିଣ୍ଡ, ଅଙ୍ଗପ୍ରତ୍ୟଙ୍ଗ ଏବଂ ମସ୍ତକ ଭକ୍ଷଣ କରିବି ।" ଅନନ୍ତର ପ୍ରଘସା ନାମକ ରାକ୍ଷସୀ କହିଲା । ୩୭-୪୧ । "ଏହାକୁ କାଟି ସମାନ ସମାନ ପିଣ୍ଡ କର; ତା'ପରେ ସମସ୍ତେ ବାଣ୍ଟି ନେବା ।

ପେୟମାନୀୟତାଂ କ୍ଷିପ୍ରଂ ମାଲ୍ୟଂ ଚ ବିବିଧଂ ବହୁ ।
ତତଃ ଶୂର୍ପଣଖା* ନାମ ରାକ୍ଷସୀ ବାକ୍ୟମବ୍ରବୀତ୍ ॥ ୪୩ ॥
ପ୍ରଘସୟା ଯଦୁକ୍ତଂ ବୈ ତଦେବ ମମ ରୋଚତେ ।
ସୁରା ଚାନୀୟତାଂ କ୍ଷିପ୍ରଂ ସର୍ବଶୋକବିନାଶିନୀ ॥ ୪୪ ॥
ମାନୁଷଂ ମାଂସମାସ୍ୱାଦ୍ୟ ନୃତ୍ୟାମୋଽଥ ନିକୁମ୍ଭିଲାମ୍ † ।
ଏବଂ ନିର୍ଭର୍ତ୍ସ୍ୟମାନା ସା ସୀତା ସୁରସୁତୋପମା ।
ରାକ୍ଷସୀଭିର୍ବିରୂପାଭିର୍ଧୈର୍ଯ୍ୟମୁତ୍ସୃଜ୍ୟ ରୋଦିତ ॥ ୪୫ ॥

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ ସୁନ୍ଦରକାଣ୍ଡେ ରାକ୍ଷସୀନିର୍ଭର୍ତ୍ସନଂ ନାମ ଚତୁର୍ବିଂଶଃ ସର୍ଗଃ ।

# ପଞ୍ଚବିଂଶଃ ସର୍ଗଃ

## ସୀତାନିର୍ବେଦଃ

ଅଥ ତାସାଂ ବଦନ୍ତୀନାଂ ପରୁଷଂ ଦାରୁଣଂ ବହୁ ।
ରାକ୍ଷସୀନାମସୌମ୍ୟାନାଂ ରୁରୋଦ ଜନକାତ୍ମଜା ॥ ୧ ॥

---

ବିବାଦ ମୋତେ ଭଲଲାଗେ ନାହିଁ ॥ ୪୨ ॥ ଶୀଘ୍ର ମଦ୍ୟ ଏବଂ ବହୁସଂଖ୍ୟକ ନାନା-ପ୍ରକାର ମାଲ୍ୟ ଆଣ ।" ଅନନ୍ତର ଶୂର୍ପଣଖା ନାମକ ରାକ୍ଷସୀ କହିଲା ॥ ୪୩ ॥ "ପ୍ରଘସା ଯାହା କହିଲା, ସେହି କଥା ମୋ ମନକୁ ପାଉଛି । ଶୀଘ୍ର ସର୍ବଶୋକନିବାରଣୀ ସୁରା ଆନୟନକର ॥ ୪୪ ॥ ଆମ୍ଭେମାନେ ମନୁଷ୍ୟ ମାଂସ ଆସ୍ୱାଦନ କରି ନିକୁମ୍ଭିଳା ଦେବୀଙ୍କ ନିକଟରେ ଯାଇ ନୃତ୍ୟ କରିବା ।" ଅତି ଉଗ୍ରରୂପା ରାକ୍ଷସୀମାନେ ଏହିପରି ଅତିଶୟ ଭର୍ତ୍ସନା କରିବାରୁ ଦେବକନ୍ୟାସଦୃଶୀ ସୀତା ଧୈର୍ଯ୍ୟ ପରିତ୍ୟାଗକରି ରୋଦନ କରିବାକୁ ଲାଗିଲେ ॥ ୪୫ ॥

### ୨୫ଶ ସର୍ଗ

( ସୀତାଙ୍କର ହତାଶା )

ଅନନ୍ତର ସେହି ଘୋରଦର୍ଶନା ରାକ୍ଷସୀମାନେ ନାନାବିଧ ବହୁ କଟୁ ଓ ନିଦାରୁଣ କଥା କହିଲାଗିବାରୁ ସୀତା ରୋଦନ କରିବାକୁ ଲାଗିଲେ ॥ ୧ ॥ ସେମାନେ

---

* ଏ 'ଶୂର୍ପଣଖା' ରାବଣର ଭଗିନୀ ନୁହେ ।
† 'ନିକୁମ୍ଭିଳା' ଲଙ୍କାର ପଶ୍ଚିମଭାଗସ୍ଥିତା ଭଦ୍ରକାଳୀ ଦେବୀ ।

ଏବମୁକ୍ତ୍ୱା ତୁ ବୈଦେହୀ ରାକ୍ଷସୀଭିର୍ମନସ୍ୱିନୀ ।
ଉବାଚ ପରମା ତ୍ରସ୍ତା ବାଷ୍ପଗଦ୍‌ଗଦୟା ଗିରା । ୨ ।
ନ ମାନୁଷୀ ରାକ୍ଷସସ୍ୟ ଭାର୍ଯ୍ୟା ଭବିତୁମର୍ହତି ।
କାମଂ ଖାଦତ ମାଂ ସର୍ବା ନ କରିଷ୍ୟାମି ବୋ ବଚଃ ।୩।
ସା ରାକ୍ଷସୀମଧ୍ୟଗତା ସୀତା ସୁରସୁତୋପମା ।
ନ ଶର୍ମ ଲେଭେ ଶୋକାର୍ତ୍ତା ରାବଣେନେବ ଭର୍ତ୍ସିତା । ୪ ।
ବେପତେ ସ୍ମାଧିକଂ ସୀତା ବିଶନ୍ତୀବାଙ୍ଗମାତ୍ମନଃ ।
ବନେ ଯୂଥପରିଭ୍ରଷ୍ଟା ମୃଗୀ କୋକୈରିବାର୍ଦ୍ଦିତା । ୫ ।
ସା ତ୍ୱଶୋକସ୍ୟ ବିପୁଲାଂ ଶାଖାମାଲମ୍ବ୍ୟ ପୁଷ୍ପିତାମ୍ ।
ଚିନ୍ତୟାମାସ ଶୋକେନ ଭର୍ତ୍ତାରଂ ଭଗ୍ନମାନସା । ୬ ।
ସା ସ୍ନାପୟନ୍ତୀ ବିପୁଲୌ ସ୍ତନୌ ନେତ୍ରଜଲସ୍ରବୈଃ ।
ଚିନ୍ତୟନ୍ତୀ ନ ଶୋକସ୍ୟ ତଦାନ୍ତମଧିଗଚ୍ଛତି । ୭ ।
ସା ବେପମାନା ପତିତା ପ୍ରବାତେ କଦଳୀ ଯଥା ।
ରାକ୍ଷସୀନାଂ ଭୟତ୍ରସ୍ତା ବିବର୍ଣ୍ଣବଦନାଭବତ୍ । ୮ ।
ତସ୍ୟାଃ ସା ଦୀର୍ଘବହୁଳା ବେପନ୍ତ୍ୟା ସୀତୟା ତଦା ।
ଦଦୃଶେ କମ୍ପିତା ବେଣୀ ବ୍ୟାଳୀବ ପରିସର୍ପତୀ । ୯ ।

---

ଏହିପରି କହିବାରୁ ମନସ୍ୱିନୀ ବୈଦେହୀ ଅତିଶୟ ତ୍ରସ୍ତା ହୋଇ ବାଷ୍ପଗଦ୍‌ଗଦ୍ ବଚନରେ କହିଲେ । ୨ । "ମାନବୀ କଦାପି ରାକ୍ଷସର ଭାର୍ଯ୍ୟା ହୋଇ ନ ପାରେ । ଇଚ୍ଛାହେଲେ ତୁମ୍ଭେମାନେ ମୋତେ ଖାଇପକାଅ । ମୁଁ ତୁମ୍ଭମାନଙ୍କ କଥା କରିବି ନାହିଁ" । ୩ । ରାବଣକର୍ତ୍ତୃକ ତିରସ୍କୃତା ହୋଇ ଏବଂ ରାକ୍ଷସୀମାନଙ୍କ ମଧ୍ୟରେ ରହି ଦେବକନ୍ୟାସଦୃଶୀ ଶୋକାର୍ତ୍ତ ସୀତା ଶାନ୍ତି ପାଇପାରିଲେ ନାହିଁ । ୪ । ବନମଧ୍ୟରେ ଚିତାବାଘଦ୍ୱାରା ଆକ୍ରାନ୍ତା ଯୂଥଭ୍ରଷ୍ଟା ହରିଣୀପରି, ସେ ନିଜେ ନିଜ ଶରୀରମଧ୍ୟରେ ପଶିଗଲାପରି ହୋଇ ଅଧିକ ଥରିବାକୁ ଲାଗିଲେ । ୫ । ସେ ଅଶୋକ ବୃକ୍ଷର ଗୋଟିଏ ବୃହତ୍ ପୁଷ୍ପିତଶାଖା ଆଶ୍ରୟକରି, ଶୋକରେ ନିତାନ୍ତ ଉତ୍ସାହହୀନା ହୋଇ ସ୍ୱାମୀଙ୍କୁ ଚିନ୍ତା କରିବାକୁ ଲାଗିଲେ ।୬। ସେ ଅଶ୍ରୁଧାରରେ କୁଚଦ୍ୱୟକୁ ପ୍ଳାବିତ କରି ଏବଂ ଚିନ୍ତା କରି କରି ମଧ୍ୟ ଶୋକର ଅନ୍ତ ପାଇପାରିଲେ ନାହିଁ । ୭ । ପ୍ରବଳ ବାୟୁରେ କଦଳୀବୃକ୍ଷପରି ସେ ପଡ଼ିଯାଇ କମ୍ପିବାକୁ ଲାଗିଲେ । ରାକ୍ଷସୀମାନଙ୍କ ଭୟରେ ଭୀତା ହୋଇ ତାଙ୍କ ମୁଖ ବିବର୍ଣ୍ଣ ହୋଇଗଲା ।୮। ଥରି ଥରି କମ୍ପୁଥିବା ସୀତାଙ୍କ ଦୀର୍ଘ ବିଶାଳବେଣୀ କମ୍ପିତ ହୋଇ ସର୍ପ ଇତସ୍ତତଃ ଗତିକଲାପରି ଦେଖାଗଲା ।୯।

ସା ନିଃଶ୍ୱସନ୍ତୀ ଶୋକାର୍ତ୍ତା କୋପୋପହତଚେତନା ।
ଆର୍ତ୍ତା ବ୍ୟସୃଜଦଶ୍ରୂଣି ମୈଥିଲୀ ବିଲଲାପ ଚ ।୧୦।
ହା ରାମେତି ଚ ଦୁଃଖାର୍ତ୍ତା ହା ପୁନର୍ଲକ୍ଷ୍ମଣେତି ଚ ।
ହା ଶ୍ୱଶ୍ରୂର୍ମମ କୌସଲ୍ୟେ ହା ସୁମିତ୍ରେତି ଭାମିନୀ ।୧୧।
ଲୋକପ୍ରବାଦଃ ସତ୍ୟୋଽୟଂ ପଣ୍ଡିତୈଃ ସମୁଦାହୃତଃ ।
ଅକାଲେ ଦୁର୍ଲଭୋ ମୃତ୍ୟୁଃ ସ୍ତ୍ରିୟା ବା ପୁରୁଷସ୍ୟ ବା ।୧୨।
ଯତ୍ରାହମାଭିଃ କ୍ରୂରାଭୀ ରାକ୍ଷସୀଭିରିହାର୍ଦ୍ଦିତା ।
ଜୀବାମି ହୀନା ରାମେଣ ମୁହୂର୍ତ୍ତମପି ଦୁଃଖିତା ।୧୩।
ଏଷାଲ୍ପପୁଣ୍ୟା କୃପଣା ବିନଶିଷ୍ୟାମ୍ୟନାଥବତ୍ ।
ସମୁଦ୍ରମଧ୍ୟେ ନୌଃ ପୂର୍ଣ୍ଣା ବାୟୁବେଗୈରିବାହତା ।୧୪।
ଭର୍ତ୍ତାରଂ ତମପଶ୍ୟନ୍ତୀ ରାକ୍ଷସୀବଶମାଗତା ।
ସୀଦାମି ଖଲୁ ଶୋକେନ କୂଳଂ ତୋୟହତଂ ଯଥା ।୧୫।
ତେ ପଦ୍ମଦଲପତ୍ରାକ୍ଷଂ ସିଂହବିକ୍ରାନ୍ତଗାମିନମ୍ ।
ଧନ୍ୟାଃ ପଶ୍ୟନ୍ତି ମେ ନାଥଂ କୃତଜ୍ଞଂ ପ୍ରିୟବାଦିନମ୍ ।୧୬।
ସର୍ବଥା ତେନ ହୀନାୟା ରାମେଣ ବିଦିତାତ୍ମନା ।
ତୀକ୍ଷ୍ଣଂ ବିଷମିବାସ୍ୱାଦ୍ୟ ଦୁର୍ଲଭଂ ମମ ଜୀବନମ୍ ।୧୭।

---

ମୈଥିଲୀ ଶୋକରେ ହିତାହିତଜ୍ଞାନ ଏବଂ ଦୁଃଖକାତର ହୋଇ ଦୀର୍ଘନିଃଶ୍ୱାସ ପରିତ୍ୟାଗପୂର୍ବକ ଅଶ୍ରୁମୋଚନ କଲେ ଏବଂ ବିଳାପ କରିବାକୁ ଲାଗିଲେ ।୧୦। ସେ ବାହୁନିଲେ, "ହା ରାମ ! ହା ଲକ୍ଷ୍ମଣ ! ହା ମୋର ଶ୍ୱଶ୍ରୂ କୌଶଲ୍ୟେ ! ହା ସୁମିତ୍ରେ !୧୧। ପଣ୍ଡିତ ଲୋକମାନଙ୍କର କଥିତ ଏହି ଲୋକପ୍ରବାଦ ସତ୍ୟ ଯେ, କି ସ୍ତ୍ରୀ, କି ପୁରୁଷ ଅକାଳରେ ମୃତ୍ୟୁ ସମସ୍ତଙ୍କ ପକ୍ଷରେ ଦୁର୍ଲ୍ଲଭ ଅଟେ ।୧୨। ନୋହିଲେ, ମୁଁ ରାମଙ୍କ ବିରହରେ ଏହି ସମସ୍ତ କ୍ରୂରରାକ୍ଷସୀମାନଙ୍କ ଦ୍ୱାରା ପୀଡ଼ିତା ହୋଇ ମୁହୂର୍ତ୍ତେ ମାତ୍ର ବଞ୍ଚିପାରନ୍ତି କି ?।୧୩। ମୋର ପୁଣ୍ୟ ଅତି ଅଳ୍ପ । ସମୁଦ୍ର ମଧ୍ୟରେ ବାୟୁବେଗରେ ଆନ୍ଦୋଳିତ, ପରିପୂର୍ଣ୍ଣ ନୌକାପରି ମୁଁ ଦୀନହୀନା ଅନାଥଭାବରେ ବିନାଶ ଲାଭ କରିବି ।୧୪। ମୁଁ ସ୍ୱାମୀଙ୍କୁ ଦେଖିପାରୁ ନାହିଁ, ପୁଣି ରାକ୍ଷସୀମାନଙ୍କର ବଶୀଭୂତା ହୋଇଅଛି; ସୁତରାଂ ଜଳବେଗସମାହତ ନଦୀତଟସଦୃଶ ମୁଁ ଶୋକରେ ଅବସନ୍ନା ହେଉଅଛି ।୧୫। ମୋର ସେହି ପଦ୍ମପଲାଶଲୋଚନ ସିଂହବିକ୍ରମଗାମୀ ପ୍ରିୟବାଦୀ କୃତଜ୍ଞ ପ୍ରାଣନାଥ ରାମଙ୍କୁ ଯେଉଁମାନେ ଦେଖୁଛନ୍ତି, ସେମାନେ ବାସ୍ତବିକ ଧନ୍ୟ ।୧୬। ତୀବ୍ର ବିଷ ଭକ୍ଷଣକରି ଜୀବିତ ରହିବା ଯେପରି ଦୁର୍ଲ୍ଲଭ, ସେହି ଯଶସ୍ୱୀ ଆତ୍ମଜ୍ଞ ରାମଙ୍କ ବିରହରେ ମୋର ଜୀବନଧାରଣ ସେହିପରି ଅସମ୍ଭବ ହୋଇପଡ଼ିଅଛି ।୧୭।

କୀଦୃଶଂ ତୁ ମହାପାପଂ ମୟା ଦେହାନ୍ତରେ କୃତମ୍ ।
ଯେନେଦଂ ପ୍ରାପ୍ୟତେ ଘୋରଂ ମହାଦୁଃଖଂ ସୁଦାରୁଣମ୍ ।୧୮।
ଜୀବିତଂ ତ୍ୟକ୍ତୁମିଚ୍ଛାମି ଶୋକେନ ମହତାବୃତା ।
ରାକ୍ଷସୀଭିଶ୍ଚ ରକ୍ଷ୍ୟନ୍ତ୍ୟା ରାମୋ ନାସାଦ୍ୟତେ ମୟା । ୧୯ ।
ଧିଗସ୍ତୁ ଖଲୁ ମାନୁଷ୍ୟଂ ଧିଗସ୍ତୁ ପରବଶ୍ୟତାମ୍ ।
ନ ଶକ୍ୟଂ ଯତ୍ପରିତ୍ୟକ୍ତୁମାତ୍ମଚ୍ଛନ୍ଦେନ ଜୀବିତମ୍ । ୨୦ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତ୍‌ସହସ୍ରିକାୟାମ୍ ସଂହିତାୟାଂ ସୁନ୍ଦରକାଣ୍ଡେ ସୀତାନିର୍ବେଦୋ ନାମ ପଞ୍ଚବିଂଶଃ ସର୍ଗଃ ।

---

# ଷଡ୍‌ବିଂଶଃ ସର୍ଗଃ

## ପ୍ରାଣତ୍ୟାଗସମ୍ପ୍ରଧାରଣମ୍

ପ୍ରସକ୍ତାଶ୍ରୁମୁଖୀ ତ୍ୱେବଂ ବ୍ରୁବନ୍ତୀ ଜନକାତ୍ମଜା ।
ଅଧୋଗତମୁଖୀ ବାଲା ବିଲପ୍ତୁମୁପଚକ୍ରମେ । ୧ ।

---

ମୁଁ ଜନ୍ମାନ୍ତରରେ କି ପାପ କରିଥିଲି କେଜାଣି, ସେଥିଲାଗି ଏହି ଘୋର ନିଦାରୁଣ ଦୁଃଖ ପାଉଅଛି । ୧୮ । ମୁଁ ମହାଶୋକରେ ଆଚ୍ଛନ୍ନ ହୋଇ ଜୀବନ ତ୍ୟାଗକରିବାକୁ ଇଚ୍ଛାକରୁଅଛି; ମାତ୍ର ରାକ୍ଷସୀମାନେ ମୋତେ ଜଗି ରହିଥିବାରୁ ତାହା କରିପାରୁ ନାହିଁ; ଅଥଚ ରାମଙ୍କୁ ମଧ୍ୟ ମୁଁ ପାଇପାରୁ ନାହିଁ । ।୧୯। ମନୁଷ୍ୟ ଜୀବନକୁ ଧିକ୍, ପରର ବଶୀଭୂତ ହେବାକୁ ଧିକ୍; ଯେହେତୁ ମୁଁ ନିଜର ଇଚ୍ଛାନୁସାରେ ଜୀବନ ପରିତ୍ୟାଗ କରିବାକୁ ମଧ୍ୟ ସମର୍ଥ ହେଉନାହିଁ” ।୨୦।

---

## ୨୬ଶ ସର୍ଗ

### ( ପ୍ରାଣତ୍ୟାଗସଙ୍କଳ୍ପ )

ଏହି କଥା କହୁ କହୁ ଜନକନନ୍ଦିନୀଙ୍କର ବଦନମଣ୍ଡଳ ଅଶ୍ରୁଜଳରେ ପ୍ଲାବିତ ହୋଇଗଲା । ସେ ବାଳା ଅଧୋବଦନରେ ବିଳାପ କରିବାକୁ ଲାଗିଲେ । ୧ ।

ଉନ୍ମତ୍ତେବ ପ୍ରମତ୍ତେବ ଭ୍ରାନ୍ତଚିତ୍ତେବ ଶୋଚତୀ ।
ଉପାବୃତ୍ତା କିଶୋରୀବ ବିବେଷ୍ଟନ୍ତୀ ମହୀତଳେ । ୨ ।
ରାଘବସ୍ୟପ୍ରମତ୍ତସ୍ୟ ରକ୍ଷସା କାମରୂପିଣା ।
ରାବଣେନ ପ୍ରମଥ୍ୟାହମାନୀତା କ୍ରୋଶତୀ ବଳାତ୍ । ୩ ।
ରାକ୍ଷସୀବଶମାପନ୍ନା ଭର୍ତ୍ସ୍ୟମାନା ଚ ଦାରୁଣମ୍ ।
ଚିନ୍ତୟନ୍ତୀ ସୁଦୁଃଖାର୍ତ୍ତା ନାହଂ ଜୀବିତୁମୁତ୍ସହେ । ୪ ।
ନ ହି ମେ ଜୀବିତେନାର୍ଥୋ ନୈବାର୍ଥୈର୍ନ ଚ ଭୂଷଣୈଃ ।
ବସନ୍ତ୍ୟା ରାକ୍ଷସୀମଧ୍ୟେ ବିନା ରାମଂ ମହାରଥମ୍ । ୫ ।
ଅଶ୍ମସାରମିଦଂ ନୂନମଥବାପ୍ୟଜରାମରମ୍ ।
ହୃଦୟଂ ମମ ଯେନେଦଂ ନ ଦୁଃଖେନ ବିଶୀର୍ଯ୍ୟତେ । ୬ ।
ଧିଙ୍ ମାମନାର୍ଯାମସତୀଂ ଯାହଂ ତେନ ବିନାକୃତା ।
ମୁହୂର୍ତ୍ତମପି ଜୀବାମି ଜୀବିତଂ ପାପଜୀବିକା । ୭ ।
ଚରଣେନାପି ସବ୍ୟେନ ନ ସ୍ପୃଶେୟଂ ନିଶାଚରମ୍ ।
ରାବଣଂ କିଂ ପୁନରହଂ କାମୟେୟଂ ନିଶାଚରମ୍ । ୮ ।

---

ଭୂଲୁଣ୍ଠିତ ହୋଇପଡ଼ି ସେ ଉନ୍ମତ୍ତ, ପ୍ରମତ୍ତ ଏବଂ ଭ୍ରାନ୍ତଚିତ୍ତ ହୋଇ ଶୋକ କରିବାକୁ ଲାଗିଲେ । ୨ । "ରାମଙ୍କୁ କାମରୂପୀ ରାକ୍ଷସ ମାୟାରେ ମୋହିତ କରି ନେବାରେ ମୁଁ ଚିତ୍କାର କରୁଥିବାବେଳେ ରାବଣ ମୋତେ ବଳତ୍କାରରେ ହରଣକରି ନେଇ ଆସିଲା । ୩ । ଏବେ ମୁଁ ରାକ୍ଷସୀମାନଙ୍କର ବଶବର୍ତ୍ତିନୀ ହୋଇଅଛି । ସେମାନେ ମୋତେ ନିଦାରୁଣଭାବରେ ଭର୍ତ୍ସନା କରୁଛନ୍ତି । ମୁଁ ଅତିଶୟ ଦୁଃଖକାତର ହୋଇ ଚିନ୍ତାରେ ମଗ୍ନ ହୋଇଅଛି । ଏପରି ଅବସ୍ଥାରେ ଜୀବିତ ରହିବାକୁ ମୋର ଆଗ୍ରହ ହେଉନାହିଁ । ୪ । ମୁଁ ଯେତେବେଳେ ମହାରଥୀ ରାମଙ୍କର ବିଚ୍ଛେଦରେ ରାକ୍ଷସୀମାନଙ୍କ ମଧ୍ୟରେ ବାସକରୁଛି, ସେତେବେଳେ ଅର୍ଥ, ଭୂଷଣ ବା ଜୀବନରେ ଆଉ କି ପ୍ରୟୋଜନ ! । ୫ । ନିଶ୍ଚୟ ମୋର ହୃଦୟ ପ୍ରସ୍ତରପରି କଠିନ ଅଥବା ଅଜର ଏବଂ ଅମର । ସେହିହେତୁରୁ ଏତେ ଦୁଃଖରେ ମଧ୍ୟ ଏହା ବିଦୀର୍ଣ୍ଣ ହୋଇ ଯାଉନାହିଁ । ୬ । ମୁଁ ପାପିନୀ ଯେତେବେଳେ ତାଙ୍କ ବିରହରେ ମୁହୂର୍ତ୍ତେ ମଧ୍ୟ ଜୀବନ ରଖି ରହିଛି, ସେତେବେଳେ ମୋର ଏ ଅନାର୍ଯ୍ୟା ଅସତୀ ଜୀବନକୁ ଧିକ୍ । ୭ । ମୋର ବାମପାଦରେ ମଧ୍ୟ ସେ ନିନ୍ଦିତ ନିଶାଚର ରାବଣକୁ ସ୍ପର୍ଶ କରିବି ନାହିଁ; ତାକୁ ମନରେ କାମନା କରିବା ତ ଦୂରର କଥା । ୮ । ମୁଁ ବାରମ୍ବାର ପ୍ରତ୍ୟାଖ୍ୟାନ କଲେ ମଧ୍ୟ ସେ

ପ୍ରତ୍ୟାଖ୍ୟାନଂ ନ ଜାନାତି ନାତ୍ମାନଂ ନାତ୍ମନଃ କୁଳମ୍ ।
ଯୋ ନୃଶଂସସ୍ୱଭାବେନ ମାଂ ପ୍ରାର୍ଥୟିତୁମିଚ୍ଛତି । ୯ ।
ଛିନ୍ନା ଭିନ୍ନା ପ୍ରଭିନ୍ନା ବା ଦୀପ୍ତା ବାଗ୍ନୌ ପ୍ରଦୀପିତା ।
ରାବଣଂ ନୋପତିଷ୍ଠେୟଂ କିଂ ପ୍ରଲାପେନ ବଶ୍ଚିରମ୍ । ୧୦ ।
ଖ୍ୟାତଃ ପ୍ରାଜ୍ଞଃ କୃତଜ୍ଞଶ୍ଚ ସାନୁକ୍ରୋଶଶ୍ଚ ରାଘବଃ ।
ସଦ୍‌ବୃତ୍ତୋ ନିରନୁକ୍ରୋଶଃ ଶଙ୍କେ ମଦ୍ଭାଗ୍ୟସଂକ୍ଷୟାତ୍ ।୧୧ ।
ରାକ୍ଷସାନାଂ ଜନସ୍ଥାନେ ସହସ୍ରାଣି ଚତୁର୍ଦ୍ଦଶ ।
ଏକେନୈବ ନିରସ୍ତାନି ସ ମାଂ କିଂ ନାଭିପଦ୍ୟତେ । ୧୨ ।
କାମଂ ମଧ୍ୟେ ସମୁଦ୍ରସ୍ୟ ଲଙ୍କେୟଂ ଦୁଷ୍ପ୍ରଧର୍ଷଣା ।
ନ ତୁ ରାଘବ ବାଣାନାଂ ଗତିରୋଧୋ ଭବିଷ୍ୟତି । ୧୩ ।
କିନ୍ତୁ ତତ୍କାରଣଂ ଯେନ ରାମୋ ଦୃଢ଼ପରାକ୍ରମଃ ।
ରାକ୍ଷସାପହୃତାଂ ଭାର୍ଯ୍ୟାମିଷ୍ଟାଂ ଯୋ ନାଭିପଦ୍ୟତେ । ୧୪ ।
ଇହସ୍ଥାଂ ମାଂ ନ ଜାନୀତେ ଶଙ୍କେ ଲକ୍ଷ୍ମଣପୂର୍ବଜଃ ।
ଜାନନ୍ନପି ସ ତେଜସ୍ୱୀ ଧର୍ଷଣାଂ ମର୍ଷୟିଷ୍ୟତି । ୧୫ ।

---

ବୁଝୁ ନାହିଁ । ସେ ନିଜର କୁଳ ବା ନିଜକୁ ମଧ୍ୟ ଜାଣିପାରୁ ନାହିଁ ; ସୁତରାଂ ସେ ନିଜର ନୃଶଂସସ୍ୱଭାବହେତୁରୁ ମୋତେ ପାଇବାକୁ ଇଚ୍ଛା କରୁଅଛି । ୯ । ମୋତେ ଖଣ୍ଡଖଣ୍ଡ କରି ଛିନ୍ନ ଭିନ୍ନ କରିଦିଅ ବା ଅଗ୍ନିତାପରେ ପ୍ରଜ୍ୱଳିତ ଏବଂ ଉତ୍ତପ୍ତ କର; ତଥାପି ମୁଁ ରାବଣକୁ ଭଜିବି ନାହିଁ । ତୁମ୍ଭେମାନେ ଆଉ ଦୀର୍ଘକାଳ ପ୍ରଳାପକରି କି ଲଭ ?। ୧୦ । ରାଘବ ବିଜ୍ଞ, କୃତଜ୍ଞ, ଦୟାଳୁ ଏବଂ ସଚ୍ଚରିତ୍ର ବୋଲି ବିଖ୍ୟାତ; ତଥାପି ଯେ ସେ ମୋପ୍ରତି ନିର୍ଦ୍ଦୟ ହୋଇଛନ୍ତି, ସେଥିରୁ ମୋର ଆଶଙ୍କା ହୁଏ, ମୋର ସୌଭାଗ୍ୟ କ୍ଷୟପ୍ରାପ୍ତ ହୋଇଅଛି । ୧୧ । ଯେ ଏକାକୀ ଜନସ୍ଥାନରେ ଚତୁର୍ଦ୍ଦଶ ସହସ୍ର ରାକ୍ଷସଙ୍କର ବିନାଶ କରିଥିଲେ, ସେ କାହିଁକି ମୋତେ ଉଦ୍ଧାର କରୁନାହାନ୍ତି ।୧୨। ସମୁଦ୍ରମଧ୍ୟରେ ଅବସ୍ଥିତ ଥିବାରୁ ଲଙ୍କା ଅବଶ୍ୟ ଦୁରାକ୍ରମଣୀୟ ଅଟେ; କିନ୍ତୁ ଏଠାରେ ମଧ୍ୟ ରାମଙ୍କ ବାଣମାନଙ୍କର ଗତିରୋଧ ହେବ ନାହିଁ ।୧୩। ଦୃଢ଼ପରାକ୍ରମ ରାମ ଯେ ରାକ୍ଷସକର୍ତ୍ତୃକ ଅପହୃତା ପ୍ରିୟଭାର୍ଯ୍ୟାକୁ ଉଦ୍ଧାର କରୁନାହାନ୍ତି; ଏହାର ବା କାରଣ କ'ଣ ହୋଇପାରେ ! । ୧୪ । ମୁଁ ଏଠାରେ ଅଛି, ଏହା ବୋଧହୁଏ ଲକ୍ଷ୍ମଣାଗ୍ରଜ ଜାଣିପାରି ନାହାନ୍ତି; ଜାଣିଥିଲେକି ସେ ତେଜସ୍ୱୀ ଏ ଅବମାନନା ସହ୍ୟ କରନ୍ତେ ?।୧୫।

ହୃତେତି ମାଂ ଯୋଽଧିଗଚ୍ଛ୍ୟ ରାଘବାୟ ନିବେଦୟେତ୍ ।
ଗୃଧ୍ରରାଜୋଽପି ସ ରଣେ ରାବଣେନ ନିପାତିତଃ । ୧୬।
କୃତଂ କର୍ମ ମହତ୍ତେନ ମାଂ ତଦାଭ୍ୟବପଦ୍ୟତା ।
ତିଷ୍ଠତା ରାବଣବଧେ ବୃଦ୍ଧେନାପି ଜଟାୟୁଷା । ୧୭ ।
ଯଦି ମାମିହ ଜାନୀୟାଦ୍‌ବର୍ତମାନାଂ ହି ରାଘବଃ ।
ଅଦ୍ୟ ବାଣୈରଭିକ୍ରୁଦ୍ଧଃ କୁର୍ଯାଲ୍ଲୋକମରାକ୍ଷସମ୍ । ୧୮।
ନିଦହେଚ୍ଚ ପୁରୀଂ ଲଙ୍କାଂ ଶୋଷୟେଚ୍ଚ ମହୋଦଧିମ୍ ।
ରାବଣସ୍ୟ ଚ ନୀଚସ୍ୟ କୀର୍ତିଂ ନାମ ଚ ନାଶୟେତ୍ । ୧୯ ।
ତତୋ ନିହତନାଥାନାଂ ରାକ୍ଷସୀନାଂ ଗୃହେ ଗୃହେ ।
ଯଥାହମେବଂ ରୁଦତୀ ତଥା ଭୂୟୋ ନ ସଂଶୟଃ । ୨୦ ।
ଅନ୍ୱିଷ୍ୟ ରକ୍ଷସାଂ ଲଙ୍କାଂ କୁର୍ଯାଦ୍ରାମଃ ସଲକ୍ଷ୍ମଣଃ ।
ନ ହି ତାଭ୍ୟାଂ ରିପୁର୍ଦୃଷ୍ଟୋ ମୁହୂର୍ତମପି ଜୀବତି । ୨୧ ।
ଚିତାଧୂମାକୁଲପଥା ଗୃଧ୍ରମଣ୍ଡଳମଣ୍ଡିତା ।
ଅଚିରେଣୈବ କାଳେନ ଶ୍ମଶାନସଦୃଶୀ ଭବେତ୍ । ୨୨ ।

---

ମୁଁ ଅପହୃତା ହୋଇଅଛି, ଏହି ଘଟଣା ଜାଣି ସେ ରାଘବଙ୍କୁ ଜଣାଇ ପାରିଥାନ୍ତେ, ସେହି ଗୃଧ୍ରରାଜ ଜଟାୟୁ ରାବଣକର୍ତ୍ତୃକ ଯୁଦ୍ଧରେ ନିହତ ହୋଇଅଛନ୍ତି । ୧୬ । ଜଟାୟୁ ଅତି ମହତ୍ କାର୍ଯ୍ୟ କରିଅଛନ୍ତି । ସେ ବୃଦ୍ଧ ହେଲେ ମଧ୍ୟ ମୋତେ ଉଦ୍ଧାର କରିବା ପାଇଁ ରାବଣକୁ ବଧକରିବା ନିମନ୍ତେ ଉଦ୍‌ଯୋଗ କରିଥିଲେ । ୧୭ । ମୁଁ ଏହିଠାରେ ଅଛି, ରାଘବ ଯଦି ଏହା ଜାଣିପାରନ୍ତେ, ତାହାହେଲେ ସେ ଅତିଶୟ କ୍ରୁଦ୍ଧ ହୋଇ ଆଜହିଁ ପୃଥିବୀକୁ ବାଣଦ୍ୱାରା ରାକ୍ଷସହୀନ କରିଦିଅନ୍ତେ । ୧୮ । ସେ ଲଙ୍କାପୁରୀକୁ ଦଗ୍ଧ କରିଦିଅନ୍ତେ, ମହାସମୁଦ୍ରକୁ ଶୋଷଣ କରିଦିଅନ୍ତେ ଏବଂ ନୀଚଶୟ ରାବଣର ନାମ ଓ କୀର୍ତ୍ତି ଲୋପ କରିଦିଅନ୍ତେ । ୧୯ । ତାହାହେଲେ ସ୍ୱାମୀହୀନା ରାକ୍ଷସୀମାନଙ୍କର ଘରେ ଘରେ, ମୁଁ ଯେପରି କରୁଣରୋଦନ କରୁଛି, ସେହିପରି ରୋଦନଧ୍ୱନି ଉତ୍‌ଥିତ ହୁଅନ୍ତା, ଏଥିରେ ସନ୍ଦେହ ନାହିଁ । ୨୦ । ରାମ ଲକ୍ଷ୍ମଣଙ୍କ ସହିତ ଅନ୍ୱେଷଣ କରି ଲଙ୍କାକୁ ନିଷ୍ଟସ୍ତ ଏହିପରି କରିବେ । ସେ ଦୁଇଭାଇ ଶତ୍ରୁକୁ ଦେଖିଲେ, ସେହି ଶତ୍ରୁ ଆଉ ମୁହୂର୍ତ୍ତେ ମାତ୍ର ଜୀବିତ ରହିପାରିବ ନାହିଁ । ୨୧ । ଅଳ୍ପକାଳମଧ୍ୟରେ ଲଙ୍କା ଶ୍ମଶାନସଦୃଶ ହୋଇଯିବ, ଚିତାଧୂମରେ ଲଙ୍କାର ରାସ୍ତାମାନ ରୁଦ୍ଧ ହୋଇଯିବ ଏବଂ ଗୃଧ୍ରମାନେ ଏଥିରେ ଚକ୍ର ଦେବାକୁ

ଅଚିରେଣୈବ କାଲେନ ପ୍ରାପ୍ସ୍ୟାମ୍ୟେନଂ ମନୋରଥମ୍ ।
ଦୁଷ୍ଟ୍ରସ୍ତୁାନୋଽଭ୍ୟୁପାଗତ ସର୍ବେଷାଂ ବୋ ବିପର୍ଯ୍ୟୟଃ । ୨୩ ।
ଯାଦୃଶାନି ତୁ ଦୃଶ୍ୟନ୍ତେ ଲଙ୍କାୟାମଶୁଭାନି ତୁ ।
ଅଚିରେଣୈବ କାଲେନ ଭବିଷ୍ୟତି ହତପ୍ରଭା । ୨୪ ।
ନୂନଂ ଲଙ୍କା ହତେ ପାପେ ରାବଣେ ରାକ୍ଷସାଧିପେ ।
ଶୋଷମେଷ୍ୟତି ଦୁର୍ଧର୍ଷା ପ୍ରମଦା ବିଧବା ଯଥା । ୨୫ ।
ପୁଣ୍ୟୋତ୍ସବସମୃଦ୍ଧା ଚ ନଷ୍ଟଭର୍ତ୍ତ୍ରୀ ସରାକ୍ଷସା ।
ଭବିଷ୍ୟତି ପୁରୀ ଲଙ୍କା ନଷ୍ଟଭର୍ତ୍ତ୍ରୀ ଯଥାଙ୍ଗନା । ୨୬ ।
ନୂନଂ ରାକ୍ଷସକନ୍ୟାନାଂ ରୁଦନ୍ତୀନାଂ ଗୃହେ ଗୃହେ ।
ଶ୍ରୋଷ୍ୟାମି ନଚିରାଦେବ ଦୁଃଖାର୍ତ୍ତାନାମିହ ଧ୍ୱନିମ୍ । ୨୭ ।
ସାନ୍ଧକାରା ହତଦ୍ୟୋତା ହତରାକ୍ଷସପୁଙ୍ଗବା ।
ଭବିଷ୍ୟତି ପୁରୀ ଲଙ୍କା ନିର୍ଦଗ୍ଧା ରାମସାୟକୈଃ । ୨୮ ।
ଯଦି ନାମ ସ ଶୂରୋ ମାଂ ରାମୋ ରକ୍ତାନ୍ତଲୋଚନଃ ।
ଜାନୀୟାଦ୍ବର୍ତ୍ତମାନାଂ ହି ରାକ୍ଷସସ୍ୟ ନିବେଶନେ । ୨୯ ।
ଅନେନ ତୁ ନୃଶଂସେନ ରାବଣେନାଧମେନ ମେ ।
ସମୟୋ ଯସ୍ତୁ ନିର୍ଦ୍ଦିଷ୍ଟସ୍ତସ୍ୟ କାଲୋଽୟମାଗତଃ । ୩୦ ।

---

ଲାଗିବେ । ୨୨ । ଅଚିରକାଳ ମଧ୍ୟରେ ମୁଁ ମୋର ଏହି ମନୋରଥ ଲାଭ କରିବି । ମୋର ଏହି କଥା ତୁମ୍ଭ ସମସ୍ତଙ୍କ ବିପରୀତ ବୋଧ ହେଉଛି ସତ, କିନ୍ତୁ ଏହା ହିଁ ତୁମ୍ଭମାନଙ୍କ ପକ୍ଷରେ ଅଶୁଭ ଲକ୍ଷଣ । ୨୩ । ଲଙ୍କାରେ ବର୍ତ୍ତମାନ ଯେପରି ଅଶୁଭ ଚିହ୍ନମାନ ଦେଖାଯାଉଛି, ସେଥିରୁ ବୋଧହେଉଛି ଯେ ଲଙ୍କା ଅଳ୍ପ କାଳମଧ୍ୟରେ ଶ୍ରୀହୀନା ହୋଇଯିବ । ୨୪ । ପାପୀ ରାକ୍ଷସାଧମ ରାବଣ ନିହତ ହେଲେ ଦୁର୍ଜୟା ଲଙ୍କା ବିଧବା ରମଣୀପରି ଶୁଷ୍କ ହୋଇଯିବ । ୨୫ । ନାନା ପୁଣ୍ୟ ଉତ୍ସବଦ୍ୱାରା ସମୃଦ୍ଧିଶାଳୀ ଏହି ଲଙ୍କାନଗରୀ ରାକ୍ଷସମାନଙ୍କ ସହିତ ହତଧବା ରମଣୀପରି ସ୍ୱାମୀହୀନା ହୋଇଯିବ । ୨୬ । ମୁଁ ନିଶ୍ଚୟ ଅଚିରକାଳମଧ୍ୟରେ ପ୍ରତି ଗୃହରେ ଦୁଃଖାର୍ତ୍ତା ରାକ୍ଷସକନ୍ୟାମାନଙ୍କର ରୋଦନଧ୍ୱନି ଶୁଣିବି । ୨୭ । ଯଦି ରକ୍ତଲୋଚନ ବୀର ରାମ ଜାଣିପାରନ୍ତି ଯେ ମୁଁ ରାବଣ ଘରେ ବନ୍ଦୀ ରହିଛି, ତେବେ ରାମଙ୍କ ବାଣରେ ଶ୍ରେଷ୍ଠ ରାକ୍ଷସମାନେ ନିହତ ହୋଇ, ଲଙ୍କାନଗରୀ ହୀନପ୍ରଭା ଏବଂ ଅନ୍ଧକାରମୟୀ ହୋଇ ଦଗ୍ଧ ହୋଇଯିବ । ୨୮-୨୯ । ନୃଶଂସ, ଅଧମ ଏହି ରାବଣ ଯେଉଁ ସମୟ ନିର୍ଦ୍ଦିଷ୍ଟ କରିଅଛି, ସେ ସମୟ ବର୍ତ୍ତମାନ ଉପସ୍ଥିତ ହୋଇଅଛି । ୩୦ ।

ସ ଚ ମେ ବିହିତୋ ମୃତ୍ୟୁରସ୍ମିନ୍ ଦୁଷ୍ଟେ ନ ବର୍ତ୍ତତେ ।
ଅକାର୍ଯ୍ୟଂ ଯେ ନ ଜାନନ୍ତି ନୈରୃତାଃ ପାପକାରଣଃ । ୩୧ ।
ଅଧର୍ମାତ୍ତୁ ମହୋତ୍ପାତୋ ଭବିଷ୍ୟତି ହି ସାଂପ୍ରତମ୍ ।
ନୈତେ ଧର୍ମଂ ବିଜାନନ୍ତି ରାକ୍ଷସାଃ ପିଶିତାଶନାଃ । ୩୨ ।
ଧ୍ରୁବଂ ମାଂ ପ୍ରାତରାଶାର୍ଥଂ ରାକ୍ଷସଃ କଲ୍ପୟିଷ୍ୟତି ।
ସାହଂ କଥଂ କରିଷ୍ୟାମି ତଂ ବିନା ପ୍ରିୟଦର୍ଶନମ୍ । ୩୩ ।
ରାମଂ ରକ୍ତାନ୍ତନୟନମପଶ୍ୟନ୍ତୀ ସୁଦୁଃଖିତା ।
କ୍ଷିପ୍ରଂ ବୈବସ୍ୱତଂ ଦେବଂ ପଶ୍ୟେୟଂ ପତିନା ବିନା । ୩୪ ।
ନାଜାନାଜ୍ଜୀବତୀଂ ରାମଃ ସ ମାଂ ଭରତପୂର୍ବଜଃ ।
ଜାନନ୍ତୌ ତୁ ନ କୁର୍ଯାତାଂ ନୋର୍ବ୍ୟାଂ ହି ପରିମାର୍ଗଣମ୍ । ୩୫ ।
ନୂନଂ ମମୈବ ଶୋକେନ ସ ବୀରୋ ଲକ୍ଷ୍ମଣାଗ୍ରଜଃ ।
ଦେବଲୋକମିତୋ ଯାତସ୍ତ୍ୟକ୍ତ୍ୱା ଦେହଂ ମହୀତଳେ । ୩୬ ।
ଧନ୍ୟା ଦେବାଃ ସଗନ୍ଧର୍ବାଃ ସିଦ୍ଧାଶ୍ଚ ପରମର୍ଷୟଃ ।
ମମ ପଶ୍ୟନ୍ତି ଯେ ବୀରଂ ରାମଂ ରାଜୀବଲୋଚନମ୍ । ୩୭ ।

---

ପାପାତ୍ମା ରାକ୍ଷସମାନେ କ'ଣ ଅକରଣୀୟ ତାହା ଜାଣନ୍ତି ନାହିଁ; ସୁତରାଂ ଦୁଷ୍ଟମତି ରାବଣ ସ୍ଥିର କରିଛି ଯେ ଏହି ସମୟରେ ମୋର ମୃତ୍ୟୁବିଧାନ କରିବ । ୩୧ । ଅଧର୍ମହେତୁରୁ ବର୍ତ୍ତମାନ ମହାନ୍ ଉତ୍ପାତ ଉପସ୍ଥିତ ହେବ । ଏହି ମାଂସଭୋଜୀ ରାକ୍ଷସମାନେ ଧର୍ମ ଜାଣନ୍ତି ନାହିଁ । ୩୨ । ରାକ୍ଷସ ମୋତେ ପ୍ରାତଃକାଳୀନ ଭୋଜନପାଇଁ ନିଶ୍ଚୟ ବ୍ୟବସ୍ଥା କରିବ । ପ୍ରିୟଦର୍ଶନ ରାମଙ୍କ ବିହୁନରେ ମୁଁ ଏପରି ଅବସ୍ଥାରେ କି ଉପାୟ କରିବି ? । ୩୩ । ରକ୍ତାନ୍ତଲୋଚନ ରାମଙ୍କୁ ନ ଦେଖି ମୁଁ ପତିବିହୁନରେ ଅତି ଦୁଃଖିତା ହୋଇ ଶୀଘ୍ରହେଲେ ଯାଇ ଯମଦେବତାଙ୍କୁ ଭେଟନ୍ତି ! । ୩୪ । ମୁଁ ଯେ ଜୀବିତା ରହିଛି, ସେ କଥା ଭରତାଗ୍ରଜ ରାମ ନିଶ୍ଚୟ ଜାଣିପାରି ନାହାନ୍ତି । ରାମ ଲକ୍ଷ୍ମଣ ଯଦି ସେ କଥା ଜାଣିଥାନ୍ତେ, ତେବେ ସେ କ'ଣ ଏ ପୃଥିବୀମଧ୍ୟରେ ମୋତେ ଖୋଜନ୍ତେ ନାହିଁ ! । ୩୫ । ଅଥବା ସେହି ଲକ୍ଷ୍ମଣାଗ୍ରଜ ବୀର ରାମ ମୋରି ଶୋକରେ କାତର ହୋଇ, ଭୂତଳରେ ଦେହତ୍ୟାଗ କରି, ଏଠାରୁ ଦେବଲୋକକୁ ଚାଲିଯାଇଛନ୍ତି !।୩୬। ଦେବ, ଗନ୍ଧର୍ବ, ସିଦ୍ଧ ଓ ମହର୍ଷିଗଣ ହିଁ ଧନ୍ୟ, କାରଣ ସେମାନେ ମୋର ରାଜୀବ-ଲୋଚନ ବୀର ରାମଙ୍କୁ ଦେଖୁଥିବେ । ୩୭ । ଅଥବା ଧର୍ମକାମୀ ପରମାତ୍ମା ରାଜର୍ଷି

ଅଥବା ନ ହି ତସ୍ୟାର୍ଥୋ ଧର୍ମକାମସ୍ୟ ଧୀମତଃ ।
ମୟା ରାମସ୍ୟ ରାଜର୍ଷେର୍ଭାର୍ଯ୍ୟୟା ପରମାତ୍ମନଃ । ୩୮ ।
ଦୃଶ୍ୟମାନେ ଭବେତ୍ ପ୍ରୀତିଃ ସୌହୃଦଂ ନାସ୍ତ୍ୟଦୃଶ୍ୟତଃ ।
ନାଶୟନ୍ତି କୃତଘ୍ନାସ୍ତୁ ନ ରାମୋ ନାଶୟିଷ୍ୟତି । ୩୯ ।
କିଂ ବା ମୟ୍ୟଗୁଣାଃ କେଚିତ୍ କିଂ ବା ଭାଗ୍ୟକ୍ଷୟୋ ହି ମେ ।
ଯା ହି ସୀଦାମି ରାମେଣ ହୀନା ମୁଖ୍ୟେନ ଭାମିନୀ । ୪୦ ।
ଶ୍ରେୟୋ ମେ ଜୀବିତାନ୍ମର୍ତ୍ତୁଂ ବିହୀନାୟା ମହାତ୍ମନଃ ।
ରାମାଦକ୍ଲିଷ୍ଟଚାରିତ୍ରାଚ୍ଛୂରାଚ୍ଛତ୍ରୁନିବର୍ହଣାତ୍ । ୪୧ ।
ଅଥବା ନ୍ୟସ୍ତଶସ୍ତ୍ରୌ ତୌ ବନେ ମୂଳଫଳାଶନୌ ।
ଭ୍ରାତରୌ ହି ନରଶ୍ରେଷ୍ଠୌ ଚରନ୍ତୌ ବନଗୋଚରୌ । ୪୨ ।
ଅଥବା ରାକ୍ଷସେନ୍ଦ୍ରେଣ ରାବଣେନ ଦୁରାତ୍ମନା ।
ଛଦ୍ମନା ଘାତିତୌ ଶୂରୌ ଭ୍ରାତରୌ ରାମଲକ୍ଷ୍ମଣୌ । ୪୩ ।
ସାହମେବଂବିଧେ କାଲେ ମର୍ତ୍ତୁମିଚ୍ଛାମି ସର୍ବତଃ ।
ନ ଚ ମେ ବିହିତୋ ମୃତ୍ୟୁରସ୍ମିନ୍ଦୁଃଖେଽପି ବର୍ତ୍ତତି । ୪୪ ।

---

ଧୀମାନ୍ ରାମଙ୍କର ଆଉ ମୋପରି ଭାର୍ଯ୍ୟାରେ ପ୍ରୟୋଜନ ନାହିଁ ! । ୩୮ । କାରଣ ଦେଖୁଥିବା ଜନଷ ପ୍ରତି ହିଁ ପ୍ରୀତି ଜନ୍ମିଥାଏ, ଦୃଷ୍ଟିରୁ ଅନ୍ତର ହେଲେ ସୌହାର୍ଦ୍ଦ୍ୟ ରହେ ନାହିଁ; କିନ୍ତୁ କୃତଘ୍ନ ଲୋକମାନେ ହିଁ ପ୍ରଣୟର ବିନାଶ କରିଥାଆନ୍ତି; ରାମ କଦାପି ମୋ ପ୍ରତି ପ୍ରଣୟ ନଷ୍ଟ କରିବେ ନାହିଁ । ୩୯ । ଅଥବା ମୋର କୌଣସି ଦୋଷ ଥିବ, କିମ୍ବା ମୋର ସୌଭାଗ୍ୟ କ୍ଷୟ ହୋଇଯାଇଛି ; ସେଥିପାଇଁ ମୁଁ ଆଜି ମୁଖ୍ୟ ରାମଙ୍କ ବିହୁନରେ ଅବସନ୍ନା ହେଉଅଛି । ୪୦ । ଅକ୍ଲିଷ୍ଟଚରିତ, ଶତ୍ରୁସୂଦନ, ବୀର, ମହାତ୍ମା ରାମଙ୍କଠାରୁ ମୁଁ ଯେତେବେଳେ ବିଚ୍ଛିନ୍ନା ହୋଇଅଛି, ସେତେବେଳେ ଜୀବିତରହିବାଠାରୁ ମରିବା ହିଁ ମୋ ପକ୍ଷେ ଶ୍ରେୟସ୍କର । ୪୧ । ଅଥବା ପୁରୁଷଶ୍ରେଷ୍ଠ ସେ ଦୁଇଭାଇ ହୁଏତ ଅସ୍ତ୍ରଶସ୍ତ୍ର ପରିତ୍ୟାଗପୂର୍ବକ ଫଳମୂଳାହାରୀ ହୋଇ ଓ ମୁନିବୃତ୍ତି ଅବଲମ୍ବନ କରି ବନମଧ୍ୟରେ ବିଚରଣ କରୁଛନ୍ତି । ୪୨ । ଅଥବା ଦୁରାତ୍ମା ରାକ୍ଷସରାଜ ରାବଣ ଛଳପୂର୍ବକ ବୀର ରାମ ଲକ୍ଷ୍ମଣ ଦୁଇଭାଇଙ୍କୁ ହତ୍ୟା କରାଇଅଛି । ୪୩ । ଏହିପରି ଅବସ୍ଥାରେ ମୁଁ ସର୍ବାନ୍ତଃକରଣରେ ମରିବାକୁ ଇଚ୍ଛାକରୁଅଛି; କିନ୍ତୁ ଏହି ଦୁଃଖକର ଅବସ୍ଥାରେ ପଡ଼ିଥିଲେ ସୁଦ୍ଧା ବିଧାତା ମୋର ମୃତ୍ୟୁବିଧାନ କରି ନାହାନ୍ତି । ୪୪ ।

ଧନ୍ୟା ଖଲୁ ମହାତ୍ମାନୋ ମୁନୟଃ ସତ୍ୟସଂମତାଃ ।
ଜିତାତ୍ମାନୋ ମହାଭାଗା ଯେଷାଂ ନ ସ୍ତଃ ପ୍ରିୟାପ୍ରିୟେ । ୪୫ ।
ପ୍ରିୟାନ୍ନ ସଂଭବେଦ୍‌ଦୁଃଖମପ୍ରିୟାଦଧିକଂ ଭବେତ୍ ।
ତାଭ୍ୟାଂ ହି ତେ ବିୟୁଜ୍ୟନ୍ତେ ନମସ୍ତେଷାଂ ମହାତ୍ମନାମ୍ । ୪୬ ।
ସାହଂ ତ୍ୟକ୍ତା ପ୍ରିୟେଣୈବ ରାମେଣ ବିଦିତାତ୍ମନା ।
ପ୍ରାଣାଂସ୍ତ୍ୟକ୍ଷ୍ୟାମି ପାପସ୍ୟ ରାବଣସ୍ୟ ଗତା ବଶମ୍ । ୪୭ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ ସୁନ୍ଦରକାଣ୍ଡେ ପ୍ରାଣତ୍ୟାଗସମ୍ପ୍ରଧାରଣଂ ନାମ ଷଡ୍‌ବିଂଶଃ ସର୍ଗଃ ।

---

# ସପ୍ତବିଂଶଃ ସର୍ଗଃ

## ତ୍ରିଜଟାସ୍ୱପ୍ନଃ

ଇତ୍ୟୁକ୍ତାଃ ସୀତୟା ଘୋରରାକ୍ଷସ୍ୟଃ କ୍ରୋଧମୂର୍ଚ୍ଛିତାଃ ।
କାଶ୍ଚିଜ୍ଜଗ୍ମୁସ୍ତଦାଖ୍ୟାତୁଂ ରାବଣସ୍ୟ ଦୁରାତ୍ମନଃ । ୧ ।
ତତଃ ସୀତାମୁପାଗମ୍ୟ ରାକ୍ଷସ୍ୟୋ ଭୀମଦର୍ଶନାଃ ।
ପୁନଃ ପରୁଷମେକାର୍ଥମନର୍ଥାର୍ଥମଥାବ୍ରୁବନ୍ । ୨ ।

---

ବାସ୍ତବରେ ସେହି ଆତ୍ମଜୟୀ ସତ୍ୟପରାୟଣ ମହାତ୍ମା ମହାଭାଗ ମୁନିମାନେହିଁ ଧନ୍ୟ ! କାରଣ ସେମାନଙ୍କର ପ୍ରିୟ ଅପ୍ରିୟ କିଛି ନାହିଁ । ସେମାନଙ୍କର ପ୍ରିୟ ଲାଗି ଦୁଃଖ ହୁଏ ନାହିଁ କିମ୍ବା ଅପ୍ରିୟ ଲାଗି ମଧ୍ୟ ଅଧିକ ଦୁଃଖ ହୁଏ ନାହିଁ । ସେହି ମହାତ୍ମାମାନେ ପ୍ରିୟ ଏବଂ ଅପ୍ରିୟ, ଏ ଦୁଇଟିରୁ ହିଁ ବିମୁକ୍ତ, ମୁଁ ସେମାନଙ୍କୁ ନମସ୍କାର କରୁଅଛି । ୪୫-୪୬ । ହାୟ ! ତ୍ୱଦୀୟ ପ୍ରିୟ ଆତ୍ମଜ୍ଞ ରାମଙ୍କ ଦ୍ୱାରା ପରିତ୍ୟକ୍ତା ହୋଇ ମୁଁ ଯେତେବେଳେ ପାପୀ ରାବଣର ବଶଂଗତା ହୋଇଅଛି, ସେତେବେଳେ ମୁଁ ନିଶ୍ଚୟ ପ୍ରାଣତ୍ୟାଗ କରିବି । ୪୭ ।

---

# ୨୭ଶ ସର୍ଗ

## ( ତ୍ରିଜଟାର ସ୍ୱପ୍ନ )

ସୀତା ଏହିପରି କହିବାରୁ ଘୋରରାକ୍ଷସୀମାନଙ୍କ ମଧ୍ୟରୁ କେହି କେହି କ୍ରୋଧରେ ହତଜ୍ଞାନ ହୋଇ ଦୁରାତ୍ମା ରାବଣକୁ ଏହି କଥା ଜଣାଇବାକୁ ଚାଲିଗଲେ ।୧। ଅନନ୍ତର ଭୀମଦର୍ଶନା ରାକ୍ଷସୀମାନେ ସୀତାଙ୍କ ସମୀପକୁ ଆସି ପୁନର୍ବାର ଅନର୍ଥକର,

ଅଦ୍ୟେଦାନୀଂ ତବାନାର୍ଯେ ସୀତେ ପାପବିନଶ୍ଚୟେ ।
ରାକ୍ଷସ୍ୟୋ ଭକ୍ଷୟିଷ୍ୟନ୍ତି ମାଂସମେତଦ୍ୟଥାସୁଖମ୍ । ୩ ।
ସୀତାଂ ତାଭିରନାର୍ଯାଭିର୍ଦୃଷ୍ଟ୍ୱା ସଂତର୍ଜିତାଂ ତଦା ।
ରାକ୍ଷସୀ ତ୍ରିଜଟା ବୃଦ୍ଧା ପ୍ରବୁଦ୍ଧା ବାକ୍ୟମବ୍ରବୀତ୍ । ୪ ।
ଆତ୍ମାନଂ ଖାଦତାନାର୍ଯା ନ ସୀତାଂ ଭକ୍ଷୟିଷ୍ୟଥ ।
ଜନକସ୍ୟ ସୁତାମିଷ୍ଟାଂ ସ୍ନୁଷାଂ ଦଶରଥସ୍ୟ ଚ । ୫ ।
ସ୍ୱପ୍ନୋ ହ୍ୟଦ୍ୟ ମୟା ଦୃଷ୍ଟୋ ଦାରୁଣୋ ରୋମହର୍ଷଣଃ ।
ରାକ୍ଷସାନାମଭାବାୟ ଭର୍ତୁରସ୍ୟ ଜୟାୟ ଚ । ୬ ।
ଏବମୁକ୍ତାସ୍ତ୍ରିଜଟୟା ରାକ୍ଷସ୍ୟଃ କ୍ରୋଧମୂର୍ଚ୍ଛିତାଃ ।
ସର୍ବା ଏବାବ୍ରୁବନ୍ ଭୀତାସ୍ତ୍ରିଜଟାଂ ତାମିଦଂ ବଚଃ । ୭ ।
କଥୟସ୍ୱ ତ୍ୱୟା ଦୃଷ୍ଟଃ ସ୍ୱପ୍ନୋଽୟଂ କୀଦୃଶୋ ନିଶି ।
ତାସାଂ ଶ୍ରୁତ୍ୱା ତୁ ବଚନଂ ରାକ୍ଷସୀନାଂ ମୁଖୋଦ୍‌ଗତମ୍ । ୮ ।
ଉବାଚ ବଚନଂ କାଲେ ତ୍ରିଜଟା ସ୍ୱପ୍ନସଂଶ୍ରିତମ୍ ।
ଗଜଦନ୍ତମୟୀଂ ଦିବ୍ୟାଂ ଶିବିକାମନ୍ତରିକ୍ଷଗାମ୍ । ୯ ।
ଯୁକ୍ତାଂ ବାଜିସହସ୍ରେଣ ସ୍ୱୟମାସ୍ଥାୟ ରାଘବଃ ।
ଶୁକ୍ଳମାଲ୍ୟାମ୍ବରଧରୋ ଲକ୍ଷ୍ମଣେନ ସମାଗତଃ । ୧୦ ।

---

ନିଦାରୁଣ କଥାମାନ କହିବାକୁ ଲାଗିଲେ । ୨। "ହେ ଅନାର୍ଯ୍ୟେ, ପାପସଂକଳ୍ପେ, ସୀତେ ! ଆଜ ଏହି ରାକ୍ଷସୀ ରାକ୍ଷସୀମାନେ ସମସ୍ତେ ତୋର ଏହି ମାଂସ ମନ ଆନନ୍ଦରେ ଭକ୍ଷଣ କରିବୁ" । ୩ । ସେହି ନିର୍ଦ୍ଦୟ ରାକ୍ଷସୀମାନେ ସୀତାଙ୍କ ପ୍ରତି ଏପରି ତର୍ଜନ ଗର୍ଜନ କରୁଥିବାର ଦେଖି ତ୍ରିଜଟା ନାମକ ଏକ ବୃଦ୍ଧା ରାକ୍ଷସୀ ନିଦରୁ ଉଠି ସେମାନଙ୍କୁ କହିଲା । ୪ । ହେ ଅନାର୍ଯ୍ୟଗଣ ! ତୁମ୍ଭେମାନେ ନିଜନିଜକୁ ହିଁ ଖାଅ । ଜନକଙ୍କର କନ୍ୟା ଏବଂ ଦଶରଥଙ୍କର ପ୍ରିୟପୁତ୍ରବଧୂ ସୀତାଙ୍କୁ ତୁମ୍ଭେମାନେ ଖାଇପାରିବ ନାହିଁ । ୫ । ମୁଁ ଆଜ ଅତି ଦାରୁଣ ରୋମହର୍ଷଣକାରୀ ସ୍ୱପ୍ନ ଦେଖିଛି । ସେଥିରୁ ଜଣାଯାଉଛି ଯେ ରାକ୍ଷସକୁଳର ବିନାଶ ହେବ ଏବଂ ଏହାଙ୍କ ସ୍ୱାମୀଙ୍କର ଜୟ ହେବ" । ୬। ତ୍ରିଜଟା ଏପରି କହିବାରୁ କ୍ରୋଧମୋହିତା ରାକ୍ଷସୀମାନେ ସମସ୍ତେ ଭୀତହୋଇ ତ୍ରିଜଟାକୁ କହିଲେ । ୭ । "ତୁ ରାତିରେ କିପରି ସ୍ୱପ୍ନ ଦେଖିଛୁ, କହ ।" ଏହି ସକଳ ରାକ୍ଷସୀଙ୍କର ମୁଖନିଃସୃତ ବଚନ ଶ୍ରବଣକରି ତ୍ରିଜଟା ପ୍ରାତଃକାଳରେ ଦେଖିଥିବା ସ୍ୱପ୍ନସମ୍ବନ୍ଧୀୟ କଥା କହିବାକୁ ଲାଗିଲା । "ସ୍ୱପ୍ନଂ ରାମ ଶୁକ୍ଳବସ୍ତ୍ର ଓ ଶୁକ୍ଳମାଲ୍ୟ ଧାରଧାନପୂର୍ବକ ଲକ୍ଷ୍ମଣଙ୍କ ସହିତ ହସ୍ତିଦନ୍ତନିର୍ମିତ, ସହସ୍ର ଅଶ୍ୱଯୋଜିତ, ଆକାଶଗାମୀ

ସ୍ୱପ୍ନେ ଗୃଦ୍ୟ ମୟା ଦୃଷ୍ଟା ସୀତା ଶୁକ୍ଲାମ୍ବରାବୃତା ;
ସାଗରେଣ ପରିକ୍ଷିପ୍ତଂ ଶ୍ୱେତପର୍ବତମାସ୍ଥିତା । ୧୧ ।
ରାମେଣ ସଂଗତା ସୀତା ଭାସ୍କରେଣ ପ୍ରଭା ଯଥା ।
ରାଘବଶ୍ଚ ପୁନର୍ଦୃଷ୍ଟଶ୍ଚତୁର୍ଦନ୍ତଂ ମହାଗଜମ୍ । ୧୨ ।
ଆରୂଢ଼ଃ ଶୈଳସଂକାଶଂ ଚକାସ ସହଲକ୍ଷ୍ମଣଃ ।
ତତସ୍ତୁ ସୂର୍ଯସଂକାଶୌ ଦୀପ୍ୟମାନୌ ସ୍ୱତେଜସା । ୧୩ ।
ଶୁକ୍ଳମାଲ୍ୟାମ୍ବରଧରୌ ଜାନକୀଂ ପର୍ଯୁପସ୍ଥିତୌ ।
ତତସ୍ତସ୍ୟ ନଗସ୍ୟାଗ୍ରେ ହ୍ୟାକାଶସ୍ଥସ୍ୟ ଦନ୍ତିନଃ । ୧୪ ।
ଭର୍ତ୍ରା ପରିଗୃହୀତସ୍ୟ ଜାନକୀ ସ୍କନ୍ଧମାଶ୍ରିତା ।
ଭର୍ତୁରଙ୍କାତ୍ସମୁତ୍ପତ୍ୟ ତତଃ କମଲଲୋଚନା ।
ଚନ୍ଦ୍ରସୂର୍ଯୌ ମୟା ଦୃଷ୍ଟୌ ପାଣିଭ୍ୟାଂ ପରିମାର୍ଜତୀ । ୧୫ ।
ତତସ୍ତାଭ୍ୟାଂ କୁମାରାଭ୍ୟାମାସ୍ଥିତଃ ସ ଗଜୋତ୍ତମଃ ।
ସୀତୟା ଚ ବିଶାଲାକ୍ଷ୍ୟା ଲଙ୍କାୟା ଉପରି ସ୍ଥିତଃ ।
ପାଣ୍ଡୁରର୍ଷଭଯୁକ୍ତେନ ରଥେନାଷ୍ଟଯୁଜା ସ୍ୱୟମ୍ । ୧୬ ।

---

ଦିବ୍ୟ ଶିବିକାରେ ବସି ଆସିଛନ୍ତି । ୮-୧୦ । ପୁଣି ଶୁକ୍ଳବସ୍ତ୍ର ପିନ୍ଧି ସୀତା ସମୁଦ୍ର-ପରିବେଷ୍ଟିତ ଗୋଟିଏ ଶ୍ୱେତପର୍ବତ ଉପରେ ବସିରହିଥିବାର ମୁଁ ଆଜ ସ୍ୱପ୍ନରେ ଦେଖିଛି । ୧୧ । ସୂର୍ଯ୍ୟଙ୍କ ସହିତ ତାଙ୍କର ପ୍ରଭା ଯେପରି ମିଶି ଥାଏ, ସୀତା ରାମଙ୍କ ସହିତ ସେହିପରି ମିଳିତ ହୋଇଛନ୍ତି । ପୁଣି ମୁଁ ଦେଖିଲି, ରାମ ଲକ୍ଷ୍ମଣଙ୍କ ସହିତ ଏକ ପର୍ବତାକାର ଚତୁର୍ଦ୍ଦନ୍ତ ମହାଗଜ ଉପରେ ଚଢ଼ି ଶୋଭାପାଉଛନ୍ତି । ଅନନ୍ତର ସ୍ୱପ୍ରଭାବରେ ସୂର୍ଯ୍ୟସଦୃଶ ଦୀପ୍ତିମାନ୍ ଶୁକ୍ଳମାଲ୍ୟାମ୍ବରଧାରୀ ରାମ ଲକ୍ଷ୍ମଣ ଦୁହେଁ ଜାନକୀଙ୍କ ନିକଟରେ ଆସି ଉପସ୍ଥିତ ହେଲେ । ତା'ପରେ କମଳନୟନା ଜାନକୀ ସେହି ଆକାଶସ୍ଥ ଶ୍ୱେତପର୍ବତର ଅଗ୍ରଭାଗରେ ସ୍ୱାମୀଙ୍କ କର୍ତ୍ତୃକ ଗୃହୀତହୋଇ ରାମଙ୍କ କର୍ତ୍ତୃକ ନିୟନ୍ତ୍ରିତ ହସ୍ତିସ୍କନ୍ଧରେ ଉପବେଶନ କଲେ । ଅନନ୍ତର ସେ ସ୍ୱାମୀଙ୍କ କୋଡ଼ରୁ ଉଠିଯାଇ ଦୁଇହାତରେ ଚନ୍ଦ୍ର ଓ ସୂର୍ଯ୍ୟଙ୍କୁ ଧରି ମକଚିଲେ । ୧୨-୧୫। ତାହାପରେ ସେହି ଗଜଶ୍ରେଷ୍ଠ ଏ ଦୁଇ କୁମାର ଏବଂ ବିଶାଳାକ୍ଷୀ ସୀତାଙ୍କୁ ପୃଷ୍ଠରେ ଧରି ଲଙ୍କା ଉପରେ ଆସି ଅବସ୍ଥାନ କଲା । ପୁଣି ମୁଁ ଦେଖିଲି, ସ୍ୱୟଂ କାକୁତ୍ସ୍ଥ ଶୁକ୍ଳମାଲ୍ୟ ଓ ବସ୍ତ୍ରପରିଧାନ କରି ଭାର୍ଯ୍ୟା ଓ ଲକ୍ଷ୍ମଣଙ୍କ ସହିତ ଆଠଗୋଟି ଶ୍ୱେତବର୍ଣ୍ଣ ବୃଷଭଯୁକ୍ତ

ଶୁକ୍ଳମାଲ୍ୟାମ୍ବରଧରୋ ଲକ୍ଷ୍ମଣେନ ସହାଗତଃ ।
ତତୋଽନ୍ୟତ୍ର ମୟା ଦୃଷ୍ଟୋ ରାମଃ ସତ୍ୟପରାକ୍ରମଃ । ୧୭ ।
ଲକ୍ଷ୍ମଣେନ ସହ ଭ୍ରାତ୍ରା ସୀତୟା ସହ ବୀର୍ଯ୍ୟବାନ୍ ।
ଆରୁହ୍ୟ ପୁଷ୍ପକଂ ଦିବ୍ୟଂ ବିମାନଂ ସୂର୍ଯ୍ୟସନ୍ନିଭମ୍ । ୧୮ ।
ଉତ୍ତରାଂ ଦିଶମାଲୋଚ୍ୟ ପ୍ରସ୍ଥିତଃ ପୁରୁଷୋତ୍ତମଃ ।
ରାବଣଶ୍ଚ ମୟା ଦୃଷ୍ଟୋ ମୁଣ୍ଡସ୍ତୈଳସମୁକ୍ଷିତଃ । ୧୯ ।
ରକ୍ତବାସାଃ ପିବନ୍ମତ୍ତଃ କରବୀରକୃତସ୍ରଜଃ ।
ବିମାନାତ୍ପୁଷ୍ପକାଦଦ୍ୟ ରାବଣଃ ପତିତଃ କ୍ଷିତୌ । ୨୦ ।
କୃଷ୍ୟମାଣଃ ସ୍ତ୍ରିୟା ମୁଣ୍ଡୋ ଦୃଷ୍ଟଃ କୃଷ୍ଣାମ୍ବରଃ ପୁନଃ ।
ରଥେନ ଖରଯୁକ୍ତେନ ରକ୍ତମାଲ୍ୟାନୁଲେପନଃ । ୨୧ ।
ପିବଂସ୍ତୈଳଂ ହସନ୍ ନୃତ୍ୟନ୍ ଭ୍ରାନ୍ତଚିତ୍ତାକୁଲେନ୍ଦ୍ରିୟଃ ।
ଗର୍ଦ୍ଦଭେନ ଯଯୌ ଶୀଘ୍ରଂ ଦକ୍ଷିଣାଂ ଦିଶମାଶ୍ରିତଃ । ୨୨।
ପୁନରେବ ମୟା ଦୃଷ୍ଟୋ ରାବଣୋ ରାକ୍ଷସେଶ୍ୱରଃ ।
ପତିତୋଽବାକ୍‌ଶିରା ଭୂମୌ ଗର୍ଦ୍ଦଭାଦ୍ଭୟମୋହିତଃ । ୨୩ ।
ସହସୋତ୍‌ଥାୟ ସମ୍ଭ୍ରାନ୍ତୋ ଭୟାର୍ତ୍ତୋ ମଦବିହ୍ୱଳଃ ।
ଉନ୍ମତ୍ତରୂପୋ ଦିଗ୍‌ବାସା ଦୁର୍ବାକ୍ୟଂ ପ୍ରଲପନ୍ ବହୁ । ୨୪ ।

---

ରଥରେ ଏଠାକୁ ଆସିଲେ । ମୁଁ ପୁଣି ଦେଖିଲି, ସତ୍ୟପରାକ୍ରମ ବୀର୍ଯ୍ୟବାନ୍ ପୁରୁଷୋତ୍ତମ ରାମ ଆଉଠାଏ ଭାଇ ଲକ୍ଷ୍ମଣ ଏବଂ ସୀତାଙ୍କ ସହିତ ସୂର୍ଯ୍ୟସଦୃଶ ତେଜସ୍ୱୀ ଦିବ୍ୟପୁଷ୍ପକ ବିମାନରେ ଆରୋହଣକରି ଉତ୍ତର ଦିଗକୁ ପ୍ରସ୍ଥାନକଲେ । ପୁଣି ଦେଖିଲି, ରାବଣ ମୁଣ୍ଡିତମସ୍ତକ ହୋଇ ତେଲ ବୋଳିହୋଇଛି, ରକ୍ତବସ୍ତ୍ର ପିନ୍ଧିଛି, ସୁରାପାନକରି ଉନ୍ମତ୍ତହୋଇ ରଙ୍ଗ କନିଅରମାଳା ଧାରଣ କରିଛି । ସେହି ରାବଣ ଆଜି ପୁଷ୍ପକବିମାନ ଉପରୁ ଭୂତଳରେ ପତିତହେଲା । ୧୭-୨୦ । ପୁଣି ଦେଖିଲି, ସେ ମୁଣ୍ଡିତମସ୍ତକ ହୋଇ କୃଷ୍ଣବସ୍ତ୍ର ପରିଧାନକରିଛି ଏବଂ ଜଣେ ସ୍ତ୍ରୀଲୋକ ତାକୁ ଟାଣୁଛି । ସେ ରକ୍ତଚନ୍ଦନ ବୋଳିହୋଇଛି, ରକ୍ତମାଳା ପିନ୍ଧିଛି, ଗର୍ଦ୍ଦଭଯୁକ୍ତ ରଥରେ ବସି ତେଲ ପିଉଛି ଏବଂ ଚିତ୍ତଭ୍ରମହେତୁ ବ୍ୟାକୁଳେନ୍ଦ୍ରିୟ ହୋଇ ହସିହସି,ନାଚିନାଚି ଗଧଉପରେ ଚଢ଼ି ଶୀଘ୍ର ଦକ୍ଷିଣଦିଗକୁ ଚାଲିଗଲା । ୨୧-୨୨ । ତା ପରେ ଦେଖିଲି, ରାକ୍ଷସରାଜ ରାବଣ ଭୟମୋହିତ ହୋଇ ଗଧପିଠିରୁ ମୁଣ୍ଡ ତଳକୁ କରି ପଡ଼ିଗଲା ।୨୩। ଅନନ୍ତର ସେ ସହସା ଉଠି ବିଚଳିତ, ଭୟାର୍ତ୍ତ, ଚକିତ ଏବଂ ବିବସନ ହୋଇ ଉନ୍ମତ୍ତପ୍ରାୟ

ଦୁର୍ଗନ୍ଧଂ ଦୁଃସହଂ ଘୋରଂ ତମିରଂ ନରକୋପମମ୍ ।
ମଲପଙ୍କଂ ପ୍ରବିଶ୍ୟାଶୁ ମଗ୍ନସ୍ତତ୍ର ସ ରାବଣଃ । ୨୫ ।
ପ୍ରସ୍ଥିତୋ ଦକ୍ଷିଣାମାଶାଂ ପ୍ରବିଷ୍ଟଃ କର୍ଦମହ୍ରଦମ୍ ।
କଣ୍ଠେ ବଦ୍ଧ୍ୱା ଦଶଗ୍ରୀବଂ ପ୍ରମଦା ରକ୍ତବାସିନୀ । ୨୬ ।
କାଲୀ କର୍ଦମଲିପ୍ତାଙ୍ଗୀ ଦିଶଂ ଯାମ୍ୟାଂ ପ୍ରକର୍ଷତି ।
ଏବଂ ତତ୍ର ମୟା ଦୃଷ୍ଟଃ କୁମ୍ଭକର୍ଣ୍ଣୋ ମହାବଲଃ । ୨୭ ।
ରାବଣସ୍ୟ ସୁତାଃ ସର୍ବେ ମୁଣ୍ଡାସ୍ତୈଲସମୁକ୍ଷିତାଃ ।
ବରାହେଣ ଦଶଗ୍ରୀବଃ ଶିଶୁମାରେଣ ଚେନ୍ଦ୍ରଜିତ୍ । ୨୮ ।
ଉଷ୍ଟ୍ରେଣ କୁମ୍ଭକର୍ଣ୍ଣଶ୍ଚ ପ୍ରୟାତୋ ଦକ୍ଷିଣାଂ ଦିଶମ୍ ।
ଏକସ୍ତତ୍ର ମୟା ଦୃଷ୍ଟଃ ଶ୍ୱେତଚ୍ଛତ୍ରୋ ବିଭୀଷଣଃ ।
ଚତୁର୍ଭିଃ ସଚିବୈଃ ସାର୍ଦ୍ଧଂ ବୈହାୟସମୁପସ୍ଥିତଃ । ୨୯ ।
ସମାଜଶ୍ଚ ମହାନ୍ ବୃତ୍ତୋ ଗୀତବାଦିତ୍ରନିଃସ୍ୱନଃ ।
ପିବତାଂ ରକ୍ତମାଲ୍ୟାନାଂ ରକ୍ଷସାଂ ରକ୍ତବାସସାମ୍ । ୩୦ ।
ଲଙ୍କା ଚେୟଂ ପୁରୀ ରମ୍ୟା ସବାଜିରଥକୁଞ୍ଜରା ।
ସାଗରେ ପତିତା ଦୃଷ୍ଟା ଭଗ୍ନଗୋପୁରତୋରଣା । ୩୧ ।

---

ମୁଖରେ ବହୁବିଧ କୁବାକ୍ୟ ଉଚ୍ଚାରଣ କରି କରି ହଠାତ୍ ଦୁର୍ଗନ୍ଧମୟ ଦୁଃସହ ଘୋର ଅନ୍ଧକାରାଚ୍ଛନ୍ନ ନରକସଦୃଶ ବିଷ୍ଠାପଙ୍କରେ ପଡ଼ି ନିମଗ୍ନ ହୋଇଗଲା ।୨୪–୨୫। ସେ ପୁଣି ଦକ୍ଷିଣ ଦିଗକୁ ଗମନକରି କର୍ଦ୍ଦମପୂର୍ଣ୍ଣ ହ୍ରଦମଧ୍ୟରେ ପ୍ରବେଶକଲା । ଗୋଟିଏ କୃଷ୍ଣବର୍ଣ୍ଣା ରକ୍ତବସ୍ତ୍ରଧାରିଣୀ କର୍ଦମଲିପ୍ତାଙ୍ଗୀ ରମଣୀ ଗଳାରେ ଦଉଡ଼ି ବାନ୍ଧି ଦଶଗ୍ରୀବକୁ ଦକ୍ଷିଣ ଦିଗକୁ ଆକର୍ଷଣ କରୁଥିଲା । ସେଠାରେ ମୁଁ ମହାବଳୀ କୁମ୍ଭକର୍ଣ୍ଣକୁ ମଧ୍ୟ ଏହିି ଅବସ୍ଥାରେ ଦେଖିଲି । ୨୬-୨୭ । ରାବଣର ପୁଅମାନେ ସମସ୍ତେ ମଧ୍ୟ ମୁଣ୍ଡିତମସ୍ତକ ହୋଇ ଦେହରେ ତେଲ ବୋଳିହୋଇଥିଲେ । ଦଶାନନ ବରାହ ଉପରେ, ଇନ୍ଦ୍ରଜିତ ଶିଶୁମାର ଉପରେ, କୁମ୍ଭକର୍ଣ୍ଣ ଉଷ୍ଟ୍ର ଉପରେ ଆରୋହଣକରି ଦକ୍ଷିଣ ଦିଗକୁ ଯାଉଥାନ୍ତି । କେବଳ ସେଠାରେ ମୁଁ ଏକମାତ୍ର ବିଭୀଷଣଙ୍କୁ ଦେଖିଲି, ଚାରୋଟି ମନ୍ତ୍ରୀଙ୍କ ସହିତ ଶ୍ୱେତଛତ୍ରଧାରଣକରି ଆକାଶରେ ଅବସ୍ଥାନ କରୁଛନ୍ତି । । ୨୮-୨୯ । ସେଠାରେ ରକ୍ତମାଲ୍ୟ ରକ୍ତବସ୍ତ୍ରଧାରୀ ମଦ୍ୟପାନାସକ୍ତ ରାକ୍ଷସମାନଙ୍କର ଏକ ମହାସମ୍ମେଳନ ହୋଇଛି ଓ ତାହା ଗୀତ ବାଦ୍ୟଶବ୍ଦରେ ମୁଖରିତ । ୩୦ । ମୁଁ ପୁଣି ଦେଖିଲି ଯେ ଏହି ରମଣୀୟ ଲଙ୍କାପୁରୀର ଗୋପୁର ଓ ତୋରଣମାନ ଭାଙ୍ଗିପଡ଼ିଲା ଏବଂ ତାହା ଅଶ୍ୱ ରଥ ଏବଂ ହସ୍ତୀମାନଙ୍କ ସହିତ

ପୀତ୍ୱା ତୈଲଂ ପ୍ରମତ୍ତାଶ୍ଚ ପ୍ରହସନ୍ତ୍ୟୋ ମହାସ୍ୱନାଃ ।
ଲଙ୍କାୟାଂ ଭସ୍ମରୂକ୍ଷାୟାଂ ସର୍ବା ରାକ୍ଷସଯୋଷିତଃ । ୩୨ ।
କୁମ୍ଭକର୍ଣ୍ଣାଦୟଶ୍ଚେମେ ସର୍ବେ ରାକ୍ଷସପୁଙ୍ଗବାଃ ।
ରକ୍ତଂ ନିବସନଂ ଗୃହ୍ୟ ପ୍ରବିଷ୍ଟା ଗୋମୟହ୍ରଦମ୍ । ୩୩ ।
ଅପଗଚ୍ଛତ ପଶ୍ୟଧ୍ୱଂ ସୀତାମାପ୍ନୋତି ରାଘବଃ ।
ଘାତୟେତ୍ପରମାମର୍ଷୀ ଯୁଷ୍ମାନ୍ ସାର୍ଦ୍ଧଂ ହି ରାକ୍ଷସୈଃ । ୩୪ ।
ପ୍ରିୟାଂ ବହୁମତାଂ ଭାର୍ଯ୍ୟାଂ ବନବାସମନୁବ୍ରତାମ୍ ।
ଭର୍ତ୍ସିତାଂ ତର୍ଜ୍ଜିତାଂ ବାପି ନାନୁମଂସ୍ୟତି ରାଘବଃ । ୩୫ ।
ତଦଲଂ କ୍ରୂରବାକ୍ୟୈଶ୍ଚ ସାନ୍ତ୍ୱମେବାଭିଧୀୟତାମ୍ ।
ଅଭିଯାଚାମ ବୈଦେହୀମେତଦ୍ଧି ମମ ରୋଚତେ । ୩୬ ।
ଯସ୍ୟା ହ୍ୟେବଂବିଧଃ ସ୍ୱପ୍ନୋ ଦୁଃଖିତାୟାଃ ପ୍ରଦୃଶ୍ୟତେ ।
ସା ଦୁଃଖୈର୍ବହୁଭିର୍ମୁକ୍ତା ପ୍ରିୟଂ ପ୍ରାପ୍ନୋତ୍ୟନୁତ୍ତମମ୍ । ୩୭ ।
ଭର୍ତ୍ସିତାମପି ଯାଚଧ୍ୱଂ ରାକ୍ଷସ୍ୟଃ କିଂ ବିବକ୍ଷୟା ।
ରାଘବାଦ୍ଧି ଭୟଂ ଘୋରଂ ରାକ୍ଷସାନାମୁପସ୍ଥିତମ୍ । ୩୮ ।

---

ସମୁଦ୍ରମଧ୍ୟରେ ନିପତିତ ହେଲା । ୩୧। ମୁଁ ପୁଣି ଦେଖିଲି, ଲଙ୍କା ପାଉଁଶରେ ରୁକ୍ଷବର୍ଣ୍ଣ ହୋଇଅଛି ଏବଂ ରାକ୍ଷସରମଣୀମାନେ ତେଲ ପିଇ, ଉନ୍ମତ୍ତହୋଇ, ମହାଚିତ୍କାର କରି, ହସି ହସି ସେ ନଗରୀରେ ପ୍ରବେଶ କରୁଛନ୍ତି । ୩୨ । କୁମ୍ଭକର୍ଣ୍ଣ ପ୍ରଭୃତି ଏହି ସବୁ ଶ୍ରେଷ୍ଠ ରାକ୍ଷସ ରକ୍ତବସ୍ତ୍ର ପିନ୍ଧି ଗୋମୟ ହ୍ରଦରେ ପ୍ରବେଶ କରୁଛନ୍ତି । । ୩୩ । ତୁମ୍ଭେମାନେ ଦୂର ହୋଇଯାଅ; ଦେଖିବ, ରାଘବ ଅବିଳମ୍ବେ ସୀତାଙ୍କୁ ପାଇବେ । ସେ ଅତି କ୍ରୁଦ୍ଧହୋଇ ରାକ୍ଷସମାନଙ୍କ ସହିତ ତୁମ୍ଭ ସମସ୍ତଙ୍କୁ ସଂହାର କରିବେ । ୩୪ । ବନବାସସହଚରୀ ସୀତା ତାଙ୍କର ବହୁ ଆଦରଣୀୟା ପ୍ରିୟଭାର୍ଯ୍ୟା । ତାଙ୍କର ଭର୍ତ୍ସନା ବା ତର୍ଜନା ରାଘବ ସହିବେ ନାହିଁ । ୩୫ । ଅତଏବ ନିଷ୍ଠୁର ବଚନ ପ୍ରୟୋଗ କରିବାର ପ୍ରୟୋଜନ ନାହିଁ, ତାଙ୍କୁ ସାନ୍ତ୍ୱନାର କଥା କହ । ଆସ, ଆମେ ସମସ୍ତେ ବୈଦେହୀଙ୍କ ଅନୁଗ୍ରହ ପ୍ରାର୍ଥନା କରିବା । ଏ କଥା ମୋତେ ଭଲ ଲାଗୁଛି । ୩୬ । ଯାହାଙ୍କର ଏପରି ଦୁଃଖିତ ଅବସ୍ଥାରେ ଏହିଳି ସ୍ୱପ୍ନ ଦେଖାଯାଉଛି, ସେ ସବୁପ୍ରକାର ଦୁଃଖରୁ ବିମୁକ୍ତହୋଇ ତାଙ୍କର ଅନୁତ୍ତମ ପ୍ରିୟଙ୍କୁ ଲାଭ କରିବେ ।୩୭। ହେ ରାକ୍ଷସୀଗଣ ! ତୁମ୍ଭେମାନେ ତାଙ୍କୁ ଭର୍ତ୍ସନା କରିଥିଲେ ମଧ୍ୟ ଏବେ ତାଙ୍କର ଅନୁଗ୍ରହ ଭିକ୍ଷାକର; ଆଉଗୁଡ଼ା ଏ ବେଶି କହିବାର ପ୍ରୟୋଜନ ନାହିଁ । ନିଶ୍ଚୟ ରାମଙ୍କଠାରୁ ରାକ୍ଷସମାନଙ୍କର ମହାଭୟ ଉପସ୍ଥିତ ହୋଇଛି । ୩୮ । ଜନକନନ୍ଦିନୀ

ପ୍ରଣିପାତପ୍ରସନ୍ନା ହି ମୈଥିଲୀ ଜନକାତ୍ମଜା ।
ଅଲମେଷା ପରିତ୍ରାତୁଂ ରାକ୍ଷସୀର୍ମହତୋ ଭୟାତ୍ । ୩୯ ।
ଅପି ଚାସ୍ୟା ବିଶାଲାକ୍ଷ୍ୟା ନ କିଞ୍ଚିଦୁପଲକ୍ଷୟେ ।
ବିରୂପମପି ଚାଙ୍ଗେଷୁ ସୁସୂକ୍ଷ୍ମମପି ଲକ୍ଷଣମ୍ । ୪୦ ।
ଛାୟାବୈଗୁଣ୍ୟମାତ୍ରଂ ତୁ ଶଙ୍କେ ଦୁଃଖମୁପସ୍ଥିତମ୍ ।
ଅଦୁଃଖାର୍ହାମିମାଂ ଦେବୀଂ ବୈହାୟସମୁପସ୍ଥିତାମ୍ । ୪୧ ।
ଅର୍ଥସିଦ୍ଧିଂ ତୁ ବୈଦେହ୍ୟାଃ ପଶ୍ୟାମ୍ୟହମୁପସ୍ଥିତାମ୍ ।
ରାକ୍ଷସେନ୍ଦ୍ରବିନାଶଂ ଚ ବିଜୟଂ ରାଘବସ୍ୟ ଚ । ୪୨ ।
ନିମିତ୍ତଭୂତମେତତ୍ତୁ ଶ୍ରୋତୁମସ୍ୟା ମହତ୍ ପ୍ରିୟମ୍ ।
ଦୃଶ୍ୟତେ ଚ ସ୍ଫୁରଚ୍ଚକ୍ଷୁଃ ପଦ୍ମପତ୍ରମିବାୟତମ୍ । ୪୩ ।
ଈଷଚ୍ଚ ହୃଷିତୋ ବାସ୍ୟା ଦକ୍ଷିଣାୟା ହ୍ୟଦକ୍ଷିଣଃ ।
ଅକସ୍ମାଦେବ ବୈଦେହ୍ୟା ବାହୁରେକଃ ପ୍ରକମ୍ପତେ । ୪୪ ।
କରେଣୁହସ୍ତପ୍ରତିମଃ ସବ୍ୟଶ୍ଚୋରୁରନୁତ୍ତମଃ ।
ବେପନ୍ କଥୟତୀବାସ୍ୟା ରାଘବଂ ପୁରତଃ ସ୍ଥିତମ୍ । ୪୫ ।
ପକ୍ଷୀ ଚ ଶାଖାନିଲୟଂ ପ୍ରବିଷ୍ଟଃ
ପୁନଃ ପୁନଶ୍ଚୋତ୍ତମସାନ୍ତ୍ୱବାଦୀ

---

ମୈଥିଳୀ ତୁମ୍ଭମାନଙ୍କ ପ୍ରଣିପାତଦ୍ୱାରା ପ୍ରସନ୍ନ ହେଲେ ଅବଶ୍ୟ ତୁମ୍ଭଙ୍କୁ ମହାଭୟରୁ ରକ୍ଷାକରିବାକୁ ସମର୍ଥ ହେବେ । ୩୯ । ଏହି ବିଶାଳାକ୍ଷୀଙ୍କ ଶରୀରରେ ଲେଶମାତ୍ର ଦୁର୍ଲକ୍ଷଣ ମୁଁ ଦେଖୁ ନାହିଁ । ଏହାଙ୍କର କେବଳ କାନ୍ତି ମ୍ଳାନ ହୋଇଥିବାରୁ ଜଣାଯାଉଛି ଯେ ଏହାଙ୍କର ଦୁଃଖ ଉପସ୍ଥିତ ହୋଇଛି । ଏ ଦେବୀ ଦୁଃଖ ପାଇବାର ଅଯୋଗ୍ୟ । ମୁଁ ସ୍ୱପ୍ନରେ ଦେଖିଛି, ଏ ଆକାଶରେ ଉପସ୍ଥିତ ହୋଇଛନ୍ତି ।୪୦-୪୧। ମୁଁ ବୈଦେହୀଙ୍କର ମନକାମନା ସିଦ୍ଧି, ରାକ୍ଷସରାଜର ବିନାଶ ଏବଂ ରାଘବଙ୍କର ବିଜୟ ଆସି ସମ୍ମୁଖରେ ଉପସ୍ଥିତ ହେବାର ଦେଖୁଛି । ୪୨। ଦେଖାଯାଉଛି, ଏହି ମହତ୍ ଅଭୀଷ୍ଟସୂଚକ ସ୍ୱପ୍ନ ଶୁଣିବା ପାଇଁ ତାଙ୍କର ପଦ୍ମପାଖୁଡ଼ାସଦୃଶ ବିଶାଳଚକ୍ଷୁ ସ୍ପନ୍ଦିତ ହେଉଛି । ୪୩ । ବୈଦେହୀଙ୍କର ବାମ ବାହୁ ମଧ୍ୟ ଅକସ୍ମାତ୍ ହର୍ଷିତ ହୋଇ କମ୍ପିତ ହେଉଅଛି ଏବଂ ତାଙ୍କର ହସ୍ତିଶୁଣ୍ଡସଦୃଶ ଉତ୍ତମ ବାମ ଊରୁ କମ୍ପିତ ହୋଇ ସୂଚନା ଦେଉଅଛି ଯେ ରାମ ତାଙ୍କ ସମ୍ମୁଖରେ ଉପସ୍ଥିତ ଅଛନ୍ତି । ୪୪-୪୫ । ପୁଣି ଗୋଟିଏ ପକ୍ଷୀ ଶାଖାସ୍ଥିତ ନୀଡ଼ମଧ୍ୟରେ ପୁନଃ ପୁନଃ ପ୍ରବେଶକରି ଅତିଶୟ

ସୁସ୍ବାଗତାଂ ବାଚମୁଦୀରୟାଣଃ
ପୁନଃ ପୁନଶ୍ଚୋଦୟତୀବ ହୃଷ୍ଟଃ । ୪୬ ।
ତତଃ ସା ହ୍ରୀମତୀ ବାଲା ଭର୍ତ୍ତୁର୍ବିଜୟହର୍ଷିତା ।
ଅବୋଚଦ୍ ଯଦି ତତ୍ତଥ୍ୟଂ ଭବେୟଂ ଶରଣଂ ହି ବଃ ।୪୭।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ସୁନ୍ଦରକାଣ୍ଡେ ତ୍ରିଜଟାସ୍ୱପ୍ନୋ ନାମ ସପ୍ତବିଂଶଃ ସର୍ଗଃ ।

---

# ଅଷ୍ଟାବିଂଶଃ ସର୍ଗଃ

## ଉଦ୍ବନ୍ଧନବ୍ୟବସାୟଃ

ସା ରାକ୍ଷସେନ୍ଦ୍ରସ୍ୟ ବଚୋ ନିଶମ୍ୟ
ତଦ୍ରାବଣସ୍ୟାପ୍ରିୟମପ୍ରିୟାର୍ତ୍ତା ।
ସୀତା ବିତତ୍ରାସ ଯଥା ବନାନ୍ତେ
ସିଂହାଭିପନ୍ନା ଗଜରାଜକନ୍ୟା । ୧ ।

---

ହୃଷ୍ଟଭାବରେ ମଧୁର ସାନ୍ତ୍ୱନାଦାୟକ ବଚନର ବାରମ୍ବାର ତାଙ୍କ ସୁଖପ୍ରାପ୍ତିର ସୂଚନା ଦେଉଅଛି" । ୪୬ । ଅନନ୍ତର ସେହି ଲଜ୍ଜାଶୀଳା ବାଳା ସ୍ୱାମୀଙ୍କ ବିଜୟରେ ହର୍ଷିତହୋଇ କହିଲେ, "ଯଦି ଏ କଥା ସତ୍ୟ ହୁଏ ତାହାହେଲେ ମୁଁ ତୁମ୍ଭମାନଙ୍କର ଶରଣ ହେବି" । ୪୭ ।

---

# ୨୮ଶ ସର୍ଗ

## ( ସୀତାଙ୍କର ଉଦ୍ବନ୍ଧନ ଉଦ୍ୟମ )

ଶୋକସନ୍ତପ୍ତା ସୀତା ରାକ୍ଷସେନ୍ଦ୍ର ରାବଣର ସେହି ଅପ୍ରିୟ କଥା ଶୁଣି ବନମଧ୍ୟରେ ସିଂହକର୍ତ୍ତୃକ ଆକ୍ରାନ୍ତ କରିରାଜକନ୍ୟାସଦୃଶ ବିଶେଷ ତ୍ରସ୍ତହୋଇପଡ଼ିଲେ ।୧।

ସା ରାକ୍ଷସୀମଧ୍ୟଗତା ଚ ଭୀରୁ-
ର୍ବାଗ୍‌ଭିର୍ଭୃଶଂ ରାବଣତର୍ଜିତା ଚ ।
କାନ୍ତାରମଧ୍ୟେ ବିଜନେ ବିସୃଷ୍ଟା
ବାଲେବ କନ୍ୟା ବିଲଲାପ ସୀତା । ୨ ।
ସତ୍ୟଂ ବତେଦଂ ପ୍ରବଦନ୍ତି ଲୋକେ
ନାକାଲମୃତ୍ୟୁର୍ଭବତୀତି ସନ୍ତଃ ।
ଯତ୍ରାହମେବଂ ପରିଭର୍ତ୍ସ୍ୟମାନା
ଜୀବାମି ଯସ୍ମାତ୍ କ୍ଷଣମପ୍ୟପୁଣ୍ୟା । ୩ ।
ସୁଖାଦ୍ ବିହୀନଂ ବହୁଦୁଃଖପୂର୍ଣ୍ଣ-
ମିଦଂ ତୁ ନୂନଂ ହୃଦୟଂ ସ୍ଥିରଂ ମେ ।
ବିଦୀର୍ଯ୍ୟତେ ଯତ୍ର ସହସ୍ରଧାଦ୍ୟ
ବଜ୍ରାହତଂ ଶୃଙ୍ଗମିବାଚଲସ୍ୟ । ୪ ।
ନୈବାସ୍ତି ନୂନଂ ମମ ଦୋଷମତ୍ର
ବଧ୍ୟାହମସ୍ୟାପ୍ରିୟଦର୍ଶନସ୍ୟ ।
ଭାବଂ ନ ଚାସ୍ୟାହମନୁପ୍ରଦାତୁ-
ମଲଂ ଦ୍ୱିଜୋ ମନ୍ତ୍ରମିବାଦ୍ୱିଜାୟ । ୫ ।
ତସ୍ମିନ୍ନନାଗଚ୍ଛତି ଲୋକନାଥେ
ଗର୍ଭସ୍ୟ ଜନ୍ତୋରିବ ଶଲ୍ୟକୃନ୍ତଃ ।

---

ରାବଣର ଦୁର୍ବାକ୍ୟରେ ଅତିଶୟ ଭର୍ତ୍ସିତ ହୋଇ ରାକ୍ଷସୀମଧ୍ୟବର୍ତ୍ତିନୀ ଭୀରୁ ସୀତା ବିଜନବନରେ ପରିତ୍ୟକ୍ତା ବାଳିକାପରି ବିଳାପକରିବାକୁ ଲାଗିଲେ ।୨। "ସଂସାରରେ ଅକାଳମୃତ୍ୟୁ ହୁଏ ନାହିଁ ଏହି କଥା ଯେ ବିଜ୍ଞବ୍ୟକ୍ତିମାନେ କହନ୍ତି ତାହା ସମ୍ପୂର୍ଣ୍ଣ ସତ୍ୟ ଅଟେ । ତାହା ନହେଲେ ଏ ପ୍ରକାର ଅତିଶୟ ଭର୍ତ୍ସିତା ହୋଇ ମଧ୍ୟ କ୍ଷୀଣପୁଣ୍ୟା ମୁଁ କି କେବେ ଜୀବିତ ରହିପାରିଥାନ୍ତି ! ।୩। ନିଶ୍ଚୟ ଜଣାଯାଉଛି, ମୋର ଏହି ସୁଖବିହୀନ ବହୁଦୁଃଖପୂର୍ଣ୍ଣ ହୃଦୟ ଅତି କଠିଣ ଅଟେ । ତାହା ନ ହେଲେ ଆଜି ବଜ୍ରାହତ ପର୍ବତଶୃଙ୍ଗପରି ତାହା ସହସ୍ରଖଣ୍ଡରେ ବିଦୀର୍ଣ୍ଣହୋଇଯାଉନାହିଁ କାହିଁକି ?।୪। ଏ ବିଷୟରେ ମୋର କିଛି ଦୋଷ ନାହିଁ । ମୁଁ ଏହି ଅପ୍ରିୟଦର୍ଶନ ରାକ୍ଷସକର୍ତ୍ତୃକ ନିହତ ହେବାର ଯୋଗ୍ୟ ଅଟେଁ । ବ୍ରାହ୍ମଣ ଯେପରି ଅବ୍ରାହ୍ମଣକୁ ବେଦମନ୍ତ୍ର ଦେଇ ନ ପାରେ, ମୁଁ ସେହିପରି ଏହାକୁ ମୋର ଅନୁରାଗ ଦେବାକୁ ସମର୍ଥ ନୁହେଁ ।୫। ସେହି ଲୋକନାଥ ରାମ ଯଥାସମୟରେ ନ ଆସିଲେ, ପ୍ରାଣୀର ଗର୍ଭମଧ୍ୟସ୍ଥ ଶିଶୁକୁ

ନୂନଂ ମମାଙ୍ଗାନ୍ୟଚିରାଦନାର୍ଯ୍ୟଃ
ଶସ୍ତ୍ରୈଃ ଶିତୈଶ୍ଛେତ୍ସ୍ୟତି ରାକ୍ଷସେନ୍ଦ୍ରଃ । ୬ ।
ଦୁଃଖଂ ବତେଦଂ ନନୁ ଦୁଃଖିତାୟା
ମାସୌ ଚିରାୟାଭିଗମିଷ୍ୟତୋ ଦ୍ୱୌ ।
ବଦ୍ଧସ୍ୟ ବଧ୍ୟସ୍ୟ ଯଥା ନିଶାନ୍ତେ
ରାଜୋପରୋଧାଦିବ ତସ୍କରସ୍ୟ । ୭ ।
ହା ରାମ ହା ଲକ୍ଷ୍ମଣ ହା ସୁମିତ୍ରେ
ହା ରାମମାତଃ ସହ ମେ ଜନନ୍ୟାଃ ।
ଏଷା ବିପଦ୍ୟାମ୍ୟହମଲ୍ପଭାଗ୍ୟା
ମହାର୍ଣବେ ନୌରିବ ମୂଢ଼ବାତା । ୮ ।
ତରସ୍ୱିନୌ ଧାରୟତା ମୃଗସ୍ୟ
ସତ୍ତ୍ୱେନ ରୂପଂ ମନୁଜେନ୍ଦ୍ରପୁତ୍ରୌ ।
ନୂନଂ ବିଶସ୍ତୌ ମମ କାରଣାତ୍ତୌ
ସିଂହର୍ଷଭୌ ଦ୍ୱାବିବ ବୈଦ୍ୟୁତେନ । ୯ ।
ନୂନଂ ସ କାଲୋ ମୃଗରୂପଧାରୀ
ମାମଲ୍ପଭାଗ୍ୟାଂ ଲୁଲୁଭେ ତଦାନୀମ୍ ।
ଯତ୍ରାର୍ଯପୁତ୍ରୌ ବିସସର୍ଜ ମୂଢ଼ା
ରାମାନୁଜଂ ଲକ୍ଷ୍ମଣପୂର୍ବଜଂ ଚ ।୧୦ ।

---

ଅସ୍ତଚକ୍ରକ ଛେଦନ କଲାପରି, ଏ ଅନାର୍ଯ୍ୟ ରାବଣ ଅଚିରକାଳମଧ୍ୟରେ ମୋର ଅଙ୍ଗମାନ ତୀକ୍ଷ୍ଣ ଶସ୍ତ୍ରରେ ଛେଦନ କରିଦେବ । ୬। ରାଜାଜ୍ଞାବଶେ କାରାଗାରରେ ବନ୍ଦୀ ରହିଥିବା ବଧଯୋଗ୍ୟ ତସ୍କର ପ୍ରାଣଦଣ୍ଡ ପାଇବାର ପୂର୍ବରାତ୍ରି ଯେପରି ଅତିଶୀଘ୍ର କଟିଯାଏ, ସେହିପରି ଦୁଃଖାର୍ତ୍ତା ମୋର ଏହି ଦୁଇମାସ, ଶୀଘ୍ର ଶୀଘ୍ର ବିତିଯିବ । ୭ । ହା ରାମ ! ହା ଲକ୍ଷ୍ମଣ ! ହା ସୁମିତ୍ରେ ! ହା ରାମଜନନି ! ହା ମୋର ଜନନି ! ମନ୍ଦଭାଗିନୀ ମୁଁ ମହାସମୁଦ୍ର ମଧ୍ୟରେ ବାୟୁପ୍ରତାଡ଼ିତ ନୌକାପରି ବିପନ୍ନହେଲି । ୮ । ବଜ୍ରାଗ୍ନି ଏକ ସମୟରେ ସିଂହ ଏବଂ ବୃଷଭ ଦୁଇଟିଙ୍କୁ ହତ୍ୟା କଲାପରି, ସେ ରାକ୍ଷସ ମୃଗରୂପ ଧରି ନିଶ୍ଚୟ ମୋଲାଗି ସେହି ମହାବଳୀ ତେଜସ୍ୱୀ ରାଜପୁତ୍ର ଦୁହିଁଙ୍କୁ ଶସ୍ତ୍ରଦ୍ୱାରା ହତ୍ୟା କରିଦେଇଅଛି । ୯ । ମୃଗରୂପ ଧରି ସେହି କାଳ ସେତେବେଳେ ହତଭାଗିନୀ ମୋତେ ଏପରି ପ୍ରଲୋଭିତ କରିପକାଇଲା ଯେ ମୁଁ ମୂଢ଼ା ଆର୍ଯ୍ୟପୁତ୍ର ରାମଙ୍କୁ ଏବଂ

ହା ରାମ ସତ୍ୟବ୍ରତ ଦୀର୍ଘବାହୋ
ହା ପୂର୍ଣ୍ଣଚନ୍ଦ୍ରପ୍ରତିମାନବକ୍ତ୍ର ।
ହା ଜୀବଲୋକସ୍ୟ ହିତଃ ପ୍ରିୟଶ୍ଚ
ବଧ୍ୟାଂ ନମାଂ ବେତ୍ସି ହି ରାକ୍ଷସାନାମ୍ । ୧୧ ।
ଅନନ୍ୟଦେବତ୍ୱମିୟଂ କ୍ଷମା ଚ
ଭୂମୌ ଚ ଶଯ୍ୟା ନିୟମଶ୍ଚ ଧର୍ମେ ।
ପତିବ୍ରତାତ୍ୱଂ ବିଫଲଂ ମମେଦମ୍
କୃତଂ କୃତଘ୍ନେଷ୍ୱିବ ମାନୁଷାଣାମ୍ । ୧୨ ।
ମୋଘୋ ହି ଧର୍ମଶ୍ଚରିତୋ ମମାୟମ୍
ତଥୈକପତ୍ନୀତ୍ୱମିଦଂ ନିରର୍ଥମ୍ ।
ଯା ତ୍ୱାଂ ନ ପଶ୍ୟାମି କୃଶା ବିବର୍ଣ୍ଣା
ହୀନା ତ୍ୱୟା ସଂଗମନେ ନିରାଶା । ୧୩ ।
ପିତୁର୍ନିଦେଶଂ ନିୟମେନ କୃତ୍ୱା
ବନାନ୍ନିବୃତ୍ତଶ୍ଚରିତବ୍ରତଶ୍ଚ ।
ସ୍ତ୍ରୀଭିସ୍ତୁ ମନ୍ୟେ ବିପୁଲେକ୍ଷଣାଭିଃ
ସଂରଂସ୍ୟସେ ବୀତଭୟଃ କୃତାର୍ଥଃ । ୧୪ ।

---

ତାଙ୍କ ସାନ ଭାଇ ଲକ୍ଷ୍ମଣଙ୍କ ପାଖରୁ ଛଡ଼ାଇଦେଲ । ୧୦ । ହା ରାମ ! ସତ୍ୟବ୍ରତ ! ହା ଦୀର୍ଘବାହୋ ! ହା ପୂର୍ଣ୍ଣଚନ୍ଦ୍ରବଦନ ! ହା ଜୀବଲୋକର ହିତ ଏବଂ ପ୍ରିୟସାଧକ ! ତୁମ୍ଭେ ଜାଣୁ ନାହଁ ଯେ ମୁଁ ରାକ୍ଷସମାନଙ୍କର ବଧ୍ୟ ହୋଇଅଛି ।୧୧ । ମୁଁ ପତି ଭିନ୍ନ ଅନ୍ୟ ଦେବତା ଜାଣେ ନାହିଁ; ଏପରି ଅବସ୍ଥାରେ ମଧ୍ୟ କ୍ଷମା ଆଚରଣ କରୁଅଛି, ଭୂମିରେ ଶୟନ କରୁଅଛି, ଧର୍ମରେ ସମସ୍ତ ନିୟମ ପାଳନ କରୁଅଛି । ମୋର ସେ ସମସ୍ତ ଏବଂ ପତିବ୍ରତା ଧର୍ମ ଆଜି କୃତଘ୍ନ ବ୍ୟକ୍ତିର ଉପକାର କରିବାପରି ନିଷ୍ଫଳ ହେଉଅଛି । ୧୨ । ମୁଁ ତୁମ୍ଭର ବିରହରେ ତୁମ୍ଭଙ୍କୁ ନ ଦେଖି ଏବଂ ତୁମ୍ଭ ସହିତ ମିଳିତହେବା ବିଷୟରେ ନିରାଶ ହୋଇ କ୍ଷୀଣ ଏବଂ ବିବର୍ଣ୍ଣ ହୋଇପଡ଼ିଅଛି । ମୋର ଆଚରିତ ଧର୍ମ ତଥା ପତିବ୍ରତାବ୍ରତ ନିରର୍ଥକ ହୋଇଅଛି । ୧୩ । ତୁମ୍ଭେ ଯଥାନିୟମରେ ପିତାଙ୍କର ନିର୍ଦ୍ଦେଶପାଳନପୂର୍ବକ ବ୍ରତ ସମାପନକରି, ବନରୁ ଫେରିଯାଇ ନିର୍ଭୟ ଏବଂ ସଫଳମନୋରଥ ହୋଇ ବିଶାଳନୟନା କାମିନୀମାନଙ୍କ ସହିତ ରମଣକରିବ । ୧୪ । କିନ୍ତୁ ହେ ରାମ ! ମୁଁ ନିଜର ବିନାଶ ନିମନ୍ତେ ତୁମ୍ଭର

ଅହଂ ତୁ ରାମ ତ୍ୱୟି ଜାତକାମା
ଚିରଂ ବିନାଶାୟ ନିବଦ୍ଧଭାବା ।
ମୋଘଂ ଚରିତ୍ୱାଥ ତପୋ ବ୍ରତଂ ଚ
ତ୍ୟକ୍ଷ୍ୟାମି ଧିଗ୍‌ଜୀବିତମଳ୍ପଭାଗ୍ୟା । ୧୫ ।

ସଂଜୀବିତଂ କ୍ଷିପ୍ରମହଂ ତ୍ୟଜେୟମ୍
ବିଷେଣ ଶସ୍ତ୍ରେଣ ଶିତେନ ବାପି ।
ବିଷସ୍ୟ ଦାତା ନ ତୁ ମେଽସ୍ତି କଶ୍ଚି-
ଚ୍ଛସ୍ତ୍ରସ୍ୟ ବା ବେଶ୍ମନି ରାକ୍ଷସସ୍ୟ । ୧୬ ।

ଶୋକାଭିତପ୍ତା ବହୁଧା ବିଚିନ୍ତ୍ୟ
ସୀତାଥ ବେଣୀଗ୍ରଥନଂ ଗୃହୀତ୍ୱା ।
ଉଦ୍‌ବଧ୍ୟ ବେଣ୍ୟୁଦ୍‌ଗ୍ରଥନେନ ଶୀଘ୍ର-
ମହଂ ଗମିଷ୍ୟାମି ଯମସ୍ୟ ମୂଳମ୍ । ୧୭ ।

ଉପସ୍ଥିତା ସା ମୃଦୁସର୍ବଗାତ୍ରୀ
ଶାଖାଂ ଗୃହୀତ୍ୱା ଚ ନଗସ୍ୟ ତସ୍ୟ ।
ତସ୍ୟାସ୍ତୁ ରାମଂ ପରିଚିନ୍ତୟନ୍ତ୍ୟା-
ରାମାନୁଜଂ ସ୍ୱଂ ଚ କୁଳଂ ଶୁଭାଙ୍ଗ୍ୟାଃ । ୧୮ ।

---

ଅଭିଳାଷିଣୀ ହୋଇଥିଲି ଏବଂ ତୁମଠାରେ ଚିରକାଳ ପାଇଁ ପ୍ରେମ ନିବଦ୍ଧ କରିଥିଲି । ମୋର ବ୍ରତ ଓ ତପସ୍ୟା ଆଚରଣ କରିବା ବୃଥା ହେଲା । ମୁଁ ଅଳ୍ପଭାଗ୍ୟା; ମୋର ଜୀବନକୁ ଧିକ୍ ! ମୁଁ ତାହା ପରିତ୍ୟାଗ କରିବି । ୧୫ । ସୁତରାଂ ମୁଁ ବିଷ କିମ୍ବା ଶାଣିତଶସ୍ତ୍ର ସାହାଯ୍ୟରେ ସତ୍ୱର ପ୍ରାଣତ୍ୟାଗ କରିବାକୁ ଇଚ୍ଛାକରିଅଛି; କିନ୍ତୁ ମୋତେ ବିଷ ବା ଶସ୍ତ୍ରଦେବାଭଳି ବ୍ୟକ୍ତି ଏ ରାକ୍ଷସଗୃହରେ କେହି ନାହିଁ" ।୧୬ । ଅନନ୍ତର ଶୋକସନ୍ତପ୍ତା ସୀତା ଏହିପରି ବହୁପ୍ରକାର ଚିନ୍ତାକରି ବଦ୍ଧ-ବେଣୀ ହାତରେ ଧରି ବିଚାରିଲେ, "ମୁଁ ଏହି ବଦ୍ଧ-ବେଣୀ ଗଳାରେ ବାନ୍ଧି ଉଦ୍‌ବନ୍ଧନଦ୍ୱାରା ଶୀଘ୍ର ଯମାଳୟକୁ ଗମନ କରିବି" । ୧୭ । ସର୍ବାନ୍ତଃକରଣରେ ରାମଙ୍କୁ, ଲକ୍ଷ୍ମଣଙ୍କୁ ଏବଂ ନିଜ ବଂଶକଥା ଚିନ୍ତାକରି କରି କୋମଳାଙ୍ଗୀ ସୀତା ସେହି ବୃକ୍ଷ ନିକଟରେ ଉପସ୍ଥିତ ହୋଇ ତାହାର ଶାଖା ଧରି ଠିଆହେଲେ । ୧୮। ସେତେବେଳେ ତାଙ୍କ ଶରୀରରେ ଶୋକବିନାଶକ,

ତସ୍ୟା ବଶୋକାନ ତଦା ବହୂନି
ଧୈର୍ଯାର୍ଜିତାନ ପ୍ରବରାଣି ଲୋକେ ।
ପ୍ରାଦୁନମିତ୍ତାନ ତଦା ବଭୁବୁଃ
ପୁରାପି ସିଦ୍ଧାନ୍ୟୁପଲକ୍ଷିତାନ । ୧୯ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତସହସ୍ରିକାୟାମ୍ ସଂହିତାୟାଂ ସୁନ୍ଦରକାଣ୍ଡେ ଉଦ୍‌ବନ୍ଧନବ୍ୟବସାୟୋ ନାମ ଅଷ୍ଟାବିଂଶଃ ସର୍ଗଃ ।

---

# ଏକୋନତ୍ରିଂଶଃ ସର୍ଗଃ

## ଶୁଭନମିତ୍ତାନ

ତଥାଗତାଂ ତାଂ ବ୍ୟଥିତାମନନ୍ଦିତାମ୍
ବ୍ୟତୀତହର୍ଷାଂ ପରିଦୀନମାନସାମ୍ ।
ଶୁଭାଂ ନମିତ୍ତାନ ଶୁଭାନ ଭେଜିରେ
ନରଂ ଶ୍ରିୟା ଜୁଷ୍ଟମିବୋପସେବନଃ । ୧ ।
ତସ୍ୟାଃ ଶୁଭଂ ବାମମରାଳପକ୍ଷ୍ମ-
ରାଜ୍ୟାବୃତଂ କୃଷ୍ଣବଶାଳଶୁକ୍ଳମ୍ ।

---

ଧୈର୍ଯ୍ୟଦାୟକ, ଭବୀ ଶୁଭସୂଚକ ନାନାବଧ ଲୋକପ୍ରସିଦ୍ଧ ଶୁଭଚହ୍ନସମୂହ ପ୍ରାଦୁର୍ଭୂତ ହେବାକୁ ଲଗିଲା । ୧୯ ।

---

## ୨୯ଶ ସର୍ଗ

( ଶୁଭସୂଚକଲକ୍ଷଣସମୂହ )

ଅନନ୍ତର ସୀତା ଏହିପରିଭାବରେ ବ୍ୟଥିତ ଅନ୍ତଃକରଣରେ ହର୍ଷହୀନା ଓ ସନ୍ତାପପୀଡ଼ିତା ହୋଇ ରହିଥିବାବେଳେ, ସୌଭାଗ୍ୟଶାଳୀ ବ୍ୟକ୍ତିନକଟରେ ସେବକମାନେ ଉପସ୍ଥିତ ହେବାପରି ବବଧ ଶୁଭଲକ୍ଷଣସମୂହ ତାଙ୍କୁ ଆସି ଭଜନା କଲେ । ୧ । ସେହି ସୁକେଶୀଙ୍କର କୁଟିଳପକ୍ଷ୍ମରାଜପରିବୃତ, କୃଷ୍ଣତାରକଶୋଭିତ, ବଶାଳ ଶୁକ୍ଳବର୍ଣ୍ଣ ବାମନୟନ, ମାଛର ଆଘାତ ପାଇ ତାମ୍ରବର୍ଣ୍ଣ ପଦ୍ମପୁଷ୍ପ

ପ୍ରାସ୍ପନ୍ଦତୈକଂ ନୟନଂ ସୁକେଶ୍ୟା-
ମୀନାହତଂ ପଦ୍ମମିବାଭିତାମ୍ରମ୍ । ୨ ।
ଭୁଜଶ୍ଚ ଗୃଢାଞ୍ଚିତବୃତ୍ତପୀନଃ
ପରାର୍ଧ୍ୟକାଲାଗୁରୁଚନ୍ଦନାର୍ହଃ ।
ଅନୁତ୍ତମେନାଧ୍ୟୁଷିତଃ ପ୍ରିୟେଣ
ଚିରେଣ ବାମଃ ସମବେପତାଶୁ । ୩ ।
ଗଜେନ୍ଦ୍ରହସ୍ତପ୍ରତିମଶ୍ଚ ପୀନ-
ସ୍ତୟୋର୍ଦ୍ୱୟୋଃ ସଂହତୟୋସ୍ତୁ ଜାତଃ ।
ପ୍ରସ୍ପନ୍ଦମାନଃ ପୁନରୂରୁରସ୍ୟା-
ରାମଂ ପୁରସ୍ତାତ୍ ସ୍ଥିତମାଚଚକ୍ଷେ । ୪ ।
ଶୁଭଂ ପୁନର୍ହେମସମାନବର୍ଣ-
ମୀଷଦ୍ରଜୋଧ୍ୱସ୍ତମିବାତୁଲାକ୍ଷ୍ୟାଃ ।
ବାସଃ ସ୍ଥିତାୟାଃ ଶିଖରାଗ୍ରଦନ୍ତ୍ୟାଃ
କିଂଚିତ୍ପରିସ୍ରଂସତ ଚାରୁଗାତ୍ର୍ୟାଃ । ୫ ।
ଏତୈର୍ନିମିତ୍ତୈରପରୈଶ୍ଚ ସୁଭ୍ରୂଃ
ସଂଚୋଦିତା ପ୍ରାଗପି ସାଧୁସିଦ୍ଧୈଃ ।
ବାତାତପକ୍ଲାନ୍ତମିବ ପ୍ରନଷ୍ଟମ୍
ବର୍ଷେଣ ବୀଜଂ ପ୍ରତିସଂଜହର୍ଷ । ୬ ।

---

ଥରଥରିହୋଇ ଥରିବାକୁ ଲାଗିଲା । ୨ । ତାଙ୍କର ଯେଉଁ ମନୋହର ସୁଗୋଲ ପୃଥୁଳ ବାମବାହୁ ମହାମୂଲ୍ୟ କାଳାଗୁରୁଚନ୍ଦନଚର୍ଚ୍ଚିତ ହୋଇ ନିରୁପମ ପ୍ରିୟତମଙ୍କର ଉପାଧାନରୂପେ ବ୍ୟବହୃତ ହେଉଥିଲା ସେହିବାମବାହୁ ଦୀର୍ଘକାଳପରେ ଆଜ ଅତଦ୍ରୁତ ଗତିରେ ସ୍ପନ୍ଦିତ ହେବାକୁ ଲାଗିଲା । ୩ । ପରସ୍ପର ସଂଶ୍ଲିଷ୍ଟ ଉରୁଦ୍ୱୟମଧ୍ୟରୁ ହସ୍ତି ଶୁଣ୍ଢସଦୃଶ ସ୍ଥୂଳ ସୁଗଠିତ ବାମ ଉରୁ ସ୍ପନ୍ଦିତ ହୋଇ ବ୍ୟକ୍ତକଲା, ସତେ ଯେପରି ରାମ ଆସି ତାଙ୍କ ସମ୍ମୁଖରେ ଠିଆହୋଇଛନ୍ତି । ୪ । ନିରୁପମନୟନା, ତାଳମୃଗାଜ ସଦୃଶ ଦନ୍ତଶାଳିନୀ ସୁନ୍ଦରାଙ୍ଗୀ ସୀତା ଠିଆହୋଇଥିବାବେଳେ ତାଙ୍କର ଈଷତ୍ ଧୂଳି-ମଳିନ ସୁବର୍ଣ୍ଣବର୍ଣ୍ଣ ବସ୍ତ୍ର କଟିଦେଶରୁ ସ୍ଥାନଚ୍ୟୁତ ହୋଇ ଖସିଗଲା । ୫ । ବାୟୁ ଏବଂ ସୂର୍ଯ୍ୟକିରଣରେ ବିଶେଷଭାବରେ ନଷ୍ଟ ହୋଇଯାଇଥିବା ବୀଜ ଯେପରି ବର୍ଷାରେ ପୁନରୁଜ୍ଜୀବିତ ହୋଇଉଠେ, ସେହିପରି ଏହି ସମସ୍ତ ଓ ଅନ୍ୟାନ୍ୟ ଶୁଭଲକ୍ଷଣଦ୍ୱାରା ସୁଭ୍ରୂ ସୀତା ଉତ୍ସାହିତ ହୋଇ ଆନନ୍ଦ ଲଭକଲେ । ପୂର୍ବରୁ ସିଦ୍ଧ ସାଧୁପୁରୁଷମାନେ

ତସ୍ୟାଃ ପୁନର୍ବିମ୍ବଫଲୋପମୋଷ୍ଠମ୍
ସ୍ୱକ୍ଷି ଭ୍ରୂକେଶାନ୍ତମରାଳପକ୍ଷ୍ମ ।
ବକ୍ତ୍ରଂ ବଭାସେ ସିତଶୁକ୍ଳଦଂଷ୍ଟ୍ରମ୍
ରାହୋର୍ମୁଖାଚ୍ଚନ୍ଦ୍ର ଇବ ପ୍ରମୁକ୍ତଃ । ୭ ।
ସା ବୀତଶୋକା ବ୍ୟପନୀତତନ୍ଦ୍ରୀ
ଶାନ୍ତଜ୍ୱରା ହର୍ଷବିବୁଦ୍ଧସତ୍ତ୍ୱା ।
ଅଶୋଭତାର୍ଯ୍ୟା ବଦନେନ ଶୁକ୍ଳେ
ଶୀତାଂଶୁନା ରାତ୍ରିରିବୋଦିତେନ । ୮ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ସୁନ୍ଦରକାଣ୍ଡେ ଶୁଭନିମିତ୍ତାନି ନାମ ଏକୋନତ୍ରିଂଶଃ ସର୍ଗଃ ।

---

# ତ୍ରିଂଶଃ ସର୍ଗଃ

## ହନୂମତ୍‌କୃତ୍ୟାକୃତ୍ୟବିଚନ୍ତନମ୍

ହନୁମାନପି ବିକ୍ରାନ୍ତଃ ସର୍ବଂ ଶୁଶ୍ରାବ ତତ୍ତ୍ୱତଃ ।
ସୀତାୟାସ୍ତ୍ରିଜଟାୟାଶ୍ଚ ରାକ୍ଷସୀନାଂ ଚ ତର୍ଜିତମ୍ । ୧ ।

---

ତାଙ୍କର ଭବିଷ୍ୟତ୍ ବିଷୟରେ ସୂଚନା ଦେଇଥିଲେ । ୬ । ବିମ୍ବଫଳସଦୃଶ ଓଷ୍ଠଶୋଭିତ, କୁଟିଳପକ୍ଷ୍ମମଣ୍ଡିତ ସୁନ୍ଦର ନୟନ, ଭ୍ରୂକେଶାନ୍ତସମନ୍ୱିତ, ଶୁକ୍ଳଦନ୍ତ-ପଂକ୍ତିଶୋଭିତ ତାଙ୍କର ମୁଖମଣ୍ଡଳ ରାହୁମୁଖରୁ ମୁକ୍ତ ହୋଇଥିବା ଚନ୍ଦ୍ରଙ୍କପରି ଶୋଭାପାଇଲା । ୭ । ତାଙ୍କର ଶୋକ ଏବଂ ଅବସାଦ ଦୂର ହୋଇଗଲା, ତାପ ଶାନ୍ତହେଲା ଏବଂ ଚିତ୍ତ ହର୍ଷରେ ପ୍ରଫୁଲ୍ଲ ହୋଇଉଠିଲା । ସମୁଦିତ ଚନ୍ଦ୍ରଦ୍ୱାରା ଶୁକ୍ଳପକ୍ଷର ରାତ୍ରି ଯେପରି ଶୋଭାପାଏ, ସେହିପରି ତାଙ୍କର ବଦନମଣ୍ଡଳ ଶୋଭାପାଇଲା । ୮ ।

---

# ୩୦ଂଶ ସର୍ଗ

## ( ହନୁମାନଙ୍କର କାର୍ଯ୍ୟାକାର୍ଯ୍ୟବିବେଚନ )

ସୀତାଙ୍କର ବିଳାପ, ତ୍ରିଜଟାର ସ୍ୱପ୍ନବୃତ୍ତାନ୍ତକଥନ ଏବଂ ରାକ୍ଷସୀଙ୍କର ତର୍ଜନ ଗର୍ଜନ, ଏ ସମସ୍ତ ବିକ୍ରମଶାଳୀ ହନୁମାନ୍ ଯଥାର୍ଥଭାବରେ ଶୁଣିଲେ ।୧।

ଅବେକ୍ଷମାଣସ୍ତାଂ ଦେବୀଂ ଦେବତାମିବ ନନ୍ଦନେ ।
ତତୋ ବହୁବିଧାଂ ଚିନ୍ତାଂ ଚିନ୍ତୟାମାସ ବାନରଃ ।୨।
ଯାଂ କପୀନାଂ ସହସ୍ରାଣି ସୁବହୂନ୍ୟୟୁତାନି ଚ ।
ଦିକ୍ଷୁ ସର୍ବାସୁ ମାର୍ଗନ୍ତେ ସେୟମାସାଦିତା ମୟା ।୩।
ଚାରେଣ ତୁ ସୁଯୁକ୍ତେନ ଶତ୍ରୋଃ ଶକ୍ତିମବେକ୍ଷତା ।
ଗୂଢ଼େନ ଚରତା ତାବଦବେକ୍ଷିତମିଦଂ ମୟା ।୪।
ରାକ୍ଷସାନାଂ ବିଶେଷଶ୍ଚ ପୁରୀ ଚେୟଂ ନିରୀକ୍ଷିତା ।
ରାକ୍ଷସାଧିପତେରସ୍ୟ ପ୍ରଭାବୋ ରାବଣସ୍ୟ ଚ ।୫।
ଯୁକ୍ତଂ ତସ୍ୟାପ୍ରମେୟସ୍ୟ ସର୍ବସତ୍ତ୍ୱଦୟାବତଃ ।
ସମାଶ୍ୱାସୟିତୁଂ ଭାର୍ଯାଂ ପତିଦର୍ଶନକାଙ୍କ୍ଷିଣୀମ୍ ।୬।
ଅହମାଶ୍ୱାସୟାମ୍ୟେନାଂ ପୂର୍ଣଚନ୍ଦ୍ରନିଭାନନାମ୍ ।
ଅଦୃଷ୍ଟଦୁଃଖାଂ ଦୁଃଖସ୍ୟ ନ ହ୍ୟନ୍ତମଧିଗଚ୍ଛତୀମ୍ ।୭।
ଯଦି ହ୍ୟହଂ ସତୀମେନାଂ ଶୋକୋପହତଚେତନାମ୍ ।
ଅନାଶ୍ୱାସ୍ୟ ଗମିଷ୍ୟାମି ଦୋଷବଦ୍ଗମନଂ ଭବେତ୍ ।୮।

---

ନନ୍ଦନକାନନରେ ଦେବତାସଦୃଶ ସେହି ଦେବୀଙ୍କୁ ନିରୀକ୍ଷଣକରି ବାନର ହନୁମାନ୍ ନାନାପ୍ରକାର ଚିନ୍ତାକରିବାକୁ ଲଗିଲେ ।୨। ସହସ୍ର ସହସ୍ର ଓ ଅୟୁତ ଅୟୁତ ବାନର ଚତୁର୍ଦ୍ଦିଗରେ ଯାହାଙ୍କର ଅନ୍ୱେଷଣ କରୁଛନ୍ତି, ସେହି ସୀତାଙ୍କୁ ମୁଁ ଏବେ ପାଇଲି ।୩। ସୁଦକ୍ଷ ଚର ଯେପରି ଗୂଢଭାବରେ ବିଚରଣକରି ଶତ୍ରୁର ଶକ୍ତିକୁ ପରୀକ୍ଷାକରି ଦେଖେ, ସେହିପରି ମୁଁ ଗୁପ୍ତଭାବରେ ବର୍ତ୍ତମାନ ଏ ସମସ୍ତ ଦେଖିଲି ।୪। ରାକ୍ଷସମାନଙ୍କର ବିଶେଷତ୍ୱ, ଏହି ଲଙ୍କାପୁରୀ ଏବଂ ରାକ୍ଷସାଧିପତି ରାବଣର ପ୍ରଭାବ ମୁଁ ଦେଖିଲି ।୫। ବର୍ତ୍ତମାନ ସେହି ଅପ୍ରମେୟାତ୍ମା, ସର୍ବ ପ୍ରାଣୀଙ୍କ ପ୍ରତି ଦୟାଳୁ ରାମଙ୍କର ସ୍ୱାମୀଦର୍ଶନାଭିଳାଷିଣୀ ଭାର୍ଯ୍ୟାଙ୍କୁ ଆଶ୍ୱାସିତ କରିବା ମୋର ଉଚିତ ।୬। ଏ କେବେ ଦୁଃଖ ଅନୁଭବ କରି ନାହାନ୍ତି; ମାତ୍ର ଏବେ ଦୁଃଖରେ କାତରହୋଇ ଦୁଃଖର ଶେଷ ସୀମା ଦେଖି ପାରୁ ନାହାନ୍ତି; ସୁତରାଂ ମୁଁ ପୂର୍ଣ୍ଣଚନ୍ଦ୍ରବଦନା ସୀତାଙ୍କୁ ଆଶ୍ୱାସନା ଦେବି ।୭। ମୁଁ ଯଦି ଶୋକରେ ହତଜ୍ଞାନ ହୋଇଥିବା ଏହି ସତୀ ସୀତାଙ୍କୁ ଆଶ୍ୱାସନା ନ ଦେଇ ଚାଲିଯାଏ, ତେବେ ମୋର ଫେରିଯିବା ନିଶ୍ଚୟ ଦୋଷାବହ ହେବ ।୮। ମୁଁ ସେଠାକୁ ଫେରି ଚାଲିଗଲେ ଯଶସ୍ୱିନୀ ରାଜନନ୍ଦିନୀ ଜାନକୀ

ଗତେ ହି ମୟି ତତ୍ରେୟଂ ରାଜପୁତ୍ରୀ ଯଶସ୍ୱିନୀ ।
ପରିତ୍ରାଣମପଶ୍ୟନ୍ତୀ ଜାନକୀ ଜୀବିତଂ ତ୍ୟଜେତ୍ । ୯ ।
ଯଥା ଚ ସ ମହାବାହୁଃ ପୂର୍ଣଚନ୍ଦ୍ରନିଭାନନଃ ।
ସମାଶ୍ୱାସୟିତୁଂ ନ୍ୟାଯ୍ୟଃ ସୀତାଦର୍ଶନଲାଲସଃ । ୧୦ ।
ନିଶାଚରୀଣାଂ ପ୍ରତ୍ୟକ୍ଷମକ୍ଷମଂ ଚାଭିଭାଷିତମ୍ ।
କଥଂ ନୁ ଖଲୁ କର୍ତ୍ତବ୍ୟମିଦଂ କୃଚ୍ଛ୍ରଗତୋ ହ୍ୟହମ୍ । ୧୧ ।
ଅନେନ ରାତ୍ରିଶେଷେଣ ଯଦି ନାଶ୍ୱାସ୍ୟତେ ମୟା ।
ସର୍ବଥା ନାସ୍ତି ସଂନ୍ଦେହଃ ପରିତ୍ୟକ୍ଷ୍ୟତି ଜୀବିତମ୍ । ୧୨ ।
ରାମସ୍ତୁ ଯଦି ପୃଚ୍ଛେନ୍ମାଂ କିଂ ମାଂ ସୀତାବ୍ରବୀଦ୍‌ବଚଃ ।
କିମହଂ ତଂ ପ୍ରତିବ୍ରୂୟାମସଂଭାଷ୍ୟ ସୁମଧ୍ୟମାମ୍ । ୧୩ ।
ସୀତାସଂନ୍ଦେଶରହିତଂ ମାମିତସ୍ତ୍ୱରୟା ଗତମ୍ ।
ନିର୍ଦହେଦପି କାକୁତ୍‌ସ୍ଥଃ କ୍ରୋଧତୀବ୍ରେଣ ଚକ୍ଷୁଷା । ୧୪ ।
ଯଦି ବୋଦ୍ୟୋଜୟିଷ୍ୟାମି ଭର୍ତ୍ତାରଂ ରାମକାରଣାତ୍ ।
ବ୍ୟର୍ଥମାଗମନଂ ତସ୍ୟ ସସୈନ୍ୟସ୍ୟ ଭବିଷ୍ୟତି । ୧୫ ।

---

ପରିତ୍ରାଣର ଉପାୟ ନ ଦେଖି ନିଶ୍ଚୟ ଜୀବନ ତ୍ୟାଗକରିବେ । ୯ । ସୀତାଙ୍କୁ ଦେଖିବାପାଇଁ ବିଶେଷ ଉତ୍ସୁକ ପୂର୍ଣ୍ଣଚନ୍ଦ୍ରବଦନ ମହାବାହୁ ରାମଙ୍କୁ ଆଶ୍ୱାସନା ଦେବା ଯେପରି କର୍ତ୍ତବ୍ୟ, ଏହାଙ୍କୁ ଆଶ୍ୱାସନା ଦେବା ମଧ୍ୟ ସେହିପରି ଉଚିତ । ୧୦ । ପୁଣି ରାକ୍ଷସୀମାନଙ୍କ ଆଗରେ ଏହାଙ୍କ ସହିତ କଥାବାର୍ତ୍ତା କରିବା ସର୍ବଥା ଅନୁଚିତ; ସୁତରାଂ ବର୍ତ୍ତମାନ କ'ଣ କରିବାକୁ ହେବ, ମୁଁ ଏହି ବିଷମ ସଂକଟରେ ପଡ଼ିଅଛି ।୧୧। ମୁଁ ଏହି ରାତ୍ରିଶେଷରେ ଯଦି ତାଙ୍କୁ ଆଶ୍ୱସ୍ତ ନ କରେ ତାହାହେଲେ ସେ ଯେ ପ୍ରାଣତ୍ୟାଗ କରିବେ ଏଥିରେ କୌଣସି ସନ୍ଦେହ ନାହିଁ । ୧୨ । ରାମ ଯଦି ମୋତେ ପଚାରନ୍ତି ଯେ, 'ସୀତା ମୋତେ କି କଥା କହିଲେ ?' ତେବେ ମୁଁ ଏହି ସୁଶ୍ରୋଣୀଙ୍କ ସହିତ କଥାବାର୍ତ୍ତା ନ କରିଥିଲେ ତାଙ୍କୁ କି ଉତ୍ତର ଦେବି ? । ୧୩ । ଯଦି ସୀତାଙ୍କର ସନ୍ଦେଶ ନ ନେଇ ମୁଁ ଶୀଘ୍ର ଏ ସ୍ଥାନରୁ ଚାଲିଯାଏ, ତେବେ କାକୁତ୍ସ୍ଥ ରାମ କ୍ରୁଦ୍ଧ ହୋଇ ତୀବ୍ର ଦୃଷ୍ଟିପାତଦ୍ୱାରା ମୋତେ ଦଗ୍ଧ କରିପକାଇବେ । ୧୪ । ମୁଁ ଯାଇ ଯଦି ମୋର ପ୍ରଭୁ ସୁଗ୍ରୀବଙ୍କୁ ରାମଙ୍କ ଲାଗି କାର୍ଯ୍ୟାନୁଷ୍ଠାନ କରିବାକୁ ଉତ୍ସାହିତ କରେଁ, ତାହାହେଲେ ତାଙ୍କର ସସୈନ୍ୟରେ ଏଠାକୁ ଆସିବା ବୃଥା

ଅନ୍ତରଂ ତ୍ୱହମାସାଦ୍ୟ ରାକ୍ଷସୀନାମବସ୍ଥିତଃ ।
ଶନୈରାଶ୍ୱାସୟିଷ୍ୟାମି ସନ୍ତାପବହୁଲାମିମାମ୍ । ୧୬ ।
ଅହଂ ହ୍ୟତିତନୁଶ୍ଚୈବ ବାନରଶ୍ଚ ବିଶେଷତଃ ।
ବାଚଂ ଚୋଦାହରିଷ୍ୟାମି ମାନୁଷୀମିହ ସଂସ୍କୃତାମ୍ । ୧୭ ।
ଯଦି ବାଚଂ ପ୍ରଦାସ୍ୟାମି ଦ୍ୱିଜାତିରିବ ସଂସ୍କୃତାମ୍ ।
ରାବଣଂ ମନ୍ୟମାନା ମାଂ ସୀତା ଭୀତା ଭବିଷ୍ୟତି । ୧୮ ।
ଅବଶ୍ୟମେବ ବକ୍ତବ୍ୟଂ ମାନୁଷଂ ବାକ୍ୟମର୍ଥବତ୍ ।
ମୟା ସାନ୍ତ୍ୱୟିତୁଂ ଶକ୍ୟା ନାନ୍ୟଥେୟମନିନ୍ଦିତା । ୧୯ ।
ସେୟମାଲୋକ୍ୟ ମେ ରୂପଂ ଜାନକୀ ଭାଷିତଂ ତଥା ।
ରକ୍ଷୋଭିସ୍ତ୍ରାସିତା ପୂର୍ବଂ ଭୂୟସ୍ତ୍ରାସମୁପୈଷ୍ୟତି । ୨୦ ।
ତତୋ ଜାତପରିତ୍ରାସା ଶବ୍ଦଂ କୁର୍ଯାନ୍ମନସ୍ୱିନୀ ।
ଜାନାନା ମାଂ ବିଶାଲାକ୍ଷୀ ରାବଣଂ କାମରୂପିଣମ୍ । ୨୧ ।
ସୀତୟା ଚ କୃତେ ଶବ୍ଦେ ସହସା ରାକ୍ଷସୀଗଣଃ ।
ନାନାପ୍ରହରଣୋ ଘୋରଃ ସମେୟାଦନ୍ତକୋପମଃ । ୨୨ ।
ତତୋ ମାଂ ସଂପରିକ୍ଷିପ୍ୟ ସର୍ବତୋ ବିକୃତାନନାଃ ।
ବଧେ ଚ ଗ୍ରହଣେ ଚୈବ କୁର୍ଯୁର୍ଯତ୍ନଂ ମହାବଳାଃ ।୨୩ ।

---

ହୋଇଯିବ । ୧୫ । ସୁତରାଂ ମୁଁ ଏହିଠାରେ ରହି ରାକ୍ଷସୀମାନଙ୍କର ଅସତର୍କତାର ସୁବିଧା ଦେଖି, ଆସ୍ତେ ଆସ୍ତେ ଏହି ଶୋକସନ୍ତାପିତା ସୀତାଙ୍କୁ ଆଜ ଆଶ୍ୱାସିତ କରିବି । ୧୬ । ମୁଁ ଅତି କ୍ଷୁଦ୍ରକାୟ, ପୁଣି ବାନର । ଏ କ୍ଷେତ୍ରରେ ମନୁଷ୍ୟସ୍ୱରରେ ସଂସ୍କୃତ କଥା କହିବି । ୧୭ । ମୁଁ ଯଦି ବ୍ରାହ୍ମଣ ପରି ସଂସ୍କୃତ କଥା କହେ, ତେବେ ସୀତା ମୋତେ ରାବଣ ବୋଲି ବିଚାରି ଭୟ କରିବେ । ୧୮ । ମୋତେ ଅବଶ୍ୟ ମନୁଷ୍ୟୋଚିତ ଅର୍ଥଯୁକ୍ତ କଥା କହିବାକୁ ହେବ; ଅନ୍ୟଥା ଏ ଅନିନ୍ଦିତା ସୀତାଙ୍କୁ ମୁଁ ସାନ୍ତ୍ୱନା ଦେଇପାରିବି ନାହିଁ । ୧୯ । ଜାନକୀ ଆଗରୁ ରାକ୍ଷସମାନଙ୍କ ଦ୍ୱାରା ବିତ୍ରାସିତ ହୋଇଛନ୍ତି; ସୁତରାଂ ସେ ମୋର ରୂପକୁ ଦେଖି ଓ ମୋ କଥା ଶୁଣି ପୁନର୍ବାର ଭୟଗ୍ରସ୍ତ ହୋଇପଡ଼ିବେ । ୨୦ । ଅନନ୍ତର ମନସ୍ୱିନୀ ବିଶାଳାକ୍ଷୀ ସୀତା ମୋତେ କାମରୂପୀ 'ରାବଣ' ବୋଲି ଜାଣି ଭୀତହୋଇ ଚିତ୍କାରକରିବେ । ୨୧ । ସୀତା ସହସା ଚିତ୍କାରକଲେ, ନାନା ଶସ୍ତ୍ରଧାରିଣୀ ଯମସଦୃଶୀ ଭୟଙ୍କରୀ ରାକ୍ଷସୀମାନେ ଆସି ସେଠାରେ ଉପସ୍ଥିତ ହୋଇଯିବେ । ୨୨ । ତତ୍‌ପରେ ଏହି ସମସ୍ତ ମହାବଳଶାଳିନୀ ବିକୃତବଦନା ରାକ୍ଷସୀ ମୋତେ ଚାରିଆଡ଼ୁ ଘେରିଯାଇ

ତଂ ମାଂ ଶାଖାଃ ପ୍ରଶାଖାଶ୍ଚ ସ୍କନ୍ଧାଂଶ୍ଚୋତ୍ତମଶାଖିନାମ୍ ।
ଦୃଷ୍ଟ୍ୱା ଚ ପରିଧାବନ୍ତଂ ଭବେୟୁଃ ପରିଶଙ୍କିତାଃ । ୨୪ ।
ମମ ରୂପଂ ଚ ସଂପ୍ରେକ୍ଷ୍ୟ ବନେ ବିଚରତୋ ମହତ୍ ।
ରାକ୍ଷସ୍ୟୋ ଭୟବିତ୍ରସ୍ତା ଭବେୟୁର୍ବିକୃତସ୍ୱରାଃ । ୨୫ ।
ତତଃ କୁର୍ଯୁଃ ସମାହ୍ୱାନଂ ରାକ୍ଷସ୍ୟୋ ରକ୍ଷସାମପି ।
ରାକ୍ଷସେନ୍ଦ୍ରନିୟୁକ୍ତାନାଂ ରାକ୍ଷସେନ୍ଦ୍ରନିବେଶନେ । ୨୬ ।
ତେ ଶୂଲଶରନିସ୍ତ୍ରିଂଶବିବିଧାୟୁଧପାଣୟଃ ।
ଆପତେୟୁର୍ବିମର୍ଦେଽସ୍ମିନ୍ ବେଗେନୋଦ୍‌ବେଗକାରଣାତ୍ । ୨୭ ।
ସଂରୁଦ୍ଧସ୍ତୈସ୍ତୁ ପରିତୋ ବିଧମେ ରକ୍ଷସଂ ବଲମ୍ ।
ଶକ୍ନୁୟାଂ ନ ତୁ ସଂପ୍ରାପ୍ତୁଂ ପରଂ ପାରଂ ମହୋଦଧେଃ ।୨୮।
ମାଂ ବା ଗୃହ୍ନୀୟୁରାପ୍ଲୃତ୍ୟ ବହବଃ ଶୀଘ୍ରକାରିଣଃ ।
ସ୍ୟାଦିୟଂ ଚାଗୃହୀତାର୍ଥା ମମ ଚ ଗ୍ରହଣଂ ଭବେତ୍ । ୨୯ ।
ହିଂସାଭିରୁଚୟୋ ହିଂସ୍ୟୁରିମାଂ ବା ଜନକାତ୍ମଜାମ୍ ।
ବିପନ୍ନଂ ସ୍ୟାତ୍ତତଃ କାର୍ଯଂ ରାମସୁଗ୍ରୀବୟୋରିଦମ୍ । ୩୦ ।

---

ମାରିଦେବାକୁ ବା ଧରିନେବାକୁ ଚେଷ୍ଟା କରିବେ । ୨୩ । ସେତେବେଳେ ମୁଁ ପ୍ରଧାନ ପ୍ରଧାନ ବୃକ୍ଷର ଶାଖା ପ୍ରଶାଖା ଓ ସ୍କନ୍ଧମାନଙ୍କରେ ପ୍ରଧାବିତ ହେଉଥିବାର ଦେଖି ସେମାନେ ଅତିଶୟ ଭୀତ ହେବେ । ୨୪ । ବନରେ ଏହିପରିଭାବରେ ବିଚରଣ କରିବାବେଳେ ମୋର ସେ ରୂପ ଦେଖି ରାକ୍ଷସୀମାନେ ଭୟରେ ବିବଶ ହୋଇ ବିକଟରବ କରିବେ । ୨୫ । ପରେ ଏହି ରାକ୍ଷସୀମାନେ ରାକ୍ଷସରାଜ ରାବଣର ଗୃହରକ୍ଷାର୍ଥେ ନିଯୁକ୍ତ ହୋଇଥିବା ରାକ୍ଷସମାନଙ୍କୁ ଡକାଇବେ । ୨୬ । ସେମାନେ ଉଦ୍‌ବିଗ୍ନ ହୋଇ ଶୂଳ, ଶକ୍ତି ଓ ନିସ୍ତ୍ରିଂଶ ପ୍ରଭୃତି ବିବିଧ ଅସ୍ତ୍ର ଧରି ବେଗରେ ଏଠାକୁ ଦୌଡ଼ି ଆସିବେ । ୨୭ । ସେହି ରାକ୍ଷସମାନଙ୍କ ଦ୍ୱାରା ଘେରିଆଡ଼ୁ ରୁଦ୍ଧ ହୋଇ ମୁଁ ରାକ୍ଷସବଳକୁ ଧ୍ୱସ୍ତ ବିଧ୍ୱସ୍ତ କରିଦେବି ସତ, ମାତ୍ର ମୁଁ ତ ଆଉ ସମୁଦ୍ରର ଅପର ପାରରେ ପହଞ୍ଚି ପାରିବି ନାହିଁ । ୨୮ । ଅଥବା ଏହି କ୍ଷିପ୍ରକର୍ମା ରାକ୍ଷସମାନେ ଯଦି ଡେଇଁକରି ମୋତେ ଧରିନିଅନ୍ତି, ତେବେ ମୁଁ ବନ୍ଦୀ ହୋଇଯିବି ଏବଂ ସୀତାଙ୍କର ଆଉ ଉଦ୍ଦେଶ୍ୟ ସିଦ୍ଧି ହେବ ନାହିଁ । ୨୯ । କିମ୍ବା ଏ ହିଂସାପରାୟଣ ରାକ୍ଷସମାନେ ହୁଏତ ଜନକନନ୍ଦିନୀଙ୍କୁ ହତ୍ୟାକରିପକାଇବେ; ତାହାହେଲେ ରାମ ଏବଂ ସୁଗ୍ରୀବଙ୍କର ଏ କାର୍ଯ୍ୟ ନଷ୍ଟ ହୋଇଯିବ । ୩୦ । ଜାନକୀ ରାକ୍ଷସପରିବେଷ୍ଟିତ

ଉଦ୍ଦେଶେ ନଷ୍ଟମାର୍ଗେଽସ୍ମିନ୍ରାକ୍ଷସୈଃ ପରିବାରିତେ ।
ସାଗରେଣ ପରିକ୍ଷିପ୍ତଂ ଗୁପ୍ତେ ବସତି ଜାନକୀ । ୩୧ ।
ବିଶଚସ୍ତୁ ବା ଗୃହୀତେ ବା ରକ୍ଷୋଭିର୍ମୟି ସଂଯୁଗେ ।
ନାନ୍ୟଂ ପଶ୍ୟାମି ରାମସ୍ୟ ସହାୟଂ କାର୍ଯ୍ୟସାଧନେ । ୩୨ ।
ବିମୃଶଂଶ୍ଚ ନ ପଶ୍ୟାମି ଯୋ ହତେ ମୟି ବାନରଃ ।
ଶତଯୋଜନବିସ୍ତୀର୍ଣଂ ଲଙ୍ଘୟେତ ମହୋଦଧିମ୍ । ୩୩ ।
କାମଂ ହନ୍ତୁଂ ସମର୍ଥୋଽସ୍ମି ସହସ୍ରାଣ୍ୟପି ରକ୍ଷସାମ୍ ।
ନ ତୁ ଶକ୍ଷ୍ୟାମ୍ୟହଂ ପ୍ରାପ୍ତୁଂ ପରଂ ପାରଂ ମହୋଦଧେଃ ।୩୪।
ଅସତ୍ୟାନି ଚ ଯୁଦ୍ଧାନି ସଂଶୟୋ ମେ ନ ରୋଚତେ ।
କଶ୍ଚ ନିଃସଂଶୟଂ କାର୍ଯ୍ୟଂ କୁର୍ଯାତ୍ପ୍ରାଜ୍ଞଃ ସସଂଶୟମ୍ । ୩୫ ।
ଏଷ ଦୋଷୋ ମହାନ୍ ହି ସ୍ୟାନ୍ମମ ସୀତାଭିଭାଷଣେ ।
ପ୍ରାଣତ୍ୟାଗଶ୍ଚ ବୈଦେହ୍ୟା ଭବେଦନଭିଭାଷଣେ । ୩୬ ।
ଭୂତାଶ୍ଚାର୍ଥା ବିରୁଧ୍ୟନ୍ତି ଦେଶକାଲବିରୋଧିତାଃ ।
ବିକ୍ଲବଂ ଦୂତମାସାଦ୍ୟ ତମଃ ସୂର୍ଯୋଦୟେ ଯଥା । ୩୭ ।
ଅର୍ଥାନର୍ଥାନ୍ତରେ ବୁଦ୍ଧିର୍ନିଶ୍ଚିତାପି ନ ଶୋଭତେ ।
ଘାତୟନ୍ତି ହି କାର୍ଯାଣି ଦୂତାଃ ପଣ୍ଡିତମାନିନଃ । ୩୮ ।

---

ସମୁଦ୍ରବେଷ୍ଟିତ ପଥହୀନ ଏହି ଗୁପ୍ତସ୍ଥାନରେ ବାସକରୁଅଛନ୍ତି ।୩୧। ଯୁଦ୍ଧରେ ରାକ୍ଷସମାନେ ମୋତେ ହାଣିପକାଇଲେ ବା ବନ୍ଦୀ କରିନେଲେ ରାମଙ୍କର କାର୍ଯ୍ୟସାଧନରେ ସାହାଯ୍ୟ କରିପାରିବାଭଳି ଅନ୍ୟ କାହାକୁ ମୁଁ ଦେଖିପାରୁ ନାହିଁ ।୩୨। ମୁଁ ଭାବି ଭାବି ମଧ୍ୟ ଏପରି କୌଣସି ବାନରକୁ ଦେଖିପାରୁନାହିଁ ଯେକି ମୁଁ ମରିଗଲେ, ଶତଯୋଜନ ଏହି ବିସ୍ତୃତ ମହାସାଗରକୁ ଲଙ୍ଘନ କରିପାରିବ । ୩୩ । ଅବଶ୍ୟ ମୁଁ ସହସ୍ର ସହସ୍ର ରାକ୍ଷସଙ୍କୁ ହତ୍ୟା କରିବାକୁ ସମର୍ଥ ଅଟେଁ; କିନ୍ତୁ ତାହା ପରେ ମୁଁ ଆଉ ସମୁଦ୍ରର ଅପର ପାରରେ ପହଞ୍ଚିବାକୁ ସମର୍ଥ ହେବି ନାହିଁ । ୩୪ । ଯୁଦ୍ଧରେ ଜୟ, ପରାଜୟ ଅନିଶ୍ଚିତ; ସୁତରାଂ ଏପରି ସନ୍ଦିଗ୍ଧ ବିଷୟ ମୋ ମନକୁ ପାଉ ନାହିଁ । କେଉଁ ବିଜ୍ଞବ୍ୟକ୍ତି ନିଃସଂନ୍ଦିଗ୍ଧ କାର୍ଯ୍ୟକୁ ସଂଶୟଯୁକ୍ତ କରିବାକୁ ଇଚ୍ଛାକରିବ? ।୩୫।ମୁଁ ସୀତାଙ୍କ ସହିତ କଥାବାର୍ତ୍ତା କରିବାକୁ ଗଲେ, ଏହି ସମସ୍ତ ମହାଦୋଷ ଘଟିପାରେ; ପୁଣି ତାଙ୍କ ସହିତ କଥାବାର୍ତ୍ତା ନ କଲେ ସେ ପ୍ରାଣତ୍ୟାଗ କରିପାରନ୍ତି । ୩୬ । ଅବିଚକ୍ଷଣ ଦୂତହାତରେ ପଡ଼ିଲେ ସିଦ୍ଧପ୍ରାୟ କାର୍ଯ୍ୟ ମଧ୍ୟ ଦେଶକାଳବିରୁଦ୍ଧ ହୋଇ ସୂର୍ଯ୍ୟୋଦୟରେ ଅନ୍ଧକାର ନଷ୍ଟ ହୋଇଯିବାପରି ବିନଷ୍ଟ ହୋଇଯାଏ । ୩୭ । କାର୍ଯ୍ୟ ଏବଂ ଅକାର୍ଯ୍ୟ ଏ ଉଭୟ ମଧ୍ୟରେ କର୍ତ୍ତବ୍ୟ ସ୍ଥିରକରି ଯାହା ମନ୍ତ୍ରଣା କରାହୁଏ,

ନ ବିନଶ୍ୟେତ୍‌କଥଂ କାର୍ଯ୍ୟଂ ବୈକ୍ଲବ୍ୟଂ ନ କଥଂ ମମ ।
ଲଙ୍ଘନଂ ଚ ସମୁଦ୍ରସ୍ୟ କଥଂ ନୁ ନ ବୃଥା ଭବେତ୍ । ୩୯ ।
କଥଂ ନୁ ଖଲୁ ବାକ୍ୟଂ ମେ ଶୃଣୁୟାନ୍ନୋଦ୍‌ବିଜେତ ଚ ।
ଇତି ସଂଚିନ୍ତ୍ୟ ହନୁମାଂଶ୍ଚକାର ମତିମାନ୍ମତିମ୍ । ୪୦ ।
ରାମମକ୍ଲିଷ୍ଟକର୍ମାଣଂ ସ୍ୱବନ୍ଧୁମନୁକୀର୍ତ୍ତୟନ୍ ।
ନୈନାମୁଦ୍‌ବେଜୟିଷ୍ୟାମି ତଦ୍‌ବନ୍ଧୁଗତଚେତନାମ୍ । ୪୧ ।
ଇକ୍ଷ୍ୱାକୂଣାଂ ବରିଷ୍ଠସ୍ୟ ରାମସ୍ୟ ବିଦିତାତ୍ମନଃ ।
ଶୁଭାନି ଧର୍ମଯୁକ୍ତାନି ବଚନାନି ସମର୍ପୟନ୍ । ୪୨ ।
ଶ୍ରାବୟିଷ୍ୟାମି ସର୍ବାଣି ମଧୁରାଂ ପ୍ରବ୍ରୁବନ୍ ଗିରମ୍ ।
ଶ୍ରଦ୍ଧାସ୍ୟତି ଯଥା ସୀତା ତଥା ସର୍ବଂ ସମାଦଧେ । ୪୩ ।

ଇତି ସ ବହୁବିଧଂ ମହାପ୍ରଭାବୋ
ଜଗତିପତେଃ ପ୍ରମଦାମବେକ୍ଷମାଣଃ ।
ମଧୁରମବିତଥଂ ଜଗାଦ ବାକ୍ୟମ୍
ଦ୍ରୁମବିଟପାନ୍ତରମାସ୍ଥିତୋ ହନୂମାନ୍ । ୪୪ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ ସୁନ୍ଦରକାଣ୍ଡେ ହନୁମତ୍‌କୃତ୍ୟାକୃତ୍ୟବିଚିନ୍ତନଂ ନାମ ତ୍ରିଂଶଃ ସର୍ଗଃ ।

---

ପଣ୍ଡିତାଭିମାନୀ ଦୂତମାନେ ତାହାକୁ ନଷ୍ଟକରି ଦିଅନ୍ତି । ୩୮ । ସୁତରାଂ କ'ଣ କଲେ କାର୍ଯ୍ୟ ନଷ୍ଟ ହେବ ନାହିଁ, ମୋର ବୁଦ୍ଧିହୀନତା ପ୍ରକାଶ ପାଇବ ନାହିଁ ଏବଂ ମୋର ଏ ସମୁଦ୍ରଲଙ୍ଘନ ବୃଥା ହେବ ନାହିଁ ! ।୩୯। ସୁତରାଂ କ'ଣ କଲେ ମୋ କଥା ସୀତା ଶୁଣିପାରିବେ ଅଥଚ ବିଚଳିତ ହେବେନାହିଁ !'' ବୁଦ୍ଧିମାନ୍‌ହନୁମାନ୍ ଏହିପରି ବିଶେଷ ଚିନ୍ତାକରି ସ୍ଥିରକଲେ । ୪୦ । ''ଅକ୍ଲିଷ୍ଟକର୍ମା ରାମ ଏହାଙ୍କର ନିଜର ପ୍ରିୟ, ସେହି ପ୍ରିୟ ନିଙ୍କଠାରେ ଏହାଙ୍କର ଚିତ୍ତ ନିବଦ୍ଧ ରହିଅଛି; ସୁତରାଂ ସେ ବନ୍ଧୁଙ୍କ କଥା କହି ମୁଁ ଏହାଙ୍କୁ ଉଦ୍‌ବିଗ୍ନ କରିବି ନାହିଁ । ୪୧ । ମୁଁ ମିଷ୍ଟକଥାରେ ଇକ୍ଷ୍ୱାକୁଶ୍ରେଷ୍ଠ ଜିତେନ୍ଦ୍ରିୟ ରାମଙ୍କର ଧର୍ମଯୁକ୍ତ ଶୁଭ କଥାମାନ ନିଜେ ନିଜେ ଉଚ୍ଚାରଣ କରି ଯଦ୍ଦ୍ୱାରା ସୀତା ହୋଙ୍କର ବିଶ୍ୱାସ ଜନ୍ମିବ, ସେହିପରି କରିବି''।୪୨-୪୩। ମହାନୁଭବ ହନୂମାନ୍ ପୃଥିବୀପତି ରାମଙ୍କ ପତ୍ନୀଙ୍କୁ ଦର୍ଶନକରି ଓ ଏହିପରି ବହୁବିଧ ଚିନ୍ତାକରି ବୃକ୍ଷଶାଖା ଅନ୍ତରାଳରେ ଲୁଚିରହି ମଧୁର ଅଥଚ ସତ୍ୟବଚନ ଉଚ୍ଚାରଣ କରିବାକୁ ଲାଗିଲେ ।୪୪।

# ଏକତ୍ରିଂଶଃ ସର୍ଗଃ

## ରାମବୃତ୍ତସଂଶ୍ରବଃ

ଏବଂ ବହୁବଧାଂ ଚନ୍ତାଂ ଚନ୍ତୟିତ୍ୱା ମହାକପିଃ ।
ସଂଶ୍ରବେ ମଧୁରଂ ବାକ୍ୟଂ ବୈଦେହ୍ୟା ବ୍ୟାଜହାର ହ । ୧ ।
ରାଜା ଦଶରଥୋ ନାମ ରଥକୁଞ୍ଜରବାଜିମାନ୍ ।
ପୁଣ୍ୟଶୀଳୋ ମହାକୀର୍ତ୍ତିରିକ୍ଷ୍ୱାକୂଣାଂ ମହାଯଶାଃ ।୨।
ଅହିଂସାରତରକ୍ଷୁଦ୍ରୋ ଘୃଣୀ ସତ୍ୟପରାକ୍ରମଃ ।
ମୁଖ୍ୟଶ୍ଚେକ୍ଷ୍ୱାକୁବଂଶସ୍ୟ ଲକ୍ଷ୍ମୀବାଁଲ୍ଲକ୍ଷ୍ମିବର୍ଧନଃ ୩ ।
ପାର୍ଥିବବ୍ୟଞ୍ଜନୈର୍ୟୁକ୍ତଃ ପୃଥୁଶ୍ରୀଃ ପାର୍ଥିବର୍ଷଭଃ ।
ପୃଥିବ୍ୟାଂ ଚତୁରନ୍ତାୟାଂ ବିଶ୍ରୁତଃ ସୁଖଦଃ ସୁଖୀ । ୪ ।
ତସ୍ୟ ପୁତ୍ରଃ ପ୍ରିୟୋ ଜ୍ୟେଷ୍ଠସ୍ତାରାଧିପନିଭାନନଃ ।
ରାମୋ ନାମ ବିଶେଷଜ୍ଞଃ ଶ୍ରେଷ୍ଠଃ ସର୍ବଧନୁଷ୍ମତାମ୍ । ୫ ।
ରକ୍ଷିତା ସ୍ୱସ୍ୟ ବୃତ୍ତସ୍ୟ ସ୍ୱଜନସ୍ୟାପି ରକ୍ଷିତା ।
ରକ୍ଷିତା ଜୀବଲୋକସ୍ୟ ଧର୍ମସ୍ୟ ଚ ପରନ୍ତପଃ । ୬ ।

---

## ୩୧ଶ ସର୍ଗ

( ରାମବୃତ୍ତାନ୍ତ ଶୁଣାଇବା )

ବାନରଶ୍ରେଷ୍ଠ ହନୁମାନ୍ ଏହିପରି ନାନାକଥା ଚିନ୍ତାକରି ସୀତା ଶୁଣିପାରିବାଭଳି ମଧୁରବାକ୍ୟରେ କହିବାକୁ ଲାଗିଲେ ।୧। "ଦଶରଥ ନାମରେ ଜଣେ ରାଜା ଥିଲେ । ତାଙ୍କର ବହୁ ରଥ, ଅଶ୍ୱ ଏବଂ ହସ୍ତୀ ଥିଲେ । ସେ ପବିତ୍ରସ୍ୱଭାବ,ମହାକୀର୍ତ୍ତିମାନ୍ ଏବଂ ଇକ୍ଷ୍ୱାକୁବଂଶୀୟମାନଙ୍କ ମଧ୍ୟରେ ଅତିଶୟ ଯଶସ୍ୱୀ ଥିଲେ । ୨ । ସେ ଅହିଂସାନିରତ, ଉଦାରମନା, କୋମଳହୃଦୟ, ସତ୍ୟବିକ୍ରମ, ଲକ୍ଷ୍ମୀବାନ୍, ଲକ୍ଷ୍ମୀବର୍ଦ୍ଧନକାରୀ, ଇକ୍ଷ୍ୱାକୁବଂଶର ମୁଖ୍ୟ, ରାଜଲକ୍ଷଣସମ୍ପନ୍ନ ବିପୁଳ ଶ୍ରୀସମ୍ପନ୍ନ,ପାର୍ଥିବଶ୍ରେଷ୍ଠ,ସୁଖଦାୟକ, ସୁଖୀ ଏବଂ ଚତୁଃସୀମାନ୍ତ ସମଗ୍ର ପୃଥିବୀରେ ବିଖ୍ୟାତ ଥିଲେ ।୩-୪। ତାଙ୍କର ପ୍ରିୟ ଜ୍ୟେଷ୍ଠପୁତ୍ରଙ୍କର ନାମ ରାମ । ସେହି ପୂର୍ଣ୍ଣଚନ୍ଦ୍ରାନନ ରାମ ବିଶେଷ ଜ୍ଞାନୀ ଏବଂ ସମସ୍ତ ଧନୁର୍ଦ୍ଧାରୀମାନଙ୍କ ମଧ୍ୟରେ ଶ୍ରେଷ୍ଠ ଅଟନ୍ତି । ୫ । ସେହି ଶତ୍ରୁସୂଦନ ରାମ ନିଜର ସଚ୍ଚରିତ୍ର ରକ୍ଷାକାରୀ, ସ୍ୱଜନମାନଙ୍କର ରକ୍ଷାକର୍ତ୍ତା, ଜୀବଲୋକର ତଥା ଧର୍ମର ମଧ୍ୟ

ତସ୍ୟ ସତ୍ୟାଭିସନ୍ଧସ୍ୟ ବୃଦ୍ଧସ୍ୟ ବଚନାତ୍ପିତୁଃ ।
ସଭାର୍ଯ୍ୟଃ ସହ ଚ ଭ୍ରାତ୍ରା ବୀରଃ ପ୍ରବ୍ରାଜିତୋ ବନମ୍ । ୭।
ତେନ ତତ୍ର ମହାରଣ୍ୟେ ମୃଗୟାଂ ପରିଧାବତା ।
ରାକ୍ଷସା ନିହତାଃ ଶୂରା ବହବଃ କାମରୂପିଣଃ । ୮ ।
ଜନସ୍ଥାନବଧଂ ଶ୍ରୁତ୍ୱା ନିହତୌ ଖରଦୂଷଣୌ ।
ତତସ୍ତ୍ୱମର୍ଷାପହୃତା ଜାନକୀ ରାବଣେନ ତୁ । ୯ ।
ବଞ୍ଚୟିତ୍ୱା ବନେ ରାମଂ ମୃଗରୂପେଣ ମାୟୟା ।
ସ ମାର୍ଗମାଣ ସ୍ତାଂ ଦେବୀଂ ରାମଃ ସୀତାମନିନ୍ଦିତାମ୍ । ୧୦।
ଆସସାଦ ବନେ ମିତ୍ରଂ ସୁଗ୍ରୀବଂ ନାମ ବାନରମ୍ ।
ତତଃ ସ ବାଲିନଂ ହତ୍ୱା ରାମଃ ପରପୁରଞ୍ଜୟଃ । ୧୧ ।
ଆୟଚ୍ଛତ୍କପିରାଜ୍ୟଂ ତୁ ସୁଗ୍ରୀବାୟ ମହାତ୍ମନେ ।
ସୁଗ୍ରୀବେଣାଭିସଂଦିଷ୍ଟା ହରୟଃ କାମରୂପିଣଃ । ୧୨ ।
ଦିକ୍ଷୁ ସର୍ବାସୁ ତାଂ ଦେବୀଂ ବିଚିନ୍ୱନ୍ତି ସହସ୍ରଶଃ ।
ଅହଂ ସଂପାତିବଚନାଚ୍ଛତଯୋଜନମାୟତମ୍ । ୧୩ ।
ତସ୍ୟା ହେତୋର୍ବିଶାଲାକ୍ଷ୍ୟାଃ ସମୁଦ୍ରଂ ବେଗବାନ୍ ପ୍ଳୁତଃ ।
ଯଥାରୂପାଂ ଯଥାବର୍ଣ୍ଣାଂ ଯଥାଲକ୍ଷ୍ମବତୀଂ ଚ ତାମ୍ । ୧୪ ।

---

ରକ୍ଷାକର୍ତ୍ତା । ୬ । ବୀର ରାମ ସତ୍ୟପ୍ରତିଜ୍ଞ ବୃଦ୍ଧ ପିତାଙ୍କ କଥାରେ ଭାର୍ଯ୍ୟା ଏବଂ ଭ୍ରାତାଙ୍କ ସହିତ ବନକୁ ନିର୍ବାସିତ ହେଲେ । ୭। ସେ ସେହି ମହାରଣ୍ୟରେ ମୃଗୟା କରି ବୁଲୁ ବୁଲୁ ବହୁସଂଖ୍ୟକ କାମରୂପୀ ବୀର ରାକ୍ଷସଙ୍କୁ ସଂହାର କଲେ । ୮ । ଜନସ୍ଥାନ ବିଧ୍ୱସ୍ତହେବା ଏବଂ ଖର ଦୂଷଣ ନିହତ ହେବାର ଶୁଣି ରାବଣ କ୍ରୋଧରେ ମାୟା ଅବଲମ୍ବନପୂର୍ବକ ବନରେ ମୃଗରୂପରେ ରାମଙ୍କୁ ପ୍ରତାରିତ କରାଇ ଜାନକୀଙ୍କୁ ଅପହରଣ କଲା । ରାମ ସେହି ଅନିନ୍ଦିତା ସୀତାଙ୍କୁ ଅନ୍ୱେଷଣ କରୁ କରୁ ବନରେ ବାନର ସୁଗ୍ରୀବଙ୍କୁ ମିତ୍ର କରି ପାଇଲେ । ଅନନ୍ତର ଶତ୍ରୁପୁରବିଜୟୀ ରାମ ବାଲୀଙ୍କୁ ନିହତ କରି ମହାତ୍ମା ସୁଗ୍ରୀବଙ୍କୁ ବାନରରାଜ୍ୟ ପ୍ରଦାନ କଲେ । ସୁଗ୍ରୀବଙ୍କ କର୍ତ୍ତୃକ ଆଦିଷ୍ଟ ହୋଇ ସହସ୍ର ସହସ୍ର କାମରୂପୀ ବାନର ସବୁ ଦିଗରେ ସୀତାଦେବୀଙ୍କର ଅନ୍ୱେଷଣ କରୁଛନ୍ତି । ମୁଁ ସମ୍ପାତିର କଥାନୁସାରେ ସେହି ବିଶାଳନୟନା ସୀତାଙ୍କର ଅନୁସନ୍ଧାନ ନିମନ୍ତେ ଶତଯୋଜନ ବିସ୍ତୃତ ସାଗର ଅତିବେଗରେ ଲଙ୍ଘନ କରିଅଛି । ରାମଙ୍କଠାରୁ ସୀତାଙ୍କର ଯେପ୍ରକାର ରୂପ, ଯେପରି ବର୍ଣ୍ଣ ଓ ଯେଉଁପ୍ରକାର ଲକ୍ଷଣ

ଅଶ୍ରୌଷଂ ରାଘବସ୍ୟାହଂ ସେୟମାସାଦିତା ମୟା ।
ବିରରାମୈବମୁକ୍ତ୍ୱା ସ ବାଚଂ ବାନରପୁଙ୍ଗବଃ । ୧୫ ।
ଜାନକୀ ଚାପି ତଚ୍ଛ୍ରୁତ୍ୱା ବିସ୍ମୟଂ ପରମଂ ଗତା ।
ତତଃ ସା ବକ୍ରକେଶାନ୍ତା ସୁକେଶୀ କେଶସଂବୃତମ୍ ।
ଉନ୍ନମ୍ୟ ବଦନଂ ଭୀରୁଃ ଶିଂଶପାମନ୍ୱବୈକ୍ଷତ । ୧୬ ।
ନିଶମ୍ୟ ସୀତା ବଚନଂ କପେଶ୍ଚ
ଦିଶଶ୍ଚ ସର୍ବାଃ ପ୍ରଦିଶଶ୍ଚ ବୀକ୍ଷ୍ୟ ।
ସ୍ୱୟଂ ପ୍ରହର୍ଷଂ ପରମଂ ଜଗାମ
ସର୍ବାତ୍ମନା ରାମମନୁସ୍ମରନ୍ତୀ । ୧୭ ।
ସା ତିର୍ଯଗୂର୍ଦ୍ଧ୍ୱଂ ଚ ତଥା ହ୍ୟଧସ୍ତା-
ନ୍ନିରୀକ୍ଷମାଣା ତମଚିନ୍ତ୍ୟବୁଦ୍ଧିମ୍ ।
ଦଦର୍ଶ ପିଙ୍ଗାଧିପତେରମାତ୍ୟମ୍
ବାତାତ୍ମଜଂ ସୂର୍ଯମିବୋଦୟସ୍ଥମ୍ । ୧୮ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ସୁନ୍ଦରକାଣ୍ଡେ ରାମବୃତ୍ତସଂଶ୍ରବୋ ନାମ ଏକତ୍ରିଂଶଃ ସର୍ଗଃ ।

---

ଏବେ ଶୁଣିଥିଲି ମୁଁ ଏହାଙ୍କୁ ଠିକ୍ ସେହିପରି ଭାବରେ ପାଇଲି ।"ବାନରଶ୍ରେଷ୍ଠ ହନୁମାନ୍ ଏହି କଥା କହି ବିରତ ହେଲେ ।୯-୧୫। ଅନନ୍ତର କୁଞ୍ଚିତକେଶସମନ୍ୱିତା, ସୁକେଶୀ, ସୀତା ତାହା ଶୁଣି ଅତଶୟ ଆଶ୍ଚର୍ଯ୍ୟାନ୍ୱିତ ହେଲେ ଏବଂ ସେ ସଭୟରେ ବାଳରେ ଘୋଡ଼ାଇ ହୋଇଥିବା ମୁଣ୍ଡକୁ ଟେକି ଶିଂଶପାଗଛ ଆଡ଼କୁ ଚାହିଁଲେ । ୧୬ । ସୀତା ବାନରଙ୍କ କଥା ଶୁଣି ସମସ୍ତ ଦିଗବିଦିଗ ଆଡ଼କୁ ଚାହିଁ, ଏକାଗ୍ରମନରେ ରାମଙ୍କୁ ଚିନ୍ତାକରି ଅତିଶୟ ଆନନ୍ଦିତ ହେଲେ । ୧୭ । ସେ ପାର୍ଶ୍ୱ, ଊର୍ଦ୍ଧ୍ୱ ଏବଂ ଅଧଃ ସବୁ ଦିଗକୁ ଚାହିଁ ଚାହିଁ, ଉଦୟ ପର୍ବତରେ ବିରାଜମାନ ଥିବା ସୂର୍ଯ୍ୟଙ୍କପରି ବାନରରାଜଙ୍କର ଅମାତ୍ୟ,ଅସାମାନ୍ୟ ବୁଦ୍ଧିସମ୍ପନ୍ନ, ପବନନନ୍ଦନଙ୍କୁ ଦେଖିଲେ । ୧୮।

# ଦ୍ୱାତ୍ରିଂଶଃ ସର୍ଗଃ

## ସୀତାସ୍ୱପ୍ନାଦିବିତର୍କଃ

ତତଃ ଶାଖାନ୍ତରେ ଲୀନଂ ଦୃଷ୍ଟ୍ୱା ଚଳିତମାନସା ।
ବେଷ୍ଟିତାର୍ଜୁନବସ୍ତ୍ରଂ ତଂ ବିଦ୍ୟୁତ୍ସଂଘାତପିଙ୍ଗଳମ୍ ।୧।
ସା ଦଦର୍ଶ କପିଂ ତତ୍ର ପ୍ରଶ୍ରିତଂ ପ୍ରିୟବାଦିନମ୍ ।
ଫୁଲ୍ଲାଶୋକୋତ୍କରାଭାସଂ ତପ୍ତଚାମୀକରେକ୍ଷଣମ୍ । ୨ ।
ସାଥ ଦୃଷ୍ଟ୍ୱା ହରିଶ୍ରେଷ୍ଠଂ ବିନୀତବଦବସ୍ଥିତମ୍ ।
ମୈଥିଳୀ ଚିନ୍ତୟାମାସ ବିସ୍ମୟଂ ପରମଂ ଗତା । ୩ ।
ଅହୋ ଭୀମମିଦଂ ସତ୍ତ୍ୱଂ ବାନରସ୍ୟ ଦୁରାସଦମ୍ ।
ଦୁର୍ନିରୀକ୍ଷମିଦଂ ମତ୍ୱା ପୁନରେବ ମୁମୋହ ସା । ୪ ।
ବିଲଲାପ ଭୃଶଂ ସୀତା କରୁଣଂ ଭୟମୋହିତା ।
ରାମ ରାମେତି ଦୁଃଖାର୍ତ୍ତା ଲକ୍ଷ୍ମଣେତି ଚ ଭାମିନୀ । ୫ ।

---

## ୩୨ଶ ସର୍ଗ

### (ସ୍ୱପ୍ନ ବୋଲି ସୀତାଙ୍କର ସନ୍ଦେହ)

ତଡ଼ିତ୍‌ସମଷ୍ଟିସଦୃଶ ପିଙ୍ଗଳବର୍ଣ୍ଣ, ଶୁକ୍ଳବସ୍ତ୍ରପରିହିତ ହନୁମାନଙ୍କୁ ଶାଖାନ୍ତରାଳରେ ଲୁଚି ରହିଥିବାର ଦେଖି ସୀତାଙ୍କର ମନ ଚଞ୍ଚଳ ହୋଇ ଉଠିଲା ।୧। ଯେ ସେହି ବୃକ୍ଷରେ ପ୍ରଫୁଲ୍ଲିତ ଅଶୋକପୁଷ୍ପ ରାଜିସଦୃଶ ପ୍ରଭାବିଶିଷ୍ଟ, ତପ୍ତସୁବର୍ଣ୍ଣନୟନ, ପ୍ରିୟବାଦୀ ବିନୀତ ବାନରଙ୍କୁ ଦେଖିଲେ ।୨। ମୈଥିଳୀ ବିନୀତଭାବରେ ରହିଥିବା ବାନର ଶ୍ରେଷ୍ଠ ହନୁମାନଙ୍କୁ ଦେଖି ଅତ୍ୟନ୍ତ ବିସ୍ମିତ ହୋଇ ଚିନ୍ତା କରିବାକୁ ଲାଗିଲେ । ୩। 'ଅହୋ ! ଏ ବାନରର ଦୁର୍ଜୟ ରୂପ କେଡ଼େ ଭୟଙ୍କର ! ଏହାକୁ ଚାହିଁ ହେବ ନାହିଁ ।' ବୋଲି ମନେ କରି ପୁନର୍ବାର ସେ ମୋହାଚ୍ଛନ୍ନ ହେଲେ ୪ ଏବଂ ଭୟମୋହିତ ହୋଇ ଅତି କରୁଣଭାବରେ ବିଳାପ କରିବାକୁ ଲାଗିଲେ; ସୁନ୍ଦରୀ ସତୀ ସୀତା ଦୁଃଖରେ କାତର ହୋଇ 'ରାମ, ରାମ, ଲକ୍ଷ୍ମଣ' ବୋଲି କ୍ଷୀଣ ଏବଂ କରୁଣସ୍ୱରରେ ରୋଦନ କରିବାକୁ ଲାଗିଲେ ।୪-୫। ତା'ପରେ ମୈଥିଳୀ ବାନରଶ୍ରେଷ୍ଠ ହନୁମାନଙ୍କୁ ବିନୀତ

ରୁରୋଦ ସହସା ସୀତା ମନ୍ଦମନ୍ଦସ୍ୱରା ସତୀ ।
ସାଥ ଦୃଷ୍ଟ୍ୱା ହରିବରଂ ବିନୀତବଦୁପାଗତମ୍ ।
ମୈଥିଲୀ ଚିନ୍ତୟାମାସ ସ୍ୱପ୍ନୋଽୟମିତି ଭାମିନୀ । ୭ ।
ସା ବୀକ୍ଷମାଣା ପୃଥୁଭଗ୍ନବକ୍ତ୍ରମ୍
ଶାଖାମୃଗେନ୍ଦ୍ରସ୍ୟ ଯଥୋକ୍ତକାରମ୍ ।
ଦଦର୍ଶ ପିଙ୍ଗପ୍ରବରଂ ମହାର୍ହମ୍
ବାତାତ୍ମଜଂ ବୁଦ୍ଧିମତାଂ ବରିଷ୍ଠମ୍ । ୭ ।
ସା ତଂ ସମୀକ୍ଷ୍ୟୈବ ଭୃଶଂ ବିପନ୍ନା
ଗତାସୁକଳ୍ପେବ ବଭୂବ ସୀତା ।
ଚିରେଣ ସଂଜ୍ଞାଂ ପ୍ରତିଲଭ୍ୟ ଚୈବମ୍
ବିଚିନ୍ତୟାମାସ ବିଶାଳନେତ୍ରା । ୮ ।
ସ୍ୱପ୍ନୋ ମୟାୟଂ ବିକୃତୋଽଦ୍ୟ ଦୃଷ୍ଟଃ
ଶାଖାମୃଗଃ ଶାସ୍ତ୍ରଗଣୈର୍ନିଷିଦ୍ଧଃ ।
ସ୍ୱସ୍ତ୍ୟସ୍ତୁ ରାମାୟ ସଲକ୍ଷ୍ମଣାୟ
ତଥା ପିତୁର୍ମେ ଜନକସ୍ୟ ରାଜ୍ଞଃ । ୯ ।
ସ୍ୱପ୍ନୋ ହି ନାୟଂ ନ ହି ମେଽସ୍ତି ନିଦ୍ରା
ଶୋକେନ ଦୁଃଖେନ ଚ ପୀଡ଼ିତାୟାଃ ।
ସୁଖଂ ହି ମେ ନାସ୍ତି ଯତୋ ବିହୀନା
ତେନେନ୍ଦୁପୂର୍ଣ୍ଣପ୍ରତିମାନନେନ । ୧୦ ।

---

ଭାବରେ ନିକଟକୁ ଆସିବାର ଦେଖି ଭାବିଲେ, "ଏହା ନିଶ୍ଚୟ ସ୍ୱପ୍ନ ।" ୭ । ସେ ଏଣେତେଣେ ଗୁହିଁ ବିଶାଳ ଓ ଭଗ୍ନମୁଖବିଶିଷ୍ଟ, ପୂର୍ବୋକ୍ତ ପ୍ରକାର ବେଶଧାରୀ, ବୁଦ୍ଧିମାନ୍‌ମାନଙ୍କ ମଧ୍ୟରେ ଶ୍ରେଷ୍ଠ, ମହାଗୁଣଶାଳୀ, କପିଶ୍ରେଷ୍ଠ ପବନନନ୍ଦନଙ୍କୁ ଦେଖିଲେ । ୭ । ବିଶାଳନୟନା ସୀତା ହନୁମାନଙ୍କୁ ଦେଖି ଅତିଶୟ ଭୀତ ଏବଂ ମୃତପ୍ରାୟ ହୋଇଗଲେ ଓ ବହୁସମୟ ପରେ ପୁଣି ସଂଜ୍ଞା ଲାଭ କରି ଚିନ୍ତା କରିବାକୁ ଲାଗିଲେ । ୮ । ମୁଁ ଆଜି ଏହି ଅତି କଦର୍ଯ୍ୟ ସ୍ୱପ୍ନ ଦେଖିଲି । ବାନର ସ୍ୱପ୍ନ ଦେଖିବା ଶାସ୍ତ୍ରମାନଙ୍କରେ ନିଷିଦ୍ଧ ଅଛି । ରାମ, ଲକ୍ଷ୍ମଣ ଏବଂ ମୋ ପିତା ରାଜା ଜନକଙ୍କର ମଙ୍ଗଳ ହେଉ । ୯ । ମାତ୍ର ଏହା ତ ସ୍ୱପ୍ନ ମଧ୍ୟ ହୋଇ ନ ପାରେ; କାରଣ ଶୋକ ଏବଂ ଦୁଃଖରେ ପୀଡ଼ିତ ହୋଇ ମୋର ତ ନିଦ୍ରା ହୋଇ ନାହିଁ । ସେହି ପୂର୍ଣ୍ଣଚନ୍ଦ୍ର-ବଦନ ରାମଙ୍କ ବିରହରେ ମୋର ଲେଶମାତ୍ର ସୁଖ ନାହିଁ । ୧୦ । ମୁଁ ସବୁବେଳେ

ରାମେତି ରାମେତି ସଦୈବ ବୁଦ୍ଧ୍ୟା
ବିଚିନ୍ତ୍ୟ ବାଚା ବ୍ରୁବତୀ ତମେବ ।
ତସ୍ୟାନୁରୂପଂ ଚ କଥାଂ ତଦର୍ଥ-
ମେବଂ ପ୍ରପଶ୍ୟାମି ତଥା ଶୃଣୋମି । ୧୧ ।
ଅହଂ ହି ତସ୍ୟାଦ୍ୟ ମନୋଭବେନ
ସଂପୀଡ଼ିତା ତଦ୍‌ଗତସର୍ବଭାବା ।
ବିଚିନ୍ତୟନ୍ତୀ ସତତଂ ତମେବ
ତଥୈବ ପଶ୍ୟାମି ଯଥା ଶୃଣୋମି । ୧୨ ।
ମନୋରଥଃ ସ୍ୟାଦିତି ଚିନ୍ତୟାମି
ତଥାପି ବୁଦ୍ଧ୍ୟାପି ବିତର୍କୟାମି ।
କିଂ କାରଣଂ ତସ୍ୟ ହି ନାସ୍ତି ରୂପମ୍
ସୁବ୍ୟକ୍ତରୂପଶ୍ଚ ବଦତ୍ୟୟଂ ମାମ୍ । ୧୩ ।
ନମୋଽସ୍ତୁ ବାଚସ୍ପତୟେ ସବଜ୍ରିଣେ
ସ୍ୱୟଂଭୁବେ ଚୈବ ହୁତାଶନାୟ ଚ ।
ଅନେନ ଚୋକ୍ତଂ ଯଦିଦଂ ମମାଗ୍ରତୋ-
ବନୌକସା ତଚ୍ଚ ତଥାସ୍ତୁ ନାନ୍ୟଥା । ୧୪ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ ସୁନ୍ଦରକାଣ୍ଡେ ସୀତାସ୍ୱପ୍ନାଦି ବିତର୍କଃ ନାମ ଦ୍ୱାତ୍ରିଂଶଃ ସର୍ଗଃ ।

---

ମନମଧ୍ୟରେ "ରାମ ରାମ" ଏହି ଚିନ୍ତା କରୁଛି, କଥାରେ ମଧ୍ୟ ସେହି "ରାମ ରାମ" ବୋଲି କହୁଛି । ସେହି ହେତୁରୁ ତଦନୁରୂପ କଥା ଶୁଣୁଛି ଏବଂ ସେହିପରି ଦେଖୁଛି । । ୧୧ । ମୁଁ ସମ୍ପୂର୍ଣ୍ଣରୂପେ ତାଙ୍କଠାରେ ନିବିଷ୍ଟଚିତ୍ତ ହୋଇ ତାଙ୍କର ହେତୁରୁ କାମପୀଡ଼ିତ ହୋଇଅଛି ଏବଂ ସର୍ବଦା ତାହାଙ୍କୁ ଚିନ୍ତା କରୁ ଅଛି; ସେଥିପାଇଁ ତାଙ୍କର କଥା ଶୁଣୁଛି ଓ ତାଙ୍କୁ ହିଁ ଦେଖୁଛି । ୧୨ । ଏହି ବାନର ମୋର ମାନସିକ କଳ୍ପନା ମାତ୍ର, ଏହି କଥା ମୁଁ ଚିନ୍ତା କରୁଛି । ତଥାପି ମୁଁ ବୁଦ୍ଧି ଦ୍ୱାରା ବିଚାରକରି ଦେଖୁଛି, ଏପରି ମନଃକଳ୍ପିତ ବସ୍ତୁର ତ ରୂପ ନ ଥାଏ, ମାତ୍ର ଏ ତ ସ୍ପଷ୍ଟ ରୂପ ଧାରଣ କରି ମୋତେ କଥା କହୁଛି । ୧୩ । ବୃହସ୍ପତିଙ୍କୁ ନମସ୍କାର, ବଜ୍ରଧାରୀ ଇନ୍ଦ୍ରଙ୍କୁ ନମସ୍କାର, ବ୍ରହ୍ମାଙ୍କୁ ନମସ୍କାର ତଥା ଅଗ୍ନିଙ୍କୁ ନମସ୍କାର । ଏହି ବନଚର ମୋ ସମ୍ମୁଖରେ ଯାହା କହିଲା, ତାହା ସତ୍ୟ ହେଉ, ଅନ୍ୟଥା ନ ହେଉ । ୧୪ ।

# ତ୍ରୟସ୍ତ୍ରିଂଶଃ ସର୍ଗଃ

## ହନୂମଜ୍ଜାନକୀସମ୍ବାଦୋପକ୍ରମଃ

ସୋଽବତୀର୍ଯ୍ୟ ଦ୍ରୁମାତ୍ତସ୍ମାଦ୍ ବିଦ୍ରୁମପ୍ରତିମାନନଃ ।
ବିନୀତବେଷଃ କୃପଣଃ ପ୍ରଣିପତ୍ୟୋପସୃତ୍ୟ ଚ । ୧ ।
ତାମବ୍ରବୀନ୍ମହାତେଜା ହନୂମାନ୍ମାରୁତାତ୍ମଜଃ ।
ଶିରସ୍ୟଞ୍ଜଳିମାଧାୟ ସୀତାଂ ମଧୁରୟା ଗିରା । ୨ ।
କା ନୁ ପଦ୍ମପଲାଶାକ୍ଷି କ୍ଲିଷ୍ଟକୌଶେୟବାସିନି ।
ଦ୍ରୁମସ୍ୟ ଶାଖାମାଲମ୍ବ୍ୟ ତିଷ୍ଠସି ତ୍ୱମନିନ୍ଦିତା । ୩ ।
କିମର୍ଥଂ ତବ ନେତ୍ରାଭ୍ୟାଂ ବାରି ସ୍ରବତି ଶୋକଜମ୍ ।
ପୁଣ୍ଡରୀକପଲାଶାଭ୍ୟାଂ ବିପ୍ରକୀର୍ଣ୍ଣମିବୋଦକମ୍ । ୪ ।
ସୁରାଣାମସୁରାଣାଂ ଚ ନାଗଗନ୍ଧର୍ବରକ୍ଷସାମ୍ ।
ଯକ୍ଷାଣାଂ କିଂନରାଣାଂ ଚ କା ତ୍ୱଂ ଭବସି ଶୋଭନେ ।୫।
କା ତ୍ୱଂ ଭବସି ରୁଦ୍ରାଣାଂ ମରୁତାଂ ବା ବରାନନେ ।
ବସୂନାଂ ବା ବରାରୋହେ ଦେବତା ପ୍ରତିଭାସି ମେ । ୬ ।

---

## ୩୩ଶ ସର୍ଗ

( ହନୁମାନ୍ ଏବଂ ସୀତାଙ୍କର କଥୋପକଥନ ଆରମ୍ଭ )

ପ୍ରବାଳସଦୃଶ ରକ୍ତମୁଖବିଶିଷ୍ଟ ପବନନନ୍ଦନ ହନୂମାନ୍ ସେହି ବୃକ୍ଷରୁ ଓହ୍ଲାଇ ଦୁଃଖିତ ଏବଂ ବିନୀତଭାବରେ ପ୍ରଣାମପୂର୍ବକ ନିକଟକୁ ଆସି କପାଳରେ ହାତଯୋଡ଼ି ମଧୁର ବଚନରେ ସୀତାଙ୍କୁ କହିଲେ ।୧-୨। ପଦ୍ମଲୋଚନେ ! ତୁମ୍ଭେ କିଏ ? ଅନିନ୍ଦ୍ୟସୁନ୍ଦରୀ ହୋଇ ମଧ୍ୟ ଏପରି ମଳିନ ପଟ୍ଟବସ୍ତ୍ର ପରିଧାନ କରି, ବୃକ୍ଷଶାଖାକୁ ଧରି କାହିଁକି ଠିଆ ହୋଇଛ ?। ୩ । ଦୁଇଟି ପଦ୍ମପାଖୁଡ଼ାରୁ ପାଣି ଗଡ଼ିପଡ଼ିଲା ପରି ତୁମ୍ଭ ଦୁଇ ଚକ୍ଷୁରୁ କାହିଁକି ଶୋକଜନିତ ଅଶ୍ରୁଜଳ ଗଡ଼ିପଡ଼ୁଅଛି ? । ୪ । ଶୋଭନେ ! ସୁର,ଅସୁର,ନାଗ,ଗନ୍ଧର୍ବ,ରାକ୍ଷସ, ଯକ୍ଷ ଏବଂ କିନ୍ନର ଏମାନଙ୍କ ମଧ୍ୟରୁ ତୁମ୍ଭେ କିଏ ?। ୫ । ଚନ୍ଦ୍ରବଦନେ, ସୁଶ୍ରୋଣି ! ତୁମ୍ଭେ କ'ଣ ରୁଦ୍ରଗଣ, ମରୁଦ୍‌ଗଣ ବା ବସୁଗଣଙ୍କର କେହି ଅଛ ? ମୋତେ ବୋଧହେଉଛି, ତୁମେ ଦେବତା । ୬ ।

କିଂ ନୁ ଚନ୍ଦ୍ରମସା ହୀନା ପତିତା ବିବୁଧାଲୟାତ୍ ।
ରୋହିଣୀ ଜ୍ୟୋତିଷାଂ ଶ୍ରେଷ୍ଠା ଶ୍ରେଷ୍ଠା ସର୍ବଗୁଣାଧିକା । ୭ ।
କୋପାଦ୍ ବା ଯଦି ବା ମୋହାଦ୍ ଭର୍ତ୍ତାରମସିତେକ୍ଷଣେ ।
ବସିଷ୍ଠଂ କୋପୟିତ୍ୱା ତ୍ୱଂ ନାସି କଲ୍ୟାଣ୍ୟରୁନ୍ଧତୀ । ୮ ।

କୋ ନୁ ପୁତ୍ରଃ ପିତା ଭ୍ରାତା ଭର୍ତ୍ତା ବା ତେ ସୁମଧ୍ୟମେ ।
ଅସ୍ମାଲ୍ଲୋକାଦମୁଂ ଲୋକଂ ଗତଂ ତ୍ୱମନୁଶୋଚସି । ୯ ।
ରୋଦନାଦତିନିଃଶ୍ୱାସାଦ୍ ଭୂମିସଂସ୍ପର୍ଶନାଦପି ।
ନ ତ୍ୱା ଦେବୀମହଂ ମନ୍ୟେ ରାଜ୍ଞଃ ସଂଜ୍ଞାବଧାରଣାତ୍ । ୧୦ ।

ବ୍ୟଞ୍ଜନାନି ହି ତେ ଯାନି ଲକ୍ଷଣାନି ଚ ଲକ୍ଷୟେ ।
ମହିଷୀ ଭୂମିପାଲସ୍ୟ ରାଜକନ୍ୟା ଚ ମେ ମତା । ୧୧ ।

ରାବଣେନ ଜନସ୍ଥାନାଦ୍ ବଲାତ୍ ପ୍ରମଥିତା ଯଦି ।
ସୀତା ତ୍ୱମସି ଭଦ୍ରଂ ତେ ତନ୍ମମାଚକ୍ଷ୍ୱ ପୃଚ୍ଛତଃ । ୧୨ ।
ଯଥା ହି ତବ ବୈ ଦୈନ୍ୟଂ ରୂପଂ ଚାପ୍ୟତିମାନୁଷମ୍ ।
ତପସା ଚାନ୍ୱିତୋ ବେଷସ୍ତ୍ୱଂ ରାମମହିଷୀ ଧ୍ରୁବମ୍ । ୧୩ ।

---

ତୁମେ କ'ଣ ଜ୍ୟୋତିର୍ମୟ ନକ୍ଷତ୍ରମାନଙ୍କ ମଧ୍ୟରେ ଶ୍ରେଷ୍ଠା ସର୍ବଗୁଣରେ ଅଗ୍ରଗଣ୍ୟା ରୋହିଣୀ ? ଚନ୍ଦ୍ରଙ୍କ ବିରହରେ ସ୍ୱର୍ଗରୁ ଖସି ପଡ଼ିଅଛ ? । ୭ । ହେ କୃଷ୍ଣଲୋଚନେ ! ତୁମେ କ'ଣ କଲ୍ୟାଣୀ ଅରୁନ୍ଧତୀ ! କୋପ ବା ମୋହବଶତଃ ବଶିଷ୍ଠଙ୍କୁ କୁପିତ କରି ଏଠାକୁ ଚାଲି ଆସିଅଛ ? ।୮ । ହେ ସୁମଧ୍ୟମେ ! ତୁମ୍ଭର କ'ଣ ପୁତ୍ର, ପିତା, ଭ୍ରାତା ବା ଭର୍ତ୍ତା ଇହଲୋକରୁ ପରଲୋକକୁ ଚାଲିଯାଇଥିବାରୁ ତୁମ୍ଭେ ତାଙ୍କ ଲାଗି ଶୋକକରୁଛ ? । ୯ । ତୁମ୍ଭେ ରୋଦନ କରୁଛ, ଦୀର୍ଘନିଃଶ୍ୱାସ ପକାଉଛ, ଭୂମିକୁ ସ୍ପର୍ଶକରି ରହିଛ ଏବଂ ରାଜା ରାମଙ୍କର ନାମ ବାରମ୍ବାର ଉଚ୍ଚାରଣ କରୁଛ; ସୁତରାଂ ମୁଁ ତୁମ୍ଭଙ୍କୁ ଦେବୀ ବୋଲି ମନେକରି ପାରୁ ନାହିଁ । ୧୦ । କିନ୍ତୁ ତୁମ୍ଭର ଯେଉଁ ସ୍ପଷ୍ଟ ଲକ୍ଷଣମାନ ମୁଁ ଦେଖୁଛି, ସେଥିରୁ ମୋର ମନେହେଉଛି, ତୁମ୍ଭେ ରାଜମହିଷୀ ଏବଂ ରାଜକନ୍ୟା ହେବ । ୧୧ । ରାବଣ ବଳପୂର୍ବକ ଜନସ୍ଥାନରୁ ହରଣ କରିଥିବା ସୀତା ଯଦି ତୁମ୍ଭେ ହୋଇଥାଅ, ତାହାହେଲେ ମୁଁ ପଚାରୁଛି, ତୁମ୍ଭେ ମୋତେ ସେ କଥା କହ । ତୁମ୍ଭର ମଙ୍ଗଳ ହେଉ । ୧୨। ତୁମ୍ଭର ଯେପରି ଦୀନ ଅବସ୍ଥା, ଯେ ପ୍ରକାର ଅଲୌକିକ ରୂପ ଏବଂ ଯେ ପ୍ରକାର ତାପସୋଚିତ ବେଶ ଦେଖୁଛି, ସେଥିରୁ ବୋଧହେଉଛି,

ସା ତସ୍ୟ ବଚନଂ ଶ୍ରୁତ୍ୱା ରାମକୀର୍ତ୍ତନହର୍ଷିତା ।
ଉବାଚ ବାକ୍ୟଂ ବୈଦେହୀ ହନୂମନ୍ତଂ ଦ୍ରୁମାଶ୍ରିତମ୍ । ୧୪ ।
ପୃଥିବ୍ୟାଂ ରାଜସିଂହାନାଂ ମୁଖ୍ୟସ୍ୟ ବିଦିତାତ୍ମନଃ ।
ସ୍ନୁଷା ଦଶରଥସ୍ୟାହଂ ଶତ୍ରୁସୈନ୍ୟପ୍ରଣାଶିନଃ । ୧୫ ।
ଦୁହିତା ଜନକସ୍ୟାହଂ ବୈଦେହସ୍ୟ ମହାତ୍ମନଃ ।
ସୀତେତି ନାମ୍ନା ଚୋକ୍ତାହଂ ଭାର୍ଯ୍ୟା ରାମସ୍ୟ ଧୀମତଃ । ୧୬ ।
ସମା ଦ୍ୱାଦଶ ତତ୍ରାହଂ ରାଘବସ୍ୟ ନିବେଶନେ ।
ଭୁଞ୍ଜାନା ମାନୁଷାନ୍ ଭୋଗାନ୍ ସର୍ବକାମସମୃଦ୍ଧିନୀ । ୧୭ ।
ତତସ୍ତ୍ରୟୋଦଶେ ବର୍ଷେ ରାଜ୍ୟେ ଚେକ୍ଷ୍ୱାକୁନନ୍ଦନମ୍ ।
ଅଭିଷେଚୟିତୁଂ ରାଜା ସୋପାଧ୍ୟାୟଃ ପ୍ରଚକ୍ରମେ । ୧୮ ।
ତସ୍ମିନ୍ ସମ୍ଭ୍ରିୟମାଣେ ତୁ ରାଘବସ୍ୟାଭିଷେଚନେ ।
କୈକେୟୀ ନାମ ଭର୍ତ୍ତାରମିଦଂ ବଚନମବ୍ରବୀତ୍ । ୧୯ ।
ନ ପିବେୟଂ ନ ଖାଦେୟଂ ପ୍ରତ୍ୟହଂ ମମ ଭୋଜନମ୍ ।
ଏଷ ମେ ଜୀବିତସ୍ୟାନ୍ତୋ ରାମୋ ଯଦ୍ୟଭିଷିଚ୍ୟତେ । ୨୦ ।

---

ତୁମ୍ଭେ ନିଶ୍ଚୟ ରାମଙ୍କର ମନ୍ତ୍ରୀ ଅଟ” । ୧୩ । ବିଦେହନନ୍ଦନୀ ସୀତା ତାଙ୍କ କଥା ଶୁଣି ଏବଂ ରାମଙ୍କ ନାମ ଉଚ୍ଚାରଣରେ ହର୍ଷିତ ହୋଇ ବୃକ୍ଷରେ ବସିଥିବା ହନୁମାନଙ୍କୁ କହିଲେ । ୧୪ । “ପୃଥିବୀ ମଧ୍ୟରେ ଯେ ରାଜସିଂହମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ, ମୁଁ ସେହି ଜିତେନ୍ଦ୍ରିୟ, ଶତ୍ରୁସୈନ୍ୟପ୍ରମାଥୀ ଦଶରଥଙ୍କର ପୁତ୍ରବଧୂ ଅଟେ । ୧୫ । ମୁଁ ବିଦେହାଧିପତି ମହାତ୍ମା ଜନକଙ୍କର ଦୁହିତା । ମୋତେ ଲୋକେ ‘ସୀତା’ ଏହି ନାମରେ ଡାକନ୍ତି । ମୁଁ ଧୀମାନ୍ ରାମଙ୍କର ଭାର୍ଯ୍ୟା । ୧୬ । ମୁଁ ରାଘବଙ୍କ ଗୃହରେ ବାରବର୍ଷ-କାଳ ସମସ୍ତ ଅଭିଳାଷ ପୂର୍ଣ୍ଣକରି ସକଳପ୍ରକାର ମାନବୋଚିତ ଭୋଗ୍ୟବସ୍ତୁ ଉପଭୋଗ କରିଥିଲି । ୧୭ । ଅନନ୍ତର ତ୍ରୟୋଦଶ ବର୍ଷରେ ରାଜା ପୁରୋହିତଙ୍କ ସହିତ ପରାମର୍ଶ କରି ଇକ୍ଷ୍ୱାକୁନନ୍ଦନ ରାମଙ୍କୁ ରାଜ୍ୟରେ ଅଭିଷିକ୍ତ କରିବା ପାଇଁ ଉଦ୍ୟମ କଲେ । ୧୮। ରାମଙ୍କ ଅଭିଷେକ ନିମନ୍ତେ ସମସ୍ତ ଆୟୋଜନ କରାହେବାରୁ କୈକେୟୀ ନାମକ ରାଜମହିଷୀ ସ୍ୱାମୀଙ୍କୁ କହିଲେ ।-୧୯ । “ରାମଙ୍କୁ ଯଦି ଅଭିଷିକ୍ତ କରାହୁଏ, ତାହାହେଲେ ମୁଁ ଆଉ ଦୈନନ୍ଦିନ ଭୋଜନ କରିବି ନାହିଁ ବା ପାନୀୟ ପିଇବି ନାହିଁ; ସେହିଁ ମୋର ଜୀବନର ଶେଷ ହେବ । ୨୦ । ହେ ରାଜଶ୍ରେଷ୍ଠ ! ତୁମ୍ଭେ

ଯତ୍ତଦୁକ୍ତଂ ତ୍ୱୟା ବାକ୍ୟଂ ପ୍ରୀତ୍ୟା ନୃପସତ୍ତମ ।
ତଚ୍ଚେନ୍ନ ବିତଥଂ କାର୍ଯ୍ୟଂ ବନଂ ଗଚ୍ଛତୁ ରାଘବଃ । ୨୧ ।
ସ ରାଜା ସତ୍ୟବାଗ୍ ଦେବ୍ୟା ବରଦାନମନୁସ୍ମରନ୍ ।
ମୁମୋହ ବଚନଂ ଶ୍ରୁତ୍ୱା କୈକେୟ୍ୟାଃ କ୍ରୂରମପ୍ରିୟମ୍ । ୨୨ ।
ତତସ୍ତଂ ସ୍ଥବିରୋ ରାଜା ସତ୍ୟଧର୍ମେ ବ୍ୟବସ୍ଥିତଃ ।
ଜ୍ୟେଷ୍ଠଂ ଯଶସ୍ୱିନଂ ପୁତ୍ରଂ ରୁଦନ୍ରାଜ୍ୟମୟାଚତ ।୨୩।
ସ ପିତୁର୍ବଚନଂ ଶ୍ରୀମାନଭିଷେକାତ୍ପରଂ ପ୍ରିୟମ୍ ।
ମନସା ପୂର୍ବମାସାଦ୍ୟ ବାଚା ପ୍ରତିଗୃହୀତବାନ୍ । ୨୪ ।
ଦଦ୍ୟାନ୍ନ ପ୍ରତିଗୃହ୍ଣୀୟାତ୍ସତ୍ୟଂ ବ୍ରୂୟାନ୍ନ ଚାନୃତମ୍ ।
ଅପି ଜୀବିତହେତୋର୍ହି ରାମଃ ସତ୍ୟପରାକ୍ରମଃ । ୨୫ ।
ସ ବିହାୟୋତ୍ତରୀୟାଣି ମହାର୍ହାଣି ମହାଯଶାଃ ।
ବିସୃଜ୍ୟ ମନସା ରାଜ୍ୟଂ ଜନନ୍ୟୈ ମାଂ ସମାଦିଶତ୍ । ୨୬ ।
ସାହଂ ତସ୍ୟାଗ୍ରତସ୍ତୂର୍ଣ୍ଣଂ ପ୍ରସ୍ଥିତା ବନଚାରିଣୀ ।
ନ ହି ମେ ତେନ ହୀନାୟା ବାସଃ ସ୍ୱର୍ଗେଽପି ରୋଚତେ । ୨୭ ।

---

ପୂର୍ବେ ପ୍ରୀତ ହୋଇ ମୋତେ ଯେଉଁ କଥା କହିଥିଲ ତାହା ଯଦି ମିଥ୍ୟା ନ କର, ତେବେ ରାମ ବନକୁ ଯାଉ” । ୨୧ । ସତ୍ୟପ୍ରତିଜ୍ଞ ରାଜା ଦଶରଥ ଦେବୀ କୈକେୟୀଙ୍କୁ ବରଦାନ କରିଥିବା କଥା ସ୍ମରଣକରି ଏବଂ ତାଙ୍କର ଅପ୍ରିୟ ନିଷ୍ଠୁର ବାକ୍ୟ ଶ୍ରବଣକରି ମୂର୍ଚ୍ଛିତ ହୋଇଗଲେ । ୨୨ । ଅନନ୍ତର ସତ୍ୟ ଓ ଧର୍ମରେ ଦୃଢ଼ଭାବରେ ବ୍ୟବସ୍ଥିତ ବୃଦ୍ଧ ରାଜା ରୋଦନ କରି କରି ଯଶସ୍ୱୀ ଜ୍ୟେଷ୍ଠ ପୁତ୍ରଙ୍କୁ ରାଜ୍ୟ ମାଗିଲେ । ୨୩। ଶ୍ରୀମାନ୍ ରାମଙ୍କ ପକ୍ଷରେ ରାଜ୍ୟାଭିଷେକ ଅପେକ୍ଷା ପିତାଙ୍କର ବାକ୍ୟ ଅଧିକ ପ୍ରିୟ; ସୁତରାଂ ସେ ପ୍ରଥମେ ମନେ ମନେ ଅଙ୍ଗୀକାରକରି ପଛରେ ପ୍ରକାଶ୍ୟରେ ମଧ୍ୟ ସ୍ୱୀକାର କଲେ ।୨୪। ସତ୍ୟବିକ୍ରମୀ ରାମ ପ୍ରାଣରକ୍ଷା ନିମନ୍ତେ ମଧ୍ୟ ଦାନହିଁ କରିବେ, ଦାନ ଗ୍ରହଣ କରିବେ ନାହିଁ; ସତ୍ୟହିଁ କହିବେ, କଦାପି ମିଥ୍ୟା କହିବେ ନାହିଁ ।୨୫। ମହାଯଶା ରାମ ମହାମୂଲ୍ୟ ଉତ୍ତରୀୟ,ବସ୍ତ୍ର ପ୍ରଭୃତି ପରିତ୍ୟାଗକରି ସର୍ବାନ୍ତଃକରଣରେ ରାଜ୍ୟ ତ୍ୟାଗକରି ମୋତେ ଜନନୀଙ୍କ ନିକଟରେ ଅର୍ପଣ କରି-ଦେଲେ ।୨୬। ମୁଁ କିନ୍ତୁ ସତ୍ୱର ତାଙ୍କ ଆଗେ ଆଗେ ପ୍ରସ୍ଥାନକରି ବନଚାରିଣୀ ହେଲି । ତାଙ୍କଠାରୁ ବିଚ୍ଛିନ୍ନ ହୋଇ ସ୍ୱର୍ଗରେ ବାସ କରିବାକୁ ମଧ୍ୟ ମୋତେ ସୁଖ

ପ୍ରାଗେବ ତୁ ମହାଭାଗଃ ସୌମିତ୍ରିର୍ମିତ୍ରନନ୍ଦନଃ ।
ପୂର୍ବଜସ୍ୟାନୁଯାତ୍ରାର୍ଥେ କୁଶଚୀରୈରଳଂକୃତଃ । ୨୮ ।
ତେ ବୟଂ ଭର୍ତୁରାଦେଶଂ ବହୁମାନ୍ୟ ଦୃଢ଼ବ୍ରତାଃ ।
ପ୍ରବିଷ୍ଟାଃ ସ୍ମ ପୁରାଦୃଷ୍ଟଂ ବନଂ ଗମ୍ଭୀରଦର୍ଶନମ୍ । ୨୯ ।
ବସତୋ ଦଣ୍ଡକାରଣ୍ୟେ ତସ୍ୟାହମମିତୌଜସଃ ।
ରକ୍ଷସାପହୃତା ଭାର୍ଯା ରାବଣେନ ଦୁରାତ୍ମନା । ୩୦ ।
ଦ୍ୱୌ ମାସୌ ତେନ ମେ କାଲୋ ଜୀବିତାନୁଗ୍ରହଃ କୃତଃ ।
ଊର୍ଦ୍ଧ୍ୱଂ ଦ୍ୱାଭ୍ୟାଂ ତୁ ମାସାଭ୍ୟାଂ ତତସ୍ତ୍ୟକ୍ଷ୍ୟାମି ଜୀବିତମ୍ । ୩୧ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ସୁନ୍ଦରକାଣ୍ଡେ ହନୂମଜ୍ଜାନକୀସଂବାଦୋପକ୍ରମୋ ନାମ ତ୍ରୟସ୍ତ୍ରିଂଶଃ ସର୍ଗଃ ।

---

ଲଗେ ନାହିଁ । ୨୭ । ମିତ୍ରମାନଙ୍କର ଆନନ୍ଦବର୍ଦ୍ଧନକାରୀ ମହାଭାଗ ସୁମିତ୍ରାନନ୍ଦନ ମଧ୍ୟ ଅଗ୍ରଜଙ୍କର ଅନୁଗମନ କରିବାନିମନ୍ତେ ଆଗରୁହିଁ କୁଶ ଚୀର ପରିଧାନକରି ସୁସଜ୍ଜିତ ହୋଇସାରିଥିଲେ । ୨୮ । ଏହିପରିଭାବରେ ଆମ୍ଭେମାନେ ପ୍ରଭୁ ଦଶରଥଙ୍କର ଆଦେଶ ବହୁମାନପୂର୍ବକ ଗ୍ରହଣକରି କଠୋର ବ୍ରତଧାରଣକରି ଅଦୃଷ୍ଟପୂର୍ବ, ଦେଖିବାକୁ ଅତି ଗମ୍ଭୀର ବନମଧ୍ୟରେ ପ୍ରବେଶ କଲୁଁ । ୨୯ । ସେହି ଅମିତତେଜା ରାମ ଦଣ୍ଡକାରଣ୍ୟରେ ବାସକରୁଥିବାବେଳେ ଦୁରାତ୍ମା ରାକ୍ଷସ ରାବଣ ତାହାଙ୍କର ଭାର୍ଯ୍ୟା ମୋତେ ଅପହରଣ କରି ଆଣିଲା । ୩୦ । ସେ ଅନୁଗ୍ରହ କରି ମୋତେ ଜୀବିତ ରହିବାପାଇଁ ଦୁଇ ମାସ ସମୟ ଦେଇଅଛି । ସେହି ଦୁଇ ମାସ ଅତୀତ ହୋଇଗଲେ ମୋତେ ପ୍ରାଣତ୍ୟାଗ କରିବାକୁ ହେବ” । ୩୧ ।

---

# ଚତୁସ୍ତ୍ରିଂଶଃ ସର୍ଗଃ

## ରାବଣଶଙ୍କାନିବାରଣମ୍

ତସ୍ୟାସ୍ତଦ୍ ବଚନଂ ଶ୍ରୁତ୍ୱା ହନୂମାନ୍ ହରିପୁଙ୍ଗବଃ ।
ଦୁଃଖାଦ୍ଦୁଃଖାଭିଭୂତାୟାଃ ସାନ୍ତ୍ୱମୁତ୍ତରମବ୍ରବୀତ୍ । ୧ ।
ଅହଂ ରାମସ୍ୟ ସଂଦେଶାଦ୍ଦେବି ଦୂତସ୍ତବାଗତଃ ।
ବୈଦେହି କୁଶଳୀ ରାମଃ ସ ତ୍ୱାଂ କୌଶଳମବ୍ରବୀତ୍ । ୨ ।
ଯୋ ବ୍ରାହ୍ମମସ୍ତ୍ରଂ ବେଦାଂଶ୍ଚ ବେଦ ବେଦବିଦାଂ ବରଃ ।
ସ ତ୍ୱାଂ ଦାଶରଥୀ ରାମୋ ଦେବି କୌଶଳମବ୍ରବୀତ୍ । ୩ ।
ଲକ୍ଷ୍ମଣଶ୍ଚ ମହାତେଜା ଭର୍ତ୍ତୁସ୍ତେଽନୁଚରଃ ପ୍ରିୟଃ ।
କୃତବାଞ୍ଛୋକସଂତପ୍ତଃ ଶିରସା ତେଽଭିବାଦନମ୍ । ୪ ।
ସା ତୟୋଃ କୁଶଳଂ ଦେବୀ ନିଶମ୍ୟ ନରସିଂହୟୋଃ ।
ପ୍ରୀତିସଂହୃଷ୍ଟସର୍ବାଙ୍ଗୀ ହନୁମନ୍ତମଥାବ୍ରବୀତ୍ । ୫ ।
କଲ୍ୟାଣୀ ବତ ଗାଥେୟଂ ଲୌକିକୀ ପ୍ରତିଭାତି ମେ ।
ଏତି ଜୀବନ୍ତମାନନ୍ଦୋ ନରଂ ବର୍ଷଶତାଦପି । ୬ ।

---

## ୩୪ଶ ସର୍ଗ

### ( ସୀତାଙ୍କ ରାବଣଶଙ୍କାଦୂରୀକରଣ )

ବାନରଦଳପତି ହନୁମାନ୍ ଉପର୍ଯ୍ୟୁପରି ଦୁଃଖସନ୍ତପ୍ତା ସୀତାଙ୍କର ସେ କଥା ଶୁଣି ତାଙ୍କୁ ସାନ୍ତ୍ୱନାଦେଇ କହିଲେ । ୧ । "ହେ ଦେବି ! ମୁଁ ରାମଙ୍କର ଆଦେଶକ୍ରମେ ତୁମ୍ଭନିକଟକୁ ଦୂତସ୍ୱରୂପ ଆସିଅଛି । ହେ ବୈଦେହି ! ରାମ କୁଶଳରେ ଅଛନ୍ତି ଏବଂ ସେ ତୁମ୍ଭର କୁଶଳସମ୍ବାଦ ପଚାରିଛନ୍ତି । ୨ । ଯେଉଁ ରାମ ବେଦବିତ୍-ମାନଙ୍କ ମଧ୍ୟରେ ଶ୍ରେଷ୍ଠ ଅଟନ୍ତି, ବ୍ରହ୍ମାସ୍ତ୍ର ଏବଂ ସବୁବେଦ ଜାଣନ୍ତି, ହେ ଦେବି ! ସେହି ଦଶରଥନନ୍ଦନ ରାମ ତୁମ୍ଭର କୁଶଳ ପଚାରିଛନ୍ତି । ୩ । ତୁମ୍ଭ ସ୍ୱାମୀଙ୍କର ପ୍ରିୟ ଅନୁଚର ମହାତେଜସ୍ୱୀ ଲକ୍ଷ୍ମଣ ଶୋକସନ୍ତପ୍ତ ହୋଇ ମୁଣ୍ଡନୁଆଇଁ ତୁମ୍ଭଙ୍କୁ ଅଭିବାଦନ କରିଅଛନ୍ତି" । ୪ । ସେହି ଦୁଇ ନରସିଂହଙ୍କ କୁଶଳବାର୍ତ୍ତା ଶୁଣି ସୀତାଦେବୀଙ୍କର ସର୍ବାଙ୍ଗ ରୋମାଞ୍ଚିତ ହୋଇଗଲା । ଅନନ୍ତର ସେ ହନୁମାନଙ୍କୁ କହିଲେ । ୫ । "ମନୁଷ୍ୟ ଜୀବିତ ରହିଥିଲେ ଶତବର୍ଷ ଶେଷରେ ହେଲେ ମଧ୍ୟ ସେ ଆନନ୍ଦ ଲାଭକରେ" ଲୋକଙ୍କ ମଧ୍ୟରେ ଏହି ଯେଉଁ ଉକ୍ତି ପ୍ରଚଳିତ ଅଛି, ତାହା ବାସ୍ତବିକ ସତ୍ୟ ବୋଲି

ତୟୋଃ ସମାଗମେ ତସ୍ମିନ୍ ପ୍ରୀତିରୁତ୍ପାଦିତାଭୁତା ।
ପରସ୍ପରେଣ ଚାଲାପଂ ବିଶ୍ୱସ୍ତୌ ତୌ ପ୍ରଚକ୍ରତୁଃ । ୭ ।
ତସ୍ୟାସ୍ତଦ୍ୱଚନଂ ଶ୍ରୁତ୍ୱା ହନୁମାନ୍ମାରୁତାତ୍ମଜଃ ।
ସୀତାୟାଃ ଶୋକତପ୍ତାୟାଃ ସମୀପମୁପଚକ୍ରମେ । ୮ ।
ଯଥା ଯଥା ସମୀପଂ ସ ହନୁମାନୁପସର୍ପତି ।
ତଥା ତଥା ରାବଣଂ ସା ତଂ ସୀତା ପରିଶଙ୍କତେ । ୯ ।
ଅହୋ ଧିଗ୍‌ଧିକ୍‌କୃତମିଦଂ କଥିତଂ ହି ଯଦସ୍ୟ ମେ ।
ରୂପାନ୍ତରମୁପାଗମ୍ୟ ସ ଏବାୟଂ ହି ରାବଣଃ । ୧୦ ।
ତାମଶୋକସ୍ୟ ଶାଖାଂ ତୁ ବିମୁକ୍ତ୍ୱା ଶୋକକର୍ଶିତା ।
ତସ୍ୟାମେବାନବଦ୍ୟାଙ୍ଗୀ ଧରଣ୍ୟାଂ ସମୁପାବିଶତ୍ । ୧୧ ।
ଅବନ୍ଦତ ମହାବାହୁସ୍ତତସ୍ତାଂ ଜନକାତ୍ମଜାମ୍ ।
ସା ଚୈନଂ ଭୟସଂତ୍ରସ୍ତା ଭୂୟୋ ନୈନମୁଦୈକ୍ଷତ । ୧୨ ।
ତଂ ଦୃଷ୍ଟ୍ୱା ବନ୍ଦମାନଂ ଚ ସୀତା ଶଶିନିଭାନନା ।
ଅବ୍ରବୀଦ୍ଦୀର୍ଘମୁଚ୍ଛ୍ୱସ୍ୟ ବାନରଂ ମଧୁରସ୍ୱରା । ୧୩ ।

---

ମୋତେ ବୋଧହେଉଅଛି" ।୬। ହନୁମାନ୍ ଏବଂ ସୀତା ଏହିପରି ଏକତ୍ର ମିଳିତ ହେବାରୁ ସେମାନଙ୍କ ମଧ୍ୟରେ ଅଦ୍ଭୁତ ପ୍ରୀତି ଜାତହେଲା ଏବଂ ସେ ଦୁହେଁ ବିଶ୍ୱସ୍ତଭାବରେ ପରସ୍ପର ଆଳାପ କରିବାକୁ ଲାଗିଲେ । ୭ । ଶୋକସନ୍ତପ୍ତା ସୀତାଙ୍କର ଏହି ବାକ୍ୟ ଶ୍ରବଣକରି ପବନନନ୍ଦନ ହନୁମାନ୍ ତାହାଙ୍କର ସମୀପକୁ ଅଗ୍ରସର ହେଲେ । ୮ । ହନୁମାନ୍ ଯେତିକି ଯେତିକି ତାଙ୍କ ନିକଟକୁ ଅଗ୍ରସର ହେବାକୁ ଲାଗିଲେ, ସୀତା ସେତିକି ସେତିକି ତାଙ୍କୁ ରାବଣ ବୋଲି ଆଶଙ୍କା କରିବାକୁ ଲାଗିଲେ ।୯। ସେ ଭାବିଲେ, "ହାୟ ! ଧିକ୍ ! ମୁଁ ଏହା ସହିତ କଥା କହି କି ଦୁଷ୍କାର୍ଯ୍ୟ କଲି ! ଏ ନିଶ୍ଚୟ ସେହି ରାବଣ, ଅନ୍ୟ ଏକ ବେଶଧରି ଉପସ୍ଥିତ ହୋଇଅଛି" ।୧୦। ଅନନ୍ତର ଅନିନ୍ଦ୍ୟସୁନ୍ଦରୀ ସୀତା ଶୋକରେ କ୍ଷୀଣହୋଇ ସେହି ଅଶୋକବୃକ୍ଷର ଶାଖାକୁ ଛାଡ଼ିଦେଇ ସେହିଠାରେ ଭୂମି ଉପରେ ବସିପଡ଼ିଲେ । ୧୧ । ଅନନ୍ତର ମହାବାହୁ ହନୁମାନ୍ ଜନକନନ୍ଦିନୀଙ୍କୁ ନମସ୍କାର କଲେ; ମାତ୍ର ସୀତା ଭୟରେ ତ୍ରସ୍ତହୋଇ ଆଉ ତାଙ୍କ ଆଡ଼କୁ ଚାହିଁଲେ ନାହିଁ ।୧୨। ହନୁମାନ୍ ବନ୍ଦନା କରିବାର ଦେଖି ଚନ୍ଦ୍ରବଦନା ସୀତା ଦୀର୍ଘ ନିଶ୍ୱାସ ତ୍ୟାଗକରି ମଧୁର ସ୍ୱରରେ ସେ ବାନରଙ୍କୁ

ମାୟାଂ ପ୍ରବିଷ୍ଟୋ ମାୟାବୀ ଯଦି ତ୍ୱଂ ରାବଣଃ ସ୍ୱୟମ୍ ।
ଉତ୍ପାଦୟସି ମେ ଭୂୟଃ ସଂତାପଂ ତନ୍ନ ଶୋଭନମ୍ । ୧୪ ।
ସ୍ୱଂ ପରିତ୍ୟଜ୍ୟ ରୂପଂ ଯଃ ପରିବ୍ରାଜକରୂପଧୃତ୍ ।
ଜନସ୍ଥାନେ ମୟା ଦୃଷ୍ଟସ୍ତ୍ୱଂ ସ ଏବ ହି ରାବଣଃ । ୧୫ ।
ଉପବାସକୃଶାଂ ଦୀନାଂ କାମରୂପ ନିଶାଚର ।
ସନ୍ତାପୟସି ମାଂ ଭୂୟଃ ସନ୍ତପ୍ତାଂ ତନ୍ନ ଶୋଭନମ୍ । ୧୬ ।
ଅଥବା ନୈତଦେବଂ ହି ଯନ୍ମୟା ପରିଶଙ୍କିତମ୍ ।
ମନସୋ ହି ମମ ପ୍ରୀତିରୁତ୍ପନ୍ନା ତବ ଦର୍ଶନାତ୍ । ୧୭ ।
ଯଦି ରାମସ୍ୟ ଦୂତସ୍ତ୍ୱମାଗତୋ ଭଦ୍ରମସ୍ତୁ ତେ ।
ପୃଚ୍ଛାମି ତ୍ୱାଂ ହରିଶ୍ରେଷ୍ଠ ପ୍ରିୟା ରାମକଥା ହି ମେ । ୧୮ ।
ଗୁଣାନ୍ରାମସ୍ୟ କଥୟ ପ୍ରିୟସ୍ୟ ମମ ବାନର ।
ଚିତ୍ତଂ ହରସି ମେ ସୌମ୍ୟ ନଦୀକୂଳଂ ଯଥା ରୟଃ । ୧୯।
ଅହୋ ସ୍ୱପ୍ନସ୍ୟ ସୁଖତା ଯାହମେବ ଚିରାହୃତା ।
ପ୍ରେଷିତଂ ନାମ ପଶ୍ୟାମି ରାଘବେଣ ବନୌକସମ୍ । ୨୦ ।

---

କହିଲେ । ୧୩ । "ତୁ ମାୟାବୀ ରାବଣ, ମାୟା ଅବଲମ୍ବନକରି ଯଦି ମୋତେ ପୁଣି ସନ୍ତାପିତ କରୁଥାଅ, ତେବେ ତାହା କଦାପି ଶୋଭନୀୟ ନୁହେଁ ।୧୪ । ମୁଁ ଜନସ୍ଥାନରେ ଯାହାକୁ ନିଜରୂପ ପରିତ୍ୟାଗକରି ଭିକ୍ଷୁକରୂପ ଧାରଣ କରିଥିବାର ଦେଖିଥିଲି, ତୁ ନିଶ୍ଚୟ ସେହି ରାବଣ ।୧୫। ହେ କାମରୂପୀ ରାକ୍ଷସ ! ମୁଁ ଉପବାସରେ କ୍ଷୀଣହୋଇ ଦୀନଭାବାପନ୍ନ ହୋଇଅଛି । ଏହିପରି ଶୋକସନ୍ତପ୍ତା ମୋତେ ଯେ ତୁ ପୁନର୍ବାର ସନ୍ତାପିତ କରୁଅଛୁ, ଏହା ସୁନ୍ଦର ହେଉ ନାହିଁ ।୧୬। ଅଥବା ମୁଁ ଯାହା ଶଙ୍କାକରୁଛି ତାହା ବୋଧହୁଏ ଠିକ୍ ନୁହେଁ, କାରଣ ତୁମ୍ଭଙ୍କୁ ଦେଖିବାରେ ମୋ ମନରେ ପ୍ରୀତି ଜାତ ହେଉଅଛି । ୧୭। ତୁମ୍ଭେ ଯଦି ରାମଙ୍କର ଦୂତ ହୋଇ ଆସିଥାଅ ତାହାହେଲେ ତୁମ୍ଭର ମଙ୍ଗଳ ହେଉ । ହେ ବାନରଶ୍ରେଷ୍ଠ ! ମୁଁ ତୁମ୍ଭଙ୍କୁ ମୋର ଅତି ପ୍ରିୟ ରାମଙ୍କ କଥା ହିଁ ପଚାରୁଅଛି । ୧୮ । ହେ ବାନର ! ତୁମ୍ଭେ ମୋର ପ୍ରିୟ ରାମଙ୍କର ଗୁଣାବଳୀ କୀର୍ତ୍ତନକର । ହେ ସୌମ୍ୟ ! ଜଳବେଗ ଯେପରି ନଦୀକୂଳକୁ ଆକର୍ଷଣକରେ, ତୁମ୍ଭେ ସେହିପରି ମୋର ମନକୁ ହରଣ କରୁଅଛ ।୧୯। ଆହା ! ସ୍ୱପ୍ନ ମୋତେ କି ସୁଖ ଦେଲା ! ମୁଁ ଅପହୃତ ହେବାର ବହୁକାଳ ପରେ ରାମଙ୍କ ପ୍ରେରିତ ବନବାସୀ ଦୂତକୁ ଦେଖିଲି । ୨୦ । ବୀର ରାମ ଏବଂ ଲକ୍ଷ୍ମଣଙ୍କୁ ମୁଁ ଯଦି ସ୍ୱପ୍ନରେ ମଧ୍ୟ

ସ୍ୱପ୍ନେଽପି ଯଦ୍ୟହଂ ବୀରଂ ରାଘବଂ ସହଲକ୍ଷ୍ମଣମ୍ ।
ପଶ୍ୟେୟଂ ନାବସୀଦେୟଂ ସ୍ୱପ୍ନୋଽପି ମମ ମତ୍ସରୀ । ୨୧ ।
ନାହଂ ସ୍ୱପ୍ନମିମଂ ମନ୍ୟେ ସ୍ୱପ୍ନେ ଦୃଷ୍ଟ୍ୱା ହି ବାନରମ୍ ।
ନ ଶକ୍ୟୋଽଭ୍ୟୁଦୟଃ ପ୍ରାପ୍ତୁଂ ପ୍ରାପ୍ତଶ୍ଚାଭ୍ୟୁଦୟୋ ମମ । ୨୨ ।
କିଂ ନୁ ସ୍ୟାଚ୍ଚିତ୍ତମୋହୋଽୟଂ ଭବେଦ୍ ବାତଗତସ୍ତ୍ୱିୟମ୍ ।
ଉନ୍ମାଦଜୋ ବିକାରୋ ବା ସ୍ୟାଦ୍ୟଂ ମୃଗତୃଷ୍ଣିକା । ୨୩ ।
ଅଥବା ନାୟମୁନ୍ମାଦୋ ମୋହୋଽପ୍ୟୁନ୍ମାଦଲକ୍ଷଣଃ ।
ସଂବୁଧ୍ୟେ ଚାହମାତ୍ମାନମିମଂ ଚାପି ବନୌକସମ୍ । ୨୪ ।
ଇତ୍ୟେବଂ ବହୁଧା ସୀତା ସମ୍ପ୍ରଧାର୍ଯ ବଳାବଳମ୍ ।
ରକ୍ଷସାଂ କାମରୂପତ୍ୱାନ୍ମେନେ ତଂ ରାକ୍ଷସାଧିପମ୍ । ୨୫ ।
ଏତାଂ ବୁଦ୍ଧିଂ ତଦା କୃତ୍ୱା ସୀତା ସା ତନୁମଧ୍ୟମା ।
ନ ପ୍ରତିବ୍ୟାଜହାରାଥ ବାନରଂ ଜନକାତ୍ମଜା । ୨୬ ।
ସୀତାୟା ନିଶ୍ଚିତଂ ବୁଦ୍ଧ୍ୱା ହନୁମାନ୍ମାରୁତାତ୍ମଜଃ ।
ଶ୍ରୋତ୍ରାନୁକୂଲୈର୍ବଚନୈସ୍ତଦା ତାଂ ସଂପ୍ରହର୍ଷୟତ୍ । ୨୭ ।

---

ଦେଖିପାରନ୍ତି ତାହାହେଲେ ମୁଁ ଏପରି ଅବସନ୍ନ ହୁଅନ୍ତି ନାହିଁ; ମାତ୍ର ସ୍ୱପ୍ନ ମଧ୍ୟ ମୋ ପ୍ରତି ଈର୍ଷାଦ୍ୱେଷଭାବାପନ୍ନ ହୋଇଅଛି । ୨୧ । ମୁଁ ଏହାକୁ ସ୍ୱପ୍ନ ବୋଲି ମଧ୍ୟ ମନେକରି ପାରୁ ନାହିଁ । ସ୍ୱପ୍ନରେ ବାନର ଦର୍ଶନକଲେ ଲୋକ ଅଭ୍ୟୁଦୟ ଲାଭ କରିବାକୁ ସମର୍ଥ ହୁଏ ନାହିଁ, ଅଥଚ ମୁଁ ବର୍ତ୍ତମାନ (ରାମଙ୍କ ସନ୍ଦେଶ ପାଇବାଦ୍ୱାରା) ଅଭ୍ୟୁଦୟ ଲାଭ କରିଅଛି । ୨୨ । ତେବେ କ'ଣ ଏହା ବୁଦ୍ଧି ଭ୍ରମ, ବାୟୁର ଗତି ବା ଉନ୍ମାଦଜନିତ ବିକାର ଅଥବା ମୃଗତୃଷ୍ଣା ହେବ ! । ୨୩ । ମାତ୍ର ଏ ତ ଉନ୍ମାଦ ନୁହେ, କାରଣ ଉନ୍ମାଦର ଲକ୍ଷଣ ହେଉଛି ଜ୍ଞାନହୀନତା; କିନ୍ତୁ ମୁଁ ତ ନିଜକୁ ଏବଂ ଏହି ବାନରକୁ ପ୍ରତ୍ୟକ୍ଷଭାବରେ ଜାଣିପାରୁଛି !" ।୨୪। ସୀତା ଏହିପରି ବହୁବିଧ ଦୋଷାଦୋଷ ବିବେଚନାକରି, ରାକ୍ଷସମାନେ ନିଜ ଇଚ୍ଛା ଅନୁସାରେ ରୂପ ଧାରଣ-କରୁଥିବାରୁ ସେହି ବାନରକୁ ରାକ୍ଷସାଧିପ ରାବଣ ବୋଲି ବିଚାରିଲେ । ୨୫ । ଜନକନନ୍ଦିନୀ ସୁମଧ୍ୟମା ସୀତା ସେତେବେଳେ ଏହିପରି ସ୍ଥିରକରି ସେହି ବାନରଙ୍କୁ ଆଉ କୌଣସି ପ୍ରତ୍ୟୁତ୍ତର ଦେଲେ ନାହିଁ । ୨୬ । ମରୁତ୍ନନ୍ଦନ ହନୁମାନ୍, ସୀତା ମନରେ ନିଶ୍ଚୟ କରିଥିବା କଥା ଜାଣିପାରି ସେତେବେଳେ ତାଙ୍କ ଶ୍ରୁତିସୁଖକର ବାକ୍ୟରେ ହର୍ଷାନ୍ୱିତ କରିବାକୁ ଲାଗିଲେ । ୨୭ । ସେ କହିଲେ, "ରାମ

ଆଦିତ୍ୟ ଇବ ତେଜସ୍ୱୀ ଲୋକକାନ୍ତଃ ଶଶୀ ଯଥା ।
ରାଜା ସର୍ବସ୍ୟ ଲୋକସ୍ୟ ଦେବୋ ବୈଶ୍ରବଣୋ ଯଥା । ୨୮ ।
ବିକ୍ରମେଣୋପପନ୍ନଶ୍ଚ ଯଥା ବିଷ୍ଣୁର୍ମହାଯଶାଃ ।
ସତ୍ୟବାଦୀ ମଧୁରବାଗ୍ ଦେବୋ ବାଚସ୍ପତିର୍ଯଥା । ୨୯ ।
ରୂପବାନ୍ ସୁଭଗଃ ଶ୍ରୀମାନ୍ କନ୍ଦର୍ପ ଇବ ମୂର୍ତ୍ତିମାନ୍ ।
ସ୍ଥାନକ୍ରୋଧଃ ପ୍ରହର୍ତ୍ତା ଚ ଶ୍ରେଷ୍ଠୋ ଲୋକେ ମହାରଥଃ । ୩୦ ।
ବାହୁଚ୍ଛାୟାମବଷ୍ଟବ୍ଧୋ ଯସ୍ୟ ଲୋକେ ମହାତ୍ମନଃ ।
ଅପକ୍ରମ୍ୟାଶ୍ରମପଦାନ୍ମୃଗରୂପେଣ ରାଘବମ୍ । ୩୧ ।
ଶୂନ୍ୟେ ଯେନାପନୀତାସି ତସ୍ୟ ଦ୍ରକ୍ଷ୍ୟସି ଯତ୍ ଫଳମ୍ ।
ଅଚିରାଦ୍ରାବଣଂ ସଂଖ୍ୟେ ଯୋ ବଧିଷ୍ୟତି ବୀର୍ଯବାନ୍ । ୩୨ ।
କ୍ରୋଧପ୍ରମୁକ୍ତୈରିଷୁଭିର୍ଜ୍ୱଲଦ୍ଭିରିବ ପାବକୈଃ ।
ତେନାହଂ ପ୍ରେଷିତୋ ଦୂତସ୍ତ୍ୱତ୍ସକାଶମିହାଗତଃ । ୩୩ ।
ତ୍ୱଦ୍‌ବିୟୋଗେନ ଦୁଃଖାର୍ତ୍ତଃ ସ ତ୍ୱାଂ କୌଶଲମବ୍ରବୀତ୍ ।
ଲକ୍ଷ୍ମଣଶ୍ଚ ମହାତେଜାଃ ସୁମିତ୍ରାନନ୍ଦବର୍ଧନଃ । ୩୪ ।

---

ସୂର୍ଯ୍ୟଙ୍କ ସଦୃଶ ତେଜସ୍ୱୀ, ଚନ୍ଦ୍ରସଦୃଶ ଲୋକମାନଙ୍କର ଆନନ୍ଦବର୍ଦ୍ଧକ । ସେ କୁବେରଦେବଙ୍କପରି ସମଗ୍ର ଜଗତର ମନୋରଞ୍ଜନ କରିଥାନ୍ତି । ୨୮ । ମହାଯଶସ୍ୱୀ ରାମ ବିଷ୍ଣୁଙ୍କ ପରି ପରାକ୍ରମସମ୍ପନ୍ନ ଅଟନ୍ତି ଏବଂ ବୃହସ୍ପତି ଦେବଙ୍କ ପରି ମଧୁରଭାଷୀ ଓ ସତ୍ୟବାଦୀ ଅଟନ୍ତି । ୨୯ । ସେ ସାକ୍ଷାତ୍ କନ୍ଦର୍ପଙ୍କ ପରି ରୂପବାନ୍, ଶ୍ରୀମାନ୍ ଏବଂ ସ୍ତ୍ରୀଜାତିର ଈପ୍‌ସିତ ଅଟନ୍ତି । ସେ ଯଥାସ୍ଥାନରେହିଁ କ୍ରୋଧ ପ୍ରକାଶ ଏବଂ ଦଣ୍ଡବିଧାନ କରିଥାନ୍ତି । ମହାରଥୀ ରାମ ଜଗତରେ ଶ୍ରେଷ୍ଠ ଅଟନ୍ତି । ୩୦ । ଲୋକମାନେ ସେହି ମହାତ୍ମାଙ୍କର ବାହୁଚ୍ଛାୟାକୁ ଆଶ୍ରୟକରି ଅବସ୍ଥାନ କରୁଅଛନ୍ତି । ଯେଉଁ ଲୋକ ମୃଗରୂପରେ ରାଘବଙ୍କୁ ଆଶ୍ରମରୁ ଅପସାରିତ କରି ଶୂନ୍ୟ ଆକାଶମାର୍ଗରେ ତୁମ୍ଭଙ୍କୁ ଅପହରଣକରି ନେଇଆସିଅଛି, ତୁମ୍ଭେ ଦେଖିବ ସେ ନିଶ୍ଚୟ ତାର ଫଳ ପାଇବ । ଯେଉଁ ବୀର୍ଯ୍ୟବାନ୍ ରାମ ଅବିଳମ୍ବେ ଅଗ୍ନି ସଦୃଶ ପ୍ରଜ୍ୱଳିତ ଶରରାଜି କ୍ରୋଧରେ ମୋଚନକରି ଯୁଦ୍ଧରେ ରାବଣକୁ ସଂହାରକରିବେ, ସେହି ରାମ ମୋତେ ଦୂତରୂପେ ପ୍ରେରଣ କରିବାରୁ ମୁଁ ତୁମ୍ଭ ନିକଟକୁ ଠୋକୁ ଆସିଅଛି । ୩୧-୩୩ । ସେହି ରାମ ତୁମ୍ଭ ବିୟୋଗରେ ଦୁଃଖକାତର ହୋଇ ତୁମ୍ଭର କୁଶଳବାର୍ତ୍ତା ପଚାରିଛନ୍ତି । ସୁମିତ୍ରାଙ୍କର ଆନନ୍ଦ-ବର୍ଦ୍ଧନକାରୀ, ମହାବାହୁ, ମହାତେଜା, ଲକ୍ଷ୍ମଣ ମଧ୍ୟ ତୁମ୍ଭଙ୍କୁ ପ୍ରଣାମକରି ତୁମ୍ଭର କୁଶଳ

ଅଭିବାଦ୍ୟ ମହାବାହୁଃ ସ ତ୍ୱାଂ କୌଶଲମବ୍ରବୀତ୍ ।
ରାମସ୍ୟ ଚ ସଖା ଦେବ ସୁଗ୍ରୀବୋ ନାମ ବାନରଃ । ୩୫ ।
ରାଜା ବାନରମୁଖ୍ୟାନାଂ ସ ତ୍ୱାଂ କୌଶଲମବ୍ରବୀତ୍ ।
ନିତ୍ୟଂ ସ୍ମରତି ତେ ରାମଃ ସସୁଗ୍ରୀବଃ ସଲକ୍ଷ୍ମଣଃ । ୩୬ ।
ଦିଷ୍ଟ୍ୟା ଜୀବସି ବୈଦେହି ରାକ୍ଷସୀବଶମାଗତା ।
ନଚିରାଦ୍ଦ୍ରକ୍ଷ୍ୟସେ ରାମଂ ଲକ୍ଷ୍ମଣଂ ଚ ମହାରଥମ୍ । ୩୭ ।
ମଧ୍ୟେ ବାନରକୋଟୀନାଂ ସୁଗ୍ରୀବଂ ଚାମିତୌଜସମ୍ ।
ଅହଂ ସୁଗ୍ରୀବସଚିବୋ ହନୁମାନ୍ନାମ ବାନରଃ । ୩୮ ।
ପ୍ରବିଷ୍ଟୋ ନଗରୀଂ ଲଙ୍କାଂ ଲଙ୍ଘୟିତ୍ୱା ମହୋଦଧିମ୍ ।
କୃତ୍ୱା ମୂର୍ଦ୍ଧ୍ନି ପଦନ୍ୟାସଂ ରାବଣସ୍ୟ ଦୁରାତ୍ମନଃ । ୩୯ ।
ତ୍ୱାଂ ଦ୍ରଷ୍ଟୁମୁପଯାତୋଽହଂ ସମାଶ୍ରିତ୍ୟ ପରାକ୍ରମମ୍ ।
ନାହମସ୍ମି ତଥା ଦେବି ଯଥା ମାମବଗଚ୍ଛସି ।
ବିଶଙ୍କା ତ୍ୟଜ୍ୟତାମେଷା ଶ୍ରଦ୍ଧତ୍ସ୍ୱ ବଦତୋ ମମ । ୪୦ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତ୍ସହସ୍ରିକାୟାମ୍ ସଂହିତାୟାଂ ସୁନ୍ଦରକାଣ୍ଡେ ରାବଣଶଙ୍କାନିବାରଣଂ ନାମ ଚତୁସ୍ତ୍ରିଂଶଃ ସର୍ଗଃ ।

---

ପଚାରୁଛନ୍ତି । ହେ ଦେବି ! ରାମଙ୍କର ସଖା, ମୁଖ୍ୟ ବାନରମାନଙ୍କର ରାଜା ସୁଗ୍ରୀବ ନାମକ ବାନର ମଧ୍ୟ ତୁମ୍ଭର କୁଶଳ ପଚାରୁଛନ୍ତି । ଲକ୍ଷ୍ମଣ ଏବଂ ସୁଗ୍ରୀବଙ୍କ ସହିତ ରାମ ପ୍ରତ୍ୟହ ତୁମ୍ଭଙ୍କୁ ସ୍ମରଣକରୁଛନ୍ତି । ୩୫-୩୬ । ବୈଦେହି ! ସୌଭାଗ୍ୟର ବିଷୟ ଯେ ତୁମ୍ଭେ ରାକ୍ଷସୀମାନଙ୍କର ବଶବର୍ତ୍ତିନୀ ହୋଇ ମଧ୍ୟ ଜୀବିତ ରହିଅଛ । ତୁମ୍ଭେ ଅବିଳମ୍ବେ ରାମ, ମହାରଥୀ ଲକ୍ଷ୍ମଣ ଏବଂ କୋଟି କୋଟି ବାନରଙ୍କ ମଧ୍ୟରେ ଅମିତତେଜସ୍ୱୀ ସୁଗ୍ରୀବଙ୍କୁ ଦେଖିବ । ମୁଁ ସୁଗ୍ରୀବଙ୍କର ଅମାତ୍ୟ, ମୋର ନାମ 'ହନୁମାନ୍' । ମୁଁ ଜାତିରେ ବାନର । ମୁଁ ମହାସାଗର ଲଙ୍ଘନକରି ଲଙ୍କାନଗରୀରେ ପ୍ରବେଶ କରିଅଛି । ମୁଁ ପରାକ୍ରମ ଆଶ୍ରୟପୂର୍ବକ ଦୁରାତ୍ମା ରାବଣର ମସ୍ତକରେ ପଦାର୍ପଣକରି ତୁମ୍ଭଙ୍କୁ ଦେଖିବାକୁ ଏଠାରେ ଉପସ୍ଥିତ ହୋଇଅଛି । ଦେବି ! ତୁମ୍ଭେ ମୋତେ ଯାହା ବୋଲି ମନରେ ବିଚାରୁଛ, ମୁଁ ତାହା ନୁହେଁ । ତୁମ୍ଭେ ଏ ଶଙ୍କା ମନରୁ ଦୂରକର ଏବଂ ମୁଁ ଯାହା କହୁଛି, ବିଶ୍ୱାସକର" । ୩୭-୪୦ ।

# ପଞ୍ଚତ୍ରିଂଶଃ ସର୍ଗଃ

## ବିଶ୍ୱାସୋତ୍ପାଦନମ୍

ତାଂ ତୁ ରାମକଥାଂ ଶ୍ରୁତ୍ୱା ବୈଦେହୀ ବାନରର୍ଷଭାତ୍ ।
ଉବାଚ ବଚନଂ ସାନ୍ତ୍ୱମିଦଂ ମଧୁରୟା ଗିରା । ୧ ।
କ୍ୱ ତେ ରାମେଣ ସଂସର୍ଗଃ କଥଂ ଜାନାସି ଲକ୍ଷ୍ମଣମ୍ ।
ବାନରାଣାଂ ନରାଣାଂ ଚ କଥମାସୀତ୍ସମାଗମଃ । ୨ ।
ଯାନି ରାମସ୍ୟ ଚିହ୍ନାନି ଲକ୍ଷ୍ମଣସ୍ୟ ଚ ବାନର ।
ତାନି ଭୂୟଃ ସମାଚକ୍ଷ୍ୱ ନ ମାଂ ଶୋକଃ ସମାବିଶେତ୍ । ୩ ।
କୀଦୃଶଂ ତସ୍ୟ ସଂସ୍ଥାନଂ ରୂପଂ ତସ୍ୟ ଚ କୀଦୃଶମ୍ ।
କଥମୂରୂ କଥଂ ବାହୂ ଲକ୍ଷ୍ମଣସ୍ୟ ଚ ଶଂସ ମେ । ୪ ।
ଏବମୁକ୍ତସ୍ତୁ ବୈଦେହ୍ୟା ହନୂମାନ୍ମାରୁତାତ୍ମଜଃ ।
ତତୋ ରାମଂ ଯଥାତତ୍ତ୍ୱମାଖ୍ୟାତୁମୁପଚକ୍ରମେ । ୫ ।
ଜାନନ୍ତୀ ବତ ଦିଷ୍ଟ୍ୟା ମାଂ ବୈଦେହି ପରିପୃଚ୍ଛସି ।
ଭର୍ତ୍ତୁଃ କମଲପତ୍ରାକ୍ଷି ସଂସ୍ଥାନଂ ଲକ୍ଷ୍ମଣସ୍ୟ ଚ । ୬ ।

---

## ୩୫ଶ ସର୍ଗ

### ( ସୀତାଙ୍କର ବିଶ୍ୱାସ ଉତ୍ପାଦନ )

ସୀତା ବାନରପ୍ରବର ହନୁମାନଙ୍କଠାରୁ ରାମଙ୍କ ସମ୍ବନ୍ଧୀୟ କଥା ଶ୍ରବଣକରି, ସେହି ସୌମ୍ୟମୂର୍ତ୍ତି ହନୁମାନଙ୍କୁ ମଧୁର ବଚନରେ କହିଲେ । ୧। "ରାମଙ୍କ ସଙ୍ଗରେ ତୁମ୍ଭେ କେଉଁଠାରେ ମିଳିତ ହେଲ ? ଲକ୍ଷ୍ମଣଙ୍କୁ ବା ତୁମ୍ଭେ କିପରି ଜାଣିଲ ? ବାନର ଏବଂ ନରଙ୍କ ମଧ୍ୟରେ କିପରି ମିଳନ ହେଲା ? । ୨ । ବାନର ! ରାମଙ୍କଠାରେ ଏବଂ ଲକ୍ଷ୍ମଣଙ୍କଠାରେ ଯେଉଁସବୁ ଚିହ୍ନ ଅଛି, ତୁମ୍ଭେ ପୁନର୍ବାର ବିଶେଷକରି ତାହା ବର୍ଣ୍ଣନାକର । ତେବେ ମୋର ଆଉ ଶୋକ ରହିବ ନାହିଁ । ୩ । ରାମ ଏବଂ ଲକ୍ଷ୍ମଣଙ୍କର ଶରୀରଗଠନ କିପରି ? ରୂପ କିପରି ? ତାଙ୍କର ବାହୁଦ୍ୱୟ ଏବଂ ଉରୁଦ୍ୱୟ କିପରି ? ତାହା ମୋତେ କହ'' । ୪ । ବୈଦେହୀ ଏପରି କହିବାରୁ ପବନନନ୍ଦନ ହନୁମାନ୍ ଯଥାଯଥଭାବରେ ରାମଙ୍କର ବର୍ଣ୍ଣନା କରିବାକୁ ଆରମ୍ଭକଲେ ।୫। "କମଳଲୋଚନେ ବୈଦେହି ! ଭାଗ୍ୟବଶତଃ ତୁମ୍ଭ ସ୍ୱାମୀଙ୍କର ଏବଂ ଲକ୍ଷ୍ମଣଙ୍କର ଅବୟବର ଗଠନ ଆଦି ଜାଣି ତୁମ୍ଭେ ମୋତେ ପଚାରୁଛ । ୬ ।

ଯାନି ରାମସ୍ୟ ଚିହ୍ନାନି ଲକ୍ଷ୍ମଣସ୍ୟ ଚ ଯାନି ବୈ ।
ଲକ୍ଷିତାନି ବିଶାଳାକ୍ଷି ବଦତଃ ଶୃଣୁ ତାନି ମେ । ୭।
ରାମଃ କମଲପତ୍ରାକ୍ଷଃ ପୂର୍ଣ୍ଣଚନ୍ଦ୍ରନିଭାନନଃ ।
ରୂପଦାକ୍ଷିଣ୍ୟସଂପନ୍ନଃ ପ୍ରସୂତୋ ଜନକାତ୍ମଜେ । ୮ ।
ତେଜସାଦିତ୍ୟସଂକାଶଃ କ୍ଷମୟା ପୃଥିବୀସମଃ ।
ବୃହସ୍ପତିସମୋ ବୁଦ୍ଧ୍ୟା ଯଶସା ବାସବୋପମଃ । ୯ ।
ରକ୍ଷିତା ଜୀବଲୋକସ୍ୟ ସ୍ୱଜନସ୍ୟ ଚ ରକ୍ଷିତା ।
ରକ୍ଷିତା ସ୍ୱସ୍ୟ ବୃତ୍ତସ୍ୟ ଧର୍ମସ୍ୟ ଚ ପରଂତପଃ । ୧୦ ।
ରାମୋ ଭାମିନି ଲୋକସ୍ୟ ଚାତୁର୍ବର୍ଣ୍ୟସ୍ୟ ରକ୍ଷିତା ।
ମର୍ଯାଦାନାଂ ଚ ଲୋକସ୍ୟ କର୍ତା କାରୟିତା ଚ ସଃ । ୧୧ ।
ଅର୍ଚିଷ୍ମାନର୍ଚିତୋଽତ୍ୟର୍ଥଂ ବ୍ରହ୍ମଚର୍ଯବ୍ରତେ ସ୍ଥିତଃ ।
ସାଧୂନାମୁପକାରଜ୍ଞଃ ପ୍ରଚାରଜ୍ଞଶ୍ଚ କର୍ମଣାମ୍ । ୧୨ ।
ରାଜନୀତ୍ୟାଂ ବିନୀତଶ୍ଚ ବ୍ରାହ୍ମଣାନାମୁପାସକଃ ।
ଜ୍ଞାନବାନ୍ ଶୀଲସଂପନ୍ନୋ ବିନୀତଶ୍ଚ ପରଂତପଃ । ୧୩ ।
ଯଜୁର୍ବେଦବିନୀତଶ୍ଚ ବେଦବିଦ୍ଭିଃ ସୁପୂଜିତଃ ।
ଧନୁର୍ବେଦେ ଚ ବେଦେ ଚ ବେଦାଙ୍ଗେଷୁ ଚ ନିଷ୍ଠିତଃ । ୧୪ ।

---

ବିଶାଳଲୋଚନେ ! ମୁଁ ରାମଙ୍କର ଏବଂ ଲକ୍ଷ୍ମଣଙ୍କର ଯେ ସବୁ ଚିହ୍ନ ଲକ୍ଷ୍ୟକରିଛି, ତାହା ସବୁ କହୁଛି, ତୁମ୍ଭେ ଶୁଣ ।୭। ଜନକନନ୍ଦିନି ! ରାମଙ୍କର ଚକ୍ଷୁ ପଦ୍ମପାଖୁଡ଼ାପରି ଏବଂ ମୁଖ ପୂର୍ଣ୍ଣଚନ୍ଦ୍ରସଦୃଶ । ସେ ରୂପ ଏବଂ ଦାକ୍ଷିଣ୍ୟସମନ୍ୱିତ ହୋଇ ଜନ୍ମଗ୍ରହଣ କରିଅଛନ୍ତି । ୮ । ସେ ତେଜରେ ଆଦିତ୍ୟ, କ୍ଷମାରେ ପୃଥିବୀ, ବୁଦ୍ଧିରେ ବୃହସ୍ପତି ଏବଂ ଯଶରେ ଇନ୍ଦ୍ରଙ୍କସମାନ ଅଟନ୍ତି ।୯। ସେ ପ୍ରାଣିଜଗତର,ସ୍ୱଜନଗଣଙ୍କର ସ୍ୱୀୟ ଚରିତ୍ରର ତଥା ଧର୍ମର ରକ୍ଷକ ଏବଂ ଶତ୍ରୁସୂଦନ ଅଟନ୍ତି ।୧୦। ହେ ଭାମିନି ! ସେ ଏ ଜଗତରେ ଚତୁର୍ବର୍ଣ୍ଣର ମର୍ଯ୍ୟାଦାର ଅନୁଷ୍ଠାନକାରୀ ଏବଂ ପ୍ରବର୍ତ୍ତକ ଅଟନ୍ତି ।୧୧। ସେ ସୂର୍ଯ୍ୟଙ୍କସଦୃଶ ତେଜଶାଳୀ ଏବଂ ସୂର୍ଯ୍ୟଙ୍କପରି ସର୍ବଦା ପୂଜାପାଆନ୍ତି । ସେ ବ୍ରହ୍ମଚର୍ଯ୍ୟ ବ୍ରତରେ ଦୃଢ଼ ରହିଥାନ୍ତି । ସାଧୁଲୋକମାନଙ୍କର କପରି ଉପକାର କରିବାକୁ ହେବ ତାହା ସେ ଜାଣନ୍ତି ଏବଂ ଅନୁଷ୍ଠିତ କାର୍ଯ୍ୟମାନଙ୍କର କପରି ପ୍ରଚାର କରିବାକୁ ହେବ ସେ ଜାଣନ୍ତି ।୧୨। ସେ ରାଜନୀତିରେ ସୁଶିକ୍ଷିତ ଏବଂ ବ୍ରାହ୍ମଣମାନଙ୍କର ଉପାସକ। ଶତ୍ରୁସୂଦନ ରାମ ଜ୍ଞାନବାନ୍ ସୁଶୀଳ ଏବଂ ବିନୀତ ଅଟନ୍ତି । ୧୩ । ସେ ଯଜୁର୍ବେଦରେ ସୁଶିକ୍ଷିତ ଏବଂ ବେଦବିତ୍ ବ୍ରାହ୍ମଣମାନଙ୍କଦ୍ୱାରା ସୁପୂଜିତ; ଧନୁର୍ବେଦ,

ବିପୁଲାଂସୋ ମହାବାହୁଃ କମ୍ବୁଗ୍ରୀବଃ ଶୁଭାନନଃ ।
ଗୂଢଜତ୍ରୁଃ ସୁତାମ୍ରାକ୍ଷୋ ରାମୋ ନାମ ଜନୈଃ ଶ୍ରୁତଃ । ୧୫ ।
ଦୁନ୍ଦୁଭିସ୍ୱନନିର୍ଘୋଷଃ ସ୍ନିଗ୍ଧବର୍ଣ୍ଣଃ ପ୍ରତାପବାନ୍ ।
ସମଶ୍ଚ ସୁବିଭକ୍ତାଙ୍ଗୋ ବର୍ଣ୍ଣଂ ଶ୍ୟାମଂ ସମାଶ୍ରିତଃ । ୧୬ ।
ତ୍ରିସ୍ଥିରସ୍ତ୍ରିପ୍ରଲମ୍ବଶ୍ଚ ତ୍ରିସମସ୍ତ୍ରିଷୁ ଚୋନ୍ନତଃ ।
ତ୍ରିତାମ୍ରସ୍ତ୍ରିଷୁ ଚ ସ୍ନିଗ୍ଧୋ ଗମ୍ଭୀରସ୍ତ୍ରିଷୁ ନିତ୍ୟଶଃ । ୧୭ ।
ତ୍ରିବଲୀମାଂସ୍ତ୍ର୍ୟବନତଶ୍ଚତୁର୍ବ୍ୟଙ୍ଗସ୍ତ୍ରିଶୀର୍ଷବାନ୍ ।
ଚତୁଷ୍କଲଶ୍ଚତୁର୍ଲେଖଶ୍ଚତୁଷ୍କିଷ୍କୁଶ୍ଚତୁଃସମଃ । ୧୮ ।
ଚତୁର୍ଦ୍ଦଶସମଦ୍ୱନ୍ଦ୍ୱଶ୍ଚତୁର୍ଦଂଷ୍ଟ୍ରଶ୍ଚତୁର୍ଗତିଃ ।
ମହୋଷ୍ଠହନୁନାସଶ୍ଚ ପଞ୍ଚସ୍ନିଗ୍ଧୋଽଷ୍ଟବଂଶବାନ୍ । ୧୯ ।

---

ବେଦ ଏବଂ ବେଦାଙ୍ଗ ସମ୍ବନ୍ଧରେ ମଧ୍ୟ ସୁପଣ୍ଡିତ । ୧୪ । ତାଙ୍କର ସ୍କନ୍ଧ ବିଶାଳ, ବାହୁ ଦୀର୍ଘ, ଗ୍ରୀବା କମ୍ବୁସଦୃଶ, ମୁଖ ମନୋହର, ଗ୍ରନ୍ଥିସମୂହ ମାଂସାବୃତ ଓ ଚକ୍ଷୁ ତାମ୍ରବର୍ଣ୍ଣ । ଲୋକମାନଙ୍କ ମଧ୍ୟରେ ସେ 'ରାମ'ନାମରେ ବିଖ୍ୟାତ ।୧୫। ତାଙ୍କର ସ୍ୱର ଦୁନ୍ଦୁଭିସଦୃଶ ଗମ୍ଭୀର ଓ ବର୍ଣ୍ଣ ସୁଚିକ୍କଣ । ସେ ପ୍ରତାପଶାଳୀ, ତାଙ୍କର ଅଙ୍ଗପ୍ରତ୍ୟଙ୍ଗ ସୁବିଭକ୍ତ ଏବଂ ସମାନ ଅନୁପାତବିଶିଷ୍ଟ; ଦେହର ବର୍ଣ୍ଣ ଶ୍ୟାମଳ । ୧୬ । ତାଙ୍କର ଊରୁ, ମଣିବନ୍ଧ ଓ ମୁଷ୍ଟି ଏହି ତିନୋଟି ଦୃଢ଼; ଭ୍ରୂ, ମୁଷ୍କ ଓ ବାହୁ ଏହି ତିନ ଅଙ୍ଗ ବିଶେଷଭାବରେ ଲମ୍ବିତ; କେଶାଗ୍ର, ବୃଷଣ, ଜାନୁ ଏହି ତିନ ଅଙ୍ଗ ସମାନ; ନାଭି, କୁକ୍ଷି ଏବଂ ବକ୍ଷ ଏହି ତିନ ଅଙ୍ଗ ଉନ୍ନତ; ନେତ୍ରପ୍ରାନ୍ତ, ନଖ ଏବଂ ପାପୁଲି ରକ୍ତବର୍ଣ୍ଣ; ପାଦରେଖା, କେଶ ଓ ଶିଶ୍ନ ମସୃଣ; ସ୍ୱର, ନାଭି ଓ ଗତି ଗମ୍ଭୀର; ଉଦର ତ୍ରିବଳୀସମ୍ପନ୍ନ; ପାଦତଳର ମଧ୍ୟଭାଗ ଏବଂ ଚୂଚୁକ ସମଭାବରେ ଅବନତ; ଗ୍ରୀବା, ନେତ୍ରଦ୍ୱୟ ଏବଂ ପୃଷ୍ଠଭାଗ ହ୍ରସ୍ୱ; ମସ୍ତକରେ ତିନୋଟି ଆବର୍ତ୍ତ ଅଛି; ଅଙ୍ଗୁଷ୍ଠମୂଳରେ ଚତୁର୍ବେଦରେ ପାରଦର୍ଶିତାସୂଚକ ଚାରିଟି ରେଖା; ଦେହ ଚାରିହାତ ଦୀର୍ଘ; ବାହୁ, ଊରୁ ଓ ଗଣ୍ଡଯୁଗଳ ସୁଗୋଲ; ଭ୍ରୂ, ନାଶାପୁଟ, ଚକ୍ଷୁ, କର୍ଣ୍ଣ, ଓଷ୍ଠ, ଚୂଚୁକ, କହୁଣି, ମଣିବନ୍ଧ, ଜାନୁ, ବୃଷଣ, କଟି, ହସ୍ତ, ପାଦ ଏବଂ ନିତମ୍ବଦ୍ୱୟ ପରସ୍ପର ସମାନ; ଦନ୍ତପଂକ୍ତିର ଉଭୟ ପାର୍ଶ୍ୱରେ ଚାରିଟିଲେଖାଏଁ ଶାସ୍ତ୍ରୋକ୍ତ ଲକ୍ଷଣସମ୍ପନ୍ନ ଦନ୍ତ ଅଛି । ତାଙ୍କର ଗମନ ସିଂହ, ଶାର୍ଦ୍ଦୂଳ, ଗଜ ଓ ବୃଷ ଏ ଚାରିଟିଙ୍କ ସହିତ ସମାନ; ଓଷ୍ଠ ମାଂସଳ, ହନୁ ଉନ୍ନତ ଏବଂ ନାଶା ଦୀର୍ଘ; ବାକ୍ୟ, ମୁଖ, ନଖ, ଲୋମ ଓ ଚର୍ମ ଏହି ପାଞ୍ଚଗୋଟି ଚିକ୍କଣ; ବାହୁଦ୍ୱୟ, କନିଷ୍ଠାଙ୍ଗୁଳିଦ୍ୱୟ ଜଙ୍ଘଦ୍ୱୟ ଓ ଊରୁଦ୍ୱୟ ଏ ଆଠଗୋଟି ସୁଦୀର୍ଘ; ମୁଖ, ନେତ୍ର, ମୁଖଗହ୍ୱର, ଜିହ୍ୱା, ଓଷ୍ଠ, ତାଳୁ, ସ୍ତନ, ନଖ, ହସ୍ତ ଓ ପଦ ଏହି ଦଶଟିରେ

ଦଶପଦ୍ମୋ ଦଶବୃହତ୍ତ୍ରିଭିର୍ବ୍ୟାପ୍ତୋ ଦ୍ୱିଶୁକ୍ଳବାନ୍ ।
ଷଡୁନ୍ନତୋ ନବତନୁସ୍ତ୍ରିଭିର୍ବ୍ୟାପ୍ନୋତି ରାଘବଃ । ୨୦ ।
ସତ୍ୟଧର୍ମରତଃ ଶ୍ରୀମାନ୍ ସଂଗ୍ରହାନୁଗ୍ରହେ ରତଃ ।
ଦେଶକାଳବିଭାଗଜ୍ଞଃ ସର୍ବଲୋକପ୍ରିୟମ୍ବଦଃ । ୨୧ ।
ଭ୍ରାତା ଚ ତସ୍ୟ ଚ ଦ୍ୱୈମାତ୍ରଃ ସୌମିତ୍ରିରମିତପ୍ରଭଃ ।
ଅନୁରାଗେଣ ରୂପେଣ ଗୁଣୈଶ୍ଚାପି ତଥାବିଧଃ । ୨୨ ।
ସ ସୁବର୍ଣ୍ଣଚ୍ଛବିଃ ଶ୍ରୀମାନ୍ରାମଃ ଶ୍ୟାମୋ ମହାଯଶାଃ ।
ତାବୁଭୌ ନରଶାର୍ଦ୍ଦୂଲୌ ତ୍ୱଦ୍ଦର୍ଶନକୃତୋତ୍ସବୌ । ୨୩ ।
ବିଚିନ୍ୱନ୍ତୌ ମହୀଂ କୃତ୍ସ୍ନାମସ୍ମାଭିଃ ସହ ସଂଗତୌ ।
ତ୍ୱାମେବ ମାର୍ଗମାଣୌ ତୌ ବିଚରନ୍ତୌ ବସୁନ୍ଧରାମ୍ । ୨୪ ।
ଦଦର୍ଶତୁର୍ମୃଗପତିଂ ପୂର୍ବଜେନାବରୋପିତମ୍ ।
ଋଶ୍ୟମୂକସ୍ୟ ମୂଳେ ତୁ ବହୁପାଦପସଂକୁଳେ । ୨୫ ।
ଭ୍ରାତୁର୍ଭୟାର୍ତ୍ତମାସୀନଂ ସୁଗ୍ରୀବଂ ପ୍ରିୟଦର୍ଶନମ୍ ।
ବୟଂ ଚ ହରିରାଜଂ ତଂ ସୁଗ୍ରୀବଂ ସତ୍ୟସଙ୍ଗରମ୍ । ୨୬ ।

---

ପଦ୍ମଚିହ୍ନ ଅଙ୍କିତ ଅଛି ଏବଂ ବକ୍ଷ, ମସ୍ତକ, ଲଲାଟ, ଗ୍ରୀବା, ବାହୁ, ପାଦ, ପୃଷ୍ଠ ଓ କର୍ଣ୍ଣ ଏହି ଦଶଟି ବିଶାଳ; ଶ୍ରୀ, ଯଶ ଏବଂ ତେଜ ଏ ତିନଟି ତାଙ୍କଠାରେ ବର୍ଦ୍ଧମାନ ଅଛି; ତାଙ୍କର ପିତୃକୁଳ ଏବଂ ମାତୃକୁଳ ନିଷ୍କଳଙ୍କ; କକ୍ଷ, କୁକ୍ଷି, ବକ୍ଷ, ନାସିକା, ସ୍କନ୍ଧ ଓ ଲଲାଟ ଏହି ଛଅଗୋଟି ଉନ୍ନତ ଏବଂ ଅଙ୍ଗୁଳିପର୍ବ, କେଶ, ଲୋମ, ନଖ, ତ୍ୱକ୍, ମେଢ୍ର, ଶ୍ମଶ୍ରୁ, ଦୃଷ୍ଟି ଏହି ନଅଗୋଟି ଅତି ସୂକ୍ଷ୍ମ । ରାମ ଯଥୋଚିତ କାଳବିଭାଗ କରି କାର୍ଯ୍ୟ ସମ୍ପାଦନ କରିଥାନ୍ତି ।୧୭-୨୦। ସେ ସତ୍ୟ ଓ ଧର୍ମରେ ରତ ଏବଂ ଶ୍ରୀମାନ୍; ଧନସଞ୍ଚୟ ଓ ତଦ୍ଦ୍ୱାରା ପ୍ରଜାମାନଙ୍କୁ ଅନୁଗ୍ରହୀତ କରିବାରେ ତତ୍ପର ଅଟନ୍ତି । ସେ ଦେଶକାଳ ଭେଦ ଜାଣନ୍ତି ଏବଂ ସବୁ ଲୋକଙ୍କ ପ୍ରତି ପ୍ରିୟବାଦୀ ୨୧। ତାଙ୍କର ବୈମାତ୍ରେୟ ଭ୍ରାତା ଅପରିମିତ ପ୍ରଭାସମ୍ପନ୍ନ ସୁମିତ୍ରାନନ୍ଦନ ଲକ୍ଷ୍ମଣ ଭ୍ରାତାଙ୍କର ରୂପ ଓ ଗୁଣରେ ତାହାଙ୍କରହିଁ ସମାନ ଅଟନ୍ତି । ୨୨ । ସେହି ଶ୍ରୀମାନ୍ ଲକ୍ଷ୍ମଣଙ୍କର ବର୍ଣ୍ଣ ସ୍ୱର୍ଣ୍ଣସଦୃଶ ଏବଂ ମହାଯଶା ରାମ ଶ୍ୟାମଳବର୍ଣ୍ଣ । ତୁମ୍ଭକୁ ଦେଖିଲେ ସେ ଦୁହିଙ୍କର ଅତୀବ ଆନନ୍ଦ ଜାତହୁଏ । ୨୩ । ସେମାନେ ସମସ୍ତ ପୃଥିବୀରେ ରାମଙ୍କୁ ଅନ୍ୱେଷଣ କରି କରି ଆମ୍ଭମାନଙ୍କ ସହିତ ଆସି ମିଳିତହେଲେ ଏବଂ ଜ୍ୟେଷ୍ଠଭ୍ରାତାଙ୍କ କର୍ତ୍ତୃକ ରାଜ୍ୟରୁ ନିର୍ବାସିତ ହୋଇ ଭ୍ରାତାଙ୍କ ଭୟରେ ବହୁ ବୃକ୍ଷପରିପୂର୍ଣ୍ଣ ଋଷ୍ୟମୂକ ପର୍ବତ ପାଦଦେଶରେ ବସିଥିବା ପ୍ରିୟଦର୍ଶନ ସୁଗ୍ରୀବଙ୍କୁ ଦେଖିଲେ । ଜ୍ୟେଷ୍ଠଭ୍ରାତାଙ୍କଦ୍ୱାରା ରାଜ୍ୟରୁ ବିତାଡ଼ିତ ହୋଇଥିବା ସେହି ସତ୍ୟପ୍ରତିଜ୍ଞ ବାନରରାଜ ସୁଗ୍ରୀବଙ୍କୁ ଆମ୍ଭେମାନେ ପରିଚର୍ଯ୍ୟା କରୁଥିଲୁଁ ।

ପରିଚର୍ଯ୍ୟାମହେ ରାଜ୍ୟାତ୍ପୂର୍ବଜେନାବରୋପିତମ୍ ।
ତାପସୌ ଚୀରବସନୌ ଧନୁଃପ୍ରବରପାଣିନୌ । ୨୭ ।
ସ ତୌ ଦୃଷ୍ଟ୍ୱା ନରବ୍ୟାଘ୍ରୌ ଧନ୍ୱିନୌ ବାନରର୍ଷଭଃ ।
ଅବପ୍ଲୁତୋ ଗିରେସ୍ତସ୍ୟ ଶିଖରଂ ଭୟମୋହିତଃ । ୨୮ ।
ତୟୋଃ ସମୀପମାମେବ ପ୍ରେଷୟାମାସ ସତ୍ୱରମ୍ ।
ତାବହଂ ପୁରୁଷବ୍ୟାଘ୍ରୌ ସୁଗ୍ରୀବବଚନାତ୍ ପ୍ରଭୂ । ୨୯ ।
ରୂପଲକ୍ଷଣସଂପନ୍ନୌ କୃତାଞ୍ଜଳିରୁପସ୍ଥିତଃ ।
ତୌ ପରିଜ୍ଞାତତତ୍ତ୍ୱାର୍ଥୌ ମୟା ପ୍ରୀତିସମନ୍ୱିତୌ । ୩୦ ।
ପୃଷ୍ଠମାରୋପ୍ୟ ତଂ ଦେଶଂ ପ୍ରାପିତୌ ପୁରୁଷର୍ଷଭୌ ।
ନିବେଦିତୌ ଚ ତତ୍ତ୍ୱେନ ସୁଗ୍ରୀବାୟ ମହାତ୍ମନେ । ୩୧ ।
ତୟୋରନ୍ୟୋନ୍ୟସଂଭାଷାଦ୍ ଭୃଶଂ ପ୍ରୀତିରଜାୟତ ।
ତତ୍ର ତୌ କୀର୍ତ୍ତିସଂପନ୍ନୌ ହରୀଶ୍ୱରନରେଶ୍ୱରୌ । ୩୨ ।
ପରସ୍ପରକୃତାଶ୍ୱାସୌ କଥୟା ପୂର୍ବବୃତ୍ତୟା ।
ତଂ ତତଃ ସାନ୍ତ୍ୱୟାମାସ ସୁଗ୍ରୀବଂ ଲକ୍ଷ୍ମଣାଗ୍ରଜଃ । ୩୩ ।
ସ୍ତ୍ରୀହେତୋର୍ବାଳିନା ଭ୍ରାତ୍ରା ନିରସ୍ତଂ ପୁରୁତେଜସା ।
ତତସ୍ତ୍ୱନ୍ନାଶଜଂ ଶୋକଂ ରାମସ୍ୟାକ୍ଲିଷ୍ଟକର୍ମଣଃ । ୩୪ ।

---

ଅନନ୍ତର ବାନରଶ୍ରେଷ୍ଠ ସୁଗ୍ରୀବ ସେହି ବଲ୍‌କଲ ବସନଧାରୀ, ଉତ୍କୃଷ୍ଟ ଧନୁର୍ଦ୍ଧାରୀ ଦୁଇ ନରଶ୍ରେଷ୍ଠଙ୍କୁ ଦେଖି ଅତିଶୟ ଭୟଭୀତ ହୋଇ ସେହି ପର୍ବତର ଶିଖର-ଦେଶକୁ ଡେଇଁ ଡେଇଁ ଉଠିଗଲେ । ୨୭-୨୮ । ସେ ମୋତେ ସଙ୍ଗେ ସଙ୍ଗେ ସେ ଦୁହିଁଙ୍କ ନିକଟକୁ ପଠାଇଲେ । ମୁଁ ସୁଗ୍ରୀବଙ୍କ କଥାରେ ସେହି ଦୁଇ ରୂପଲକ୍ଷଣ-ସମ୍ପନ୍ନ ନରଶ୍ରେଷ୍ଠ ପ୍ରଭୁଙ୍କ ନିକଟରେ କୃତାଞ୍ଜଳି ହୋଇ ଉପସ୍ଥିତ ହେଲି । ପ୍ରକୃତ ବୃତ୍ତାନ୍ତ ଜାଣି ସେ ଦୁହେଁ ପ୍ରୀତ ହେଲେ ଏବଂ ମୁଁ ସେହି ଦୁଇ ନରଶ୍ରେଷ୍ଠଙ୍କୁ ପୃଷ୍ଠରେ ବସାଇ ସେହି ସ୍ଥାନରେ ଆଣି ଉପସ୍ଥିତ କରାଇଲି ଏବଂ ଯଥାର୍ଥ-ଭାବରେ ସବୁ କଥା ମହାତ୍ମା ସୁଗ୍ରୀବଙ୍କୁ ଜଣାଇଲି । ୨୯-୩୧ । ସେ ଦୁହେଁ ପରସ୍ପର କଥାବାର୍ତ୍ତା ହେବାରୁ ସେହି ବାନରରାଜ ଏବଂ ନରରାଜଙ୍କ ମଧ୍ୟରେ ପ୍ରୀତି ଜାତହେଲା । ୩୨ । ପରସ୍ପର ପୂର୍ବ ବୃତ୍ତାନ୍ତମାନ କଥାବାର୍ତ୍ତା ହୋଇ ସେ ଦୁହେଁ ପରସ୍ପରକୁ ଆଶ୍ୱାସିତ କଲେ । ଅନନ୍ତର ଲକ୍ଷ୍ମଣାଗ୍ରଜ ରାମ ସ୍ତ୍ରୀଲାଗି ଭ୍ରାତା ବାଳୀଙ୍କଦ୍ୱାରା ବାହୁବଳରେ ପରାସ୍ତ ହୋଇ ବିତାଡ଼ିତ ହୋଇଥିବା ସୁଗ୍ରୀବଙ୍କୁ ସାନ୍ତ୍ୱନା ଦେଲେ । ତଦନନ୍ତର ତୁମର ଅପହରଣଜନିତ ଅକ୍ଲିଷ୍ଟକର୍ମା

ଲକ୍ଷ୍ମଣୋ ବାନରେନ୍ଦ୍ରାୟ ସୁଗ୍ରୀବାୟ ନ୍ୟବେଦୟତ୍ ।
ସ ଶ୍ରୁତ୍ୱା ବାନରେନ୍ଦ୍ରସ୍ତୁ ଲକ୍ଷ୍ମଣେନେରିତଂ ବଚଃ । ୩୫ ।
ତଦାସୀନ୍ନିଷ୍ପ୍ରଭୋଽତ୍ୟର୍ଥଂ ଗ୍ରହଗ୍ରସ୍ତ ଇବାଂଶୁମାନ୍ ।
ତତସ୍ତ୍ୱଦ୍‌ଗାତ୍ରଶୋଭୀନି ରକ୍ଷସା ହ୍ରିୟମାଣୟା । ୩୬ ।
ଯାନ୍ୟାଭରଣଜାଲାନି ପାତିତାନି ମହୀତଳେ ।
ତାନି ସର୍ବାଣି ରାମାୟ ଆନୀୟ ହରିୟୂଥପାଃ । ୩୭ ।
ସଂହୃଷ୍ଟା ଦର୍ଶୟାମାସୁର୍ଗତିଂ ତୁ ନ ବିଦୁସ୍ତବ ।
ତାନି ରାମାୟ ଦତ୍ତାନି ମୟୈବୋପହୃତାନି ଚ । ୩୮ ।
ସ୍ୱନବନ୍ତ୍ୟବକୀର୍ଣାନି ତସ୍ମିନ୍ ବିହତଚେତସି ।
ତାନ୍ୟଙ୍କେ ଦର୍ଶନୀୟାନି କୃତ୍ୱା ବହୁବିଧଂ ତଦା । ୩୯ ।
ତେନ ଦେବପ୍ରକାଶେନ ଦେବେନ ପରିଦେବିତମ୍ ।
ପ୍ରାଦୀପୟନ୍ଦାଶରଥେସ୍ତଦା ଶୋକହୁତାଶନମ୍ ।୪୦ ।
ଶୟିତଂ ଚ ଚିରଂ ତେନ ଦୁଃଖାର୍ତ୍ତେନ ମହାତ୍ମନା ।
ମୟାପି ବିବିଧୈର୍ବାକ୍ୟୈଃ କୃଚ୍ଛ୍ରାଦୁତ୍ଥାପିତଃ ପୁନଃ । ୪୧ ।

---

ରାମଙ୍କ ଶୋକବୃତ୍ତାନ୍ତ ଲକ୍ଷ୍ମଣ ବାନରରାଜ ସୁଗ୍ରୀବଙ୍କୁ ଜଣାଇଲେ । ବାନରରାଜ ସୁଗ୍ରୀବ ଲକ୍ଷ୍ମଣଙ୍କ କଥା ଶୁଣି ରାହୁଗ୍ରସ୍ତ ସୂର୍ଯ୍ୟଙ୍କ ପରି ମଳିନ ହୋଇଗଲେ । ରାକ୍ଷସ ତୁମ୍ଭଙ୍କୁ ହରଣ କରି ନେଉଥିବାବେଳେ ତୁମ୍ଭେ ଯେଉଁ ଅଙ୍ଗଶୋଭୀ ଅଳଙ୍କାର-ଗୁଡ଼ିକ ମହୀତଳରେ ନିକ୍ଷେପ କରିଥିଲ, ବାନର ଯୂଥପତିମାନେ ଅତିଶୟ ଆନନ୍ଦିତ ହୋଇ ସେ ସମସ୍ତ ଆଣି ରାମଙ୍କୁ ଦେଖାଇଲେ; ମାତ୍ର ତୁମ୍ଭଙ୍କୁ ସେତେବେଳେ ସେ କେଉଁ ଆଡ଼କୁ ନେଲା ତାହା ସେମାନେ ଜାଣି ନ ଥିଲେ । ସେହି ଅଳଙ୍କାର-ଗୁଡ଼ିକ ଯେତେବେଳେ ଝଂଝଣ ଶବ୍ଦ କରି ପଡ଼ିଯାଇଥିଲା, ସେତେବେଳେ ମୁଁ ସେଗୁଡ଼ିକ ଗୋଟାଇ ରଖିଥିଲି । ସେ ସମସ୍ତ ରାମଙ୍କୁ ଦିଆହେଲା ଏବଂ ସେ ସେଗୁଡ଼ିକ ଦେଖି ମୂର୍ଚ୍ଛିତପ୍ରାୟ ହୋଇଗଲେ । ସେହି ସୁନ୍ଦର ଅଳଙ୍କାରଗୁଡ଼ିକ କୋଡ଼ରେ ଧରି ଦେବସଦୃଶ ଦୀପ୍ତିମାନ୍ ରାମ ସେତେବେଳେ ବହୁବିଧ ବିଳାପ କରିବାକୁ ଲାଗିଲେ । ସେତେବେଳେ ଦାଶରଥିଙ୍କର ଶୋକବହ୍ନି ପ୍ରଜ୍ୱଳିତ ହୋଇ ଉଠିଲା ।୩୬-୪୦ । ସେ ମହାତ୍ମା ଦୁଃଖରେ କାତର ହୋଇ ଭୂମିତଳରେ ଶୋଇପଡ଼ିଲେ । ମୁଁ ନାନାବିଧ କଥା କହି ବହୁ କଷ୍ଟରେ ପୁଣି ତାଙ୍କୁ ଉଠାଇଲି । ।୪୧। ରାଘବ ଲକ୍ଷ୍ମଣଙ୍କ ସହିତ ସେଗୁଡ଼ିକ ଦେଖି ଏବଂ ଦେଖାଇ ସୁଗ୍ରୀବଙ୍କ ନିକଟରେ

ତାନି ଦୃଷ୍ଟ୍ୱା ମହାର୍ହାଣି ଦର୍ଶୟିତ୍ୱା ମୁହୁର୍ମୁହୁଃ ।
ରାଘବଃ ସହସୌମିତ୍ରିଃ ସୁଗ୍ରୀବେ ସଂନ୍ୟବେଶୟତ୍ ।୪୨।
ସ ତବାଦର୍ଶନାଦାର୍ୟେ ରାଘବଃ ପରିତପ୍ୟତେ ।
ମହତା ଜ୍ୱଲତା ନିତ୍ୟମଗ୍ନିନେବାଗ୍ନିପର୍ବତଃ ।୪୩।
ତ୍ୱତ୍କୃତେ ତମନିଦ୍ରା ଚ ଶୋକଶ୍ଚିନ୍ତା ଚ ରାଘବମ୍ ।
ତାପୟନ୍ତି ମହାତ୍ମାନମଗ୍ନ୍ୟଗାରମିବାଗ୍ନୟଃ ।୪୪।
ତବାଦର୍ଶନଶୋକେନ ରାଘବଃ ପରିଚାଲ୍ୟତେ ।
ମହତା ଭୂମିକମ୍ପେନ ମହାନିବ ଶିଲୋଚ୍ଚୟଃ ।୪୫।
କାନନାନି ସୁରମ୍ୟାଣି ନଦୀଃ ପ୍ରସ୍ରବଣାନି ଚ ।
ଚରନ୍ନ ରତିମାପ୍ନୋତି ତ୍ୱାମପଶ୍ୟନ୍ନୃପାତ୍ମଜେ ।୪୬।
ସ ତ୍ୱାଂ ମନୁଜଶାର୍ଦ୍ଦୂଲଃ କ୍ଷିପ୍ରଂ ପ୍ରାପ୍ସ୍ୟତି ରାଘବଃ ।
ସମିତ୍ରବାନ୍ଧବଂ ହତ୍ୱା ରାବଣଂ ଜନକାତ୍ମଜେ ।୪୭।
ସହିତୌ ରାମସୁଗ୍ରୀବାବୁଭାବକୁରୁତାଂ ତଦା ।
ସମୟଂ ବାଲିନଂ ହନ୍ତୁଂ ତବ ଚାନ୍ୱେଷଣଂ ପ୍ରତି ।୪୮।
ତତସ୍ତାଭ୍ୟାଂ କୁମାରାଭ୍ୟାଂ ବୀରାଭ୍ୟାଂ ସ ହରୀଶ୍ୱରଃ ।
କିଷ୍କିନ୍ଧାଂ ସମୁପାଗମ୍ୟ ବାଲୀ ଯୁଦ୍ଧେ ନିପାତିତଃ ।୪୯।

---

ରଖାଇଦେଲେ ।୪୨। ହେ ଆର୍ୟେ ! ସତତ ପ୍ରଜ୍ୱଳିତ ଅଗ୍ନିଦ୍ୱାରା ଆଗ୍ନେୟ ପର୍ବତ ଉତ୍ତପ୍ତ ହେଲାପରି, ସେହି ରାମ ତୁମ୍ଭର ଅଦର୍ଶନରେ ପରିତପ୍ତ ହେଉଅଛନ୍ତି ।୪୩। ଅଗ୍ନିମାନେ ଅଗ୍ନିଗୃହକୁ ଯେପରି ଉତ୍ତପ୍ତ କରନ୍ତି, ସେହିପରି ତୁମ୍ଭଲାଗି ଅନିଦ୍ରା, ଶୋକ ଏବଂ ଚିନ୍ତା ରାଘବଙ୍କୁ ପରିତପ୍ତ କରୁଅଛି ।୪୪। ମହାଭୂମିକମ୍ପ-ଦ୍ୱାରା ମହାପର୍ବତ ପରିଚାଳିତ ହେବାପରି, ତୁମ୍ଭଙ୍କୁ ନ ଦେଖି, ରାଘବ ଶୋକରେ ଅତ୍ୟନ୍ତ ବିଚଳିତ ହୋଇପଡ଼ୁଛନ୍ତି ।୪୫। ହେ ରାଜନନ୍ଦନି ! ବହୁ ମନୋହର କାନନ, ନଦୀ ଓ ପ୍ରସ୍ରବଣମାନଙ୍କରେ ବିଚରଣ କରୁଥିଲେ ମଧ୍ୟ ତୁମ୍ଭଙ୍କୁ ନ ଦେଖି ସେ କୌଣସିଥିରେ ପ୍ରୀତି ଲାଭ କରୁ ନାହାନ୍ତି ।୪୬। ହେ ଜନକନନ୍ଦନି ! ସେହି ନରସିଂହ ରଘୁନନ୍ଦନ ଅବିଳମ୍ବେ ରାବଣକୁ ସବାନ୍ଧବରେ ନିହତକରି ତୁମ୍ଭଙ୍କୁ ଲାଭ କରିବେ ।୪୭। ଅନନ୍ତର ରାମ ଓ ସୁଗ୍ରୀବ ଉଭୟେ ମିଶି ସେତେବେଳେ ବାଳୀକୁ ସଂହାର କରିବା ଏବଂ ତୁମ୍ଭଙ୍କୁ ଅନ୍ୱେଷଣ କରିବା ପାଇଁ ପରସ୍ପର ପ୍ରତିଜ୍ଞା କଲେ ।୪୮। ତହିଁ ଉତ୍ତାରୁ ସେହି ବାନରରାଜ ସୁଗ୍ରୀବ ସେ ଦୁଇ ବୀରକୁମାରଙ୍କ ସଙ୍ଗରେ ଯାଇ କିଷ୍କିନ୍ଧାକୁ ଆସିଲେ ଏବଂ ଯୁଦ୍ଧରେ ବାଳୀକୁ ନିହତ କରାଇଲେ ।୪୯।

ତତୋ ନିହତ୍ୟ ତରସା ରାମୋ ବାଲିନମାହବେ ।
ସର୍ବର୍କ୍ଷହରିସଂଘାନାଂ ସୁଗ୍ରୀବମକରୋତ୍ପତିମ୍ । ୫୦ ।
ରାମସୁଗ୍ରୀବୟୋରୈକ୍ୟଂ ଦେବ୍ୟେବଂ ସମଜାୟତ ।
ହନୂମନ୍ତଂ ଚ ମାଂ ବିଦ୍ଧି ତୟୋର୍ଦୂତମୁପାଗତମ୍ । ୫୧ ।
ସ୍ୱଂ ରାଜ୍ୟଂ ପ୍ରାପ୍ୟ ସୁଗ୍ରୀବଃ ସ୍ୱାନାନୀୟ ମହାକପୀନ୍ ।
ତ୍ୱଦର୍ଥଂ ପ୍ରେଷୟାମାସ ଦିଶୋ ଦଶ ମହାବଲାନ୍ । ୫୨ ।
ଆଦିଷ୍ଟା ବାନରେନ୍ଦ୍ରେଣ ସୁଗ୍ରୀବେଣ ମହୌଜସଃ ।
ଅଦ୍ରିରାଜପ୍ରତୀକାଶାଃ ସର୍ବତଃ ପ୍ରସ୍ଥିତା ମହୀମ୍ । ୫୩ ।
ତତସ୍ତେ ମାର୍ଗମାଣା ବୈ ସୁଗ୍ରୀବବଚନାତୁରାଃ ।
ଚରନ୍ତି ବସୁଧାଂ କୃତ୍ସ୍ନାଂ ବୟମନ୍ୟେ ଚ ବାନରାଃ । ୫୪ ।
ଅଙ୍ଗଦୋ ନାମ ଲକ୍ଷ୍ମୀବାନ୍ବାଲିସୂନୁର୍ମହାବଲଃ ।
ପ୍ରସ୍ଥିତଃ କପିଶାର୍ଦ୍ଦୂଲସ୍ତ୍ରିଭାଗବଲସଂବୃତଃ । ୫୫ ।
ତେଷାଂ ନୋ ବିପ୍ରଣଷ୍ଟାନାଂ ବିନ୍ଧ୍ୟେ ପର୍ବତସତ୍ତମେ ।
ଭୃଶଂ ଶୋକପରୀତାନାମହୋରାତ୍ରଗଣା ଗତାଃ । ୫୬ ।

---

ରାମ ବଳଦ୍ୱାରା ଯୁଦ୍ଧରେ ବାଳୀକୁ ନିହତକରି ସୁଗ୍ରୀବଙ୍କୁ ସମସ୍ତ ବାନର ଏବଂ ଭଲ୍ଲୁକଙ୍କର ରାଜା କରାଇଲେ । ୫୦ । ହେ ଦେବି ! ଏହିପରିଭାବରେ ରାମ ଓ ସୁଗ୍ରୀବଙ୍କ ମଧ୍ୟରେ ମିତ୍ରତା ଜାତହେଲା । ମୁଁ ହନୁମାନ ସେହି ଦୁହିଁଙ୍କର ଦୂତରୂପେ ଏଠାକୁ ଆସିଅଛି, ଏହା ତୁମ୍ଭେ ଜାଣ । ୫୧ । ସୁଗ୍ରୀବ ନିଜର ରାଜ୍ୟ ଲାଭକରି ନିଜ ଅଧୀନସ୍ଥ ମହାବଳୀ ପ୍ରଧାନ ପ୍ରଧାନ ବାନରମାନଙ୍କୁ ଏକତ୍ର କରାଇ ତୁମ୍ଭର ଅନ୍ୱେଷଣ ନିମନ୍ତେ ଦଶ ଦିଗକୁ ପଠାଇଲେ । ୫୨ । ବାନରରାଜ ସୁଗ୍ରୀବଙ୍କର ଆଦେଶ ପାଇ ପର୍ବତରାଜସଦୃଶ ବିଶାଳକାୟ ମହାତେଜସ୍ୱୀ ବାନରମାନେ ପୃଥିବୀର ଚାରି ଆଡ଼କୁ ପ୍ରସ୍ଥାନ କରିଛନ୍ତି । ୫୩ । ସୁଗ୍ରୀବଙ୍କ ଆଜ୍ଞାରେ ଭୀତହୋଇ ଆମ୍ଭେମାନେ ଓ ଅନ୍ୟ ବାନରମାନେ ସେହି ସମୟଠାରୁ ତୁମ୍ଭଙ୍କୁ ଅନ୍ୱେଷଣ କରି କରି ସମଗ୍ର ପୃଥିବୀ ପରିଭ୍ରମଣ କରୁଅଛୁଁ । ୫୪ । ବାଳୀଙ୍କର ପୁତ୍ର ଅଙ୍ଗଦ ନାମକ ଶ୍ରୀମାନ୍ ମହାବଳୀ ବାନରଶ୍ରେଷ୍ଠ ତିନିଭାଗ ସୈନ୍ୟ ସଙ୍ଗରେ ଘେନି ଯାତ୍ରା କରିଥିଲେ । ୫୫ । ସେହି ଦଳର ଆମ୍ଭେମାନେ ପର୍ବତଶ୍ରେଷ୍ଠ ବିନ୍ଧ୍ୟାଚଳରେ ପଥଭ୍ରଷ୍ଟ ହୋଇଯିବାରୁ ନିତାନ୍ତ ଶୋକାତୁରଭାବରେ ବହୁ ଦିନରାତି ବିତିଗଲା । ୫୬ ।

ତେ ବୟଂ କାର୍ଯନୈରାଶ୍ୟାତ୍ କାଲସ୍ୟାତିକ୍ରମେଣ ଚ ।
ଭୟାଚ୍ଚ କପିରାଜସ୍ୟ ପ୍ରାଣାଂସ୍ତ୍ୟକ୍ତୁମୁପସ୍ଥିତାଃ । ୫୭ ।
ବିଚିତ୍ୟ ଗିରିଦୁର୍ଗାଣି ନଦୀପ୍ରସ୍ରବଣାନି ଚ ।
ଅନାସାଦ୍ୟ ପଦଂ ଦେବ୍ୟାଃ ପ୍ରାଣାଂସ୍ତ୍ୟକ୍ତୁଂ ବ୍ୟବସ୍ଥିତାଃ ।୫୮।
ତତସ୍ତସ୍ୟ ଗିରେର୍ମୂର୍ଧ୍ନି ବୟଂ ପ୍ରାୟମୁପାସ୍ମହେ ।
ଦୃଷ୍ଟ୍ୱା ପ୍ରାୟୋପବିଷ୍ଟାଂଶ୍ଚ ସର୍ବାନ୍ ବାନରପୁଙ୍ଗବାନ୍ । ୫୯ ।
ଭୃଶଂ ଶୋକାର୍ଣବେ ମଗ୍ନଃ ପର୍ଯଦେବୟଦଙ୍ଗଦଃ ।
ତବ ନାଶଂ ଚ ବୈଦେହି ବାଲିନଶ୍ଚ ତଥା ବଧମ୍ ।୬୦ ।
ପ୍ରାୟୋପବେଶମସ୍ମାକଂ ମରଣଂ ଚ ଜଟାୟୁଷଃ ।
ତେଷାଂ ନଃ ସ୍ୱାମିସଂଦେଶାନ୍ନିରାଶାନାଂ ମୁମୂର୍ଷତାମ୍ । ୬୧ ।
କାର୍ଯହେତୋରିହାୟାତଃ ଶକୁନିର୍ବୀର୍ଯବାନ୍ମହାନ୍ ।
ଗୃଧ୍ରରାଜସ୍ୟ ସୋଦର୍ଯଃ ସଂପାତିର୍ନାମ ଗୃଧ୍ରରାଟ୍ । ୬୨ ।
ଶ୍ରୁତ୍ୱା ଭ୍ରାତୃବଧଂ କୋପାଦିଦଂ ବଚନମବ୍ରବୀତ୍ ।
ଯବୀୟାନ୍କେନ ମେ ଭ୍ରାତା ହତଃ କ୍ୱ ଚ ନିପାତିତଃ । ୬୩ ।

---

ଏହିପରିଭାବରେ ଆମ୍ଭେମାନେ କାର୍ଯ୍ୟ ସମ୍ପାଦନ ବିଷୟରେ ନିରାଶ ହେବାରୁ, ଏବଂ ନିର୍ଦ୍ଦିଷ୍ଟ ସମୟ ଅତିକ୍ରାନ୍ତ ହୋଇଯିବାରୁ, କପିରାଜଙ୍କ ଭୟରେ ଭୀତହୋଇ ପ୍ରାଣତ୍ୟାଗ କରିବା ନିମନ୍ତେ ଉଦ୍ୟତ ହୋଇଥିଲୁଁ । ୫୭ । ବିବିଧ ଗିରି, ଦୁର୍ଗ, ନଦୀ ଏବଂ ପ୍ରସ୍ରବଣସମୂହ ଅନ୍ୱେଷଣ କରି ମଧ୍ୟ ଆପଣଙ୍କର ଅନୁସନ୍ଧାନ ନ ପାଇ ଆମ୍ଭେମାନେ ଜୀବନ ତ୍ୟାଗକରିବାକୁ କୃତନିଶ୍ଚୟ ହେଲୁଁ । ୫୮ । ଅନନ୍ତର ଆମ୍ଭେମାନେ ସେହି ପର୍ବତର ଶିଖରଦେଶରେ ପ୍ରାୟୋପବେଶନ କଲୁଁ । ସବୁ ବାନରଶ୍ରେଷ୍ଠଙ୍କୁ ପ୍ରାୟୋପବେଶନ କରିବାର ଦେଖି ଅଙ୍ଗଦ ଶୋକ-ସାଗରରେ ନିମଗ୍ନହୋଇ ଅତିଶୟ ବିଳାପ କରିବାକୁ ଲାଗିଲେ । ହେ ବୈଦେହି !, ସେ ତୁମ୍ଭର ଅପହରଣ, ବାଲୀର ବଧ, ଆମ୍ଭମାନଙ୍କର ପ୍ରାୟୋପବେଶନ ଏବଂ ଜଟାୟୁଙ୍କର ମରଣ ଏହି ସବୁ କଥା ବାହୁନି ବିଳାପକଲେ । ଆମ୍ଭମାନଙ୍କର ପ୍ରଭୁଙ୍କର ଆଦେଶ ଅତି କଠୋର ଥିଲା । ସେ ଆଦେଶ ପାଳନ କରିବାରେ ଆମ୍ଭମାନେ ନିରାଶ ହୋଇ ମରିବାକୁ ବସିଥିଲୁଁ । ଏହିପରି ସମୟରେ ଆମ୍ଭମାନଙ୍କ କାର୍ଯ୍ୟସିଦ୍ଧି ଲାଗିକି ଗୃଧ୍ରରାଜ ଜଟାୟୁଙ୍କର ସହୋଦର ସମ୍ପାତି ନାମକ ମହାକାୟ ବୀର୍ଯ୍ୟବାନ୍ ଗୃଧ୍ର-ରାଜ ପକ୍ଷୀ ସେଠାରେ ଆସି ଉପସ୍ଥିତ ହେଲେ । ୫୯-୬୨ । ସେ ତାଙ୍କ ଭ୍ରାତାଙ୍କର ନିଧନବାର୍ତ୍ତା ଶୁଣି କ୍ରୋଧରେ କହିଲେ, 'ମୋର କନିଷ୍ଠ ଭ୍ରାତାକୁ କିଏ କେଉଁଠାରେ ମାରି ପକାଇଅଛି ? । ୬୩ । ହେ ବାନରଶ୍ରେଷ୍ଠଗଣ ! ମୋର ଇଚ୍ଛା,

ଏତଦାଖ୍ୟାତୁମିଚ୍ଛାମି ଭବଦ୍ଭିର୍ବାନରୋତ୍ତମାଃ ।
ଅଙ୍ଗଦୋଽକଥୟତ୍ତସ୍ୟ ଜନସ୍ଥାନେ ମହଦ୍‌ବଧମ୍ । ୬୪ ।
ରକ୍ଷସା ଭୀମରୂପେଣ ତ୍ୱାମୁଦ୍ଦିଶ୍ୟ ଯଥାର୍ଥତଃ ।
ଜଟାୟୋସ୍ତୁ ବଧଂ ଶ୍ରୁତ୍ୱା ଦୁଃଖିତଃ ସୋଽରୁଣାତ୍ମଜଃ । ୬୫ ।
ତ୍ୱାମାହ ସ ବରାରୋହେ ବସନ୍ତୀଂ ରାବଣାଲୟେ ।
ତସ୍ୟ ତଦ୍‌ବଚନଂ ଶ୍ରୁତ୍ୱା ସଂପାତେଃ ପ୍ରୀତିବର୍ଧନମ୍ । ୬୬ ।
ଅଙ୍ଗଦପ୍ରମୁଖାଃ ସର୍ବେ ତତଃ ପ୍ରସ୍ଥାପିତା ବୟମ୍ ।
ବିନ୍ଧ୍ୟାଦୁତ୍ଥାୟ ସଂପ୍ରାପ୍ତା ସାଗରସ୍ୟାନ୍ତମୁତ୍ତରମ୍ । ୬୭ ।
ତ୍ୱଦ୍ଦର୍ଶନେ କୃତୋତ୍ସାହା ହୃଷ୍ଟାଃ ପୁଷ୍ଟାଃ ପ୍ଲବଙ୍ଗମାଃ ।
ଅଙ୍ଗଦପ୍ରମୁଖାଃ ସର୍ବେ ବେଲୋପାନ୍ତମୁପାଗତାଃ । ୬୮ ।
ଚିନ୍ତାଂ ଜଗ୍ମୁଃ ପୁନର୍ଭୀମାଂ ତ୍ୱଦ୍ଦର୍ଶନସମୁତ୍ସୁକାଃ ।
ଅଥାହଂ ହରିସୈନ୍ୟସ୍ୟ ସାଗରଂ ଦୃଶ୍ୟ ସୀଦତଃ ।୬୯ ।
ବ୍ୟବଧୂୟ ଭୟଂ ତୀବ୍ରଂ ଯୋଜନାନାଂ ଶତଂ ପ୍ଲୁତଃ ।
ଲଙ୍କା ଚାପି ମୟା ରାତ୍ରୌ ପ୍ରବିଷ୍ଟା ରାକ୍ଷସାକୁଳା । ୭୦ ।

---

ତୁମ୍ଭେମାନେ ମୋତେ ସେକଥା କହ ।" ତୁମ୍ଭଲାଗି ଭୀମରୂପୀ ରାକ୍ଷସଦ୍ୱାରା ଜନସ୍ଥାନରେ ସେହି ମହାତ୍ମାଙ୍କ ନିଧନ ବିଷୟକ ସମ୍ବାଦ ଅଙ୍ଗଦ ଯଥାଯଥଭାବରେ ତାଙ୍କ ନିକଟରେ ବର୍ଣ୍ଣନା କଲେ । ହେ ସୁଶ୍ରୋଣି ! ଅରୁଣନନ୍ଦନ ସମ୍ପାତି ଜଟାୟୁଙ୍କ ବଧକଥା ଶୁଣି ଦୁଃଖିତ ହୋଇ ତୁମ୍ଭେ ରାବଣଗୃହରେ ବାସକରୁଅଛ ବୋଲି ଆମମାନଙ୍କୁ କହିଲେ । ସମ୍ପାତିଙ୍କର ଏହି ପ୍ରୀତିପ୍ରଦ କଥା ଶୁଣି ଅଙ୍ଗଦ ପ୍ରଭୃତି ଆମେମାନେ ସମସ୍ତେ ସେଠାରୁ ପ୍ରସ୍ଥାନକଲୁଁ । ବିନ୍ଧ୍ୟପର୍ବତରୁ ଉଠି ଆମ୍ଭେମାନେ ସମୁଦ୍ରର ଉତ୍ତର କୂଳରେ ଆସି ଉପସ୍ଥିତ ହେଲୁଁ । ୬୩-୬୭ । ତୁମ୍ଭଙ୍କୁ ଦେଖିବା ପାଇଁ ଉତ୍ସାହିତ, ଆନନ୍ଦିତ ଏବଂ ପ୍ରୀତହୋଇ ଅଙ୍ଗଦ ପ୍ରଭୃତି ବାନରମାନେ ସମସ୍ତେ ସମୁଦ୍ରତୀରରେ ଆସି ଉପସ୍ଥିତ ହେଲେ । ୬୮ । ତୁମ୍ଭର ଦର୍ଶନନିମନ୍ତେ ସମୁତ୍ସୁକ ବାନରମାନଙ୍କର ପୁଣି ଭୀଷଣ ଚିନ୍ତା ଉପସ୍ଥିତ ହେଲା । ବାନରସେନାମାନେ ସମୁଦ୍ରକୁ ଦେଖି ଭଗ୍ନୋତ୍ସାହ ଏବଂ ଅବସନ୍ନ ହେବାର ଦେଖି ମୁଁ ସେମାନଙ୍କର ସେହି ଘୋର ଭୟ ଅପନୋଦନ କରି ଶତଯୋଜନ ଡେଇଁ ରାତିରେ ରାକ୍ଷସ-ପରିପୂର୍ଣ୍ଣ ଲଙ୍କାରେ ପ୍ରବେଶ କଲି । ୬୯-୭୦ । ମୁଁ ରାବଣକୁ ଦେଖିଲି ଏବଂ

ରାବଣଶ୍ଚ ମୟା ଦୃଷ୍ଟସ୍ତ୍ୱଂ ଚ ଶୋକନିପୀଡ଼ିତା ।
ଏତତ୍ତେ ସର୍ବମାଖ୍ୟାତଂ ଯଥାବୃତ୍ତମନିନ୍ଦିତେ । ୭୧ ।
ଅଭିଭାଷସ୍ୱ ମାଂ ଦେବି ଦୂତୋ ଦାଶରଥେରହମ୍ ।
ତ୍ୱତ୍କୃତେ ରାମକୃତୋଦ୍ୟୋଗଂ ତ୍ୱନ୍ନିମିତ୍ତମିହାଗତମ୍ । ୭୨ ।
ସୁଗ୍ରୀବସଚିବଂ ଦେବି ବୁଧ୍ୟସ୍ୱ ପବନାତ୍ମଜମ୍ ।
କୁଶଳୀ ତବ କାକୁତ୍ସ୍ଥଃ ସର୍ବଶସ୍ତ୍ରଭୃତାଂ ବରଃ । ୭୩ ।
ଗୁରୋରାରାଧନେ ଯୁକ୍ତୋ ଲକ୍ଷ୍ମଣଃ ଶୁଭଲକ୍ଷଣଃ ।
ତସ୍ୟ ବୀର୍ଯ୍ୟବତୋ ଦେବି ଭର୍ତ୍ତୁସ୍ତବ ହିତେ ରତଃ । ୭୪ ।
ଅହମେକସ୍ତୁ ସଂପ୍ରାପ୍ତଃ ସୁଗ୍ରୀବବଚନାଦିହ ।
ମୟେୟମସହାୟେନ ଚରତା କାମରୂପିଣା । ୭୫ ।
ଦକ୍ଷିଣା ଦିଗନୁକ୍ରାନ୍ତା ତ୍ୱନ୍ମାର୍ଗବିଚୟୈଷିଣା ।
ଦିଷ୍ଟ୍ୟାହଂ ହରିସୈନ୍ୟାନାଂ ତ୍ୱନ୍ନାଶମନୁଶୋଚତାମ୍ । ୭୬ ।
ଅପନେଷ୍ୟାମି ସଂତାପଂ ତବାଭିଗମଶାସନାତ୍ ।
ଦିଷ୍ଟ୍ୟା ହି ନ ମମ ବ୍ୟର୍ଥଂ ସାଗରସ୍ୟେହ ଲଙ୍ଘନମ୍ । ୭୭ ।
ପ୍ରାପ୍ସ୍ୟାମ୍ୟହମିଦଂ ଦେବି ତ୍ୱଦ୍ଦର୍ଶନକୃତଂ ଯଶଃ ।
ରାଘବଶ୍ଚ ମହାବୀର୍ଯ୍ୟଃ କ୍ଷିପ୍ରଂ ତ୍ୱାମଭିପତ୍ସ୍ୟତେ । ୭୮ ।

---

ଶୋକାଭିଭୂତା ତୁମ୍ଭଙ୍କୁ ମଧ୍ୟ ଦେଖିଲି । ହେ ଅନିନ୍ଦିତେ ! ଯାହା ଯାହା ଘଟିଥିଲା, ସେ ସମସ୍ତ ମୁଁ ତୁମ୍ଭଙ୍କୁ ଏବେ କହିଲି । ୭୧ । ସୁତରାଂ ହେ ଦେବି ! ମୋ ସହିତ କଥାବାର୍ତ୍ତା କର । ମୁଁ ଦଶରଥନନ୍ଦନ ରାମଙ୍କର ଦୂତ । ରାମଙ୍କ କାର୍ଯ୍ୟରେ ଉଦ୍ୟୋଗୀ ହୋଇ ତୁମ୍ଭପାଇଁ ମୁଁ ଏଠାକୁ ଆସିଅଛି । ୭୨ । ହେ ଦେବି ! ସୁଗ୍ରୀବଙ୍କର ମନ୍ତ୍ରୀ, ପବନଙ୍କର ପୁତ୍ର ବୋଲି ମୋତେ ଜାଣ । ସମସ୍ତ ଶସ୍ତ୍ରଧାରୀଙ୍କମଧ୍ୟରେ ଶ୍ରେଷ୍ଠ ତୁମ୍ଭର କାକୁତ୍ସ୍ଥ କୁଶଳରେ ଅଛନ୍ତି । ୭୩ । ଶୁଭଲକ୍ଷଣସମ୍ପନ୍ନ ଲକ୍ଷ୍ମଣ ମଧ୍ୟ ଗୁରୁସେବାରେ ତତ୍ପର ହୋଇ ତୁମ୍ଭର ବୀର୍ଯ୍ୟବାନ୍ ସ୍ୱାମୀଙ୍କ ହିତସାଧନରେ ନିରତ ରହିଛନ୍ତି ।୭୪। କାମରୂପୀ ଅସହାୟ ମୁଁ ଏକାକୀ ସୁଗ୍ରୀବଙ୍କ ଆଦେଶାନୁସାରେ ତୁମ୍ଭଙ୍କୁ ଅନ୍ୱେଷଣ କରିବାପାଇଁ ଦକ୍ଷିଣ ଦିଗକୁ ଅବଲମ୍ବନକରି ଏଠାରେ ଆସି ପହଞ୍ଚିଅଛି । ବାନର-ସୈନ୍ୟମାନେ ତୁମ୍ଭଙ୍କୁ ନ ଦେଖି ଅନୁଶୋଚନା କରୁଅଛନ୍ତି । ସୌଭାଗ୍ୟର କଥା ଯେ ମୁଁ ତୁମଙ୍କୁ ପାଇଥିବାର ସମ୍ବାଦ ଦେଇ ସେମାନଙ୍କର ସନ୍ତାପ ଦୂରକରିବି । ହେ ଦେବି ! ଭାଗ୍ୟର କଥା ଯେ ମୋର ସାଗରଲଙ୍ଘନ ବୃଥା ହୋଇ ନାହିଁ । ୭୫-୭୭ । ହେ ଦେବି ! ମୋର ଭାଗ୍ୟ ଯେ ମୁଁ ତୁମ୍ଭର ଦର୍ଶନଜନିତ ଯଶ ଲାଭକରିବି ଏବଂ ମହାବୀର୍ଯ୍ୟ ରଘୁନନ୍ଦନ ଅତିଶୀଘ୍ର ରାକ୍ଷସରାଜ ରାବଣକୁ ପୁତ୍ର ଓ ବାନ୍ଧବମାନଙ୍କ

ସପୁତ୍ରବାନ୍ଧବଂ ହତ୍ୱା ରାବଣଂ ରାକ୍ଷସାଧିପମ୍ ।
ମାଲ୍ୟବାନ୍ନାମ ବୈଦେହି ଗିରୀଣାମୁତ୍ତମୋ ଗିରିଃ । ୭୯ ।
ତତୋ ଗଚ୍ଛତି ଗୋକର୍ଣ୍ଣଂ ପର୍ବତଂ କେଶରୀ ହରିଃ ।
ସ ଚ ଦେବର୍ଷିଭିର୍ଦ୍ଦିଷ୍ଟଃ ପିତା ମମ ମହାକପିଃ ।
ତୀର୍ଥେ ନଦୀପତେଃ ପୁଣ୍ୟେ ଶମ୍ବସାଦନମୁଦ୍ଧରତ୍ । ୮୦ ।
ଯସ୍ୟାହଂ ହରିଣଃ କ୍ଷେତ୍ରେ ଜାତୋ ବାତେନ ମୈଥିଳି ।
ହନୁମାନିତି ବିଖ୍ୟାତୋ ଲୋକେ ସ୍ୱେନୈବ କର୍ମଣା । ୮୧ ।
ବିଶ୍ୱାସାର୍ଥଂ ତୁ ବୈଦେହି ଭର୍ତ୍ତୁରୁକ୍ତା ମୟା ଗୁଣାଃ ।
ଅଚିରାତ୍ତ୍ୱାମିତୋ ଦେବି ରାଘବୋ ନୟିତା ଧ୍ରୁବମ୍ । ୮୨ ।
ଏବଂ ବିଶ୍ୱାସିତା ସୀତା ହେତୁଭିଃ ଶୋକକର୍ଶିତା ।
ଉପପନ୍ନୈରଭିଜ୍ଞାନୈର୍ଦ୍ଦୂତଂ ତମଧିଗଚ୍ଛତି । ୮୩ ।
ଅତୁଲଂ ଚ ଗତା ହର୍ଷଂ ପ୍ରହର୍ଷେଣ ତୁ ଜାନକୀ ।
ନେତ୍ରାଭ୍ୟାଂ ବକ୍ରପକ୍ଷ୍ମଭ୍ୟାଂ ମୁମୋଚାନନ୍ଦଜଂ ଜଳମ୍ । ୮୪ ।
ଚାରୁ ତଦ୍ୱଦନଂ ତସ୍ୟାସ୍ତାମ୍ରଶୁକ୍ଳାୟତେକ୍ଷଣମ୍ ।
ଅଶୋଭତ ବିଶାଳାକ୍ଷ୍ୟା ରାହୁମୁକ୍ତ ଇବୋଡୁରାଟ୍ । ୮୫ ।

---

ସହିତ ହତ୍ୟାକରି ତୁମ୍ଭଙ୍କୁ ଲାଭକରିବେ । ହେ ବୈଦେହି ! ପର୍ବତମାନଙ୍କ ମଧ୍ୟରେ ଅତିଶ୍ରେଷ୍ଠ ମାଲ୍ୟବାନ୍ ନାମକ ଏକ ପର୍ବତ ଅଛି । ମୋର ପିତା ମହାକପି କେଶରୀ ସେହିଠାରେ ଥାଆନ୍ତି । ସେ ଦେବର୍ଷିମାନଙ୍କ ଦ୍ୱାରା ଆଦିଷ୍ଟ ହୋଇ ସେଠାରୁ ଗୋକର୍ଣ୍ଣ ପର୍ବତକୁ ଯାଇ ସମୁଦ୍ରର ସେହି ପୁଣ୍ୟତୀର୍ଥରେ 'ଶମ୍ବସାଦନ' ନାମକ ଅସୁରକୁ ନିପାତିତ କରିଥିଲେ । ୭୯-୮୦ । ହେ ମୈଥିଳି ! ସେହି ସମୟରେ ପବନଦେବଙ୍କ କର୍ତ୍ତୃକ ବାନରୀଗର୍ଭରେ ମୁଁ ଜାତ ହୋଇଥିଲି । ମୁଁ ନିଜର କାର୍ଯ୍ୟଦ୍ୱାରା ଇହଲୋକରେ ହନୁମାନ୍ ନାମରେ ବିଖ୍ୟାତ । ୮୧ । ହେ ବୈଦେହି ! ତୁମ୍ଭର ବିଶ୍ୱାସ ଉତ୍ପାଦନ ନିମନ୍ତେ ମୁଁ ତୁମ୍ଭ ସ୍ୱାମୀଙ୍କର ଗୁଣମାନ କହିଲି । ହେ ଦେବି ! ରାଘବ ଅଚିରେ ତୁମ୍ଭଙ୍କୁ ଏଠାରୁ ନେଇଯିବେ, ଏଥିରେ ସନ୍ଦେହ ନାହିଁ" । ୮୨ । ଶୋକପୀଡ଼ିତା ସୀତା ନାନାହେତୁ ଏବଂ ଉପଯୁକ୍ତ ଅଭିଜ୍ଞାନ (ଚିହ୍ନ)ଦ୍ୱାରା ବିଶ୍ୱାସକରି ତାହାଙ୍କୁ ଦୂତ ବୋଲି ଜାଣିଲେ । ୮୩ । ଜାନକୀ ନିରୁପମ ଆନନ୍ଦ ଲାଭକଲେ ଏବଂ ଅତି ଆନନ୍ଦରେ କୁଟିଳପକ୍ଷ୍ମବିଶିଷ୍ଟ ନେତ୍ରଯୁଗଳରୁ ଆନନ୍ଦାଶ୍ରୁ ମୋଚନ କରିବାକୁ ଲାଗିଲେ । ୮୪ । ବିଶାଳାକ୍ଷୀ ସୀତାଙ୍କର ସେହି ରକ୍ତପ୍ରାନ୍ତ ସୁଦୀର୍ଘ ଶୁଭ୍ରଲୋଚନ-ଶୋଭିତ ମନୋରମ ମୁଖମଣ୍ଡଳ ରାହୁମୁକ୍ତ ଚନ୍ଦ୍ରଙ୍କ ପରି ଶୋଭାପାଇଲା । ୮୫ ।

ହନୂମନ୍ତଂ କପିଂ ବ୍ୟକ୍ତଂ ମନ୍ୟତେ ନାନ୍ୟଥେତି ସା ।
ଅଥୋବାଚ ହନୂମାଂସ୍ତାମୁତ୍ତରଂ ପ୍ରିୟଦର୍ଶନାମ୍ । ୮୬ ।
ଏତତ୍ତେ ସର୍ବମାଖ୍ୟାତଂ ସମାଶ୍ୱସିହି ମୈଥିଲି ।
କିଂ କରୋମି କଥଂ ବା ତେ ରୋଚତେ ପ୍ରତିଯାମ୍ୟହମ୍ । ୮୭ ।
ହତେଽସୁରେ ସଂଯତି ଶମ୍ବସାଦନେ
କପିପ୍ରବୀରେଣ ମହର୍ଷିଚୋଦନାତ୍ ।
ତତୋଽସ୍ମି ବାୟୁପ୍ରଭବୋ ହି ମୈଥିଲି
ପ୍ରଭାବତସ୍ତତ୍ପ୍ରତିମଶ୍ଚ ବାନରଃ । ୮୮ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ ସୁନ୍ଦରକାଣ୍ଡେ ବିଶ୍ୱାସୋତ୍ପାଦନମ୍ ନାମ ପଞ୍ଚତ୍ରିଂଶଃ ସର୍ଗଃ ।

---

ସେତେବେଳେ ସେ ହନୂମାନଙ୍କୁ ପ୍ରକୃତ ବାନର ବୋଲି ଜାଣିଲେ ଏବଂ ଅନ୍ୟ-ପ୍ରକାର ଆଶଙ୍କା କଲେ ନାହିଁ । ଅନନ୍ତର ହନୂମାନ୍ ସେହି ପ୍ରିୟଦର୍ଶନା ସୀତାଙ୍କ ପୁନଶ୍ଚ କହିଲେ । ୮୬ । "ହେ ମୈଥିଲି ! ମୁଁ ତୁମ୍ଭ ନିକଟରେ ଏ ସମସ୍ତ ବୃତ୍ତାନ୍ତ କହିଲି, ତୁମ୍ଭେ ଏବେ ଆଶ୍ୱସ୍ତ ହୁଅ । ବର୍ତ୍ତମାନ ମୁଁ କ'ଣ କରିବି ? ତୁମଙ୍କୁ ବା କ'ଣ ଭଲ ଲାଗୁଛି ତାହା ମୋତେ କହ । ମୁଁ ଏଠାରୁ ଶୀଘ୍ର ଫେରିଯିବି । ୮୭ । ହେ ମୈଥିଲି ! ମହର୍ଷିମାନଙ୍କ ଆଦେଶାନୁସାରେ ବାନରପ୍ରବୀର କେଶରୀ ଯୁଦ୍ଧରେ 'ଶମ୍ବସାଦନ' ଅସୁରକୁ ନିହତ କରିବା ଉତ୍ତାରୁ, ସେହିମାନଙ୍କ ପ୍ରସାଦରେ ମୁଁ ବାୟୁଙ୍କଠାରୁ ବାନରରୂପେ ଜନ୍ମଗ୍ରହଣ କରିଅଛି । ପ୍ରଭାବରେ ମୁଁ ସେହି ବାୟୁଙ୍କର ସମାନ ଅଟେଁ ।" । ୮୮ ।

# ଷଟ୍ତ୍ରିଂଶଃ ସର୍ଗଃ

## ଅଙ୍ଗୁଳୀୟକପ୍ରଦାନମ୍

ଭୂୟ ଏବ ମହାତେଜା ହନୁମାନ୍ ପବନାତ୍ମଜଃ ।
ଅବ୍ରବୀତ୍ ପ୍ରଶ୍ରିତଂ ବାକ୍ୟଂ ସୀତାପ୍ରତ୍ୟୟକାରଣାତ୍ । ୧ ।
ବାନରୋଽହଂ ମହାଭାଗେ ଦୂତୋ ରାମସ୍ୟ ଧୀମତଃ ।
ରାମନାମାଙ୍କିତଂ ଚେଦଂ ପଶ୍ୟ ଦେବ୍ୟଙ୍ଗୁଳୀୟକମ୍ । ୨ ।
ପ୍ରତ୍ୟୟାର୍ଥଂ ତବାନୀତଂ ତେନ ଦତ୍ତଂ ମହାତ୍ମନା ।
ସମାଶ୍ୱସିହି ଭଦ୍ରଂ ତେ କ୍ଷୀଣଦୁଃଖଫଳା ହ୍ୟସି । ୩ ।
ଗୃହୀତ୍ୱା ପ୍ରେକ୍ଷମାଣା ସା ଭର୍ତ୍ତୁଃ କରବିଭୂଷଣମ୍ ।
ଭର୍ତ୍ତାରମିବ ସଂପ୍ରାପ୍ତଂ ଜାନକୀ ମୁଦିତାଭବତ୍ । ୪ ।
ଚାରୁ ତଦ୍‌ବଦନଂ ତସ୍ୟାସ୍ତାମ୍ରଶୁକ୍ଲାୟତେକ୍ଷଣମ୍ ।
ବଭୂବ ହର୍ଷୋଦଗ୍ରଂ ଚ ରାହୁମୁକ୍ତ ଇବୋଡୁରାଟ୍ । ୫ ।
ତତଃ ସା ହ୍ରୀମତୀ ବାଲା ଭର୍ତ୍ତୁଃ ସଂଦେଶହର୍ଷିତା ।
ପରିତୁଷ୍ଟା ପ୍ରିୟଂ କୃତ୍ୱା ପ୍ରଶଶଂସ ମହାକପିମ୍ । ୬ ।

---

## ୩୬ଶ ସର୍ଗ

( ଅଙ୍ଗୁଳୀୟକପ୍ରଦାନ )

ମରୁତନନ୍ଦନ ହନୁମାନ୍ ସୀତାଙ୍କ ବିଶ୍ୱାସ ଉତ୍ପାଦନ ନିମନ୍ତେ ପୁଣି ବିନୀତ ବାକ୍ୟରେ କହିଲେ ।୧। "ହେ ମହାଭାଗେ ! ମୁଁ ବାନର, ଧୀମାନ୍ ରାମଙ୍କର ଦୂତ । ହେ ଦେବି ! ରାମଙ୍କର ନାମାଙ୍କିତ ଏହି ଅଙ୍ଗୁଳୀୟକ ଦେଖ । ୨ । ତୁମ୍ଭର ପ୍ରତ୍ୟୟ ନିମନ୍ତେ ମୁଁ ଏହାକୁ ଆଣିଅଛି; ସେ ମହାତ୍ମା ମୋତେ ଦେଇଛନ୍ତି । ତୁମେ ଆଶ୍ୱସ୍ତ ହୁଅ । ତୁମ୍ଭର ମଙ୍ଗଳ ହେଉ; ନିଶ୍ଚୟ ତୁମ୍ଭ ଦୁଃଖର ଅବସାନ ହୋଇଆସୁଅଛି । ୩ । ଜାନକୀ ସ୍ୱାମୀଙ୍କର ହସ୍ତଭୂଷଣ ଏହି ଅଙ୍ଗୁଳୀୟକ ଗ୍ରହଣପୂର୍ବକ ନିରୀକ୍ଷଣ କରି ସ୍ୱୟଂ ସ୍ୱାମୀଙ୍କୁ ପାଇବାଭଳି ଆନନ୍ଦିତ ହେଲେ । ୪ । ତାଙ୍କର ତାମ୍ର ଓ ଶୁଭ୍ର ଏବଂ ସୁନ୍ଦରଲୋଚନବିଶିଷ୍ଟ ମନୋହର ବଦନମଣ୍ଡଳ ରାହୁମୁକ୍ତ ଚନ୍ଦ୍ରସଦୃଶ ଶୋଭାପାଇଲା । ୫ । ତଦନନ୍ତର ସେହି ଲଜ୍ଜିତା ବାଳା ସ୍ୱାମୀଙ୍କର ସମ୍ବାଦରେ ହର୍ଷିତ ଏବଂ ପରିତୁଷ୍ଟ ହୋଇ ଆଦର କରି କପିବର ହନୁମାନଙ୍କୁ ପ୍ରଶଂସା କରିବାକୁ

ବିକ୍ରାନ୍ତସ୍ତ୍ୱଂ ସମର୍ଥସ୍ତ୍ୱଂ ପ୍ରାଜ୍ଞସ୍ତ୍ୱଂ ବାନରୋତ୍ତମ ।
ଯେନେଦଂ ରାକ୍ଷସପଦଂ ତ୍ୱୟୈକେନ ପ୍ରଧର୍ଷିତମ୍ । ୭ ।
ଶତଯୋଜନବିସ୍ତୀର୍ଣଃ ସାଗରୋ ମକରାଲୟଃ ।
ବିକ୍ରମଶ୍ଳାଘନୀୟେନ କ୍ରମତା ଗୋଷ୍ପଦୀକୃତଃ । ୮ ।
ନ ହି ତ୍ୱାଂ ପ୍ରାକୃତଂ ମନ୍ୟେ ବାନରଂ ବାନରର୍ଷଭ ।
ଯସ୍ୟ ତେ ନାସ୍ତି ସଂତ୍ରାସୋ ରାବଣାଦପି ସଂଭ୍ରମଃ । ୯ ।
ଅର୍ହସେ ଚ କପିଶ୍ରେଷ୍ଠ ମୟା ସମଭିଭାଷିତୁମ୍ ।
ଯଦ୍ୟସି ପ୍ରେଷିତସ୍ତେନ ରାମେଣ ବିଦିତାତ୍ମନା । ୧୦ ।
ପ୍ରେଷୟିଷ୍ୟତି ଦୁର୍ଧର୍ଷୋ ରାମୋ ନ ହ୍ୟପରୀକ୍ଷିତମ୍ ।
ପରାକ୍ରମମବିଜ୍ଞାୟ ମତ୍ସକାଶଂ ବିଶେଷତଃ । ୧୧ ।
ଦିଷ୍ଟ୍ୟା ଚ କୁଶଲୀ ରାମୋ ଧର୍ମାତ୍ମା ସତ୍ୟସଙ୍ଗରଃ ।
ଲକ୍ଷ୍ମଣଶ୍ଚ ମହାତେଜାଃ ସୁମିତ୍ରାନନ୍ଦବର୍ଧନଃ । ୧୨ ।
କୁଶଲୀ ଯଦି କାକୁତ୍‌ସ୍ଥଃ କିଂ ନ ସାଗରମେଖଲାମ୍ ।
ମହୀଂ ଦହତି କୋପେନ ଯୁଗାନ୍ତାଗ୍ନିରିବୋତ୍ଥିତଃ । ୧୩ ।

---

ଲାଗିଲେ । ୬ । "ହେ ବାନରଶ୍ରେଷ୍ଠ ! ତୁମ୍ଭେ ଏକାକୀ ଯେ ରାକ୍ଷସମାନଙ୍କର ଏ ସ୍ଥାନକୁ ବିମର୍ଦ୍ଦିତ କରିଅଛ, ସେଥିରୁ ମୁଁ ବୁଝୁଛି ଯେ ତୁମ୍ଭେ ସମର୍ଥ, ବିକ୍ରମୀ, ବୁଦ୍ଧିମାନ୍ ଏବଂ ପ୍ରାଜ୍ଞ ଅଟ । ୭ । ତୁମ୍ଭର ବିକ୍ରମ ଅତି ପ୍ରଶଂସନୀୟ । ଶତଯୋଜନବିସ୍ତୃତ ମକରାଳୟ ସମୁଦ୍ରକୁ ତୁମ୍ଭେ ଗୋଷ୍ପଦତୁଲ୍ୟ ଜ୍ଞାନକରି ଲଙ୍ଘନ କରିଅଛ । ୮ । ହେ ବାନରଶ୍ରେଷ୍ଠ ! ରାବଣଠାରୁ ମଧ୍ୟ ଯେତେବେଳେ ତୁମ୍ଭର ଭୟ ବା ଉଦ୍‌ବେଗ ନାହିଁ, ସୁତରାଂ ମୁଁ ତୁମ୍ଭକୁ ସାଧାରଣ ବାନର ବୋଲି ମନେ କରୁ ନାହିଁ । ୯ । ସେହି ଆତ୍ମଜ୍ଞ ରାମ ଯେତେବେଳେ ତୁମ୍ଭକୁ ପ୍ରେରଣ କରିଅଛନ୍ତି, ସେତେବେଳେ ହେ ବାନରଶ୍ରେଷ୍ଠ ! ମୋର ତୁମ୍ଭେ ସମ୍ଭାଷଣର ଯୋଗ୍ୟ ଅଟ । ୧୦ । ଦୁର୍ଜେୟ ରାମ ପରୀକ୍ଷା ନ କରି କଦାପି ଲୋକ ପଠାନ୍ତେ ନାହିଁ; ବିଶେଷତଃ ତୁମ୍ଭର ପରାକ୍ରମ ନ ଜାଣି ମୋ ନିକଟକୁ କଦାପି ତୁମ୍ଭକୁ ପ୍ରେରଣ କରି ନ ଥାନ୍ତେ ।୧୧। ସୌଭାଗ୍ୟର କଥା ଯେ ସତ୍ୟବ୍ରତଙ୍କ ଧର୍ମାତ୍ମା ରାମ ଏବଂ ସୁମିତ୍ରାଙ୍କର ଆନନ୍ଦବର୍ଦ୍ଧନକାରୀ ମହାତେଜା ଲକ୍ଷ୍ମଣ କୁଶଳରେ ଅଛନ୍ତି । ୧୨ । କାକୁତ୍ସ୍ଥ ଯଦି କୁଶଳରେ ଅଛନ୍ତି ତେବେ ସେ ପ୍ରଳୟକାଳରେ ସମୁତ୍ଥିତ ଅଗ୍ନିସଦୃଶ ସସାଗରା ପୃଥିବୀକୁ ଦଗ୍ଧ କରିଦେଉ ନାହାନ୍ତି କାହିଁକି ? । ୧୩ । ଅଥବା ଦେବତାମାନଙ୍କ ପ୍ରତି ଶାସ୍ତି

ଅଥବା ଶକ୍ତିମନ୍ତୌ ତୌ ସୁରାଣାପି ନିଗ୍ରହେ ।
ମମୈବ ତୁ ନ ଦୁଃଖାନାମସ୍ତି ମନ୍ୟେ ବିପର୍ଯ୍ୟୟଃ ।୧୪।
କଚ୍ଚିନ୍ନ ବ୍ୟଥତେ ରାମଃ କଚ୍ଚିନ୍ନ ପରିତପ୍ୟତେ ।
ଉତ୍ତରାଣି ଚ କାର୍ଯାଣି କୁରୁତେ ପୁରୁଷୋତ୍ତମଃ । ୧୫ ।
କଚ୍ଚିନ୍ନ ଦୀନଃ ସଂଭ୍ରାନ୍ତଃ କାର୍ଯେଷୁ ଚ ନ ମୁହ୍ୟତି ।
କଚ୍ଚିତ୍ପୁରୁଷକାର୍ଯାଣି କୁରୁତେ ନୃପତେଃ ସୁତଃ । ୧୬ ।
ଦ୍ୱିବିଧଂ ତ୍ରିବିଧୋପାୟମୁପାୟମପି ସେବତେ ।
ବିଜିଗୀଷୁଃ ସୁହୃତ୍କଚ୍ଚିନ୍ମିତ୍ରେଷୁ ଚ ପରଂତପଃ । ୧୭ ।
କଚ୍ଚିନ୍ମିତ୍ରାଣି ଲଭତେ ମିତ୍ରୈଶ୍ଚାପ୍ୟଭିଗମ୍ୟତେ ।
କଚ୍ଚିତ୍ କଲ୍ୟାଣମିତ୍ରଶ୍ଚ ମିତ୍ରୈଶ୍ଚାପି ପୁରସ୍କୃତଃ । ୧୮ ।
କଚ୍ଚିଦାଶାସ୍ତି ଦେବାନାଂ ପ୍ରସାଦଂ ପାର୍ଥିବାତ୍ମଜଃ ।
କଚ୍ଚିତ୍ପୁରୁଷକାରଂ ଚ ଦୈବଂ ଚ ପ୍ରତିପଦ୍ୟତେ । ୧୯ ।
କଚ୍ଚିନ୍ନ ବିଗତସ୍ନେହୋ ବିବାସାନ୍ମୟି ରାଘବଃ ।
କଚ୍ଚିନ୍ମାଂ ବ୍ୟସନାଦସ୍ମାନ୍ମୋକ୍ଷୟିଷ୍ୟତି ରାଘବଃ । ୨୦ ।

---

ବିଧାନ କରିବାକୁ ମଧ୍ୟ ସେ ଦୁହିଁଙ୍କର ସାମର୍ଥ୍ୟ ଅଛି; ମାତ୍ର ମୋର ମନେହୁଏ, ମୋର ଦୁଃଖର ଅବସାନ ଏପର୍ଯ୍ୟନ୍ତ ହୋଇ ନାହିଁ । ୧୪ । ରାମ ବ୍ୟଥିତ ହେଉ ନାହାନ୍ତି ତ ? ସେ ପରିତାପ କରୁନାହାନ୍ତି ତ ? ସେ ପୁରୁଷୋତ୍ତମ ଅତଃପର କରଣୀୟ ଆୟୋଜନ ଆଦି କରୁଛନ୍ତି ତ ? ।୧୫ । ରାଜପୁତ୍ର ଦୁଃଖିତ, ବ୍ୟାକୁଳ ଏବଂ ମୋହାବିଷ୍ଟଚିତ୍ତ ହୋଇ ପୁରୁଷୋଚିତ କାର୍ଯ୍ୟ କରିବାକୁ ବିସ୍ମୃତ ହେଉ-ନାହାନ୍ତି ତ ? ।୧୬ । ଶତ୍ରୁସୂଦନ ରାମ ବିଜୟ ଅଭିଳାଷୀ ହୋଇ ମିତ୍ରମାନଙ୍କ ପ୍ରତି ସାମ, ଦାନ ଏବଂ ଶତ୍ରୁ ପ୍ରତି ଦାନ, ଦଣ୍ଡ, ଭେଦ ଉପାୟ ଅବଲମ୍ବନ କରୁଛନ୍ତି ତ ? ।୧୭ । ସେ ଅନ୍ୟ ସହିତ ମିତ୍ରତା ଏବଂ ଅନ୍ୟମାନେ ତାଙ୍କସହିତ ମିତ୍ରତା କରୁଛନ୍ତି ତ ? ସେ ମିତ୍ରମାନଙ୍କର ମଙ୍ଗଳ କରୁଛନ୍ତି କି ଏବଂ ମିତ୍ରମାନେ ତାଙ୍କୁ ପୁରସ୍କୃତ କରୁଛନ୍ତି ତ ? ।୧୮ । ରାଜକୁମାର ଦେବତାମାନଙ୍କର ଅନୁଗ୍ରହ ଆଶା କରୁଛନ୍ତି ତ ? ସେ ଦୈବ ଏବଂ ପୁରୁଷକାର ଏ ଉଭୟର ଅବଲମ୍ବନ କରୁଛନ୍ତି ତ ? । ୧୯ । ମୁଁ ଦୂରରେ ବାସ କରୁଥିବାରୁ, ରାଘବ ମୋ ପ୍ରତି ସ୍ନେହଶୂନ୍ୟ ହୋଇପଡ଼ି ନାହାନ୍ତି ତ ? ସେ ମୋତେ ଏ ବିପଦରୁ ଉଦ୍ଧାର କରିବେ ତ ? ।୨୦ । ସେ ସର୍ବଦା ସୁଖରେ

ସୁଖାନାମୁଚିତୋ ନିତ୍ୟମସୁଖାନାମନୂଚିତଃ ।
ଦୁଃଖମୁତ୍ତରମାସାଦ୍ୟ କଚ୍ଚିଦ୍ରାମୋ ନ ସୀଦତି । ୨୧ ।
କୌସଲ୍ୟାୟାସ୍ତଥା କଚ୍ଚିତ୍ସୁମିତ୍ରାୟାସ୍ତଥୈବ ଚ ।
ଅଭୀକ୍ଷ୍ଣଂ ଶ୍ରୂୟତେ କଚ୍ଚିତ୍କୁଶଳଂ ଭରତସ୍ୟ ଚ । ୨୨ ।
ମନ୍ନିମିତ୍ତେନ ମାନାର୍ହଃ କଚ୍ଚିଚ୍ଛୋକେନ ରାଘବଃ ।
କଚ୍ଚିନ୍ନାନ୍ୟମନା ରାମଃ କଚ୍ଚିନ୍ମାଂ ତାରୟିଷ୍ୟତି । ୨୩ ।
କଚ୍ଚିଦକ୍ଷୌହିଣୀଂ ଭୀମାଂ ଭରତୋ ଭ୍ରାତୃବତ୍ସଳଃ ।
ଧ୍ୱଜିନୀଂ ମନ୍ତ୍ରିଭିର୍ଗୁପ୍ତାଂ ପ୍ରେଷୟିଷ୍ୟତି ମତ୍କୃତେ । ୨୪ ।
ବାନରାଧିପତିଃ ଶ୍ରୀମାନ୍ ସୁଗ୍ରୀବଃ କଚ୍ଚିଦେଷ୍ୟତି ।
ମତ୍କୃତେ ହରିଭିର୍ବୀରୈର୍ବୃତୋ ଦନ୍ତନଖାୟୁଧୈଃ । ୨୫ ।
କଚ୍ଚିଚ୍ଚ ଲକ୍ଷ୍ମଣଃ ଶୂରଃ ସୁମିତ୍ରାନନ୍ଦବର୍ଦ୍ଧନଃ ।
ଅସ୍ତ୍ରବିଚ୍ଛରଜାଲେନ ରାକ୍ଷସାନ୍ ବଧମିଷ୍ୟତି । ୨୬ ।
ରୌଦ୍ରେଣ କଚ୍ଚିଦସ୍ତ୍ରେଣ ରାମେଣ ନିହତଂ ରଣେ ।
ଦ୍ରକ୍ଷ୍ୟାମ୍ୟଳ୍ପେନ କାଳେନ ରାବଣଂ ସସୁହୃଜ୍ଜନମ୍ । ୨୭ ।

---

ସମ୍ବର୍ଦ୍ଧିତ ହୋଇଥିଲେ; ଦୁଃଖ ପାଇବାର କଦାପି ଯୋଗ୍ୟ ନୁହନ୍ତି; ମାତ୍ର ଶେଷରେ ଏ ଦୁଃଖ ପାଇ ରାମ ଅବସନ୍ନ ହେଉ ନାହାନ୍ତି ତ ? ।୨୧। ସେ ପୁନଃପୁନଃ କୌଶଲ୍ୟା, ସୁମିତ୍ରା ଏବଂ ଭରତଙ୍କର କୁଶଳ ସମ୍ବାଦ ପାଉଛନ୍ତି ତ ? ।୨୨। ମାନ ପାଇବାର ଯୋଗ୍ୟ ରାଘବ ମୋ ବିୟୋଗଲାଗି ଶୋକରେ ପରିତପ୍ତ ହୋଇ ଅନ୍ୟମନା ହୋଇ ନାହାନ୍ତି ତ ? ସେ ମୋତେ ଉଦ୍ଧାର କରିବେ ତ ? । ୨୩ । ଭ୍ରାତୃବତ୍ସଳ ଭରତ ମୋଲାଗି ମନ୍ତ୍ରୀମାନଙ୍କ ଅଧିନାୟକତ୍ୱରେ ଧ୍ୱଜଯୁକ୍ତ ଭୀଷଣ ଅକ୍ଷୌହିଣୀ ସେନା ପ୍ରେରଣ କରିବେ ତ ? ।୨୪। ବାନରରାଜ ଶ୍ରୀମାନ୍ ସୁଗ୍ରୀବ ମୋର ଉଦ୍ଧାର ଲାଗି ଦନ୍ତନଖାୟୁଧ ବାନରବୀରମାନଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ଏଠାକୁ ଆସିବେ ତ ? ।୨୫। ସେହି ଅସ୍ତ୍ରବିଶାରଦ, ସୁମିତ୍ରାଙ୍କର ଆନନ୍ଦବର୍ଦ୍ଧନକାରୀ, ବୀର ଲକ୍ଷ୍ମଣ ଶରରାଜିଦ୍ୱାରା ରାକ୍ଷସମାନଙ୍କୁ ଧ୍ୱସ୍ତବିଧ୍ୱସ୍ତ କରିଦେବେ ତ ? ।୨୬। ମୁଁ ଅଳ୍ପକାଳମଧ୍ୟରେ, ରାମ ଭୀଷଣ ଅସ୍ତ୍ରଦ୍ୱାରା ରାବଣକୁ ସବାନ୍ଧବରେ ସଂହାର କରିବାର ଦେଖିବି ତ ? ।୨୭। ପାଣି ଶୁଖିଗଲେ ସୂର୍ଯ୍ୟକରଣରେ ପଦ୍ମ ଯେପରି

କଚ୍ଚିନ୍ନ ତଦ୍ଧେମସମାନବର୍ଣମ୍
ତସ୍ୟାନନଂ ପଦ୍ମସମାନଗନ୍ଧି ।
ମୟା ବିନା ଶୁଷ୍ୟତି ଶୋକଦୀନମ୍
ଜଲକ୍ଷୟେ ପଦ୍ମମିବାତପେନ । ୨୮ ।
ଧର୍ମାପଦେଶାତ୍ତ୍ୟଜତଃ ସ୍ୱରାଜ୍ୟମ୍
ମାଂ ଚାପ୍ୟରଣ୍ୟଂ ନୟତଃ ପଦାତେଃ ।
ନାସୀଦ୍ୱ୍ୟଥା ଯସ୍ୟ ନ ଭୀର୍ନ ଶୋକଃ
କଚ୍ଚିତ୍ସ ଧୈର୍ଯ୍ୟଂ ହୃଦୟେ କରୋତି । ୨୯ ।
ନ ଚାସ୍ୟ ମାତା ନ ପିତା ନ ଚାନ୍ୟଃ
ସ୍ନେହାଦ୍ୱିଶିଷ୍ଟୋଽସ୍ତି ମୟା ସମୋ ବା ।
ତାବତ୍ୱହଂ ଦୂତ ଜିଜୀବିଷେୟମ୍
ଯାବତ୍ପ୍ରବୃତ୍ତିଂ ଶୃଣୁୟାଂ ପ୍ରିୟସ୍ୟ ।୩୦ ।
ଇତୀବ ଦେବୀ ବଚନଂ ମହାର୍ଥମ୍
ତଂ ବାନରେନ୍ଦ୍ରଂ ମଧୁରାର୍ଥମୁକ୍ତ୍ୱା ।
ଶ୍ରୋତୁଂ ପୁନସ୍ତସ୍ୟ ବଚୋଽଭିରାମମ୍
ରାମାର୍ଥଯୁକ୍ତଂ ବିରରାମ ରାମା । ୩୧ ।
ସୀତାୟା ବଚନଂ ଶ୍ରୁତ୍ୱା ମାରୁତିର୍ଭୀମବିକ୍ରମଃ ।
ଶିରସ୍ୟଞ୍ଜଲିମାଧାୟ ବାକ୍ୟମୁତ୍ତରମବ୍ରବୀତ୍ । ୩୨ ।

---

ଶୁଖିଯାଏ, ସେହିପରି ମୋ ବିରହରେ ରାମଙ୍କର ପଦ୍ମସଦୃଶ ସୁଗନ୍ଧଯୁକ୍ତ, ସ୍ୱର୍ଣ୍ଣସଦୃଶ ମୁଖମଣ୍ଡଳ ଶୋକରେ ଶୁଷ୍କ ହୋଇଯାଉନାହିଁ ତ ? ।୨୮ । ଧର୍ମାନୁରୋଧରେ ନିଜର ରାଜ୍ୟ ତ୍ୟାଗକରି ମୋତେ ପଦବ୍ରଜରେ ଅରଣ୍ୟକୁ ଆଣିବାରେ ଯାହାଙ୍କ ମନରେ କୌଣସି ବେଦନା, ଭୟ ବା ଶୋକ ଜାତହୋଇ ନ ଥିଲା, ସେ ହୃଦୟରେ ଧୈର୍ଯ୍ୟ ଧାରଣକରି ରହିଛନ୍ତି ତ ? ।୨୯ । ହେ ଦୂତ ! ନ ମାତା, ନ ପିତା ନ ଅନ୍ୟ ବ୍ୟକ୍ତି କାହାରି ପ୍ରତି ତାଙ୍କର ମୋ ଅପେକ୍ଷା ଅଧିକ, ନ ମୋ ସଙ୍ଗେ ସମାନ ସ୍ନେହ ନାହିଁ । ମୋର ପ୍ରିୟତମଙ୍କର ସମ୍ବାଦ ଶୁଣିବାଯାଏଁ ମୁଁ ଜୀବିତ ରହିବାକୁ ଇଚ୍ଛା କରିଅଛି ।” । ୩୦ । ମନୋରମା ଦେବୀ ସୀତା ସେହି ବାନରଶ୍ରେଷ୍ଠଙ୍କୁ ଏହି ପ୍ରକାର ବିଶେଷ ଅର୍ଥପୂର୍ଣ୍ଣ ସୁମଧୁର ବାକ୍ୟ କହି ତାହାଙ୍କଠାରୁ ପୁଣି ରାମଙ୍କର ମନୋହର କଥା ଶୁଣିବା ଉଦ୍ଦେଶ୍ୟରେ ବିରତ ହେଲେ । ୩୧ । ସୀତାଙ୍କ କଥା ଶୁଣି ଭୀମବିକ୍ରମ ମରୁତନନ୍ଦନ ମସ୍ତକରେ ଅଞ୍ଜଳି ବାନ୍ଧିକରି ଉତ୍ତର ଦେଲେ । ୩୨ । “ପଦ୍ମଲୋଚନ ରାମ ତୁମ୍ଭେ

ନ ତ୍ୱାମିହସ୍ଥାଂ ଜାନୀତେ ରାମଃ କମଲଲୋଚନଃ ।
ତେନ ତ୍ୱାଂ ନାନୟତ୍ୟାଶୁ ଶଚୀମିବ ପୁରନ୍ଦରଃ । ୩୩ ।
ଶ୍ରୁତ୍ୱୈବ ଚ ବଚୋ ମହ୍ୟଂ କ୍ଷିପ୍ରମେଷ୍ୟତି ରାଘବଃ ।
ଚମୂଂ ପ୍ରକର୍ଷନ୍ମହତୀଂ ହର୍ୟୃକ୍ଷଗଣସଂଯୁତାମ୍ । ୩୪ ।
ବିଷ୍ଟମ୍ଭୟିତ୍ୱା ବାଣୌଘୈରକ୍ଷୋଭ୍ୟଂ ବରୁଣାଳୟମ୍ ।
କରିଷ୍ୟତି ପୁରୀଂ ଲଙ୍କାଂ କାକୁତ୍ସ୍ଥଃ ଶାନ୍ତରାକ୍ଷସାମ୍ । ୩୫ ।
ତତ୍ର ଯଦ୍ୟନ୍ତରା ମୃତ୍ୟୁର୍ଯଦି ଦେବା ମହାସୁରାଃ ।
ସ୍ଥାସ୍ୟନ୍ତି ପଥି ରାମସ୍ୟ ସ ତାନପି ବଧିଷ୍ୟତି । ୩୬ ।
ତବାଦର୍ଶନଜେନାର୍ଯେ ଶୋକେନ ପରିପୂରିତଃ ।
ନ ଶର୍ମ ଲଭତେ ରାମଃ ସିଂହାର୍ଦିତ ଇବ ଦ୍ୱିପଃ । ୩୭ ।
ମନ୍ଦରେଣ ଚ ତେ ଦେବି ଶପେ ମୂଳଫଳେନ ଚ ।
ମଲୟେନ ଚ ବିନ୍ଧ୍ୟେନ ମେରୁଣା ଦର୍ଦୁରେଣ ଚ ।୩୮।
ଯଥା ସୁନୟନଂ ବଲ୍ଗୁ ବିମ୍ବୋଷ୍ଠଂ ଚାରୁକୁଣ୍ଡଲମ୍ ।
ମୁଖଂ ଦ୍ରକ୍ଷ୍ୟସି ରାମସ୍ୟ ପୂର୍ଣଚନ୍ଦ୍ରମିବୋଦିତମ୍ । ୩୯ ।
କ୍ଷିପ୍ରଂ ଦ୍ରକ୍ଷ୍ୟସି ବୈଦେହି ରାମଂ ପ୍ରସ୍ରବଣେ ଗିରୌ ।
ଶତକ୍ରତୁମିବାସୀନଂ ନାଗପୃଷ୍ଠସ୍ୟ ମୂର୍ଧନି । ୪୦ ।

---

ଏଠାରେ ଥିବାର ଜାଣନ୍ତି ନାହିଁ । ସେହିହେତୁରୁ ଇନ୍ଦ୍ର ଶଚୀଙ୍କ ଉଦ୍ଧାର କଲାପରି ସେ ତୁମ୍ଭଙ୍କୁ ସଙ୍ଗେ ସଙ୍ଗେ ଉଦ୍ଧାର କରିପାରି ନାହାନ୍ତି ।୩୩। ମୋଠାରୁ ସମ୍ବାଦ ଶୁଣିଲାକ୍ଷଣି ରଘୁନନ୍ଦନ ବିଶାଳ ବାନରସେନା ଏବଂ ଋକ୍ଷସେନା ସଙ୍ଗରେ ଘେନି ଅଚିରାତ୍ ଆସିବେ ।୩୪। କାକୁତ୍ସ୍ଥ ରାମ ଅବିଚଳିତ ସମୁଦ୍ରକୁ ଶରବେଗରେ ସ୍ତମ୍ଭିତ କରି ଲଙ୍କାପୁରୀକୁ ରାକ୍ଷସହୀନ କରିବେ । ୩୫ । ରାମଙ୍କର ସେହି ପଥରେ ଯଦି ସାକ୍ଷାତ୍ ମୃତ୍ୟୁଦେବ କିମ୍ବା ଦେବତାଗଣ ଏବଂ ଅସୁରମାନେ ମଧ୍ୟ ପ୍ରତିବନ୍ଧକ ହୁଅନ୍ତି, ତାହାହେଲେ ସେ ସେମାନଙ୍କୁ ମଧ୍ୟ ନିହତ କରିବେ । ୩୬ । ଆର୍ଯେ ! ତୁମ୍ଭର ଅଦର୍ଶନଜନିତ ଶୋକରେ ଅଭିଭୂତ ହୋଇ ରାମ ସିଂହପୀଡ଼ିତ ହସ୍ତୀ ପରି ଶାନ୍ତି ଲାଭକରି ପାରୁ ନାହାନ୍ତି । ୩୭ । ଦେବି ! ମୁଁ ମନ୍ଦର, ମଳୟ, ବିନ୍ଧ୍ୟ, ମେରୁ ଓ ଦର୍ଦୁର ପର୍ବତ, ତଥା ଫଳମୂଳମାନଙ୍କର ନାମରେ ଶପଥକରି କହୁଛି ଯେ ତୁମ୍ଭେ ସୁନ୍ଦରନୟନଶୋଭିତ, ବିମ୍ବତୁଲ୍ୟ ଓଷ୍ଠଯୁକ୍ତ, ମନୋହରକୁଣ୍ଡଳବିଭୂଷିତ ରାମଙ୍କର ବଦନମଣ୍ଡଳ ପୂର୍ଣ୍ଣଚନ୍ଦ୍ର ସଦୃଶ ଉଦିତ ହେବାର ଦେଖିବ । ୩୮-୩୯ । ବୈଦେହି ! ତୁମ୍ଭେ ଶୀଘ୍ର ଦେଖିବ, ଇନ୍ଦ୍ର ଐରାବତପୃଷ୍ଠର ଅଗ୍ରଭାଗରେ ବସିଥିବାପରି,

ନ ମାଂସଂ ରାଘବୋ ଭୁଂକ୍ତେ ନ ଚୈବ ମଧୁ ସେବତେ ।
ବନ୍ୟଂ ସୁବିହିତଂ ନିତ୍ୟଂ ଭକ୍ତମଶ୍ନାତି ପଞ୍ଚମମ୍ । ୪୧ ।
ନୈବ ଦଂଶାନ୍ନ ମଶକାନ୍ନ କୀଟାନ୍ନ ସରୀସୃପାନ୍ ।
ରାଘବୋଽପନୟେଦ୍ ଗାତ୍ରାତ୍ତ୍ୱଦ୍‌ଗତେନାନ୍ତରାତ୍ମନା । ୪୨ ।
ନିତ୍ୟଂ ଧ୍ୟାନପରୋ ରାମୋ ନିତ୍ୟଂ ଶୋକପରାୟଣଃ ।
ନାନ୍ୟଚ୍ଚିନ୍ତୟତେ କିଞ୍ଚିତ୍ସ ତୁ କାମବଶଂ ଗତଃ । ୪୩ ।
ଅନିଦ୍ରଃ ସତତଂ ରାମଃ ସୁପ୍ତୋଽପି ଚ ନରୋତ୍ତମଃ ।
ସୀତେତି ମଧୁରାଂ ବାଣୀଂ ବ୍ୟାହରନ୍ ପ୍ରତିବୁଧ୍ୟତେ । ୪୪ ।
ଦୃଷ୍ଟ୍ୱା ଫଳଂ ବା ପୁଷ୍ପଂ ବା ଯଚ୍ଚାନ୍ୟତ୍ସୁମନୋହରମ୍ ।
ବହୁଶୋ ହା ପ୍ରିୟେତ୍ୟେବଂ ଶ୍ୱସଂସ୍ତ୍ୱାମଭିଭାଷତେ । ୪୫ ।

ସ ଦେବି ନିତ୍ୟଂ ପରିତପ୍ୟମାନ-
ସ୍ତ୍ୱାମେବ ସୀତେତ୍ୟଭିଭାଷମାଣଃ ।
ଧୃତବ୍ରତୋ ରାଜସୁତୋ ମହାତ୍ମା
ତବୈବ ଲାଭାୟ କୃତପ୍ରଯତ୍ନଃ । ୪୬ ।

---

ପ୍ରସ୍ରବଣ ପର୍ବତ ଉପରେ ରାମ ବସିଥିବେ । ୪୦ । ରାମ ମାଂସ ଖାଉ ନାହାନ୍ତି, ମଧୁପାନ କରୁ ନାହାନ୍ତି, ପ୍ରତ୍ୟହ ଯଥାନିୟମରେ ପଞ୍ଚମ ପ୍ରହରରେ ଅନ୍ନମାତ୍ର ଆହାର କରୁଛନ୍ତି । ୪୧ । ତାଙ୍କର ଅନ୍ତରାତ୍ମା ତୁମ୍ଭଠାରେ ଏପରି ଏକାଗ୍ରଭାବରେ ନିବଦ୍ଧ ହୋଇ ରହିଅଛି ଯେ, ତାଙ୍କ ଦେହରେ ମଶକ, କୀଟ ବା ସରୀସୃପ ଚଢ଼ିଲେ ମଧ୍ୟ ସେ ସେମାନଙ୍କୁ କାଢ଼ି ଫିଙ୍ଗିଦେଉ ନାହାନ୍ତି । ୪୨ । ରାମ ସର୍ବଦା ଧ୍ୟାନନିମଗ୍ନ ଏବଂ ସର୍ବଦା ଶୋକରେ ବିହ୍ୱଳ ହୋଇ ରହିଛନ୍ତି । ସେ କାମର ବଶବର୍ତ୍ତୀ ହୋଇ ତୁମ୍ଭ ଛଡ଼ା ଅନ୍ୟ କୌଣସି କଥା ଚିନ୍ତାକରୁ ନାହାନ୍ତି । ୪୩ । ପୁରୁଷୋତ୍ତମ ରାମ ସର୍ବଦା ଅନିଦ୍ର ରହିଛନ୍ତି । କେତେବେଳେ ଟିକିଏ ଶୋଇପଡ଼ିଲେ ମଧ୍ୟ ସେ 'ସୀତା' ଏହି ମଧୁର ନାମ ଉଚ୍ଚାରଣ କରି ଉଠିପଡ଼ୁଛନ୍ତି । ୪୪ । ଫଳ, ପୁଷ୍ପ କିମ୍ବା ଅନ୍ୟ କୌଣସି ମନୋହର ପଦାର୍ଥ ଦେଖିବାମାତ୍ରେ ସେ ବାରମ୍ବାର ଦୀର୍ଘ ନିଶ୍ୱାସ ତ୍ୟାଗକରି 'ହା ପ୍ରିୟେ !' ବୋଲି ତୁମ୍ଭଙ୍କୁ ହିଁ ସମ୍ବୋଧନ କରୁଛନ୍ତି । ୪୫ । ଦେବି ! ମହାତ୍ମା ରାମ ଏହିପରି 'ହା ସୀତେ ? ହା ସୀତେ !' ବୋଲି ଡାକଡ଼ାକି ସର୍ବଦା ପରିତାପ କରୁଛନ୍ତି । ସେ ରାଜପୁତ୍ର ବ୍ରତାଚରଣ କରି ତୁମ୍ଭଙ୍କୁ ହିଁ ପାଇବା ପାଇଁ ଯତ୍ନ କରୁଛନ୍ତି" ।୪୬। ରାମଙ୍କ କଥା ଶୁଣି, ସୀତାଙ୍କର ଶୋକ ଦୂର ହୋଇଗଲା ।

ସା ରାମସଂକୀର୍ତ୍ତନବୀତଶୋକା
ରାମସ୍ୟ ଶୋକେନ ସମାନଶୋକା ।
ଶରନ୍ମୁଖେନାମ୍ବୁଦଶେଷଚନ୍ଦ୍ରା
ନିଶେବ ବୈଦେହସୁତା ବଭୂବ ।୪୭।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ ସୁନ୍ଦରକାଣ୍ଡେ ଅଙ୍ଗୁଲୀୟକପ୍ରଦାନଂ ନାମ ଷଟ୍‌ତ୍ରିଂଶଃ ସର୍ଗଃ ।

---

# ସପ୍ତତ୍ରିଂଶଃ ସର୍ଗଃ

## ସୀତାପ୍ରତ୍ୟାନୟନାନୌଚିତ୍ୟମ୍

ସୀତା ତଦ୍‌ବଚନଂ ଶ୍ରୁତ୍ୱା ପୂର୍ଣ୍ଣଚନ୍ଦ୍ରନିଭାନନା ।
ହନୂମନ୍ତମୁବାଚେଦଂ ଧର୍ମାର୍ଥସହିତଂ ବଚଃ ।୧।
ଅମୃତଂ ବିଷସଂପୃକ୍ତଂ ତ୍ୱୟା ବାନର ! ଭାଷିତମ୍ ।
ଯଚ୍ଚ ନାନ୍ୟମନା ରାମୋ ଯଚ୍ଚ ଶୋକପରାୟଣଃ ।୨।
ଐଶ୍ୱର୍ଯ୍ୟେ ବା ସୁବିସ୍ତୀର୍ଣ୍ଣେ ବ୍ୟସନେ ବା ସୁଦାରୁଣେ ।
ରଜ୍ଜ୍ୱେବ ପୁରୁଷଂ ବଦ୍ଧ୍ୱା କୃତାନ୍ତଃ ପରିକର୍ଷତି ।୩।

---

ମାତ୍ର ରାମଙ୍କ ଶୋକକଥା ଶୁଣି ସେ ସମଦୁଃଖାପନ୍ନ ହେଲେ । ଶରତ୍‌କାଳର ପ୍ରାରମ୍ଭରେ ଆକାଶରେ ମେଘ ଥାଇ ଚନ୍ଦ୍ର ଉଦିତ ହେଲେ, ରାତି ଯେପରି ଏକ-ସଙ୍ଗରେ ପ୍ରକାଶମାନ ଏବଂ ଅପ୍ରକାଶିତ ହୁଏ, ବିଦେହନନ୍ଦିନୀ ସେହିପରି ଯୁଗପତ୍ ଆନନ୍ଦ ଏବଂ ଶୋକ ଅନୁଭବ କଲେ ।୪୭।

---

## ୩୭ଶ ସର୍ଗ

( ସୀତାଙ୍କର ପ୍ରତ୍ୟାନୟନ ଅନୌଚିତ୍ୟ )

ପୂର୍ଣ୍ଣଚନ୍ଦ୍ରବଦନା ସୀତା ସେ କଥା ଶୁଣି ଧର୍ମ ଏବଂ ଯୁକ୍ତିପୂର୍ଣ୍ଣ କଥାରେ ହନୁମାନଙ୍କୁ କହିଲେ ।୧। "ବାନର ! ରାମଙ୍କର ମନ ଅନ୍ୟ କାହାରିଠାରେ ନାହିଁ ଏବଂ ସେ ଶୋକପରାୟଣ ହୋଇଛନ୍ତି, ଏହି କଥା ଯେ ତୁମ୍ଭେ କହିଲ, ଏହା ବିଷମିଶ୍ରିତ ଅମୃତସଦୃଶ ଅଟେ ।୨। ମନୁଷ୍ୟ ସୁବିସ୍ତୀର୍ଣ୍ଣ ଐଶ୍ୱର୍ଯ୍ୟ ଭୋଗକରୁ ବା ଅତି କଠୋର ବିପଦରେ ପଡ଼ୁ, ସବୁ କ୍ଷେତ୍ରରେ କାଳ ତାକୁ

ବଧ୍ୟନ୍ତି ନମସଂହାର୍ଯଃ ପ୍ରାଣିନାଂ ପ୍ଲବଗୋତ୍ତମ !
ସୌମିତ୍ରିଂ ମାଂ ଚ ରାମଂ ଚ ବ୍ୟସନୈଃ ପଶ୍ୟ ମୋହିତାନ୍ ।୪।
ଶୋକସ୍ୟାସ୍ୟ କଥଂ ପାରଂ ରାଘବୋଽଧିଗମିଷ୍ୟତି ।
ପ୍ଲବମାନଃ ପରିକ୍ରାନ୍ତୋ ହତନୌଃ ସାଗରେ ଯଥା । ୫ ।
ରାକ୍ଷସାନାଂ ବଧଂ କୃତ୍ୱା ସୂଦୟିତ୍ୱା ଚ ରାବଣମ୍ ।
ଲଙ୍କାମୁନ୍ମୂଳିତାଂ କୃତ୍ୱା କଦା ଦ୍ରକ୍ଷ୍ୟତି ମାଂ ପତିଃ । ୬ ।
ସ ବାଚ୍ୟଃ ସଂତ୍ୱରସ୍ୱେତି ଯାବଦେବ ନ ପୂର୍ଯତେ ।
ଅୟଂ ସମ୍ବତ୍ସରଃ କାଲସ୍ତାବଦ୍ଧି ମମ ଜୀବିତମ୍ । ୭ ।
ବର୍ତ୍ତତେ ଦଶମୋ ମାସୋ ଦ୍ୱୌ ତୁ ଶେଷୌ ପ୍ଲବଙ୍ଗମ !
ରାବଣେନ ନୃଶଂସେନ ସମୟୋ ଯଃ କୃତୋ ମମ । ୮ ।
ବିଭୀଷଣେନ ଚ ଭ୍ରାତ୍ରା ମମ ନିର୍ଯାତନଂ ପ୍ରତି ।
ଅନୁନୀତଃ ପ୍ରଯତ୍ନେନ ନ ଚ ତତ୍କୁରୁତେ ମତିମ୍ । ୯ ।
ମମ ପ୍ରତିପ୍ରଦାନଂ ହି ରାବଣସ୍ୟ ନ ରୋଚତେ ।
ରାବଣଂ ମାର୍ଗତେ ସଂଖ୍ୟେ ମୃତ୍ୟୁଃ କାଲବଶଂ ଗତମ୍ । ୧୦ ।

---

ରଜ୍ଜୁଦ୍ୱାରା ବନ୍ଧନକରି ଆକର୍ଷଣ କରୁଅଛି । ୩ । ହେ ବାନରଶ୍ରେଷ୍ଠ ! ବିଧିର ବିଧାନକୁ ନିଶ୍ଚୟ କେହି କେବେ ରୋଧ କରିପାରିବ ନାହିଁ । ଦେଖ, ଲକ୍ଷ୍ମଣ,ରାମ ଏବଂ ମୁଁ, କିପରି ଦୁଃଖରେ ନିମଗ୍ନ ହୋଇଅଛୁଁ । ୪ । ସମୁଦ୍ରରେ ନୌକା ବୁଡ଼ିଗଲେ, ଆରୋହୀ ସନ୍ତରଣକରି କ୍ଳାନ୍ତ ହୋଇ କେବେ ଯେ କୂଳରେ ଲାଗିବ ତାହାର ଯେପରି ସ୍ଥିରତା ନଥାଏ, ସେହିପରି ରାଘବ କେବେ ଯେ ଏ ଶୋକର ଶେଷସୀମା ଲାଭକରିବେ କେ ଜାଣି ! । ୫ । ମୋର ପତି ରାକ୍ଷସମାନଙ୍କୁ ସଂହାରକରି ରାବଣକୁ ବିନାଶ କରି ଏବଂ ଲଙ୍କାପୁରୀକୁ ବିଧ୍ୱସ୍ତକରି କେବେ ମୋତେ ଦେଖିବେ ? । ୬ । ତୁମ୍ଭେ ତାଙ୍କୁ କହିବ, "ଏହି ବର୍ଷକ ସମୟ ଯେପର୍ଯ୍ୟନ୍ତ ନ ପୂରିଛି, ସେହି ପର୍ଯ୍ୟନ୍ତ ମୋର ଜୀବନ ରହିଛି; ସୁତରାଂ ତୁମ୍ଭେ ସତ୍ୱର ହୁଅ" । ୭ । ହେ ବାନର ! ନିଷ୍ଠୁର ରାବଣ ମୋ ସହିତ ଯେ ସମୟ ନିର୍ଦ୍ଦେଶ କରିଛି, ତାହାର ଏ ଦଶମ ମାସ ଚାଲିଛି, ଆଉ ଦୁଇଟି ମାସ ଅବଶିଷ୍ଟ ଅଛି । ୮ । ରାବଣକୁ ତାର ଭ୍ରାତା ବିଭୀଷଣ, ମୋ ପ୍ରତି କୌଣସି ଅତ୍ୟାଚାର ନ କରିବା ପାଇଁ ବହୁ ଯତ୍ନରେ ଅନୁନୟ କରିଛନ୍ତି ; କିନ୍ତୁ ସେ ସେଥିରେ ଆଦୌ ମନ ଦେଉ ନାହିଁ ।୯। ମୋତେ ପ୍ରତ୍ୟର୍ପଣ କରିଦେବା ରାବଣ ମନକୁ ପାଉ ନାହିଁ । ସେ କାଳର ବଶୀଭୂତ ହୋଇଅଛି ଏବଂ ଯୁଦ୍ଧରେ ତାକୁ

ଜ୍ୟେଷ୍ଠା କନ୍ୟା କଳା ନାମ ବିଭୀଷଣସୁତା କପେ !
ତୟା ମମେଦମାଖ୍ୟାତଂ ମାତ୍ରା ପ୍ରହିତୟା ସ୍ୱୟମ୍ ।୧୧।
ଅବିନ୍ଧ୍ୟୋ ନାମ ମେଧାବୀ ବିଦ୍ୱାନ୍ରାକ୍ଷସପୁଙ୍ଗବଃ ।
ଧୃତିମାଞ୍ଛୀଲବାନ୍ ବୃଦ୍ଧୋ ରାବଣସ୍ୟ ସୁସମ୍ମତଃ ।୧୨।
ରାମକ୍ଷୟମନୁପ୍ରାପ୍ତଃ ରକ୍ଷସାଂ ପ୍ରତ୍ୟଚୋଦୟତ୍ ।
ନ ଚ ତସ୍ୟ ସ ଦୁଷ୍ଟାତ୍ମା ଶୃଣୋତି ବଚନଂ ହିତମ୍ ।୧୩।
ଆଶଂସେୟଂ ହରିଶ୍ରେଷ୍ଠ! କ୍ଷିପ୍ରଂ ମାଂ ପ୍ରାପ୍ସ୍ୟତେ ପତିଃ ।
ଅନ୍ତରାତ୍ମା ହି ମେ ଶୁଦ୍ଧସ୍ତସ୍ମିଂଶ୍ଚ ବହବୋ ଗୁଣାଃ ।୧୪।
ଉତ୍ସାହଃ ପୌରୁଷଂ ସତ୍ତ୍ୱମାନୃଶଂସ୍ୟଂ କୃତଜ୍ଞତା ।
ବିକ୍ରମଶ୍ଚ ପ୍ରଭାବଶ୍ଚ ସନ୍ତି ବାନର ! ରାଘବେ ।୧୫।
ଚତୁର୍ଦ୍ଦଶ ସହସ୍ରାଣି ରାକ୍ଷସାନାଂ ଜଘାନ ଯଃ ।
ଜନସ୍ଥାନେ ବିନା ଭ୍ରାତ୍ରା ଶତ୍ରୁଃ କସ୍ତସ୍ୟ ନୋଦ୍‌ବିଜେତ୍ ।୧୬।
ନ ସ ଶକ୍ୟସ୍ତୁଲୟିତୁଂ ବ୍ୟସନୈଃ ପୁରୁଷର୍ଷଭଃ ।
ଅହଂ ତସ୍ୟାନୁଭାବଜ୍ଞା ଶକ୍ରସ୍ୟେବ ପୁଲୋମଜା ।୧୭।

---

ମୃତ୍ୟୁ ଖୋଜୁଛି ।୧୦। ହେ ବାନର ! ବିଭୀଷଣର କଳା ନାମ୍ନୀ ଜ୍ୟେଷ୍ଠା କନ୍ୟା ତାର ମାତୃକର୍ତ୍ତୃକ ପ୍ରେରିତହୋଇ ମୋତେ ଏ କଥା କହିଅଛି ।୧୧। ଅବିନ୍ଧ୍ୟ ନାମରେ ଜଣେ ମେଧାବୀ, ବିଦ୍ୱାନ୍, ଧୈର୍ଯ୍ୟଶୀଳ, ସଚ୍ଚରିତ୍ର, ବୃଦ୍ଧ, ରାକ୍ଷସଶ୍ରେଷ୍ଠ ଅଛନ୍ତି । ରାବଣ ତାହାଙ୍କୁ ଖୁବ୍ ସମ୍ମାନକରେ ।୧୨। ସେ ମଧ୍ୟ କହିଲେ ଯେ ରାମଦ୍ୱାରା ରାକ୍ଷସକୁଳର କ୍ଷୟ ଉପସ୍ଥିତ ହେବ; କିନ୍ତୁ ଦୁରାତ୍ମା ରାବଣ ତାହାଙ୍କର ହିତକଥା ଶୁଣୁ ନାହିଁ ।୧୩। ହେ ବାନରଶ୍ରେଷ୍ଠ ! ମୋର ଆଶା ହେଉଛି, ମୋର ସ୍ୱାମୀ ଶୀଘ୍ର ମୋତେ ପାଇବେ; କାରଣ ମୋର ଅନ୍ତରାତ୍ମା ଅତି ପବିତ୍ର ଏବଂ ତାଙ୍କଠାରେ ବହୁ ଗୁଣ ବିଦ୍ୟମାନ ଅଛି ।୧୪। ହେ ବାନର ! ରାମଙ୍କଠାରେ ଉତ୍ସାହ, ପୌରୁଷ, ବଳ, ଦୟା, କୃତଜ୍ଞତା, ବିକ୍ରମ, ପ୍ରଭାବ ଏ ସମସ୍ତ ରହିଛି ।୧୫। ଯେ ଭାଇର ସାହାଯ୍ୟ ବ୍ୟତୀତ ଜନସ୍ଥାନରେ ଚତୁର୍ଦ୍ଦଶ ସହସ୍ର ରାକ୍ଷସଙ୍କୁ ନିହତ କରିଛନ୍ତି, ତାହାଙ୍କ ନାମ ଶୁଣି କେଉଁ ଶତ୍ରୁ ଉଦ୍‌ବିଗ୍ନ ନ ହେବ ?।୧୬। ପୁରୁଷଶ୍ରେଷ୍ଠ ରାମଙ୍କୁ ଏହି ସମସ୍ତ ବିପଦ ବିଚଳିତ କରିପାରିବ ନାହିଁ । ଶଚୀ ଇନ୍ଦ୍ରଙ୍କର ପ୍ରଭାବ ଜାଣିଲାପରି ମୁଁ ତାଙ୍କର ପ୍ରଭାବ ଜାଣେ ।୧୭। ହେ ବାନର ! ବୀର ରାମରୂପ ସୂର୍ଯ୍ୟ ଶରଜାଳରୂପ ରଶ୍ମିରାଶି

ଶରଜାଲାଂଶୁମାଞ୍ଛୂରଃ କପେ ! ରାମଦିବାକରଃ ।
ଶତ୍ରୁରକ୍ଷୋମୟଂ ତୋୟମୁପଶୋଷଂ ନୟିଷ୍ୟତି । ୧୮ ।
ଇତି ସଂକଳ୍ପମାନାଂ ତାଂ ରାମାର୍ଥେ ଶୋକକର୍ଶିତାମ୍ ।
ଅଶ୍ରୁସଂପୂର୍ଣ୍ଣବଦନାମୁବାଚ ହନୂମାନ୍ କପିଃ । ୧୯ ।
ଶ୍ରୁତ୍ୱୈବ ଚ ବଚୋ ମହ୍ୟଂ କ୍ଷିପ୍ରମେଷ୍ୟତି ରାଘବଃ ।
ଚମୂଂ ପ୍ରକର୍ଷନ୍ମହତୀଂ ହର୍ୟୃକ୍ଷଗଣସଂକୁଲାମ୍ । ୨୦ ।
ଅଥବା ମୋଚୟିଷ୍ୟାମି ତ୍ୱାମଦ୍ୟୈବ ତୁ ରାକ୍ଷସାତ୍ ।
ଅସ୍ମାଦ୍ଦୁଃଖାଦୁପାରୋହ ମମ ପୃଷ୍ଠମନିନ୍ଦିତେ ! ୨୧ ।
ତ୍ୱାଂ ତୁ ପୃଷ୍ଠଗତାଂ କୃତ୍ୱା ସନ୍ତରିଷ୍ୟାମି ସାଗରମ୍ ।
ଶକ୍ତିରସ୍ତି ହି ମେ ବୋଢୁଂ ଲଙ୍କାମପି ସରାବଣାମ୍ । ୨୨ ।
ଅହଂ ପ୍ରସ୍ରବଣସ୍ଥାୟ ରାଘବାୟାଦ୍ୟ ମୈଥିଳି !
ପ୍ରାପୟିଷ୍ୟାମି ଶକ୍ରାୟ ହବ୍ୟଂ ହୁତମିବାନଳଃ । ୨୩ ।
ଦ୍ରକ୍ଷ୍ୟସ୍ୟଦ୍ୟୈବ ବୈଦେହି ! ରାଘବଂ ସହଲକ୍ଷ୍ମଣମ୍ ।
ବ୍ୟବସାୟସମାଯୁକ୍ତଂ ବିଷ୍ଣୁଂ ଦୈତ୍ୟବଧେ ଯଥା । ୨୪ ।

---

ଦ୍ୱାରା ଶତ୍ରୁ ରାକ୍ଷସରୂପ ଜଳକୁ ନିଶ୍ଚୟ ଶୋଷିପକାଇବେ" । ୧୮ । ଏହି ସମସ୍ତ କଥା କହି କହି ରାମଙ୍କ ଲାଗି ଶୋକରେ ଅଭିଭୂତହୋଇ ପଡ଼ିଥିବା ସୀତାଙ୍କର ମୁଖ ଲୋତକରେ ପୂର୍ଣ୍ଣ ହୋଇଗଲା । ଅନନ୍ତର ବାନର ହନୁମାନ୍ ତାହାଙ୍କୁ କହିଲେ ।୧୯। "ମୋ ମୁଖରୁ ଏହି ସମ୍ବାଦ ଶୁଣିବାମାତ୍ରେ, ରାଘବ ବାନର ଏବଂ ଭଲ୍ଲୁକଗଣସମାକୁଳ ବିଶାଳ ସେନା ସଙ୍ଗରେ ଯେପରି ଅବିଳମ୍ବେ ଆସିବେ । ୨୦ । ଅଥବା ହେ ଅନିନ୍ଦିତେ ! ମୁଁ ତୁମ୍ଭଙ୍କୁ ଆଜି ହିଁ ଏହି ରାକ୍ଷସଜନିତ ଦୁଃଖରୁ ମୋଚନ କରିଦେବି; ତୁମ୍ଭେ ମୋ ପୃଷ୍ଠରେ ଆରୋହଣ କର ।୨୧। ତୁମ୍ଭଙ୍କୁ ପୃଷ୍ଠରେ ବସାଇ ମୁଁ ସାଗର ପାରହେବି; ରାବଣ ସହିତ ଲଙ୍କାକୁ ମଧ୍ୟ ବୋହି ନେଇଯିବାକୁ ମୋର ଶକ୍ତି ଅଛି । ।୨୨। ହେ ମୈଥିଳି ! ଅଗ୍ନି ଯେପରି ଆହୁତ କରାହୋଇଥିବା ହବ୍ୟକୁ ଇନ୍ଦ୍ରଙ୍କ ନିକଟରେ ପହଞ୍ଚାଇଦିଅନ୍ତି, ସେହିପରି ଆଜି ମୁଁ ତୁମ୍ଭଙ୍କୁ ପ୍ରସ୍ରବଣ ପର୍ବତ ଉପରେ ଅବସ୍ଥାନ କରୁଥିବା ରାମଙ୍କ ନିକଟରେ ପହଞ୍ଚାଇ ଦେବି । ୨୩ । ହେ ବୈଦେହି ! ଦୈତ୍ୟବଧ ନିମନ୍ତେ ବିଷ୍ଣୁ ଆୟୋଜନ କରୁଥିବାପରି ଆୟୋଜନରେ ବ୍ୟାପୃତ ରାମ ଲକ୍ଷ୍ମଣଙ୍କୁ ତୁମ୍ଭେ ଆଜି ହିଁ ଦେଖିବ । ୨୪ ।

ତ୍ୱଦ୍ଦର୍ଶନକୃତୋତ୍ସାହମାଶ୍ରମସ୍ଥଂ ମହାବଲମ୍ ।
ପୁରନ୍ଦରମିବାସୀନଂ ନଗରାଜସ୍ୟ ମୂର୍ଦ୍ଧନି । ୨୫ ।
ପୃଷ୍ଠମାରୋହ ମେ ଦେବି ମା ବିକାଙ୍‌କ୍ଷସ୍ୱ ଶୋଭନେ ।
ଯୋଗମନ୍ୱିଚ୍ଛ ରାମେଣ ଶଶାଙ୍କେନେବ ରୋହିଣୀ । ୨୬ ।
କଥୟନ୍ତୀବ ଶଶିନା ସଂଗମିଷ୍ୟସି ରୋହିଣୀ ।
ମତ୍ପୃଷ୍ଠମଧିରୋହ ତ୍ୱଂ ତରାକାଶେ ମହାର୍ଣବମ୍ । ୨୭ ।
ନ ହି ମେ ସଂପ୍ରଯାତସ୍ୟ ତ୍ୱାମିତୋ ନୟତୋଽଙ୍ଗନେ !
ଅନୁଗନ୍ତୁଂ ଗତିଂ ଶକ୍ତାଃ ସର୍ବେ ଲଙ୍କାନିବାସିନଃ । ୨୮ ।
ଯଥୈବାହମିହ ପ୍ରାପ୍ତସ୍ତଥୈବାହମସଂଶୟମ୍ ।
ଯାସ୍ୟାମି ପଶ୍ୟ ବୈଦେହି ! ତ୍ୱାମୁଦ୍ୟମ୍ୟ ବିହାୟସମ୍ । ୨୯ ।
ମୈଥିଲୀ ତୁ ହରିଶ୍ରେଷ୍ଠାଚ୍ଛ୍ରୁତ୍ୱା ବଚନମଦ୍ଭୁତମ୍ ।
ହର୍ଷବିସ୍ମିତସର୍ବାଙ୍ଗୀ ହନୂମନ୍ତମଥାବ୍ରବୀତ୍ । ୩୦ ।
ହନୂମନ୍ଦୂରମଧ୍ୱାନଂ କଥଂ ମାଂ ନେତୁମିଚ୍ଛସି ।
ତଦେବ ଖଲୁ ତେ ମନ୍ୟେ କପିତ୍ୱଂ ହରିଯୂଥପ ! । ୩୧ ।

---

ମହାବଳୀ ରାମ ପର୍ବତରାଜର ଶିରୋଦେଶରେ ଆଶ୍ରମରେ ରହି ତୁମ୍ଭଙ୍କୁ ଦେଖିବାକୁ ଆଗ୍ରହ ହୋଇ ଇନ୍ଦ୍ରଙ୍କସଦୃଶ ବସିରହିଛନ୍ତି । ୨୫ । ହେ ସୁନ୍ଦରି ! ତୁମ୍ଭେ ମୋତେ ଉପେକ୍ଷାକର ନାହିଁ, ମୋ ପୃଷ୍ଠରେ ଆରୋହଣକର; ଚନ୍ଦ୍ରଙ୍କ ସହିତ ରୋହିଣୀଙ୍କ ପରି ରାମଙ୍କ ସହିତ ସମ୍ମିଳିତ ହୁଅ । ୨୬ । କଥା କହୁଁ କହୁଁ ଚନ୍ଦ୍ରଙ୍କ ସହିତ ରୋହିଣୀଙ୍କ ସଦୃଶ ତୁମ୍ଭେ ତାଙ୍କ ସହିତ ସମ୍ମିଳିତ ହେବ । ତୁମ୍ଭେ ମୋ ପୃଷ୍ଠରେ ଆରୋହଣ କର ଏବଂ ଆକାଶପଥରେ ସମୁଦ୍ର ପାରହୁଅ ।୨୭। ହେ ଅଙ୍ଗନେ ! ତୁମ୍ଭଙ୍କୁ ଏଠାରୁ ନେଇ ମୁଁ ପ୍ରସ୍ଥାନ କଲେ ଲଙ୍କାନିବାସୀ ସମସ୍ତ ରାକ୍ଷସଙ୍କର ମଧ୍ୟ ମୋର ଅନୁଗମନ କରିବାର ଶକ୍ତି ନାହିଁ । ୨୮। ହେ ବୈଦେହି ! ମୁଁ ଯେପରିଭାବରେ ଏଠାକୁ ଆସିଛି, ସେହିପରି ତୁମ୍ଭଙ୍କୁ ନେଇ ଆକାଶମାର୍ଗରେ ଚାଲିଯିବି, ତୁମ୍ଭେ ଦେଖ" । ୨୯ । ବାନରଶ୍ରେଷ୍ଠ ହନୁମାନଙ୍କ ମୁଖରୁ ଏହି ଅଦ୍ଭୁତ ବାକ୍ୟ ଶ୍ରବଣକରି ମୈଥିଳୀ ସମଗ୍ର ଶରୀର ଆନନ୍ଦରେ ରୋମାଞ୍ଚିତ ହୋଇଗଲା ଏବଂ ସେ ହନୁମାନଙ୍କୁ କହିଲେ । ୩୦ । ହେ ବାନରଦଳପତି ହନୁମନ୍ ; ଏତେ ଦୂରବାଟ ତୁମ୍ଭେ ମୋତେ ନେବାକୁ କିପରି ଇଚ୍ଛା କରୁଅଛ, ଏହାହିଁ ତୁମ୍ଭର ବାନରସ୍ୱଭାବ ବୋଲି ମୁଁ ମନେକରୁଅଛି ।୩୧।

କଥଂ ଶ୍ଳକ୍ଷ୍ଣଶରୀରସ୍ତ୍ୱଂ ମାମିତୋ ନେତୁମିଚ୍ଛସି ।
ସକାଶଂ ମାନବେନ୍ଦ୍ରସ୍ୟ ଭର୍ତ୍ତୁର୍ମେ ପ୍ଲବଗର୍ଷଭ ! ୩୨।
ସୀତାୟାସ୍ତୁ ବଚଃ ଶ୍ରୁତ୍ୱା ହନୂମାନ୍ମାରୁତାତ୍ମଜଃ ।
ଚିନ୍ତୟାମାସ ଲକ୍ଷ୍ମୀବାନ୍ନବଂ ପରିଭବଂ କୃତମ୍ । ୩୩ ।
ନ ମେ ଜାନାତି ସତ୍ତ୍ୱଂ ବା ପ୍ରଭାବଂ ବାସିତେକ୍ଷଣା ।
ତସ୍ମାତ୍ପଶ୍ୟତୁ ବୈଦେହୀ ଯଦ୍ରୂପଂ ମମ କାମତଃ । ୩୪ ।
ଇତି ସଂଚିନ୍ତ୍ୟ ହନୁମାଂସ୍ତଦା ପ୍ଲବଗସତ୍ତମଃ ।
ଦର୍ଶୟାମାସ ସୀତାୟାଃ ସ୍ୱରୂପମରିମର୍ଦ୍ଦନଃ । ୩୫ ।
ସ ତସ୍ମାତ୍ପାଦପାଦ୍ଧୀମାନାପ୍ଲୁତ୍ୟ ପ୍ଲବଗର୍ଷଭଃ ।
ତତୋ ବର୍ଦ୍ଧିତୁମାରେଭେ ସୀତାପ୍ରତ୍ୟୟକାରଣାତ୍ । ୩୬ ।
ମେରୁମନ୍ଦରସଙ୍କାଶୋ ବଭୌ ଦୀପ୍ତାନଳପ୍ରଭଃ ।
ଅଗ୍ରତୋ ବ୍ୟବତସ୍ଥେ ଚ ସୀତାୟା ବାନରର୍ଷଭଃ ।୩୭ ।
ହରିଃ ପର୍ବତସଂକାଶସ୍ତାମ୍ରବକ୍ତ୍ରୋ ମହାବଳଃ ।
ବଜ୍ରଦଂଷ୍ଟ୍ରନଖୋ ଭୀମୋ ବୈଦେହୀମିଦମବ୍ରବୀତ୍ । ୩୮ ।
ସପର୍ବତବନୋଦ୍ଦେଶାଂ ସାଟ୍ଟପ୍ରାକାରତୋରଣାମ୍ ।
ଲଙ୍କାମିମାଂ ସନାଥାଂ ବା ନୟିତୁଂ ଶକ୍ତିରସ୍ତି ମେ । ୩୯ ।

---

ହେ ବାନରଶ୍ରେଷ୍ଠ ! ତୁମ୍ଭେ ଏଡ଼େ କ୍ଷୁଦ୍ରଶରୀର ହୋଇ କେଉଁ ସାହସରେ ମୋର ନରଶ୍ରେଷ୍ଠ ସ୍ୱାମୀଙ୍କ ନିକଟକୁ ମୋତେ ନେଇଯିବାକୁ ଇଚ୍ଛାକରୁଅଛ” ।୩୨ । ସୀତାଙ୍କ କଥା ଶୁଣି ଲକ୍ଷ୍ମୀବାନ୍ ପବନନନ୍ଦନ ହନୂମାନ୍ ମନରେ ଭାବିଲେ,‘ଇଏ ମୋର ନୂତନ ପରାଭବ ହେଲା । ୩୩ । କୃଷ୍ଣନୟନା ସୀତା ମୋର ବଳ ବା ପ୍ରଭାବ ଜାଣନ୍ତି ନାହିଁ; ସୁତରାଂ ମୁଁ ଯେ ନିଜ ଇଚ୍ଛା ଅନୁସାରେ ରୂପ ଧରିପାରେ ତାହା ବୈଦେହୀ ଦେଖନ୍ତୁ’ । ୩୪ । ଏହିପରି ଚିନ୍ତାକରି ଅରିମର୍ଦ୍ଦନ ବାନରବର ହନୁମାନ୍ ସେତେବେଳେ ସୀତାଙ୍କୁ ନିଜରୂପ ଦେଖାଇଲେ । ୩୫। କପିଶ୍ରେଷ୍ଠ ଧୀମାନ୍ ହନୂମାନ୍ ବୃକ୍ଷରୁ ତଳକୁ ଡେଇଁ ଆସି ସୀତାଙ୍କର ବିଶ୍ୱାସ ଜନ୍ମାଇବା ନିମନ୍ତେ ବର୍ଦ୍ଧିତ ହେବାକୁ ଲାଗିଲେ । ୩୬। ତାଙ୍କର ଶରୀର ମେରୁ ମନ୍ଦର ପର୍ବତ ସଦୃଶ ହୋଇଗଲା ଏବଂ ଜ୍ୱଳନ୍ତ ଅଗ୍ନିପରି ପ୍ରଭା ଧାରଣକରି ସେ ବାନରଶ୍ରେଷ୍ଠ ସୀତାଙ୍କ ସମ୍ମୁଖରେ ଦଣ୍ଡାୟମାନ ହେଲେ । ୩୭ । ତାମ୍ରବର୍ଣ୍ଣ ମୁଖ, ବଜ୍ରସଦୃଶ ନଖଦଂଷ୍ଟ୍ରାଶାଳୀ, ଭୀଷଣ ପର୍ବତ ସଦୃଶ ଦୀର୍ଘକାୟ, ମହାବଳୀ, ବାନର ସୀତାଙ୍କୁ କହିଲେ । ୩୮ । “ହେ ଦେବି ! ମୋର ଏପରି ଶକ୍ତିଅଛି ଯେ ମୁଁ ପର୍ବତ, ବନ, ପ୍ରାକାର, ତୋରଣ, ଅଟ୍ଟାଳିକା ଏ ସମସ୍ତ ସହିତ, ଏପରିକି ତାହାର ପ୍ରଭୁ ରାବଣ ସହିତ ମଧ୍ୟ ଏ ଲଙ୍କାକୁ

ତଦବସ୍ଥାପ୍ୟତାଂ ବୁଦ୍ଧିରଲଂ ଦେବି ବିକାଙ୍‌କ୍ଷୟା ।
ବିଶୋକଂ କୁରୁ ବୈଦେହି ରାଘବଂ ସହଲକ୍ଷ୍ମଣମ୍ । ୪୦ ।
ତଂ ଦୃଷ୍ଟ୍ୱାଚଲସଂକାଶମୁବାଚ ଜନକାତ୍ମଜା ।
ପଦ୍ମପତ୍ରବିଶାଳାକ୍ଷୀ ମାରୁତସ୍ୟୌରସଂ ସୁତମ୍ । ୪୧ ।
ତବ ସତ୍ତ୍ୱଂ ବଲଂ ଚୈବ ବିଜାନାମି ମହାକପେ ।
ବାୟୋରିବ ଗତିଶ୍ଚାପି ତେଜଶ୍ଚାଗ୍ନେରିବାଦ୍ଭୁତମ୍ । ୪୨ ।
ପ୍ରାକୃତୋଽନ୍ୟଃ କଥଂ ଚେମାଂ ଭୂମିମାଗନ୍ତୁମର୍ହତି ।
ଉଦଧେରପ୍ରମେୟସ୍ୟ ପାରଂ ବାନରଯୂଥପ । ୪୩ ।
ଜାନାମି ଗମନେ ଶକ୍ତିଂ ନୟନେ ଚାପି ତେ ମମ ।
ଅବଶ୍ୟଂ ସଂପ୍ରଧାର୍ଯ୍ୟାଶୁ କାର୍ଯସିଦ୍ଧିରିବାତ୍ମନଃ । ୪୪ ।
ଅଯୁକ୍ତଂ ତୁ କପିଶ୍ରେଷ୍ଠ ମୟା ଗନ୍ତୁଂ ତ୍ୱୟା ସହ ।
ବାୟୁବେଗସବେଗସ୍ୟ ବେଗୋ ମାଂ ମୋହୟେତ୍ତବ । ୪୫ ।
ଅହମାକାଶମାସକ୍ତା ହ୍ୟୁପର୍ଯୁପରି ସାଗରମ୍ ।
ପ୍ରପତେୟଂ ହି ତେ ପୃଷ୍ଠାଦ୍ଭୟାଦ୍‌ବେଗେନ ଗଚ୍ଛତଃ । ୪୬ ।

---

ବହିନେଇ ଯାଇପାରିବ । ୩୯ । ସୁତରାଂ ତୁମ୍ଭେ ଶଙ୍କା ଦୂରକରି ମନ ସ୍ଥିରକର । ହେ ବୈଦେହି ! ତୁମ୍ଭେ ଲକ୍ଷ୍ମଣଙ୍କ ସହିତ ରାମଙ୍କର ଶୋକ ଦୂରକର" ।୪୦। ଜନକନନ୍ଦିନୀ ପଦ୍ମଲୋଚନା ସୀତା ପବନଙ୍କର ଔରସଜାତ ପୁତ୍ର ହନୁମାନଙ୍କ ପର୍ବତାକାର ଦେଖି କହିଲେ ।୪୧। ହେ ମହାକପେ ! ତୁମ୍ଭର ସାହସ, ବଳ, ବାୟୁସଦୃଶ ଗତି ଏବଂ ଅଗ୍ନିଙ୍କ ସଦୃଶ ଅଦ୍ଭୁତ ତେଜ ଅଛି,ମୁଁ ଭଲକରି ଜାଣିଲି ।୪୨। ହେ ବାନରଯୂଥପତେ ! ଅନ୍ୟ କେଉଁ ସାଧାରଣ ବ୍ୟକ୍ତି ବା ଏହି ଅପରିମେୟ ସମୁଦ୍ର ପାରହୋଇ ଏ ସ୍ଥାନକୁ ଆସିବାକୁ ସମର୍ଥ ହେବ ? । ୪୩ । ଫେରିଯିବାକୁ ଏବଂ ମୋତେ ନେଇଯିବାକୁ ତୁମ୍ଭର ଶକ୍ତି ଅଛି, ମୁଁ ଜାଣୁଛି; କିନ୍ତୁ ଆଶୁ କାର୍ଯ୍ୟସିଦ୍ଧି ବିଷୟରେ ମୋର ନିଜର ବିବେଚନା କରିବା ଉଚିତ । ୪୪ । କପିଶ୍ରେଷ୍ଠ ! ତୁମ୍ଭ ସହିତ ମୋର ଯିବା ଯୁକ୍ତିଯୁକ୍ତ ନୁହେ, କାରଣ ତୁମ୍ଭର ବେଗ ବାୟୁସଦୃଶ; ସୁତରାଂ ତଦ୍ୱାରା ମୋର ମୂର୍ଚ୍ଛା ହୋଇପାରେ । ୪୫ । ତୁମ୍ଭେ ଖୁବ୍ ବେଗରେ ଯାଉ ଯାଉ ଯେତେବେଳେ ସମୁଦ୍ର ଉପରେ କ୍ରମଶଃ ଶୂନ୍ୟରେ ଉପରକୁ ଉପରକୁ ଉଠୁଥିବ, ସେତେବେଳେ ମୁଁ ତୁମ୍ଭ ପୃଷ୍ଠରୁ ଖସି ପଡ଼ିପାରେଁ । ୪୬ । ତିମି, ନକ୍ର, ଏବଂ ମତ୍ସ୍ୟସମାକୁଳ ସମୁଦ୍ରରେ

ପତିତା ସାଗରେ ଗୃହଂ ତିମିନକ୍ରଝଷାକୁଳେ ।
ଭବେୟମାଶୁ ବିବଶା ଯାଦସାମନ୍ନମୁତ୍ତମମ୍ । ୪୭ ।
ନ ଚ ଶକ୍ଷ୍ୟେ ତ୍ୱୟା ସାର୍ଦ୍ଧଂ ଗନ୍ତୁଂ ଶତ୍ରୁବିନାଶନ !
କଲତ୍ରବତି ସନ୍ଦେହସ୍ତ୍ୱୟି ସ୍ୟାଦପ୍ୟସଂଶୟମ୍ । ୪୮ ।
ହ୍ରିୟମାଣାଂ ତୁ ମାଂ ଦୃଷ୍ଟ୍ୱା ରାକ୍ଷସା ଭୀମବିକ୍ରମାଃ ।
ଅନୁଗଚ୍ଛେୟୁରାଦିଷ୍ଟା ରାବଣେନ ଦୁରାତ୍ମନା । ୪୯ ।
ତୈସ୍ତ୍ୱଂ ପରିବୃତଃ ଶୂରୈଃ ଶୂଲମୁଦ୍‌ଗରପାଣିଭିଃ ।
ଭବେସ୍ତ୍ୱଂ ସଂଶୟଂ ପ୍ରାପ୍ତୋ ମୟା ବୀର ! କଲତ୍ରବାନ୍ । ୫୦ ।
ସାୟୁଧା ବହବୋ ବ୍ୟୋମ୍ନି ଖ[illegible]ସ୍ତ୍ୱଂ ନିରାୟୁଧଃ ।
କଥଂ ଶକ୍ଷ୍ୟସି ସଂଯାତୁଂ ମାଂ ଚୈବ ପରିରକ୍ଷିତୁମ୍ । ୫୧ ।
ଯୁଧ୍ୟମାନସ୍ୟ ରକ୍ଷୋଭିସ୍ତବ ତୈଃ କ୍ରୂରକର୍ମଭିଃ ।
ପ୍ରପତେୟଂ ହି ତେ ପୃଷ୍ଠାଦ୍ଭୟାର୍ତ୍ତା କପିସତ୍ତମ ! । ୫୨ ।
ଅଥ ରକ୍ଷାଂସି ଭୀମାନି ମହାନ୍ତି ବଳବନ୍ତି ଚ ।
କଥଂଚିତ୍ସାଂପରାୟେ ତ୍ୱାଂ ଜୟେୟୁଃ କପିସତ୍ତମ ! ୫୩ ।

---

ପତିତ ହେଲେ, ମୁଁ ଅସହାୟ ଅବସ୍ଥାରେ ଅବଲମ୍ବ ଜଳଜନ୍ତୁମାନଙ୍କର ଉପାଦେୟ ଭକ୍ଷ୍ୟ ସାମଗ୍ରୀ ହେବି । ୪୭ । ହେ ଶତ୍ରୁସୂଦନ ! ମୁଁ ତୁମ୍ଭ ସହିତ ଯାଇପାରିବି ନାହିଁ । ତୁମ୍ଭ ସହିତ ଜଣେ ସ୍ତ୍ରୀଲୋକ ଅଛି ଦେଖିଲେ, ନିଶ୍ଚୟ ତୁମ୍ଭ ପ୍ରତି ସନ୍ଦେହ ଜାତହେବ । ୪୮ । ତୁମ୍ଭେ ମୋତେ ହରଣକରି ନେଇଯାଉଅଛ ଦେଖିଲେ, ଦୁରାତ୍ମା ରାବଣର ଆଦେଶରେ ଭୀମବିକ୍ରମ ରାକ୍ଷସମାନେ ତୁମ୍ଭର ପଛେ ପଛେ ଦୌଡ଼ିବେ । ୪୯ । ମୁଁ ଗୋଟିଏ ସ୍ତ୍ରୀଲୋକ, ତୁମ୍ଭ ସାଙ୍ଗରେ ଥିବି; ଏପରି ଅବସ୍ଥାରେ ତୁମେ ଶୂଳମୁଦ୍‌ଗରଧାରୀ ଏହି ରାକ୍ଷସମାନଙ୍କଦ୍ୱାରା ପରିବେଷ୍ଟିତ ହେଲେ, ତୁମ୍ଭର ଜୀବନସଂଶୟ ଉପସ୍ଥିତ ହେବ ।୫୦। ଆକାଶରେ ବହୁସଂଖ୍ୟକ ରାକ୍ଷସ ଅସ୍ତ୍ରଶସ୍ତ୍ରରେ ସୁସଜ୍ଜିତ ହୋଇ ଥିବେ ଏବଂ ତୁମ୍ଭେ ନିରସ୍ତ୍ର ଥିବ; ଏପରି ଅବସ୍ଥାରେ ତୁମ୍ଭେ ସେଠାରୁ କିପରି ଯାଇପାରିବ ? ଆଉ ମୋତେ ବା କିପରି ରକ୍ଷା କରିପାରିବ ? ।୫୧। ହେ ବାନରଶ୍ରେଷ୍ଠ ! ତୁମ୍ଭେ ସେହି କ୍ରୂରକର୍ମା ରାକ୍ଷସମାନଙ୍କ ସହିତ ଯୁଦ୍ଧରେ ପ୍ରବୃତ୍ତହେଲେ, ମୁଁ ଭୟବିହ୍ୱଳ ହୋଇ ତୁମ୍ଭ ପିଠିରୁ ଖସିପଡ଼ିବି । ୫୨ । ଅନନ୍ତର ଏହି ମହାକାୟ ବଳବାନ୍ ଭୀମମୂର୍ତ୍ତି ରାକ୍ଷସମାନେ ଯଦି ଯୁଦ୍ଧରେ କୌଣସି ପ୍ରକାରେ ତୁମ୍ଭଙ୍କୁ ଜୟ କରନ୍ତି, ତେବେ ଅବସ୍ଥା କଅଣ ହେବ ? । ୫୩ । ଅଥବା ଯଦି ତୁମ୍ଭେ

ଅଥବା ଯୁଧ୍ୟମାନସ୍ୟ ପତେତ୍ତ୍ୱଂ ବିମୁଖସ୍ୟ ତେ ।
ପତିତାଂ ଚ ଗୃହୀତ୍ୱା ମାଂ ନୟେୟୁଃ ପାପରାକ୍ଷସାଃ । ୫୪ ।
ମାଂ ବା ହରେୟୁସ୍ତ୍ୱଦ୍ଧସ୍ତାଦ୍‌ବିଶସେୟୁରଥାପି ବା ।
ଅନବସ୍ଥୌ ହି ଦୃଶ୍ୟେତେ ଯୁଦ୍ଧେ ଜୟପରାଜୟୌ । ୫୫ ।
ଅହଂ ଚାପି ବିପଦ୍ୟେୟଂ ରକ୍ଷୋଭିରଭିତର୍ଜିତା ।
ତ୍ୱତ୍ପ୍ରୟତ୍ନୋ ହରିଶ୍ରେଷ୍ଠ ! ଭବେନ୍ନିଷ୍ଫଲ ଏବ ତୁ । ୫୬ ।
କାମଂ ତ୍ୱମପି ପର୍ଯ୍ୟାପ୍ତୋ ନିହନ୍ତୁଂ ସର୍ବରାକ୍ଷସାନ୍ ।
ରାଘବସ୍ୟ ଯଶୋ ହୀୟେତ୍ତ୍ୱୟା ଶସ୍ତୈସ୍ତୁ ରାକ୍ଷସୈଃ । ୫୭।
ଅଥବାଦାୟ ରକ୍ଷାଂସି ନ୍ୟସେୟୁଃ ସଂବୃତେ ହି ମାମ୍ ।
ଯତ୍ର ତେ ନାଭିଜାନୀୟୁର୍ହରୟୋ ନାପି ରାଘବଃ । ୫୮ ।
ଆରମ୍ଭସ୍ତୁ ମଦର୍ଥୋଽୟଂ ତତସ୍ତବ ନିରର୍ଥକଃ ।
ତ୍ୱୟା ହି ସହ ରାମସ୍ୟ ମହାନାଗମନେ ଗୁଣଃ । ୫୯ ।
ମୟି ଜୀବିତମାୟତ୍ତଂ ରାଘବସ୍ୟାମିତୌଜସଃ ।
ଭ୍ରାତୃଣାଂ ଚ ମହାବାହୋ ! ତବ ରାଜକୁଲସ୍ୟ ଚ । ୬୦ ।

---

ଯୁଦ୍ଧ କରୁ କରୁ ପରାଙ୍‌ମୁଖ ହୋଇପଡ଼, ତେବେ ମୁଁ ପଡ଼ିଯିବ ଏବଂ ପାପିଷ୍ଠ ରାକ୍ଷସମାନେ ମୋତେ ଧରି ନେଇଯିବେ । ୫୪ । ସେମାନେ ହୁଏତ ମୋତେ ତୁମ୍ଭ ହାତରୁ ଛଡ଼ାଇନେବେ, ଅଥବା ହାଣିପକାଇବେ । ଯୁଦ୍ଧରେ ଜୟ ପରାଜୟର କୌଣସି ନିଶ୍ଚିତତା ନାହିଁ । ୫୫ । ମୁଁ ରାକ୍ଷସମାନଙ୍କ ଦ୍ୱାରା ତର୍ଜିତହୋଇ ବିପନ୍ନ ହୋଇପାରେ । ବାନରଶ୍ରେଷ୍ଠ ! ତାହାହେଲେ ତୁମ୍ଭର ସମସ୍ତ ଯତ୍ନ ନିଷ୍ଫଳ ହୋଇଯିବ ।୫୬। ଅବଶ୍ୟ ତୁମ୍ଭେ ଏକାକୀ ସବୁ ରାକ୍ଷସଙ୍କୁ ନିହତ କରିପାର, ଏହା ସତ୍ୟ; ମାତ୍ର ତୁମ୍ଭକର୍ତ୍ତୃକ ରାକ୍ଷସମାନେ ବିନଷ୍ଟହେଲେ ରାଘବଙ୍କର ଯଶୋହାନି ଘଟିବ ।୫୭। କିମ୍ବା ରାକ୍ଷସମାନେ ମୋତେ ଘେନ ଆସି ଏପରି ଗୋପନୀୟ ସ୍ଥାନରେ ରଖିବେ ଯେ, ବାନରମାନେ କିମ୍ବା ରାମ ତାହା ଜାଣି ପାରିବେ ନାହିଁ । ୫୮ । ତାହାହେଲେ ମୋନିମନ୍ତେ ତୁମ୍ଭର ଏ ସମସ୍ତ ଉଦ୍‌ଯୋଗ ବିଫଳ ହୋଇଯିବ : ତୁମ୍ଭ ସଙ୍ଗରେ ରାମ ଆସିଲେ ହିଁ ସବୁଠାରୁ ଭଲ ହେବ ।୫୯ । ହେ ମହାବାହୋ, ଅମିତତେଜା ରାଘବଙ୍କର ଓ ତାଙ୍କ ଭାଇମାନଙ୍କର ତଥା ତୁମ୍ଭ ରାଜବଂଶର ଜୀବନ ବର୍ତ୍ତମାନ ମୋର ଉପରେ ନିର୍ଭର କରୁଛି । ୬୦ । ମୋ ଲାଗି

ତୌ ନରାଶୌ ମଦର୍ଥଂ ତ ଶୋକସଂତାପକର୍ଶିତୌ ।
ସହ ସର୍ବର୍କ୍ଷହରିଭିସ୍ତ୍ୟକ୍ଷ୍ୟତଃ ପ୍ରାଣସଂଗ୍ରହମ୍ । ୭୧ ।
ଭର୍ତୁର୍ଭକ୍ତିଂ ପୁରସ୍କୃତ୍ୟ ରାମାଦନ୍ୟସ୍ୟ ବାନର !
ନାହଂ ସ୍ପ୍ରଷ୍ଟୁଂ ସ୍ୱତୋ ଗାତ୍ରମିଚ୍ଛେୟଂ ବାନରୋତ୍ତମ ! । ୭୨ ।
ଯଦହଂ ଗାତ୍ରସଂସ୍ପର୍ଶଂ ରାବଣସ୍ୟ ଗତା ବଲାତ୍ ।
ଅନୀଶା କିଂ କରିଷ୍ୟାମି ବିନାଥା ବିବଶା ସତୀ । ୭୩ ।
ଯଦି ରାମୋ ଦଶଗ୍ରୀବମିହ ହତ୍ୱା ସରାକ୍ଷସମ୍ ।
ମାମିତୋ ଗୃହ୍ୟ ଗଚ୍ଛେତ ତତ୍ତସ୍ୟ ସଦୃଶଂ ଭବେତ୍ । ୭୪ ।

ଶ୍ରୁତାଶ୍ଚ ଦୃଷ୍ଟା ହି ମୟା ପରାକ୍ରମା-
ମହାତ୍ମନସ୍ତସ୍ୟ ରଣାବମର୍ଦ୍ଦିନଃ ।
ନ ଦେବଗନ୍ଧର୍ବଭୁଜଙ୍ଗରାକ୍ଷସା-
ଭବନ୍ତି ରାମେଣ ସମା ହି ସଂଯୁଗେ । ୭୫ ।
ସମୀକ୍ଷ୍ୟ ତଂ ସଂଯତି ଚିତ୍ରକାର୍ମୁକମ୍
ମହାବଲଂ ବାସବତୁଲ୍ୟବିକ୍ରମମ୍ ।
ସଲକ୍ଷ୍ମଣଂ କୋ ବିଷହେତ ରାଘବମ୍
ହୁତାଶନଂ ଦୀପ୍ତମିବାନିଲେରିତମ୍ । ୭୬ ।

---

ରାମ ଲକ୍ଷ୍ମଣ ଦୁହେଁ ନରଶ୍ରେଷ୍ଠ ଏବଂ ଶୋକ ସଂତାପରେ ଅଭିଭୂତ ହୋଇ ସମସ୍ତ ବାନର ଓ ଋକ୍ଷଗଣଙ୍କ ସହିତ ପ୍ରାଣ ତ୍ୟାଗକରିବେ ।୭୧ । ବାନରଶ୍ରେଷ୍ଠ ! ମୋର ସ୍ୱାମି-ଭକ୍ତିକୁ ସମ୍ମାନକରି, ମୁଁ ନିଜ ଇଚ୍ଛାରେ ରାମଙ୍କ ବ୍ୟତୀତ ଅନ୍ୟ ବ୍ୟକ୍ତିର ଦେହ ସ୍ପର୍ଶକରିବାକୁ ଇଚ୍ଛାକରେ ନାହିଁ । ୭୨ । ରାବଣ ଯେ ବଳପୂର୍ବକ ମୋର ଗାତ୍ର ସ୍ପର୍ଶକଲା, ସେଥିରେ ମୋର କୌଣସି କର୍ତ୍ତୃତ୍ୱ ନ ଥିଲା, ମୁଁ କଅଣ କରିଥାନ୍ତି ? ସେତେବେଳେ ଅନାଥା ଏବଂ ପରର ବଶୀଭୂତା ହୋଇଥିଲି । ୭୩ । ରାମ ଯଦି ଏହିଠାରେ ରାବଣକୁ ରାକ୍ଷସମାନଙ୍କ ସହିତ ହତ୍ୟାକରି ମୋତେ ଏଠାରୁ ନେଇ ଯିବେ, ତାହାହେଲେ ତାହା ହିଁ ତାଙ୍କର ଉପଯୁକ୍ତ କାର୍ଯ୍ୟ ହେବ । ୭୪ । ମୁଁ ଯୁଦ୍ଧରେ ସେହି ଶତ୍ରୁମର୍ଦ୍ଦନକାରୀ ମହାତ୍ମା ରାମଙ୍କର ପରାକ୍ରମ ଶୁଣିଅଛି ଏବଂ ଦେଖିଅଛି । ନ ଦେବତା, ନ ଗନ୍ଧର୍ବ, ନ ନାଗ, ନ ରାକ୍ଷସ କେହି ଯୁଦ୍ଧରେ ରାମଙ୍କର ସମକକ୍ଷ ନୁହନ୍ତି । ୭୫ । ଯୁଦ୍ଧକ୍ଷେତ୍ରରେ ବିଚିତ୍ର ଧନୁର୍ଦ୍ଧାରୀ, ଇନ୍ଦ୍ରତୁଲ୍ୟ ପରାକ୍ରମୀ, ମହାବଳୀ ରାମଙ୍କୁ ଲକ୍ଷ୍ମଣଙ୍କ ସହିତ ଦେଖିଲେ ବାୟୁପ୍ରେରିତ ଜ୍ୱଳନ୍ତ ଅଗ୍ନି ସଦୃଶ ତାଙ୍କର ପରାକ୍ରମକୁ କିଏ ସହ୍ୟ କରିପାରିବ ? ।୭୬। ବାନରଶ୍ରେଷ୍ଠ !

ସଲକ୍ଷ୍ମଣଂ ରାଘବମାଜିମର୍ଦନମ୍ ।
ଦିଶାଗଜଂ ମତ୍ତମିବ ବ୍ୟବସ୍ଥିତମ୍ ।
ସହେତ କୋ ବାନରମୁଖ୍ୟ ! ସଂଯୁଗେ
ଯୁଗାନ୍ତସୂର୍ଯପ୍ରତିମଂ ଶରାର୍ଚିଷମ୍ । ୬୭ ।
ସ ମେ କପିଶ୍ରେଷ୍ଠ ! ସଲକ୍ଷ୍ମଣଂ ପ୍ରିୟମ୍ ।
ସଯୂଥପଂ କ୍ଷିପ୍ରମିହୋପପାଦୟ ।
ଚିରାୟ ରାମଂ ପ୍ରତି ଶୋକକର୍ଶିତାମ୍ ।
କୁରୁଷ୍ୱ ମାଂ ବାନରବୀର ! ହର୍ଷିତାମ୍ । ୬୮ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ସୁନ୍ଦରକାଣ୍ଡେ ସୀତାପ୍ରତ୍ୟାନୟନାନୌଚିତ୍ୟଂ ନାମ ସପ୍ତତ୍ରିଂଶଃ ସର୍ଗଃ ।

---

# ଅଷ୍ଟାତ୍ରିଂଶଃ ସର୍ଗଃ

## ବାୟସବୃତ୍ତାନ୍ତକଥନମ୍

ତତଃ ସ କପିଶାର୍ଦୂଲସ୍ତେନ ବାକ୍ୟେନ ତୋଷିତଃ ।
ସୀତାମୁବାଚ ତଚ୍ଛ୍ରୁତ୍ୱା ବାକ୍ୟଂ ବାକ୍ୟବିଶାରଦଃ । ୧ ।

---

ଯୁଦ୍ଧରେ ଶତ୍ରୁପ୍ରମଥନକାରୀ, ଉନ୍ମତ୍ତ ଦିଗ୍‌ଗଜ ସଦୃଶ ଅବସ୍ଥାନ କରୁଥିବା, ଯୁଗାନ୍ତ-କାଳୀନ ସୂର୍ଯ୍ୟସଦୃଶ ଶରରୂପ କିରଣବର୍ଷୀ, ଲକ୍ଷ୍ମଣସହଚର ରାମଙ୍କୁ କେଉଁ ବ୍ୟକ୍ତି ସହ୍ୟ କରିପାରିବ ? । ୬୭ । ହେ ବାନରଶ୍ରେଷ୍ଠ ! ତୁମ୍ଭେ ଲକ୍ଷ୍ମଣ ଏବଂ ସୁଗ୍ରୀବଙ୍କ ସହିତ ମୋର ପ୍ରିୟତମ ରାମଙ୍କୁ ସତ୍ୱର ଏହିଠାକୁ ଘେନିଆସ । ମୁଁ ବହୁଦିନ ହେଲା ରାମଙ୍କ ଶୋକରେ କ୍ଷୀଣ ହୋଇ ଯାଇଅଛି । ତୁମ୍ଭେ ମୋତେ ଆନନ୍ଦିତ କରାଅ ” । ୬୮ ।

---

## ୩୮ଶ ସର୍ଗ

### ( ବାୟସବୃତ୍ତାନ୍ତକଥନ )

ବାକ୍ୟବିଶାରଦ ବାନରଶ୍ରେଷ୍ଠ ହନୁମାନ୍ ସୀତାଙ୍କର ସେହି କଥା ଶୁଣି ସନ୍ତୁଷ୍ଟ ହୋଇ ତାଙ୍କୁ କହିଲେ । ୧ । “ହେ ଶୁଭଦର୍ଶନେ ଦେବି ! ତୁମ୍ଭେ ସ୍ତ୍ରୀସ୍ୱଭାବର

ଯୁକ୍ତରୂପଂ ତ୍ୱୟା ଦେବି ! ଭାଷିତଂ ଶୁଭଦର୍ଶନେ !
ସଦୃଶଂ ସ୍ତ୍ରୀସ୍ୱଭାବସ୍ୟ ସାଧ୍ୱୀନାଂ ବିନୟସ୍ୟ ଚ । ୨ ।
ସ୍ତ୍ରୀତ୍ୱାନ୍ନ ତ୍ୱଂ ସମର୍ଥାସି ସାଗରଂ ବ୍ୟତିବର୍ତ୍ତିତୁମ୍ ।
ମାମଧିଷ୍ଠାୟ ବିସ୍ତୀର୍ଣ୍ଣଂ ଶତଯୋଜନମାୟତମ୍ । ୩ ।
ଦ୍ୱିତୀୟଂ କାରଣଂ ଯଚ୍ଚ ବ୍ରବୀଷି ବିନୟାନ୍ୱିତେ !
ରାମାଦନ୍ୟସ୍ୟ ନାର୍ହାମି ସଂସର୍ଗମିତି ଜାନକି ! ୪ ।
ଏତତ୍ତେ ଦେବି ! ସଦୃଶଂ ପତ୍ନ୍ୟାସ୍ତସ୍ୟ ମହାତ୍ମନଃ ।
କା ହ୍ୟନ୍ୟା ତ୍ୱାମୃତେ ଦେବି ! ବ୍ରୂୟାଦ୍ ବଚନମୀଦୃଶମ୍ । ୫ ।
ଶ୍ରୋଷ୍ୟତେ ଚୈବ କାକୁତ୍ସ୍ଥଃ ସର୍ବଂ ନିରବଶେଷତଃ ।
ଚେଷ୍ଟିତଂ ଯତ୍ତ୍ୱୟା ଦେବି ! ଭାଷିତଂ ଚ ମମାଗ୍ରତଃ । ୬ ।
କାରଣୈର୍ବହୁଭିର୍ଦେବି ! ରାମପ୍ରିୟଚିକୀର୍ଷୟା ।
ସ୍ନେହପ୍ରସ୍କନ୍ନମନସା ମୟୈତତ୍ସମୁଦୀରିତମ୍ । ୭ ।
ଲଙ୍କାୟା ଦୁଷ୍ପ୍ରବେଶତ୍ୱାଦ୍ଦୁସ୍ତରତ୍ୱାନ୍ମହୋଦଧେଃ ।
ସାମର୍ଥ୍ୟାଦାତ୍ମନଶ୍ଚୈବ ମୟୈତତ୍ସମୁଦୀରିତମ୍ । ୮ ।
ଇଚ୍ଛାମି ତ୍ୱାଂ ସମାନେତୁମଦ୍ୟୈବ ରଘୁବନ୍ଧୁନା ।
ଗୁରୁସ୍ନେହେନ ଭକ୍ତ୍ୟା ଚ ନାନ୍ୟଥା ତଦୁଦାହୃତମ୍ । ୯ ।

---

ଅନୁରୂପ ଏବଂ ସାଧ୍ୱୀମାନଙ୍କର ତଥା ବିନୟର ଉପଯୋଗୀ କଥା ହିଁ କହିଅଛ । । ୨ । ତୁମ୍ଭେ ସ୍ତ୍ରୀଲୋକ ହୋଇଥିବା ହେତୁରୁ ମୋ ଉପରେ ବସି ଶତଯୋଜନ ବିସ୍ତୀର୍ଣ୍ଣ ସମୁଦ୍ର ପାରହେବାକୁ ସମର୍ଥ ନୁହଁ । ୩ । ହେ ବିନୟାନ୍ୱିତେ ଜାନକି ! ତୁମ୍ଭେ 'ରାମଙ୍କ ଭିନ୍ନ ଅନ୍ୟ ବ୍ୟକ୍ତିଙ୍କୁ ସ୍ପର୍ଶ କରିବି ନାହିଁ' ଏହି ଯେଉଁ ଦ୍ୱିତୀୟ କାରଣ କହିଲ, ଏହା ମହାତ୍ମା ରାମଙ୍କ ପତ୍ନୀ ତୁମ୍ଭର ଉପଯୁକ୍ତ କଥା । ହେ ଦେବି ! ତୁମ୍ଭ ବ୍ୟତୀତ ଅନ୍ୟ କିଏ ଏପରି କଥା କହନ୍ତା ? ।୪-୫। ତୁମ୍ଭେ ମୋ ସମ୍ମୁଖରେ ଯେପରି ଆଚରଣ କଲ ଏବଂ ଯେଉଁସବୁ କଥା କହିଲ, ରାମ ସେ ସମସ୍ତ ଆଦ୍ୟନ୍ତ ଯଥାଯଥଭାବରେ ଶୁଣିବେ । ୬ । ହେ ଦେବି ! ମୋର ମନ ସ୍ନେହରେ ଦ୍ରବୀଭୂତ ହୋଇ ଯାଇଥିବାରୁ ଏବଂ ରାମଙ୍କର ପ୍ରିୟକାର୍ଯ୍ୟ ସାଧନକରିବା ଅଭିଳାଷରେ ନାନା କାରଣରୁ ମୁଁ ଏ କଥା, କହିଥିଲି । ୭ । ଲଙ୍କାରେ ପ୍ରବେଶ କରିବା ଦୁଃସାଧ୍ୟ, ମହାସାଗରକୁ ପାରହେବା ମଧ୍ୟ ଦୁରୂହ; ମାତ୍ର ଏ ବିଷୟରେ ମୋର ନିଜର ସାମର୍ଥ୍ୟ ଥିବାରୁ ମୁଁ ଏ କଥା କହିଥିଲି । ୮ । ଗୁରୁ ରାମଙ୍କ ପ୍ରତି ସ୍ନେହ ଏବଂ ଭକ୍ତିହେତୁରୁ ରଘୁକୁଳର ବନ୍ଧୁ ରାମଙ୍କ ସହିତ ତୁମ୍ଭକୁ ଆଜି ସମ୍ମିଳିତ କରାଇଦେବା ମୋର ଇଚ୍ଛା । ତାହା ନ ହୋଇଥିଲେ ମୁଁ ଏପରି କହି ନ ଥାନ୍ତି । ୯ ।

ଯଦି ନୋତ୍ସହସେ ଯାତୁଂ ମୟା ସାର୍ଧମନିନ୍ଦିତେ !
ଅଭିଜ୍ଞାନଂ ପ୍ରଯଚ୍ଛ ତ୍ୱଂ ଜାନୀୟାଦ୍ରାଘବୋ ହି ଯତ୍ । ୧୦ ।
ଏବମୁକ୍ତା ହନୁମତା ସୀତା ସୁରସୁତୋପମା ।
ଉବାଚ ବଚନଂ ମନ୍ଦଂ ବାଷ୍ପପ୍ରଗ୍ରଥିତାକ୍ଷରମ୍ । ୧୧ ।
ଇଦଂ ଶ୍ରେଷ୍ଠମଭିଜ୍ଞାନଂ ବ୍ରୂୟାସ୍ତ୍ୱଂ ତୁ ମମ ପ୍ରିୟମ୍ ।
ଶୈଳସ୍ୟ ଚିତ୍ରକୂଟସ୍ୟ ପାଦେ ପୂର୍ବୋତ୍ତରେ ପଦେ । ୧୨ ।
ତାପସାଶ୍ରମବାସିନ୍ୟାଃ ପ୍ରାଜ୍ୟମୂଲଫଲୋଦକେ ।
ତସ୍ମିନ୍ ସିଦ୍ଧାଶ୍ରିତେ ଦେଶେ ମନ୍ଦାକିନ୍ୟା ହ୍ୟଦୂରତଃ । ୧୩ ।
ତସ୍ୟୋପବନଖଣ୍ଡେଷୁ ନାନାପୁଷ୍ପସୁଗନ୍ଧିଷୁ ।
ବିହୃତ୍ୟ ସଲିଲଂ କ୍ଳିନ୍ନୋ ମମାଙ୍କେ ସମୁପାବିଶଃ । ୧୪ ।
ତତୋ ମାଂସସମାଯୁକ୍ତୋ ବାୟସଃ ପର୍ଯତୁଣ୍ଡୟତ୍ ।
ତମହଂ ଲୋଷ୍ଟମୁଦ୍ୟମ୍ୟ ବାରୟାମି ସ୍ମ ବାୟସମ୍ । ୧୫ ।
ଦାରୟନ୍ ସ ଚ ମାଂ କାକସ୍ତତ୍ରୈବ ପରିଲୀୟତେ ।
ନ ଚାପ୍ୟୁପାରମନ୍ମାଂସାଭକ୍ଷାର୍ଥୀ ବଲିଭୋଜନଃ । ୧୬ ।

---

ହେ ଅନଘତେ ! ଯଦି ମୋ ସଙ୍ଗରେ ଯିବାକୁ ତୁମ୍ଭର ସାହସ ହେଉ ନାହିଁ, ତାହାହେଲେ ମୋତେ ଏପରି କିଛି ନିଦର୍ଶନ ପ୍ରଦାନକର, ଯାହା ରାଘବ ଚିହ୍ନି ପାରିବେ” । ୧୦ । ହନୁମାନ୍ ଏପରି କହିବାଉତ୍ତାରୁ ଦେବକନ୍ୟାସଦୃଶୀ ସୀତା ଲୋତକସମ୍ମିଶ୍ରିତ ବାକ୍ୟରେ ଧୀରେ ଧୀରେ କହିଲେ । ୧୧ । “ତୁମ୍ଭେ ମୋର ପ୍ରିୟତମଙ୍କୁ ଉତ୍କୃଷ୍ଟ ନିଦର୍ଶନସ୍ୱରୂପ ଏହି ବୃତ୍ତାନ୍ତ କହିବ--‘ପୂର୍ବେ ଚିତ୍ରକୂଟ ପର୍ବତର ଈଶାନକୋଣସ୍ଥ ପାଦଦେଶରେ ମନ୍ଦାକିନୀ ନଦୀର ଅନତିଦୂରରେ ସିଦ୍ଧଜନସେବିତ ପ୍ରଚୁର ଫଳମୂଳ ଏବଂ ଜଳପୂର୍ଣ୍ଣ ତାପସାଶ୍ରମରେ ନାନାପୁଷ୍ପସୁଗନ୍ଧଯୁକ୍ତ ସେହି ଆଶ୍ରମର ଉପବନ ମଧ୍ୟରେ ତୁମ୍ଭେ ବିହାରକରି ଜଳସିକ୍ତ ହୋଇ ମୋ କୋଳରେ ଉପବେଶନ କରିଥିଲ । ୧୨-୧୪ । ଏହି ସମୟରେ ଗୋଟିଏ କାକ ମାଂସଲୋଭୀ ହୋଇ ମୋତେ ଥଣ୍ଟରେ ଆଘାତକଲା । ମୁଁ ଗୋଟିଏ ଲୋଷ୍ଟ୍ର ଉଠାଇ ତାକୁ ନିବାରଣକଲି । ୧୫ । କିନ୍ତୁ ସେ ନିବାରିତ ନ ହୋଇ ସେହି ସ୍ଥାନରେ ବସି ମୋତେ ବିଦାରଣ କରିବାକୁ ଲାଗିଲା । ସେହି ବଳିଭୋଜୀ କାକ ମାଂସଲୋଭୀ ହୋଇ ଏଥିରୁ କ୍ଷାନ୍ତ ହେଲା ନାହିଁ । ୧୬ । ମୁଁ ସେ ପକ୍ଷୀ ଉପରେ କ୍ରୁଦ୍ଧହୋଇ ମୋର

ଉତ୍କର୍ଷନ୍ତ୍ୟାଂ ଚ ରଶନାଂ କ୍ରୁଦ୍ଧାୟାଂ ମୟି ପକ୍ଷିଣେ ।
ସ୍ରଂସମାନେ ଚ ବସନେ ତତୋ ଦୃଷ୍ଟ୍ୱା ତ୍ୱୟା ହ୍ୟହମ୍ । ୧୭ ।
ତ୍ୱୟା ବିହସିତା ଚାହଂ କ୍ରୁଦ୍ଧା ସଂଲଜ୍ଜିତା ତଦା ।
ଭକ୍ଷ୍ୟଗୃଦ୍ଧେନ କାକେନ ଦାରିତା ତ୍ୱାମୁପାଗତା । ୧୮ ।
ତତଃ ଶ୍ରାନ୍ତାହମୁତ୍ସଙ୍ଗମାସୀନସ୍ୟ ତବାବିଶମ୍ ।
କ୍ରୁଧ୍ୟନ୍ତୀବ ପ୍ରହୃଷ୍ଟେନ ତ୍ୱୟାହଂ ପରିସାନ୍ତ୍ୱିତା । ୧୯ ।
ବାଷ୍ପପୂର୍ଣ୍ଣମୁଖୀ ମନ୍ଦଂ ଚକ୍ଷୁଷୀ ପରିମାର୍ଜତୀ ।
ଲକ୍ଷିତାହଂ ତ୍ୱୟା ନାଥ ! ବାୟସେନ ପ୍ରକୋପିତା । ୨୦ ।
ପରିଶ୍ରମାତ୍ ପ୍ରସୁପ୍ତା ଚ ରାଘବାଙ୍କେଽପ୍ୟହଂ ଚିରମ୍ ।
ପର୍ଯ୍ୟାୟେଣ ପ୍ରସୁପ୍ତଶ୍ଚ ମମାଙ୍କେ ଭରତାଗ୍ରଜଃ । ୨୧ ।
ସ ତତ୍ର ପୁନରେବାଥ ବାୟସଃ ସମୁପାଗମତ୍ ।
ତତଃ ସୁପ୍ତପ୍ରବୁଦ୍ଧାଂ ମାଂ ରାଘବାଙ୍କାତ୍ସମୁତ୍ଥିତାମ୍ ।
ବାୟସଃ ସହସା ଗମ୍ୟ ବିରରାଦ ସ୍ତନାନ୍ତରେ । ୨୨ ।
ପୁନଃ ପୁନରଥୋତ୍ପତ୍ୟ ବିରରାଦ ସ ମାଂ ଭୃଶମ୍ ।
ତତଃ ସମୁତ୍ଥିତୋ ରାମୋ ମୁକ୍ତୈଃ ଶୋଣିତବିନ୍ଦୁଭିଃ । ୨୩ ।

---

ଝଣ୍ଟାସୂତା ଉପରକୁ ଟାଣୁଥିବାବେଳେ ମୋର ଲୁଗା ଖସିଯାଉଥିବା ଅବସ୍ଥାରେ ତୁମ୍ଭେ ମୋତେ ଦେଖିଲ । ୧୭ । ତୁମ୍ଭେ ମୋତେ ଉପହାସ କରିବାରୁ ମୁଁ ଲଜ୍ଜିତ ଓ କ୍ରୁଦ୍ଧହୋଇ ଏବଂ ସେହି ଭୋଜନଲୋଭୀ କାକଦ୍ୱାରା ବିଦାରିତହୋଇ ତୁମ୍ଭର ଶରଣାପନ୍ନ ହେଲି । ୧୮ । ଅନନ୍ତର ମୁଁ ପରିଶ୍ରାନ୍ତ ହୋଇ ତୁମ୍ଭ କୋଳରେ ଯାଇ ବସିଲି । ମୁଁ କ୍ରୁଦ୍ଧ ହୋଇଥିବାର ଦେଖି ତୁମ୍ଭେ ହସି ହସି ମୋତେ ସାନ୍ତ୍ୱନା ଦେଲ । ୧୯। ସେତେବେଳେ ମୁଁ ଲୋତକପୂର୍ଣ୍ଣ ମୁଖରେ ଧୀରେ ଧୀରେ ଆଖି ଦୁଇଟି ପୋଛୁଥିଲି । ହେ ନାଥ ! ବାୟସ ମୋତେ ଏପରି ରଗାଇ ଦେଇଥିବାର ତୁମ୍ଭେ ଲକ୍ଷ୍ୟକଲ । ୨୦ । ତାହା ପରେ ଶ୍ରାନ୍ତିବଶତଃ ମୁଁ ରାମଙ୍କ କୋଳରେ ଅନେକ ବେଳଯାଏ ଶୋଇପଡ଼ିଲି । ତାପରେ ଭରତଙ୍କ ଜ୍ୟେଷ୍ଠଭ୍ରାତା ରାମ ମଧ୍ୟ ମୋ କୋଳରେ ଶୋଇଥିଲେ । ୨୧ । ଇତ୍ୟବସରରେ ସେହି କାକ ପୁଣି ହଠାତ୍ ଆସି ତୁମ୍ଭ ଅଙ୍କରୁ ଜାଗରିତ ହୋଇ ଉଠିଥିବା ମୋର ସ୍ତନଦ୍ୱୟ ମଧ୍ୟବର୍ତ୍ତୀ ସ୍ଥଳକୁ ଆମ୍ପୁଡ଼ି ପକାଇଲା । ୨୨ । ସେ ବାରମ୍ବାର ଉଡ଼ି ଉଡ଼ି ମୋତେ କ୍ଷତବିକ୍ଷତ କରିବାକୁ ଲାଗିଲା । ଅନନ୍ତର ରାମଙ୍କର ଦେହରେ ମୋର ସେ ରକ୍ତବିନ୍ଦୁ ପଡ଼ିବାରୁ

ସ ମାଂ ଦୃଷ୍ଟ୍ୱା ମହାବାହୁର୍ବିତୁନ୍ନାଂ ସ୍ତନୟୋସ୍ତଦା ।
ଆଶୀବିଷ ଇବ କ୍ରୁଦ୍ଧଃ ଶ୍ୱସନ୍ ବାକ୍ୟମଭାଷତ । ୨୪ ।
କେନ ତେ ନାଗନାସୋରୁ ! ବିକ୍ଷତଂ ବୈ ସ୍ତନାନ୍ତରମ୍ ।
କଃ କ୍ରୀଡ଼ତି ସରୋଷେଣ ପଞ୍ଚବକ୍ତ୍ରେଣ ଭୋଗିନା । ୨୫ ।
ବୀକ୍ଷ୍ୟମାଣସ୍ତତସ୍ତଂ ବୈ ବାୟସଂ ସମବୈକ୍ଷତ ।
ନଖୈଃ ସରୁଧିରୈସ୍ତୀକ୍ଷ୍ଣୈର୍ମାମେବାଭିମୁଖଂ ସ୍ଥିତମ୍ ।୨୬ ।
ପୁତ୍ରଃ କିଲ ସ ଶକ୍ରସ୍ୟ ବାୟସଃ ପତତାଂ ବରଃ * ।
ଧରାଧରଂ ଗତଃ ଶୀଘ୍ରଂ ପବନସ୍ୟ ଗତୌ ସମଃ । ୨୭ ।
ତତସ୍ତସ୍ମିନ୍ମହାବାହୁଃ କୋପସଂବର୍ତ୍ତିତେକ୍ଷଣଃ ।
ବାୟସେ କୃତବାନ୍ କ୍ରୂରାଂ ମତିଂ ମତିମତାଂ ବରଃ । ୨୮ ।
ସ ଦର୍ଭଂ ସଂସ୍ତରାଦ୍ ଗୃହ୍ୟ ବ୍ରାହ୍ମେଣାଽସ୍ତ୍ରେଣାଯୋଜୟତ୍ ।
ସ ଦୀପ୍ତ ଇବ କାଲାଗ୍ନିର୍ଜ୍ୱଲାଭିମୁଖୋ ଦ୍ୱିଜମ୍ । ୨୯ ।
ସ ତଂ ପ୍ରଦୀପ୍ତଂ ଚିକ୍ଷେପ ଦର୍ଭଂ ତଂ ବାୟସଂ ପ୍ରତି ।
ତତସ୍ତୁ ବାୟସଂ ଦର୍ଭଃ ସୋଽମ୍ବରେଽନୁଜଗାମ ହ । ୩୦ ।

---

ସେ ଜାଗରିତ ହେଲେ ।୨୩। ମୋର ସ୍ତନର ମଧ୍ୟଭାଗ କ୍ଷତବିକ୍ଷତ ହୋଇଥିବାର ଦେଖି ସେ କ୍ରୁଦ୍ଧ ସର୍ପପ୍ରାୟ ବାରମ୍ବାର ନିଃଶ୍ୱାସ ପକାଇ ମୋତେ କହିଲେ । ୨୪ । 'ହେ କରିକରୋରୁ ! ତୁମ୍ଭର ସ୍ତନାନ୍ତରକୁ କିଏ ବିକ୍ଷତ କରିଅଛି ? କ୍ରୁଦ୍ଧ ପଞ୍ଚମୁଖ ସର୍ପ ସହିତ କିଏ ଏପରି କ୍ରୀଡ଼ା କରୁଅଛି ?' । ୨୫ । ଅନନ୍ତର ସେ ଋଜୁଆଡ଼କୁ ଚାହିଁ ରୁଧିରାକ୍ତ ତୀକ୍ଷ୍ଣନଖଯୁକ୍ତ ସେହି କାକକୁ ମୋ ଆଡ଼କୁ ଚାହିଁ ବସିରହିଥିବାର ଦେଖିଲେ । ୨୬ । ସେହି କାକ ପ୍ରକୃତ ପକ୍ଷରେ ଇନ୍ଦ୍ରଙ୍କର ପୁତ୍ର ଏବଂ ଗତିରେ ପବନ ସଦୃଶ ଗତିମାନ୍ । ସେ ସତ୍ୱର ପର୍ବତ ଉପରକୁ ଉଡ଼ିଗଲା । ୨୭ । ଅନନ୍ତର ମହାବାହୁ, ମତିମାନ୍‌ମାନଙ୍କ ମଧ୍ୟରେ ଶ୍ରେଷ୍ଠ ରାମଙ୍କର ଚକ୍ଷୁ କ୍ରୋଧରେ ଘୂର୍ଣ୍ଣିତ ହେବାକୁ ଲାଗିଲା ଏବଂ ସେ ସେହି ବାୟସକୁ ମାରିବାକୁ ଅତି କ୍ରୂର ଇଚ୍ଛା ପୋଷଣ କଲେ । ୨୮ । ଏହାପରେ ବିସ୍ତୃତ ହୋଇଥିବା କୁଶରାଶି ମଧ୍ୟରୁ ଗୋଟିଏ ଧରି ତାହାକୁ ବ୍ରହ୍ମାସ୍ତ୍ରରେ ସଂଯୋଜିତ କଲେ । ସେହି କୁଶ କାଳାଗ୍ନି ସଦୃଶ ପ୍ରଜ୍ୱଳିତ ହୋଇ ସେହି ପକ୍ଷୀ ଆଡ଼କୁ ମୁହାଁଇଲା ।୨୯ । ରାମ ସେହି ପ୍ରଜ୍ୱଳିତ କୁଶକୁ ବାୟସ ପ୍ରତି ନିକ୍ଷେପ କଲେ । ଅନନ୍ତର ସେହି କୁଶ ଆକାଶମାର୍ଗରେ ବାୟସର

---

*ଇନ୍ଦ୍ରଙ୍କ ପୁତ୍ର ଜୟନ୍ତ ସୀତାଙ୍କ ରୂପରେ ମୁଗ୍ଧ ହୋଇ ଏହି ବାୟସରୂପ ଧରି ସେଠାକୁ ଆସିଥିଲା ।

ଅନୁସୃଷ୍ଟସ୍ତଦା କାକୋ ଜଗାମ ବିବିଧାଂ ଗତିମ୍ ।
ତ୍ରାଣକାମ ଇମଂ ଲୋକଂ ସର୍ବଂ ବୈ ବିଚଚାର ହ । ୩୧ ।
ସ ପିତ୍ରା ଚ ପରିତ୍ୟକ୍ତଃ ସର୍ବୈଶ୍ଚ ପରମର୍ଷିଭିଃ ।
ତ୍ରୀଁଲ୍ଲୋକାନ୍ ସଂପରିକ୍ରମ୍ୟ ତମେବ ଶରଣଂ ଗତଃ । ୩୨ ।
ସ ତଂ ନିପତିତଂ ଭୂମୌ ଶରଣ୍ୟଃ ଶରଣାଗତମ୍ ।
ବଧାର୍ହମପି କାକୁତ୍ସ୍ଥଃ କୃପୟା ପର୍ଯ୍ୟପାଲୟତ୍ । ୩୩ ।
ପରିଦ୍ୟୂନଂ ବିବର୍ଣଂ ଚ ପତମାନଂ ତମବ୍ରବୀତ୍ ।
ମୋଘମସ୍ତ୍ରଂ ନ ଶକ୍ୟଂ ତୁ ବ୍ରାହ୍ମଂ କର୍ତୁଂ ତଦୁଚ୍ୟତାମ୍ । ୩୪ ।
ତତସ୍ତସ୍ୟାକ୍ଷି କାକସ୍ୟ ହିନସ୍ତି ସ୍ମ ସ ଦକ୍ଷିଣମ୍ ।
ଦତ୍ତ୍ୱା ତୁ ଦକ୍ଷିଣଂ ନେତ୍ରଂ ପ୍ରାଣେଭ୍ୟଃ ପରିରକ୍ଷିତଃ । ୩୫ ।
ସ ରାମାୟ ନମସ୍କୃତ୍ୱା ରାଜ୍ଞେ ଦଶରଥାୟ ଚ ।
ବିସୃଷ୍ଟସ୍ତେନ ବୀରେଣ ପ୍ରତିପେଦେ ସ୍ୱମାଳୟମ୍ । ୩୬ ।
ମତ୍କୃତେ କାକମାତ୍ରେଽପି ବ୍ରହ୍ମାସ୍ତ୍ରଂ ସମୁଦୀରିତମ୍ ।
କସ୍ମାଦ୍ୟୋ ମାଂ ହରେତ୍ତ୍ୱତ୍ତଃ କ୍ଷମସେ ତଂ ମହୀପତେ ! । ୩୭ ।

---

ଅନୁସରଣ କରିବାକୁ ଲାଗିଲା ।୩୦। କାକ ଏହି-କୁଶଦ୍ୱାରା ଅନୁସୃତ ହୋଇ ତ୍ରାଣପାଇବା ଆଶାରେ ବ୍ରହ୍ମାଣ୍ଡର ବିଭିନ୍ନ ଲୋକରେ ଭ୍ରମଣ କରିବାକୁ ଲାଗିଲା (କିନ୍ତୁ କେହି ତାକୁ ଆଶ୍ରୟ ଦେଲେ ନାହିଁ) । ୩୧ । ସେହି କାକ ନିଜର ପିତା, ତଥା ସବୁ ମହର୍ଷିଙ୍କ ଦ୍ୱାରା ପରିତ୍ୟକ୍ତ ହୋଇ ତିନିଲୋକଯାକ ବୁଲି ବୁଲି ଆସି ସେହି ରାମଙ୍କର ଶରଣାପନ୍ନ ହେଲା । ୩୨ । କାକ ଶରଣାଗତ ହୋଇ ଭୂମିରେ ପତିତ ହେବାରୁ ସେ ବଧାର୍ହ ହୋଇଥିଲେ ମଧ୍ୟ ଶରଣାଗତ ଲୋକଙ୍କର ଆଶ୍ରୟସ୍ଥଳ କାକୁତ୍ସ୍ଥ ତାକୁ ଦୟାକରି ରକ୍ଷାକଲେ । ୩୩ । ସେହି କାକ କ୍ଷୀଣ ଏବଂ ବିବର୍ଣ୍ଣ ହୋଇ ଆସି ପଡ଼ିବାରୁ ରାମ ତାକୁ କହିଲେ, "ବ୍ରହ୍ମାସ୍ତ୍ର ବ୍ୟର୍ଥ କରିହେବ ନାହିଁ ; ସୁତରାଂ କ'ଣ କରିବାକୁ ହେବ କହ ।" ୩୪ । ଅନନ୍ତର ସେ ଅସ୍ତ୍ର କାକର ଦକ୍ଷିଣ ଚକ୍ଷୁକୁ ନଷ୍ଟ କରିଦେଲା । କାକ ଦକ୍ଷିଣ ଚକ୍ଷୁ ଦେଇ ପ୍ରାଣ ରକ୍ଷାକଲା । ୩୫ । ଅନନ୍ତର ସେ ରାମଙ୍କୁ ଏବଂ ଦଶରଥଙ୍କୁ ନମସ୍କାର କରି ରାମଙ୍କଠାରୁ ବିଦାୟ ନେଇ ନିଜ ସ୍ଥାନକୁ ଚାଲିଗଲା । ୩୬ । ହେ ମହୀପତେ ! ମୋ ଲାଗି ସାମାନ୍ୟ କାକ ପ୍ରତି ତୁମେ ଯେତେବେଳେ ବ୍ରହ୍ମାସ୍ତ୍ର ପ୍ରୟୋଗ କରିଥିଲ, ସେତେବେଳେ ତୁମ ନିକଟରୁ ମୋତେ ଯେ ହରଣକରି ନେଇ ଆସିଛି, ତାକୁ ତୁମେ କ୍ଷମାକରୁଛ କିପରି ? ।୩୭। ସୁତରାଂ ହେ ନରଶ୍ରେଷ୍ଠ ! ତୁମେ ବିଶେଷ ଉତ୍ସାହ

ସ କୁରୁଷ୍ୱ ମହୋତ୍ସାହଂ କୃପାଂ ମୟି ନରର୍ଷଭ ! ।
ତ୍ୱୟା ନାଥବତୀ ନାଥ ! ହ୍ୟନାଥା ଇବ ଦୃଶ୍ୟତେ । ୩୮ ।
ଆନୃଶଂସ୍ୟଂ ପରୋ ଧର୍ମସ୍ତ୍ୱତ୍ତ ଏବ ମୟା ଶ୍ରୁତମ୍ ।
ଜାନାମି ତ୍ୱାଂ ମହାବୀର୍ଯ୍ୟଂ ମହୋତ୍ସାହଂ ମହାବଲମ୍ ।୩୯।
ଅପାରବାରମକ୍ଷୋଭ୍ୟଂ ଗାମ୍ଭୀର୍ଯ୍ୟାତ୍ସାଗରୋପମମ୍ ।
ଭର୍ତ୍ତାରଂ ସସମୁଦ୍ରାୟା ଧରଣ୍ୟା ବାସବୋପମମ୍ । ୪୦ ।
ଏବମସ୍ତ୍ରବିଦାଂ ଶ୍ରେଷ୍ଠୋ ବଲବାନ୍ ସତ୍ତ୍ୱବାନପି ।
କିମର୍ଥମସ୍ତ୍ରଂ ରକ୍ଷଃସୁ ନ ଯୋଜୟସି ରାଘବ ! । ୪୧ ।
ନ ନାଗା ନାପି ଗନ୍ଧର୍ବା ନ ସୁରା ନ ମରୁଦ୍‌ଗଣାଃ ।
ରାମସ୍ୟ ସମରେ ବେଗଂ ଶକ୍ତାଃ ପ୍ରତିସମୀହିତୁମ୍ । ୪୨ ।
ତସ୍ୟ ବୀର୍ଯ୍ୟବତଃ କଚ୍ଚିଦ୍ୟଦ୍ୟସ୍ତି ମୟି ସଂଭ୍ରମଃ ।
କିମର୍ଥଂ ନ ଶରୈସ୍ତୀକ୍ଷ୍ଣୈଃ କ୍ଷୟଂ ନୟତି ରାକ୍ଷସାନ୍ । ୪୩ ।
ଭ୍ରାତୁରାଦେଶମାଦାୟ ଲକ୍ଷ୍ମଣୋ ବା ପରଂତପଃ ।
କସ୍ୟ ହେତୋର୍ନ ମାଂ ବୀରଃ ପରିତ୍ରାତି ମହାବଲଃ । ୪୪ ।

---

ଅବଲମ୍ବନପୂର୍ବକ ମୋ ପ୍ରତି କୃପାକର । ନାଥ ! ତୁମେ ମୋର ନାଥ ହୋଇ ରହିଥିଲେ ମଧ୍ୟ ମୁଁ ବର୍ତ୍ତମାନ ଅନାଥାପରି ଦେଖାଯାଉଅଛି । ୩୮ । ତୁମ୍ଭଠାରୁ ମୁଁ ଶୁଣିଛି ଯେ ଦୟା ହିଁ ପରମଧର୍ମ । ତୁମେ ମହା ବୀର୍ଯ୍ୟବାନ୍, ମହାବଳବାନ୍ ଏବଂ ମହା ଉତ୍ସାହୀ ବୋଲି ମୁଁ ଜାଣେ । ୩୯ । ଗାମ୍ଭୀର୍ଯ୍ୟରେ ତୁମେ ସମୁଦ୍ରସଦୃଶ, ଅଚିନ୍ତ୍ୟମହିମ, ସ୍ଥିରପ୍ରକୃତି ଏବଂ ଇନ୍ଦ୍ରଙ୍କ ସଦୃଶ ସମଗ୍ର ସସାଗରା ଧରଣୀର ପ୍ରଭୁ ଅଟ । ୪୦ । ରାଘବ ! ତୁମେ ସତ୍ୟବାନ୍ ବଳବାନ୍ ଏବଂ ଅସ୍ତ୍ରବିତ୍‌ମାନଙ୍କ ମଧ୍ୟରେ ଏପରି ଶ୍ରେଷ୍ଠ ହୋଇ ମଧ୍ୟ କାହିଁକି ରାକ୍ଷସମାନଙ୍କ ପ୍ରତି ଅସ୍ତ୍ରପ୍ରୟୋଗ କରୁ ନାହଁ ?" ।୪୧ ହନୁମନ୍ ! କି ନାଗ, କି ଗନ୍ଧର୍ବ, କି ଦେବତା, କି ମରୁଦ୍‌ଗଣ, କେହି ଯୁଦ୍ଧରେ ରାମଙ୍କର ବେଗ ନିବାରଣ କରିବାକୁ ସମର୍ଥ ନୁହନ୍ତି । ୪୨ । ସେହି ବୀର୍ଯ୍ୟଶାଳୀ ରାମଙ୍କର ଯଦି ମୋ ପ୍ରତି ଟିକିଏ ହେଲେ ଆଦର ଥାଏ, ତେବେ ତୀକ୍ଷ୍ଣ ଶରରାଜିଦ୍ୱାରା ସେ ରାକ୍ଷସମାନଙ୍କୁ କ୍ଷୟକରି ଦେଉନାହାନ୍ତି କାହିଁକି ? । ୪୩ । ଶତ୍ରୁସୂଦନ ମହାବଳୀ ବୀର ଲକ୍ଷ୍ମଣ ବା କିହେତୁରୁ ଭ୍ରାତାଙ୍କର ଆଦେଶ ଗ୍ରହଣକରି ମୋତେ ପରିତ୍ରାଣ କରୁ ନାହାନ୍ତି ? ।୪୪। ସେହି ଦୁଇ ପୁରୁଷଶ୍ରେଷ୍ଠ ଯେହି ବାସ୍ତବରେ ବାୟୁ ଓ ଇନ୍ଦ୍ରଙ୍କ

ଯଦ୍ୟ ତୌ ପୁରୁଷବ୍ୟାଘ୍ରୌ ବାୟ୍ୱିନ୍ଦ୍ରସମତେଜସୌ ।
ସୁରାଣାମପି ଦୁର୍ଧର୍ଷୌ କମର୍ଥଂ ମାମୁପେକ୍ଷତଃ । ୪୫ ।
ମମୈବ ଦୁଷ୍କୃତଂ କିଂଚିନ୍ମହଦସ୍ତି ନ ସଂଶୟଃ ।
ସମର୍ଥାବପି ତୌ ଯନ୍ମାଂ ନାବେକ୍ଷେତେ ପରଂତପୌ । ୪୬ ।
ବୈଦେହ୍ୟା ବଚନଂ ଶ୍ରୁତ୍ୱା କରୁଣଂ ସାଶ୍ରୁଭାଷିତମ୍ ।
ଅଥାବ୍ରବୀନ୍ମହାତେଜା ହନୂମାନ୍ ହରିଯୂଥପଃ । ୪୭ ।
ତ୍ୱଚ୍ଛୋକବିମୁଖୋ ରାମୋ ଦେବ ! ସତ୍ୟେନ ତେ ଶପେ ।
ରାମେ ଦୁଃଖାଭିପନ୍ନେ ତୁ ଲକ୍ଷ୍ମଣଃ ପରିତପ୍ୟତେ । ୪୮ ।
କଥଂଚିଦ୍ଭବତୀ ଦୃଷ୍ଟା ନ କାଲଃ ପରିଶୋଚିତୁମ୍ ।
ଇମଂ ମୁହୂର୍ତ୍ତଂ ଦୁଃଖାନାମନ୍ତଂ ଦ୍ରକ୍ଷ୍ୟସି ଶୋଭନେ !। ୪୯ ।
ତାବୁଭୌ ପୁରୁଷବ୍ୟାଘ୍ରୌ ରାଜପୁତ୍ରୌ ମହାବଲୌ ।
ତ୍ୱଦ୍ଦର୍ଶନକୃତୋତ୍ସାହୌ ଲଙ୍କାଂ ଭସ୍ମୀକରିଷ୍ୟତଃ । ୫୦ ।
ହତ୍ୱା ଚ ସମରେ କ୍ରୂରଂ ରାବଣଂ ସହବାନ୍ଧବମ୍ ।
ରାଘବସ୍ତ୍ୱାଂ ବିଶାଲାକ୍ଷି ସ୍ୱାଂ ପୁରୀଂ ପ୍ରାପଯିଷ୍ୟତି । ୫୧ ।

---

ସମାନ ତେଜସ୍ୱୀ ଏବଂ ଦେବତାମାନଙ୍କ କର୍ତ୍ତୃକ ମଧ୍ୟ ଅଜେୟ, ତେବେ ସେ ଦୁହେଁ ମୋତେ କ କାରଣରୁ ଉପେକ୍ଷା କରୁଛନ୍ତି ? ।୪୫ । ସେହି ଶତ୍ରୁସୂଦନ ଦୁହେଁ ସମର୍ଥ ହେଲେ ମଧ୍ୟ ମୋ ପ୍ରତି ଯେ କୃପା କରୁ ନାହାନ୍ତି, ସୁତରାଂ ନିଶ୍ଚୟ ମୋର କୌଣସି ଘୋର ପାତକ ଅଛି, ଏଥିରେ ସନ୍ଦେହ ନାହିଁ” । ୪୬ । ସୀତାଙ୍କର ଏହିପରି ଅଶ୍ରୁପୂର୍ଣ୍ଣ କରୁଣବାକ୍ୟ ଶୁଣି ବାନରଯୂଥପତି ମହାତେଜା ହନୁମାନ୍ କହିଲେ । ୪୭ । “ହେ ଦେବି ! ମୁଁ ସତ୍ୟଦ୍ୱାରା ତୁମ୍ଭନିକଟରେ ଶପଥକରି କହୁଅଛି, ରାମ ତୁମ୍ଭର ଶୋକରେ ସବୁ କାର୍ଯ୍ୟରେ ବିମୁଖ ହୋଇପଡ଼ିଛନ୍ତି । ରାମ ଏପରି ଶୋକାଭିଭୂତ ହୋଇପଡ଼ିବାରୁ ଲକ୍ଷ୍ମଣ ମଧ୍ୟ ଅତ୍ୟନ୍ତ ପରିତପ୍ତ ହେଉଛନ୍ତି । ୪୮ । ଶୋଭନେ ! ଏବେ ଭାଗ୍ୟକ୍ରମେ ମୁଁ ଆପଣଙ୍କୁ ଦେଖିଲି । ସୁତରାଂ ଏହା ଶୋକକରିବାର ସମୟ ନୁହେ । ତୁମ୍ଭେ ଏହି ମୁହୂର୍ତ୍ତରେ ତୁମ୍ଭରଦୁଃଖ ଅବସାନ ହେବାର ଦେଖିବ ।୪୯। ସେହି ଦୁଇ ମହାବଳୀ ପୁରୁଷଶାର୍ଦ୍ଦୂଳ ରାଜକୁମାର ତୁମ୍ଭଙ୍କୁ ଦେଖିବାପାଇଁ ଉତ୍ସାହିତ ହୋଇ ଲଙ୍କାକୁ ଭସ୍ମୀଭୂତ କରିଦେବେ । ୫୦ । ହେ ବିଶାଳାକ୍ଷି ! ରାମ ଯୁଦ୍ଧରେ କ୍ରୂର ରାବଣକୁ ସବାନ୍ଧବରେ ନିହତକରି ତୁମ୍ଭଙ୍କୁ ନିଜପୁରୀକୁ ନେଇଯିବେ । ୫୧

ବ୍ରୂହି ଯଦ୍ରାଘବୋ ବାଚ୍ୟୋ ଲକ୍ଷ୍ମଣଶ୍ଚ ମହାବଲଃ ।
ସୁଗ୍ରୀବୋ ବାପି ତେଜସ୍ୱୀ ହରୟୋ ବା ସମାଗତାଃ । ୫୨ ।
ଇତ୍ୟୁକ୍ତବତି ତସ୍ମିଂଶ୍ଚ ସୀତା ପୁନରଥାବ୍ରବୀତ୍ ।
କୌସଲ୍ୟା ଲୋକଭର୍ତାରଂ ସୁଷୁବେ ଯଂ ମନସ୍ୱିନୀ । ୫୩ ।
ତଂ ମମାର୍ଥେ ସୁଖଂ ପୃଚ୍ଛ ଶିରସା ଚାଭିବାଦୟ ।
ସ୍ରଜଶ୍ଚ ସର୍ବରତ୍ନାନି ପ୍ରିୟା ଯାଶ୍ଚ ବରାଙ୍ଗନାଃ । ୫୪ ।
ଐଶ୍ୱର୍ଯଂ ଚ ବିଶାଲାୟାଂ ପୃଥିବ୍ୟାମପି ଦୁର୍ଲଭମ୍ ।
ପିତରଂ ମାତରଂ ଚୈବ ସଂମାନ୍ୟାଭିପ୍ରସାଦ୍ୟ ଚ । ୫୫ ।
ଅନୁପ୍ରବ୍ରାଜିତୋ ରାମଂ ସୁମିତ୍ରା ଯେନ ସୁପ୍ରଜାଃ ।
ଆନୁକୂଲ୍ୟେନ ଧର୍ମାତ୍ମା ତ୍ୟକ୍ତ୍ୱା ସୁଖମନୁତ୍ତମମ୍ । ୫୬ ।
ଅନୁଗଚ୍ଛତି କାକୁତ୍‌ସ୍ଥଂ ଭ୍ରାତରଂ ପାଲୟନ୍ ବନେ ।
ସିଂହସ୍କନ୍ଧୋ ମହାବାହୁର୍ମନସ୍ୱୀ ପ୍ରିୟଦର୍ଶନଃ । ୫୭ ।
ପିତୃବଦ୍‌ବର୍ତତେ ରାମେ ମାତୃବନ୍ମାଂ ସମାଚରନ୍ ।
ହ୍ରିୟମାଣାଂ ତଦା ବୀରୋ ନ ତୁ ମାଂ ବେଦ ଲକ୍ଷ୍ମଣଃ । ୫୮ ।
ବୃଦ୍ଧୋପସେବୀ ଲକ୍ଷ୍ମୀବାନ୍ ଶକ୍ତୋ ନ ବହୁଭାଷିତା ।
ରାଜପୁତ୍ରଃ ପ୍ରିୟଶ୍ରେଷ୍ଠଃ ସଦୃଶଃ ଶ୍ୱଶୁରସ୍ୟ ମେ । ୫୯ ।

---

ମହାବଳୀ ରାମ ଓ ଲକ୍ଷ୍ମଣ, ତେଜସ୍ୱୀ ସୁଗ୍ରୀବ ଏବଂ ସମବେତ ବାନରମାନଙ୍କୁ ଯାହା କହିବାକୁ ହେବ ତାହା ମୋତେ କହ” । ୫୨ । ହନୁମାନ୍ ଏହି କଥା କହିବା ଉତ୍ତାରୁ ସୀତା ପୁନର୍ବାର କହିଲେ, “ମନସ୍ୱିନୀ କୌଶଲ୍ୟା ଯେଉଁ ଲୋକପାଳଙ୍କୁ ପ୍ରସବ କରିଅଛନ୍ତି, ତୁମ୍ଭେ ମୋର ହୋଇ ତାଙ୍କୁ କୁଶଳପ୍ରଶ୍ନ କରିବ ଏବଂ ମୁଣ୍ଡିଆ ମାରି ଅଭିବାଦନ କରିବ । ଯେ ବିବିଧ ମାଲ୍ୟ, ସର୍ବପ୍ରକାର ରତ୍ନ, ବରାଙ୍ଗନାସମୂହ, ଏହି ବିଶାଳପୃଥିବୀର ଦୁର୍ଲଭ ଐଶ୍ୱର୍ଯ୍ୟ ଏବଂ ପିତାମାତାଙ୍କୁ ପରିତ୍ୟାଗକରି ରାମଙ୍କ ସହିତ ତାପସରୂପରେ ବନକୁ ଆସିଛନ୍ତି, ଯାହାଙ୍କୁ ପ୍ରସବକରି ସୁମିତ୍ରା ସୁସନ୍ତାନବତୀ ହୋଇଛନ୍ତି, ଯେ ଧର୍ମାତ୍ମା, ସିଂହସ୍କନ୍ଧ, ମହାବାହୁ, ପ୍ରିୟଦର୍ଶନ ଏବଂ ମନସ୍ୱୀ, ଯେ ଅତି ଉତ୍ତମ ସୁଖ ପରିତ୍ୟାଗକରି ସ୍ନେହବଶତଃ ଭ୍ରାତା ରାମଙ୍କର ଅନୁଗାମୀ ହୋଇ ବନରେ ତାଙ୍କର ସେବା କରୁଅଛନ୍ତି, ଯେ ରାମଙ୍କ ପ୍ରତି ପିତୃସଦୃଶ ଏବଂ ମୋ ପ୍ରତି ମାତୃସଦୃଶ ବ୍ୟବହାର କରନ୍ତି, ସେହି ବୀର ଲକ୍ଷ୍ମଣ ସେତେବେଳେ ମୁଁ ଅପହୃତ ହେବାର ଜାଣିପାରିଲେ ନାହିଁ ।୫୩-୫୮ । ସେ ବୃଦ୍ଧ ବ୍ୟକ୍ତିଙ୍କର ସେବାକରନ୍ତି । ସେ ଲକ୍ଷ୍ମୀବାନ୍, ସମର୍ଥ ଏବଂ ଅଳ୍ପଭାଷୀ । ସେହି ରାଜପୁତ୍ର ମୋର ଶ୍ୱଶୁରଙ୍କ ସଦୃଶ

ମତ୍ତଃପ୍ରିୟତରୋ ନିତ୍ୟଂ ଭ୍ରାତା ରାମସ୍ୟ ଲକ୍ଷ୍ମଣଃ ।
ନିଯୁକ୍ତୋ ଧୁରି ଯସ୍ୟାଂ ତୁ ତାମୁଦ୍‌ବହତି ବୀର୍ଯ୍ୟବାନ୍ । ୬୦ ।
ଯଂ ଦୃଷ୍ଟ୍ୱା ରାଘବୋ ନୈବ ବୃତ୍ତମାର୍ଯ୍ୟମନୁସ୍ମରେତ୍ ।
ସ ମମାର୍ଥାୟ କୁଶଲଂ ବକ୍ତବ୍ୟୋ ବଚନାନ୍ମମ । ୬୧ ।
ମୃଦୁର୍ନିତ୍ୟଂ ଶୁଚିର୍ଦକ୍ଷଃ ପ୍ରିୟୋ ରାମସ୍ୟ ଲକ୍ଷ୍ମଣଃ ।
ଯଥା ହି ବାନରଶ୍ରେଷ୍ଠ ! ଦୁଃଖକ୍ଷୟକରୋ ଭବେତ୍ । ୬୨ ।
ତ୍ୱମସ୍ମିନ୍ କାର୍ଯ୍ୟନିର୍ବାହେ ପ୍ରମାଣଂ ହରିଯୂଥପ ! ।
ରାଘବସ୍ତ୍ୱତ୍ସମାରମ୍ଭାନ୍ମୟି ଯତ୍ନପରୋ ଭବେତ୍ । ୬୩ ।
ଇଦଂ ବ୍ରୂୟାଶ୍ଚ ମେ ନାଥଂ ଶୂରଂ ରାମଂ ପୁନଃ ପୁନଃ ।
ଜୀବିତଂ ଧାରୟିଷ୍ୟାମି ମାସଂ ଦଶରଥାତ୍ମଜ ! । ୬୪ ।
ଊର୍ଦ୍ଧ୍ୱଂ ମାସାନ୍ନ ଜୀବେୟଂ ସତ୍ୟେନାହଂ ବ୍ରବୀମି ତେ ।
ରାବଣେନୋପରୁଦ୍ଧାଂ ମାଂ ନିକୃତ୍ୟା ପାପକର୍ମଣା ।
ତ୍ରାତୁମର୍ହସି ବୀର ! ତ୍ୱଂ ପାତାଳାଦିବ କୌଶିକୀମ୍* । ୬୫ ।

---

ଅଛନ୍ତି । ସେ ମୋ ସ୍ୱାମୀଙ୍କର ଅତ୍ୟଧିକ ପ୍ରିୟ; ଏପରିକି ଭାଇ ଲକ୍ଷ୍ମଣ, ମୋଠାରୁ ମଧ୍ୟ ରାମଙ୍କର ଅଧିକ ପ୍ରିୟ । ତାଙ୍କ ଉପରେ ଯେଉଁ ଭାର ନ୍ୟସ୍ତ କରାଯାଏ, ସେ ବୀର୍ଯ୍ୟବାନ୍ ତାହାକୁ ଦକ୍ଷତାର ସହିତ ବହନ କରନ୍ତି । ୫୯-୬୦ । ଯେଉଁ ଲକ୍ଷ୍ମଣଙ୍କୁ ଦେଖି ରାମ ନିଜ ପ୍ରତି ପିତାଙ୍କର ବ୍ୟବହାରକୁ ସ୍ମରଣ କରୁ ନାହାନ୍ତି, ସେହି ମୃଦୁସ୍ୱଭାବ, ଶୁଦ୍ଧଚିତ୍ତ, କାର୍ଯ୍ୟଦକ୍ଷ, ରାମଙ୍କର ପ୍ରିୟ ଲକ୍ଷ୍ମଣଙ୍କୁ ତୁମ୍ଭେ ମୋ ଲାଗି, ମୋର କଥାରେ କୁଶଳ ପଚାରିବ । ବାନରଶ୍ରେଷ୍ଠ ! "ମୋର ଏ ଦୁଃଖ ଯେପରି କ୍ଷୟ ହୁଏ, ସେ କାର୍ଯ୍ୟର ବ୍ୟବସ୍ଥା କରିବାକୁ ତୁମ୍ଭେ ହିଁ ସମର୍ଥ ଅଛ । ରାମ ତୁମ୍ଭର ପ୍ରରୋଚନାରେ ହିଁ ମୋ ବିଷୟରେ ଯତ୍ନପରାୟଣ ହେବେ । ୬୧-୬୩ । ମୋର ନାଥ, ବୀର ରାମଙ୍କୁ ତୁମ୍ଭେ ବାରମ୍ବାର କହିବ ଯେ, "ହେ ଦଶରଥନନ୍ଦନ ! ମୁଁ ଆଉ ଏକମାସ ମାତ୍ର ଜୀବନ ଧରିରହିବି । ମୁଁ ସତ୍ୟକରି କହୁଛି, ଏକ ମାସ ଉତ୍ତରୁ ଆଉ ଜୀବିତ ରହିବି ନାହିଁ । ହେ ବୀର ! ଭଗବାନ୍ ଯେପରି ପାତାଳରୁ ପୃଥିବୀକୁ ଉଦ୍ଧାର କରିଥିଲେ, ସେହିପରି ତୁମ୍ଭେ କ୍ରୂରକର୍ମା ପାପାତ୍ମା ରାବଣକର୍ତ୍ତୃକ ଅବରୁଦ୍ଧା ମୋତେ

---

*—ପୃଥିବୀ ପାତାଳକୁ ପଶିଯାଉଥିବାବେଳେ ବିଷ୍ଣୁ ବରାହରୂପରେ ତାଙ୍କୁ ଉଦ୍ଧାର କରିଥିଲେ ।

ତତୋ ବସ୍ତ୍ରଗତଂ ମୁକ୍ତ୍ୱା ଦିବ୍ୟଂ ଚୂଡ଼ାମଣିଂ ଶୁଭମ୍ ।
ପ୍ରଦେୟୋ ରାଘବାୟେତି ସୀତା ହନୁମତେ ଦଦୌ । ୬୬ ।
ପ୍ରତିଗୃହ୍ୟ ତତୋ ବୀରୋ ମଣିରତ୍ନମନୁତ୍ତମମ୍ ।
ଅଙ୍ଗୁଲ୍ୟା ଯୋଜୟାମାସ ନ ହ୍ୟସ୍ୟ ପ୍ରାଭବଦ୍ ଭୁଜଃ । ୬୭ ।
ମଣିରତ୍ନଂ କପିବରଃ ପ୍ରତିଗୃହ୍ୟାଭିବାଦ୍ୟ ଚ ।
ସୀତାଂ ପ୍ରଦକ୍ଷିଣଂ କୃତ୍ୱା ପ୍ରଣତଃ ପାର୍ଶ୍ୱତଃ ସ୍ଥିତଃ । ୬୮ ।
ହର୍ଷେଣ ମହତା ଯୁକ୍ତଃ ସୀତାଦର୍ଶନଜେନ ସଃ ।
ହୃଦୟେନ ଗତୋ ରାମଂ ଲକ୍ଷ୍ମଣଂ ଚ ସଲକ୍ଷଣମ୍ । ୬୯ ।

ମଣିବରମୁପଗୃହ୍ୟ ତଂ ମହାର୍ହମ୍
ଜନକନୃପାତ୍ମଜୟା ଧୃତଂ ପ୍ରଭାବାତ୍ ।
ଗିରିରିବ ପବନାବଧୂତମୁକ୍ତଃ
ସୁଖିତମନାଃ ପ୍ରତିସଂକ୍ରମଂ ପ୍ରପେଦେ । ୭୦ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ସୁନ୍ଦରକାଣ୍ଡେ ବାୟସବୃତ୍ତାନ୍ତକଥନମ୍ ନାମ ଅଷ୍ଟାତ୍ରିଂଶଃ ସର୍ଗଃ ।

---

ପରିତ୍ରାଣକର" । ୬୪-୬୫ । ଏହା କହି ସୀତା ବସ୍ତ୍ରରେ ବନ୍ଧାହୋଇଥିବା, ମୁକ୍ତାଖଚିତ ସୁନ୍ଦର ମଥାମଣି କାଢ଼ି 'ଏହା ରାମଙ୍କୁ ଦେବ' ଏହି କଥା କହି ତାହା ହନୁମାନଙ୍କୁ ଦେଲେ । ୬୬ । ହନୁମାନ୍ ଏହି ଉତ୍କୃଷ୍ଟ ମଣି ଗ୍ରହଣକରି, ତାହାକୁ ବାହୁରେ ଧାରଣକରିବା ସୁବିଧାଜନକ ନ ହେବାରୁ ଅଙ୍ଗୁଳିରେ ପିନ୍ଧିଲେ । ୬୭ । କପିଶ୍ରେଷ୍ଠ ଏହି ମଣିରତ୍ନକୁ ଗ୍ରହଣକରି ସୀତାଙ୍କୁ ଅଭିବାଦନ କଲେ ଏବଂ ତାଙ୍କୁ ପ୍ରଦକ୍ଷିଣପୂର୍ବକ ପ୍ରଣତଭାବରେ ଏକପାର୍ଶ୍ୱରେ ଦଣ୍ଡାୟମାନ ହେଲେ । ୬୮ । ସୀତାଙ୍କର ଦର୍ଶନଲାଭ-ହେତୁ ସେ ଅତିଶୟ ହର୍ଷାବିଷ୍ଟ ହୋଇ ମନେ ମନେ ରାମ ଏବଂ ଶୁଭଲକ୍ଷଣ ଲକ୍ଷ୍ମଣଙ୍କ ନିକଟରେ ପହଞ୍ଚିଗଲେ । ୬୯। ଜନକନନ୍ଦିନୀ ନିଜର ପ୍ରଭାବହେତୁରୁ ଯେଉଁ ମହାମୂଲ୍ୟ ଉତ୍କୃଷ୍ଟ ମଣିକୁ ଧାରଣକରିଥିଲେ, ହନୁମାନ୍ ତାହାକୁ ଗ୍ରହଣକରି, ଝଞ୍ଜା ବାତରେ ଆନ୍ଦୋଳିତ ହୋଇ, ପରେ ସେଥିରୁ ମୁକ୍ତହୋଇଥିବା ପର୍ବତସଦୃଶ ମନେ ମନେ ଆନନ୍ଦିତ ହୋଇ, ପୁଣି ନିଜ ଶରୀରକୁ ସଙ୍କୁଚିତ କଲେ । ୭୦ ।

---

# ଏକୋନଚତ୍ୱାରିଂଶଃ ସର୍ଗଃ

## ହନୂମତ୍ସନ୍ଦେଶଃ

ମଣିଂ ଦତ୍ତ୍ୱା ତତଃ ସୀତା ହନୂମନ୍ତମଥାବ୍ରବୀତ୍ ।
ଅଭିଜ୍ଞାନମଭିଜ୍ଞାତମେତଦ୍ରାମସ୍ୟ ତତ୍ତ୍ୱତଃ । ୧ ।
ମଣିଂ ଦୃଷ୍ଟ୍ୱା ତୁ ରାମୋ ବୈ ତ୍ରୟାଣାଂ ସଂସ୍ମରିଷ୍ୟତି ।
ବୀରୋ ଜନନ୍ୟା ମମ ଚ ରାଜ୍ଞୋ ଦଶରଥସ୍ୟ ଚ । ୨ ।
ସ ଭୂୟସ୍ତ୍ୱଂ ସମୁତ୍ସାହଚୋଦିତୋ ହରିସତ୍ତମ ! ।
ଅସ୍ମିନ୍ କାର୍ଯସମୁତ୍ସାହେ ପ୍ରଚିନ୍ତୟ ଯଦୁତ୍ତରମ୍ । ୩ ।
ତ୍ୱମସ୍ମିନ୍ କାର୍ଯନିର୍ଯୋଗେ ପ୍ରମାଣଂ ହରିସତ୍ତମ !
ତସ୍ୟ ଚିନ୍ତୟ ଯୋ ଯତ୍ନୋ ଦୁଃଖକ୍ଷୟକରୋ ଭବେତ୍ । ୪ ।
ହନୂମନ୍ ! ଯତ୍ନମାସ୍ଥାୟ ଦୁଃଖକ୍ଷୟକରୋ ଭବ ।
ସ ତଥେତି ପ୍ରତିଜ୍ଞାୟ ମାରୁତିର୍ଭୀମବିକ୍ରମଃ । ୫ ।
ଶିରସା ବନ୍ଦ୍ୟ ବୈଦେହୀଂ ଗମନାୟୋପଚକ୍ରମେ ।
ଜ୍ଞାତ୍ୱା ସଂପ୍ରସ୍ଥିତଂ ଦେବୀ ବାନରଂ ପବନାତ୍ମଜମ୍ । ୬ ।

---

## ୩୯ଶ ସର୍ଗ

### ( ହନୁମାନଙ୍କୁ ସୀତାଙ୍କର ସନ୍ଦେଶ )

ମଥାମଣି ଦେଇ, ତାହା ପରେ ସୀତା ହନୁମାନଙ୍କୁ କହିଲେ, "ରାମ ଏହି ଅଭିଜ୍ଞାନକୁ ଭଲଭାବରେ ଚିହ୍ନନ୍ତି ।୧। ଏ ମଣି ଦେଖିଲେ ବୀର ତିନିଜଣଙ୍କ କଥା ଶ୍ରୀରାମଙ୍କ ମନରେ ପଡ଼ିବ—ଜନନୀଙ୍କର, ମୋର ଏବଂ ରାଜା ଦଶରଥଙ୍କର ।୨। ହେ ବାନରଶ୍ରେଷ୍ଠ ! ଏହି କାର୍ଯ୍ୟରେ ତୁମ୍ଭେ ବିଶେଷ ଉଦ୍‌ଯୋଗୀ ହେବା ଆବଶ୍ୟକ; ସୁତରାଂ ଏହି ଉତ୍ସାହମୂଳକ କାର୍ଯ୍ୟ ଲାଗି ଏହାପରେ ଯାହା ଯାହା କରିବାକୁ ହେବ, ସେ ବିଷୟରେ ତୁମ୍ଭେ ଚିନ୍ତାକର ।୩। ହେ ବାନରଶ୍ରେଷ୍ଠ ! ତୁମ୍ଭେ ହିଁ ଏହି କାର୍ଯ୍ୟ ସମାପନ କରିବାକୁ ସମର୍ଥ; ସୁତରାଂ ଯେଉଁପ୍ରକାର ଯତ୍ନକଲେ ରାମଙ୍କ ଦୁଃଖର ଅବସାନ ହେବ ତାହା ତୁମ୍ଭେ ଚିନ୍ତାକର ।୪। ହେ ହନୁମନ୍ ! ତୁମ୍ଭେ ଯତ୍ନ ଅବଲମ୍ବନ କରି ମୋର ଦୁଃଖକ୍ଷୟକାରୀ ହୁଅ ।" ଭୀମପରାକ୍ରମୀ ମାରୁତିନନ୍ଦନ 'ଯେ ଆଜ୍ଞା' ବୋଲି ପ୍ରତିଜ୍ଞାକରି ଅବନତମସ୍ତକରେ ସୀତାଙ୍କୁ ପ୍ରଣାମପୂର୍ବକ

ବାଷ୍ପଗଦ୍‌ଗଦୟା ବାଚା ମୈଥିଲୀ ବାକ୍ୟମବ୍ରବୀତ୍ ।
ହନୂମନ୍ ! କୁଶଳଂ ବ୍ରୂୟାଃ ସହିତୌ ରାମଲକ୍ଷ୍ମଣୌ । ।
ସୁଗ୍ରୀବଂ ଚ ସହାମାତ୍ୟଂ ସର୍ବାନ୍ ବୃଦ୍ଧାଂଶ୍ଚ ବାନରାନ୍ ।
ବ୍ରୂୟାସ୍ତ୍ୱଂ ବାନରଶ୍ରେଷ୍ଠ ! କୁଶଳଂ ଧର୍ମସଂହିତମ୍ । ୮ ।
ଯଥା ଚ ସ ମହାବାହୁର୍ମାଂ ତାରୟତି ରାଘବଃ ।
ଅସ୍ମାଦ୍ଦୁଃଖାମ୍ବୁସଂରୋଧାତ୍ତ୍ୱଂ ସମାଧାତୁମର୍ହସି । ୯ ।
ଜୀବନ୍ତୀଂ ମାଂ ଯଥା ରାମଃ ସଂଭାବୟତି କୀର୍ତ୍ତିମାନ୍ ।
ତତ୍ତ୍ୱୟା ହନୂମନ୍ୱାଚ୍ୟଂ ବାଚା ଧର୍ମମବାପ୍ନୁହି । ୧୦ ।
ନିତ୍ୟମୁତ୍ସାହଯୁକ୍ତସ୍ୟ ବାଚଃ ଶ୍ରୁତ୍ୱା ମଦୀରିତାଃ ।
ବର୍ଦ୍ଧିଷ୍ୟତେ ଦାଶରଥେଃ ପୌରୁଷଂ ମଦବାପ୍ତୟେ । ୧୧ ।
ମତ୍ସଂଦେଶଯୁତା ବାଚସ୍ତ୍ୱତ୍ତଃ ଶ୍ରୁତ୍ୱୈବ ରାଘବଃ ।
ପରାକ୍ରମେ ମତିଂ ବୀରୋ ବିଧିବତ୍ସଂବିଧାସ୍ୟତି । ୧୨ ।
ସୀତାୟାସ୍ତଦ୍‌ବଚଃ ଶ୍ରୁତ୍ୱା ହନୂମାନ୍ମାରୁତାତ୍ମଜଃ ।
ଶିରସ୍ୟଞ୍ଜଲିମାଧାୟ ବାକ୍ୟମୁତ୍ତରମବ୍ରବୀତ୍ । ୧୩ ।

---

ଗମନ କରିବାକୁ ଉଦ୍ୟତ ହେଲେ । ଦେବୀ ମୈଥିଳୀ ହନୂମାନଙ୍କୁ ପ୍ରସ୍ଥାନୋଦ୍ୟତ ଦେଖି ବାଷ୍ପଗଦ୍‌ଗଦ ସ୍ୱରରେ କହିଲେ, "ହେ ହନୂମନ୍ ! ତୁମ୍ଭେ ରାମ, ଲକ୍ଷ୍ମଣ, ଅମାତ୍ୟମାନଙ୍କ ସହିତ ସୁଗ୍ରୀବ ଏବଂ ସମସ୍ତ ବୃଦ୍ଧ ବାନରଙ୍କୁ ମୋର କୁଶଳ-ସମ୍ବାଦ କହିବ । ହେ ବାନରଶ୍ରେଷ୍ଠ ! ତୁମ୍ଭେ ଧର୍ମାନୁସାରେ କୁଶଳବାର୍ତ୍ତା ଦେଇ, ଯେପରି ମହାବାହୁ ରାମ ମୋତେ ଏ ଦୁଃଖସାଗରରୁ ପରିତ୍ରାଣ କରନ୍ତି, ସେ ବିଷୟରେ ନିଜେ ଯତ୍ନବାନ୍ ହେବା ଉଚିତ । ୮-୯ । ହେ ହନୂମନ୍ ! ତୁମ୍ଭେ ଏପରିଭାବରେ କହିବ, ଯେପରିକି ଯଶସ୍ୱୀ ରାମ ମୁଁ ଜୀବିତ ଥାଉଁ ଥାଉଁ ମୋସହିତ ଆସି ମିଳିତହୁଅନ୍ତି; ଏହାକରି ତୁମ୍ଭେ ଧର୍ମ ଅର୍ଜନ କର । ୧୦ । ପ୍ରତ୍ୟହ ତୁମ୍ଭଠାରୁ ଉତ୍ସାହପୂର୍ଣ୍ଣ କଥା ଶୁଣି ମୋତେ ପାଇବାନିମନ୍ତେ ଦାଶରଥିଙ୍କର ପୌରୁଷ ବୃଦ୍ଧି ପାଇବ । ୧୧ । ତୁମ୍ଭଠାରୁ ମୋର ସମ୍ବାଦସମନ୍ୱିତ ବାକ୍ୟ ଶୁଣି ବୀର ରାଘବ ଯଥାବିଧାନରେ ପରାକ୍ରମ ପ୍ରକାଶ କରିବାକୁ ମନ ବଳାଇବେ" ।୧୨। ସୀତାଙ୍କ କଥା ଶୁଣି ପବନନନ୍ଦନ ହନୂମାନ୍ ମସ୍ତକରେ ଅଞ୍ଜଳି ବନ୍ଧନକରି ଉତ୍ତରଦେଲେ । ୧୩ ।

କ୍ଷିପ୍ରମେଷ୍ୟନ୍ତି କାକୁତ୍ସ୍ଥୌ ହର୍ୟୃକ୍ଷପ୍ରବରୈର୍ବୃତୌ ।
ଯସ୍ତେ ଯୁଧି ବିଜିତ୍ୟାରୀନ୍ ଶୋକଂ ବ୍ୟପନୟିଷ୍ୟତି ।୧୪।
ନ ହି ପଶ୍ୟାମି ମର୍ତ୍ତ୍ୟେଷୁ ନାସୁରେଷୁ ସୁରେଷୁ ବା ।
ଯସ୍ତସ୍ୟ ବମତୋ ବାଣାନ୍ ସ୍ଥାତୁମୁତ୍ସହତେଽଗ୍ରତଃ ।୧୫।
ଅପ୍ୟର୍କମପି ପର୍ଜନ୍ୟମପି ବୈବସ୍ୱତଂ ଯମମ୍ ।
ସ ହି ସୋଢ଼ୁଂ ରଣେ ଶକ୍ତସ୍ତବ ହେତୋର୍ବିଶେଷତଃ ।୧୬।
ସ ହି ସାଗରପର୍ଯ୍ୟନ୍ତାଂ ମହୀଂ ସାଧିତୁମର୍ହତି ।
ତ୍ୱନ୍ନିମିତ୍ତୋ ହି ରାମସ୍ୟ ଜୟୋ ଜନକନନ୍ଦିନି ! ।୧୭।
ତସ୍ୟ ତଦ୍‌ବଚନଂ ଶ୍ରୁତ୍ୱା ସମ୍ୟକ୍ ସତ୍ୟଂ ସୁଭାଷିତମ୍ ।
ଜାନକୀ ବହୁ ମେନେ ତଂ ବଚନଂ ଚେଦମବ୍ରବୀତ୍ ।୧୮।
ତତସ୍ତଂ ପ୍ରସ୍ଥିତଂ ସୀତା ବୀକ୍ଷ୍ୟମାଣା ପୁନଃ ପୁନଃ ।
ଭର୍ତୃସ୍ନେହାନ୍ୱିତଂ ବାକ୍ୟଂ ସୌହାର୍ଦ୍ଦାଦନୁମାନୟତ୍ ।୧୯।
ଯଦି ବା ମନ୍ୟସେ ବୀର ! ବସୈକାହମରିନ୍ଦମ !
କସ୍ମିଂଶ୍ଚିତ୍ ସଂବୃତେ ଦେଶେ ବିଶ୍ରାନ୍ତଃ ଶ୍ୱୋ ଗମିଷ୍ୟସି ।୨୦।
ମମ ଚୈବାଳ୍ପଭାଗ୍ୟାୟାଃ ସାଂନିଧ୍ୟାତ୍ତବ ବାନର ! ।
ଅସ୍ୟ ଶୋକସ୍ୟ ମହତୋ ମୁହୂର୍ତ୍ତଂ ମୋକ୍ଷଣଂ ଭବେତ୍ ।୨୧।

---

ହେ ଦେବି ! କାକୁସ୍ଥନନ୍ଦନ ରାମ ଅତିଶୀଘ୍ର ମହାବୀର ବାନର ଏବଂ ଭଲ୍ଲୁକମାନଙ୍କ ଦ୍ୱାରା ପରିବୃତ ହୋଇ ଆସିବେ ଏବଂ ଯୁଦ୍ଧରେ ଶତ୍ରୁମାନଙ୍କୁ ଜୟକରି ତୁମ୍ଭର ଶୋକ ଅପନୋଦନ କରିବେ ।୧୪। ମୁଁ ଏ ମର୍ତ୍ତ୍ୟଲୋକରେ କିମ୍ବା ଦେବତା ବା ଅସୁରଙ୍କ ମଧ୍ୟରେ ଏପରି ଲୋକ ଦେଖୁ ନାହିଁ, ସେ କି ରାମ ଶର ଉଦ୍‌ଗୀରଣ-କଲାବେଳେ ତାଙ୍କ ଆଗରେ ଠିଆହେବାକୁ ସାହସକରିବ ।୧୫। ବିଶେଷତଃ ତୁମ୍ଭ ନିମନ୍ତେ ଯୁଦ୍ଧରେ ସେ ସୂର୍ଯ୍ୟ, ଇନ୍ଦ୍ର ଏବଂ ଯମଙ୍କ ବିକ୍ରମକୁ ମଧ୍ୟ ସହ୍ୟକରିବାକୁ ସମର୍ଥ ହେବେ ।୧୬। ହେ ଜନକନନ୍ଦିନି ! ସେ ସସାଗରା ଧରଣୀକୁ ଜୟ କରିବାକୁ ସମର୍ଥ ଅଟନ୍ତି । ତୁମ୍ଭ ନିମନ୍ତେ ରାମଙ୍କର ଜୟ ସୁନିଶ୍ଚିତ" ।୧୭। ହନୁମାନଙ୍କର ସେହି ଯୁକ୍ତିଯୁକ୍ତ ସୁଭାଷିତ ସତ୍ୟବଚନ ଶ୍ରବଣକରି ଜାନକୀ ତାଙ୍କୁ ସମ୍ମାନ କଲେ ଏବଂ ଏହି କଥା କହିଲେ ।୧୮। ଅନନ୍ତର ପ୍ରସ୍ଥାନୋଦ୍ୟତ ହନୁମାନଙ୍କ ପ୍ରତି ବାରମ୍ବାର ଗୁହିଁ, ସୌହାର୍ଦ୍ଦ୍ୟହେତୁରୁ ସେ ସ୍ୱାମୀଙ୍କ ପ୍ରତି ସ୍ନେହପୂର୍ଣ୍ଣ ବଚନରେ କହିଲେ ।୧୯। "ହେ ଅରିନ୍ଦମ ବୀର ! ଯଦି ତୁମ ମନକୁ ପାଉଛି,ତେବେ ଏହିଠାରେ କୌଣସି ନିଭୃତ ସ୍ଥାନରେ ଗୋଟିଏଦିନ ରହି, କାଲି ଯିବ ।୨୦। ହେ ବାନର ! ତୁମ୍ଭନିକଟରେ ରହିବା ଦ୍ୱାରା ହତଭାଗିନୀ ମୋର ଏହି ମହାଶୋକ ମୁହୂର୍ତ୍ତକପାଇଁ ହେଲେ ଦୂରହୋଇଯିବ ।୨୧

ଗତେ ହି ହରିଶାର୍ଦ୍ଦୂଲ ! ପୁନରାଗମନାୟ ତୁ ।
ପ୍ରାଣାନାମପି ସନ୍ଦେହୋ ମମ ସ୍ୟାନ୍ନାତ୍ର ସଂଶୟଃ । ୨୨ ।
ତବାଦର୍ଶନଜଃ ଶୋକୋ ଭୂୟୋ ମାଂ ପରିତାପୟେତ୍ ।
ଦୁଃଖାଦ୍ଦୁଃଖପରାମୃଷ୍ଟାଂ ଦୀପୟନ୍ନିବ ବାନର ! । ୨୩ ।
ଅୟଂ ଚ ବୀର ! ସନ୍ଦେହସ୍ତିଷ୍ଠତୀବ ମମାଗ୍ରତଃ ।
ସୁମହାଂସ୍ତ୍ୱତ୍ସହାୟେଷୁ ହର୍ୟୃକ୍ଷେଷୁ ହରୀଶ୍ୱର ! । ୨୪ ।
କଥଂ ନୁ ଖଲୁ ଦୁଷ୍ପାରଂ ତରିଷ୍ୟନ୍ତି ମହୋଦଧିମ୍ ।
ତାନି ହର୍ୟୃକ୍ଷସୈନ୍ୟାନି ତୌ ବା ନରବରାତ୍ମଜୌ । ୨୫ ।
ତ୍ରୟାଣାମେବ ଭୂତାନାଂ ସାଗରସ୍ୟେହ ଲଙ୍ଘନେ ।
ଶକ୍ତିଃ ସ୍ୟାଦ୍ୱୈନତେୟସ୍ୟ ତବ ବା ମାରୁତସ୍ୟ ବା । ୨୬ ।
ତଦସ୍ମିନ୍ କାର୍ଯ୍ୟନିଯୋଗେ ବୀରୈବଂ ଦୁରତିକ୍ରମେ ।
କିଂ ପଶ୍ୟସି ସମାଧାନଂ ତ୍ୱଂ ହି କାର୍ଯ୍ୟବିଦାଂ ବରଃ । ୨୭ ।
କାମମସ୍ୟ ତ୍ୱମେବୈକଃ କାର୍ଯ୍ୟସ୍ୟ ପରିସାଧନେ ।
ପର୍ଯ୍ୟାପ୍ତଃ ପରବୀରଘ୍ନ ! ଯଶସ୍ୟସ୍ତେ ଫଲୋଦୟଃ । ୨୮ ।
ବଲୈଃ ସମଗ୍ରୈର୍ଯୁଧି ମାଂ ରାବଣଂ ଜିତ୍ୱା ସଂୟୁଗେ ।
ବିଜୟୀ ସ୍ୱପୁରଂ ଯାୟାତ୍ତତ୍ତସ୍ୟ ସଦୃଶଂ ଭବେତ୍ । ୨୯ ।

---

ହେ ବାନରଶ୍ରେଷ୍ଠ ! ତୁମେ ପୁଣି ଆସିବ, ଏହା ଜାଣି ମଧ୍ୟ ତୁମେ ଚାଲିଗଲେ ମୋର ପ୍ରାଣସଂଶୟ ଉପସ୍ଥିତ ହେବ, ଏଥିରେ ସନ୍ଦେହ ନାହିଁ । ୨୨ । ହେ ବାନର ! ଦୁଃଖପରମ୍ପରାକ୍ଳିଷ୍ଟା ମୋତେ ତୁମ୍ଭର ଅଦର୍ଶନଜନିତ ଶୋକ ଦଗ୍ଧକରି ଅତିଶୟ ପରିତପ୍ତ କରିବ । ୨୩ । ହେ ବାନରଶ୍ରେଷ୍ଠ ! ତୁମ୍ଭର ସାହାଯ୍ୟକାରୀ ବାନର ଏବଂ ଭଲ୍ଲୁକଗଣଙ୍କ ସମ୍ବନ୍ଧରେ ମୋ ସମ୍ମୁଖରେ ଏହି ଘୋର ସନ୍ଦେହ ଉପସ୍ଥିତ ହେଉଅଛି ଯେ, ସେହି ରାଜକୁମାର ଦୁହେଁ ବା ସେହି ବାନର ବା ଭଲ୍ଲୁକ-ସୈନ୍ୟମାନେ କିପରି ଏହି ଅପାର ସମୁଦ୍ରକୁ ପାରହେବେ ! । ୨୪-୨୫ । ପ୍ରାଣୀ-ମାନଙ୍କ ମଧ୍ୟରେ କେବଳ ତୁମ୍ଭର ବା ଗରୁଡ଼ଙ୍କର ଅଥବା ପବନଙ୍କର—ଏହି ତିନିଜଣଙ୍କର ହିଁ ଏହି ସମୁଦ୍ର ଲଙ୍ଘନ କରିବାର ଶକ୍ତି ଥାଇପାରେ । ୨୬ । ଅତଏବ ହେ ବୀର ! ଏତାଦୃଶ ଦୁରତିକ୍ରମଣୀୟ କାର୍ଯ୍ୟର ସମାଧାନ ବିଷୟରେ କି ଉପାୟ ଦେଖିପାରୁଛ ? ତୁମେ କାର୍ଯ୍ୟଜ୍ଞ ବ୍ୟକ୍ତିମାନଙ୍କ ମଧ୍ୟରେ ଶ୍ରେଷ୍ଠ ଅଟ । ୨୭ । ଅଥବା ହେ ଶତ୍ରୁବୀରଘାତିନ୍ ! ତୁମେ ଏକାକୀହିଁ ଏ କାର୍ଯ୍ୟ ସାଧନ ନିମନ୍ତେ ଯଥେଷ୍ଟ ଅଟ । ତୁମ୍ଭର ବଳବୀର୍ଯ୍ୟ ପ୍ରଶଂସନୀୟ ଅଟେ । ୨୮ । କିନ୍ତୁ ରାମ ଯଦି ସମସ୍ତ ସୈନ୍ୟ ସହିତ ଆସି ଯୁଦ୍ଧରେ ରାବଣକୁ ଜୟକରି ବିଜୟୀ ହୋଇ ମୋତେ ନେଇ ନିଜ ନଗରୀକୁ ଫେରି

ବଳୈସ୍ତୁ ସଂକୁଳାଂ କୃତ୍ୱା ଲଙ୍କାଂ ପରବଳାର୍ଦ୍ଦନଃ ।
ମାଂ ନୟେଦ୍ ଯଦି କାକୁତ୍ସ୍ଥସ୍ତତ୍ତସ୍ୟ ସଦୃଶଂ ଭବେତ୍ ।୩୦।
ତଦ୍ ଯଥା ତସ୍ୟ ବିକ୍ରାନ୍ତମନୁରୂପଂ ମହାତ୍ମନଃ ।
ଭବେଦାହବଶୂରସ୍ୟ ତଥା ତ୍ୱମୁପପାଦୟ । ୩୧ ।
ତଦର୍ଥୋପହିତଂ ବାକ୍ୟଂ ପ୍ରଶ୍ରିତଂ ହେତୁସଂହିତମ୍ ।
ନିଶମ୍ୟ ହନୁମାନ୍ ଶେଷଂ ବାକ୍ୟମୁତ୍ତରମବ୍ରବୀତ୍ । ୩୨ ।
ଦେବି ! ହର୍ୟୃକ୍ଷସୈନ୍ୟାନାମୀଶ୍ୱରଃ ପ୍ଲବତାଂ ବରଃ ।
ସୁଗ୍ରୀବଃ ସତ୍ୟସମ୍ପନ୍ନସ୍ତବାର୍ଥେ କୃତନିଶ୍ଚୟଃ । ୩୩ ।
ସ ବାନରସହସ୍ରାଣାଂ କୋଟୀଭିରଭିସଂବୃତଃ ।
କ୍ଷିପ୍ରମେଷ୍ୟତି ବୈଦେହି ! ରାକ୍ଷସାନାଂ ନିବର୍ହଣଃ । ୩୪ ।
ତସ୍ୟ ବିକ୍ରମସମ୍ପନ୍ନାଃ ସତ୍ତ୍ୱବନ୍ତୋ ମହାବଳାଃ ।
ମନଃସଂକଳ୍ପସମ୍ପାତା ନିଦେଶେ ହରୟଃ ସ୍ଥିତାଃ । ୩୫ ।
ଯେଷାଂ ନୋପରି ନାଧସ୍ତାନ୍ନ ତିର୍ଯକ୍ ସଜ୍ଜତେ ଗତିଃ ।
ନ ଚ କର୍ମସୁ ସୀଦନ୍ତି ମହତ୍ସ୍ୱମିତତେଜସଃ । ୩୬ ।

---

ଯାଆନ୍ତି, ତାହାହେଲେ ତାହାହିଁ ତାଙ୍କର ଉପଯୁକ୍ତ କାର୍ଯ୍ୟ ହେବ ।୨୯। ଶତ୍ରୁସଂହାରକ ରାମ ଲଙ୍କାକୁ ସୈନ୍ୟମାନଙ୍କଦ୍ୱାରା ଆଚ୍ଛନ୍ନକରି ମୋତେ ଯଦି ନେଇଯାଆନ୍ତି, ତେବେ ତାହା ତାଙ୍କର ଉପଯୁକ୍ତ କାର୍ଯ୍ୟ ହେବ । ୩୦ । ଅତଏବ ହେ ବୀର ! ସେହି ମହାତ୍ମା ବୀରଙ୍କର ଯେପରି ଉପଯୁକ୍ତ ବିକ୍ରମ ପ୍ରକାଶପାଏ, ତୁମେ ସେହିପରି ବ୍ୟବସ୍ଥାକର ।" । ୩୧ । ତାହାଙ୍କର ଏହି ସଙ୍ଗତାର୍ଥ ଯୁକ୍ତିଯୁକ୍ତ ବାକ୍ୟ ଶ୍ରବଣକରି ହନୁମାନ୍ ଉତ୍ତର-ସ୍ୱରୂପ କହିଲେ । ୩୨ । "ହେ ଦେବି ! ବାନର ଏବଂ ଭଲ୍ଲୁକସୈନ୍ୟର ଅଧିପତି ବାନରଶ୍ରେଷ୍ଠ, ବଳବାନ୍ ସୁଗ୍ରୀବ ତୁମ୍ଭର ଉଦ୍ଧାରଲାଗି ପ୍ରତିଜ୍ଞା କରିଅଛନ୍ତି । ୩୩ । ହେ ବୈଦେହି ! ରାକ୍ଷସମାନଙ୍କର ସଂହାରକର୍ତ୍ତା ସେହି ସୁଗ୍ରୀବ ସହସ୍ର ସହସ୍ର, କୋଟି କୋଟି ବାନରପରିବୃତ ହୋଇ ଶୀଘ୍ର ଏଠାକୁ ଆସିବେ । ୩୪ । ବିକ୍ରମଶାଳୀ, ସାହସୀ, ମହାବଳୀ, ମନୋରଥସଦୃଶ ଦ୍ରୁତଗାମୀ, ବାନରମାନେ ତାଙ୍କର ଆଜ୍ଞାଧୀନ ହୋଇ ରହିଛନ୍ତି । ୩୫ । କି ଉର୍ଦ୍ଧ୍ୱ, କି ଅଧଃ, କି ପାର୍ଶ୍ୱଦିଗ, କୌଣସି ଦିଗରେ ସେମାନଙ୍କର ଗତି ରୁଦ୍ଧ ନୁହେଁ । ସେମାନେ ଅପରିମିତ ତେଜଃଶାଳୀ; ସୁତରାଂ ଅତି ଗୁରୁତର କାର୍ଯ୍ୟରେ ମଧ୍ୟ ସେମାନେ ଅବସନ୍ନ ହୁଅନ୍ତି

ଅସକୃତ୍ତୈର୍ମହୋତ୍ସାହୈଃ ସସାଗରଧରାଧରା ।
ପ୍ରଦକ୍ଷିଣୀକୃତା ଭୂମିର୍ବାୟୁମାର୍ଗାନୁସାରିଭିଃ । ୩୭ ।
ମଦ୍‌ବିଶିଷ୍ଟାଶ୍ଚ ତୁଲ୍ୟାଶ୍ଚ ସନ୍ତି ତତ୍ର ବନୌକସଃ ।
ମତ୍ତଃ ପ୍ରତ୍ୟବରଃ କଶ୍ଚିନ୍ନାସ୍ତି ସୁଗ୍ରୀବସଂନିଧୌ । ୩୮ ।
ଅହଂ ତାବଦିହ ପ୍ରାପ୍ତଃ କିଂ ପୁନସ୍ତେ ମହାବଳାଃ ।
ନ ହି ପ୍ରକୃଷ୍ଟାଃ ପ୍ରେଷ୍ୟନ୍ତେ ପ୍ରେଷ୍ୟନ୍ତେ ହୀତରେ ଜନାଃ । ୩୯ ।
ତଦଲଂ ପରିତାପେନ ଦେବି ! ଶୋକୋ ବ୍ୟପୈତୁ ତେ ।
ଏକୋତ୍ପାତେନ ତେ ଲଙ୍କାମେଷ୍ୟନ୍ତି ହରିଯୂଥପାଃ । ୪୦ ।
ମମ ପୃଷ୍ଠଗତୌ ତୌ ଚ ଚନ୍ଦ୍ରସୂର୍ଯାବିବୋଦିତୌ ।
ତ୍ୱତ୍ସକାଶଂ ମହାସତ୍ତ୍ୱୌ ନୃସିଂହାବାଗମିଷ୍ୟତଃ । ୪୧ ।
ତୌ ହି ବୀରୌ ନରବରୌ ସହିତୌ ରାମଲକ୍ଷ୍ମଣୌ ।
ଆଗମ୍ୟ ନଗରୀଂ ଲଙ୍କାଂ ସାୟକୈର୍ବିଧମିଷ୍ୟତଃ । ୪୨ ।
ସଗଣଂ ରାବଣଂ ହତ୍ୱା ରାଘବୋ ରଘୁନନ୍ଦନଃ ।
ତ୍ୱାମାଦାୟ ବରାରୋହେ ! ସ୍ୱପୁରୀଂ ପ୍ରତିଯାସ୍ୟତି । ୪୩ ।

---

ନାହିଁ । ୩୬ । ସେହି ମହାଉତ୍ସାହୀମାନେ ବାୟୁପଥ ଅବଲମ୍ବନକରି ବହୁବାର ସାଗର ଏବଂ ପର୍ବତମାନଙ୍କ ସହିତ ଏହି ପୃଥିବୀକୁ ପ୍ରଦକ୍ଷିଣ କରିଅଛନ୍ତି । ୩୭ । ସୁଗ୍ରୀବଙ୍କ ନିକଟରେ ମୋ ଅପେକ୍ଷା ଅଧିକ ବଳଶାଳୀ ଏବଂ ମୋ ସହିତ ସମାନ ବଳବିଶିଷ୍ଟ ଅନେକ ବନବାସୀ ବାନର ଅଛନ୍ତି; ମୋ ଅପେକ୍ଷା ନିକୃଷ୍ଟ କେହି ଜଣେ ହେଲେ ନାହିଁ । ୩୮ । ମୁଁ ଯେତେବେଳେ ଏଠାକୁ ଆସିପାରିଛି, ସେହି ମହାବଳୀମାନଙ୍କ କଥା ଆଉ କଅଣ କହିବା ? ଇତର ଲୋକକୁ ହିଁ ଦୂତରୂପେ ପଠାନ୍ତି, ପ୍ରଧାନ ବ୍ୟକ୍ତିମାନଙ୍କୁ ପଠାନ୍ତି ନାହିଁ । ୩୯ । ଅତଏବ ହେ ଦେବି ! ପରିତାପ କରିବାର ପ୍ରୟୋଜନ ନାହିଁ, ତୁମ୍ଭର ଶୋକ ଦୂରୀଭୂତ ହେଉ । ସେହି ବାନରଯୂଥପତିମାନେ ଏକାଡ଼ିଆଁରେ ଲଙ୍କାକୁ ଆସିବେ । ୪୦ । ସେହି ବଳବାନ୍, ସହାୟସମ୍ପନ୍ନ, ନରସିଂହ, ରାମ ଲକ୍ଷ୍ମଣ ଦୁହେଁ ମୋ ପିଠିରେ ବସି ଉଦିତ ଚନ୍ଦ୍ର ସୂର୍ଯ୍ୟଙ୍କ ପରି ତୁମ୍ଭ ନିକଟକୁ ଆସିବେ । ୪୧ । ସେହି ଦୁଇ ନରଶ୍ରେଷ୍ଠ ବୀର ରାମ ଲକ୍ଷ୍ମଣ ଏକସଙ୍ଗରେ ଆସି ବାଣସମୂହଦ୍ୱାରା ଲଙ୍କା ନଗରୀକୁ ଧ୍ୱସ୍ତ ବିଧ୍ୱସ୍ତ କରିଦେବେ । ୪୨ । ବରାରୋହେ ! ରଘୁନନ୍ଦନ ରାମ ସବାନ୍ଧବରେ ରାବଣକୁ ହତ୍ୟାକରି, ତୁମ୍ଭଙ୍କୁ ନେଇ ନିଜ ପୁରୀକୁ ପ୍ରତ୍ୟାବର୍ତ୍ତନ କରିବେ । ୪୩ । ସୁତରାଂ

ତଦାଶ୍ୱସିହି ଭଦ୍ରଂ ତେ ଭବ ତ୍ୱଂ କାଲକାଙ୍କ୍ଷିଣୀ ।
ନଚିରାଦ୍ଦ୍ରକ୍ଷ୍ୟସେ ରାମଂ ପ୍ରଜ୍ୱଳନ୍ତମିବାନଲମ୍ । ୪୪ ।
ନିହତେ ରାକ୍ଷସେନ୍ଦ୍ରେ ଚ ସପୁତ୍ରାମାତ୍ୟବାନ୍ଧବେ ।
ତ୍ୱଂ ସମେଷ୍ୟସି ରାମେଣ ଶଶାଙ୍କେନେବ ରୋହିଣୀ । ୪୫ ।
କ୍ଷିପ୍ରଂ ତ୍ୱଂ ଦେବି ! ଶୋକସ୍ୟ ପାରଂ ଦ୍ରକ୍ଷ୍ୟସି ମୈଥିଳି !
ରାବଣଂ ଚୈବ ରାମେଣ ଦ୍ରକ୍ଷ୍ୟସେ ନିହତଂ ବଲାତ୍ । ୪୬ ।
ଏବମାଶ୍ୱାସ୍ୟ ବୈଦେହୀଂ ହନୁମାନ୍ମାରୁତାତ୍ମଜଃ ।
ଗମନାୟ ମତିଂ କୃତ୍ୱା ବୈଦେହୀଂ ପୁନରବ୍ରବୀତ୍ । ୪୭ ।
ତମରିଘ୍ନଂ କୃତାତ୍ମାନଂ କ୍ଷିପ୍ରଂ ଦ୍ରକ୍ଷ୍ୟସି ରାଘବମ୍ ।
ଲକ୍ଷ୍ମଣଂ ଚ ଧନୁଷ୍ପାଣିଂ ଲଙ୍କାଦ୍ୱାରମୁପାଗତମ୍ । ୪୮ ।
ନଖଦଂଷ୍ଟ୍ରାୟୁଧାନ୍ ବୀରାନ୍ ସିଂହଶାର୍ଦ୍ଦୂଲବିକ୍ରମାନ୍ ।
ବାନରାନ୍ ବାରଣେନ୍ଦ୍ରାଭାନ୍ କ୍ଷିପ୍ରଂ ଦ୍ରକ୍ଷ୍ୟସି ସଂଗତାନ୍ । ୪୯ ।
ଶୈଳାମ୍ବୁଦନିକାଶାନାଂ ଲଙ୍କାମଲୟସାନୁଷୁ ।
ନର୍ଦ୍ଦତାଂ କପିମୁଖ୍ୟାନାମାର୍ଯ୍ୟେ ! ଯୂଥାନ୍ୟନେକଶଃ । ୫୦ ।

---

ତୁମ୍ଭେ ଆଶ୍ୱସ୍ତ ହୁଅ, ତୁମ୍ଭର ମଙ୍ଗଳ ହେଉ, ତୁମ୍ଭେ ସମୟକୁ ଅପେକ୍ଷାକରି ରହ । ଅବିଳମ୍ବେ ତୁମ୍ଭେ ଜ୍ୱଳନ୍ତ ଅଗ୍ନିସଦୃଶ ରାମଙ୍କୁ ଦେଖିବ । ୪୪ । ପୁତ୍ର, ଅମାତ୍ୟ ଏବଂ ବାନ୍ଧବମାନଙ୍କ ସହିତ ଏହି ରାକ୍ଷସରାଜ ରାବଣ ନିହତହେଲେ, ଚନ୍ଦ୍ରଙ୍କ ସହିତ ରୋହିଣୀଙ୍କ ପରି ତୁମ୍ଭେ ରାମଙ୍କ ସହିତ ମିଳିତହେବ । ୪୫ । ହେ ଦେବି ମୈଥିଳି ! ତୁମ୍ଭେ ଅତିଶୀଘ୍ର ଶୋକର ଅବସାନ ଦେଖିବ ଏବଂ ରାବଣକୁ ରାମଙ୍କ କର୍ତ୍ତୃକ ନିହତ ହେବାର ଦେଖିବ" । ୪୬ । ପବନନନ୍ଦନ ହନୁମାନ୍ ଏହିରୂପେ ବୈଦେହୀଙ୍କୁ ଆଶ୍ୱାସନା ଦେଇ ଗମନ କରିବାକୁ ଇଚ୍ଛାକରି ତାଙ୍କୁ ପୁଣି କହିଲେ । ୪୭ । "ତୁମ୍ଭେ ସେହି ଶତ୍ରୁହନ୍ତା, କୃତାତ୍ମା ରାମଙ୍କୁ ଏବଂ ଧନୁର୍ଦ୍ଧାରୀ ଲକ୍ଷ୍ମଣଙ୍କୁ ଶୀଘ୍ର ଲଙ୍କାର ଦ୍ୱାରଦେଶରେ ଆସି ଉପସ୍ଥିତ ହେବାର ଦେଖିବ । ୪୮ । ନଖଦଂଷ୍ଟ୍ରାୟୁଧ, ସିଂହ-ଶାର୍ଦ୍ଦୂଳସଦୃଶ ବିକ୍ରମୀ, ଗଜରାଜସଦୃଶ ଦୀର୍ଘକାୟ, ବାନର ବୀରମାନେ ଶୀଘ୍ର ଏଠାରେ ଆସି ସମବେତ ହେବାର ତୁମ୍ଭେ ଦେଖିବ । ୪୯ । ଆର୍ଯ୍ୟେ ! ଲଙ୍କାର ମଲୟ ପର୍ବତର ଶିଖରଦେଶରେ ପର୍ବତ ଏବଂ ମେଘାକାର ପ୍ରଧାନ ପ୍ରଧାନ ବାନରମାନଙ୍କର ଗର୍ଜନଧ୍ୱନି ତୁମ୍ଭେ ଅଚିରେ ଶ୍ରବଣକରିବ । ୫୦ । ରାମ ମର୍ମସ୍ଥଳରେ ଭୀଷଣ କନ୍ଦର୍ପଶର ଦ୍ୱାରା ଆହତ

ସ ତୁ ମର୍ମଣି ଘୋରେଣ ତାଡ଼ିତୋ ମନ୍ମଥେଷୁଣା ।
ନ ଶର୍ମ ଲଭତେ ରାମଃ ସିଂହାର୍ଦ୍ଦିତ ଇବ ଦ୍ୱିପଃ ।୫୧ ।
ରୁଦ ମା ଦେବି ! ଶୋକେନ ମା ଭୂତ୍ତେ ମନସୋ ଭୟମ୍ ।
ଶଚୀବ ଭର୍ତ୍ରା ଶକ୍ରେଣ ସଙ୍ଗମେଷ୍ୟସି ଶୋଭନେ ! । ୫୨।
ରାମାଦ୍‌ବିଶିଷ୍ଟଃ କୋଽନ୍ୟୋଽସ୍ତି କଶ୍ଚିତ୍‌ସୌମିତ୍ରିଣା ସମଃ ।
ଅଗ୍ନିମାରୁତକଲ୍ପୌ ତୌ ଭ୍ରାତରୌ ତବ ସଂଶ୍ରୟୌ । ୫୩

ନାସ୍ମିଂଶ୍ଚିରଂ ବତ୍ସ୍ୟସି ଦେବି ! ଦେଶେ
ରକ୍ଷୋଗଣୈରଧ୍ୟୁଷିତେଽତିରୌଦ୍ରେ ।
ନ ତେ ଚିରାଦାଗମନଂ ପ୍ରିୟସ୍ୟ
କ୍ଷମସ୍ୱ ମତ୍‌ସଙ୍ଗମକାଲମାତ୍ରମ୍ । ୫୪ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ସୁନ୍ଦରକାଣ୍ଡେ ହନୂମତ୍‌ସନ୍ଦେଶୋ ନାମ ଏକୋନଚତ୍ୱାରିଂଶଃ ସର୍ଗଃ ।

---

ହୋଇ, ସିଂହ ସମାହତ ହସ୍ତୀପରି ଶାନ୍ତିଲାଭ କରି ପାରୁ ନାହାନ୍ତି । ୫୧ । ଦେବି ! ଆଉ ଶୋକରେ ରୋଦନକର ନାହିଁ; ତୁମ୍ଭ ମନରେ ଭୟ ନ ରହୁ । ଶୋଭନେ ! ଇନ୍ଦ୍ରଙ୍କ ସହିତ ଶଚୀଙ୍କପରି ତୁମ୍ଭେ ସ୍ୱାମୀଙ୍କ ସହିତ ମିଳିତ ହେବ ।୫୨। ରାମଙ୍କଠାରୁ ଶ୍ରେଷ୍ଠ ଆଉ କିଏ ଅଛି ? ସୁମିତ୍ରାନନ୍ଦନଙ୍କ ସହିତ ବା କିଏ ସମାନ ହୋଇପାରେ ? ଅଗ୍ନି ଏବଂ ପବନଙ୍କ ସଦୃଶ ସେହି ଦୁଇ ଭାଇ ତୁମ୍ଭର ଆଶ୍ରୟ ହୋଇ ରହିଛନ୍ତି । ୫୩ । ହେ ଦେବି ! ତୁମ୍ଭଙ୍କୁ ଆଉ ଏହି ରାକ୍ଷସସେବିତ ଭୟଙ୍କର ସ୍ଥାନରେ ଅଧିକ କାଳ ବାସ-କରିବାକୁ ହେବ ନାହିଁ; ଅବିଳମ୍ବେ ତୁମ୍ଭର ପ୍ରିୟ ଆସିବେ । ମୁଁ ତାଙ୍କ ସହିତ ଯାଇ ମିଳିତ ହେବା ପର୍ଯ୍ୟନ୍ତ ହିଁ ତୁମ୍ଭେ ଅପେକ୍ଷାକର ” ।୫୪ ।

# ଚତ୍ୱାରିଂଶଃ ସର୍ଗଃ

## ହନୂମତ୍ପ୍ରେଷଣମ୍

ଶ୍ରୁତ୍ୱା ତୁ ବଚନଂ ତସ୍ୟ ବାୟୁସୂନୋର୍ମହାତ୍ମନଃ ।
ଉବାଚାତ୍ମହିତଂ ବାକ୍ୟଂ ସୀତା ସୁରସୁତୋପମା । ୧ ।
ତ୍ୱାଂ ଦୃଷ୍ଟ୍ୱା ପ୍ରିୟବକ୍ତାରଂ ସଂପ୍ରହୃଷ୍ୟାମି ବାନର !
ଅର୍ଦ୍ଧସଂଜାତସସ୍ୟେବ ବୃଷ୍ଟିଂ ପ୍ରାପ୍ୟ ବସୁନ୍ଧରା । ୨ ।
ଯଥା ତଂ ପୁରୁଷବ୍ୟାଘ୍ରଂ ଗାତ୍ରୈଃ ଶୋକାଭିକର୍ଶିତୈଃ ।
ସଂସ୍ପୃଶେୟଂ ସକାମାହଂ ତଥା କୁରୁ ଦୟାଂ ମୟି । ୩ ।
ଅଭିଜ୍ଞାନଂ ଚ ରାମସ୍ୟ ଦଦ୍ୟା ହରିଗୁଣୋତ୍ତମ ! ।
କ୍ଷିପ୍ତାମିଷୀକାଂ କାକସ୍ୟ କୋପାଦେକାକ୍ଷିଶାତନୀମ୍ । ୪ ।
ମନଃଶିଳାୟାସ୍ତିଲକୋ ଗଣ୍ଡପାର୍ଶ୍ୱେ ନିବେଶିତଃ ।
ତ୍ୱୟା ପ୍ରଣଷ୍ଟେ ତିଲକେ ତଂ କିଲ ସ୍ମର୍ତୁମର୍ହସି । ୫ ।
ସ ବୀର୍ଯବାନ୍ କଥଂ ସୀତାଂ ହୃତାଂ ସମନୁମନ୍ୟସେ ।
ବସନ୍ତୀଂ ରକ୍ଷସାଂ ମଧ୍ୟେ ମହେନ୍ଦ୍ରବରୁଣୋପମଃ । ୬ ।

---

## ୪୦ଶ ସର୍ଗ

(ସୀତାଙ୍କର ହନୁମାନଙ୍କୁ ବିଦାୟପ୍ରଦାନ)

ମହାତ୍ମା ପବନନନ୍ଦନ ହନୁମାନଙ୍କ କଥା ଶୁଣି ଦେବକନ୍ୟାସଦୃଶୀ ସୀତା ନିଜର ହିତକର ବାକ୍ୟରେ କହିଲେ । ୧ । "ବାନର ! ଶସ୍ୟ ଅଧେ ବଢ଼ିଥିବା ଅବସ୍ଥାରେ ପୃଥିବୀ ବୃଷ୍ଟିଧାରା ପାଇ ଯେପରି ଆନନ୍ଦ ଲାଭକରେ, ପ୍ରିୟଭାଷୀ ତୁମକୁ ଦେଖି ମୁଁ ସେହିପରି ଅତିଶୟ ଆନନ୍ଦିତ ହୋଇଅଛି । ୨ । ମୁଁ ଯେପରି ଏହି ଶୋକକ୍ଷୀଣ ଶରୀରରେ ସେହି ପୁରୁଷବ୍ୟାଘ୍ରଙ୍କୁ ସ୍ପର୍ଶକରି ସଫଳକାମ ହେବି, ତୁମେ ମୋ ପ୍ରତି ସେହିପରି ଦୟାକର । ୩ । ବାନରକୁଳତିଳକ ! ରାମଙ୍କୁ ଅଭିଜ୍ଞାନ ସ୍ୱରୂପ ଏହି ମଣି ଦେବ ଏବଂ ସେ କ୍ରୋଧରେ କୁଶ ନିକ୍ଷେପକରି କାକର ଗୋଟି ଏ ଚକ୍ଷୁ ନଷ୍ଟ କରିଥିବା କଥା କହିବ । ୪ । ଆଉ ମଧ୍ୟ କହିବ, ଥରେ ମୋର ତିଳକ ଲିଭିଯାଇଥିବାରୁ ତୁମେ ଯେ ମୋର ଗଣ୍ଡଦେଶରେ ମନଃଶିଳାର ତିଳକ ଆଙ୍କି ଦେଇଥିଲ, ତାହା ତୁମର ସ୍ମରଣ କରିବା ଉଚିତ । ୫ । ଇନ୍ଦ୍ର ଏବଂ ବରୁଣଙ୍କ ସଦୃଶ ବୀର୍ଯ୍ୟବାନ୍ ସେହି ତୁମେ, ସୀତା ରାକ୍ଷସକର୍ତ୍ତୃକ ଅପହୃତ ହୋଇ ରାକ୍ଷସଙ୍କ ମଧ୍ୟରେ ବାସକରି ରହିଥିବା କଥା କିପରି ସହ୍ୟକରୁଛ ? ୬ । ହେ ନିଷ୍ପାପ !

ଏଷ ଚୂଡ଼ାମଣିର୍ଦିବ୍ୟୋ ମୟା ସୁପରିରକ୍ଷିତଃ ।
ଏତଂ ଦୃଷ୍ଟ୍ୱା ପ୍ରହୃଷ୍ୟାମି ବ୍ୟସନେ ତ୍ୱାମିବାନଘ ! ।୭।
ଏଷ ନିର୍ଯାତିତଃ ଶ୍ରୀମାନ୍ ମୟା ତେ ବାରିସଂଭବଃ ।
ଅତଃ ପରଂ ନ ଶକ୍ଷ୍ୟାମି ଜୀବିତୁଂ ଶୋକଲାଲସା ।୮।
ଅସହ୍ୟାନି ଚ ଦୁଃଖାନି ବାଚଶ୍ଚ ହୃଦୟଚ୍ଛିଦଃ ।
ରାକ୍ଷସୀନାଂ ସୁଘୋରାଣାଂ ତ୍ୱତ୍‌କୃତେ ମର୍ଷୟାମ୍ୟହମ୍ ।୯।
ଧାରୟିଷ୍ୟାମି ମାସଂ ତୁ ଜୀବିତଂ ଶତ୍ରୁସୂଦନ ! ।
ମାସାଦୂର୍ଦ୍ଧ୍ୱଂ ନ ଜୀବିଷ୍ୟେ ତ୍ୱୟା ହୀନା ନୃପାତ୍ମଜ ! ।୧୦।
ଘୋରୋ ରାକ୍ଷସରାଜୋଽୟଂ ଦୃଷ୍ଟିଶ୍ଚ ନ ସୁଖା ମୟି ।
ତ୍ୱାଂ ଚ ଶ୍ରୁତ୍ୱା ବିଷଜ୍ଜନ୍ତଂ ନ ଜୀବେୟମପି କ୍ଷଣମ୍ ।୧୧।
ବୈଦେହ୍ୟା ବଚନଂ ଶ୍ରୁତ୍ୱା କରୁଣଂ ସାଶ୍ରୁଭାଷିତମ୍ ।
ଅଥା ବ୍ରବୀନ୍ମହାତେଜା ହନୂମାନ୍ମାରୁତାତ୍ମଜଃ ।୧୨।
ତ୍ୱଚ୍ଛୋକବିମୁଖୋ ରାମୋ ଦେବି ! ସତ୍ୟେନ ତେ ଶପେ ।
ରାମେ ଶୋକାଭିଭୂତେ ତୁ ଲକ୍ଷ୍ମଣଃ ପରିତପ୍ୟତେ ।୧୩।

---

ମୁଁ ଏହି ଦିବ୍ୟ ମଥାମଣିକୁ ଅତି ଯତ୍ନରେ ରଖିଥିଲି; ଦୁଃଖ ସମୟରେ ଏହାକୁ ଦେଖି ତୁମ୍ଭଙ୍କୁ ଦେଖିଲାପରି ମୁଁ ଆନନ୍ଦିତ ହେଉଥିଲି । ୭ । ଏବେ ଏହି ବାରି-ସମ୍ଭବ ସୁନ୍ଦର ରତ୍ନ ମୁଁ ତୁମ୍ଭ ନିକଟକୁ ପଠାଇଦେଲି । ଏହାପରେ ମୁଁ ଶୋକାଭିଭୂତା ହୋଇ ଆଉ ଜୀବନ ଧରିପାରିବି ନାହିଁ । ୮ । ମୁଁ ଅସହ୍ୟ ଦୁଃଖ ଏବଂ ଘୋରରୂପା ରାକ୍ଷସୀମାନଙ୍କର ହୃଦୟବିଦାରୀ ବଚନ ତୁମ୍ଭରି ନିମନ୍ତେ ହିଁ ସହ୍ୟକରୁଅଛି । ୯ । ହେ ଶତ୍ରୁଦମନ ରାଜପୁତ୍ର ! ମୁଁ ଏକମାସକାଳ ମାତ୍ର ଜୀବନ ଧାରଣକରିବି । ତୁମଠାରୁ ବିଚ୍ଛିନ୍ନ ହୋଇ ମାସକରୁ ଅଧିକ କାଳ ମୁଁ କଦାପି ବଞ୍ଚିବି ନାହିଁ । ୧୦ । ଏହି ରାକ୍ଷସରାଜ ଅତି ନିର୍ଦ୍ଦୟ; ମୋ ପ୍ରତି ତାହାର ଦୃଷ୍ଟି ସୁଖକର ନୁହେ । ତୁମେ ବିଳମ୍ବ କରୁଥିବାର ଶୁଣିଲେ ମୁଁ କ୍ଷଣମାତ୍ର ଜୀବନ ଧରିବି ନାହିଁ” ।୧୧। ବୈଦେହୀଙ୍କର ଲୋତକସମନ୍ୱିତ କରୁଣବାକ୍ୟ ଶ୍ରବଣକରି ପବନନନ୍ଦନ ମହାତେଜା ହନୂମାନ୍ କହିଲେ । ୧୨ । “ହେ ଦେବି ! ମୁଁ ସତ୍ୟଦ୍ୱାରା ଶପଥ କରି କହୁଛି, ରାମ ତୁମ୍ଭର ଶୋକରେ ସବୁ କାର୍ଯ୍ୟରେ ବିମୁଖ ହୋଇପଡ଼ିଛନ୍ତି; ରାମ ଶୋକାଭିଭୂତ ହୋଇଥିବାରୁ ଲକ୍ଷ୍ମଣ ମଧ୍ୟ ପରିତାପ କରୁଛନ୍ତି । ୧୩ । ଏବେ କୌଣସିମତେ ତୁମ୍ଭର

ଦୃଷ୍ଟ୍ୱା କଥଂଚିଦ୍ଭବତୀ ନ କାଲଃ ପରିଦେବିତୁମ୍ ।
ଇମଂ ମୁହୂର୍ତ୍ତଂ ଦୁଃଖାନାମନ୍ତଂ ଦ୍ରକ୍ଷ୍ୟସି ଭାମିନି ! । ୧୪ ।
ତାବୁଭୌ ପୁରୁଷବ୍ୟାଘ୍ରୌ ରାଜପୁତ୍ରାବନିନ୍ଦିତୌ ।
ତ୍ୱଦ୍ଦର୍ଶନକୃତୋତ୍ସାହୌ ଲଙ୍କାଂ ଭସ୍ମୀକରିଷ୍ୟତଃ । ୧୫ ।
ହତ୍ୱା ତୁ ସମରେ ରକ୍ଷୋ ରାବଣଂ ସହ ବାନ୍ଧବୈଃ ।
ରାଘବୌ ତ୍ୱାଂ ବିଶାଲାକ୍ଷି ସ୍ୱାଂ ପୁରୀଂ ପ୍ରତିନେଷ୍ୟତଃ ।୧୬।
ଯତ୍ତୁ ରାମୋ ବିଜାନୀୟାଦଭିଜ୍ଞାନମନିନ୍ଦିତେ ! ।
ପ୍ରୀତିସଂଜନନଂ ଭୂୟସ୍ତସ୍ୟ ତ୍ୱଂ ଦାତୁମର୍ହସି । ୧୭ ।
ସାବ୍ରବୀଦ୍ଦତ୍ତମେବେତି ମୟାଭିଜ୍ଞାନମୁତ୍ତମମ୍ ।
ଏତଦେବ ହି ରାମସ୍ୟ ଦୃଷ୍ଟ୍ୱା ଯତ୍ନେନ ଭୂଷଣମ୍ । ୧୮ ।
ଶ୍ରଦ୍ଧେୟଂ ହନୁମନ୍ ! ବାକ୍ୟଂ ତବ ବୀର ! ଭବିଷ୍ୟତି ।
ସ ତଂ ମଣିବରଂ ଗୃହ୍ୟ ଶ୍ରୀମାନ୍ ପ୍ଲବଗସତ୍ତମଃ ।୧୯।
ପ୍ରଣମ୍ୟ ଶିରସା ଦେବୀଂ ଗମନାୟୋପଚକ୍ରମେ ।
ତମୁତ୍ପାତକୃତୋତ୍ସାହମବେକ୍ଷ୍ୟ ହରିଯୂଥପମ୍ । ୨୦ ।
ବର୍ଦ୍ଧମାନଂ ମହାବେଗମୁବାଚ ଜନକାତ୍ମଜା ।
ଅଶ୍ରୁପୂର୍ଣ୍ଣମୁଖୀ ଦୀନା ବାଷ୍ପଗଦ୍ଗଦୟା ଗିରା । ୨୧ ।

---

ଦେଖା ମିଳିଲା; ସୁତରାଂ ଏହା ଶୋକର ସମୟ ନୁହେଁ । ଭାମିନି ! ତୁମେ ଏହି ମୁହୂର୍ତ୍ତରେ ହିଁ ତୁମ୍ଭ ଶୋକର ଅବସାନ ଦେଖିବ ।୧୪। ସେହି ଦୁଇ ଅନିନ୍ଦିତ ପୁରୁଷ-ଶ୍ରେଷ୍ଠ, ରାଜପୁତ୍ରଦ୍ୱୟ ତୁମ୍ଭଙ୍କୁ ଦେଖିବା ନିମନ୍ତେ ଉତ୍ସାହୀ ହୋଇ ଲଙ୍କାକୁ ଭସ୍ମୀଭୂତ କରିଦେବେ । ୧୫ । ହେ ବିଶାଳାକ୍ଷି ! ସେହି ଦୁଇ ରଘୁନନ୍ଦନ ସବାନ୍ଧବରେ କ୍ରୂର ରାବଣକୁ ଯୁଦ୍ଧରେ ନିହତକରି ନିଜ ରାଜଧାନୀକୁ ତୁମ୍ଭଙ୍କୁ ନେଇଯିବେ । ୧୬ । ହେ ଅନିନ୍ଦିତେ ! ରାମ ଯାହାକୁ ତୁମ୍ଭର ନିଦର୍ଶନ ବୋଲି ଜାଣିପାରିବେ ଏବଂ ତଦ୍ଦ୍ୱାରା ତାଙ୍କର ପ୍ରୀତି ଜାତହେବ, ସେହିପରି ଆଉ କିଛି ଅଭିଜ୍ଞାନ ମୋତେ ଦେବା ଉଚିତ ।" ୧୭ । ସୀତା କହିଲେ, "ମୁଁ ତ ଅତି ଉତ୍କୃଷ୍ଟ ଅଭିଜ୍ଞାନ ଦେଇସାରିଛି । ବୀର ହନୁମନ୍ ! ମୋର ଏହି ମଥାମଣି ଦେଖି ତୁମ କଥାରେ ରାମଙ୍କର ବିଶ୍ୱାସ ହେବ ।" ଶ୍ରୀମାନ୍ ବାନରଶ୍ରେଷ୍ଠ ହନୁମାନ୍ ସେହି ଉତ୍ତମ ମଣି ଗ୍ରହଣକରି ଓ ସୀତାଦେବୀଙ୍କୁ ମୁଣ୍ଡିଆମାରି ପ୍ରଣାମକରି ଯିବାନିମନ୍ତେ ଉଦ୍ୟତ ହେଲେ । ବାନର-ଦଳପତି ହନୁମାନ୍ ଡେଇଁବା ପାଇଁ ଉଦ୍ୟମ କରି ଅତି ବେଗରେ ନିଜ ଶରୀରକୁ ବଢ଼ାଉଥିବାର ଦେଖି, ଜନକନନ୍ଦିନୀ ସୀତା ଲୋତକପୂର୍ଣ୍ଣ ମୁଖରେ, ଦୀନଭାବରେ,

ହନୂମନ୍ ! ସିଂହସଂକାଶୌ ଭ୍ରାତରୌ ରାମଲକ୍ଷ୍ମଣୌ ।
ସୁଗ୍ରୀବଂ ଚ ସହାମାତ୍ୟଂ ସର୍ବାନ୍ ବ୍ରୂୟା ହ୍ୟନାମୟମ୍ ।୨୨।
ଯଥା ଚ ସ ମହାବାହୁର୍ମାଂ ତାରୟତି ରାଘବଃ ।
ଅସ୍ମାଦ୍ଦୁଃଖାମ୍ବୁସଂରୋଧାତ୍ତ୍ୱଂ ସମାଧାତୁମର୍ହସି । ୨୩ ।

ଇମଂ ଚ ତୀବ୍ରଂ ମମ ଶୋକବେଗମ୍
ରକ୍ଷୋଭିରେଭିଃ ପରିଭର୍ତ୍ସନଂ ଚ ।
ବ୍ରୂୟାସ୍ତୁ ରାମସ୍ୟ ଗତଃ ସମୀପମ୍
ଶିବଶ୍ଚ ତେଽଧ୍ୱାସ୍ତୁ ହରିପ୍ରବୀର ! ୨୪ ।
ସ ରାଜପୁତ୍ର୍ୟା ପ୍ରତିବେଦିତାର୍ଥଃ
କପିଃ କୃତାର୍ଥଃ ପରିହୃଷ୍ଟଚେତାଃ ।
ତଦଳ୍ପଶେଷଂ ପ୍ରସମୀକ୍ଷ୍ୟ କାର୍ଯମ୍
ଦିଶଂ ହ୍ୟୁଦୀଚୀଂ ମନସା ଜଗାମ । ୨୫ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ସୁନ୍ଦରକାଣ୍ଡେ ହନୂମତ୍ପ୍ରେଷଣଂ ନାମ ଚତ୍ୱାରିଂଶଃ ସର୍ଗଃ ।

---

ବାଷ୍ପଗଦ୍‌ଗଦ ସ୍ୱରରେ କହିଲେ ।୧୮-୨୧।ହେ ହନୂମନ୍ ! ସିଂହସଦୃଶ ପରାକ୍ରମୀ ରାମ ଲକ୍ଷ୍ମଣ ଦୁଇଭାଇଙ୍କୁ ଅମାତ୍ୟଗଣଙ୍କସହିତ ସୁଗ୍ରୀବଙ୍କୁ ଓ ଅନ୍ୟ ସମସ୍ତଙ୍କୁ ମୋର କୁଶଳ ସମ୍ବାଦ କହିବ । ।୨୨। ମହାବାହୁ ରାଘବ ଯେପରି ମୋତେ ଏହି ଶୋକସାଗରରୁ ପରିତ୍ରାଣ କରନ୍ତି,ତୁମ୍ଭେ ତାହାଁର ବ୍ୟବସ୍ଥା କରିବା ଉଚିତ ।୨୩। ବାନରଶ୍ରେଷ୍ଠ ! ତୁମେ ରାମଙ୍କ ନିକଟକୁ ଯାଇ ମୋର ଏହି ତୀବ୍ର ଶୋକ ଏବଂ ଏହି ରାକ୍ଷସମାନଙ୍କର ଭର୍ତ୍ସନା ବିଷୟ ତାଙ୍କୁ କହିବ । ତୁମ୍ଭର ପଥ ମଙ୍ଗଳମୟ ହେଉ" ।୨୪। ଅନନ୍ତର ସେହି କୃତକାର୍ଯ୍ୟ ହନୂମାନ୍ ଅତିଶୟ ଆନନ୍ଦିତ ହୋଇ, ରାଜକୁମାରୀ ସୀତାଙ୍କର ଉଦ୍ଦେଶ୍ୟ ଉତ୍ତମରୂପେ ଅବଗତ ହୋଇ ଏବଂ ସେହି କାର୍ଯ୍ୟ ଆଉ ସାମାନ୍ୟମାତ୍ର ଅବଶିଷ୍ଟ ରହିଲା, ଏହା ଦେଖି, ମନେ ମନେ ଉତ୍ତର ଦିଗକୁ ଗଲେ । ୨୫ ।

---

# ଏକଚତ୍ୱାରିଂଶଃ ସର୍ଗଃ

## ପ୍ରମଦାବନଭଞ୍ଜନମ୍

ସ ଚ ବାଗ୍‌ଭିଃ ପ୍ରଶସ୍ତାଭିର୍ଗମିଷ୍ୟନ୍ ପୂଜିତସ୍ତୟା ।
ତସ୍ମାଦ୍ଦେଶାଦପକ୍ରମ୍ୟ ଚିନ୍ତୟାମାସ ବାନରଃ । ୧ ।
ଅଲ୍ପଶେଷମିଦଂ କାର୍ଯଂ ଦୃଷ୍ଟେୟମସିତେକ୍ଷଣା ।
ତ୍ରୀନୁପାୟାନତିକ୍ରମ୍ୟ ଚତୁର୍ଥ ଇହ ଦୃଶ୍ୟତେ । ୨ ।
ନ ସାମରକ୍ଷଃସୁ ଗୁଣାୟ କଲ୍ପତେ
ନ ଦାନମର୍ଥୋପଚିତେଷୁ ଯୁଜ୍ୟତେ ।
ନ ଭେଦସାଧ୍ୟା ବଲଦର୍ପିତା ଜନାଃ
ପରାକ୍ରମସ୍ତ୍ୱେବ ମମେହ ରୋଚତେ । ୩ ।
ନ ଚାସ୍ୟ କାର୍ଯସ୍ୟ ପରାକ୍ରମାଦୃତେ
ବିନିଶ୍ଚୟଃ କଶ୍ଚିଦିହୋପପଦ୍ୟତେ ।
ହତପ୍ରବୀରାଶ୍ଚ ରଣେ ତୁ ରାକ୍ଷସାଃ
କଥଂଚିଦୀୟୁର୍ଯଦିହାଦ୍ୟ ମାର୍ଦବମ୍ । ୪ ।

---

## ୪୧ଶ ସର୍ଗ

### ( ଅଶୋକବନଭଞ୍ଜନ )

ଅନନ୍ତର ସେହି ବାନର ହନୁମାନ୍ ସୀତାଙ୍କ କର୍ତ୍ତୃକ ମିଷ୍ଟବାକ୍ୟରେ ସମ୍ମାନିତ ହୋଇ ଗମନକରିବା ଉଦ୍ଦେଶ୍ୟରେ ସେ ସ୍ଥାନରୁ ବାହାରି ଆସି ଚିନ୍ତାକରିବାକୁ ଲାଗିଲେ ।୧। "ଏହି କୃଷ୍ଣଲୋଚନା ସୀତାଙ୍କୁ ତ ଦେଖିଲି । ଏ କାର୍ଯ୍ୟ ଆଉ ସାମାନ୍ୟ ବାକି ରହିଲା । ବର୍ତ୍ତମାନ ସାମ, ଦାନ ଓ ଭେଦ ଏହି ତିନି ଉପାୟ ଛାଡ଼ି, ଚତୁର୍ଥ ଉପାୟ ଦଣ୍ଡର ଆଶ୍ରୟ କରିବାକୁ ହେବ ଦେଖୁଛି । ୨ । ରାକ୍ଷସମାନଙ୍କ ପ୍ରତି ସାମନୀତି ପ୍ରୟୋଗ ଫଳପ୍ରଦ ହେବନାହିଁ । ଅର୍ଥସମ୍ପନ୍ନ ବ୍ୟକ୍ତିମାନଙ୍କ ପ୍ରତି ଦାନ ମଧ୍ୟ ଉପଯୁକ୍ତ ନୀତି ନୁହେ । ବଳଦର୍ପିତ ବ୍ୟକ୍ତିମାନଙ୍କୁ ଭେଦଦ୍ୱାରା ମଧ୍ୟ ସାଧି କରାଯାଇ ପାରିବ ନାହିଁ; ସୁତରାଂ ବର୍ତ୍ତମାନ ଏ କ୍ଷେତ୍ରରେ ପରାକ୍ରମ ପ୍ରଦର୍ଶନ ହିଁ ମୋ ମନକୁ ପାଉଛି । ୩ । ପରାକ୍ରମ ପ୍ରଦର୍ଶନ ବ୍ୟତୀତ ଏ କାର୍ଯ୍ୟସିଦ୍ଧିର ଅନ୍ୟ କୌଣସି ଉପାୟ ମୁଁ ଏ କ୍ଷେତ୍ରରେ ଦେଖିପାରୁ ନାହିଁ । ଯୁଦ୍ଧରେ କେତେକ ପ୍ରଧାନ ବୀର ରାକ୍ଷସ ନିହତ ହେଲେ, କେଜାଣି ଅବା ଏମାନେ ଟିକିଏ ଥଣ୍ଡା ହୋଇଯିବେ । ୪ ।

କାର୍ଯ୍ୟେ କର୍ମଣି ନିର୍ଦ୍ଦିଷ୍ଟେ ଯୋ ବହୂନ୍ୟପି ସାଧୟେତ୍ ।
ପୂର୍ବକାର୍ଯ୍ୟାବିରୋଧେନ ସ କାର୍ଯ୍ୟଂ କର୍ତ୍ତୁମର୍ହତି । ୫।
ନ ହ୍ୟେକଃ ସାଧକୋ ହେତୁଃ ସ୍ୱଳ୍ପସ୍ୟାପୀହ କର୍ମଣଃ ।
ଯୋ ହ୍ୟର୍ଥଂ ବହୁଧା ବେଦ ସ ସମର୍ଥୋଽର୍ଥସାଧନେ । ୬ ।

ଇହୈବ ତାବତ୍ କୃତନିଶ୍ଚୟୋ ହ୍ୟହମ୍
ବ୍ରଜେୟମଦ୍ୟ ପ୍ଲବଗେଶ୍ୱରାଳୟମ୍ ।
ପରାତ୍ମସଂମର୍ଦ୍ଦବିଶେଷତତ୍ତ୍ୱବିତ୍
ତତଃ କୃତଂ ସ୍ୟାନ୍ମମ ଭର୍ତ୍ତୃଶାସନମ୍ । ୭ ।
କଥଂ ନୁ ଖଲ୍ୱଦ୍ୟ ଭବେତ୍ ସୁଖାଗତମ୍
ପ୍ରସହ୍ୟ ଯୁଦ୍ଧେ ମମ ରାକ୍ଷସୈଃ ସହ ।
ତଥୈବ ଖଲ୍ୱାତ୍ମବଳଂ ଚ ସାରବତ୍
ସଂମାନୟେନ୍ମାଂ ଚ ରଣେ ଦଶାନନଃ । ୮ ।
ତତଃ ସମାସାଦ୍ୟ ରଣେ ଦଶାନନମ୍
ସମନ୍ତ୍ରିବର୍ଗଂ ସବଳଂ ସଯାୟିନମ୍ ।
ହୃଦି ସ୍ଥିତଂ ତସ୍ୟମତଂ ବଳଂ ଚ ବୈ
ସୁଖେନ ମତ୍ୱାହମିତଃ ପୁନର୍ବ୍ରଜେ । ୯ ।

---

ପ୍ରଧାନ କର୍ତ୍ତବ୍ୟ କାର୍ଯ୍ୟ ସମ୍ପାଦନ କରିବାକୁ ଯାଇ ଯେଉଁ ବ୍ୟକ୍ତି ପୂର୍ବ ନିର୍ଦ୍ଦିଷ୍ଟ କାର୍ଯ୍ୟର ବିରୋଧ ନ ହେଉଥିବାଭଳି ଆହୁରି ବିବିଧ କାର୍ଯ୍ୟ ସମ୍ପାଦନ କରିପାରେ, ସେହି ବ୍ୟକ୍ତିହିଁ କାର୍ଯ୍ୟ ସାଧନ କରିବାର ଯଥାର୍ଥ ଉପଯୁକ୍ତ ପାତ୍ର ।୫। ଯେଉଁ ବ୍ୟକ୍ତି ଅଧିକ ଯତ୍ନରେ ଅଳ୍ପମାତ୍ର କାର୍ଯ୍ୟ ସାଧନକରେ, ତାହାକୁ ପ୍ରଧାନ କାର୍ଯ୍ୟସାଧକ କୁହାଯାଇ ନ ପାରେ । ଯେଉଁ ବ୍ୟକ୍ତି ସାମାନ୍ୟ ଉଦ୍ୟମରେ ଅନେକ ପ୍ରକାରେ କାର୍ଯ୍ୟ ସାଧନ କରିପାରେ, ସେହି ବ୍ୟକ୍ତିହିଁ ପ୍ରଧାନ ସାଧକ । ୬ । ସୁତରାଂ ଏହିଠାରେ ଯଦି ମୁଁ କୃତ-ସଙ୍କଳ୍ପ ହୋଇ ଶତ୍ରୁର ବଳ ଏବଂ ନିଜର ବଳର ପ୍ରଭେଦ ବିଶେଷରୂପେ ଅବଗତ ହୋଇ ବାନରରାଜଙ୍କ ଗୃହକୁ ଫେରିବି, ତାହାହେଲେ ଯଥାର୍ଥଭାବରେ ପ୍ରଭୁଙ୍କର ଆଦେଶ ପାଳନ କରାହେବ ।୭। ଏବେ କି ଉପାୟ ଅବଲମ୍ବନ କଲେ ମୋର ଆସିବା ଶୁଭଫଳପ୍ରଦ ହେବ ? ମୁଁ ରାକ୍ଷସମାନଙ୍କ ସହିତ ଯୁଦ୍ଧରେ ନିଜ ବଳର ସାରବତ୍ତା ପ୍ରକାଶକଲେହିଁ ରାବଣ ମୋତେ ଭବିଷ୍ୟତରେ ଯୁଦ୍ଧରେ ସମ୍ମାନଦେଖାଇବ ।୮। ଭୃତ୍ୟ, ସୈନ୍ୟ ଏବଂ ମନ୍ତ୍ରିବର୍ଗଙ୍କ ସହିତ ଦଶାନନର ଯୁଦ୍ଧରେ ସମ୍ମୁଖୀନ ହେଲେହିଁ ତାହାର ମନୋଗତ ଅଭିପ୍ରାୟ ଏବଂ ବଳ ମୁଁ ଅନାୟାସରେ ଅବଗତ ହୋଇ ଏଠାରୁ

ଇଦମସ୍ୟ ନୃଶଂସସ୍ୟ ନନ୍ଦନୋପମମୁତ୍ତମମ୍ ।
ବନଂ ନେତ୍ରମନଃକାନ୍ତଂ ନାନାଦ୍ରୁମଲତାଯୁତମ୍ । ୧୦ ।
ଇଦଂ ବିଧ୍ୱଂସୟିଷ୍ୟାମି ଶୁଷ୍କଂ ବନମିବାନଲଃ ।
ଅସ୍ମିନ୍ ଭଗ୍ନେ ତତଃ କୋପଂ କରିଷ୍ୟତି ସ ରାବଣଃ । ୧୧ ।
ତତୋ ମହାନ୍ତାଶ୍ୱମହାରଥଦ୍ୱିପମ୍
ବଲଂ ସମାନେଷ୍ୟତି ରାକ୍ଷସାଧିପଃ ।
ତ୍ରିଶୂଳକାଳାୟସପଟ୍ଟିଶାୟୁଧମ୍
ତତୋ ମହଦ୍ ଯୁଦ୍ଧମିଦଂ ଭବିଷ୍ୟତି । ୧୨ ।
ଅହଂ ଚ ତୈଃ ସଂଯତି ଚଣ୍ଡବିକ୍ରମୈଃ
ସମେତ୍ୟ ରକ୍ଷୋଭିରଭଙ୍ଗବିକ୍ରମଃ ।
ନିହତ୍ୟ ତଦ୍ରାବଣଚୋଦିତଂ ବଲମ୍
ସୁଖଂ ଗମିଷ୍ୟାମି ହରୀଶ୍ୱରାଲୟମ୍ । ୧୩ ।
ତତୋ ମାରୁତବତ୍ କ୍ରୁଦ୍ଧୋ ମାରୁତିର୍ଭୀମବିକ୍ରମଃ ।
ଊରୁବେଗେନ ମହତା ଦ୍ରୁମାନ୍ କ୍ଷେପ୍ତୁମଥାରଭତ୍ । ୧୪ ।
ତତସ୍ତୁ ହନୁମାନ୍ ବୀରୋ ବଭଞ୍ଜ ପ୍ରମଦାବନମ୍ ।
ମତ୍ତଦ୍ୱିଜସମାଘୁଷ୍ଟଂ ନାନାଦ୍ରୁମଲତାଯୁତମ୍ । ୧୫ ।

---

ପ୍ରତ୍ୟାବର୍ତ୍ତନ କରିପାରିବି । ଏହି ନୃଶଂସ ରାବଣର ଏହି ଅଶୋକ ବନ ନାନା ଜାତୀୟ ବୃକ୍ଷଲତାରେ ପୂର୍ଣ୍ଣହୋଇ ନନ୍ଦନ କାନନ ସଦୃଶ ମନ ଏବଂ ନୟନର ପ୍ରୀତିକର ହୋଇଅଛି । ୧୦ । ଶୁଷ୍କ ବନକୁ ଅଗ୍ନି ଧ୍ୱଂସକଲାପରି ମୁଁ ଏହି ଅଶୋକବନକୁ ଧ୍ୱଂସ କରିଦେବି । ଏହି ବନ ଭଗ୍ନ ହୋଇଗଲେ ରାବଣ କ୍ରୁଦ୍ଧ ହେବ ।୧୧ । ଅନନ୍ତର ସେ ହସ୍ତୀ, ଅଶ୍ୱ ଓ ରଥସମାକୁଳ, ତ୍ରିଶୂଳ ଏବଂ ଲୌହପଟ୍ଟିଶଧାରୀ ବିଶାଳ ସେନାକୁ ମୋ ସହିତ ଯୁଦ୍ଧକରିବାକୁ ପଠାଇବ; ତାହାହେଲେ ଏକ ମହାଯୁଦ୍ଧ ଉପସ୍ଥିତ ହେବ ।୧୨। ମୁଁ ମଧ୍ୟ ଅସହ୍ୟ ପରାକ୍ରମ ସହିତ ସେହି ପ୍ରଚଣ୍ଡ ପରାକ୍ରମୀ ରାକ୍ଷସମାନଙ୍କ ସଙ୍ଗେ ଯୁଦ୍ଧକରି ଏବଂ ରାବଣପ୍ରେରିତ ସେହି ରାକ୍ଷସସେନାକୁ ସଂହାରକରି ସୁଖରେ ବାନରରାଜ ସୁଗ୍ରୀବଙ୍କ ଗୃହକୁ ଯିବି" । ୧୩ । ଅନନ୍ତର ଭୟଙ୍କର ପରାକ୍ରମଶାଳୀ ମାରୁତି କ୍ରୁଦ୍ଧହୋଇ ମହାବେଗରେ ବୃକ୍ଷମାନଙ୍କୁ ଉତ୍ପାଟନ କରିବାକୁ ଆରମ୍ଭ କଲେ । ୧୪ । ଅନନ୍ତର ବୀର ହନୁମାନ୍ ନାନା ଦ୍ରୁମଲତାପରିପୂର୍ଣ୍ଣ, ମତ୍ତ ଦ୍ୱିଜଗଣ-ନିନାଦିତ ସେହି ପ୍ରମଦାବନକୁ ଭାଙ୍ଗିପକାଇଲେ । ୧୫ । ସେତେବେଳେ ସେହି ବନର ବୃକ୍ଷସମୂହ ମଥିତ, ଜଳାଶୟସମୂହର ସେତୁ ଭଗ୍ନ, ବିବିଧ ପ୍ରିୟଦର୍ଶନ

ତଦ୍‌ବନଂ ମଥିତୈର୍ବୃକ୍ଷୈର୍ଭିନ୍ନୈଶ୍ଚ ସଲିଳାଶୟୈଃ
ଚୂର୍ଣ୍ଣିତୈଃ ପର୍ବତାଗ୍ରୈଶ୍ଚ ବଭୂବାପ୍ରିୟଦର୍ଶନମ୍ ‌‌।୧୬।
ନାନାଶକୁନ୍ତବିରୁତୈଃ ପ୍ରଭିନ୍ନସଲିଳାଶୟୈଃ ।
ତାମ୍ରୈଃ କିସଲୟୈଃ କ୍ଳାନ୍ତୈଃ କ୍ଳାନ୍ତଦ୍ରୁମଲତାଯୁତୈଃ ।୧୭।
ନ ବଭୌ ତଦ୍‌ବନଂ ତତ୍ର ଦାବାନଲହତଂ ଯଥା ।
ବ୍ୟାକୁଲାବରଣା ରେଜୁର୍ବିହ୍ୱଳା ଇବ ତା ଲତାଃ ।୧୮।
ଲତାଗୃହୈଶ୍ଚିତ୍ରଗୃହୈଶ୍ଚ ସାଦିତୈ-
ର୍ବ୍ୟାଳୈର୍ମୃଗୈରାର୍ତ୍ତରବୈଶ୍ଚ ପକ୍ଷିଭିଃ ।
ଶିଳାଗୃହୈରୁନ୍ମଥିତୈସ୍ତଥା ଗୃହୈଃ
ପ୍ରନଷ୍ଟରୂପଂ ତଦଭୂନ୍ମହଦ୍‌ବନମ୍ ।୧୯।
ସା ବିହ୍ୱଳାଶୋକଲତାପ୍ରତାନା
ବନସ୍ଥଳୀ ଶୋକଲତାପ୍ରତାନା ।
ଜାତା ଦଶାସ୍ୟପ୍ରମଦାବନସ୍ୟ
କପେର୍ବଲାଦ୍ଧି ପ୍ରମଦାବନସ୍ୟ ।୨୦।
ତତଃ ସ କୃତ୍ୱା ଜଗତୀପତେର୍ମହା-
ନ୍ମହଦ୍‌ବ୍ୟଳୀକଂ ମନସୋ ମହାତ୍ମନଃ ।

---

ପର୍ବତଶୃଙ୍ଗ ସକଳ ଚୂର୍ଣ୍ଣୀଭୂତ, ନାନା ଜଳଚର ପକ୍ଷିନିନାଦିତ ଜଳାଶୟସମୂହର ଜଳ ଉଚ୍ଛଳିତ ଏବଂ ତାମ୍ରବର୍ଣ୍ଣ କିଶଳୟ ତଥା ଦ୍ରୁମଲତାମାନ ମ୍ଳାନହେବାରୁ ତାହା ବନାଗ୍ନିରେ ଭସ୍ମୀଭୂତ ଅରଣ୍ୟସଦୃଶ ଶୋଭାହୀନ ହୋଇପଡ଼ିଲା । ଆବରଣ-ସମୂହ ଭଗ୍ନ ହୋଇଯିବାରୁ ଲତାଗୁଡ଼ିକ ସ୍ରସ୍ତବସନା ମଦବିହ୍ୱଳା ରମଣୀଙ୍କ ପରି ଦେଖାଗଲେ । ୧୬-୧୮। ଲତାଗୃହ, ଚିତ୍ରଗୃହସମୂହ ବିନଷ୍ଟ ହୋଇଗଲା । ହିଂସ୍ର ଜନ୍ତୁ, ମୃଗ ଏବଂ ପକ୍ଷୀମାନେ ଆର୍ତ୍ତରବ କରିବାକୁ ଲାଗିଲେ । ଶିଳାଗୃହ ଏବଂ ଅଟ୍ଟାଳିକା-ସମୂହ ଧ୍ୱସ୍ତବିଧ୍ୱସ୍ତ ହୋଇଯିବାରୁ ସେହି ବିଶାଳ ଉପବନର ଶୋଭା ଏକାବେଳକେ ନଷ୍ଟହୋଇଗଲା । ୧୯। ଅଶୋକବୃକ୍ଷ ଓ ଲତାସମୂହ ଧ୍ୱସ୍ତବିଧ୍ୱସ୍ତ ହୋଇଯିବାରୁ ସେହି ବନରେ ଶୋକର ଛାୟା ବ୍ୟାପିଗଲା । ବାନର ହନୂମାନଙ୍କର ବଳ-ପ୍ରୟୋଗହେତୁ ରାବଣର ପ୍ରମଦାବନର ଶୋଭା ଏକାବେଳକେ ନଷ୍ଟ ହୋଇଗଲା ।୨୦। ମହାକପି ହନୂମାନ୍ ମହାତ୍ମା ରାକ୍ଷସରାଜ ରାବଣର ଘୋର ଅପ୍ରିୟ କାର୍ଯ୍ୟ ସାଧନକରି, ଏକାକୀ ବହୁସଂଖ୍ୟକ ମହାବଳୀ ରାକ୍ଷସଙ୍କ ସହିତ ଯୁଦ୍ଧକରିବାକୁ ଉତ୍ସୁକ

ସୁସୁସ୍ରୁରେକୋ ବହୁଭିର୍ମହାବଳୈଃ
ଶ୍ରିତ୍ୱା ଜ୍ୱଳଂସ୍ତୋରଣମାଶ୍ରିତଃ କପିଃ । ୨୧ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତ୍‌ସହସ୍ରିକାୟାମ୍ ସଂହିତାୟାଂ ସୁନ୍ଦରକାଣ୍ଡେ ପ୍ରମଦାବନଭଞ୍ଜନଂ ନାମ ଏକଚତ୍ୱାରିଂଶଃ ସର୍ଗଃ ।

---

# ଦ୍ୱିଚତ୍ୱାରିଂଶଃ ସର୍ଗଃ

## କିଙ୍କରନିଷୂଦନମ୍

ତତଃ ପକ୍ଷିନିନାଦେନ ବୃକ୍ଷଭଙ୍ଗସ୍ୱନେନ ଚ ।
ବଭୂବୁସ୍ତ୍ରାସସଂଭ୍ରାନ୍ତାଃ ସର୍ବେ ଲଙ୍କାନିବାସିନଃ । ୧ ।
ବିଦ୍ରୁତାଶ୍ଚ ଭୟତ୍ରସ୍ତା ବିନେଦୁର୍ମୃଗପକ୍ଷିଣଃ ।
ରକ୍ଷସାଂ ଚ ନିମିତ୍ତାନି କ୍ରୂରାଣି ପ୍ରତିପେଦିରେ । ୨ ।
ତତୋ ଗତାୟାଂ ନିଦ୍ରାୟାଂ ରାକ୍ଷସ୍ୟୋ ବିକୃତାନନାଃ ।
ତଦ୍‌ବନଂ ଦଦୃଶୁର୍ଭଗ୍ନଂ ତଂ ଚ ବୀରଂ ମହାକପିମ୍ । ୩ ।

---

ହୋଇ ଏବଂ ନିଜର ସୌନ୍ଦର୍ଯ୍ୟରେ ଦେଦୀପ୍ୟମାନ ହୋଇ ତୋରଣ ଉପରେ ଯାଇ ବସିଲେ । ୨୧ ।

---

## ୪୨ଶ ସର୍ଗ

### (କିଙ୍କରଗଣସଂହାର)

ଅନନ୍ତର ପକ୍ଷୀମାନଙ୍କର କଳରବ ଏବଂ ଗଛମାନଙ୍କର ଭାଙ୍ଗିବା ଶବ୍ଦରେ ଲଙ୍କାବାସୀମାନେ ତ୍ରସ୍ତହୋଇ ଖିଚଚକିତ ହୋଇ ଉଠିଲେ । ୧। ପଶୁ, ପକ୍ଷୀମାନେ ଭୟତ୍ରସ୍ତ ହୋଇ ଦୌଡ଼ି ପଳାଇବାକୁ ଲାଗିଲେ ଏବଂ ଘୋର ଚିତ୍କାର କରିବାକୁ ଲାଗିଲେ । ରାକ୍ଷସମାନଙ୍କର ନାନାବିଧ ଅମଙ୍ଗଳ ଲକ୍ଷଣମାନ ଦେଖାଗଲା । ୨ । ଅନନ୍ତର ବିକୃତବଦନା ରାକ୍ଷସୀମାନଙ୍କର ନିଦ୍ରାଭଙ୍ଗ ହୋଇଯିବାରୁ ସେମାନେ ସେହି ବନ ଭଙ୍ଗ ହୋଇଥିବାର ଦେଖିଲେ ଏବଂ ସେହି ମହାବୀର କପିଙ୍କୁ ମଧ୍ୟ ଦେଖିଲେ ।୩।

ସ ତା ଦୃଷ୍ଟ୍ୱା ମହାବାହୁର୍ମହାସତ୍ତ୍ୱୋ ମହାବଲଃ ।
ଚକାର ସୁମହଦ୍ରୂପଂ ରାକ୍ଷସୀନାଂ ଭୟାବହମ୍ ।୪।
ତତସ୍ତୁ ଗିରିସଂକାଶମତିକାୟଂ ମହାବଲମ୍ ।
ରାକ୍ଷସ୍ୟୋ ବାନରଂ ଦୃଷ୍ଟ୍ୱା ପପ୍ରଚ୍ଛୁର୍ଜନକାତ୍ମଜାମ୍ ।୫।
କୋଽୟଂ କସ୍ୟ କୁତୋ ବାୟଂ କିଂ ନିମିତ୍ତମିହାଗତଃ ।
କଥଂ ତ୍ୱୟା ସହାନେନ ସଂବାଦଃ କୃତ ଇତ୍ୟୁତ ।୬।
ଆଚକ୍ଷ୍ୱ ନୋ ବିଶାଲାକ୍ଷି ! ମା ଭୂତ୍ତେ ସୁଭଗେ ! ଭୟମ୍ ।
ସଂବାଦମସିତାପାଙ୍ଗି ! ତ୍ୱୟା କିଂ କୃତବାନୟମ୍ ।୭।
ଅଥାବ୍ରବୀତ୍ତଦା ସାଧ୍ୱୀ ସୀତା ସର୍ବାଙ୍ଗଶୋଭନା ।
ରକ୍ଷସାଂ କାମରୂପାଣାଂ ବିଜ୍ଞାନେ କା ଗତିର୍ମମ ।୮।
ଯୂୟମେବାସ୍ୟ ଜାନୀତ ଯୋଽୟଂ ଯଦ୍ ବା କରିଷ୍ୟତି ।
ଅହିରେବ ହ୍ୟହେଃ ପାଦାନ୍ ବିଜାନାତି ନ ସଂଶୟଃ ।୯।
ଅହମପ୍ୟତଭୀତାସ୍ମି ନୈବ ଜାନାମି କୋ ହ୍ୟୟମ୍ ।
ବେଦ୍ମି ରାକ୍ଷସମେବୈନଂ କାମରୂପିଣମାଗତମ୍ ।୧୦।

---

ସେହି ମହାବଳ, ଦୀର୍ଘବାହୁ, ହନୁମାନ୍ ରାକ୍ଷସୀମାନଙ୍କୁ ଦେଖି ସେମାନଙ୍କର ଭୟ ଉତ୍ପାଦନ କରାଇବା ପାଇଁ ବିଶାଳରୂପ ଧାରଣକଲେ ।୪। ଅନନ୍ତର ସେହି ରାକ୍ଷସୀ-ମାନେ ପର୍ବତସଦୃଶ ବିଶାଳକାୟ ସେହି ମହାବଳୀ ବାନରଙ୍କୁ ଦେଖି, ସୀତାଙ୍କୁ ପଚାରିବାକୁ ଲାଗିଲେ ।୫। "ଏ କିଏ ? କାହାର ଲୋକ ? କେଉଁଠାରୁ ବା କାହିଁକି ଏଠାକୁ ଆସିଛି ? ତୁମ ସହିତ ସେ ବା କାହିଁକି କଥାବାର୍ତ୍ତା କରୁଥିଲା ? ।୬। ହେ ବିଶାଳାକ୍ଷି ! ତାହା ଆମ୍ଭମାନଙ୍କୁ କହ । ହେ ଶୁଭଗେ ! ତୁମ୍ଭର କୌଣସି ଭୟ ନାହିଁ । ହେ କୃଷ୍ଣଲୋଚନେ ! ତୁମ୍ଭ ସହିତ ଏ କି କଥାବାର୍ତ୍ତା ହେଉଥିଲା ?" ।୭। ଅନନ୍ତର ସର୍ବାଙ୍ଗସୁନ୍ଦରୀ ସାଧ୍ୱୀ ସୀତା କହିଲେ, "କାମରୂପୀ ରାକ୍ଷସମାନଙ୍କୁ ଚିହ୍ନିବାର ମୋର କି ଶକ୍ତି ଅଛି ? ।୮। ଅତଏବ ଏ କିଏ ଏବଂ କ'ଣ ବା କରିବ ତାହା ତୁମ୍ଭେମାନେହିଁ ଜାଣିପାରିବ; କାରଣ ସର୍ପ ହିଁ ସର୍ପମାନଙ୍କର ଗତି ଜାଣିପାରେ, ଏଥିରେ ସନ୍ଦେହ ନାହିଁ ।୯। ମୁଁ ମଧ୍ୟ ଏହାକୁ ଦେଖି ଭୀତହୋଇଅଛି; ମାତ୍ର ଏ କିଏ ମୁଁ ଜାଣେ ନାହିଁ । ମୁଁ କେବଳ ଏତିକି ଜାଣୁଛି ଯେ ଏ ଗୋଟିଏ ରାକ୍ଷସ; ଇଚ୍ଛାନୁଯାୟୀ ରୂପ ଧାରଣକରି ଏଠାକୁ ଆସିଅଛି" ।୧୦। ବୈଦେହୀଙ୍କର ବଚନ ଶୁଣି ରାକ୍ଷସୀମାନେ

ବୈଦେହ୍ୟା ବଚନଂ ଶ୍ରୁତ୍ୱା ରାକ୍ଷସ୍ୟୋ ବିଦ୍ରୁତା ଦ୍ରୁତମ୍ ।
ସ୍ଥିତାଃ କାଶ୍ଚିଦ୍ ଗତାଃ କାଶ୍ଚିଦ୍ରାବଣାୟ ନିବେଦିତୁମ୍ । ୧୧ ।
ରାବଣସ୍ୟ ସମୀପେ ତୁ ରାକ୍ଷସ୍ୟୋ ବିକୃତାନନାଃ ।
ବିରୂପଂ ବାନରଂ ଭୀମଂ ରାବଣାୟ ନ୍ୟବେଦୟନ୍ ॥ ୧୨ ।
ଅଶୋକବନିକାମଧ୍ୟେ ରାଜନ୍ ! ଭୀମବପୁଃ କପିଃ ।
ସୀତୟା କୃତସଂବାଦସ୍ତିଷ୍ଠତ୍ୟମିତବିକ୍ରମଃ । ୧୩ ।
ନ ଚ ତଂ ଜାନକୀ ସୀତା ହରିଂ ହରିଣଲୋଚନା ।
ଅସ୍ମାଭିର୍ବହୁଧା ପୃଷ୍ଟା ନିବେଦୟିତୁମିଚ୍ଛତି । ୧୪ ।
ବାସବସ୍ୟ ଭବେଦ୍ଦୂତୋ ଦୂତୋ ବୈଶ୍ରବଣସ୍ୟ ବା ।
ପ୍ରେଷିତୋ ବାପି ରାମେଣ ସୀତାନ୍ୱେଷଣକାଙ୍କ୍ଷୟା । ୧୫ ।
ତେନୈ ତ୍ୱାଦ୍ଭୁତରୂପେଣ ଯତ୍ତତ୍ତବ ମନୋହରମ୍ ।
ନାନାମୃଗଗଣାକୀର୍ଣ୍ଣଂ ପ୍ରମୃଷ୍ଟଂ ପ୍ରମଦାବନମ୍ । ୧୬ ।
ନ ତତ୍ର କଶ୍ଚିଦୁଦ୍ଦେଶୋ ଯସ୍ତେନ ନ ବିନାଶିତଃ ।
ଯତ୍ର ସା ଜାନକୀ ଦେବୀ ସ ତେନ ନ ବିନାଶିତଃ । ୧୭ ।

---

ଉପରେ ଏଣେ ତେଣେ ଦୌଡ଼ିଲେ । କିଏ କିଏ ବା ସେହିଠାରେ ରହିଲେ ; କିଏ କିଏ ବା ରାବଣକୁ ଖବର ଦେବାପାଇଁ ଚାଲିଗଲେ । ୧୧ । ବିକୃତ-ବଦନା ରାକ୍ଷସୀମାନେ ରାବଣ ନିକଟରେ ଉପସ୍ଥିତ ହୋଇ ସେହି ବିକଟାକାର ଭୟଙ୍କର ବାନର ବିଷୟ ନିବେଦନ କଲେ । ୧୨ । "ହେ ରାଜନ୍ ! ଅଶୋକବନ ମଧ୍ୟରେ ଏକ ଭୀମକାୟ ଅତୁଳପରାକ୍ରମୀ ବାନର ସୀତାଙ୍କ ସହିତ କଥାବାର୍ତ୍ତା କରିସାରି ବସିରହିଅଛି । ୧୩ । ଆମ୍ଭେମାନେ ମୃଗନୟନା ସୀତାଙ୍କୁ ବାରମ୍ବାର ପଚାରିଲେ ମଧ୍ୟ ସେ ତାହା ବିଷୟରେ ଆମ୍ଭମାନଙ୍କୁ କିଛି କହିବାକୁ ଇଚ୍ଛାକରୁ ନାହାନ୍ତି । ୧୪ । ସେ ଇନ୍ଦ୍ରଙ୍କର ଦୂତ ହୋଇଥିବ କି କୁବେରଙ୍କର ଦୂତ ହୋଇଥିବ କିମ୍ବା ରାମ ସୀତାଙ୍କ ଅନ୍ୱେଷଣ କରିବା ନିମନ୍ତେ ଇଚ୍ଛୁକ ହୋଇ ତାହାକୁ ପଠାଇଥିବେ । ୧୫ । ସେହି ଅଦ୍ଭୁତରୂପୀ ବାନର ତୁମ୍ଭର ନାନା ମୃଗଗଣସମାକୀର୍ଣ୍ଣ ମନୋହର ପ୍ରମଦାବନକୁ ଧ୍ୱସ୍ତବିଧ୍ୱସ୍ତ କରି ପକାଇଛି । ୧୬ । ସେହି କାନନ ମଧ୍ୟରେ ଏପରି କୌଣସି ସ୍ଥାନ ନାହିଁ, ଯାହା ସେ ବାନର ବିଧ୍ୱସ୍ତ କରି ନ ଦେଇଛି । କେବଳ ଯେଉଁ ସ୍ଥାନରେ ଦେବୀ ଜାନକୀ ରହିଛନ୍ତି, ସେହି ସ୍ଥାନକୁ ସେ ବିନଷ୍ଟ

ଜାନକୀରକ୍ଷଣାର୍ଥଂ ବା ଶ୍ରମାଦ୍ ବା ନୋପଲକ୍ଷ୍ୟତେ ।
ଅଥବା କଃ ଶ୍ରମସ୍ତସ୍ୟ ସୈବ ତେନାଭିରକ୍ଷିତା । ୧୮ ।
ଚାରୁପଲ୍ଲବପତ୍ରାଢ୍ୟଂ ଯଂ ସୀତା ସ୍ୱୟମାସ୍ଥିତା ।
ପ୍ରବୃଦ୍ଧଃ ଶିଂଶପାବୃକ୍ଷଃ ସ ଚ ତେନାଭିରକ୍ଷିତଃ । ୧୯ ।
ତସ୍ୟୋଗ୍ରରୂପସ୍ୟୋଗ୍ରଂ ତ୍ୱଂ ଦଣ୍ଡମାଜ୍ଞାତୁମର୍ହସି ।
ସୀତା ସଂଭାଷିତା ଯେନ ବନଂ ତେନ ବିନାଶିତମ୍ । ୨୦ ।
ମନଃପରିଗୃହୀତାଂ ତାଂ ତବ ରକ୍ଷୋଗଣେଶ୍ୱର !
କଃ ସୀତାମଭିଭାଷେତ ଯୋ ନ ସ୍ୟାତ୍ତ୍ୟକ୍ତଜୀବିତଃ । ୨୧ ।
ରାକ୍ଷସୀନାଂ ବଚଃ ଶ୍ରୁତ୍ୱା ରାବଣୋ ରାକ୍ଷସେଶ୍ୱରଃ ।
ଚିତାଗ୍ନିରିବ ଜଜ୍ୱାଲ କୋପସଂବର୍ତ୍ତିତେକ୍ଷଣଃ । ୨୨ ।
ତସ୍ୟ କ୍ରୁଦ୍ଧସ୍ୟ ନେତ୍ରାଭ୍ୟାଂ ପ୍ରାପତନ୍ନଶ୍ରୁବିନ୍ଦବଃ ।
ଦୀପ୍ତାଭ୍ୟାମିବ ଦୀପାଭ୍ୟାଂ ସାର୍ଚ୍ଚିଷଃ ସ୍ନେହବିନ୍ଦବଃ । ୨୩ ।
ଆତ୍ମନଃ ସଦୃଶାନ୍ ବୀରାନ୍ କିଙ୍କରାନ୍ନାମ ରାକ୍ଷସାନ୍ ।
ବ୍ୟାଦିଦେଶ ମହାତେଜା ନିଗ୍ରହାର୍ଥଂ ହନୂମତଃ । ୨୪ ।

---

କରିନାହାଁନ୍ତି ।୧୭। ସୀତାଙ୍କର ରକ୍ଷାନିମନ୍ତେ କିମ୍ବା ନିଜର ଶ୍ରମକ୍ଳାନ୍ତିହେତୁରୁ ସେ ସେ ସ୍ଥାନ ନ ଭାଙ୍ଗିଛନ୍ତି ତାହା ଜଣାଯାଉନାହିଁ, ଅଥବା ତାହାର ଶ୍ରମକ୍ଳାନ୍ତି ସମ୍ଭବ ନୁହେ । ବସ୍ତୁତଃ ସୀତାଙ୍କୁ ସେ ରକ୍ଷା କରିଅଛି ।୧୮। ସୀତା ନିଜେ ଯେଉଁ ମନୋହର ପଲ୍ଲବ ଏବଂ ପତ୍ରଦ୍ୱାରା ସୁଶୋଭିତ ବିଶାଳ ଶିଂଶପାବୃକ୍ଷକୁ ଆଶ୍ରୟ କରି ରହିଛନ୍ତି, ସେ କେବଳ ସେହି ବୃକ୍ଷକୁହିଁ ରକ୍ଷା କରିଅଛି । ୧୯ । ସୁତରାଂ ଯେଉଁ ଉଗ୍ରମୂର୍ତ୍ତି ବାନର ସୀତାଙ୍କ ସହିତ ସମ୍ଭାଷଣ କରିଅଛି ଏବଂ ସେହି ବନକୁ ଭାଙ୍ଗିପକାଇଅଛି, ତୁମ୍ଭେ ତାହାପ୍ରତି କଠୋର ଦଣ୍ଡ ଆଜ୍ଞା କରିବା ଉଚିତ । ୨୦ । ହେ ରାକ୍ଷସେଶ୍ୱର ! ତୁମ୍ଭେ ମନରେ ଯେଉଁ ସୀତାଙ୍କୁ ପରିଗ୍ରହ କରିଅଛ, ପ୍ରାଣର ଆଶା ନ ଛାଡ଼ିଥିଲେ କେଉଁ ବ୍ୟକ୍ତି ସେ ସୀତାଙ୍କ ସହିତ କଥାବାର୍ତ୍ତା କରିବାକୁ ସାହସ କରନ୍ତା ?" । ୨୧। ରାକ୍ଷସୀମାନଙ୍କ କଥା ଶୁଣି ରାକ୍ଷସରାଜ ରାବଣ କ୍ରୋଧରେ ଚକ୍ଷୁଦ୍ୱୟ ଘୂର୍ଣ୍ଣିତ କରି ଆହୁତି ନିକ୍ଷେପ କରାଯାଇଥିବା ଅଗ୍ନିସଦୃଶ ଜଳି ଉଠିଲା । ୨୨ । ଦୁଇଟି ଜଳୁଥିବା ଦୀପର ବଳିତାରୁ ଅଗ୍ନିଶିଖା ସମନ୍ୱିତ ତୈଳବିନ୍ଦୁମାନ ଗଡ଼ିପଡ଼ିଲାପରି, କ୍ରୁଦ୍ଧ ରାବଣର ଚକ୍ଷୁଦ୍ୱୟରୁ ଅଶ୍ରୁବିନ୍ଦୁମାନ ଗଡ଼ିବାକୁ ଲାଗିଲା । ୨୩। ମହାତେଜା ରାବଣ ଆତ୍ମସଦୃଶ ପରାକ୍ରମଶାଳୀ ବୀର ଭୃତ୍ୟମାନଙ୍କୁ ହନୁମାନ ପ୍ରତି ଦଣ୍ଡବିଧାନ କରିବାପାଇଁ ଆଦେଶ

ତେଷାମଶୀତିସାହସ୍ରଂ କିଙ୍କରାଣାଂ ତରସ୍ୱିନାମ୍ ।
ନିର୍ୟୟୁର୍ଭବନାତ୍ତସ୍ମାତ୍ କୂଟମୁଦ୍‌ଗରପାଣୟଃ । ୨୫ ।
ମହୋଦରା ମହାଦଂଷ୍ଟ୍ରା ଘୋରରୂପା ମହାବଳାଃ ।
ଯୁଦ୍ଧାଭିମନସଃ ସର୍ବେ ହନୂମଦ୍‌ଗ୍ରହଣୋନ୍ମୁଖାଃ । ୨୬ ।
ତେ କପିଂ ତଂ ସମାସାଦ୍ୟ ତୋରଣସ୍ଥମବସ୍ଥିତମ୍ ।
ଅଭିପେତୁର୍ମହାବେଗାଃ ପତଙ୍ଗା ଇବ ପାବକମ୍ । ୨୭ ।
ତେ ଗଦାଭିର୍ବିଚିତ୍ରାଭିଃ ପରିଘୈଃ କାଞ୍ଚନାଙ୍ଗଦୈଃ ।
ଆଜଘ୍ନୁର୍ବାନରଶ୍ରେଷ୍ଠଂ ଶରୈରାଦିତ୍ୟସନ୍ନିଭୈଃ । ୨୮ ।
ମୁଦ୍‌ଗରୈଃ ପଟ୍ଟିଶୈଃ ଶୂଳୈଃ ପ୍ରାସତୋମରପାଣୟଃ ।
ପରିବାର୍ୟ ହନୂମନ୍ତଂ ସହସା ତସ୍ଥୁରଗ୍ରତଃ । ୨୯ ।
ହନୂମାନପି ତେଜସ୍ୱୀ ଶ୍ରୀମାନ୍ ପର୍ବତସନ୍ନିଭଃ ।
କ୍ଷିତାବାବଧ୍ୟ ଲାଙ୍ଗୂଲଂ ନନାଦ ଚ ମହାଧ୍ୱନିମ୍ । ୩୦ ।
ସ ଭୂତ୍ୱା ତୁ ମହାକାୟୋ ହନୂମାନ୍ମାରୁତାତ୍ମଜଃ ।
ପୁଚ୍ଛମାସ୍ଫୋଟୟାମାସ ଲଙ୍କାଂ ଶବ୍ଦେନ ପୂରୟନ୍ । ୩୧ ।

---

ଦେଲେ । ୨୪ । ସେମାନଙ୍କ ମଧ୍ୟରୁ ଅଶୀସହସ୍ର ବେଗବାନ୍ କିଙ୍କର କୂଟ, ମୁଦ୍‌ଗର ପ୍ରଭୃତି ଅସ୍ତ୍ର ହାତରେ ଧରି ସେହି ଘରଭିତରୁ ବାହାରିପଡ଼ିଲେ ।୨୫। ସେ ସମସ୍ତଙ୍କର ଉଦର ପ୍ରକାଣ୍ଡ, ଦନ୍ତ ବୃହତ୍, ସମସ୍ତେ ଦେଖିବାକୁ ଭୟଙ୍କର ଏବଂ ମହାବଳଶାଳୀ। ସେମାନେ ସମସ୍ତେ ହନୁମାନଙ୍କୁ ଧରିବାପାଇଁ ଯୁଦ୍ଧକରିବା ନିମନ୍ତେ ଉଦ୍‌ବିଗ୍ନ ହୋଇଥିଲେ । ୨୬ । ସେମାନେ ତୋରଣ ଉପରେ ବସିଥିବା ସେହି ବାନର ନିକଟରେ ପହଞ୍ଚି, ଅଗ୍ନି ଆଡ଼କୁ ପତଙ୍ଗ ଦୌଡ଼ିଲାପରି, ତାହା ଆଡ଼କୁ ପ୍ରଧାବିତ ହେଲେ । ୨୭ । ସେମାନେ ବିଚିତ୍ର ଗଦା, କାଞ୍ଚନବଳୟଯୁକ୍ତ ପରିଘ ଏବଂ ସୂର୍ଯ୍ୟସଦୃଶ ଦୀପ୍ତିମାନ୍ ଶରରାଜିଦ୍ୱାରା ସେହି କପିବରଙ୍କୁ ପ୍ରହାର କରିବାକୁ ଲାଗିଲେ । ୨୮ । ସେମାନେ ମୁଦ୍‌ଗର, ପଟ୍ଟିଶ, ଶୂଳ, ପ୍ରାସ, ତୋମର ଓ ଶକ୍ତିମାନ ହାତରେ ଧରି ତତ୍‌କ୍ଷଣାତ୍ ହନୁମାନଙ୍କୁ ବେଢ଼ିଯାଇ ତାଙ୍କ ଆଗରେ ଠିଆହୋଇ ରହିଲେ । ୨୯ । ପର୍ବତସଦୃଶ ତେଜସ୍ୱୀ ଶ୍ରୀମାନ୍ ହନୁମାନ୍ ଭୂତଳରେ ଲାଙ୍ଗୁଳକୁ ପ୍ରହାରକରି ଗମ୍ଭୀରସ୍ୱରରେ ହୁଙ୍କାର କରିବାକୁ ଲାଗିଲେ । ୩୦ । ପବନନନ୍ଦନ ହନୁମାନ୍ ଅତି ବିରାଟକାୟ ଧାରଣକରି ଓ ଶବ୍ଦରେ ଲଙ୍କାକୁ ପ୍ରତିଧ୍ୱନିତକରି ଲାଙ୍ଗୁଳ ପ୍ରହାର କରିବାକୁ ଲାଗିଲେ । ୩୧ । ତାହାଙ୍କର ସେହି ଘୋରନାଦ ଏବଂ ଲାଙ୍ଗୁଳର

ତସ୍ୟାସ୍ଫୋଟିତଶବ୍ଦେନ ମହତା ଽଽନୁନାଦିନା ।
ପେତୁର୍ବିହଙ୍ଗା ଗଗନାଦୁଚ୍ଚୈଶ୍ଚେଦମଘୋଷୟତ୍ । ୩୨ ।
ଜୟତ୍ୟତିବଲୋ ରାମୋ ଲକ୍ଷ୍ମଣଶ୍ଚ ମହାବଲଃ ।
ରାଜା ଜୟତି ସୁଗ୍ରୀବୋ ରାଘବେଣାଭିପାଳିତଃ । ୩୩ ।
ଦାସୋଽହଂ କୋଶଲେନ୍ଦ୍ରସ୍ୟ ରାମସ୍ୟାକ୍ଲିଷ୍ଟକର୍ମଣଃ ।
ହନୁମାନ୍ ଶତ୍ରୁସୈନ୍ୟାନାଂ ନିହନ୍ତା ମାରୁତାତ୍ମଜଃ । ୩୪ ।
ନ ରାବଣସହସ୍ରଂ ମେ ଯୁଦ୍ଧେ ପ୍ରତିବଲଂ ଭବେତ୍ ।
ଶିଳାଭିଶ୍ଚ ପ୍ରହରତଃ ପାଦପୈଶ୍ଚ ସହସ୍ରଶଃ । ୩୫ ।
ଅର୍ଦ୍ଦୟିତ୍ୱା ପୁରୀଂ ଲଙ୍କାମଭିବାଦ୍ୟ ଚ ମୈଥିଲୀମ୍ ।
ସମୃଦ୍ଧାର୍ଥୋ ଗମିଷ୍ୟାମି ମିଷତାଂ ସର୍ବରକ୍ଷସାମ୍ । ୩୬ ।
ତସ୍ୟ ସଂନାଦଶବ୍ଦେନ ତେଽଭବନ୍ ଭୟଶଙ୍କିତାଃ ।
ଦଦୃଶୁଶ୍ଚ ହନୂମନ୍ତଂ ସନ୍ଧ୍ୟାମେଘମିବୋନ୍ନତମ୍ । ୩୭ ।
ସ୍ୱାମିସନ୍ଦେଶନିଃଶଙ୍କାସ୍ତତସ୍ତେ ରାକ୍ଷସାଃ କପିମ୍ ।
ଚିତ୍ରୈଃ ପ୍ରହରଣୈର୍ଭୀମୈରଭିପେତୁସ୍ତତସ୍ତତଃ । ୩୮ ।

---

ଆସ୍ଫୋଟନ ଶବ୍ଦଦ୍ୱାରା ପକ୍ଷୀମାନେ ଆକାଶରୁ ଖସିପଡ଼ିବାକୁ ଲାଗିଲେ । ସେ ଉଚ୍ଚୈଃସ୍ୱରରେ ଘୋଷଣାକଲେ । ୩୨ । "ଅତିବଳୀ ରାମଙ୍କର ଜୟ, ମହାବଳୀ ଲକ୍ଷ୍ମଣଙ୍କର ଜୟ, ରାଘବପାଳିତ ରାଜା ସୁଗ୍ରୀବଙ୍କର ଜୟ ।୩୩। ମୁଁ ଅପ୍ରତିହତକର୍ମା କୋଶଳାଧିପତି ରାମଙ୍କର ଦାସ । ମୋର ନାମ ହନୂମାନ୍ । ମୁଁ ପବନଙ୍କର ପୁତ୍ର ଏବଂ ଶତ୍ରୁସୈନ୍ୟମାନଙ୍କର ସଂହାରକାରୀ । ୩୪ । ମୁଁ ଯୁଦ୍ଧରେ ସହସ୍ର ସହସ୍ର ଶିଳା ଏବଂ ବୃକ୍ଷଦ୍ୱାରା ପ୍ରହାର କରୁଥିବାବେଳେ ସହସ୍ରେ ରାବଣ ମଧ୍ୟ ମୋ ସହିତ ଯୁଦ୍ଧରେ ସମକକ୍ଷ ହୋଇପାରିବେ ନାହିଁ । ୩୫ । ରାକ୍ଷସମାନେ ସମସ୍ତେ ଜଳ ଜଳ କରି ଚାହିଁଥିବେ, ମୁଁ ଏ ଲଙ୍କାପୁରୀକୁ ଦଳି ପେଷିଦେଇ ଜାନକୀଙ୍କୁ ଅଭିବାଦନକରି ସଫଳ-କାମ ହୋଇ ଚାଲିଯିବି" । ୩୬ । ତାହାଙ୍କର ମହାନାଦ ଶୁଣି ସେହି ରାକ୍ଷସମାନେ ଭୟଭୀତ ହୋଇପଡ଼ିଲେ ଏବଂ ହନୁମାନଙ୍କୁ ସନ୍ଧ୍ୟାକାଳୀନ ମେଘସଦୃଶ ବିଶାଳକାୟ ଦେଖିଲେ । ୩୭ । କିନ୍ତୁ ପ୍ରଭୁଙ୍କର ଆଦେଶହେତୁ ସେହି ରାକ୍ଷସମାନେ ନିଃଶଙ୍କହୋଇ ନାନାବିଧ ଭୀଷଣ ଅସ୍ତ୍ରଧାରଣପୂର୍ବକ ଚାରିଆଡ଼ୁ ସେହି ବାନରଙ୍କୁ ଆକ୍ରମଣ କଲେ । ୩୮ । ବୀର ରାକ୍ଷସମାନଙ୍କ ଦ୍ୱାରା ଚତୁର୍ଦ୍ଦିଗରେ ପରିବେଷ୍ଟିତ ହୋଇ

ସ ତୈଃ ପରିବୃତଃ ଶୂରୈଃ ସର୍ବତଃ ସ ମହାବଳଃ ।
ଆସସାଦାୟସଂ ଭୀମଂ ପରିଘଂ ତୋରଣାଶ୍ରିତମ । ୩୯ ।
ସ ତଂ ପରିଘମାଦାୟ ଜଘାନ ରଜନୀଚରାନ ।
ସ ପନ୍ନଗମ ବାଦାୟ ସ୍ଫୁରନ୍ତଂ ବିନତାସୁତଃ । ୪୦ ।
ବିଚଚାରାମ୍ବରେ ବୀରଃ ପରିଗୃହ୍ୟ ଚ ମାରୁତଃ ।
ସୂଦୟାମାସ ବଜ୍ରେଣ ଦୈତ୍ୟାନିବ ସହସ୍ରଦୃକ୍ । ୪୧ ।
ସ ହତ୍ୱା ରାକ୍ଷସାନ୍ ବୀରଃ କିଙ୍କରାନ୍ମାରୁତାତ୍ମଜଃ ।
ଯୁଦ୍ଧକାଂକ୍ଷୀ ମହାବୀରସ୍ତୋରଣଂ ସମବସ୍ଥିତଃ । ୪୨ ।
ତତସ୍ତସ୍ମାଦ୍ଭୟାନ୍ମୁକ୍ତାଃ କତିଚିତ୍ତତ୍ର ରାକ୍ଷସାଃ ।
ନିହତାନ୍ କିଙ୍କରାନ୍ ସର୍ବାନ୍ରାବଣାୟ ନ୍ୟବେଦୟନ୍ । ୪୩ ।
ସ ରାକ୍ଷସାନାଂ ନିହତଂ ମହାବଲମ୍
ନିଶମ୍ୟ ରାଜା ପରିବୃତ୍ତଲୋଚନଃ ।
ସମାଦିଦେଶାପ୍ରତିମଂ ପରାକ୍ରମେ
ପ୍ରହସ୍ତପୁତ୍ରଂ ସମରେ ସୁଦୁର୍ଜୟମ୍ । ୪୪ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ସୁନ୍ଦରକାଣ୍ଡେ କିଙ୍କରନିଷୂଦନଂ ନାମ ଦ୍ୱିଚତ୍ୱାରିଂଶଃ ସର୍ଗଃ

---

ମହାବଳୀ ହନୁମାନ୍ ତୋରଣ ଦେହରେ ଲାଗିଥିବା ଗୋଟିଏ ଲୌହମୟ ଭୀଷଣ ପରିଘ ଧଇଲେ । ୩୯ । ବିନତାନନ୍ଦନ ଗରୁଡ଼ ସ୍ଫୁରିମାନ ସର୍ପକୁ ଧରିଲାପରି ସେ ସେହି ପରିଘକୁ ଧରି ନିଶାଚରମାନଙ୍କୁ ସଂହାର କରିବାକୁ ଲାଗିଲେ । ୪୦ । ପବନନନ୍ଦନ ବୀର ହନୁମାନ୍ ସେହି ପରିଘକୁ ଧରି ଆକାଶମାର୍ଗରେ ବିଚରଣପୂର୍ବକ, ସହସ୍ରଲୋଚନ ଇନ୍ଦ୍ର ବଜ୍ରଦ୍ୱାରା ଦୈତ୍ୟମାନଙ୍କୁ ସଂହାର କଲାପରି, ସେହି ନିଶାଚରମାନଙ୍କୁ ସଂହାରକଲେ । ୪୧ । ପବନନନ୍ଦନ ସେହି ବୀର କିଙ୍କର ରାକ୍ଷସମାନଙ୍କୁ ହତ୍ୟାକରି ଯୁଦ୍ଧକରିବା ପାଇଁ ଅଭିଳାଷୀ ହୋଇ ପୁଣି ତୋରଣ ଉପରେ ଯାଇ ବସିଲେ । ୪୨ । ଅନନ୍ତର ସେହି ଭୟସ୍ଥାନରୁ ପଳାଇଯାଇ କେତେଜଣ ରାକ୍ଷସ, କିଙ୍କରମାନେ ସମସ୍ତେ ନିହତ ହୋଇଥିବା କଥା ରାବଣକୁ ଜଣାଇଲେ । ୪୩ । ବିଶାଳ ରାକ୍ଷସସେନା ନିହତ ହୋଇଥିବାର ଶୁଣି ରାକ୍ଷସରାଜ ରାବଣର ଚକ୍ଷୁ ଘୂର୍ଣ୍ଣିତ ହେବାକୁ ଲାଗିଲା । ସେ ଯୁଦ୍ଧରେ ଦୁର୍ଜ୍ଜୟ ଓ ପରାକ୍ରମରେ ଅତୁଳନୀୟ ପ୍ରହସ୍ତପୁତ୍ରକୁ ଯୁଦ୍ଧକରିବାପାଇଁ ଆଦେଶ ଦେଲା । ୪୪ ।

---

# ତ୍ରିଚତ୍ୱାରିଂଶଃ ସର୍ଗଃ

## ଚୈତ୍ୟପ୍ରାସାଦଦାହଃ

ତତଃ ସ କିଙ୍କରାନ୍ ହତ୍ୱା ହନୂମାନ୍ଧ୍ୟାନମାସ୍ଥିତଃ ।
ବନଂ ଭଗ୍ନଂ ମୟା ଚୈତ୍ୟପ୍ରାସାଦୋ ନ ବିନାଶିତଃ । ୧ ।
ତସ୍ମାତ୍ ପ୍ରାସାଦମପ୍ୟେବମିମଂ ବିଧ୍ୱଂସୟାମ୍ୟହମ୍ ।
ଇତି ସଂଚିନ୍ତ୍ୟ ହନୂମାନ୍ମନସା ଦର୍ଶୟନ୍ ବଲମ୍ । ୨ ।
ଚୈତ୍ୟପ୍ରାସାଦମୁତ୍ପ୍ଲୁତ୍ୟ ମେରୁଶୃଙ୍ଗମିବୋନ୍ନତମ୍ ।
ଆରୁରୋହ ହରିଶ୍ରେଷ୍ଠୋ ହନୂମାନ୍ମାରୁତାତ୍ମଜଃ । ୩ ।
ଆରୁହ୍ୟ ଗିରିସଂକାଶଂ ପ୍ରାସାଦଂ ହରିୟୂଥପଃ ।
ବଭୌ ସ ସୁମହାତେଜାଃ ପ୍ରତିସୂର୍ଯ୍ୟ ଇବୋଦିତଃ । ୪ ।
ସଂପ୍ରଧୃଷ୍ୟ ତୁ ଦୁର୍ଧର୍ଷଂ ଚୈତ୍ୟପ୍ରାସାଦମୁନ୍ନତମ୍ ।
ହନୂମାନ୍ ପ୍ରଜ୍ୱଲଁଲ୍ଲକ୍ଷ୍ମ୍ୟା ପାରିଯାତ୍ରୋପମୋଽଭବତ୍ ।୫ ।
ସ ଭୂତ୍ୱା ସୁମହାକାୟଃ ପ୍ରଭାବାନ୍ମାରୁତାତ୍ମଜଃ ।
ଧୃଷ୍ଟମାସ୍ଫୋଟୟାମାସ ଲଙ୍କାଂ ଶବ୍ଦେନ ପୂରୟନ୍ । ୬ ।

---

## ୪୩ଶ ସର୍ଗ

( ମନ୍ଦିରପ୍ରାସାଦଦହନ )

ଅନନ୍ତର ହନୂମାନ୍ ସେହି କିଙ୍କରମାନଙ୍କୁ ସଂହାର କରିସାରି ମନେ ମନେ ଭାବିଲେ, "ମୁଁ ବନକୁ ଭାଙ୍ଗିଦେଲି; କିନ୍ତୁ ସେମାନଙ୍କ ମନ୍ଦିର ପ୍ରାସାଦକୁ ତ ଧ୍ୱଂସ କରିନାହିଁ ? ।୧।ଅତଏବ ଏହିଦେବପ୍ରାସାଦକୁ ମୁଁ ଆଜି ଧ୍ୱଂସକରିଦେବି"। ବାନରଶ୍ରେଷ୍ଠ ପବନନନ୍ଦନ ହନୂମାନ୍ ମନେ ମନେ ଏହି ପ୍ରକାର ଚିନ୍ତାକରି ବଳପ୍ରଦର୍ଶନପୂର୍ବକ ଡେଇଁଯାଇ ମେରୁଶୃଙ୍ଗସଦୃଶ ଉନ୍ନତ ଦେବପ୍ରାସାଦରେ ଆରୋହଣକଲେ । ୨-୩ । ବାନରଦଳପତି ମହାତେଜା ହନୂମାନ୍ ପର୍ବତସଦୃଶ ସେହି ପ୍ରାସାଦରେ ଆରୋହଣ କରି ଦ୍ୱିତୀୟ ସୂର୍ଯ୍ୟ ଉଦିତ ହେଲପରି ଶୋଭାପାଇଲେ । ୪। ଅନନ୍ତର ହନୂମାନ୍ ସେହି ଦୁର୍ଦ୍ଧର୍ଷ ମନୋହର ଦେବପ୍ରାସାଦକୁ ସମ୍ପୂର୍ଣ୍ଣରୂପେ ଭାଙ୍ଗିଦେଇ ନିଜର ସୌନ୍ଦର୍ଯ୍ୟରେ ପ୍ରଜ୍ୱଳିତ ହୋଇ ପାରିଯାତ୍ର ପର୍ବତସଦୃଶ ଦେଖାଗଲେ । ୫ । ପବନନନ୍ଦନ ନିଜ ପ୍ରଭାବରେ ଅତି ବିଶାଳକାୟ ହୋଇ ନିଜର ଶବ୍ଦଦ୍ୱାରା ଲଙ୍କାକୁ ପରିପୂର୍ଣ୍ଣ କରିଦେଇ ଦୃପ୍ତଭାବରେ ଆସ୍ଫାଳନ କରିବାକୁ ଲାଗିଲେ । ୬ । କାନକୁ

ତସ୍ୟାସ୍ଫୋଟିତଶବ୍ଦେନ ମହତା ଶ୍ରୋତ୍ରଘାତିନା ।
ପେତୁର୍ବିହଙ୍ଗମାସ୍ତତ୍ର ଚୈତ୍ୟପାଲାଶ୍ଚ ମୋହିତାଃ । ୭ ।
ଜୟତ୍ୟତିବଲୋ ରାମୋ ଲକ୍ଷ୍ମଣଶ୍ଚ ମହାବଲଃ ।
ରାଜା ଜୟତି ସୁଗ୍ରୀବୋ ରାଘବେଣାଭିପାଳିତଃ । ୮ ।
ଦାସୋଽହଂ କୋଶଲେନ୍ଦ୍ରସ୍ୟ ରାମସ୍ୟାକ୍ଲିଷ୍ଟକର୍ମଣଃ ।
ହନୂମାନ୍ ଶତ୍ରୁସୈନ୍ୟାନାଂ ନିହନ୍ତା ମାରୁତାତ୍ମଜଃ । ୯ ।
ନ ରାବଣସହସ୍ରଂ ମେ ଯୁଦ୍ଧେ ପ୍ରତିବଲଂ ଭବେତ୍ ।
ଶିଳାଭିଶ୍ଚ ପ୍ରହରତଃ ପାଦପୈଶ୍ଚ ସହସ୍ରଶଃ । ୧୦ ।
ଧର୍ଷୟିତ୍ୱା ପୁରୀଂ ଲଙ୍କାମଭିବାଦ୍ୟ ଚ ମୈଥିଳୀମ୍ ।
ସମୃଦ୍ଧାର୍ଥୋ ଗମିଷ୍ୟାମି ମିଷତାଂ ସର୍ବରକ୍ଷସାମ୍ । ୧୧ ।
ଏବମୁକ୍ତ୍ୱା ମହାବାହୁଶ୍ଚୈତ୍ୟସ୍ଥୋ ହରିଯୂଥପଃ ।
ନନାଦ ଭୀମନିର୍ହ୍ରାଦୋ ରକ୍ଷସାଂ ଜନୟନ୍ ଭୟମ୍ । ୧୨ ।
ତେନ ନାଦେନ ମହତା ଚୈତ୍ୟପାଲାଃ ଶତଂ ଯଯୁଃ ।
ଗୃହୀତ୍ୱା ବିବିଧାନସ୍ତ୍ରାନ୍ ପ୍ରାସାନ୍ ଖଡ୍‌ଗାନ୍ ପରଶ୍ୱଧାନ୍ । ୧୩ ।

---

ବଧିର କରିଦେଉଥିବା ତାହାଙ୍କର ସେହି ଘୋର ଆସ୍ଫୋଟନ ଶବ୍ଦରେ ପକ୍ଷୀମାନେ ଏବଂ ଦେବପ୍ରାସାଦରକ୍ଷକ ରାକ୍ଷସମାନେ ମୂର୍ଚ୍ଛିତହୋଇ ପଡ଼ିଗଲେ । ୭ । "ଅତିବଳ ରାମଙ୍କର ଜୟ ହେଉ । ମହାବଳୀ ଲକ୍ଷ୍ମଣଙ୍କର ଜୟ ହେଉ । ରାମଙ୍କ କର୍ତ୍ତୃକ ପ୍ରତିପାଳିତ ରାଜା ସୁଗ୍ରୀବଙ୍କର ଜୟ ହେଉ । ୮ । ମୁଁ ଅପ୍ରତିହତକର୍ମା, କୋଶଳାଧିପତି ରାମଙ୍କର ଦାସ ଅଟେ । ମୁଁ ପବନନନ୍ଦନ ହନୂମାନ୍ ଏବଂ ଶତ୍ରୁସୈନ୍ୟମାନଙ୍କର ନିହନ୍ତା ଅଟେ । ୯ । ମୁଁ ସହସ୍ର ସହସ୍ର ପାଦପ ଏବଂ ଶିଳା ପ୍ରହାରକଲାବେଳେ ସହସ୍ରେ ରାବଣ ମଧ୍ୟ ଯୁଦ୍ଧରେ ମୋର ସମକକ୍ଷ ହୋଇ ପାରିବେ ନାହିଁ । ୧୦ । ରାକ୍ଷସମାନେ ସବୁ ଚାହିଁଥିବେ, ମୁଁ ଏହି ଲଙ୍କାପୁରୀକୁ ଧ୍ୱସ୍ତ କରି ଏବଂ ଜାନକୀଙ୍କୁ ଅଭିବାଦନ କରି ସଫଳକାମ ହୋଇ ଚାଲିଯିବି" । ୧୧ । ଏହା କହି ମହାବାହୁ ବାନର ଦଳପତି ହନୁମାନ୍ ସେହି ପ୍ରାସାଦ ଉପରେ ବସି ରାକ୍ଷସମାନଙ୍କ ମନରେ ଭୟ ଜାତକରାଇ ଭୀଷଣ ହୁଙ୍କାର ନାଦରେ ଗର୍ଜ୍ଜନ କରିବାକୁ ଲାଗିଲେ । ୧୨ । ସେହି ଭୟଙ୍କର ଶବ୍ଦ ଶୁଣି ଶତ ଶତ ମନ୍ଦିରରକ୍ଷକ ରାକ୍ଷସ ନାନାବିଧ ଅସ୍ତ୍ର, ପ୍ରାସ, ଖଡ୍‌ଗ ଓ ପରଶୁ ଗ୍ରହଣକରି ସମାଗତ ହେଲେ । ୧୩ । ସେହି ମହାକାୟ

ବପୃକନ୍ତୋ ମହାକାୟା ମାରୁତିଂ ପର୍ଯ୍ୟବାରୟନ୍ ।
ତେ ଗଦାଭିର୍ବିଚିତ୍ରାଭିଃ ପରିଘୈଃ କାଞ୍ଚନାଙ୍ଗଦୈଃ । ୧୪ ।
ଆଜଘ୍ନୁର୍ବାନରଶ୍ରେଷ୍ଠଂ ବାଣୈଶ୍ଚାଦିତ୍ୟସନ୍ନିଭୈଃ ।
ଆବର୍ତ୍ତ ଇବ ଗଙ୍ଗାୟାସ୍ତୋୟସ୍ୟ ବିପୁଲୋ ମହାନ୍ । ୧୫ ।
ପରିକ୍ଷିପ୍ୟ ହରିଶ୍ରେଷ୍ଠଂ ସ ବଭୌ ରକ୍ଷସାଂ ଗଣଃ ।
ତତୋ ବାତାତ୍ମଜଃ କ୍ରୁଦ୍ଧୋ ଭୀମରୂପଂ ସମାସ୍ଥିତଃ । ୧୬ ।
ପ୍ରାସାଦସ୍ୟ ମହାଂସ୍ତସ୍ୟ ସ୍ତମ୍ଭଂ ହେମପରିଷ୍କୃତମ୍ ।
ଉତ୍ପାଟୟିତ୍ୱା ବେଗେନ ହନୂମାନ୍ମାରୁତାତ୍ମଜଃ । ୧୭ ।
ତତସ୍ତଂ ଭ୍ରାମୟାମାସ ଶତଧାରଂ ମହାବଳଃ ।
ତତ୍ର ଚାଗ୍ନିଃ ସମଭବତ୍ ପ୍ରାସାଦଶ୍ଚାପ୍ୟଦହ୍ୟତ । ୧୮ ।
ଦହ୍ୟମାନଂ ତତୋ ଦୃଷ୍ଟ୍ୱା ପ୍ରାସାଦଂ ହରିଯୂଥପଃ ।
ସ ରାକ୍ଷସଶତଂ ହତ୍ୱା ବଜ୍ରେଣେନ୍ଦ୍ର ଇବାସୁରାନ୍ । ୧୯ ।
ଅନ୍ତରିକ୍ଷସ୍ଥିତଃ ଶ୍ରୀମାନିଦଂ ବଚନମବ୍ରବୀତ୍ ।
ମାଦୃଶାନାଂ ସହସ୍ରାଣି ବିସୃଷ୍ଟାନି ମହାତ୍ମନାମ୍ । ୨୦ ।
ବଳିନାଂ ବାନରେନ୍ଦ୍ରାଣାଂ ସୁଗ୍ରୀବବଶବର୍ତ୍ତିନାମ୍ ।
ଅଟନ୍ତି ବସୁଧାଂ କୃତ୍ସ୍ନାଂ ବୟମନ୍ୟେ ଚ ବାନରାଃ ।୨୧ ।

---

ରାକ୍ଷସମାନେ ଏହିସବୁ ସମସ୍ତ ଅସ୍ତ୍ର ନିକ୍ଷେପକରି ମାରୁତିନନ୍ଦନ ହନୁମାନଙ୍କୁ ଘେରିଆଡ଼ୁ ବେଢ଼ିଗଲେ ଏବଂ ବିଚିତ୍ର ଗଦା, ସୁବର୍ଣ୍ଣ ବଳୟବେଷ୍ଟିତ ପରିଘ ଏବଂ ସୂର୍ଯ୍ୟ-ସଦୃଶ ପ୍ରଭାଶାଳୀ ଶରମାନଙ୍କଦ୍ୱାରା ସେହି କପିଶ୍ରେଷ୍ଠଙ୍କୁ ପ୍ରହାର କରିବାକୁ ଲାଗିଲେ । ସେତେବେଳେ ସେହି ବିଶାଳ ରାକ୍ଷସଗୋଷ୍ଠୀ ବାନରଶ୍ରେଷ୍ଠ ହନୁମାନଙ୍କୁ ବେଢ଼ିଯାଇ ଗଙ୍ଗାନଦୀର ବିଶାଳ ଆବର୍ତ୍ତସଦୃଶ ଶୋଭାପାଇଲା । ଅନନ୍ତର ପବନନନ୍ଦନ ହନୁମାନ୍ କ୍ରୁଦ୍ଧହୋଇ ଭୟଙ୍କର ରୂପ ଧାରଣକଲେ । ୧୪-୧୬ । ପବନନନ୍ଦନ ମହାବଳୀ ହନୁମାନ୍ ଅତିବେଗରେ ସେହି ପ୍ରାସାଦର ସୁବର୍ଣ୍ଣଖଚିତ ଏକ ଶତଧାର ସ୍ତମ୍ଭ ଉତ୍ପାଟନ କରି ବୁଲାଇବାକୁ ଲାଗିଲେ । ସେଥିମଧ୍ୟରୁ ଅଗ୍ନି ସମୁତ୍ଥିତ ହୋଇ ସେହି ପ୍ରାସାଦକୁ ଦଗ୍ଧ କରିଦେଲା । ୧୭-୧୮ । ଅନନ୍ତର ବାନରଦଳପତି ହନୁମାନ୍ ପ୍ରାସାଦ ଦଗ୍ଧ ହେଉଥିବାର ଦେଖି, ଇନ୍ଦ୍ର ବଜ୍ରାଘାତରେ ଅସୁରମାନଙ୍କୁ ସଂହାର କଲାପରି ଶତ ଶତ ରାକ୍ଷସଙ୍କୁ ହତ୍ୟା କରିଦେଇ ଆକାଶରେ ଅବସ୍ଥାନ-ପୂର୍ବକ ଏହି କଥା କହିଲେ, "ମୋପରି ମହାବଳୀ ମହାତ୍ମା ସୁଗ୍ରୀବଙ୍କର ବଶବର୍ତ୍ତୀ ସହସ୍ରସହସ୍ର ବାନର ପ୍ରେରିତହୋଇ ଏବେ ଏହି ସମଗ୍ର ପୃଥିବୀରେ ବୁଲୁଛନ୍ତି ।୧୯-୨୧ ।

ଦଶନାଗବଲାଃ କେଚତ୍କେଚଦ୍ଦଶଗୁଣୋତ୍ତରାଃ ।
କେଚନ୍ନାଗସହସ୍ରସ୍ୟ ବଭୂବୁସ୍ତୁଲ୍ୟବିକ୍ରମାଃ । ୨୨ ।
ସନ୍ତି ଚୌଘବଲାଃ କେଚତ୍ତ୍ତ୍ରନ୍ତ ବାୟୁବଲୋପମାଃ ।
ଅପ୍ରମେୟବଲାଃ କେଚତ୍ତତ୍ରାସନ୍ ହରିଯୂଥପାଃ । ୨୩ ।
ଈଦୃଗ୍ବିଧୈସ୍ତୁ ହରିଭିର୍ବୃତୋ ଦନ୍ତନଖାୟୁଧୈଃ ।
ଶତୈଃ ଶତସହସ୍ରୈଶ୍ଚ କୋଟିଭିଶ୍ଚାୟୁତୈରପି । ୨୪ ।
ଆଗମିଷ୍ୟତି ସୁଗ୍ରୀବଃ ସର୍ବେଷାଂ ବୋ ନିଷୂଦନଃ ।
ନେୟମସ୍ତି ପୁରୀ ଲଙ୍କା ନ ଯୂୟଂ ନ ଚ ରାବଣଃ ।
ଯସ୍ୟ ତ୍ୱିକ୍ଷ୍ୱାକୁବୀରେଣ ବଦ୍ଧଂ ବୈରଂ ମହାତ୍ମନା । ୨୫ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତ୍ସହସ୍ରିକାୟାମ୍
ସଂହିତାୟାଂ ସୁନ୍ଦରକାଣ୍ଡେ ଚୈତ୍ୟପ୍ରାସାଦଦାହୋ ନାମ ଦ୍ୱିଚତ୍ୱାରିଂଶଃ ସର୍ଗଃ ।

---

। ୨୯-୨୧ । ଏହି ବାନରମାନଙ୍କ ମଧ୍ୟରୁ କାହାର କାହାର ବଳ ଦଶକୋଟି ହସ୍ତୀ ସହିତ ସମାନ । କାହାର ବା ତାହାର ଦଶଗୁଣ ବଳ । ପୁଣି କାହାର ବାହୁବଳ ସହସ୍ର ହସ୍ତୀର ବଳ ସହିତ ସମାନ । ୨୨ । ସେହି ବାନରଦଳପତିମାନଙ୍କ ମଧ୍ୟରେ କେହି କେହି ଅଛନ୍ତି, ଯାହାଙ୍କର ବଳ ବନ୍ୟାପ୍ରବାହସଦୃଶ, କାହାର ବା ବାୟୁ-ସଦୃଶ ଏବଂ କାହାର ବା ବଳ ଆଦୌ କଳିହେବ ନାହିଁ । ୨୩ । ଏତାଦୃଶ ଦନ୍ତନଖାୟୁଧ ଶତ ସହସ୍ର ଅୟୁତ ଏବଂ କୋଟି କୋଟି ବାନରମାନଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ତୁମ ସମସ୍ତଙ୍କର ସଂହାରକର୍ତ୍ତା ସୁଗ୍ରୀବ ଆସିବେ । ମହାତ୍ମା ଇକ୍ଷ୍ୱାକୁକୁଳନାଥ ରାମଙ୍କ ସହିତ ଯେତେବେଳେ ତୁମ୍ଭମାନଙ୍କର ଶତ୍ରୁତା ଜାତ ହୋଇଅଛି ସେତେବେଳେ ଏହି ଲଙ୍କାନଗରୀ କିମ୍ବା ତୁମ୍ଭେମାନେ ଅଥବା ରାବଣ କାହାରି ଆଉ ସତ୍ତା ରହିବ ନାହିଁ" । ୨୪-୨୫ ।

---

# ଚତ୍ୱାରିଂଶଃ ସର୍ଗଃ

## ଜମ୍ବୁମାଳିବଧଃ

ସଂଦିଷ୍ଟୋ ରାକ୍ଷସେନ୍ଦ୍ରେଣ ପ୍ରହସ୍ତସ୍ୟ ସୁତୋ ବଳୀ ।
ଜମ୍ବୁମାଳୀ ମହାଦଂଷ୍ଟ୍ରୋ ନିର୍ଜଗାମ ଧନୁର୍ଦ୍ଧରଃ । ୧ ।
ରକ୍ତମାଲ୍ୟାମ୍ବରଧରଃ ସ୍ରଗ୍ୱୀ ରୁଚିରକୁଣ୍ଡଳଃ ।
ମହାନ୍ ବିବୃତ୍ତନୟନଶ୍ଚଣ୍ଡଃ ସମରଦୁର୍ଜୟଃ । ୨ ।
ଧନୁଃ ଶକ୍ରଧନୁଃପ୍ରଖ୍ୟଂ ମହଦ୍ରୁଚିରସାୟକମ୍ ।
ବିସ୍ଫାରୟାଣୋ ବେଗେନ ବଜ୍ରାଶନିସମସ୍ୱନମ୍ । ୩ ।
ତସ୍ୟ ବିସ୍ଫାରଘୋଷେଣ ଧନୁଷୋ ମହତା ଦିଶଃ ।
ପ୍ରଦିଶଶ୍ଚ ନଭଶ୍ଚୈବ ସହସା ସମପୂର୍ଯ୍ୟତ । ୪ ।
ରଥେନ ଖରଯୁକ୍ତେନ ତମାଗତମୁଦୀକ୍ଷ୍ୟ ସଃ ।
ହନୂମାନ୍ ବେଗସଂପନ୍ନୋ ଜହର୍ଷ ଚ ନନାଦ ଚ । ୫ ।
ତଂ ତୋରଣବିଟଙ୍କସ୍ଥଂ ହନୂମନ୍ତଂ ମହାକପିମ୍ ।
ଜମ୍ବୁମାଳୀ ମହାତେଜା ବିବ୍ୟାଧ ନିଶିତୈଃ ଶରୈଃ । ୬ ।

---

## ୪୪ଶ ସର୍ଗ

### ( ଜମ୍ବୁମାଳିବଧ )

ରାକ୍ଷସରାଜ ରାବଣର ଆଦେଶ ପାଇ ପ୍ରହସ୍ତର ପୁତ୍ର ମହାବଳୀ ବିଶାଳଦନ୍ତ ଜମ୍ବୁମାଳୀ ଧନୁ ଧାରଣ କରି ବାହାରିଲା । ୧ । ସେ ରକ୍ତବର୍ଣ୍ଣ ମାଲ୍ୟ ଏବଂ ବସ୍ତ୍ର ପିନ୍ଧିଥିଲା । ତାହାର କୁଣ୍ଡଳ ମନୋହର ଦେଖାଯାଉଥିଲା ଏବଂ ନୟନ ବିସ୍ତାରିତ ହୋଇଥିଲା ଯୁଦ୍ଧରେ ଅଜେୟ ସେହି ମହାକାୟ ବୀର ରୁଦ୍ରମୂର୍ତ୍ତି ଧାରଣ କରିଥିଲା । ୨ । ଇନ୍ଦ୍ରଙ୍କ ଧନୁସଦୃଶ ମନୋହର, ସୁନ୍ଦର ଶରବିଶିଷ୍ଟ ବୃହତ୍ ଧନୁକୁ ବଜ୍ରସଦୃଶ ସ୍ୱରରେ ବିସ୍ତାରିତ କରୁଥିଲା । ୩ । ତାହାର ଧନୁ-ବିସ୍ତାରଣର ମହାଶବ୍ଦରେ ସମସ୍ତ ଦିଗବିଦିଗ ଏବଂ ଆକାଶ ପୂର୍ଣ୍ଣ ହୋଇଗଲା । । ୪ । ବେଗବାନ୍ ହନୁମାନ୍ ତାହାକୁ ଖରଯୁକ୍ତ ରଥରେ ବସି ଆସି ଉପସ୍ଥିତ ହେବାର ଦେଖି ଆନନ୍ଦିତ ହେଲା ଏବଂ ଗର୍ଜନ କରିବାକୁ ଲଗିଲା । ୫ । ମହାତେଜା ଜମ୍ବୁମାଳୀ ତୋରଣର ଶିଖରଦେଶରେ ବସିଥିବା ମହାକପି ହନୁମାନଙ୍କୁ

ଅର୍ଦ୍ଧଚନ୍ଦ୍ରେଣ ବଦନେ ଶିରସ୍ୟେକେନ କର୍ଣିନା ।
ବାହ୍ୱୋର୍ବିବ୍ୟାଧ ନାରାଚୈର୍ଦଶଭିସ୍ତୁ କପୀଶ୍ୱରମ୍ । ୭ ।
ତସ୍ୟ ତଚ୍ଛୁଶୁଭେ ତାମ୍ରଂ ଶରେଣାଭିହତଂ ମୁଖମ୍ ।
ଶରଦୀବାମ୍ବୁଜଂ ଫୁଲ୍ଲଂ ବିଦ୍ଧଂ ଭାସ୍କରରଶ୍ମିନା । ୮ ।
ତତ୍ତସ୍ୟ ରକ୍ତଂ ରକ୍ତେନ ରଞ୍ଜିତଂ ଶୁଶୁଭେ ମୁଖମ୍ ।
ଯଥାକାଶେ ମହାପଦ୍ମଂ ସିକ୍ତଂ କାଞ୍ଚନବିନ୍ଦୁଭିଃ । ୯ ।
ଚୁକୋପ ବାଣାଭିହତୋ ରାକ୍ଷସସ୍ୟ ମହାକପିଃ ।
ତତଃ ପାର୍ଶ୍ୱେଽତିବିପୁଲାଂ ଦଦର୍ଶ ମହତୀଂ ଶିଲାମ୍ । ୧୦ ।
ତରସା ତାଂ ସମୁତ୍ପାଟ୍ୟ ଚିକ୍ଷେପ ବଲବଦ୍‌ବଲୀ ।
ତାଂ ଶରୈର୍ଦଶଭିଃ କ୍ରୁଦ୍ଧସ୍ତାଡ଼ୟାମାସ ରାକ୍ଷସଃ । ୧୧ ।
ବିପନ୍ନଂ କର୍ମ ତଦ୍‌ଦୃଷ୍ଟ୍ୱା ସାଲବୃକ୍ଷଂ ମହାବଲମ୍ ।
ସାଲଂ ବିପୁଲମୁତ୍ପାଟ୍ୟ ଭ୍ରାମୟାମାସ ବୀର୍ଯବାନ୍ । ୧୨ ।
ଭ୍ରାମୟନ୍ତଂ କପିଂ ଦୃଷ୍ଟ୍ୱା ସାଲବୃକ୍ଷଂ ମହାବଲମ୍ ।
ଚିକ୍ଷେପ ସୁବହୂନ୍ ବାଣାଞ୍ଜମ୍ବୁମାଲୀ ମହାବଲଃ । ୧୩ ।
ସାଲଂ ଚତୁର୍ଭିଶ୍ଚିଚ୍ଛେଦ ବାନରଂ ପଞ୍ଚଭିର୍ଭୁଜେ ।
ଉରସ୍ୟେକେନ ବାଣେନ ଦଶଭିସ୍ତୁ ସ୍ତନାନ୍ତରେ । ୧୪ ।

---

ରାକ୍ଷସ ଶରସମୂହଦ୍ୱାରା ବିଦ୍ଧ କରିବାକୁ ଲାଗିଲା ।୬। ସେ ଅର୍ଦ୍ଧଚନ୍ଦ୍ର ଶରଦ୍ୱାରା ତାହାର ସମ୍ମୁଖକୁ, ଗୋଟିଏ କର୍ଣ୍ଣୀ ଶରଦ୍ୱାରା ତାହାର ମସ୍ତକକୁ ଦଶଟି ଶରଦ୍ୱାରା ସେହି ବାନର ଶ୍ରେଷ୍ଠର ବାହୁଯୁଗଳକୁ ବିଦ୍ଧକଲା ।୭। ତାହାର ତାମ୍ରବର୍ଣ୍ଣ ମୁଖମଣ୍ଡଳ ଶରଦ୍ୱାରା ବିଦ୍ଧ ହୋଇ ଶରତ୍କାଳୀନ ପ୍ରଫୁଲ୍ଲ ପଦ୍ମ ସୂର୍ଯ୍ୟକିରଣରେ ପ୍ରତିବିଦ୍ଧ ହେଲପରି ଦେଖାଗଲା ।୮। ଆକାଶରେ ମହାପଦ୍ମ କାଞ୍ଚନବିନ୍ଦୁଦ୍ୱାରା ସିକ୍ତହେଲେ ଯେପରି ଦେଖାଯାଏ, ତାହାଙ୍କର ରକ୍ତବର୍ଣ୍ଣ ମୁଖ ରକ୍ତରେ ରଞ୍ଜିତ ହୋଇ ସେହିପରି ଶୋଭା ପାଇଲା ।୯। ସେହି ମହାବାନର ରାକ୍ଷସର ବାଣଦ୍ୱାରା ଆହତ ହୋଇ କ୍ରୁଦ୍ଧ ହୋଇଉଠିଲା । ଅନନ୍ତର ସେ ପାର୍ଶ୍ୱଦେଶରେ ଗୋଟିଏ ବିଶାଳ ଶିଳା ଦେଖିଲେ ।୧୦। ବଳବାନ ବାନର ସତ୍ୱର ତାହା ଉତ୍ପାଟନ କରି ଅତି ବେଗରେ ନିକ୍ଷେପ କଲେ । ରାକ୍ଷସ କ୍ରୁଦ୍ଧ ହୋଇ ଦଶଟି ଶରଦ୍ୱାରା ସେହି ଶିଳାକୁ ଭାଙ୍ଗି ପକାଇଲା ।୧୧। ବୀର୍ଯ୍ୟବାନ୍ ହନୁମାନ୍ ନିଜର ସେହି କାର୍ଯ୍ୟକୁ ବିଫଳ ଦେଖି ଶାଳବୃକ୍ଷ ଉପାଡ଼ି ବୁଲାଇବାକୁ ଲାଗିଲେ ।୧୨। ମହାବଳୀ ଜମ୍ବୁମାଳୀ ସେହି ମହାବଳବାନ୍ ବାନରଙ୍କୁ ଶାଳବୃକ୍ଷ ବୁଲାଉଥିବାର ଦେଖି ତାହାପ୍ରତି ବହୁସଂଖ୍ୟକ ଶର ନିକ୍ଷେପକଲା ।୧୩। ସେ ଚାରିଟି ବାଣରେ ଶାଳବୃକ୍ଷକୁ ଛେଦନକଲା ଓ ବାନରର ଭୁଜରେ ପାଞ୍ଚଟି ଶର, ମସ୍ତକରେ ଗୋଟିଏ ଶର ଏବଂ ବକ୍ଷସ୍ଥଳରେ ଦଶଟି ଶର ପ୍ରହାରକଲା ।୧୪।

ସ ଶରୈଃ ପୂରିତତନୁଃ କ୍ରୋଧେନ ମହତା ବୃତଃ ।
ତମେବ ପରିଘଂ ଗୃହ୍ୟ ଭ୍ରାମୟାମାସ ବେଗତଃ । ୧୫।
ଅତିବେଗୋଽତିବେଗେନ ଭ୍ରାମୟିତ୍ୱା ମହୋତ୍କଟଃ ।
ପରିଘଂ ପାତୟାମାସ ଜମ୍ବୁମାଲେ ର୍ମହୋରସି । ୧୬ ।
ତସ୍ୟ ଚୈବ ଶିରୋ ନାସ୍ତି ନ ବାହୂ ଜାନୁନୀ ନ ଚ ।
ନ ଧନୁର୍ନ ରଥୋ ନାଶ୍ୱାସ୍ତତ୍ରାଦୃଶ୍ୟନ୍ତ ନେଷବଃ ।୧୭ ।
ସ ହତସ୍ତରସା ତେନ ଜମ୍ବୁମାଲୀ ମହାରଥଃ ।
ପପାତ ନିହତୋ ଭୂମୌ ଚୂର୍ଣିତାଙ୍ଗ ଇବ ଦ୍ରୁମଃ । ୧୮ ।
ଜମ୍ବୁମାଲିଂ ସୁନିହତଂ କିଙ୍କରାଂଶ୍ଚ ମହାବଲାନ୍ ।
ଚୁକ୍ରୋଧ ରାବଣଃ ଶ୍ରୁତ୍ୱା କ୍ରୋଧସଂରକ୍ତଲୋଚନଃ ।
ସ ରୋଷସଂବର୍ତ୍ତିତତାମ୍ରଲୋଚନଃ
ପ୍ରହସ୍ତପୁତ୍ରେ ନିହତେ ମହାବଲେ ।
ଅମାତ୍ୟପୁତ୍ରାନତିବୀର୍ଯ୍ୟବିକ୍ରମାନ୍
ସମାଦିଦେଶାଶୁ ନିଶାଚରେଶ୍ୱରଃ । ୨୦ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ ସୁନ୍ଦରକାଣ୍ଡେ ଜମ୍ବୁମାଲିବଧୋ ନାମ ଚତୁଶ୍ଚତ୍ୱାରିଂଶଃ ସର୍ଗଃ ।

---

ହନୁମାନ୍ ଶରଜାଳଦ୍ୱାରା କ୍ଷତବିକ୍ଷତ ହୋଇ ଅତିଶୟ କ୍ରୋଧାବିଷ୍ଟ ହେଲେ ଏବଂ ସେହି ପରିଘ ଗ୍ରହଣ କରି ତାହା ବୁଲାଇବାକୁ ଲାଗିଲେ । ୧୫ । ଅନନ୍ତର ଅତି ବେଗଶାଳୀ ବଳଦୃପ୍ତ ହନୁମାନ୍ ପରିଘକୁ ବୁଲାଇ ତାହାକୁ ଜମ୍ବୁମାଲୀର ବିଶାଳ ବକ୍ଷରେ ନିକ୍ଷେପକଲେ । ୧୬ । ତାହାର ମସ୍ତକ, ବାହୁ, ଜାନୁ, ରଥ, ଅଶ୍ୱଗଣ ଏବଂ ଶରସମୂହ କିଛି ରହିଲା ନାହିଁ ବା ଦେଖାଗଲା ନାହିଁ । ମହାବଳୀ ଜମ୍ବୁମାଲୀ ବାନରକର୍ତ୍ତୃକ ସହସା ନିହତ ଏବଂ ଚୂର୍ଣ୍ଣିତାଙ୍ଗ ହୋଇ ଛିନ୍ନ ତରୁପରି ଭୂତଳରେ ପତିତ ହେଲା । ୧୮ । ଜମ୍ବୁମାଳୀ ଏବଂ ମହାବଳୀ କିଙ୍କରମାନଙ୍କର ନିଧନବାର୍ତ୍ତା ଶ୍ରବଣକରି ରାବଣ କ୍ରୁଦ୍ଧ ହେଲା ଏବଂ ତାହାର ଚକ୍ଷୁ କ୍ରୋଧରେ ଅତିଶୟ ରକ୍ତବର୍ଣ୍ଣ ହୋଇଗଲା । ୧୯ । ମହାବଳୀ ପ୍ରହସ୍ତପୁତ୍ର ନିହତହେବାରୁ ରାକ୍ଷସରାଜ ରାବଣ କ୍ରୋଧରେ ଚକ୍ଷୁ ଘୂର୍ଣ୍ଣିତକରି ତତ୍‌କ୍ଷଣାତ୍ ଅତି ବୀର୍ଯ୍ୟବାନ୍ ଏବଂ ପରାକ୍ରମୀ ଅମାତ୍ୟ-ପୁତ୍ରମାନଙ୍କୁ ଯୁଦ୍ଧ କରିବା ପାଇଁ ଯିବାକୁ ଆଦେଶ ଦେଲା । ୨୦ ।

# ପଞ୍ଚଚତ୍ୱାରିଂଶଃ ସର୍ଗଃ

## ଅମାତ୍ୟପୁତ୍ରବଧଃ

ତତସ୍ତେ ରାକ୍ଷସେନ୍ଦ୍ରେଣ ଚୋଦିତାଃ ମନ୍ତ୍ରିଣଃ ସୁତାଃ ।
ନିର୍ଯଯୁର୍ଭବନାତ୍ତସ୍ମାତ୍ସପ୍ତ ସପ୍ତାର୍ଚ୍ଚିବର୍ଚ୍ଚସଃ । ୧ ।
ମହଦ୍‌ବଲପରୀବାରା ଧନୁଷ୍ମନ୍ତୋ ମହାବଲାଃ ।
କୃତାସ୍ତ୍ରାସ୍ତ୍ରବିଦାଂ ଶ୍ରେଷ୍ଠାଃ ପରସ୍ପରଜୟୈଷିଣଃ । ୨ ।
ହେମଜାଲପରିକ୍ଷିପ୍ତୈର୍ଧ୍ୱଜବଦ୍ଭିଃ ପତାକିଭିଃ ।
ତୋୟଦସ୍ୱନନିର୍ଘୋଷୈର୍ବାଜିଯୁକ୍ତୈର୍ମହାରଥୈଃ । ୩ ।
ତପ୍ତକାଞ୍ଚନଚିତ୍ରାଣି ଚାପାନ୍ୟମିତବିକ୍ରମାଃ ।
ବିସ୍ଫାରୟନ୍ତଃ ସଂହୃଷ୍ଟାସ୍ତଡ଼ିଦ୍‌ବନ୍ତ ଇବାମ୍ବୁଦାଃ । ୪ ।
ଜନନ୍ୟସ୍ତାସ୍ତୁ ତତସ୍ତେଷାଂ ବିଦିତ୍ୱା କିଙ୍କରାନ୍ ହତାନ୍ ।
ବଭୂବୁଃ ଶୋକସଂଭ୍ରାନ୍ତାଃ ସବାନ୍ଧବସୁହୃଜ୍ଜନାଃ । ୫ ।
ତେ ପରସ୍ପରସଂଘର୍ଷାସ୍ତପ୍ତକାଞ୍ଚନଭୂଷଣାଃ ।
ଅଭିପେତୁର୍ହନୂମନ୍ତଂ ତୋରଣସ୍ଥମବସ୍ଥିତମ୍ । ୬ ।

---

## ୪୫ଶ ସର୍ଗ

( ଅମାତ୍ୟପୁତ୍ରବଧ )

ଅନନ୍ତର ରାବଣଙ୍କଦ୍ୱାରା ପ୍ରେରିତ ହୋଇ ସୂର୍ଯ୍ୟସମ ତେଜସ୍ୱୀ ସାତଗୋଟି ମନ୍ତ୍ରିପୁତ୍ର ସେହି ଗୃହରୁ ନିର୍ଗତ ହେଲେ । ୧ । ସେହି ଅସ୍ତ୍ରଶିକ୍ଷିତ ଏବଂ ଅସ୍ତ୍ରଜ୍ଞ-ମାନଙ୍କ ମଧ୍ୟରେ ଶ୍ରେଷ୍ଠ ମହାବଳୀ ଧନୁର୍ଦ୍ଧାରୀମାନେ ବିଶାଳ ସୈନ୍ୟପରିବୃତ ହୋଇ ପରସ୍ପରକୁ ଜୟ କରିବାକୁ ଅଭିଳାଷୀ ହୋଇ ବାହାରିଲେ । ୨ । ସେହି ଅମିତ-ବିକ୍ରମୀ ବୀରମାନେ ସ୍ୱର୍ଣ୍ଣଜାଲବେଷ୍ଟିତ ଧ୍ୱଜପତାକାଯୁକ୍ତ ମେଘସ୍ୱନକାରୀ ଅଶ୍ୱଯୁକ୍ତ ବିଶାଳ ରଥମାନଙ୍କରେ ଆରୋହଣ କରି ଉଜ୍ଜ୍ୱଳ ସ୍ୱର୍ଣ୍ଣଚିତ୍ରିତ ଧନୁ ବିସ୍ଫାରଣପୂର୍ବକ ଅତି ଆନନ୍ଦରେ ଯିବାବେଳେ ବିଦ୍ୟୁତ୍‌ଯୁକ୍ତ ମେଘସଦୃଶ ଦେଖାଯାଉଥିଲେ ।୩-୪। ସେମାନଙ୍କର ମାତାମାନେ କିଙ୍କରମାନଙ୍କର ମୃତ୍ୟୁକଥା ଜାଣି ସୁହୃଦ୍ ଓ ବାନ୍ଧବ-ମାନଙ୍କ ସହିତ ଶୋକରେ ଉଦ୍‌ବିଗ୍ନ ହୋଇଉଠିଲେ । ୫ । ସ୍ୱର୍ଣ୍ଣାଳଙ୍କାରଭୂଷିତ ସେହି ସାତଟି ମନ୍ତ୍ରିପୁତ୍ର ପରସ୍ପର ସ୍ପର୍ଦ୍ଧା କରି ତୋରଣ ଉପରେ ସ୍ଥିର-ଭାବରେ ବସିଥିବା ହନୂମାନଙ୍କର ସମ୍ମୁଖୀନ ହେଲେ । ୬ । ରଥର ଗର୍ଜନ ଶବ୍ଦ

ସୃଜନ୍ତୋ ବାଣବୃଷ୍ଟିଂ ତେ ରଥଗର୍ଜିତନିଃସ୍ୱନାଃ ।
ପ୍ରାବୃଟ୍‌କାଳ ଇବାମ୍ଭୋଦା ବିଚେରୁର୍ନୈର୍‌ଋତାମ୍ବୁଦାଃ । ୭ ।
ଅବକୀର୍ଣ୍ଣସ୍ତତସ୍ତାଭିର୍ହନୂମାନ୍ ଶରବୃଷ୍ଟିଭିଃ ।
ଅଭବତ୍ସଂବୃତାକାରଃ ଶୈଳରାଜୀବ ବୃଷ୍ଟିଭିଃ । ୮ ।
ସ ଶରାନ୍ ବଞ୍ଚୟାମାସ ତେଷାମାଶୁଚରଃ କପିଃ ।
ରଥବେଗାଂଶ୍ଚ ବୀରାଣାଂ ବିଚରନ୍ ବିମଲେଽମ୍ବରେ । ୯ ।
ସ ତୈଃ କ୍ରୀଡ଼ନ୍ ଧନୁଷ୍ମଦ୍ଭିର୍ବ୍ୟୋମ୍ନି ବୀରଃ ପ୍ରକାଶତେ ।
ଧନୁଷ୍ମଦ୍ଭିର୍ଯଥା ମେଘୈର୍ମାରୁତଃ ପ୍ରଭୁରମ୍ବରେ । ୧୦ ।
ସ କୃତ୍ୱା ନିନଦଂ ଘୋରଂ ତ୍ରାସୟଂସ୍ତାଂ ମହାଚମୂମ୍ ।
ଚକାର ହନୁମାନ୍ ବେଗଂ ତେଷୁ ରକ୍ଷଃସୁ ବୀର୍ଯ୍ୟବାନ୍ । ୧୧ ।
ତଳେନାଭ୍ୟହନତ୍କାଂଶ୍ଚିତ୍ ପଦ୍‌ଭ୍ୟାଂ କାଂଶ୍ଚିତ୍ପରଂତପଃ ।
ମୁଷ୍ଟିଭିଶ୍ଚାହନତ୍କାଂଶ୍ଚିନ୍ନଖୈଃ କାଂଶ୍ଚିଦ୍ ବ୍ୟଦାରୟତ୍ । ୧୨ ।
ପ୍ରମମାଥୋରସା କାଂଶ୍ଚିଦୂରୁଭ୍ୟାମପରାନପି ।
କେଚିତ୍ତସ୍ୟୈବ ନାଦେନ ତତ୍ରୈବ ପତିତା ଭୁବି । ୧୩ ।

---

ସହିତ ମିଶାଇ ସେମାନେ ବାଣ ବୃଷ୍ଟିକରି ବର୍ଷାକାଳୀନ ମେଘରାଜି ସଦୃଶ ସେଠାରେ ବିଚରଣ କରିବାକୁ ଲାଗିଲେ । ୭ । ହନୂମାନ୍ ସେମାନଙ୍କର ଶର-ବୃଷ୍ଟି ଦ୍ୱାରା ଆଚ୍ଛନ୍ନ ହୋଇ ବୃଷ୍ଟିଧାରାସମାଚ୍ଛନ୍ନ ଶୈଳରାଜସଦୃଶ ଅଦୃଶ୍ୟ ହୋଇ ପଡ଼ିଲେ । ୮ । ଅନନ୍ତର ସେହି ବାନର ବିମଳ ଆକାଶରେ କ୍ଷିପ୍ରଗତିରେ ବିଚରଣ କରି ସେମାନଙ୍କର ରଥ-ବେଗ ତଥା ଶରରାଜିକୁ ବିଫଳ କରିଦେଲେ । ୯ । ସେ ସେହି ଧନୁର୍ଦ୍ଧାରୀମାନଙ୍କ ସହିତ ଆକାଶରେ କ୍ରୀଡ଼ା କରି ଇନ୍ଦ୍ର-ଧନୁସମନ୍ୱିତ ମେଘମାନଙ୍କ ସହିତ ପ୍ରଭୁ ପବନଦେବ କ୍ରୀଡ଼ାକଲପରି ଶୋଭାପାଇଲେ । ୧୦ । ଅନନ୍ତର ବୀର୍ଯ୍ୟବାନ୍ ହନୂମାନ ଘୋରନାଦକରି ସେହି ମହତ୍ ସେନାକୁ ଭୟଭୀତ କରାଇ ସେହି ରାକ୍ଷସଙ୍କ ମଧ୍ୟରେ ବେଗ ପ୍ରକାଶ କରିବାକୁ ଲାଗିଲେ । ୧୧ । ଶତ୍ରୁସୂଦନ ହନୂମାନ୍ କାହାକୁ ଚାପୁଡ଼ା ମାରିଲେ, କାହାକୁ ପଦାଘାତ କଲେ, କାହାକୁ ମୁଷ୍ଟି ଦ୍ୱାରା ଆହତ କଲେ, କାହାକୁ ବା ନଖଦ୍ୱାରା ବିଦାରି ପକାଇଲେ । ୧୨ । ସେହି ବାନର କାହାକୁ ବକ୍ଷାଘାତଦ୍ୱାରା, କାହାକୁ ବା ଊରୁପ୍ରହାରଦ୍ୱାରା ଦଳିପକାଇଲେ । କେହି କେହି ତାହାର ଶବ୍ଦ ଶୁଣି ସେହିଠାରେ ଭୂମିରେ ପଡ଼ିଗଲେ । ୧୩ ।

ତତସ୍ତେଷ୍ୱବପନ୍ନେଷୁ ଭୂମୌ ନିପତିତେଷୁ ଚ ।
ତତ୍ସୈନ୍ୟମଗମତ୍ସର୍ବାଂ ଦଶୋ ଦଶ ଭୟାର୍ଦ୍ଦିତମ୍ । ୧୪ ।
ବନେଦୁର୍ବିସ୍ୱରଂ ନାଗା ନିପେତୁର୍ଭୁବି ବାଜିନଃ ।
ଭଗ୍ନନୀଡ଼ଧ୍ୱଜଚ୍ଛତ୍ରୈର୍ଭୂଶ୍ଚ କୀର୍ଣାଭବଦ୍ରଥୈଃ । ୧୫ ।
ସ୍ରବତା ରୁଧିରେଣାଥ ସ୍ରବନ୍ତ୍ୟୋ ଦର୍ଶିତାଃ ପଥି ।
ବିବିଧୈଶ୍ଚ ସ୍ୱନୈର୍ଲଙ୍କା ନନାଦ ବିକୃତଂ ତଦା । ୧୬ ।
ସ ତାନ୍ ପ୍ରବୃଦ୍ଧାନ୍ ବିନିହତ୍ୟ ରାକ୍ଷସାନ୍
ମହାବଲଶ୍ଚଣ୍ଡପରାକ୍ରମଃ କପିଃ ।
ଯୁଯୁତ୍ସୁରନ୍ୟୈଃ ପୁନରେବ ରାକ୍ଷସୈ -
ସ୍ତଦେବ ବୀରୋଽଭିଜଗାମ ତୋରଣମ୍ । ୧୭ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ସୁନ୍ଦରକାଣ୍ଡେ ଅମାତ୍ୟପୁତ୍ରବଧୋ ନାମ ପଞ୍ଚଚତ୍ୱାରିଂଶଃ ସର୍ଗଃ ।

---

ଅନନ୍ତର ସେମାନେ ଅବସନ୍ନ ହୋଇ ଭୂମିରେ ପଡ଼ିଯିବାଉତ୍ତାରୁ, ସେମାନଙ୍କର ସୈନ୍ୟମାନେ ଭୟପୀଡ଼ିତ ହୋଇ ଦଶଦଗରେ ପଳାୟନ କଲେ । ୧୪ । ହସ୍ତୀମାନେ ବିକଟସ୍ୱରରେ ଚିତ୍କାରକଲେ । ଅଶ୍ୱମାନେ ଭୂତଳରେ ନିପତିତ ହେଲେ । ଭଗ୍ନମାଡ଼ ଧ୍ୱଜ ଓ ଛତ୍ରବିଶିଷ୍ଟ ରଥସମୂହରେ ପୃଥିବୀ ଆଚ୍ଛନ୍ନ ହୋଇଗଲା । ୧୫ । ସେ ଯୁଦ୍ଧଭୂମିର ପଥମାନଙ୍କରେ ପ୍ରବାହିତ ରକ୍ତର ନଦୀ ଦେଖାଗଲା । ସେତେବେଳେ ସମଗ୍ର ଲଙ୍କା ବିବିଧ ବିକୃତ ସ୍ୱରରେ ଚିତ୍କାର କରି-ଉଠିଲା । ୧୬ । ପ୍ରଚଣ୍ଡ ପରାକ୍ରମୀ ମହାବଳୀ ବୀର ହନୁମାନ୍ ସେହି ପ୍ରଧାନ ପ୍ରଧାନ ରାକ୍ଷସମାନଙ୍କୁ ନିହତକରି ଅନ୍ୟମାନଙ୍କ ସହିତ ଯୁଦ୍ଧକରିବା ଅଭିପ୍ରାୟରେ ପୁଣି ସେହି ତୋରଣ ଆଡ଼କୁ ଗଲେ । ୧୭ ।

# ଷଟ୍ଚତ୍ୱାରିଂଶଃ ସର୍ଗଃ

## ସେନାପତିପଞ୍ଚକବଧଃ

ହତାନ୍ମନ୍ତ୍ରିସୁତାନ୍ ବୁଦ୍ଧ୍ୱା ବାନରେଣ ମହାତ୍ମନା ।
ରାବଣଃ ସଂବୃତାକାରଶ୍ଚକାର ମତିମୁତ୍ତମାମ୍ । ୧ ।
ସ ବିରୂପାକ୍ଷଯୂପାକ୍ଷୌ ଦୁର୍ଧର୍ଷଂ ଚୈବ ରାକ୍ଷସମ୍ ।
ପ୍ରଘସଂ ଭାସକର୍ଣଂ ଚ ପଞ୍ଚସେନାଗ୍ରନାୟକାନ୍ । ୨ ।
ସଂଦିଦେଶ ଦଶଗ୍ରୀବୋ ବୀରାନ୍ନୟବିଶାରଦାନ୍ ।
ହନୂମଦ୍ଗ୍ରହଣେ ବ୍ୟଗ୍ରାନ୍ ବାୟୁବେଗସମାନ୍ ଯୁଧି । ୩ ।
ଯାତ ସେନାଗ୍ରଗାଃ ସର୍ବେ ମହାବଲପରିଗ୍ରହାଃ ।
ସବାଜିରଥମାତଙ୍ଗାଃ ସ କପିଃ ଶାସ୍ୟତାମିତି । ୪ ।
ଯତ୍ତୈଶ୍ଚ ଖଲୁ ଭାବ୍ୟଂ ସ୍ୟାତ୍ତମାସାଦ୍ୟ ବନାଲୟମ୍ ।
କର୍ମ ଚାପି ସମାଧେୟଂ ଦେଶକାଲାବିରୋଧିତମ୍ । ୫ ।
ନ ହ୍ୟହଂ ତଂ କପିଂ ମନ୍ୟେ କର୍ମଣା ପ୍ରତିତର୍କୟନ୍ ।
ସର୍ବଥା ତନ୍ମହଦ୍ଭୂତଂ ମହାବଲପରିଗ୍ରହମ୍ । ୬ ।

---

## ୪୬ଶ ସର୍ଗ

### ( ପଞ୍ଚସେନାପତି ବଧ )

ମହାତ୍ମା ବାନରକର୍ତ୍ତୃକ ମନ୍ତ୍ରିପୁତ୍ରମାନେ ନିହତ ହେବାର ଜାଣି, ରାବଣ ନିଜର ଆଭ୍ୟନ୍ତରୀଣ ଭୟ ସଂଗୋପନପୂର୍ବକ ଧୈର୍ଯ୍ୟ ଅବଲମ୍ବନ କଲା । ୧ । ଅନନ୍ତର ଦଶାନନ ବିରୂପାକ୍ଷ, ଯୂପାକ୍ଷ, ଦୁର୍ଦ୍ଧର୍ଷ, ପ୍ରଘସ ଓ ଭାସକର୍ଣ୍ଣ ଏହି ପାଞ୍ଚଜଣ ବୀର୍ଯ୍ୟବାନ୍, ନୀତିବିଶାରଦ, ଯୁଦ୍ଧରେ ବାୟୁବେଗ ସମାନ ଗତିଶୀଳ, ବୀର ସେନାପତିଙ୍କୁ ହନୁମାନଙ୍କୁ ବନ୍ଧନ କରିବାପାଇଁ ଆଦେଶ ଦେଲା । ୨-୩ । ସେ କହିଲା, "ସେନାପତିମାନେ ! ତୁମ୍ଭେମାନେ ଅଶ୍ୱ, ରଥ ଓ ହସ୍ତୀ ତଥା ବିଶାଳ ସେନା ନେଇ ଯାଅ ଏବଂ ସେହି କପିକୁ ଶାସନକର । ୪ । ତୁମ୍ଭେମାନେ ସେହି ବନବାସୀ ବାନର ନିକଟକୁ ଯାଇ ସାବଧାନଭାବରେ ଦେଶକାଳୋଚିତ କାର୍ଯ୍ୟ ସମାଧାନ କରିବ । ୫ । ତାହାର କାର୍ଯ୍ୟ ପର୍ଯ୍ୟାଲୋଚନା କରି ମୁଁ ତାକୁ ବାନର ବୋଲି ମନେ କରୁ ନାହିଁ । ସେ ସର୍ବଥା ମହାବଳଧାରୀ ଏକ ମହାପ୍ରାଣୀ ଅଟେ ।୬। ତାହାକୁ

ବାନରୋଽୟମିତି ଜ୍ଞାତ୍ୱା ନ ହି ଶୁଧ୍ୟତି ମେ ମନଃ ।
ନୈବାହଂ ତଂ କପିଂ ମନ୍ୟେ ଯଥେୟଂ ପ୍ରସ୍ତୁତା କଥା ।୭।
ଭବେଦିନ୍ଦ୍ରେଣ ବା ସୃଷ୍ଟମସ୍ମଦର୍ଥଂ ତପୋବଳାତ୍ ।
ସନାଗଯକ୍ଷଗନ୍ଧର୍ବଦେବାସୁରମହର୍ଷୟଃ । ୮ ।
ଯୁଷ୍ମାଭିଃ ପ୍ରହିତୈଃ ସର୍ବୈର୍ମୟା ସହ ବିନିର୍ଜିତାଃ ।
ତୈର୍ଵଶ୍ୟଂ ବିଧାତବ୍ୟଂ ବ୍ୟଲୀକଂ କିଂଚିଦେବ ନଃ । ୯ ।
ତଦେବ ନାତ୍ର ସଂଦେହଃ ପ୍ରସହ୍ୟ ପରିଗୃହ୍ୟତାମ୍ ।
ଯାତ ସେନାଗ୍ରଗାଃ ସର୍ବେ ମହାବଲପରିଗ୍ରହାଃ । ୧୦ ।
ସବାଜିରଥମାତଙ୍ଗାଃ ସ କପିଃ ଶାସ୍ୟତାମିତି ।
ନାବମାନ୍ୟୋ ଭବଦ୍ଭିଶ୍ଚ କପିର୍ବୀରପରାକ୍ରମଃ । ୧୧ ।
ଦୃଷ୍ଟା ହି ହରୟଃ ପୂର୍ବଂ ମୟା ବିପୁଲବିକ୍ରମାଃ ।
ବାଲୀ ଚ ସହ ସୁଗ୍ରୀବୋ ଜାମ୍ବବାଂଶ୍ଚ ମହାବଲଃ ।୧୨ ।
ନୀଲଃ ସେନାପତିଶ୍ଚୈବ ଯେ ଚାନ୍ୟେ ଦ୍ୱିବିଦାଦୟଃ ।
ନୈବ ତେଷାଂ ଗତିର୍ଭୀମା ନ ତେଜୋ ନ ପରାକ୍ରମଃ । ୧୩ ।

---

ବାନର ବୋଲି ଜ୍ଞାନକରି ମୋର ମନ ଶୁଦ୍ଧ ହେଉ ନାହିଁ । ଯେପରି ଏହି କଥା ପ୍ରସ୍ତୁତ ହୋଇଅଛି, ସେଥିରେ ମୁଁ ତାହାକୁ ବାନର ବୋଲି ମନେ କରୁ ନାହିଁ । ୭ । ବୋଧହୁଏ, ଇନ୍ଦ୍ର ତପଃପ୍ରଭାବରେ ଆମ୍ଭମାନଙ୍କ ଦମନ କରିବାପାଇଁ ତାହାକୁ ସୃଷ୍ଟିକରି ଅଛନ୍ତି । ତୁମ୍ଭେମାନେ ମୋ ଦ୍ୱାରା ପ୍ରେରିତ ହୋଇ ମୋ ସହିତ ଯାଇ ନାଗ, ଯକ୍ଷ, ଗନ୍ଧର୍ବ, ଦେବ, ଅସୁର ଓ ମହର୍ଷି, ସମସ୍ତଙ୍କୁ ପରାଜିତ କରିଅଛ । ସେମାନେ ଅବଶ୍ୟ ଆମ୍ଭମାନଙ୍କର ଅପକାର କରିବା ନିମନ୍ତେ କୌଣସି ବ୍ୟବସ୍ଥା କରିଥିବେ ।୮-୯। ତାହାହିଁ ହେବ,ଏଥିରେ ସନ୍ଦେହ ନାହିଁ;ଅତଏବ, ବଳପୂର୍ବକ ସେହି ବାନରକୁ ବନ୍ଧନକରି ଆଣ । ସୁତରାଂ ହେ ସେନାପତିବର୍ଗ ! ତୁମ୍ଭେମାନେ ସମସ୍ତେ ମହାବଳୀ ସେନାପତି ଅଶ୍ୱ,ରଥ ଓ ହସ୍ତୀମାନଙ୍କ ସହ ଯାଅ ଏବଂ ସେହି ବାନରକୁ ଶାସନ କର । ସେ ବାନର ପରାକ୍ରମୀ ବୀର ଅଟେ; ସୁତରାଂ ତାହାକୁ ହେୟ ଜ୍ଞାନ କରିବା ଉଚିତ ନୁହେ ।୧୦-୧୧। ମୁଁ ପୂର୍ବେ ବାଲୀ, ସୁଗ୍ରୀବ, ମହାବଳୀ ଜାମ୍ବବାନ୍, ସେନାପତି ନୀଳ ଏବଂ ଦ୍ୱିବିଦ ପ୍ରଭୃତି ଅନ୍ୟ ସେହି ପ୍ରବଳପରାକ୍ରମୀ ବାନରମାନଙ୍କୁ ଦେଖିଛି, ସେମାନଙ୍କର ଗତି, ତେଜ ବା ପରାକ୍ରମ ଏପରି ଭୟଙ୍କର ନୁହେ । ୧୨-୧୩ । ସେମାନଙ୍କର ବୁଦ୍ଧି, ବଳ ଉତ୍ସାହ ବା ରୂପକଳ୍ପନା ମଧ୍ୟ

ନ ମର୍ତ୍ତ୍ୟର୍ନ ବଲୋତ୍ସାହୋ ନ ରୂପପରିକଳ୍ପନମ୍ ।
ମହତ୍‌ସତ୍ତ୍ୱମିଦଂ ଜ୍ଞେୟଂ କପିରୂପଂ ବ୍ୟବସ୍ଥିତମ୍ । ୧୪ ।
ପ୍ରଯତ୍ନଂ ମହଦାସ୍ଥାୟ କ୍ରିୟତାମସ୍ୟ ନିଗ୍ରହଃ ।
କାମଂ ଲୋକାସ୍ତ୍ରୟଃ ସେନ୍ଦ୍ରାଃ ସସୁରାସୁରମାନବାଃ । ୧୫ ।
ଭବତାମଗ୍ରତଃ ସ୍ଥାତୁଂ ନ ପର୍ଯ୍ୟାପ୍ତା ରଣାଜିରେ ।
ତଥାପି ତୁ ନୟଜ୍ଞେନ ଜୟମାକାଙ୍‌କ୍ଷତା ରଣେ । ୧୬ ।
ଆତ୍ମା ରକ୍ଷ୍ୟଃ ପ୍ରଯତ୍ନେନ ଯୁଦ୍ଧସିଦ୍ଧିର୍ହି ଚଞ୍ଚଳା ।
ତେ ସ୍ୱାମିବଚନଂ ସର୍ବେ ପ୍ରତିଗୃହ୍ୟ ମହୌଜସଃ । ୧୭ ।
ସମୁତ୍ପେତୁର୍ମହାବେଗା ହୁତାଶସମତେଜସଃ ।
ରଥୈଶ୍ଚ ମତ୍ତୈର୍ନାଗୈଶ୍ଚ ବାଜିଭିଶ୍ଚ ମହାଜବୈଃ । ୧୮ ।
ଶସ୍ତ୍ରୈଶ୍ଚ ନିଶିତୈସ୍ତୀକ୍ଷ୍ଣୈଃ ସର୍ବୈଶ୍ଚୋପହିତା ବଲୈଃ ।
ତତସ୍ତୁ ଦଦୃଶୁର୍ବୀରା ଦୀପ୍ୟମାନଂ ମହାକପିମ୍ । ୧୯ ।
ରଶ୍ମିମନ୍ତମିବୋଦ୍ୟନ୍ତଂ ସ୍ୱତେଜୋରଶ୍ମିମାଳିନମ୍ ।
ତୋରଣସ୍ଥଂ ମହାବେଗଂ ମହାସତ୍ତ୍ୱଂ ମହାବଲମ୍ । ୨୦ ।
ମହାମତିଂ ମହୋତ୍ସାହଂ ମହାକାୟଂ ମହାଭୁଜମ୍ ।
ତଂ ସମୀକ୍ଷ୍ୟୈବ ତେ ସର୍ବେ ଦିକ୍ଷୁ ସର୍ବାସ୍ୱବସ୍ଥିତାଃ । ୨୧ ।

---

ଏହା ପରି ନୁହେଁ । ଏତଏବ ଏହାକୁ କପିରୂପରେ ଅବସ୍ଥିତ ମହାପ୍ରାଣୀ ବୋଲି ଜ୍ଞାନ କର । ୧୪ । ବିଶେଷ ଯତ୍ନ ଅବଲମ୍ବନପୂର୍ବକ ଏହାର ଶାସ୍ତି ବିଧାନ କର । ଅବଶ୍ୟ ଏହା ସତ୍ୟ ଯେ ଇନ୍ଦ୍ର, ସୁର, ଅସୁର ଏବଂ ମାନବମାନଙ୍କ ସହିତ ତିନିଲୋକ ମଧ୍ୟ ଯୁଦ୍ଧଭୂମିରେ ତୁମ୍ଭମାନଙ୍କ ସମ୍ମୁଖରେ ରହିବାକୁ ସମର୍ଥ ନୁହନ୍ତି । ତଥାପି ଯୁଦ୍ଧରେ ଜୟଲାଭ କରିବାକୁ ଇଚ୍ଛାକରୁଥିବା ନୀତିଜ୍ଞ ବ୍ୟକ୍ତିର ଅତି ଯତ୍ନ ସହକାରେ ନିଜକୁ ରକ୍ଷା କରିବା ଉଚିତ । କାରଣ ଯୁଦ୍ଧରେ ସିଦ୍ଧିଲାଭ କରିବା ସ୍ଥିର ନୁହେ ।”ଅଗ୍ନିସଦୃଶ ତେଜସ୍ୱୀ ମହାବେଗଶାଳୀ ମହାବିକ୍ରମୀ ସେହି ରାକ୍ଷସମାନେ ପ୍ରଭୁଙ୍କର ବାକ୍ୟକୁ ଗ୍ରହଣକରି ଅତି ବେଗଶାଳୀ ରଥ, ମତ୍ତହସ୍ତୀ, ଅଶ୍ୱ ଓ ବିବିଧ ତୀକ୍ଷ୍ଣ ଅସ୍ତ୍ର ସଙ୍ଗରେ ନେଇ ଏବଂ ସବୁପ୍ରକାର ସୈନ୍ୟସମନ୍ୱିତ ହୋଇ ଯୁଦ୍ଧପାଇଁ ବାହାରିପଡ଼ିଲେ । ଅନନ୍ତର ସେହି ଜାଜ୍ୱଲ୍ୟମାନ ମହାକପିଙ୍କୁ ଦେଖିଲେ । ୧୫-୧୯ । ସେ ନିଜର ତେଜୋରୂପ କିରଣଦ୍ୱାରା ଉଦିତ ସୂର୍ଯ୍ୟସଦୃଶ ତୋରଣ ଉପରେ ବସିରହିଥିଲେ । ସେ ମହାସତ୍ତ୍ୱ ମହାବଳ, ମହାମତି, ମହୋତ୍ସାହୀ, ମହାକାୟ ଏବଂ ମହାଭୁଜବିଶିଷ୍ଟ ଅଟନ୍ତି । ତାହାଙ୍କୁ ଦେଖି ସେମାନେ ସମସ୍ତେ

ତୈସ୍ତ୍ରୈଃ ପ୍ରହରଣୈ ର୍ଭୀମୈରଭିପେତୁସ୍ତତସ୍ତତଃ ।
ତସ୍ୟ ପଞ୍ଚାୟସାସ୍ତୀକ୍ଷ୍ଣାଃ ଶିତା ପୀତମୁଖାଃ ଶରାଃ ।
ଶିରସ୍ୟୁତ୍ପଲପତ୍ରାଭା ଦୁର୍ଧରେଣ ନିପାତିତାଃ । ୨୨ ।
ସ ତୈଃ ପଞ୍ଚଭିରାବିଦ୍ଧଃ ଶରୈଃ ଶିରସି ବାନରଃ ।
ଉତ୍ପପାତ ନଦନ୍ ବ୍ୟୋମ୍ନି ଦିଶୋ ଦଶ ବିନାଦୟନ୍ । ୨୩ ।
ତତସ୍ତୁ ଦୁର୍ଧରୋ'ବୀରଃ ସରଥଃ ସଜ୍ୟକାର୍ମୁକଃ ।
କିରନ୍ ଶରଶତୈର୍ନୈକୈରଭିପେଦେ ମହାବଲଃ । ୨୪ ।
ସ କପିର୍ବାରୟାମାସ ତଂ ବ୍ୟୋମ୍ନି ଶରବର୍ଷିଣମ୍ ।
ବୃଷ୍ଟିମନ୍ତଂ ପୟୋଦାନ୍ତେ ପୟୋଦମିବ ମାରୁତଃ । ୨୫ ।
ଅର୍ଦ୍ୟମାନସ୍ତତସ୍ତେନ ଦୁର୍ଧରେଣାନିଲାତ୍ମଜଃ ।
ଚକାର ନିନଦଂ ଭୂୟୋ ବ୍ୟବର୍ଧତ ଚ ବୀର୍ଯବାନ୍ । ୨୬ ।
ସ ଦୂରଂ ସହସୋତ୍ପତ୍ୟ ଦୁର୍ଧରସ୍ୟ ରଥେ ହରିଃ ।
ନିପପାତ ମହାବେଗୋ ବିଦ୍ୟୁଦ୍ରାଶିର୍ଗିରାବିବ । ୨୭ ।
ତତଃ ସ ମଥିତାଷ୍ଟାଶ୍ୱଂ ରଥଂ ଭଗ୍ନାକ୍ଷକୂବରମ୍ ।
ବିହାୟ ନ୍ୟପତଦ୍ ଭୂମୌ ଦୁର୍ଧରସ୍ତ୍ୟକ୍ତଜୀବିତଃ । ୨୮ ।

---

ସବୁ ଦିଗରେ ଅବସ୍ଥାନ କରି ଘୋର ଆୟୁଧ ଭୀଷଣ ପ୍ରହରଣମାନ ନିକ୍ଷେପ କରିବାକୁ ଲାଗିଲେ । ଦୁର୍ଦ୍ଧର ପାଞ୍ଚ ଗୋଟି ଲୌହନିର୍ମିତ, ସୁଶାଣିତ, ପୀତବର୍ଣ୍ଣ ମୁଖବିଶିଷ୍ଟ, ନୀଳକଇଁ ପାଖୁଡ଼ାପରି ସୁନ୍ଦର ଶର ତାଙ୍କର ମସ୍ତକକୁ ଲକ୍ଷ୍ୟ କରି ନିକ୍ଷେପ କଲା । ୨୦-୨୨ । ସେହି ବାନର ଏହି ପାଞ୍ଚୋଟି ଶରଦ୍ୱାରା ମସ୍ତକରେ ବିଦ୍ଧ ହୋଇ ଚିତ୍କାର ଶବ୍ଦଦ୍ୱାରା ଦଶଦିଗକୁ ନିନାଦିତ କରି ଆକାଶକୁ ଉଠିଗଲା । ୨୩ । ଅନନ୍ତର ବୀର ଦୁର୍ଦ୍ଧର ରଥରେ ବସି ଧନୁକୁ ସୁସଜ୍ଜିତ କରି, ଶତ ଶତ ଶର ବିକୀର୍ଣ୍ଣ କରି ତାଙ୍କ ସମ୍ମୁଖକୁ ଆସିଲା । ୨୪ । ବର୍ଷାକାଳ ଶେଷରେ ପବନ ଯେପରି ଜଳବର୍ଷଣକାରୀ ମେଘକୁ ଅପସାରିତ କରି ଦିଏ, ସେହିପରି ସେହି ବାନର ଶରବର୍ଷୀ ଦୁର୍ଦ୍ଧରକୁ ଆକାଶମାର୍ଗରେ ଥାଇ ପ୍ରତିରୋଧ କଲେ । ୨୫ । ଅନନ୍ତର ବୀର୍ଯ୍ୟଶାଳୀ ପବନନନ୍ଦନ ହନୁମାନ୍ ଦୁର୍ଦ୍ଧର କର୍ତ୍ତୃକ ନିପୀଡ଼ିତ ହୋଇ ପୁନର୍ବାର ଚିତ୍କାରକରି ନିଜ ଶରୀରକୁ ବଢ଼ାଇଲେ ।୨୬। ସେ ମହାବେଗବାନ୍ ବାନର ହଠାତ୍ ବହୁ ଦୂରକୁ ଉଠି ଯାଇ ପର୍ବତ ଉପରେ ବିଦ୍ୟୁତ୍‌ସମଷ୍ଟି ପଡ଼ିଲାପରି ଦୁର୍ଦ୍ଧରର ରଥ ଉପରେ ଆସି ପଡ଼ିଲେ । ୨୭ । ଅନନ୍ତର ରଥର ଅକ୍ଷ ଓ ଜୁଆଳି ଭାଙ୍ଗିଗଲା, ଆଠୋଟି-ଯାକ ଅଶ୍ୱ ଦଳିହୋଇଗଲେ ଏବଂ ଦୁର୍ଦ୍ଧର ସେ ରଥ ଛାଡ଼ି ଦେଇ ପ୍ରାଣତ୍ୟାଗ-

ତଂ ବିରୂପାକ୍ଷଯୂପାକ୍ଷୌ ଦୃଷ୍ଟ୍ୱା ନିପତିତଂ ଭୁବି ।
ତତୌ ଜାତଶ୍ରେଷ୍ଠୌ ଦୁର୍ଧର୍ଷାବୁତ୍ପେତତୁରରିଂଦମୌ । ୨୯ ।
ସ ତାଭ୍ୟାଂ ସହସୋତ୍କ୍ଲୁତ୍ୟ ବିଷ୍ଠିତୋ ବିମଲେଽମ୍ବରେ ।
ମୁଦ୍‌ଗରାଭ୍ୟାଂ ମହାବାହୁର୍ବକ୍ଷସ୍ୟଭିହତଃ କପିଃ । ୩୦ ।
ତୟୋର୍ବେଗବତୋର୍ବେଗଂ ନିହତ୍ୟ ସ ମହାବଳଃ ।
ନିପପାତ ପୁନର୍ଭୂମୌ ସୁପର୍ଣ ଇବ ବେଗିତଃ । ୩୧ ।
ସ ସାଲବୃକ୍ଷମାସାଦ୍ୟ ସମୁତ୍ପାଟ୍ୟ ଚ ବାନରଃ ।
ତାବୁଭୌ ରାକ୍ଷସୌ ବୀରୌ ଜଘାନ ପବନାତ୍ମଜଃ । ୩୨ ।
ତତସ୍ତାଂସ୍ତ୍ରୀନ୍ ହତାନ୍ ଜ୍ଞାତ୍ୱା ବାନରେଣ ତରସ୍ୱିନା ।
ଅଭିଜଗାମ ମହାବେଗଃ ପ୍ରହସ୍ୟ ପ୍ରଘସୋ ବଲୀ । ୩୩ ।
ଭାସକର୍ଣଶ୍ଚ ସଂକ୍ରୁଦ୍ଧଃ ଶୂଳମାଦାୟ ବୀର୍ଯବାନ୍ ।
ଏକତଃ କପିଶାର୍ଦୂଳଂ ଯଶସ୍ୱିନମବସ୍ଥିତଂ । ୩୪ ।
ପଟ୍ଟିସେନ ଶିତାଗ୍ରେଣ ପ୍ରଘସଃ ପ୍ରତ୍ୟପୋଥୟତ୍ ।
ଭାସକର୍ଣଶ୍ଚ ଶୂଳେନ ରାକ୍ଷସଃ କପିକୁଞ୍ଜରମ୍ । ୩୫ ।
ସ ତାଭ୍ୟାଂ ବିକ୍ଷତୈର୍ଗାତ୍ରୈରସୃଗ୍ଦିଗ୍ଧତନୂରୁହଃ ।
ଅଭବଦ୍‌ବାନରଃ କ୍ରୁଦ୍ଧୋ ବାଲସୂର୍ଯସମପ୍ରଭଃ । ୩୬ ।

---

ପୂର୍ବକ ଭୂମିରେ ନିପତିତ ହେଲା । ୨୮ । ଦୁର୍ଦ୍ଧର୍ଷ, ଶତ୍ରୁଦମନକାରୀ ବିରୂପାକ୍ଷ ଓ ଯୂପାକ୍ଷ ଦୁହେଁ ତାହାକୁ ଭୂମିରେ ନିପତିତ ହେବାର ଦେଖି କ୍ରୁଦ୍ଧ ହୋଇ ହନୁମାନଙ୍କୁ ଆକ୍ରମଣ କଲେ । ୨୯ । ମହାବାହୁ ବାନର ନିର୍ମଳ ଆକାଶରେ ଅବସ୍ଥାନ କରୁଥିଲେ । ସେ ଦୁହେଁ ସହସା ଉପରକୁ ଡେଇଁ ତାଙ୍କର ବକ୍ଷସ୍ଥଳକୁ ଦୁଇଟି ମୁଦ୍‌ଗର ଦ୍ୱାରା ଆଘାତ କଲେ । ୩୦ । ମହାବଳୀ ହନୁମାନ୍ ସେହି ବେଗବାନ୍ ରାକ୍ଷସ ଦୁହିଁଙ୍କର ଅସ୍ତ୍ରକୁ ବ୍ୟର୍ଥକରି ପୁନର୍ବାର ଗରୁଡ଼ସଦୃଶ ବେଗରେ ଭୂମିରେ ଆସି ପଡ଼ିଲେ । ୩୧ । ପବନନନ୍ଦନ ବାନର ଗୋଟିଏ ଶାଳବୃକ୍ଷ ନିକଟକୁ ଯାଇ ତାହାକୁ ଉତ୍ପାଟନକରି ସେହି ବୀର ରାକ୍ଷସ ଦୁହିଁଙ୍କୁ ମାରି ପକାଇଲେ । ୩୨ । ବଳଶାଳୀ ବାନରକର୍ତ୍ତୃକ ସେହି ତିନିଜଣ ରାକ୍ଷସ ନିହତ ହେବାର ଜାଣି ବଳବାନ୍ ଓ ମହାବେଗଶାଳୀ ପ୍ରଘସ ହସି ହସି ତାଙ୍କ ନିକଟକୁ ଆସିଲା । ବୀର୍ଯ୍ୟବାନ୍ ଭାସକର୍ଣ୍ଣ ମଧ୍ୟ କ୍ରୁଦ୍ଧ ହୋଇ ଶୂଳ ଧରି ଆସିଲା । ଦୁହେଁ ସେହି ଯଶସ୍ୱୀ ବାନରଶ୍ରେଷ୍ଠଙ୍କର ଗୋଟିଏ ଗୋଟିଏ ପାଖରେ ଠିଆହେଲେ । ୩୩-୩୪ । ପ୍ରଘସ ତୀକ୍ଷ୍ଣାଗ୍ର ପଟ୍ଟିଶ ଦ୍ୱାରା ଏବଂ ରାକ୍ଷସ ଭାସକର୍ଣ୍ଣ ଶୂଳଦ୍ୱାରା ସେହି ବାନର ବୀରଙ୍କୁ ଆଘାତ କଲେ । ୩୫ । ସେମାନଙ୍କ ଦ୍ୱାରା ସମଗ୍ର ଶରୀରରେ କ୍ଷତ ବିକ୍ଷତ ହୋଇ,

ସମୁତ୍ପାଟ୍ୟ ଗିରେଃ ଶୃଙ୍ଗଂ ସମୃଗବ୍ୟାଳପାଦପମ୍ ।
ଜଘାନ ହନୁମାନ୍ ବୀରୋ ରାକ୍ଷସୌ କପିକୁଞ୍ଜରଃ ।
ଗିରିଶୃଙ୍ଗସୁନିଷ୍ପିଷ୍ଟୌ ତିଲଶସ୍ତୌ ବଭୂବତୁଃ । ୩୭ ।
ତତସ୍ତେଷ୍ୱବସନ୍ନେଷୁ ସେନାପତିଷୁ ପଞ୍ଚସୁ ।
ବଲଂ ତଦବଶେଷଂ ତୁ ନାଶୟାମାସ ବାନରଃ । ୩୮ ।
ଅଶ୍ୱୈରଶ୍ୱାନ୍ ଗଜୈର୍ନାଗାନ୍ ଯୋଧୈର୍ଯୋଧାନ୍ ରଥୈରଥାନ୍ ।
ସ କପିର୍ନାଶୟାମାସ ସହସ୍ରାକ୍ଷ ଇବାସୁରାନ୍ । ୩୯ ।
ହତୈର୍ନାଗୈସ୍ତୁରଙ୍ଗୈଶ୍ଚ ଭଗ୍ନାକ୍ଷୈଶ୍ଚ ମହାରଥୈଃ ।
ହତୈଶ୍ଚ ରାକ୍ଷସୈର୍ଭୂମୀ ରୁଦ୍ଧମାର୍ଗା ସମନ୍ତତଃ । ୪୦ ।
ତତଃ କପିସ୍ତାନ୍ଧ୍ୱଜିନୀପତୀନ୍ରଣେ
ନିହତ୍ୟ ବୀରାନ୍ ସବଲାନ୍ ସବାହନାନ୍ ।
ତଥୈବ ବୀରଃ ପରିଗୃହ୍ୟ ତୋରଣମ୍
କୃତକ୍ଷଣଃ କାଲ ଇବ ପ୍ରଜାକ୍ଷୟେ । ୪୧ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ସୁନ୍ଦରକାଣ୍ଡେ ସେନାପତିପଞ୍ଚକବଧୋ ନାମ ଷଟ୍ଚତ୍ୱାରିଂଶଃ ସର୍ଗଃ ।

---

ତାଙ୍କର ଲୋମସବୁ ରକ୍ତଲିପ୍ତ ହୋଇଗଲା ଏବଂ ସେ ବାନର କ୍ରୁଦ୍ଧ ହୋଇ ବାଲସୂର୍ଯ୍ୟ ସଦୃଶ ପ୍ରଭାବିଶିଷ୍ଟ ଦେଖାଗଲେ । ୩୬ । ବାନରଶ୍ରେଷ୍ଠ ବୀର ହନୁମାନ୍ ମୃଗ, ସର୍ପ ଓ ବୃକ୍ଷସହିତ ଗୋଟିଏ ପର୍ବତଶୃଙ୍ଗ ଉତ୍ପାଟନ କରି, ତଦ୍ୱାରା ସେହି ଦୁଇ ରାକ୍ଷସଙ୍କୁ ହତ୍ୟାକଲେ । ସେ ଦୁହେଁ ପର୍ବତଶୃଙ୍ଗ ଦ୍ୱାରା ଦଳିହୋଇ ରାଶିପରି ଚିକି ଚିକି ହୋଇଗଲେ । ୩୭ । ଅନନ୍ତର ସେହି ପାଞ୍ଚୋଟିଯାକ ସେନାପତି ମରିଯିବା ଉତ୍ତାରୁ ବାନର ହନୁମାନ୍ ଅବଶିଷ୍ଟ ସୈନ୍ୟମାନଙ୍କୁ ବିନଷ୍ଟ କରିଦେଲେ । ୩୮ । ଇନ୍ଦ୍ର ଅସୁରମାନଙ୍କୁ ସଂହାର କଲାପରି ସେ ଅଶ୍ୱପ୍ରହାରରେ ଅଶ୍ୱଙ୍କୁ, ଗଜପ୍ରହାରରେ ଗଜଙ୍କୁ, ଯୋଧାଙ୍କ ପ୍ରହାରରେ ଯୋଧାମାନଙ୍କୁ ଓ ରଥ ପ୍ରହାରରେ ରଥମାନଙ୍କୁ ବିନଷ୍ଟ କରିପକାଇଲେ । ୩୯ । ମୃତ ହସ୍ତୀ, ଅଶ୍ୱ, ରାକ୍ଷସ ଏବଂ ଭଗ୍ନ-ଅକ୍ଷ ବିଶାଳ ରଥମାନଙ୍କ ଦ୍ୱାରା ସମାଚ୍ଛନ୍ନ ହୋଇ ଚାରିଆଡ଼େ ପଥ ରୁଦ୍ଧ ହୋଇଗଲା । ୪୦ । ଏହି ସମସ୍ତ ବୀର ସେନାପତିଙ୍କୁ ବଳ ଓ ବାହନ ସହିତ ସଂହାରକରି, ବୀର କପି ତୋରଣ ଉପରେ ବସି ଜନକ୍ଷୟକାରୀ କାଳସଦୃଶ ଅପେକ୍ଷା କରି ରହିଲେ । ୪୧ ।

# ସପ୍ତଚତ୍ୱାରିଂଶ ସର୍ଗଃ

## ଅକ୍ଷକୁମାରବଧଃ

ସେନାପତୀନ୍ ପଞ୍ଚ ସ ତୁ ପ୍ରମାପିତାନ୍
ହନୂମତା ସାନୁଚରାନ୍ ସବାହନାନ୍ ।
ନିଶମ୍ୟ ରାଜା ସମରୋଦ୍ଧତୋନ୍ମୁଖମ୍
କୁମାରମକ୍ଷଂ ପ୍ରସମୈକ୍ଷତାଗ୍ରତଃ । ୧ ।
ସ ତସ୍ୟ ଦୃଷ୍ଟ୍ୟର୍ପଣସଂପ୍ରଚୋଦିତଃ
ପ୍ରତାପବାନ୍ କାଞ୍ଚନଚିତ୍ରକାର୍ମୁକଃ ।
ସମୁତ୍ପପାତାଥ ସଦସ୍ୟୁଦୀରିତୋ
ଦ୍ୱିଜାତିମୁଖ୍ୟୈର୍ହବିଷେବ ପାବକଃ । ୨ ।
ତତୋ ମହାନ୍ ବାଲଦିବାକରପ୍ରଭମ୍ ।
ପ୍ରତପ୍ତଜାମ୍ବୂନଦଜାଲସଂତତମ୍ ।
ରଥଂ ସମାସ୍ଥାୟ ଯଯୌ ସ ବୀର୍ଯ୍ୟବାନ୍
ମହାହରିଂ ତଂ ପ୍ରତି ନୈରୃତର୍ଷଭଃ । ୩ ।

---

## ୪୭ଶ ସର୍ଗ

### (ଅକ୍ଷକୁମାରବଧ)

ହନୁମାନ୍ କର୍ତ୍ତୃକ ପାଞ୍ଚଜଣ ସେନାପତି ବାହନ ଏବଂ ଅନୁଚରବର୍ଗ ସହିତ ନିହତ ହୋଇଥିବାର ଶୁଣି ରାଜା ସମ୍ମୁଖରେ ଅବସ୍ଥିତ, ଯୁଦ୍ଧପାଇଁ ଯିବାକୁ ଉତ୍ସାହ ସହକାରେ ଉଦ୍ୟତ ହୋଇଥିବା କୁମାର ଅକ୍ଷ ଆଡ଼କୁ ଚାହିଁଲେ ।୧। ଯଜ୍ଞଶାଳାରେ ମୁଖ୍ୟ ବ୍ରାହ୍ମଣମାନଙ୍କ କର୍ତ୍ତୃକ ଘୃତାହୁତିଦ୍ୱାରା ବର୍ଦ୍ଧିତ ଅଗ୍ନିପରି ରାବଣର ଦୃଷ୍ଟିପାତ ଦ୍ୱାରା ବିଶେଷ ଉତ୍ସାହିତ ହୋଇ ପ୍ରତାପଶାଳୀ ଅକ୍ଷ ସ୍ୱର୍ଣ୍ଣବିଭୂଷିତ ଧନୁ ଗ୍ରହଣକରି ତତ୍କ୍ଷଣାତ୍ ଉଠି ଠିଆହେଲା । ୨ । ଅନନ୍ତର ସେହି ମହାବୀର୍ଯ୍ୟଶାଳୀ ରାକ୍ଷସଶ୍ରେଷ୍ଠ ତପ୍ତକାଞ୍ଚନଜାଲଶୋଭିତ ଓ ବାଳସୂର୍ଯ୍ୟ ସଦୃଶ ପ୍ରଭାଶାଳୀ ରଥରେ ଆରୋହଣ କରି ସେହି ମହାକପି ଉଦ୍ଦେଶ୍ୟରେ ଗମନ କଲା । ୩ । ତାହାର ଏହି ରଥ ତପ୍ତକାଞ୍ଚନସମୂହରେ ରଚିତ, ବିପୁଳ ତପସ୍ୟା

ତତସ୍ତପଃସଂଗ୍ରହସଂଚୟାର୍ଜିତମ୍
ପ୍ରତପ୍ତଜାମ୍ବୂନଦଜାଲଚିତ୍ରିତମ୍ ।
ପତାକିନଂ ରତ୍ନବିଭୂଷିତଧ୍ୱଜମ୍
ମନୋଜବାଷ୍ଟାଶ୍ୱବରୈଃ ସୁଯୋଜିତମ୍ । ୪ ।
ସୁରାସୁରାଧୃଷ୍ୟମସଙ୍ଗଚାରିଣମ୍
ତଡ଼ିତ୍ପ୍ରଭଂ ବ୍ୟୋମଚରଂ ସମାହିତମ୍ ।
ସତୂଣମଷ୍ଟାସିନିବଦ୍ଧବନ୍ଧୁରମ୍
ଯଥାକ୍ରମାବେଶିତଶକ୍ତିତୋମରମ୍ । ୫ ।
ବିରାଜମାନଂ ପ୍ରତିପୂର୍ଣ୍ଣବସ୍ତୁନା
ସହେମଦାମ୍ନା ଶଶିସୂର୍ଯ୍ୟବର୍ଚ୍ଚସା ।
ଦିବାକରାଭଂ ରଥମାସ୍ଥିତସ୍ତତଃ
ସ ନିର୍ଜଗାମାମରତୁଲ୍ୟବିକ୍ରମଃ । ୬ ।
ସ ପୂରୟନ୍ ଖଂ ଚ ମହୀଂ ଚ ସାଚଲାମ୍
ତୁରଙ୍ଗମାତଙ୍ଗମହାରଥସ୍ୱନୈଃ ।
ବଲୈଃ ସମେତୈଃ ସ ହି ତୋରଣସ୍ଥିତମ୍
ସମର୍ଥମାସୀନମୁପାଗମତ୍କପିମ୍ । ୭।
ସ ତଂ ସମାସାଦ୍ୟ ହରିଂ ହରୀକ୍ଷଣୋ
ଯୁଗାନ୍ତକାଳାଗ୍ନିମିବ ପ୍ରଜାକ୍ଷୟେ ।

---

ସମଷ୍ଟିର ପ୍ରଭାବରେ ଉପାର୍ଜ୍ଜିତ,ରତ୍ନଖଚିତ ଧ୍ୱଜ ଓ ପତାକାରେ ଅଳଂକୃତ, ମନସଦୃଶ ବେଗଶାଳୀ ଆଠଟି ଅଶ୍ୱଙ୍କଦ୍ୱାରା ସୁଯୋଜିତ,ଦେବାସୁରଙ୍କର ଅଜେୟ,ଅବାରିତଗତିବିଶିଷ୍ଟ ବିଦ୍ୟୁତ୍ ସଦୃଶ ପ୍ରଭାସମ୍ପନ୍ନ, ଆଠଗୋଟି ଅସି ଏବଂ ଖଡ଼୍ଗରେ ସୁସଜ୍ଜିତ,ଯଥାସ୍ଥାନରେ ଶକ୍ତି ଓ ତୋମର ସୁନ୍ଦରଭାବରେ ଖଚିତ, ଯୁଦ୍ଧୋପଯୋଗୀ ଉପକରଣମାନଙ୍କରେ ସୁଶୋଭିତ, ଚନ୍ଦ୍ର ଓ ସୂର୍ଯ୍ୟଙ୍କ ସଦୃଶ ଦୀପ୍ତିଶାଳୀ କନକହାରରେ ଶୋଭିତ ଏବଂ ସୂର୍ଯ୍ୟଙ୍କ ସଦୃଶ ପ୍ରଭାସମ୍ପନ୍ନ, ଅମିତପରାକ୍ରମୀ ଅକ୍ଷ ଏତାଦୃଶ ରଥରେ ବସି ବହିର୍ଗତ ହେଲା । ୪—୬ । ସେ ଅଶ୍ୱ, ଗଜ ଏବଂ ବିଶାଳ ରଥଶବ୍ଦରେ ସପର୍ବତ ଭୂମଣ୍ଡଳ ଏବଂ ଆକାଶକୁ ପ୍ରତିଧ୍ୱନିତ କରି ସମବେତ ସୈନ୍ୟମାନଙ୍କ ସହିତ ତୋରଣ ଉପରେ ବସିଥିବା ସୁଦକ୍ଷ ବାନରଶ୍ରେଷ୍ଠ ହନୁମାନଙ୍କ ନିକଟକୁ ଗଲା । ୭ । ପ୍ରଜାମାନଙ୍କ ର ବିନାଶକାଳରେ ପ୍ରଳୟାଗ୍ନି ସଦୃଶ ବସିରହିଥିବା

ଅବସ୍ଥିତଂ ବିସ୍ମିତକାତସଂଭ୍ରମଃ
ସମୈକ୍ଷତାକ୍ଷୋ ବହୁମାନଚକ୍ଷୁଷା । ୮ ।
ସ ତସ୍ୟ ବେଗଂ ଚ କପେର୍ମହାତ୍ମନଃ
ପରାକ୍ରମଂ ଚାରିଷୁ ରାବଣାତ୍ମଜଃ ।
ବିଚାରୟନ୍ ସ୍ୱଂ ଚ ବଲଂ ମହାବଲୋ
ଯୁଗକ୍ଷୟେ ସୂର୍ଯ ଇବାଭିବର୍ଧତେ । ୯ ।
ସ ଜାତମନ୍ୟୁଃ ପ୍ରସମୀକ୍ଷ୍ୟ ବିକ୍ରମମ୍
ସ୍ଥିତଃ ସ୍ଥିରଃ ସଂଯତି ଦୁର୍ନିବାରଣମ୍ ।
ସମାହିତାତ୍ମା ହନୁମନ୍ତମାହବେ
ପ୍ରଚୋଦୟାମାସ ଶିତୈଃ ଶରୈସ୍ତ୍ରିଭିଃ । ୧୦ ।
ତତଃ କପିଂ ତଂ ପ୍ରସମୀକ୍ଷ୍ୟ ଗର୍ବିତମ୍
ଜିତଶ୍ରମଂ ଶତ୍ରୁପରାଜୟୋଚିତମ୍ ।
ଅବୈକ୍ଷତାକ୍ଷଃ ସମୁଦୀର୍ଣମାନସମ୍
ସ ବାଣପାଣିଃ ପ୍ରଗୃହୀତକାର୍ମୁକଃ । ୧୧ ।
ସ ହେମନିଷ୍କାଙ୍ଗଦଚାରୁକୁଣ୍ଡଳଃ
ସମାସସାଦାଶୁପରାକ୍ରମଃ କପିମ୍ ।

---

ହନୁମାନଙ୍କ ନିକଟରେ ପହଞ୍ଚି ସିଂହଲୋଚନ ଅକ୍ଷ ବିସ୍ମୟ ଓ ସଂଭ୍ରମର ବଶବର୍ତ୍ତୀ-ହୋଇ ତାହାଙ୍କୁ ସମ୍ମାନଦୃଷ୍ଟିରେ ନିରୀକ୍ଷଣ କରିବାକୁ ଲଗିଲ । ୮ । ମହାବଳୀ ରାବଣନନ୍ଦନ ଅକ୍ଷ ସେହି ମହାତ୍ମା କପିଙ୍କର ଚତୁର ବେଗ ଏବଂ ପରାକ୍ରମ ତଥା ନିଜର ବଳ ବିଚାରକରି ଯୁଗକ୍ଷୟକାଳୀନ ସୂର୍ଯ୍ୟଙ୍କ ପରି ବର୍ଦ୍ଧିତ ହେବାକୁ ଲଗିଲା ।୯। ସେ ସ୍ଥିରଭାବରେ ଅବସ୍ଥାନ କରି ଓ ତାହାର ବିକ୍ରମ ଦେଖି ଜାତକ୍ରୋଧ ହୋଇ ଯୁଦ୍ଧରେ ଦୁର୍ନିବାରଣୀୟ ହନୁମାନଙ୍କୁ ସମାହିତ ଅନ୍ତଃକରଣରେ ତିନିଗୋଟି ତୀକ୍ଷ୍ଣଶରପ୍ରହାରଦ୍ୱାରା ଯୁଦ୍ଧ କରିବା ନିମନ୍ତେ ପ୍ରୋତ୍ସାହିତ କଲା । । ୧୦ । ସେ ଧନୁ ଓ ଶର ହାତରେ ଧରି ପବନନନ୍ଦନ ହନୁମାନଙ୍କ ଆଡ଼କୁ ଚିନ୍ତାକଲ, "ହନୁମାନ୍ ଶତ୍ରୁକୁ ପରାଜିତ କରିବାର ଯୋଗ୍ୟ ବ୍ୟକ୍ତି । ସେ ଶ୍ରାନ୍ତିକୁ ଜୟକରି ଅଛନ୍ତି । ତାହାଙ୍କର ମନ ଉତ୍ସାହରେ ଉଦ୍ଦୀପିତ ଏବଂ ସେ ଗର୍ବିତ ଦେଖାଯାଉଛନ୍ତି" । ୧୧ । ସୁବର୍ଣ୍ଣ ବକ୍ଷଭୂଷଣ, ଅନନ୍ତ ଏବଂ କୁଣ୍ଡଳ-

ତସ୍ୟୋର୍ବଭୂବାପ୍ରତିମଃ ସମାଗମଃ
ସୁରାସୁରାଣାମପି ସଂଭ୍ରମପ୍ରଦଃ । ୧୨ ।
ରରାସ ଭୂମିର୍ନ ତତାପ ଭାନୁମାନ୍
ବବୌ ନ ବାୟୁଃ ପ୍ରଚଚାଲ ଚାଚଲଃ ।
କପେଃ କୁମାରସ୍ୟ ଚ ବୀକ୍ଷ୍ୟ ସଂଯୁଗମ୍
ନନାଦ ଚ ଦ୍ୟୌରୁଦଧିଶ୍ଚ ଚୁକ୍ଷୁଭେ । ୧୩ ।
ସ ତସ୍ୟ ବୀରଃ ସୁମୁଖାନ୍ ପତତ୍ରିଣଃ
ସୁବର୍ଣ୍ଣପୁଙ୍ଖାନ୍ ସବିଷାନିବୋରଗାନ୍ ।
ସମାଧିସଂଯୋଗବିମୋକ୍ଷତତ୍ତ୍ୱବିଚ୍ଛ
ଶରାନଥ ତ୍ରୀନ୍ କପିମୂର୍ଦ୍ଧ୍ନ୍ୟତାଡ଼ୟତ୍ । ୧୪ ।
ସ ତୈଃ ଶରୈର୍ମୂର୍ଦ୍ଧ୍ନି ସମଂ ନିପାତିତୈଃ
କ୍ଷରନ୍ନସୃଗ୍ଦିଗ୍ଧବିବୃତ୍ତଲୋଚନଃ ।
ନବୋଦିତାଦିତ୍ୟନିଭଃ ଶରାଂଶୁମାନ୍
ବ୍ୟରାଜତାଦିତ୍ୟ ଇବାଂଶୁମାଲିକଃ । ୧୫ ।
ତତଃ ପ୍ଲବଙ୍ଗାଧିପମନ୍ତ୍ରିସତ୍ତମଃ
ସମୀକ୍ଷ୍ୟ ତଂ ରାଜବରାତ୍ମଜଂ ରଣେ ।

---

ଶୋଭିତ ପ୍ରଚଣ୍ଡ ପରାକ୍ରମୀ ଅକ୍ଷ ସେହି କପି ନିକଟରେ ପହଞ୍ଚିଲା । ଅନନ୍ତର ଦେବ ଏବଂ ଅସୁରମାନଙ୍କ ମଧ୍ୟରେ ଭୟ ଜାତ କରାଇବା ଭଳି ସେ ଦୁହିଙ୍କ ମଧ୍ୟରେ ଅତୁଳନୀୟ ଯୁଦ୍ଧ ଆରମ୍ଭ ହେଲା ।୧୨। ବାନର ଏବଂ ଅକ୍ଷକୁମାର ମଧ୍ୟରେ ସେହି ଯୁଦ୍ଧ ଦେଖି ପୃଥିବୀ ଚିତ୍କାର କରି ଉଠିଲା, ସୂର୍ଯ୍ୟ ଉତ୍ତାପ ବିକିରଣ କଲେ ନାହିଁ, ବାୟୁ ପ୍ରବାହିତ ହେଲା ନାହିଁ, ପର୍ବତ ପ୍ରକମ୍ପିତ ହେଲା, ଆକାଶ ଶବ୍ଦରେ ପୂର୍ଣ୍ଣ ହୋଇଗଲା ଏବଂ ସମୁଦ୍ର ବିକ୍ଷୋଭିତ ହୋଇ ଉଠିଲା । ୧୩ । ଅନନ୍ତର ଲକ୍ଷ୍ୟ ନିରୀକ୍ଷଣ, ଶରସନ୍ଧାନ ଓ ଶରମୋକ୍ଷଣରେ ଦକ୍ଷ ବୀର ଅକ୍ଷ ସୁବର୍ଣ୍ଣ ପୁଙ୍ଖଯୁକ୍ତ ସୁନ୍ଦର ମୁଖ ଏବଂ ପକ୍ଷବିଶିଷ୍ଟ ବିଷାକ୍ତ ସର୍ପସଦୃଶ ତିନୋଟି ଶର ସେହି କପି ମସ୍ତକରେ ନିକ୍ଷେପ କଲା । ୧୪ । ଏକ ସଙ୍ଗରେ ନିପାତିତ ସେହି ଶରମାନଙ୍କ-ଦ୍ୱାରା ରକ୍ତଧାର ବହି ହନୂମାନଙ୍କ ଶରୀର ରକ୍ତଲିପ୍ତ ହୋଇଗଲା ଓ ତାହାଙ୍କର ଚକ୍ଷୁ ଘୂର୍ଣ୍ଣିତ ହେବାକୁ ଲାଗିଲା । ସେତେବେଳେ ସେ ଶରରୂପ କିରଣମାଳାରେ ବିଭୂଷିତ ହୋଇ ନବୋଦିତ ରଶ୍ମିମାଳୀ ସୂର୍ଯ୍ୟଙ୍କ ସଦୃଶ ଶୋଭା ପାଇଲେ । ୧୫ । ଅନନ୍ତର ବାନରରାଜ ସୁଗ୍ରୀବଙ୍କର ପ୍ରଧାନ ମନ୍ତ୍ରୀ

ଉଦଗ୍ରଚଣ୍ଡାୟୁଧଚଣ୍ଡକାର୍ମୁକମ୍
ଜହର୍ଷ ଚାପୂର୍ଯ୍ୟତ ଚାହବୋନ୍ମୁଖଃ । ୧୬ ।
ସ ମନ୍ଦରାଗ୍ରସ୍ଥ ଇବାଂଶୁମାଳକୋ
ବିବୃଦ୍ଧକୋପୋ ବଲବୀର୍ଯ୍ୟସଂବୃତଃ ।
କୁମାରମକ୍ଷଂ ସବଲଂ ସବାହନମ୍
ଦଦାହ ନେତ୍ରାଗ୍ନିମରୀଚିଭିସ୍ତଦା । ୧୭ ।
ତତଃ ସ ବାଣାସନଚକ୍ରକାର୍ମୁକଃ
ଶରପ୍ରବର୍ଷୋ ଯୁଧି ରାକ୍ଷସାମ୍ବୁଦଃ ।
ଶରାନ୍ମୁମୋଚାଶୁ ହରୀଶ୍ୱରାଚଲେ
ବଲାହକୋ ବୃଷ୍ଟିମିବାଚଲୋତ୍ତମେ । ୧୮ ।
କପିସ୍ତତସ୍ତଂ ରଣଚଣ୍ଡବିକ୍ରମମ୍
ପ୍ରବୃଦ୍ଧତେଜୋବଲବୀର୍ଯ୍ୟସାୟକମ୍ ।
କୁମାରମକ୍ଷଂ ପ୍ରସମୀକ୍ଷ୍ୟ ସଂଯୁଗେ
ନନାଦ ହର୍ଷାଦ୍‌ଘନତୁଲ୍ୟନିଃସ୍ୱନଃ । ୧୯ ।
ସ ବାଲଭାବାଦ୍‌ଯୁଧି ବୀର୍ଯ୍ୟଦର୍ପିତଃ
ପ୍ରବୃଦ୍ଧମନ୍ୟୁଃ କ୍ଷତଜୋପମେକ୍ଷଣଃ ।

---

ହନୁମାନ୍ ସେହି ରାଜଶ୍ରେଷ୍ଠ ରାବଣର ପୁତ୍ରକୁ ଯୁଦ୍ଧରେ ବିଚିତ୍ର ଧନୁ ଓ ଅସ୍ତ୍ର ଉତ୍ତୋଳିତ କରିଥିବାର ଦେଖି ଆନନ୍ଦିତ ହେଲେ ଏବଂ ଯୁଦ୍ଧୋନ୍ମୁଖ ହୋଇ ନିଜର ଶରୀର ବୃଦ୍ଧିକରିବାକୁ ଲଗିଲେ । ୧୬ । ତାହାଙ୍କର ବଳ, ବୀର୍ଯ୍ୟ ଓ କୋପ ବୃଦ୍ଧି ପାଇବାକୁ ଲାଗିଲା । ସେ ମନ୍ଦର ପର୍ବତଶିଖରସ୍ଥ ସୂର୍ଯ୍ୟସଦୃଶ ଦେଖାଗଲେ ଏବଂ ନିଜର ନେତ୍ରସମୁତ୍ଥିତ ଅଗ୍ନିର କିରଣଦ୍ୱାରା ବଳ ଓ ବାହନ ସହିତ କୁମାର ଅକ୍ଷକୁ ଦଗ୍ଧ କରିବାକୁ ଲାଗିଲେ ।୧୭। ମେଘସମୂହ ଯେପରି ଶ୍ରେଷ୍ଠପର୍ବତ ଉପରେ ବାରିଧାରା ବର୍ଷଣ କରନ୍ତି, ସେହିପରି ସେ ଯୁଦ୍ଧରେ ଶରରୂପ ବୃଷ୍ଟିଯୁକ୍ତ ସେହି ରାକ୍ଷସରୂପୀ ମେଘ ବିଚିତ୍ର ଧନୁରୂପ ଇନ୍ଦ୍ରଧନୁରେ ଶୋଭିତ ହୋଇ ବାନରବରରୂପ ପର୍ବତ ଉପରେ କ୍ଷିପ୍ରଗତିରେ ଶରବର୍ଷଣ କରିବାକୁ ଲାଗିଲା । ୧୮ । ସେହି ରାକ୍ଷସର ବଳ, ତେଜ ବୀର୍ଯ୍ୟ ଏବଂ ଶର ସମସ୍ତ ସମୃଦ୍ଧ ଏବଂ ଯୁଦ୍ଧରେ ତାହାର ବିକ୍ରମ ଅତି ପ୍ରଚଣ୍ଡ । ଯୁଦ୍ଧଭୂମିରେ ଏତାଦୃଶ ଅକ୍ଷକୁ ଦେଖି ସେହି ବାନର ଆନନ୍ଦରେ ମେଘସଦୃଶ ଗର୍ଜ୍ଜନକରି ଚିତ୍କାର କରିବାକୁ ଲାଗିଲେ । ୧୯ । ଯୁଦ୍ଧରେ ବୀର୍ଯ୍ୟଦର୍ପିତ ରକ୍ତଚକ୍ଷୁ

ସମାସସାଦାପ୍ରତିମଂ ରଣେ କପମ୍
ଗତୋ ମହାକୂପମିବାବୃତଂ ତୃଣୈଃ । ୨୦ ।
ସ ତେନ ବାଣୈଃ ପ୍ରସଭଂ ନିପାତିତୈ-
ଶ୍ଚକାର ନାଦଂ ଘନନାଦନିଃସ୍ୱନଃ ।
ସମୁତ୍ପପାତାଶୁ ନଭଃ ସ ମାରୁତି-
ର୍ଭୁଜୋରୁବିକ୍ଷେପଣଘୋରଦର୍ଶନଃ । ୨୧ ।
ତମୁତ୍ପତନ୍ତଂ ସମଭିଦ୍ରବଦ୍‌ବଲୀ
ସ ରାକ୍ଷସାନାଂ ପ୍ରବରଃ ପ୍ରତାପବାନ୍ ।
ରଥୀ ରଥିଶ୍ରେଷ୍ଠତରଃ କିରନ୍ ଶରୈଃ
ପୟୋଧରଃ ଶୈଳମିବାଶ୍ମବୃଷ୍ଟିଭିଃ । ୨୨ ।
ସ ତାଞ୍ଛରାଂସ୍ତସ୍ୟ ହରିର୍ବିମୋକ୍ଷୟନ୍
ଚଚାର ବୀରଃ ପଥି ବାୟୁସେବିତେ ।
ଶରାନ୍ତରେ ମାରୁତବଦ୍ ବିନିଷ୍ପତନ୍
ମନୋଜବଃ ସଂଯତି ଭୀମବିକ୍ରମଃ ।୨୩।
ତମାତ୍ତବାଣାସନମାହବୋନ୍ମୁଖମ୍
ଖମାସ୍ତୃଣନ୍ତଂ ବିବିଧୈଃ ଶରୋତ୍ତମୈଃ ।

---

ଅକ୍ଷ ବାଳସ୍ୱଭାବହେତୁ ଅତିଶୟ ହୃଷ୍ଟହୋଇ, ଗଜ ଯେପରି ତୃଣାବୃତ ମହାକୂପ ନିକଟକୁ ଗମନ କରେ, ସେହିପରି ସେହି ଅତୁଳବିକ୍ରମ ବାନର ନିକଟରେ ଆସି ପହଞ୍ଚିଲା । ୨୦ । ଅନନ୍ତର ସେ ବଳପୂର୍ବକ ବାଣସମୂହ ନିକ୍ଷେପ କରିବାରୁ ମାରୁତି ବାହୁ ଓ ଊରୁବିକ୍ଷେପପୂର୍ବକ ଭୟଙ୍କର ରୂପ ଧରି ତତ୍‌କ୍ଷଣାତ୍ ଉତ୍ସାହସହକାରେ ଆକାଶମଣ୍ଡଳ ସ୍ପର୍ଶକରି ମେଘସଦୃଶ ଗର୍ଜନ କରିବାକୁ ଲାଗିଲେ । ୨୧ । ସେ ଏହିପରି ଆକାଶକୁ ଡେଇଁ ଯିବାବାରୁ ରାକ୍ଷସଶ୍ରେଷ୍ଠ ରଥିପ୍ରଧାନ ପ୍ରତାପଶାଳୀ ବଳବାନ୍ ଅକ୍ଷ ମେଘ କରକାବୃଷ୍ଟିଦ୍ୱାରା ପର୍ବତକୁ ପ୍ରପୀଡ଼ିତ କଲାପରି ଶରରେ ଆଚ୍ଛନ୍ନ କରି ସବେଗରେ ତାହାଙ୍କୁ ଆକ୍ରମଣ କଲା । ୨୨ । ଯୁଦ୍ଧରେ ଭୀମବିକ୍ରମ ଏବଂ ମନସଦୃଶ ବେଗଶାଳୀ ସେହି ବୀର ବାନର ପବନସଦୃଶ ଶରମାନଙ୍କ ମଧ୍ୟବର୍ତ୍ତୀ ବାୟୁସେବିତ ମାର୍ଗରେ ବିଚରଣକରି ସେହି ସମସ୍ତ ଶରକୁ ବ୍ୟର୍ଥ କରିବାକୁ ଲାଗିଲେ । ୨୩ । ଅକ୍ଷ ଧନୁ ଏବଂ ଶର ଧାରଣକରି ଯୁଦ୍ଧୋନ୍ମୁଖ ହୋଇ ନାନା-ପ୍ରକାର ଉତ୍କୃଷ୍ଟ ଶରରାଜିଦ୍ୱାରା ଆକାଶକୁ ଆଚ୍ଛନ୍ନ କରିପକାଇଲା । ପବନନନ୍ଦନ

ଅବେକ୍ଷତାକ୍ଷଂ ବହୁମାନଚକ୍ଷୁଷା
ଜଗାମ ଚିନ୍ତାଂ ସ ଚ ମାରୁତାତ୍ମଜଃ ।୨୪।
ତତଃ ଶରୈର୍ଭିନ୍ନଭୁଜାନ୍ତରଃ କପିଃ
କୁମାରବୀର୍ଯ୍ୟେଣ ମହାତ୍ମନା ନଦନ୍ ।
ମହାଭୁଜଃ କର୍ମବିଶେଷତତ୍ତ୍ୱବିଦ୍-
ବିଚିନ୍ତୟାମାସ ରଣେ ପରାକ୍ରମମ୍ ।୨୫।
ଅବାଲବଦ୍‌ବାଲଦିବାକରପ୍ରଭଃ
କରୋତ୍ୟୟଂ କର୍ମ ମହନ୍ମହାବଲଃ ।
ନ ଚାସ୍ୟ ସର୍ବାହବକର୍ମଶାଳିନଃ
ପ୍ରମାପଣେ ମେ ମତିରତ୍ର ଜାୟତେ ।୨୬।
ଅୟଂ ମହାତ୍ମା ଚ ମହାଂଶ୍ଚ ବୀର୍ଯ୍ୟତଃ
ସମାହିତଶ୍ଚାତିସହଶ୍ଚ ସଂଯୁଗେ ।
ଅସଂଶୟଂ କର୍ମଗୁଣୋଦୟାଦୟମ୍
ସନାଗଯକ୍ଷୈର୍ମୁନିଭିଶ୍ଚ ପୂଜିତଃ ।୨୭।
ପରାକ୍ରମୋତ୍ସାହବିବୃଦ୍ଧମାନସଃ
ସମୀକ୍ଷତେ ମାଂ ପ୍ରମୁଖୋଽଗ୍ରତଃ ସ୍ଥିତଃ ।

---

ଅକ୍ଷଙ୍କୁ ଏହିପରି ଅବସ୍ଥାରେ ଦେଖି, ତାହାପ୍ରତି ସମ୍ମାନସୂଚକ ଦୃଷ୍ଟି ନିକ୍ଷେପକରି ମନେ ମନେ ଚିନ୍ତାକରିବାକୁ ଲାଗିଲେ । ୨୪ । ଅନନ୍ତର ମହାତ୍ମା ବୀର୍ଯ୍ୟବାନ୍ ଅକ୍ଷ ଶରମାନଙ୍କଦ୍ୱାରା ବାନରର ଭୁଜମଧ୍ୟସ୍ଥାନକୁ ବିଦୀର୍ଣ୍ଣ କରିପକାଇବାରୁ, ବିଶିଷ୍ଟ କର୍ମକୁଶଳ ମହାବାହୁ ହନୁମାନ୍ ଗର୍ଜନ କରି ଯୁଦ୍ଧରେ ତାହାର ପରାକ୍ରମ ସମ୍ବନ୍ଧରେ ଚିନ୍ତାକରିବାକୁ ଲାଗିଲେ । ୨୫ । "ଏହି ମହାବଳୀ ମହାତ୍ମା ବାଳସୂର୍ଯ୍ୟ ସଦୃଶ ପ୍ରଭାବିଶିଷ୍ଟ ବାଳକ ବୟସ୍କ ବୀରପରି ପ୍ରଶଂସନୀୟ କାର୍ଯ୍ୟ କରୁଅଛି । ସମସ୍ତ ଯୁଦ୍ଧକାର୍ଯ୍ୟରେ ସୁଦକ୍ଷିତ ଏହାକୁ ଏହିଠାରେ ମାରିଦେବା ପାଇଁ ମୋର ଇଚ୍ଛା ହେଉ ନାହିଁ । ୨୬ । ଏହି ଅକ୍ଷ ମହାତ୍ମା, ବୀର୍ଯ୍ୟରେ ମହାନ୍, ଯୁଦ୍ଧରେ ତତ୍ପର ଏବଂ ଅତିଶୟ କଷ୍ଟସହିଷ୍ଣୁ ଅଟେ । ଏହି ଗୁଣସମ୍ପନ୍ନ କାର୍ଯ୍ୟହେତୁ ଏ ନାଗ, ଯକ୍ଷ ଓ ମୁନିମାନଙ୍କ ଦ୍ୱାରା ପୂଜିତ ହେଉଥିବ, ଏଥିରେ ସନ୍ଦେହ ନାହିଁ ।୨୭। ପରାକ୍ରମ ଏବଂ ଉତ୍ସାହଦ୍ୱାରା ଏହାର ମନ ଅତିଶୟ ଉତ୍ସାହିତ ହୋଇଅଛି ; ସୁତରାଂ ଏ ମୋର ସମ୍ମୁଖରେ ଅବସ୍ଥାନପୂର୍ବକ ମୋ ପ୍ରତି ଦୃଷ୍ଟି ନିକ୍ଷେପ କରୁଅଛି । ଏହି

ପରାକ୍ରମୋ ହ୍ୟସ୍ୟ ମନାଂସି କମ୍ପୟେ-
ତ୍ସୁରାସୁରାଣାମପି ଶୀଘ୍ରକାରିଣଃ । ୨୮ ।
ନ ଖଲ୍ୱୟଂ ନାଭିଭବେଦୁପେକ୍ଷିତଃ
ପରାକ୍ରମୋ ହ୍ୟସ୍ୟ ରଣେ ବିବର୍ଧତେ ।
ପ୍ରମାପଣଂ ହ୍ୟସ୍ୟ ମମାଦ୍ୟ ରୋଚତେ
ନ ବର୍ଧମାନୋଽଗ୍ନିରୁପେକ୍ଷିତୁଂ କ୍ଷମଃ । ୨୯ ।
ଇତି ପ୍ରବେଗଂ ତୁ ପରସ୍ୟ ତର୍କୟନ୍
ସ୍ୱକର୍ମଯୋଗଂ ଚ ବିଧାୟ ବୀର୍ଯବାନ୍ ।
ଚକାର ବେଗଂ ତୁ ମହାବଲସ୍ତଦା
ମତିଂ ଚ ଚକ୍ରେଽସ୍ୟ ବଧେ ମହାକପିଃ ।୩୦।
ସ ତସ୍ୟ ତାନଷ୍ଟୌ ବରାନ୍ମହାହୟାନ୍
ସମାହିତାନ୍ ଭାରସହାନ୍ ବିବର୍ତ୍ତନେ ।
ଜଘାନ ବୀରଃ ପଥି ବାୟୁସେବିତେ
ତଲପ୍ରହାରୈଃ ପବନାତ୍ମଜଃ କପିଃ । ୩୧ ।
ତତସ୍ତଲେନାଭିହତୋ ମହାରଥଃ
ସ ତସ୍ୟ ପିଙ୍ଗାଧିପମନ୍ତ୍ରିନନ୍ଦିତଃ ।

---

ସତ୍ୱରକାର୍ଯ୍ୟକାରୀ ବୀରର ପରାକ୍ରମ ଦେବତା ଓ ଅସୁରମାନଙ୍କର ମନକୁ ମଧ୍ୟ କମ୍ପିତ କରିଦେବ । ୨୮ । ଏହାକୁ ଉପେକ୍ଷା କଲେ, ଏ ଯେ ମୋତେ ନିଶ୍ଚୟ ପରାଭୂତ କରି ନ ଦେବ ତାହା ନୁହେଁ । ଯୁଦ୍ଧରେ ଏହାର ପରାକ୍ରମ ବଢ଼ିବାକୁ ଲାଗିଛି । ବର୍ଦ୍ଧମାନ ଅଗ୍ନିକୁ ଉପେକ୍ଷା କରାଯାଇ ନ ପାରେ । ସୁତରାଂ ଆଜି ଏହାକୁ ମାରିଦେବାକୁ ମୋ ମନକୁ ପାଉଛି" । ୨୯ । ବୀର୍ଯ୍ୟବାନ୍ ମହାବଳୀ ମହାକପି ହନୁମାନ୍ ଏହିପରି ଭାବରେ ଶତ୍ରୁର ପରାକ୍ରମ ଚିନ୍ତାକରି ଏବଂ ନିଜର କର୍ତ୍ତବ୍ୟ ଅବଧାରଣ କରି ବେଗପ୍ରଦର୍ଶନ କଲେ ଏବଂ ତାହାକୁ ବଧ କରିବା ପାଇଁ କୃତସଂକଳ୍ପ ହେଲେ । ୩୦ । ଅନନ୍ତର ପବନନନ୍ଦନ ବୀର ବାନର ବାୟୁସେବିତ ଆକାଶପଥରେ ଅବସ୍ଥାନପୂର୍ବକ ଚପେଟାଘାତଦ୍ୱାରା ତାହାର ଅତି ଉତ୍କୃଷ୍ଟ ଆଠଗୋଟି ମହା ଅଶ୍ୱଙ୍କୁ ସଂହାରକଲେ । ଏହି ଅଶ୍ୱମାନେ ସୁଶିକ୍ଷିତ ଏବଂ ଗୁରୁଭାର ସହିବାକୁ ସକ୍ଷମ । ୩୧ । ବାନରରାଜ ସୁଗ୍ରୀବମନ୍ତ୍ରୀଙ୍କର ଚପେଟାଘାତଦ୍ୱାରା ଆହତ ଓ ପରାଜିତ ହୋଇ ତାହାର ସେହି ବିଶାଳ ରଥର ଅଭ୍ୟନ୍ତରସ୍ଥିତ ରଥୀର

ସ ଭଗ୍ନନୀଡ଼ଃ ପରିବୃତ୍ତକୂବରଃ
ପପାତ ଭୂମୌ ହତବାଜିରମ୍ବରାତ୍ । ୩୨ ।
ସ ତଂ ପରିତ୍ୟଜ୍ୟ ମହାରଥୋ ରଥମ୍
ସକାର୍ମୁକଃ ଖଡ଼୍‌ଗଧରଃ ସମୁତ୍ପତନ୍ ।
ତତୋଽଭିଯୋଗାଦୃଷିରୁଗ୍ରବୀର୍ଯ୍ୟବାନ୍
ବିହାୟ ଦେହଂ ମରୁତାମିବାଲୟମ୍ । ୩୩ ।
କପିସ୍ତତସ୍ତଂ ବିଚରନ୍ତମମ୍ବରେ
ପତତ୍ରିରାଜାନିଲସିଦ୍ଧସେବିତେ ।
ସମେତ୍ୟ ତଂ ମାରୁତବେଗବିକ୍ରମଃ
କ୍ରମେଣ ଜଗ୍ରାହ ଚ ପାଦୟୋର୍ଦୃଢ଼ମ୍ । ୩୪ ।
ସ ତଂ ସମାବିଧ୍ୟ ସହସ୍ରଶଃ କପି-
ର୍ମହୋରଗଂ ଗୃହ୍ୟ ଇବାଣ୍ଡଜେଶ୍ୱରଃ ।
ମୁମୋଚ ବେଗାତ୍ପିତୃତୁଲ୍ୟବିକ୍ରମୋ
ମହୀତଳେ ସଂଯତି ବାନରୋତ୍ତମଃ । ୩୫ ।
ସ ଭଗ୍ନବାହୂରୁକଟୀଶିରୋଧରଃ
କ୍ଷରନ୍ନସୃଙ୍‌ନିର୍ମଥିତାସ୍ଥିଲୋଚନଃ ।

---

ବସିବା ସ୍ଥାନ ଭାଙ୍ଗିଗଲା, ଜୁଆଳି ଯୋଖ୍ହେବା ଦଣ୍ଡ ଖସିଗଲା, ଘୋଡ଼ାମାନେ ମରିଗଲେ ଏବଂ ସେ ରଥ ଆକାଶରୁ ଭୂମିରେ ପଡ଼ିଗଲା । ୩୨ । ଉଗ୍ରବୀର୍ଯ୍ୟ ଋଷି ଯେପରି ତପୋବଳରେ ଦେହତ୍ୟାଗ କରି ମରୁତମାନଙ୍କ ସ୍ଥାନକୁ ଗମନ କରନ୍ତି, ସେହିପରି ମହାରଥୀ ଅକ୍ଷ ସେହି ରଥକୁ ପରିତ୍ୟାଗ କରି ଧନୁ ଏବଂ ଖଡ଼୍‌ଗ ଧରି ଆକାଶକୁ ଡେଇଁପଡ଼ିଲା । ୩୩ । ସେ ଏହିପରିଭାବରେ ପକ୍ଷିରାଜ ଗରୁଡ଼, ପବନ ଏବଂ ସିଦ୍ଧଗଣସେବିତ ଆକାଶପଥରେ ବିଚରଣ କରୁଥିବାବେଳେ, ବାୟୁସଦୃଶ ବେଗ ଓ ବିକ୍ରମସମ୍ପନ୍ନ ହନୂମାନ୍ ତାହା ନିକଟକୁ ଯାଇ, କ୍ରମେ କ୍ରମେ ଦୃଢ଼ଭାବରେ ତାହାର ଦୁଇ ପାଦକୁ ଧରିଲେ । ୩୪ । ପକ୍ଷିରାଜ ଗରୁଡ଼ ଯେପରି ମହାସର୍ପକୁ ଧାରଣ କରେ, ସେହିପରି ଅକ୍ଷକୁ ଧରି ସହସ୍ରବାର ସବେଗରେ ବୁଲାଇ, ପିତୃସମାନ ବୀର୍ଯ୍ୟବାନ୍ ମହାକପି ତାହାକୁ ଯୁଦ୍ଧରେ ଭୂତଳରେ ନିକ୍ଷେପକଲେ । ୩୫ । ତାହାର ବାହୁ, ଉରୁ, କଟି, ଏବଂ ଗ୍ରୀବା ଭାଙ୍ଗିଗଲା, ଚକ୍ଷୁ ଏବଂ ଅସ୍ଥି ଦଳି ହୋଇଗଲା, ସନ୍ଧିସକଳ ଭିନ୍ନ ଭିନ୍ନ ଏବଂ ସନ୍ଧିବନ୍ଧନମାନ ବିକ୍ଷିପ୍ତ ହୋଇଗଲା

ସଂଭିନ୍ନସନ୍ଧିଃ ପ୍ରବିକୀର୍ଣବନ୍ଧନୋ
ହତଃ କ୍ଷିତୌ ବାୟୁସୁତେନ ରାକ୍ଷସଃ । ୩୬ ।
ମହାକପିର୍ଭୂମିତଲେ ନପୀଡ୍ୟ ତମ୍
ଚକାର ରକ୍ଷୋଽଧିପତେର୍ମହଦ୍ଭୟମ୍ ।
ମହର୍ଷିଭିଶ୍ଚକ୍ରଚରୈଃ ସମାଗତୈଃ
ସମେତ୍ୟ ଭୂତୈଶ୍ଚ ସଯକ୍ଷପନ୍ନଗୈଃ ।
ସୁରୈଶ୍ଚ ଚ ସେନ୍ଦ୍ରୈ ର୍ଭୃଶଜାତବିସ୍ମୟୈ-
ର୍ହତେ କୁମାରେ ସ କପିର୍ନିରୀକ୍ଷିତଃ । ୩୭ ।
ନିହତ୍ୟ ତଂ ବଜ୍ରିସୁତୋପମଂ ରଣେ
କୁମାରମକ୍ଷଂ କ୍ଷତଜୋପମେକ୍ଷଣମ୍ ।
ତଦେବ ବୀରୋଽଭିଜଗାମ ତୋରଣମ୍
କୃତକ୍ଷଣଃ କାଲ ଇବ ପ୍ରଜାକ୍ଷୟେ । ୩୮ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ସୁନ୍ଦରକାଣ୍ଡେ ଅକ୍ଷକୁମାରବଧୋ ନାମ ସପ୍ତଚତ୍ୱାରିଂଶଃ ସର୍ଗଃ ।

---

ଏବଂ ତାହାର ଶରୀରରୁ ରକ୍ତ ଗଡ଼ିବାକୁ ଲାଗିଲା । ଏହିପରିଭାବରେ ସେ ରାକ୍ଷସ ଅକ୍ଷ ପବନନନ୍ଦନଙ୍କଦ୍ୱାରା ନିହତ ହୋଇ ଭୂତଳରେ ନିପତିତ ହେଲା । । ୩୬ । ମହାକପି ହନୁମାନ୍ ଭୂମିତଳରେ ତାହାକୁ ନିଷ୍ପେଷିତ କରି ରାକ୍ଷସାଧିପତି ରାବଣର ଅତିଶୟ ଭୟ ଉତ୍ପାଦନ କରାଇଲେ । କୁମାର ଅକ୍ଷ ନିହତ ହେବାରୁ ମହର୍ଷିଗଣ, ଜ୍ୟୋତିଶ୍ଚକ୍ରଚାରୀ ଗ୍ରହନକ୍ଷତ୍ରଗଣ, ଯକ୍ଷ-ପନ୍ନଗଗଣ ଏବଂ ଇନ୍ଦ୍ରଙ୍କ ସହିତ ଦେବଗଣ ସମାଗତ ହୋଇ ବିସ୍ମୟ ସହକାରେ ହନୁମାନଙ୍କୁ ନିରୀକ୍ଷଣ କରିବାକୁ ଲାଗିଲେ । ୩୭ । ଇନ୍ଦ୍ରପୁତ୍ର ସଦୃଶ ପରାକ୍ରମୀ, ରକ୍ତଚକ୍ଷୁବିଶିଷ୍ଟ କୁମାର ଅକ୍ଷଙ୍କୁ ଯୁଦ୍ଧରେ ସଂହାରକରି ବୀର ହନୁମାନ୍, ଲୋକକ୍ଷୟ କରିବା ପାଇଁ ସମୟ ପ୍ରତୀକ୍ଷା କରି ରହିଥିବା କାଳସଦୃଶ ପୁଣି ସେହି ତୋରଣ ଉପରେ ଯାଇ ବସିଲେ । ୩୮ ।

---

# ଅଷ୍ଟଚତ୍ୱାରିଂଶଃ ସର୍ଗଃ

## ଇନ୍ଦ୍ରଜିଦଭିଯୋଗଃ

ତତସ୍ତୁ ରକ୍ଷୋଽଧିପତିର୍ମହାତ୍ମା
ହନୂମତାକ୍ଷେ ନିହତେ କୁମାରେ ।
ମନଃ ସମାଧାୟ ସ ଦେବକଳ୍ପମ୍
ସମାଦିଦେଶେନ୍ଦ୍ରଜିତଂ ସରୋଷଃ । ୧ ।
ତ୍ୱମସ୍ତ୍ରବିଚ୍ଛସ୍ତ୍ରଭୃତାଂ ବରିଷ୍ଠଃ
ସୁରାସୁରାଣାମପି ଶୋକଦାତା ।
ସୁରେଷୁ ସେନ୍ଦ୍ରେଷୁ ଚ ଦୃଷ୍ଟକର୍ମା
ପିତାମହାରାଧନସଂଚିତାସ୍ତ୍ରଃ । ୨ ।
ତ୍ୱଦସ୍ତ୍ରବଲମାସାଦ୍ୟ ସସୁରାଃ ସମରୁଦ୍‌ଗଣାଃ ।
ନ ଶେକୁଃ ସମରେ ସ୍ଥାତୁଂ ସୁରେଶ୍ୱରସମାଶ୍ରିତାଃ । ୩ ।
ନ କଶ୍ଚିତ୍ତ୍ରିଷୁ ଲୋକେଷୁ ସଂଯୁଗେ ନ ଗତଶ୍ରମଃ ।
ଭୁଜବୀର୍ଯାଭିଗୁପ୍ତଶ୍ଚ ତପସା ଚାଭିରକ୍ଷିତଃ ।
ଦେଶକାଳପ୍ରଧାନଶ୍ଚ ତ୍ୱମେବ ମତିସତ୍ତମଃ । ୪ ।

---

## ୪୮ଶ ସର୍ଗ

(ଇନ୍ଦ୍ରଜିତର ଆକ୍ରମଣ)

ହନୁମାନ୍‌ କୁମାର ଅକ୍ଷକୁ ନିହତ କରିବାରୁ ରାକ୍ଷସାଧିପତି ମହାତ୍ମା ରାବଣ ମନକୁ ପ୍ରକୃତିସ୍ଥ କରି ଦେବକଳ୍ପ ଇନ୍ଦ୍ରଜିତକୁ କ୍ରୋଧରେ ଆଦେଶ ଦେଲେ ।୧। "ତୁମ୍ଭେ ସମୁଦାୟ ଅସ୍ତ୍ରବିତ୍‌ ଏବଂ ଶସ୍ତ୍ରଧାରୀମାନଙ୍କର ଅଗ୍ରଗଣ୍ୟ, ଦେବତା ଏବଂ ଅସୁର-ମାନଙ୍କର ଶୋକଦାତା; ଇନ୍ଦ୍ର ପ୍ରଭୃତି ଦେବତାମାନେ ମଧ୍ୟ ତୁମ୍ଭର କାର୍ଯ୍ୟ ଦେଖିଛନ୍ତି ଏବଂ ତୁମ୍ଭେ ପିତାମହ ବ୍ରହ୍ମାଙ୍କୁ ଆରାଧନା କରି ଅସ୍ତ୍ରଲାଭ କରିଅଛ । ୨ । ତୁମ୍ଭର ଅସ୍ତ୍ର-ବଳଦ୍ୱାରା ଆକ୍ରାନ୍ତ ହୋଇ ଦେବରାଜ ଇନ୍ଦ୍ରଙ୍କ ଆଶ୍ରିତ ମରୁଦ୍‌ଗଣ ଏବଂ ଦେବଗଣ ମଧ୍ୟ ଯୁଦ୍ଧରେ ଥୟ ହୋଇ ରହିବାକୁ ସମର୍ଥ ହୋଇ ନ ଥିଲେ । ୩ । ତୁମ୍ଭ ବ୍ୟତୀତ ତ୍ରିଲୋକରେ ଏପରି କିଏ ନାହିଁ, ଯେ ଯୁଦ୍ଧରେ କ୍ଳାନ୍ତ ହୋଇପଡ଼େ ନାହିଁ । ତୁମ୍ଭେ ସ୍ୱୀୟ ବାହୁବୀର୍ଯ୍ୟ ଏବଂ ତପୋବଳରେ ସର୍ବତୋଭାବରେ ସୁରକ୍ଷିତ, ଅସାମାନ୍ୟ ବୁଦ୍ଧିମାନ୍‌ ଓ ଦେଶ-କାଳ-ବିବେଚନାରେ ପ୍ରଧାନ ଅଛ । ୪ ।

ନ ତେଽସ୍ତ୍ୟଶକ୍ୟଂ ସମରେଷୁ କର୍ମଣାମ୍
ନ ତେଽସ୍ତ୍ୟକାର୍ଯ୍ୟଂ ମତିପୂର୍ବମନ୍ତ୍ରଣେ ।
ନ ସୋଽସ୍ତି କଶ୍ଚିତ୍ତ୍ରିଷୁ ସଂଗ୍ରହେଷୁ ବୈ
ନ ବେଦ ଯସ୍ତେଽସ୍ତ୍ରବଲଂ ବଲଂ ଚ ତେ । ୫ ।
ମମାନୁରୂପଂ ତପସୋ ବଲଂ ଚ ତେ
ପରାକ୍ରମଶ୍ଚାସ୍ତ୍ରବଲଂ ଚ ସଂଯୁଗେ ।
ନ ତ୍ୱାଂ ସମାସାଦ୍ୟ ରଣାବମର୍ଦେ
ମନଃ ଶ୍ରମଂ ଗଚ୍ଛତି ନିଶ୍ଚିତାର୍ଥମ୍ । ୬ ।
ନିହତାଃ କିଙ୍କରାଃ ସର୍ବେ ଜମ୍ବୁମାଲୀ ଚ ରାକ୍ଷସଃ ।
ଅମାତ୍ୟପୁତ୍ରା ବୀରାଶ୍ଚ ପଞ୍ଚ ସେନାଗ୍ରଗାମିନଃ । ୭ ।
ବଲାନି ସୁସମୃଦ୍ଧାନି ସାଶ୍ୱନାଗରଥାନି ଚ ।
ସହୋଦରସ୍ତେ ଦୟିତଃ କୁମାରୋଽକ୍ଷଶ୍ଚ ସୂଦିତଃ ।
ନ ତୁ ତେଷ୍ୱେବ ମେ ସାରୋ ଯସ୍ତ୍ୱୟ୍ୟରିନିଷୂଦନ ! ।୮।
ଇଦଂ ଚ ଦୃଷ୍ଟ୍ୱା ନିହତଂ ମହଦ୍ବଲମ୍
କପେଃ ପ୍ରଭାବଂ ଚ ପରାକ୍ରମଂ ଚ ।
ତ୍ୱମାତ୍ମନଶ୍ଚାପି ନିରୀକ୍ଷ୍ୟ ସାରମ୍
କୁରୁଷ୍ୱ ବେଗଂ ସ୍ୱବଲାନୁରୂପମ୍ । ୯ ।

---

ଯୁଦ୍ଧରେ ଏପରି କୌଣସି କାର୍ଯ୍ୟ ନାହିଁ, ଯାହା ତୁମେ କରିବାକୁ ଅସମର୍ଥ । ବୁଦ୍ଧି-ପୂର୍ବକ ମନ୍ତ୍ରଣା କରିବାରେ ତୁମ୍ଭର ଅସାଧ କିଛି ନାହିଁ । ତିନି ଭୁବନରେ ଏପରି କେହି ନାହିଁ, ଯେଉଁ ବ୍ୟକ୍ତିକୁ ତୁମ୍ଭର ଅସ୍ତ୍ରବଳ ଏବଂ ବାହୁବଳ ବିଦିତ ନୁହେ । ୫ । ତୁମ୍ଭର ତପସ୍ୟାର ବଳ, ପରାକ୍ରମ ଏବଂ ଯୁଦ୍ଧରେ ଅସ୍ତ୍ରବଳ—ଏ ସମସ୍ତ ମୋହରି ଅନୁରୂପ ଅଟେ । ତୁମ୍ଭେ ରଣକ୍ଷେତ୍ରରେ ଉପସ୍ଥିତ ଥିଲେ ଜୟ ନିଶ୍ଚୟ ହେବ ଜାଣି, ମୋର ମନ ଆଦୌ ଉଦ୍‌ବିଗ୍ନ ହୁଏ ନାହିଁ । ୬ । କିଙ୍କରମାନେ ସମସ୍ତେ, ରାକ୍ଷସ ଜମ୍ବୁମାଳୀ, ବୀର ମନ୍ତ୍ରୀପୁତ୍ରମାନେ ଓ ପାଞ୍ଚଜଣ ସେନାପତି ନିହତ ହୋଇଅଛନ୍ତି । ୭ । ଅଶ୍ୱ, ରଥ ଏବଂ ହସ୍ତୀ ସହିତ ପରମସମୃଦ୍ଧିଶାଳୀ ସୈନ୍ୟବାହିନୀ ଏବଂ ତୁମ୍ଭର ସହୋଦର କୁମାର ଅକ୍ଷ ମଧ୍ୟ ନିହତ ହୋଇ ଶୋଇଛନ୍ତି; କିନ୍ତୁ ହେ ଶତ୍ରୁସୂଦନ ! ସେମାନଙ୍କୁ ମୁଁ ତୁମପରି ବଳବାନ୍ ବୋଲି ମନେକରେ ନାହିଁ । ୮ । ଏବେ ଏ ବାନରର ପ୍ରଭାବ ଓ ପରାକ୍ରମ ଏବଂ ତୁମ୍ଭର ନିଜର ବଳ ଏବଂ ଏହି ମହତୀ ସେନାର

ବଲାବମର୍ଦ୍ଦୈସ୍ତ୍ୱୟି ସଂନକୃଷ୍ଟେ
ଯଥାଗତେ ଶାମ୍ୟତି ଶାନ୍ତଶତ୍ରୁଃ ।
ତଥା ସମୀକ୍ଷ୍ୟାତ୍ମବଲଂ ପରଂ ଚ
ସମାରଭସ୍ୱାସ୍ତ୍ରଭୃତାଂ ବରିଷ୍ଠ ! । ୧୦ ।
ନ ବୀର ! ସେନାଗଣ ଶୋଚ୍ୟବନ୍ତି
ନ ବଜ୍ରମାଦାୟ୍ୟ ବିଶାଲସାରମ୍ ।
ନ ମାରୁତସ୍ୟାସ୍ତି ଗତପ୍ରମାଣମ୍
ନ ଚାଗ୍ନିକଲ୍ପଃ କରଣେନ ହନ୍ତୁମ୍ । ୧୧ ।
ତମେବମର୍ଥଂ ପ୍ରସମୀକ୍ଷ୍ୟ ସମ୍ୟକ୍
ସ୍ୱକର୍ମସାମ୍ୟାଦ୍ଧି ସମାହିତାତ୍ମା ।
ସ୍ମରଂଶ୍ଚ ଦିବ୍ୟଂ ଧନୁଷୋଽସ୍ୟ ବୀର୍ଯ୍ୟମ୍
ବ୍ରଜାକ୍ଷତଂ କର୍ମ ସମାରଭସ୍ୱ । ୧୨ ।
ନ ଖଲ୍ୱୟଂ ମତିଃ ଶ୍ରେଷ୍ଠା ଯତ୍ତ୍ୱାଂ ସଂପ୍ରେଷୟାମ୍ୟହମ୍ ।
ଇୟଂ ଚ ରାଜଧର୍ମାଣାଂ କ୍ଷତ୍ରସ୍ୟ ଚ ମତିର୍ମତା । ୧୩ ।
ନାନାଶାସ୍ତ୍ରେଷୁ ସଂଗ୍ରାମେ ବୈଶାରଦ୍ୟମରିଂଦମ !
ଅବଶ୍ୟମେବ ବୋଦ୍ଧବ୍ୟଂ କାମ୍ୟଶ୍ଚ ବିଜୟୋ ରଣେ । ୧୪ ।

---

ସ୍ୱୟଂ ଇତ୍ୟାଦି ବିଷୟ ପର୍ଯ୍ୟାଲୋଚନା କରି ତୁମ୍ଭେ ନିଜ କ୍ଷମତାର ଅନୁରୂପ ବଳ ଦେଖାଅ । ୯ । ହେ ଅସ୍ତ୍ରଧାରିଶ୍ରେଷ୍ଠ ! ତୁମ୍ଭେ ଯୁଦ୍ଧାର୍ଥେ ନିର୍ଗତ ଏବଂ ଶତ୍ରୁର ନିକଟବର୍ତ୍ତୀ ହେଲେ ଯେପରି ସେନାନାଶ ନ ହୁଏ ଏବଂ ଶତ୍ରୁ ଶାନ୍ତ ହୋଇଯାଏ, ତଦନୁରୂପ ଆତ୍ମବଳ ଓ ଶତ୍ରୁର ବଳ ଦେଖି କାର୍ଯ୍ୟରେ ପ୍ରବୃତ୍ତ ହେବ । ୧୦ । ହେ ବୀର ! ସଙ୍ଗରେ ସୈନ୍ୟ ନେବାର ପ୍ରୟୋଜନ ନାହିଁ, କାରଣ ସୈନ୍ୟମାନେ ଦଳ ଦଳ ହୋଇ ଖସି ପଳାଇଯାନ୍ତି; ଅତି ଶକ୍ତିଶାଳୀ ବଜ୍ର ନେବାରେ ମଧ୍ୟ କିଛି ପ୍ରୟୋଜନ ନାହିଁ । ପବନନନ୍ଦନ ହନୂମାନର ବଳର ସୀମା ନାହିଁ । ଏହି ଅଗ୍ନିତୁଲ୍ୟ ବାନରକୁ କୌଣସି ଶସ୍ତ୍ରାଦି ଉପକରଣ ଦ୍ୱାରା ସଂହାର କରିବା ଦୁଃସାଧ୍ୟ ଅଟେ । ମୁଁ ଯାହା କହିଲି ତାହା ସମ୍ୟକ୍ ବିବେଚନା କରି ନିଜ କାର୍ଯ୍ୟ ସାଧନାରେ ମନୋନିବେଶପୂର୍ବକ ଓ ଏହି ଧନୁର ଦିବ୍ୟ ଅସ୍ତ୍ରବୀର୍ଯ୍ୟ ସ୍ମରଣପୂର୍ବକ ଯାଅ ଏବଂ ଅକ୍ଷତଭାବରେ କାର୍ଯ୍ୟ ଆରମ୍ଭକର । ୧୧-୧୨ । ତୁମ୍ଭଙ୍କୁ ଯେ ମୁଁ ଯୁଦ୍ଧ ନିମନ୍ତେ ପ୍ରେରଣ କରୁଛି, ଏହା ମୋର ଉତ୍କୃଷ୍ଟ ବିଚାର ବୋଲି ଭାବୁ ନାହିଁ; ମାତ୍ର ରାଜଧର୍ମ ଓ କ୍ଷତ୍ରିୟଧର୍ମର ଏହା ଉପଯୁକ୍ତ ପନ୍ଥା ବୋଲି ମୋର ମନେହୁଏ । ୧୩ । ହେ ଅରିନ୍ଦମ ! ବିବିଧଶାସ୍ତ୍ରରେ ଏବଂ ଯୁଦ୍ଧରେ ସବିଶେଷ ନିପୁଣତା ଲାଭ କରିବା

ତତଃ ପିତୁସ୍ତଦ୍‌ବଚନଂ ନିଶମ୍ୟ
ପ୍ରଦକ୍ଷିଣଂ ଦକ୍ଷସୁତପ୍ରଭାବଃ ।
ଚକାର ଭର୍ତାରମତତ୍ୱରେଣ
ରଣାୟ ବୀରଃ ପ୍ରତିପନ୍ନବୁଦ୍ଧିଃ । ୧୫ ।
ତତସ୍ତୈଃ ସ୍ୱଗଣୈରିଷ୍ଟୈରିନ୍ଦ୍ରଜିତ୍ ପ୍ରତିପୂଜିତଃ ।
ଯୁଦ୍ଧୋଦ୍ଧତଃ କୃତୋତ୍ସାହଃ ସଂଗ୍ରାମଂ ସମ୍ପ୍ରପଦ୍ୟତେ । ୧୬ ।
ଶ୍ରୀମାନ୍ ପଦ୍ମବିଶାଳାକ୍ଷୋ ରାକ୍ଷସାଧିପତେଃ ସୁତଃ ।
ନିର୍ଜଗାମ ମହାତେଜାଃ ସମୁଦ୍ର ଇବ ପର୍ବସୁ । ୧୭ ।
ସ ପକ୍ଷିରାଜାନିଲତୁଲ୍ୟବେଗୈ -
ର୍ବ୍ୟାଳୈଶ୍ଚତୁର୍ଭିଃ ସ ତୁ ତୀକ୍ଷ୍ଣଦଂଷ୍ଟ୍ରୈଃ ।
ରଥଂ ସମାଯୁକ୍ତମସହ୍ୟବେଗଃ ।
ସମାରୁରୋହେନ୍ଦ୍ରଜିଦିନ୍ଦ୍ରକଳ୍ପଃ । ୧୮ ।
ସ ରଥୀ ଧନ୍ୱିନାଂ ଶ୍ରେଷ୍ଠଃ ଶସ୍ତ୍ରଜ୍ଞୋଽସ୍ତ୍ରବିଦାଂ ବରଃ ।
ରଥେନାଭିଯଯୌ କ୍ଷିପ୍ରଂ ହନୂମାନ୍ ଯତ୍ର ସୋଽଭବତ୍ । ୧୯ ।
ସ ତସ୍ୟ ରଥନିର୍ଘୋଷଂ ଜ୍ୟାସ୍ୱନଂ କାର୍ମୁକସ୍ୟ ଚ ।
ନିଶମ୍ୟ ହରିବୀରୋଽସୌ ସଂପ୍ରହୃଷ୍ଟତରୋଽଭବତ୍ । ୨୦ ।

---

କର୍ତ୍ତବ୍ୟ ଏବଂ ଯୁଦ୍ଧରେ ବିଜୟଲାଭ କରିବା ସେ ବାଞ୍ଛନୀୟ ଏହା ଅବଶ୍ୟ ବୁଝିବା ଉଚିତ" । ୧୪ । ଦକ୍ଷପୁତ୍ରଙ୍କ ପରି ପ୍ରଭାବଶାଳୀ ଇନ୍ଦ୍ରଜିତ ପିତାଙ୍କ ବାକ୍ୟ ଶ୍ରବଣକରି ଯୁଦ୍ଧପାଇଁ ଯିବାକୁ କୃତନିଶ୍ଚୟ ହୋଇ ଅତି ସତ୍ୱର ପ୍ରଭୁଙ୍କୁ ପ୍ରଦକ୍ଷିଣ କଲା । ୧୫ । ଅନନ୍ତର ଯୁଦ୍ଧୋଦ୍ୟତ, ଉତ୍ସାହସମ୍ପନ୍ନ ଇନ୍ଦ୍ରଜିତ ନିଜ ପ୍ରିୟ ସୈନ୍ୟମାନଙ୍କ ଦ୍ୱାରା ସମ୍ମାନିତ ହୋଇ,ଯୁଦ୍ଧକୁ ଗମନକଲା ।୧୬ ପୂର୍ଣ୍ଣିମା ସମୟରେ ସମୁଦ୍ର ଯେପରି ସ୍ଫୀତ ହୁଏ; ରାକ୍ଷସାଧିପତିର ପୁତ୍ର, ଶ୍ରୀମାନ୍ ପଦ୍ମପଲାଶଲୋଚନ, ପରମତେଜସ୍ୱୀ ଇନ୍ଦ୍ରଜିତ ସେହିପରି ଉତ୍ସାହସ୍ଫୀତ ହୋଇ ନିଷ୍କ୍ରାନ୍ତ ହେଲା । ୧୭ । ଅନନ୍ତର ଇନ୍ଦ୍ରତୁଲ୍ୟ ଅସହ୍ୟବେଗ ଇନ୍ଦ୍ରଜିତ ପକ୍ଷିରାଜ ଗରୁଡ଼ ଏବଂ ପବନସଦୃଶ ବେଗଶାଳୀ ତୀକ୍ଷ୍ଣଦନ୍ତବିଶିଷ୍ଟ ଚାରିଗୋଟି ବ୍ୟାଘ୍ର ସଂଯୋଜିତ ରଥରେ ଆରୋହଣ କଲା । ୧୮ । ଧନୁର୍ଦ୍ଧାରୀମାନଙ୍କ ମଧ୍ୟରେ ଶ୍ରେଷ୍ଠ ଏବଂ ପ୍ରଧାନ ଅସ୍ତ୍ରବିତ୍, ଶସ୍ତ୍ରଜ୍ଞାନସମ୍ପନ୍ନ, ରଥୀ ଇନ୍ଦ୍ରଜିତ ରଥରେ ଚଢ଼ି ହନୁମାନ୍ ଯେଉଁଠାରେ ଥିଲେ ସେହି ସ୍ଥାନକୁ ସତ୍ୱର ଗମନକଲା । ୧୯ । ବାନରବୀର ହନୁମାନ୍ ତାହାର ରଥଗର୍ଜ୍ଜନ ଏବଂ ଧନୁର ଜ୍ୟାଶବ୍ଦ ଶୁଣି ଅତିଶୟ ଆନନ୍ଦିତ

ଇନ୍ଦ୍ରଜିଚାପମାଦାୟ ଶିତଶଲ୍ୟାଂଶ୍ଚ ସାୟକାନ୍ ।
ହନୂମନ୍ତମଭିପ୍ରେତ୍ୟ ଜଗାମ ରଣପଣ୍ଡିତଃ । ୨୧ ।
ତସ୍ମିଂସ୍ତତଃ ସଂଯତି ଜାତହର୍ଷେ
ରଣାୟ ନିର୍ଗଚ୍ଛତି ବାଣପାଣୌ ।
ଦିଶଶ୍ଚ ସର୍ବାଃ କଳୁଷା ବଭୂବୁ-
ର୍ମୃଗାଶ୍ଚ ରୌଦ୍ରା ବହୁଧା ବିନେଦୁଃ । ୨୨ ।
ସମାଗତାସ୍ତତ୍ର ତୁ ନାଗଯକ୍ଷା-
ମହର୍ଷୟଶ୍ଚକ୍ରଚରାଶ୍ଚ ସିଦ୍ଧାଃ ।
ନଭଃ ସମାବୃତ୍ୟ ଚ ପକ୍ଷିସଙ୍ଘା-
ବିନେଦୁରୁଚ୍ଚୈଃ ପରମପ୍ରହୃଷ୍ଟାଃ । ୨୩ ।
ଆୟାନ୍ତଂ ସରଥଂ ଦୃଷ୍ଟ୍ୱା ତୂର୍ଣମିନ୍ଦ୍ରଜିତଂ କପିଃ ।
ନନାଦ ଚ ମହାନାଦଂ ବ୍ୟବର୍ଦ୍ଧତ ଚ ବେଗବାନ୍ ।୨୪।
ଇନ୍ଦ୍ରଜିତ୍ସ୍ତୁ ରଥଂ ଦିବ୍ୟମାସ୍ଥିତଶ୍ଚିତ୍ରକାର୍ମୁକଃ ।
ଧନୁର୍ବିସ୍ଫାରୟାମାସ ତଡ଼ିଦୂର୍ଜିତନିଃସ୍ୱନମ୍ । ୨୫ ।
ତତଃ ସମେତାବତିତୀକ୍ଷ୍ଣବେଗୌ
ମହାବଳୌ ତୌ ରଣନିର୍ବିଶଙ୍କୌ ।

---

ହେଲେ । ୨୦ । ଯୁଦ୍ଧବିଶାରଦ ଇନ୍ଦ୍ରଜିତ ଧନୁ ଏବଂ ଶାଣିତାଗ୍ର ଶରସମୂହ ଗ୍ରହଣ କରି ହନୁମାନ୍ ଅଭିମୁଖରେ ଗମନକଲା । ୨୧ । ସେ ସହର୍ଷରେ ହସ୍ତରେ ଧନୁ ଧାରଣ କରି ଯୁଦ୍ଧ କରିବା ନିମନ୍ତେ ନିର୍ଗତ ହେବାରୁ ଦିଗସକଳ ମଳିନ ହୋଇ ଉଠିଲା ଏବଂ ଭୀଷଣ ପଶୁମାନେ ନାନାପ୍ରକାର ନାଦ କରିବାକୁ ଲାଗିଲେ ।୨୨। ନାଗ, ଯକ୍ଷ, ମହର୍ଷିଗଣ, ଗ୍ରହନକ୍ଷତ୍ର ଓ ସିଦ୍ଧଗଣ ସେଠାରେ ସମାଗତ ହେଲେ ଏବଂ ପକ୍ଷୀମାନେ ଦଳ ଦଳ ହୋଇ ଆକାଶକୁ ଆଚ୍ଛାଦିତ କରି ଅତିଶୟ ଆନନ୍ଦିତ ହୋଇ ଉଚ୍ଚୈଃସ୍ୱରରେ ଶବ୍ଦ କରିବାକୁ ଲାଗିଲେ । ୨୩ । ଇନ୍ଦ୍ରଜିତ ରଥରେ ବସି ସତ୍ୱର-ଗତିରେ ଆସୁଥିବାର ଦେଖି ବେଗବାନ୍ ବାନର ହନୂମାନ୍ ମହାନାଦରେ ଗର୍ଜ୍ଜନ କରି ଉଠିଲେ ଏବଂ ନିଜର ଶରୀରକୁ ବର୍ଦ୍ଧିତକଲେ । ୨୪ । ବିଚିତ୍ର ଧନୁର୍ଦ୍ଧାରୀ ଇନ୍ଦ୍ରଜିତ ଦିବ୍ୟ ରଥରେ ଆରୋହଣ କରି ବଜ୍ରସଦୃଶ ଗମ୍ଭୀର ନିଃସ୍ୱନ କରୁଥିବା ଧନୁକୁ ବିସ୍ଫାରିତ କରିବାକୁ ଲାଗିଲେ । ୨୫ । ଅନନ୍ତର ସୁରରାଜ ଏବଂ ଅସୁରରାଜଙ୍କ ସଦୃଶ ଏହି ଦୁଇ ତୀକ୍ଷ୍ଣବେଗବିଶିଷ୍ଟ

କପିଶ୍ଚ ରକ୍ଷୋଽଧିପତେସ୍ତନୂଜଃ
ସୁରାସୁରେନ୍ଦ୍ରାବିବ ବଦ୍ଧବୈରୌ । ୨୬ ।
ସ ତସ୍ୟ ବୀରସ୍ୟ ମହାରଥସ୍ୟ
ଧନୁଷ୍ମତଃ ସଂଯତି ସଂମତସ୍ୟ ।
ଶରପ୍ରବେଗଂ ବ୍ୟହନତ୍ ପ୍ରବୃଦ୍ଧ-
ଶ୍ଚଚାର ମାର୍ଗେ ପିତୁରପ୍ରମେୟଃ । ୨୭ ।
ତତଃ ଶରାନାୟତତୀକ୍ଷ୍ଣଶଲ୍ୟାନ୍
ସୁପତ୍ରିଣଃ କାଞ୍ଚନଚିତ୍ରପୁଙ୍ଖାନ୍ ।
ମୁମୋଚ ବୀରଃ ପରବୀରହନ୍ତା
ସୁସଂନତାନ୍ ବଜ୍ରସମାନବେଗାନ୍ । ୨୮ ।
ତତଃ ସ ତତ୍ସ୍ୟନ୍ଦନନିଃସ୍ୱନଂ ଚ
ମୃଦଙ୍ଗଭେରୀପଟହସ୍ୱନଂ ଚ ।
ବିକୃଷ୍ୟମାଣସ୍ୟ ଚ କାର୍ମୁକସ୍ୟ
ନିଶମ୍ୟ ଘୋଷଂ ପୁନରୁତ୍ପପାତ । ୨୯ ।
ଶରାଣାମନ୍ତରେଷ୍ୱାଶୁ ବ୍ୟାବର୍ତ୍ତତ ମହାକପିଃ ।
ହରିସ୍ତସ୍ୟାଭିଲକ୍ଷ୍ୟସ୍ୟ ମୋହୟଁଲ୍ଲକ୍ଷ୍ୟସଂଗ୍ରହମ୍ । ୩୦ ।
ଶରାଣାମଗ୍ରତସ୍ତସ୍ୟ ପୁନଃ ସମଭିବର୍ତ୍ତତ ।
ପ୍ରସାର୍ଯ୍ୟ ହସ୍ତୌ ହନୁମାନୁତ୍ପପାତାନିଲାତ୍ମଜଃ । ୩୧ ।

---

ମହାବଳୀ, ଯୁଦ୍ଧରେ ନିର୍ଭୀକଚିତ୍ତ ରାକ୍ଷସରାଜପୁତ୍ର ଏବଂ ବାନରରାଜଙ୍କ ମଧ୍ୟରେ ଯୁଦ୍ଧ ଆରମ୍ଭ ହେଲା । ୨୬ । ଅତୁଳନୀୟ ବୀର ମହାକପି ହନୁମାନ୍ ମହାରଥୀ, ଧନୁର୍ଦ୍ଧାରୀ, ଯୁଦ୍ଧରେ ଲବ୍ଧପ୍ରତିଷ୍ଠ, ବୀର ଇନ୍ଦ୍ରଜିତର ବାଣବେଗକୁ ପ୍ରତିହତ କରି ନିଜର ପିତା ବାୟୁଙ୍କ ପଥରେ ବିଚରଣ କରିବାକୁ ଲାଗିଲେ । ୨୭ । ତାହା ଉତ୍ତାରୁ ଶତ୍ରୁ-ବୀରଘାତୀ ଇନ୍ଦ୍ରଜିତ ପ୍ରଶସ୍ତ ତୀକ୍ଷ୍ଣାଗ୍ର ସୁନ୍ଦର ପକ୍ଷବିଶିଷ୍ଟ ସୁବର୍ଣ୍ଣରଞ୍ଜିତ ଏବଂ ବଜ୍ରସଦୃଶ ବେଗବାନ୍ ଶରରାଜି ନିକ୍ଷେପ କରିବାକୁ ଲାଗିଲା । ୨୮ । ହନୁମାନ୍ ତାହାର ରଥ, ମୃଦଙ୍ଗ, ଭେରୀ ଓ ପଟହଧ୍ୱନି ଏବଂ ଆକର୍ଷିତ ଧନୁର ଘୋର ଶବ୍ଦ ଶ୍ରବଣକରି ପୁନର୍ବାର ଉପରକୁ ଡେଇଁଲେ । ୨୯ । ସିଦ୍ଧଲକ୍ଷ୍ୟ ଇନ୍ଦ୍ରଜିତର ଲକ୍ଷ୍ୟକୁ ବ୍ୟର୍ଥକରି ମହାକପି ହନୁମାନ୍ ତାହାର ଶରମାନଙ୍କ ମଧ୍ୟରେ କ୍ଷିପ୍ରଗତିରେ ବିଚରଣ କରିବାକୁ ଲାଗିଲେ । ୩୦ । ପବନନନ୍ଦନ ହନୁମାନ୍ ପୁଣି ଆସି ତାହାର ଶରମାନଙ୍କ ସମ୍ମୁଖରେ ଠିଆହୋଇ ଯାଉଥାନ୍ତି ଏବଂ ପୁଣି ହସ୍ତଦ୍ୱୟ ପ୍ରସାରଣକରି

ତାବୁଭୌ ବେଗସମ୍ପନ୍ନୌ ରଣକର୍ମବିଶାରଦୌ ।
ସର୍ବଭୂତମନୋଗ୍ରାହି ଚକ୍ରତୁର୍ଯୁଦ୍ଧମୁତ୍ତମମ୍ । ୩୨।

ହନୂମତୋ ବେଦ ନ ରାକ୍ଷସୋଽନ୍ତରମ୍
ନ ମାରୁତିସ୍ତସ୍ୟ ମହାତ୍ମନୋଽନ୍ତରମ୍ ।
ପରସ୍ପରଂ ନିର୍ବିଷହୌ ବଭୂବତୁଃ
ସମେତ୍ୟ ତୌ ଦେବସମାନବିକ୍ରମୌ । ୩୩ ।

ତତସ୍ତୁ ଲକ୍ଷ୍ୟେ ସ ବିହନ୍ୟମାନେ
ଶରେଷ୍ୱମୋଘେଷୁ ଚ ସଂପତତ୍ସୁ ।
ଜଗାମ ଚିନ୍ତାଂ ମହତୀଂ ମହାତ୍ମା
ସମାଧିସଂଯୋଗସମାହିତାତ୍ମା । ୩୪ ।

ତତୋ ମତିଂ ରାକ୍ଷସରାଜସୂନୁ-
ଶ୍ଚକାର ତସ୍ମିନ୍ ହରିବୀରମୁଖ୍ୟେ ।
ଅବଧ୍ୟତାଂ ତସ୍ୟ କପେଃ ସମୀକ୍ଷ୍ୟ
କଥଂ ନିଗଚ୍ଛେଦିତି ନିଗ୍ରହାର୍ଥମ୍ । ୩୫ ।

ତତଃ ପୈତାମହଂ ବୀରଃ ସୋଽସ୍ତ୍ରମସ୍ତ୍ରବିଦାଂ ବରଃ ।
ସଂଦଧେ ସୁମହାତେଜାସ୍ତଂ ହରିପ୍ରବରଂ ପ୍ରତି । ୩୬ ।

---

ଉପରକୁ ଡେଇଁପଡ଼ୁଥାନ୍ତି । ୩୧ । ଏହାପରେ ସେହି ଦୁଇ ବେଗବାନ୍ ଯୁଦ୍ଧବିଶାରଦ
ବୀର ସବୁ ପ୍ରାଣୀଙ୍କର ଚିତ୍ତାକର୍ଷକ ଅତି ଉତ୍କୃଷ୍ଟ ଯୁଦ୍ଧ କରିବାକୁ ଲାଗିଲେ ।୩୨।
ରାକ୍ଷସ ଇନ୍ଦ୍ରଜିତ ହନୁମାନଙ୍କର କୌଣସି ଛିଦ୍ର ପାଇଲା ନାହିଁ; ମାରୁତନନ୍ଦନ ମଧ୍ୟ
ସେ ମହାତ୍ମାଙ୍କର କୌଣସି ଛିଦ୍ର ପାଇଲେ ନାହିଁ । ଉଭୟେ ଦେବତା ସମାନ
ପରାକ୍ରମଶାଳୀ । ସେ ଦୁହେଁ ଯୁଦ୍ଧରେ ପ୍ରବୃତ୍ତହୋଇ ପରସ୍ପରର ଦୁର୍ବିଷହ ହୋଇ
ଉଠିଲେ । ୩୩ । ଅନନ୍ତର ଅମୋଘ ଶରସକଳ ନିରନ୍ତର ନିପତିତ ହେଲେ ମଧ୍ୟ
ଲକ୍ଷ୍ୟ ପ୍ରତିହତ ହେବାରୁ ଇନ୍ଦ୍ରଜିତ ଏକାଗ୍ରଚିତ୍ତରେ ଧ୍ୟାନ ଅବଲମ୍ବନପୂର୍ବକ
ଘୋର ଚିନ୍ତା କରିବାକୁ ଲାଗିଲା । ୩୪। ଅନନ୍ତର ଧ୍ୟାନଦ୍ୱାରା ଏହି ବାନର ଅବଧ୍ୟ
ବୋଲି ଜାଣି ସେହି ପ୍ରଧାନ ବାନର ବୀରର ନିଗ୍ରହ ନିମନ୍ତେ କି ଉପାୟ ଅବଲମ୍ବନ
କରିବାକୁ ହେବ, ତାହା ରାକ୍ଷସରାଜପୁତ୍ର ଇନ୍ଦ୍ରଜିତ ଚିନ୍ତା କରିବାକୁ ଲାଗିଲା । ୩୫ ।
ଅନନ୍ତର ସେହି ଅସ୍ତ୍ରବିଦ୍‌ଶ୍ରେଷ୍ଠ, ମହାତେଜା, ବୀର ଇନ୍ଦ୍ରଜିତ ସେହି ବାନରପ୍ରଧାନ
ପ୍ରତି ବ୍ରହ୍ମାସ୍ତ୍ର ସନ୍ଧାନକଲା । ୩୬ । ମହାବାହୁ ଅସ୍ତ୍ରତତ୍ତ୍ୱଜ୍ଞ ଇନ୍ଦ୍ରଜିତ ତାହାକୁ

ଅବଧ୍ୟୋଽୟମିତି ଜ୍ଞାତ୍ୱା ତମସ୍ତ୍ରେଣାସ୍ତ୍ରତତ୍ତ୍ୱବିତ୍ ।
ନିଜଗ୍ରାହ ମହାବାହୁଂ ମାରୁତାତ୍ମଜମିନ୍ଦ୍ରଜିତ୍ । ୩୭ ।
ତେନ ବଦ୍ଧସ୍ତତୋଽସ୍ତ୍ରେଣ ରାକ୍ଷସେନ ସ ବାନରଃ ।
ଅଭବନ୍ନିର୍ବିଚେଷ୍ଟଶ୍ଚ ପପାତ ଚ ମହୀତଲେ । ୩୮ ।
ତତୋଽଥ ବୁଦ୍ଧ୍ୱା ସ ତଦସ୍ତ୍ରବନ୍ଧମ୍
ପ୍ରଭୋଃ ପ୍ରଭାବାଦ୍ ବିଗତାଲ୍ପବେଗଃ ।
ପିତାମହାନୁଗ୍ରହମାତ୍ମନଶ୍ଚ
ବିଚିନ୍ତୟାମାସ ହରିପ୍ରବୀରଃ । ୩୯ ।
ତତଃ ସ୍ୱାୟମ୍ଭୁବୈର୍ମନ୍ତ୍ରୈର୍ବ୍ରହ୍ମାସ୍ତ୍ରଂ ଚାଭିମନ୍ତ୍ରିତମ୍ ।
ହନୂମାଂଶ୍ଚିନ୍ତୟାମାସ ବରଦାନଂ ପିତାମହାତ୍ । ୪୦ ।
ନ ମେଽସ୍ୟ ବନ୍ଧସ୍ୟ ଚ ଶକ୍ତିରସ୍ତି
ବିମୋକ୍ଷଣେ ଲୋକଗୁରୋଃ ପ୍ରଭାବାତ୍ ।
ଇତ୍ୟେବ ମତ୍ୱା ବିହିତୋଽସ୍ତ୍ରବନ୍ଧୋ-
ମୟାତ୍ମଯୋନେରନୁବର୍ତ୍ତିତବ୍ୟଃ । ୪୧ ।
ସ ବୀର୍ଯ୍ୟମସ୍ତ୍ରସ୍ୟ କପିର୍ବିଚାର୍ଯ୍ୟ
ପିତାମହାନୁଗ୍ରହମାତ୍ମନଶ୍ଚ ।

---

ଅସ୍ତ୍ରରେ ଅବଧ୍ୟ ଜାଣି ପବନନନ୍ଦନଙ୍କୁ ସେହି ବ୍ରହ୍ମାସ୍ତ୍ରରେ ବନ୍ଧନ କରି ପକାଇଲେ । । ୩୭ । ବାନର ହନୂମାନ୍ ରାକ୍ଷସକର୍ତ୍ତୃକ ସେହି ବ୍ରହ୍ମାସ୍ତ୍ରରେ ବଦ୍ଧ ହୋଇ ଏକାବେଳକେ ନିଶ୍ଚେଷ୍ଟ ହୋଇ ଭୂତଳରେ ପତିତ ହେଲେ । ୩୮ । ଅନନ୍ତର ବାନରଶ୍ରେଷ୍ଠ ହନୂମାନ୍ ସେହି ବ୍ରହ୍ମାସ୍ତ୍ର ବନ୍ଧନ କଥା ବୁଝିପାରି ଏବଂ ପ୍ରଭୁ ବ୍ରହ୍ମାଙ୍କ ପ୍ରଭାବରୁ ତାହାଙ୍କର ବେଗ ନିରୁଦ୍ଧ ହୋଇଯାଇଥିବାର ଜାଣି ନିଜ ପ୍ରତି ପିତାମହ ବ୍ରହ୍ମା ଯେଉଁ ଅନୁଗ୍ରହ କରିଥିଲେ ସେହି କଥା ଚିନ୍ତା କରିବାକୁ ଲାଗିଲେ । ୩୯ । ଅନନ୍ତର ବ୍ରହ୍ମାଙ୍କ ମନ୍ତ୍ରଦ୍ୱାରା ମନ୍ତ୍ରିତ ବ୍ରହ୍ମାସ୍ତ୍ର ବିଷୟ ଏବଂ ବ୍ରହ୍ମାଙ୍କଠାରୁ ସେ ଯେଉଁ ବର ପାଇଥିଲେ, ସେହିକଥା ହନୂମାନ୍ ଚିନ୍ତା କରିବାକୁ ଲାଗିଲେ ।୪୦। ସେ ଭାବିଲେ, "ଲୋକଗୁରୁ ବ୍ରହ୍ମାଙ୍କ ପ୍ରଭାବରୁ ଏହି ଅସ୍ତ୍ର-ବନ୍ଧନ ମୋଚନ କରିବାର ଶକ୍ତି ମୋର ନାହିଁ"; ସୁତରାଂ ଏହି ଅସ୍ତ୍ରବନ୍ଧନ ବ୍ରହ୍ମାଙ୍କ ବିହିତ ବୋଲି ଜାଣି ମୋତେ ସେହି ବ୍ରହ୍ମାଙ୍କର ନିର୍ଦ୍ଦେଶ ମାନିବାକୁ ହେବ" ବୋଲି ସ୍ଥିର କଲେ ।୪୧। ସେହି ବାନର ଅସ୍ତ୍ରର ବଳ, ପିତାମହଙ୍କର ଅନୁଗ୍ରହ ଏବଂ ଏହି ଅସ୍ତ୍ରମୋଚନ କରିବା ବିଷୟରେ ନିଜର ଶକ୍ତି

ବିମୋକ્ଷଶକ୍ତିଂ ପରିଚିନ୍ତୟିତ୍ୱା
ପିତାମହାଜ୍ଞାମନୁବର୍ତ୍ତତେ ସ୍ମ । ୪୨ ।
ଅସ୍ତ୍ରେଣାପି ହି ବଦ୍ଧସ୍ୟ ଭୟଂ ମମ ନ ଜାୟତେ ।
ପିତାମହମହେନ୍ଦ୍ରାଭ୍ୟାଂ ରକ୍ଷିତସ୍ୟାନିଲେନ ଚ । ୪୩ ।

ଗ୍ରହଣେ ଚାପି ରକ୍ଷୋଭିର୍ମହନ୍ମେ ଗୁଣଦର୍ଶନମ୍ ।
ରାକ୍ଷସେନ୍ଦ୍ରେଣ ସଂବାଦସ୍ତସ୍ମାଦ୍‌ଗୃହ୍ଣନ୍ତୁ ମାଂ ପରେ । ୪୪ ।
ସ ନିଶ୍ଚିତାର୍ଥଃ ପରବୀରହନ୍ତା
ସମୀକ୍ଷ୍ୟକାରୀ ବିନିବୃତ୍ତଚେଷ୍ଟଃ ।
ପରୈଃ ପ୍ରସହ୍ୟାଭିଗତୈର୍ନିଗୃହ୍ୟ
ନନାଦ ତୈସ୍ତୈଃ ପରିଭର୍ତ୍ସ୍ୟମାନଃ । ୪୫ ।
ତତସ୍ତେ ରାକ୍ଷସା ଦୃଷ୍ଟ୍ୱା ବିନିଶ୍ଚେଷ୍ଟମରିନ୍ଦମମ୍ ।
ବବନ୍ଧୁଃ ଶଣବଲ୍କୈଶ୍ଚ ଦ୍ରୁମଚୀରୈଶ୍ଚ ସଂହତୈଃ । ୪୬ ।
ସ ରୋଚୟାମାସ ପରୈଶ୍ଚ ବନ୍ଧମ୍
ପ୍ରସହ୍ୟ ବୀରୈରଭିଗର୍ହଣଂ ଚ ।
କୌତୂହଲାନ୍ମାଂ ଯଦି ରାକ୍ଷସେନ୍ଦ୍ରୋ
ଦ୍ରଷ୍ଟୁଂ ବ୍ୟବସ୍ୟେଦିତି ନିଶ୍ଚିତାର୍ଥଃ । ୪୭ ।

---

ବିଶେଷରୂପେ ପର୍ଯ୍ୟାଲୋଚନା କରି ପିତାମହଙ୍କର ଆଜ୍ଞାକୁ ପାଳିଲେ । ୪୨ । ସେ ଭାବିଲେ, 'ବ୍ରହ୍ମା, ଇନ୍ଦ୍ର ଏ ଦୁହେଁ ଏବଂ ପବନ ମୋତେ ସର୍ବଦା ରକ୍ଷା କରନ୍ତି; ସୁତରାଂ ଏ ଅସ୍ତ୍ରରେ ବଦ୍ଧହେଲେ ମଧ୍ୟ ମୋ ମନରେ ଭୟ ଜାତ ହେଉ ନାହିଁ । ୪୩ । ବରଂ ରାକ୍ଷସମାନେ ମୋତେ ବାନ୍ଧି ନେଲେ ରାକ୍ଷସେନ୍ଦ୍ର ରାବଣ ସହିତ ମୋର କଥାବାର୍ତ୍ତା ହୋଇ ପାରିବ । ଏହାଦ୍ୱାରା ଏକ ମହାଫଳ ଲାଭ ହେବ; ସୁତରାଂ ଶତ୍ରୁମାନେ ମୋତେ ବାନ୍ଧି ନିଅନ୍ତୁ' । ୪୪ । କାର୍ଯ୍ୟଦକ୍ଷ ଶତ୍ରୁବୀରହନ୍ତା ହନୁମାନ୍ ଏହିପରି କର୍ତ୍ତବ୍ୟ ନିର୍ଣ୍ଣୟ କରି ନିଶ୍ଚେଷ୍ଟଭାବରେ ରହିଲେ ଏବଂ ଶତ୍ରୁମାନେ ତାହାଙ୍କ ନିକଟକୁ ଆସି ଯେତେବେଳେ ବଳପୂର୍ବକ ତାଙ୍କୁ ନିଗୃହୀତ କରି ନାନାପ୍ରକାର ଭର୍ତ୍ସନା କଲେ, ସେତେବେଳେ ସେ ଚିତ୍କାର କରିବାକୁ ଲାଗିଲେ । ୪୫ । ଅନନ୍ତର ରାକ୍ଷସମାନେ ସେହି ଶତ୍ରୁଦମନକାରୀ ବାନରଙ୍କୁ ନିଶ୍ଚେଷ୍ଟ ଦେଖି ଝୋଟ ଦଉଡ଼ି ଏବଂ ବୃକ୍ଷ ବଲ୍‌କଳରେ ତାହାଙ୍କୁ ଦୃଢ଼ଭାବରେ ବନ୍ଧନ କଲେ । ୪୬ । 'ରାକ୍ଷସରାଜ ରାବଣ କେଜାଣି ଅବା କୌତୂହଳବଶତଃ ମୋତେ ଦେଖିବାକୁ ଇଚ୍ଛା କରି ପାରେ' ଏହି କଥା ବିବେଚନା କରି ସେ ଶତ୍ରୁମାନଙ୍କର ସେହି ବଳପୂର୍ବକ ନିଗ୍ରହ

ସ ବଦ୍ଧସ୍ତେନ ବଲ୍କେନ ବିମୁକ୍ତୋଽସ୍ତ୍ରେଣ ବୀର୍ଯବାନ୍ ।
ଅସ୍ତ୍ରବନ୍ଧଃ ସ ଚାନ୍ୟଂ ହି ନ ବନ୍ଧମନୁବର୍ତ୍ତତେ । ୪୮ ।

ଅଥେନ୍ଦ୍ରଜିତ୍ତଂ ଦ୍ରୁମଚୀରବଦ୍ଧଂ
ବିଚାର୍ଯ ବୀରଃ କପିସତ୍ତମଂ ତମ୍ ।
ବିମୁକ୍ତମସ୍ତ୍ରେଣ ଜଗାମ ଚିନ୍ତା-
ମନ୍ୟେନ ବଦ୍ଧୋଽପ୍ୟନୁବର୍ତ୍ତତେଽସ୍ତ୍ରମ୍ । ୪୯ ।
ଅହୋ ମହତ୍କର୍ମ କୃତଂ ନିରର୍ଥମ୍
ନ ରାକ୍ଷସୈର୍ମନ୍ତ୍ରଗତିର୍ବିମୃଷ୍ଟା ।
ପୁନଶ୍ଚ ନାସ୍ତ୍ରେ ବିହତେଽସ୍ତ୍ରମନ୍ୟତ୍-
ପ୍ରବର୍ତ୍ତତେ ସଂଶୟିତାଃ ସ୍ମ ସର୍ବେ । ୫୦ ।

ଅସ୍ତ୍ରେଣ ହନୁମାନ୍ମୁକ୍ତୋ ନାତ୍ମାନମବବୁଧ୍ୟତେ ।
କୃଷ୍ୟମାଣସ୍ତୁ ରକ୍ଷୋଭିସ୍ତୈଶ୍ଚ ବନ୍ଧୈର୍ନିପୀଡ଼ିତଃ । ୫୧ ।
ହନ୍ୟମାନସ୍ତତଃ କ୍ରୂରୈ ରାକ୍ଷସୈଃ କାଲମୁଷ୍ଟିଭିଃ ।
ସମୀପଂ ରାକ୍ଷସେନ୍ଦ୍ରସ୍ୟ ପ୍ରାକୃଷ୍ୟତ ସ ବାନରଃ । ୫୨ ।

---

ଓ ବନ୍ଧନ ସହ୍ୟ କଲେ । ୪୭ । ରଜ୍ଜୁବଦ୍ଧ ହେବାଦ୍ୱାରା ବୀର୍ଯ୍ୟବାନ୍ ହନୁମାନ୍ ବ୍ରହ୍ମାସ୍ତ୍ରର ବନ୍ଧନରୁ ମୁକ୍ତହେଲେ । କାରଣ ସେହି ବ୍ରହ୍ମାସ୍ତ୍ରର ବନ୍ଧନ ଅନ୍ୟ କୌଣସି ବନ୍ଧନ ସହିତ ରହେ ନାହିଁ । ୪୮ । ବୀର ଇନ୍ଦ୍ରଜିତ ମଧ୍ୟ ସେହି କପିଶ୍ରେଷ୍ଠଙ୍କୁ ରଜ୍ଜୁବଦ୍ଧ ଏବଂ ଅସ୍ତ୍ରବିମୁକ୍ତ ଦେଖି ଚିନ୍ତା କରିବାକୁ ଲଗିଲେ, 'ଅନ୍ୟ ବନ୍ଧନରେ ବଦ୍ଧହେଲେ ବ୍ରହ୍ମାସ୍ତ୍ର-ବନ୍ଧନ ଆଉ ରହେ ନାହିଁ । ୪୯ । ଆହା ! ରାକ୍ଷସମାନେ ମନ୍ତ୍ରର ଶକ୍ତି ବିଚାର ନ କରି ଏହି ମହତ୍ କର୍ମକୁ ନିଷ୍ଫଳ କରିଦେଲେ; ଆଉ ମଧ୍ୟ ବ୍ରହ୍ମାସ୍ତ୍ର ବ୍ୟର୍ଥହେଲେ ଅନ୍ୟ ଅସ୍ତ୍ର ପ୍ରୟୋଗ ହୋଇ ପାରିବ ନାହିଁ । ଅତଏବ ଆମ ସମସ୍ତଙ୍କର ବର୍ତ୍ତମାନ ପ୍ରାଣସଂଶୟ ଉପସ୍ଥିତ ହୋଇଅଛି' । ୫୦ । ହନୁମାନ୍ ଅସ୍ତ୍ରମୁକ୍ତ ହୋଇ ସୁଦ୍ଧା ଯେପରି ନିଜେ ତାହା ଜାଣିପାରି ନାହାନ୍ତି, ସେହିପରି ପଡ଼ି ରହିଲେ । ରାକ୍ଷସମାନେ ନାନାବିଧ ବନ୍ଧନରେ ତାଙ୍କୁ ନିଗ୍ରହୀତକରି ଆକର୍ଷଣ କରିବାକୁ ଲଗିଲେ । ୫୧ । ଅନନ୍ତର ସେହି କ୍ରୂରସ୍ୱଭାବ ରାକ୍ଷସମାନେ ତାଙ୍କୁ କାଳମୁଷ୍ଟି ସଦୃଶ ମୁଷ୍ଟିପ୍ରହାର କରି କରି ଟାଣି ଟାଣି ରାକ୍ଷସେନ୍ଦ୍ର ରାବଣ ନିକଟକୁ ନେଲେ । ୫୨ ।

ଅଥେନ୍ଦ୍ରଜିତ୍ତଂ ପ୍ରସମୀକ୍ଷ୍ୟ ମୁକ୍ତ-
ମସ୍ତ୍ରେଣ ବଦ୍ଧଂ ଦ୍ରୁମଚୀରସୂତ୍ରୈଃ ।
ବ୍ୟଦର୍ଶୟତ୍ତତ୍ର ମହାବଲଂ ତମ୍
ହରିପ୍ରବୀରଂ ସଗଣାୟ ରାଜ୍ଞେ । ୫୩ ।
ତଂ ମତ୍ତମିବ ମାତଙ୍ଗଂ ବଦ୍ଧଂ କପିବରୋତ୍ତମମ୍ ।
ରାକ୍ଷସା ରାକ୍ଷସେନ୍ଦ୍ରାୟ ରାବଣାୟ ନ୍ୟବେଦୟନ୍ । ୫୪ ।
କୋଽୟଂ କସ୍ୟ କୁତୋ ବାପି କିଂ କାର୍ଯ୍ୟଂ କୋଽଭ୍ୟୁପାଶ୍ରୟଃ ।
ଇତି ରାକ୍ଷସବୀରାଣାଂ ଦୃଷ୍ଟ୍ୱା ସଂଜଜ୍ଞିରେ କଥାଃ । ୫୫ ।
ହନ୍ୟତାଂ ଦହ୍ୟତାଂ ବାପି ଭକ୍ଷ୍ୟତାମିତି ଚାପରେ ।
ରାକ୍ଷସାସ୍ତତ୍ର ସଂକ୍ରୁଦ୍ଧାଃ ପରସ୍ପରମଥାବ୍ରୁବନ୍ । ୫୬ ।
ଅତୀତ୍ୟ ମାର୍ଗଂ ସହସା ମହାତ୍ମା
ସ ତତ୍ର ରକ୍ଷୋଽଧିପପାଦମୂଲେ ।
ଦଦର୍ଶ ରାଜ୍ଞଃ ପରିଚାରବୃଦ୍ଧାନ୍
ଗୃହଂ ମହାରତ୍ନବିଭୂଷିତଂ ଚ । ୫୭ ।
ସ ଦଦର୍ଶ ମହାତେଜା ରାବଣଃ କପିସତ୍ତମମ୍ ।
ରକ୍ଷୋଭିର୍ବିକୃତାକାରୈଃ କୃଷ୍ୟମାଣମିତସ୍ତତଃ । ୫୮ ।

---

ଇନ୍ଦ୍ରଜିତ ବ୍ରହ୍ମାସ୍ତ୍ରରୁ ମୁକ୍ତ ଏବଂ ବଳ୍କଳରଜ୍ଜୁଦ୍ୱାରା ବଦ୍ଧ ସେହି ମହାବଳୀ କପିଶ୍ରେଷ୍ଠଙ୍କୁ ଅମାତ୍ୟଗଣପରିବୃତ ରାଜାଙ୍କୁ ସେଠାରେ ନେଇ ଦେଖାଇଲେ । ୫୩ । ଅନ୍ୟ ରାକ୍ଷସମାନେ ମତ୍ତମାତଙ୍ଗ ସଦୃଶ ବନ୍ଧାହୋଇଥିବା କପିଶ୍ରେଷ୍ଠଙ୍କୁ ରାକ୍ଷସେନ୍ଦ୍ର ରାବଣ ନିକଟରେ ନେଇ ଉପସ୍ଥିତ କରାଇଲେ ।୫୪। ଅନନ୍ତର "ଏ କିଏ" ? କାହାର ଲୋକ ? କେଉଁଠାରୁ କି କାର୍ଯ୍ୟରେ ବା ଆସିଛି ? ଏହାର ଆଶ୍ରୟ ବା କିଏ ? ଇତ୍ୟାଦି ବିଷୟ ରାକ୍ଷସବୀରମାନେ କଥାବାର୍ତ୍ତା ହେବାକୁ ଲାଗିଲେ ।୫୫। ଅନ୍ୟ ରାକ୍ଷସମାନେ ଅତିଶୟ କ୍ରୁଦ୍ଧହୋଇ ପରସ୍ପର କୁହାକୁହି ହେଲେ, "ଏହାକୁ ହାଣି ପକାଅ, ଏହାକୁ ପୋଡ଼ିପକାଅ, ଏହାକୁ ଖାଇପକାଅ" ଇତ୍ୟାଦି । ୫୬ । ମହାତ୍ମା ହନୁମାନ୍ ବାଟ ଅତିକ୍ରମ କରି ଯାଇ ସହସା ସେହି ରାକ୍ଷସରାଜ ରାବଣର ପାଦତଳରେ ପହଞ୍ଚି ସେ ରାଜାର ମହାରତ୍ନଭୂଷିତ ଗୃହ ଏବଂ ବରିଷ୍ଠ ପରିଚାରକମାନଙ୍କୁ ଦେଖିଲେ ।୫୭। ମହାତେଜା ରାବଣ ଦେଖିଲା ଯେ ବିକୃତାକାର ରାକ୍ଷସମାନେ କପିଶ୍ରେଷ୍ଠ ହନୁମାନଙ୍କୁ ଏଣିକି ତେଣିକି ଟଣାଟଣି କରୁଛନ୍ତି । ୫୮। କପିଶ୍ରେଷ୍ଠ ହନୁମାନ୍ ମଧ୍ୟ ଦେଖିଲେ ଯେ

ରାକ୍ଷସାଧିପତିଂ ଚାପି ଦଦର୍ଶ କପିସତ୍ତମଃ ।
ତେଜୋବଲସମାଯୁକ୍ତଂ ତପନ୍ତମିବ ଭାସ୍କରମ୍ । ୫୯ ।
ସ ରୋଷସଂବର୍ତିତତାମ୍ରଦୃଷ୍ଟି -
ର୍ଦଶାନନସ୍ତଂ କପିମନ୍ୱବେକ୍ଷ୍ୟ ।
ଅଥୋପବିଷ୍ଟାନ୍ କୁଲଶୀଲବୃଦ୍ଧାନ୍
ସମାଦିଶତ୍ତଂ ପ୍ରତି ମନ୍ତ୍ରିମୁଖ୍ୟାନ୍ । ୬୦ ।
ଯଥାକ୍ରମଂ ତୈଃ ସ କପିସ୍ତୁ ପୃଷ୍ଟଃ
କାର୍ଯାର୍ଥମର୍ଥସ୍ୟ ଚ ମୂଳମାଦୌ ।
ନିବେଦୟାମାସ ହରୀଶ୍ୱରସ୍ୟ
ଦୂତଃ ସକାଶାଦହମାଗତୋଽସ୍ମି । ୬୧ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ସୁନ୍ଦରକାଣ୍ଡେ ଇନ୍ଦ୍ରଜିଦଭିଯୋଗୋ ନାମ ଅଷ୍ଟଚତ୍ୱାରିଂଶଃ ସର୍ଗଃ ।

---

# ଏକୋନପଞ୍ଚାଶଃ ସର୍ଗଃ

## ରାବଣପ୍ରଭାବଦର୍ଶନମ୍

ତତଃ ସ କର୍ମଣା ତସ୍ୟ ବିସ୍ମିତୋ ଭୀମବିକ୍ରମଃ ।
ହନୂମାନ୍ କ୍ରୋଧତାମ୍ରାକ୍ଷୋ ରକ୍ଷୋଽଧିପମବେକ୍ଷତଃ । ୧ ।

---

ରାକ୍ଷସାଧିପତି ରାବଣ ତେଜୋବଳସମାଯୁକ୍ତ ହୋଇ ଉତ୍ତାପପ୍ରଦାନକାରୀ ସୂର୍ଯ୍ୟଙ୍କ ସଦୃଶ ଯାପ୍ତ ପ୍ରକାଶ କରୁଛି । ୫୯ । ସେହି ବାନରକୁ ଦେଖି କ୍ରୋଧରେ ଦଶାନନର ଚକ୍ଷୁ ରକ୍ତବର୍ଣ୍ଣ ହୋଇ ଘୂର୍ଣ୍ଣିତ ହେବାକୁ ଲାଗିଲା ଏବଂ ସେ ପାଖରେ ବସିଥିବା କୁଳଶୀଳସମ୍ପନ୍ନ ମୁଖ୍ୟ ମନ୍ତ୍ରୀମାନଙ୍କୁ ତାହା ବିଷୟ ପଚାରିବାକୁ ଆଦେଶ ଦେଲା । ୬୦ । ସେମାନେ ତଦନୁସାରେ ନାନାପ୍ରଶ୍ନ ପଚାରିବାରୁ ବାନର ହନୁମାନ୍ ପ୍ରଥମେ ନିଜ ଆସିବାର ମୂଳକାରଣ ଜଣାଇ କହିଲେ ଯେ "ମୁଁ ବାନରରାଜ ସୁଗ୍ରୀବଙ୍କ ନିକଟରୁ ଦୂତରୂପେ ଏଠାକୁ ଆସିଅଛି" । ୬୧ ।

---

## ୪୯ଶ ସର୍ଗ

### ( ରାବଣର ପ୍ରଭାବଦର୍ଶନ )

ଅନନ୍ତର ଭୀମବିକ୍ରମ ହନୁମାନ୍ ତାହାର କାର୍ଯ୍ୟରେ ବିସ୍ମିତ ଏବଂ କ୍ରୋଧରେ ରକ୍ତଚକ୍ଷୁ ହୋଇ ରାକ୍ଷସାଧିପତି ରାବଣକୁ ନିରୀକ୍ଷଣ କରିବାକୁ

ଭ୍ରାଜମାନଂ ମହାର୍ହେଣ କାଞ୍ଚନେନ ବିରାଜତା ।
ମୁକ୍ତାଜାଲବୃତେନାଥ ମୁକୁଟେନ ମହାଦ୍ୟୁତିମ୍ ।୨।
ବଜ୍ରସଂଯୋଗସଂଯୁକ୍ତୈର୍ମହାର୍ହମଣିବିଗ୍ରହୈଃ ।
ହୈମୈରାଭରଣୈଶ୍ଚିତ୍ରୈର୍ମନସେବ ପ୍ରକଳ୍ପିତୈଃ ।୩।
ମହାର୍ହକ୍ଷୌମସଂବୀତଂ ରକ୍ତଚନ୍ଦନରୂଷିତମ୍ ।
ସ୍ୱନୁଲିପ୍ତବିଚିତ୍ରାଭିର୍ବିବିଧାଭିଶ୍ଚ ଭକ୍ତିଭିଃ ।୪।
ବିଚିତ୍ରଂ ଦର୍ଶନୀୟୈଶ୍ଚ ରକ୍ତାକ୍ଷୈର୍ଭୀମଦର୍ଶନୈଃ ।
ଦୀପ୍ତତୀକ୍ଷ୍ଣମହାଦଂଷ୍ଟ୍ରଂ ପ୍ରଲମ୍ବଂ ଦଶନଚ୍ଛଦୈଃ ।୫।
ଶିରୋଭିର୍ଦଶଭିର୍ବୀରୋ ଭ୍ରାଜମାନଂ ମହୌଜସମ୍ ।
ନାନାବ୍ୟାଲସମାକୀର୍ଣ୍ଣୈଃ ଶିଖରୈରିବ ମନ୍ଦରମ୍ ।୬।
ନୀଲାଞ୍ଜନଚୟପ୍ରଖ୍ୟଂ ହାରେଣୋରସି ରାଜତା ।
ପୂର୍ଣ୍ଣଚନ୍ଦ୍ରାଭବକ୍ତ୍ରେଣ ସବାଲାର୍କମିବାମ୍ବୁଦମ୍ ।୭।
ବାହୁଭିର୍ବଦ୍ଧକେୟୂରୈଶ୍ଚନ୍ଦନୋତ୍ତମରୂଷିତୈଃ ।
ଭ୍ରାଜମାନାଙ୍ଗଦୈର୍ଭୀମୈଃ ପଞ୍ଚଶୀର୍ଷୈରିବୋରଗୈଃ ।୮।

---

ଲଗିଲେ ।୧। ମହାତେଜା ବୀରବର ରାବଣ ମହାମୂଲ୍ୟ ସ୍ୱର୍ଣ୍ଣନିର୍ମିତ ମୁକ୍ତାରାଜି-ଖଚିତ ମୁକୁଟ ପିନ୍ଧି ଅତିଶୟ ଦୀପ୍ତିମାନ୍ ହୋଇଅଛି ।୨। ତାହାର ବିଚିତ୍ର ସୁବର୍ଣ୍ଣ ଅଳଙ୍କାରମାନ ହୀରକଖଚିତ ଓ ବହୁମୂଲ୍ୟ ମଣିସମୂହଦ୍ୱାରା ରଚିତ ହୋଇ ଯେପରିକି ମନର କଳ୍ପନାରେ ନିର୍ମିତ ହୋଇଅଛି ।୩। ତାହାର ଶରୀର ରକ୍ତଚନ୍ଦନରେ ଚର୍ଚ୍ଚିତ ହୋଇଅଛି । ସେ ମହାମୂଲ୍ୟବାନ୍ ପଟ୍ଟବସ୍ତ୍ର ପରିଧାନ କରିଅଛି ଏବଂ ବିବିଧ ବିଚିତ୍ର ଅନୁଲେପନରେ ସୁନ୍ଦରଭାବରେ ଅନୁଲିପ୍ତ ହୋଇଅଛି ।୪। ତାହାର ଚକ୍ଷୁସମୂହ ଲୋହିତବର୍ଣ୍ଣ, ଦେଖିବାକୁ ସୁନ୍ଦର ଏବଂ ଭୟଙ୍କର । ତାହାର ଦନ୍ତ ବିଶାଳ, ତୀକ୍ଷ୍ଣ ଓ ଦୀପ୍ତିମାନ୍ ଏବଂ ଓଷ୍ଠସମୂହ ପ୍ରଲମ୍ବିତ ।୫। ସେହି ବୀର ତେଜସ୍ୱୀ ରାବଣ ଦଶଟି ମସ୍ତକଦ୍ୱାରା ବିବିଧ ହିଂସ୍ରଜନ୍ତୁସମାଚ୍ଛନ୍ନ ଶିଖରଶୋଭିତ ମନ୍ଦରପର୍ବତପରି ବିରାଜମାନ ହେଉଅଛି ।୬। ସେହି ନୀଳାଞ୍ଜନସଦୃଶ ରାକ୍ଷସର ବକ୍ଷସ୍ଥଳରେ ହାର ଶୋଭାପାଉଛି; ତାହାର ପୂର୍ଣ୍ଣଚନ୍ଦ୍ରସଦୃଶ ବଦନମଣ୍ଡଳଦ୍ୱାରା ସେ ବାଳସୂର୍ଯ୍ୟସମନ୍ୱିତ ମେଘପରି ଶୋଭାପାଉଅଛି । ତାହାର କେୟୂର ପିନ୍ଧିଥିବା ଉତ୍କୃଷ୍ଟ ଚନ୍ଦନଚର୍ଚ୍ଚିତ ପୃଥୁଳ ବାହୁସମୂହ ଅନନ୍ତମାନଙ୍କଦ୍ୱାରା ଭୂଷିତ ହୋଇ ପଞ୍ଚମସ୍ତକ ବିଶିଷ୍ଟ ସର୍ପଙ୍କ ପରି ସେ ଶୋଭାପାଉଅଛି ।୭-୮। ସେ ରତ୍ନସଂଯୋଗଖଚିତ ଉତ୍ତମ

ମହତି ସ୍ଫାଟିକେ ଚିତ୍ରେ ରତ୍ନସଂଯୋଗଚିତ୍ରିତେ ।
ଉତ୍ତମାସ୍ତରଣାସ୍ତୀର୍ଣେ ସୂପବିଷ୍ଟଂ ବରାସନେ । ୯ ।
ଅଳଂକୃତାଭିରତ୍ୟର୍ଥଂ ପ୍ରମଦାଭିଃ ସମନ୍ତତଃ ।
ବାଲବ୍ୟଜନହସ୍ତାଭିରାରାତ୍ସମୁପସେବିତମ୍ । ୧୦ ।
ଦୁର୍ଧରେଣ ପ୍ରହସ୍ତେନ ମହାପାର୍ଶ୍ୱେନ ରକ୍ଷସା ।
ମନ୍ତ୍ରିଭିର୍ମନ୍ତ୍ରତତ୍ତ୍ୱଜ୍ଞୈର୍ନିକୁମ୍ଭେନ ଚ ମନ୍ତ୍ରିଣା । ୧୧ ।
ଉପୋପବିଷ୍ଟଂ ରକ୍ଷୋଭିଶ୍ଚତୁର୍ଭିର୍ବଳଦର୍ପିତମ୍ ।
କୃତ୍ସ୍ନଂ ପରିବୃତଂ ଲୋକଂ ଚତୁର୍ଭିରିବ ସାଗରୈଃ । ୧୨ ।
ମନ୍ତ୍ରିଭିର୍ମନ୍ତ୍ରତତ୍ତ୍ୱଜ୍ଞୈରନ୍ୟୈଶ୍ଚ ଶୁଭଦର୍ଶିଭିଃ ।
ଆଶ୍ୱାସ୍ୟମାନଂ ସଚିବୈଃ ସୁରୈରିବ ସୁରେଶ୍ୱରମ୍ । ୧୩ ।
ଅପଶ୍ୟଦ୍ରାକ୍ଷସପତିଂ ହନୂମାନତିତେଜସମ୍ ।
ବେଷ୍ଟିତଂ ମେରୁଶିଖରେ ସତୋୟମିବ ତୋୟଦମ୍ । ୧୪ ।
ସ ତୈଃ ସଂପୀଡ୍ୟମାନୋଽପି ରକ୍ଷୋଭିର୍ଭୀମବିକ୍ରମୈଃ ।
ବିସ୍ମୟଂ ପରମଂ ଗତ୍ୱା ରକ୍ଷୋଽଧିପମବୈକ୍ଷତ । ୧୫ ।
ଭ୍ରାଜମାନଂ ତତୋ ଦୃଷ୍ଟ୍ୱା ହନୂମାନ୍ରାକ୍ଷସେଶ୍ୱରମ୍ ।
ମନସା ଚିନ୍ତୟାମାସ ତେଜସା ତସ୍ୟ ମୋହିତଃ । ୧୬ ।

---

ଆସ୍ତରଣାଚ୍ଛାଦିତ, ସ୍ଫଟିକମଣିନିର୍ମିତ, ସୁବିଶାଳ, ବିଚିତ୍ର ବରାସନରେ ବସି ରହିଅଛି । ୯ । ନାନାବିଧ ଅଳଙ୍କାରଭୂଷିତା ରମଣୀମାନେ ଚାମର ବ୍ୟଜନ ହସ୍ତରେ ଧରି ଚାରିଆଡ଼ୁ ତାହାର ସେବା କରୁଅଛନ୍ତି । ୧୦ । ଦୁର୍ଦ୍ଧର, ପ୍ରହସ୍ତ, ମହାପାର୍ଶ୍ୱ ଏବଂ ନିକୁମ୍ଭ ଏହି ଚାରିଜଣ ମନ୍ତ୍ରବିଶାରଦ ରାକ୍ଷସମନ୍ତ୍ରୀ ଚାରିଦିଗରେ ତାହା ନିକଟରେ ବସିଥିବାରୁ, ସମୁଦ୍ରଚତୁଷ୍ଟୟପରିବେଷ୍ଟିତ ଭୂମଣ୍ଡଳପରି ବଳଦର୍ପିତ ରାବଣ ଶୋଭାପାଉଅଛି । ୧୧-୧୨ । ଅନ୍ୟାନ୍ୟ ଶୁଭଦର୍ଶୀ ମନ୍ତ୍ରତତ୍ତ୍ୱଜ୍ଞ ମନ୍ତ୍ରୀମାନେ ରାବଣଙ୍କୁ ଆଶ୍ୱାସନା ଦେଉଥିବାରୁ ସେ ଦେବମନ୍ତ୍ରୀମାନଙ୍କ ଦ୍ୱାରା ପରିବେଷ୍ଟିତ ଇନ୍ଦ୍ରଙ୍କ ପରି ଶୋଭାପାଉଅଛି । ୧୩। ହନୂମାନ୍ ଦେଖିଲେ, ଅତି ତେଜସ୍ୱୀ ରାକ୍ଷସରାଜ ରାବଣ ମେରୁଶିଖରରେ ସଜଳ ଜଳଦସଦୃଶ ବସିରହିଅଛି । ୧୪ । ଭୀମବିକ୍ରମ ରାକ୍ଷସମାନଙ୍କ କର୍ତ୍ତୃକ ନିପୀଡ଼ିତ ହେଉଥିଲେ ମଧ୍ୟ ହନୂମାନ୍ ଅତ୍ୟନ୍ତ ବିସ୍ମିତ ହୋଇ ସେହି ରାକ୍ଷସାଧିପତିଙ୍କୁ ନିରୀକ୍ଷଣ କରିବାକୁ ଲାଗିଲେ । ୧୫ । ଅନନ୍ତର ରାକ୍ଷସରାଜଙ୍କୁ ଏହିପରି ଶୋଭା ପାଉଥିବାର ଦେଖି ତାହାର ତେଜରେ ବିମୋହିତ

ଅହୋ ରୂପମହୋ ଧୈର୍ଯ୍ୟମହୋ ସତ୍ତ୍ୱମହୋ ଦ୍ୟୁତିଃ ।
ଅହୋ ରାକ୍ଷସରାଜସ୍ୟ ସର୍ବଲକ୍ଷଣଯୁକ୍ତତା । ୧୭ ।
ଯଦ୍ୟଧର୍ମୋ ନ ବଲବାନ୍ ସ୍ୟାଦୟଂ ରାକ୍ଷସେଶ୍ୱରଃ ।
ସ୍ୟାଦୟଂ ସୁରଲୋକସ୍ୟ ସଶକ୍ରସ୍ୟାପି ରକ୍ଷିତା । ୧୮ ।
ଅସ୍ୟ କ୍ରୂରୈର୍ନୃଶଂସୈଶ୍ଚ କର୍ମଭିର୍ଲୋକକୁତ୍ସିତୈଃ ।
ସର୍ବେ ବିଭ୍ୟତି ଖଲ୍ୱସ୍ମାଲ୍ଲୋକାଃ ସାମରଦାନବାଃ । ୧୯ ।
ଅୟଂ ହ୍ୟୁତ୍ସହତେ କ୍ରୁଦ୍ଧଃ କର୍ତୁମେକାର୍ଣବଂ ଜଗତ୍ ।
ଇତି ଚିନ୍ତାଂ ବହୁବିଧାମକରୋନ୍ମତିମାନ୍ କପିଃ ।
ଦୃଷ୍ଟ୍ୱା ରାକ୍ଷସରାଜସ୍ୟ ପ୍ରଭାବମମିତୌଜସଃ । ୨୦

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ ସୁନ୍ଦରକାଣ୍ଡେ ରାବଣପ୍ରଭାବ ଦର୍ଶନଂ ନାମ ଏକୋନପଞ୍ଚାଶଃ ସର୍ଗଃ ।

---

# ପଞ୍ଚାଶଃ ସର୍ଗଃ

## ପ୍ରହସ୍ତପ୍ରଶ୍ନଃ

ତମୁଦ୍‌ବୀକ୍ଷ୍ୟ ମହାବାହୁଃ ପିଙ୍ଗାକ୍ଷଂ ପୁରତଃ ସ୍ଥିତମ୍ ।
ରୋଷେଣ ମହତାବିଷ୍ଟୋ ରାବଣୋ ଲୋକରାବଣଃ । ୧ ।

---

ହୋଇ ହନୂମାନ୍ ମନେ ମନେ ଚିନ୍ତା କରିବାକୁ ଲାଗିଲେ । ୧୬ । "ଅହୋ ! ଏ ରାକ୍ଷସରାଜର କି ରୂପ ! କି ଧୈର୍ଯ୍ୟ ! କି ପରାକ୍ରମ ! କି ଦୀପ୍ତି ! କି ସର୍ବଲକ୍ଷଣ-ସମ୍ପନ୍ନତା ! । ୧୭ । ଏହି ବଳବାନ୍ ରାକ୍ଷସରାଜ ଯଦି ଅଧର୍ମୀ ନ ହୋଇଥାନ୍ତା, ତାହାହେଲେ ସେ ଇନ୍ଦ୍ରଙ୍କ ସହିତ ସମଗ୍ର ଦେବଲୋକକୁ ମଧ୍ୟ ରକ୍ଷା କରିପାରନ୍ତା । ୧୮ । ଏ ଯେଉଁ ସକଳ ଲୋକନିନ୍ଦନୀୟ ନୃଶଂସ କାର୍ଯ୍ୟ ଅନୁଷ୍ଠାନ କରିଅଛି, ତଦ୍ଦ୍ୱାରା ଦେବତା ଓ ଦାନବମାନଙ୍କ ସହିତ ସମସ୍ତ ଲୋକ ଏହାକୁ ଭୟ କରୁଅଛନ୍ତି । ୧୯ । ଏ କ୍ରୁଦ୍ଧ ହେଲେ ସମଗ୍ର ଜଗତକୁ ସମୁଦ୍ର ସହିତ ଏକ କରି-ଦେଇପାରେ" । ମତିମାନ୍ ହନୂମାନ୍ ଅମିତବିକ୍ରମ ରାକ୍ଷସରାଜ ରାବଣର ପ୍ରଭାବ ଦର୍ଶନ କରି ଏହିରୂପେ ନାନାବିଧ ଚିନ୍ତା କରିବାକୁ ଲାଗିଲେ । ୨୦ ।

---

## ୫୦ଶ ସର୍ଗ

### ( ପ୍ରହସ୍ତର ପ୍ରଶ୍ନ )

ସେହି ପିଙ୍ଗଳବର୍ଣ୍ଣ ଚକ୍ଷୁବିଶିଷ୍ଟ ବାନରକୁ ସମ୍ମୁଖରେ ଠିଆ ହୋଇଥିବାର ଦେଖି ସର୍ବଲୋକତ୍ରାସକାରୀ ମହାବାହୁ ରାବଣ ଅତିଶୟ କ୍ରୋଧାବିଷ୍ଟ ହୋଇପଡ଼ିଲା ।୧।

ଶଙ୍କାହତାତ୍ମା ଦଧ୍ୟୌ ସ କପୀନ୍ଦ୍ରଂ ତେଜସାବୃତମ୍ ।
କିମେଷ ଭଗବାନ୍ନନ୍ଦୀ ଭବେତ୍ସାକ୍ଷାଦିହାଗତଃ । ୨ ।
ଯେନ ଶପ୍ତୋଽସ୍ମି କୈଳାସେ ମୟା ପ୍ରହସିତେ ପୁରା ।
ସୋଽୟଂ ବାନରମୂର୍ତ୍ତିଃ ସ୍ୟାତ୍କିଂସ୍ୱିଦ୍ବାଣୋଽପି ବାସୁରଃ ।୩।
ସ ରାଜା ରୋଷତାମ୍ରାକ୍ଷଃ ପ୍ରହସ୍ତଂ ମନ୍ତ୍ରିସତ୍ତମମ୍ ।
କାଲଯୁକ୍ତମୁବାଚେଦଂ ବଚୋ ବିପୁଲମର୍ଥବତ୍ । ୪ ।

ଦୁରାତ୍ମା ପୃଚ୍ଛ୍ୟତାମେଷ କୁତଃ କିଂ ବାସ୍ୟ କାରଣମ୍ ।
ବନଭଙ୍ଗେ ଚ କୋଽସ୍ୟାର୍ଥୋ ରାକ୍ଷସୀନାଂ ଚ ତର୍ଜନେ । ୫ ।

ମତ୍ପୁରୀମପ୍ରଧୃଷ୍ୟାଂ ବୈ ଗମନେ କିଂ ପ୍ରୟୋଜନମ୍ ।
ଆୟୋଧନେ ବା କିଂ କାର୍ଯ୍ୟଂ ପୃଚ୍ଛ୍ୟତାମେଷ ଦୁର୍ମତିଃ । ୬ ।

ରାବଣସ୍ୟ ବଚଃ ଶ୍ରୁତ୍ୱା ପ୍ରହସ୍ତୋ ବାକ୍ୟମବ୍ରବୀତ୍ ।
ସମାଶ୍ୱସିହି ଭଦ୍ରଂ ତେ ନ ଭୀଃ କାର୍ଯ୍ୟା ତ୍ୱୟା କପେ ! । ୭ ।

ଯଦି ତାବତ୍ତ୍ୱମିନ୍ଦ୍ରେଣ ପ୍ରେଷିତୋ ରାବଣାଲୟମ୍ ।
ତତ୍ତ୍ୱମାଖ୍ୟାହି ମା ତେ ଭୂଦ୍ଭୟଂ ବାନର ! ମୋକ୍ଷ୍ୟସେ । ୮ ।

---

ତେଜଃପୂର୍ଣ୍ଣ କପିରାଜକୁ ଦେଖି ତାହାର ମନ ଶଙ୍କାପୂର୍ଣ୍ଣ ହୋଇଗଲା ଏବଂ ସେ ଚିନ୍ତା କରିବାକୁ ଲାଗିଲା—"ଏ କଣ ସାକ୍ଷାତ୍ ଭଗବାନ୍ ନନ୍ଦୀ ଏଠାକୁ ଆସିଅଛନ୍ତି ! ।୨। ପୂର୍ବେ କୈଳାସରେ ଯାହାଙ୍କୁ ଉପହାସ କରିବାରୁ ସେ ମୋତେ ଅଭିଶାପ ଦେଇଥିଲେ, ଏ କ'ଣ ସେହି ! ବାନରମୂର୍ତ୍ତି ଧାରଣକରି ଆସିଛନ୍ତି ! କିମ୍ବା ଏ କଣ ବାଣାସୁର ! ।୩। ଏହିପରି ଚିନ୍ତାକରି ରାଜା ରାବଣ କ୍ରୋଧରେ ରକ୍ତଚକ୍ଷୁ ହୋଇ କାଳୋଚିତ ଅର୍ଥସଙ୍ଗତ ବାକ୍ୟରେ ମନ୍ତ୍ରିଶ୍ରେଷ୍ଠ ପ୍ରହସ୍ତଙ୍କୁ କହିଲା ।୪। "ଏହି ଦୁରାତ୍ମାକୁ ପଚାର, କେଉଁଠାରୁ କି ଉଦ୍ଦେଶ୍ୟରେ ଏଠାକୁ ଆସିଛି, କାହିଁକି ବା ଅଶୋକବନ ଭାଙ୍ଗିଲା ଏବଂ ରାକ୍ଷସୀମାନଙ୍କୁ ଡରାଇଲା ? ।୫। ପୁଣି ଏହି ଦୁର୍ମତିକୁ ପଚାର, ମୋର ଏହି ଦୁର୍ଜେୟ ନଗରୀକୁ ଆସିବାର କି ପ୍ରୟୋଜନ ? ଏବଂ ଯୁଦ୍ଧ କରିବାର ବା କି ପ୍ରୟୋଜନ ଥିଲା ?" ।୬। ରାବଣର କଥା ଶୁଣି ପ୍ରହସ୍ତ କହିଲା, "ହେ ବାନର ! ତୁ ଆଶ୍ୱସ୍ତ ହୁଅ, ଭୟ କର ନାହିଁ; ତୋର ମଙ୍ଗଳ ହେଉ ।୭। ତୁ ଯଦି ଇନ୍ଦ୍ରଙ୍କ କର୍ତ୍ତୃକ ରାବଣଗୃହକୁ ପ୍ରେରିତ ହୋଇଥାଉ, ତାହାହେଲେ ଯଥାର୍ଥ-ଭାବରେ ତାହା କହିଦେ, ତୋର ଭୟ ନାହିଁ, ତୁ ମୁକ୍ତି ପାଇବୁ ।୮। ଅଥବା ତୁ

ଯଦି ବୈଶ୍ରବଣସ୍ୟ ତ୍ୱଂ ଯମସ୍ୟ ବରୁଣସ୍ୟ ଚ ।
ଚାରୁରୂପମିଦଂ କୃତ୍ୱା ପ୍ରବିଷ୍ଟୋ ନଃ ପୁରୀମିମାମ୍ । ୯ ।
ବିଷ୍ଣୁନା ପ୍ରେଷିତୋ ବାପି ଦୂତୋ ବିଜୟକାଙ୍କ୍ଷିଣା ।
ନ ହି ତେ ବାନରଂ ତେଜୋ ରୂପମାତ୍ରଂ ତୁ ବାନରମ୍ । ୧୦ ।
ତତ୍ତ୍ୱତଃ କଥୟସ୍ୱାଦ୍ୟ ତତୋ ବାନର ! ମୋକ୍ଷ୍ୟସେ ।
ଅନୃତଂ ବଦତଶ୍ଚାପି ଦୁର୍ଲଭଂ ତବ ଜୀବିତମ୍ । ୧୧ ।
ଅଥବା ଯନ୍ନିମିତ୍ତସ୍ତେ ପ୍ରବେଶୋ ରାବଣାଲୟେ ।
ଏବମୁକ୍ତୋ ହରିବରସ୍ତଦା ରକ୍ଷୋଗଣେଶ୍ୱରମ୍ । ୧୨ ।
ଅବ୍ରବୀନ୍ନାସ୍ମି ଶକ୍ରସ୍ୟ ଯମସ୍ୟ ବରୁଣସ୍ୟ ଚ ।
ଧନଦେନ ନ ମେ ସଖ୍ୟଂ ବିଷ୍ଣୁନା ନାସ୍ମି ଚୋଦିତଃ । ୧୩।
ଜାତିରେବ ମମ ତ୍ୱେଷା ବାନରୋଽହମିହାଗତଃ ।
ଦର୍ଶନେ ରାକ୍ଷସେନ୍ଦ୍ରସ୍ୟ ତଦିଦଂ ଦୁର୍ଲଭଂ ମୟା । ୧୪ ।
ବନଂ ରାକ୍ଷସରାଜସ୍ୟ ଦର୍ଶନାର୍ଥେ ବିନାଶିତମ୍ ।
ତତସ୍ତେ ରାକ୍ଷସାଃ ପ୍ରାପ୍ତା ବଲିନୋ ଯୁଦ୍ଧକାଙ୍କ୍ଷିଣ । ୧୫ ।

---

ଯଦି କୁବେର, ଯମ ବା ବରୁଣଙ୍କର ଚର ହୋଇ ଏହି ମନୋହର ରୂପ ଧରି ଆମମାନଙ୍କର ଏହି ପୁରୀରେ ପ୍ରବେଶ କରିଥାଅ ତେବେ ତାହା କହ ? । ୯ । ଅଥବା ବିଜୟାଭିଳାଷୀ ବିଷ୍ଣୁ ତୋତେ ଦୂତରୂପେ ପଠାଇଛନ୍ତି କି ? କାରଣ ତୁ ରୂପରେ ବାନର ହେଲେ ମଧ୍ୟ ତୋର ବିକ୍ରମ ତ ବାନରପରି ନୁହେ ? । ୧୦ । ରେ ବାନର ! ବର୍ତ୍ତମାନ ଯଥାର୍ଥ କଥା କହିଦେ, ତାହାହେଲେ ତୁ ମୁକ୍ତିପାଇବୁ । ମିଥ୍ୟା କହିଲେ ତୋର ଜୀବନ ଦୁର୍ଲଭ ହୋଇପଡ଼ିବ । ୧୧ । ଅଥବା ଯେଉଁ କାରଣରୁ ତୁ ରାବଣ ଗୃହରେ ପ୍ରବେଶ କରିଛୁ ତାହା କହିଦେ ।" ବାନରଶ୍ରେଷ୍ଠ ହନୁମାନଙ୍କୁ ଏହିପରି କହିବା ଉତ୍ତାରୁ ସେ ରାକ୍ଷସରାଜ ରାବଣଙ୍କୁ କହିଲେ, "ମୁଁ ଇନ୍ଦ୍ର, ଯମ ବା ବରୁଣଙ୍କର ଦୂତ ନୁହେଁ । କୁବେରଙ୍କ ସହିତ ମୋର କୌଣସି ମିତ୍ରତା ନାହିଁ ବା ବିଷ୍ଣୁଙ୍କ ଦ୍ୱାରା ମୁଁ ପ୍ରେରିତ ହୋଇ ନାହିଁ । ୧୨-୧୩ । ମୋର ଏହାହିଁ ସ୍ୱାଭାବିକ ରୂପ ଏବଂ ମୁଁ ଜାତିରେ ବାନର । ରାକ୍ଷସରାଜଙ୍କୁ ଦେଖିବା ଦୁର୍ଲଭ ହେବାରୁ ମୁଁ ତାହାଙ୍କୁ ଦେଖିବା ଉଦ୍ଦେଶ୍ୟରେ ରାକ୍ଷସରାଜଙ୍କର ଏ ବନକୁ ବିନଷ୍ଟ କରିଦେଇଅଛି । ଅନନ୍ତର ସେହି ବଳବାନ୍ ରାକ୍ଷସମାନେ ଯୁଦ୍ଧାଭିଳାଷରେ ଆସି ଉପସ୍ଥିତ ହେବାରୁ ମୁଁ ନିଜର ଶରୀର ରକ୍ଷା କରିବା ପାଇଁ ସେମାନଙ୍କ ସହିତ ଯୁଦ୍ଧ କରିଅଛି । ଦେବତା

ରକ୍ଷଣାର୍ଥଂ ଚ ଦେହସ୍ୟ ପ୍ରତ ଯୁଦ୍ଧା ମୟାରଣେ ।
ଅସ୍ତ୍ରପାଶୈର୍ନ ଶକ୍ୟୋଽହଂ ବଦ୍ଧୁଂ ଦେବାସୁରୈରପି ।୧୬ ।
ପିତାମହାଦେବ ବରୋ ମମାପି ହି ସମାଗତଃ ।
ରାଜାନଂ ଦ୍ରଷ୍ଟୁକାମେନ ମୟାସ୍ତ୍ରମନୁବର୍ତ୍ତିତମ୍ । ୧୭ ।
ବିମୁକ୍ତୋଽପ୍ୟହମସ୍ତ୍ରେଣ ରାକ୍ଷସୈସ୍ତ୍ୱଭିବେଦିତଃ ।
କେନଚଦ୍ରାମକାର୍ଯ୍ୟେଣ ଆଗତୋଽସ୍ମି ତବାନ୍ତିକମ୍ । ୧୮ ।
ଦୂତୋଽହମିତ ବିଜ୍ଞାୟ ରାଘବସ୍ୟାମିତୌଜସଃ ।
ଶ୍ରୂୟତାମେବ ବଚନଂ ମମ ପଥ୍ୟମିଦଂ ପ୍ରଭୋ ! । ୧୯ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତସହସ୍ରିକାୟାଂ ସଂହିତାୟାଂ ସୁନ୍ଦରକାଣ୍ଡେ ପ୍ରହସ୍ତପ୍ରଶ୍ନୋ ନାମ ପଞ୍ଚାଶଃ ସର୍ଗଃ ।

# ଏକପଞ୍ଚାଶଃ ସର୍ଗଃ

## ହନୂମଦୁପଦେଶଃ

ତଂ ସମୀକ୍ଷ୍ୟ ମହାସତ୍ତ୍ୱଂ ସତ୍ତ୍ୱବାନ୍ ହରିସତ୍ତମଃ ।
ବାକ୍ୟମର୍ଥବଦବ୍ୟଗ୍ରସ୍ତମୁବାଚ ଦଶାନନମ୍ । ୧ ।

---

ବା ଅସୁରମାନେ ମଧ୍ୟ ମୋତେ ଅସ୍ତ୍ରପାଶରେ ବନ୍ଧନ କରିବାକୁ ସମର୍ଥ ନୁହନ୍ତି । ।୧୫-୧୬। ସ୍ୱୟଂ ପିତାମହ ବ୍ରହ୍ମାଙ୍କଠାରୁ ମୁଁ ଏହିପରି ବର ପାଇଅଛି । ମୁଁ କେବଳ ରାଜାଙ୍କୁ ଦେଖିବା ଉଦ୍ଦେଶ୍ୟରେ ଏହି ଅସ୍ତ୍ରର ବଶ୍ୟତା ସ୍ୱୀକାର କରିଅଛି । ୧୭ । ମୁଁ ସେହି ଅସ୍ତ୍ରବନ୍ଧନରୁ ମୁକ୍ତ ହୋଇ ଏବଂ ରାକ୍ଷସମାନଙ୍କ ଦ୍ୱାରା ନିପୀଡ଼ିତ ହୋଇ ରାମଙ୍କ କାର୍ଯ୍ୟସାଧନ ନିମନ୍ତେ କୌଣସିମତେ ତୁମ୍ଭ ନିକଟରେ ଆସି ପହଞ୍ଚିଅଛି ।୧୮। ହେ ପ୍ରଭୋ ! ମୁଁ ଅମିତତେଜା ରାମଙ୍କର ଦୂତ, ଏହା ଜାଣ ଏବଂ ମୁଁ ଯେଉଁ ହିତବାକ୍ୟ କହୁଅଛି ତାହା ମଧ୍ୟ ଶୁଣ” । ୧୯ ।

# ୫୧ଶ ସର୍ଗ

## ( ହନୂମାନଙ୍କର ଉପଦେଶ )

ସତ୍ତ୍ୱସମ୍ପନ୍ନ ବାନରଶ୍ରେଷ୍ଠ ହନୂମାନ୍ ବଳବାନ୍ ରାବଣ ଆଡ଼କୁ ଦୃଷ୍ଟି ନିକ୍ଷେପ କରି ଅବ୍ୟଗ୍ର ଭାବରେ ଅର୍ଥପୂର୍ଣ୍ଣ ବାକ୍ୟରେ କହିବାକୁ ଲାଗିଲେ ।୧। “ହେ ରାକ୍ଷସରାଜ ! ମୁଁ ସୁଗ୍ରୀବଙ୍କ

ଅହଂ ସୁଗ୍ରୀବସଂଦେଶାଦିହ ପ୍ରାପ୍ତସ୍ତବାନ୍ତିକେ ।
ରାକ୍ଷସେଶ ! ହରୀଶସ୍ତ୍ୱାଂ ଭ୍ରାତା କୁଶଳମବ୍ରବୀତ୍ ।୨।
ଭ୍ରାତୁଃ ଶୃଣୁ ସମାଦେଶଂ ସୁଗ୍ରୀବସ୍ୟ ମହାତ୍ମନଃ ।
ଧର୍ମାର୍ଥସଂହିତଂ ବାକ୍ୟମିହ ଚାମୁତ୍ର ଚ କ୍ଷମମ୍ ।୩।
ରାଜା ଦଶରଥୋ ନାମ ରଥକୁଞ୍ଜରବାଜିମାନ୍ ।
ପିତେବ ବନ୍ଧୁର୍ଲୋକସ୍ୟ ସୁରେଶ୍ୱରସମଦ୍ୟୁତିଃ ।୪।
ଜ୍ୟେଷ୍ଠସ୍ତସ୍ୟ ମହାବାହୁଃ ପୁତ୍ରଃ ପ୍ରିୟତରଃ ପ୍ରଭୁଃ ।
ପିତୁର୍ନିଦେଶାନ୍ନିଷ୍କ୍ରାନ୍ତଃ ପ୍ରବିଷ୍ଟୋ ଦଣ୍ଡକାବନମ୍ ।୫।
ଲକ୍ଷ୍ମଣେନ ସହ ଭ୍ରାତ୍ରା ସୀତୟା ସହ ଭାର୍ୟୟା ।
ରାମୋ ନାମୋ ମହାତେଜା ଧର୍ମ୍ୟଂ ପନ୍ଥାନମାଶ୍ରିତଃ ।୬।
ତସ୍ୟ ଭାର୍ୟା ଜନସ୍ଥାନେ ଭ୍ରଷ୍ଟା ସୀତେତି ବିଶ୍ରୁତା ।
ବୈଦେହସ୍ୟ ସୁତା ରାଜ୍ଞୋ ଜନକସ୍ୟ ମହାତ୍ମନଃ ।୭।
ମାର୍ଗମାଣସ୍ତୁ ତାଂ ଦେବୀଂ ରାଜପୁତ୍ରଃ ସହାନୁଜଃ ।
ଋଶ୍ୟମୂକମନୁପ୍ରାପ୍ତଃ ସୁଗ୍ରୀବେଣ ଚ ସଂଗତଃ ।୮।
ତସ୍ୟ ତେନ ପ୍ରତିଜ୍ଞାତଂ ସୀତାୟାଃ ପରିମାର୍ଗଣମ୍ ।
ସୁଗ୍ରୀବସ୍ୟାପି ରାମେଣ ହରିରାଜ୍ୟଂ ନିବେଦିତମ୍ ।୯।

---

ଆଦେଶରେ ତୁମ୍ଭ ନିକଟକୁ ଆସିଅଛି । ବାନରରାଜ ସୁଗ୍ରୀବ ଭ୍ରାତାରୂପରେ ତୁମ୍ଭର କୁଶଳ ପଚାରି ଅଛନ୍ତି ।୨। ତୁମେ ସେହି ମହାତ୍ମା ଭ୍ରାତା ସୁଗ୍ରୀବଙ୍କ ଇହକାଳ ଏବଂ ପରକାଳ ଉଭୟର ହିତକର ଧର୍ମଯୁକ୍ତ ବାକ୍ୟ ଶ୍ରବଣକର ।୩। ରଥ, ହସ୍ତୀ ଏବଂ ଅଶ୍ୱମାନଙ୍କର ଅଧିକାରୀ ଦଶରଥ ନାମକ ରାଜା ସମଗ୍ର ଲୋକର ପିତାସଦୃଶ ଓ ବନ୍ଧୁ ଅଟନ୍ତି ଏବଂ ତାହାଙ୍କର ଦୀପ୍ତି ଇନ୍ଦ୍ରଙ୍କ ସଦୃଶ ସମାନ ଅଟେ ।୪। ତାହାଙ୍କର ପ୍ରିୟତର ମହାବାହୁ, ସର୍ବଶକ୍ତିସମ୍ପନ୍ନ, ଜ୍ୟେଷ୍ଠପୁତ୍ର ରାମ ପିତାଙ୍କ ନିର୍ଦ୍ଦେଶରେ ରାଜ୍ୟରୁ ବହିଷ୍କୃତ ହୋଇ ଦଣ୍ଡକାରଣ୍ୟରେ ଭାଇ ଲକ୍ଷ୍ମଣ ଏବଂ ଭାର୍ଯ୍ୟା ସୀତାଙ୍କ ସହିତ ପ୍ରବେଶ କରିଅଛନ୍ତି । ସେହି ମହାତେଜା ରାମ ଧର୍ମପଥ ଆଶ୍ରୟ କରି ରହିଛନ୍ତି ।୫-୬। ମହାତ୍ମା ବିଦେହରାଜା ଜନକଙ୍କ ସୀତା ନାମ୍ନୀ କନ୍ୟା, ନାମରେ ସୁବିଖ୍ୟାତା, ତାଙ୍କର ଭାର୍ଯ୍ୟା ବନରେ ଅପହୃତା ହୋଇଅଛନ୍ତି ।୭। ରାଜପୁତ୍ର ରାମ ଅନୁଜଙ୍କ ସହିତ ସେହି ଦେବୀଙ୍କୁ ଅନ୍ୱେଷଣ କରି କରି ଋଷ୍ୟମୂକ ପର୍ବତରେ ଆସି ପହଞ୍ଚିଲେ ଏବଂ ସୁଗ୍ରୀବଙ୍କ ସହିତ ମିଳିତ ହେଲେ ।୮। ସୁଗ୍ରୀବ ପ୍ରତିଜ୍ଞା କଲେ ଯେ ସୀତାଙ୍କୁ ଖୋଜିଦେବେ; ରାମ ମଧ୍ୟ ସୁଗ୍ରୀବଙ୍କୁ ବାନରରାଜ୍ୟ

ତତସ୍ତେନ ମୃଧେ ହତ୍ୱା ରାଜପୁତ୍ରେଣ ବାଲିନମ୍ ।
ସୁଗ୍ରୀବଃ ସ୍ଥାପିତୋ ରାଜ୍ୟେ ହର୍ୟୃକ୍ଷାଣାଂ ଗଣେଶ୍ୱରଃ । ୧୦ ।
ତ୍ୱମ୍ପି ବଜ୍ଞାତପୂର୍ବଶ୍ଚ ବାଲୀ ବାନରପୁଂଗବଃ ।
ସ ତେନ ନିହତଃ ସଂଖ୍ୟେ ଶରେଣୈକେନ ବାନରଃ । ୧୧।
ସ ସୀତାମାର୍ଗଣେ ବ୍ୟଗ୍ରଃ ସୁଗ୍ରୀବଃ ସତ୍ୟସଙ୍ଗରଃ ।
ହରୀନ୍ ସଂପ୍ରେଷୟାମାସ ଦିଶଃ ସର୍ବା ହରୀଶ୍ୱରଃ । ୧୨ ।
ତାଂ ହରୀଣାଂ ସହସ୍ରାଣି ଶତାନି ନିୟୁତାନି ଚ ।
ଦିକ୍ଷୁ ସର୍ବାସୁ ମାର୍ଗନ୍ତେ ହ୍ୟଧଶ୍ଚୋପରି ଚାମ୍ବରେ । ୧୩ ।
ବୈନତେୟସମାଃ କେଚିତ୍କେଚିତ୍ତତ୍ରାନିଲୋପମାଃ ।
ଅସଙ୍ଗଗତୟଃ ଶୀଘ୍ରା ହରିବୀରା ମହାବଲାଃ । ୧୪ ।
ଅହଂ ତୁ ହନୁମାନ୍ନାମ ମାରୁତସ୍ୟୌରସଃ ସୁତଃ ।
ସୀତାୟାସ୍ତୁ କୃତେ ତୂର୍ଣ୍ଣଂ ଶତଯୋଜନମାୟତମ୍ । ୧୫ ।
ସମୁଦ୍ରଂ ଲଂଘୟିତ୍ୱୈବ ତ୍ୱାଂ ଦିଦୃକ୍ଷୁରିହାଗତଃ ।
ଭ୍ରମତା ଚ ମୟା ଦୃଷ୍ଟା ଗୃହେ ତେ ଜନକାତ୍ମଜା । ୧୬ ।

---

ପ୍ରଦାନ କରିବାକୁ ସ୍ୱୀକାର କରିଥିଲେ । ୯ । ଅନନ୍ତର ରାଜପୁତ୍ର ରାମ ଯୁଦ୍ଧରେ ବାଲିଙ୍କୁ ନିହତକରି ବାନର ଓ ଭଲ୍ଲୁକମାନଙ୍କର ରାଜାରୂପେ ସୁଗ୍ରୀବଙ୍କୁ ରାଜ୍ୟରେ ଅଭିଷିକ୍ତ କଲେ । ୧୦ । ବାନରରାଜ ବାଲିଙ୍କୁ ପୂର୍ବରୁ ତୁମେ ଜାଣ । ସେହି ବାନର ଯୁଦ୍ଧରେ ରାମଙ୍କ କର୍ତ୍ତୃକ ଗୋଟିଏମାତ୍ର ଶରରେ ନିହତ ହୋଇଅଛନ୍ତି । ୧୧ । ଅନନ୍ତର ସତ୍ୟପ୍ରତିଜ୍ଞ ବାନରରାଜ ସୁଗ୍ରୀବ ସୀତାଙ୍କ ଅନ୍ୱେଷଣ ନିମନ୍ତେ ଉଦ୍‌ବିଗ୍ନ ହୋଇ ସବୁ ଦିଗକୁ ବାନରମାନଙ୍କୁ ପଠାଇଛନ୍ତି । ୧୨ । ସୁତରାଂ ଶତ ଶତ, ସହସ୍ର ସହସ୍ର, ନିୟୁତ ନିୟୁତ ବାନର ସମସ୍ତ ଦିଗ, ଆକାଶମଣ୍ଡଳ ତଥା ପାତାଳରେ ମଧ୍ୟ ସୀତାଙ୍କର ଅନ୍ୱେଷଣ କରୁଅଛନ୍ତି । ୧୩ । ସେମାନଙ୍କ ମଧ୍ୟରେ କେହି ଗରୁଡ଼ସମାନ, କେହି ବା ପବନଙ୍କ ସମାନ ଅଟନ୍ତି । ଏହି ମହାବଳୀ ବାନରବୀରମାନେ ସମସ୍ତେ ଅପ୍ରତିହତଗତି ଏବଂ ଶୀଘ୍ରଗାମୀ ଅଟନ୍ତି । ୧୪ । ମୁଁ ପବନଙ୍କର ଔରସଜାତ ପୁତ୍ର ଏବଂ ମୋର ନାମ ହନୁମାନ୍; ସୀତାଙ୍କ ଲାଗି ଅତିଶୀଘ୍ର ଶତଯୋଜନବିସ୍ତୀର୍ଣ୍ଣ ସମୁଦ୍ର ପାରହୋଇ ତୁମଙ୍କୁ ଦେଖିବା ନିମନ୍ତେ ଏଠାକୁ ଆସିଅଛି । ମୁଁ ବୁଲି ବୁଲି ତୁମ୍ଭର ଗୃହରେ ଜନକନନ୍ଦିନୀଙ୍କୁ ଦେଖିଅଛି । ୧୫-୧୬ ।

ତଦ୍ଭବାନ୍ ଦୃଷ୍ଟଧର୍ମାର୍ଥସ୍ତପଃକୃତପରିଗ୍ରହଃ ।
ପରଦାରାନ୍ ମହାପ୍ରାଜ୍ଞ ! ନୋପରୋଦ୍ଧୁଂ ତ୍ୱମର୍ହସି ।୧୭।
ନ ହି ଧର୍ମବିରୁଦ୍ଧେଷୁ ବହ୍ୱପାୟେଷୁ କର୍ମସୁ ।
ମୂଳଘାତିଷୁ ସଜ୍ଜନ୍ତେ ବୁଦ୍ଧିମନ୍ତୋ ଭବଦ୍ୱିଧାଃ ।୧୮।
କଶ୍ଚ ଲକ୍ଷ୍ମଣମୁକ୍ତାନାଂ ରାମକୋପାନୁବର୍ତ୍ତିନାମ୍ ।
ଶରାଣାମଗ୍ରତଃ ସ୍ଥାତୁଂ ଶକ୍ତୋ ଦେବାସୁରେଷ୍ୱପି ।୧୯।
ନ ଚାପି ତ୍ରିଷୁ ଲୋକେଷୁ ରାଜନ୍ ! ବିଦ୍ୟେତ କଶ୍ଚନ ।
ରାଘବସ୍ୟ ବ୍ୟଲୀକଂ ଯଃ କୃତ୍ୱା ସୁଖମବାପ୍ନୁୟାତ୍ ।୨୦।
ତତ୍ତ୍ରିକାଲହିତଂ ବାକ୍ୟଂ ଧର୍ମ୍ୟମର୍ଥାନୁଯାୟି ଚ ।
ମନ୍ୟସ୍ୱ ନରଶାର୍ଦ୍ଦୂଳେ ଜାନକୀ ପ୍ରତିଦୀୟତାମ୍ ।୨୧।
ଦୃଷ୍ଟା ହୀୟଂ ମୟା ଦେବୀ ଲବ୍ଧଂ ଯଦିହ ଦୁର୍ଲଭମ୍ ।
ଉତ୍ତରଂ କର୍ମ ଯଚ୍ଛେଷଂ ନିମିତ୍ତଂ ତତ୍ର ରାଘବଃ ।୨୨।
ଲକ୍ଷିତେୟଂ ମୟା ସୀତା ତଥା ଶୋକପରାୟଣା ।
ଗୃହେ ଯାଂ ନାଭିଜାନାସି ପଞ୍ଚାସ୍ୟାମିବ ପନ୍ନଗୀମ୍ ।୨୩।

---

ସୁତରାଂ ହେ ମହାପ୍ରାଜ୍ଞ ! ଆପଣ ଧର୍ମ ଏବଂ ଅର୍ଥ ଜାଣନ୍ତି, ତପୋବଳରେ ସୌଭାଗ୍ୟ ଲାଭ କରିଅଛନ୍ତି; ଅତଏବ ପରସ୍ତ୍ରୀକୁ ନିରୋଧ କରି ରଖିବା ତୁମ୍ଭର ଉଚିତ ନୁହେଁ ।୧୭। ଆପଣଙ୍କ ପରି ବୁଦ୍ଧିମାନ୍ ବ୍ୟକ୍ତିମାନେ ସମୂଳେ ବିନଷ୍ଟକାରୀ, ବହୁ ଅନର୍ଥର ହେତୁ, ଧର୍ମବିରୁଦ୍ଧ କାର୍ଯ୍ୟରେ ଆସକ୍ତ ହୁଅନ୍ତି ନାହିଁ ।୧୮। ଦେବତା ଏବଂ ଅସୁରମାନଙ୍କ ମଧ୍ୟରେ ଏପରି କିଏ ଅଛି, ଯେ ରାମଙ୍କ କୋପର ଅନୁବର୍ତ୍ତୀ ହୋଇ ଲକ୍ଷ୍ମଣଙ୍କ କର୍ତ୍ତୃକ ନିକ୍ଷିପ୍ତ ଶରରାଜିର ସମ୍ମୁଖରେ ଠିଆହେବାକୁ ସମର୍ଥ ହେବ ?।୧୯। ହେ ରାଜନ୍ ! ତିନି ଲୋକମଧ୍ୟରେ ଏପରି କେହି ନାହିଁ, ଯେ ରାମଙ୍କର ଅପ୍ରିୟ ସାଧନ କରି ସୁଖ ପାଇପାରିବ ।୨୦। ଅତଏବ ମୋର ଏହି ତ୍ରିକାଳହିତକର ତଥା ଧର୍ମ ଏବଂ ଅର୍ଥର ଉପଯୋଗୀ ବାକ୍ୟକୁ ତୁମ୍ଭେ ଅନୁମୋଦନ କର ଏବଂ ନରଶାର୍ଦ୍ଦୂଳ ରାମଙ୍କଠାରେ ସୀତାଙ୍କୁ ପ୍ରତ୍ୟର୍ପଣ କରିଦିଅ ।୨୧। ମୁଁ ସେହି ସୀତାଦେବୀଙ୍କୁ ଦେଖିଲିଣି ଏବଂ ଯାହା ଦୁର୍ଲ୍ଲଭ ତାହା ପାଇସାରିଲିଣି । ଏହାପରେ ଅବଶିଷ୍ଟ ଯାହା କାର୍ଯ୍ୟ କରିବାକୁ ହେବ, ତାହା ରାଘବ ହିଁ ସ୍ଥିର କରିବେ ।୨୨। ମୁଁ ସୀତାଙ୍କୁ ଅତିଶୟ ଶୋକ-ପରାୟଣା ଦେଖିଅଛି । ତୁମ୍ଭେ ଜାଣିପାରୁ ନାହଁ ଯେ, ସେ ପଞ୍ଚଶୀର୍ଷା ସର୍ପିଣୀ ପରି ତୁମ୍ଭ ଗୃହରେ ରହିଅଛନ୍ତି ।୨୩। ଅସୁରମାନଙ୍କ ସହିତ ଦେବତାମାନେ

ନେୟଂ ଜରୟିତୁଂ ଶକ୍ୟା ସାସୁରୈରମରୈରପି ।
ବିଷସଂସୃଷ୍ଟମତ୍ୟର୍ଥଂ ଭୁକ୍ତମନ୍ନମିବୌଜସା ।୨୪।
ତପଃସଂତାପଲବ୍ଧସ୍ତେ ଯୋଽୟଂ ଧର୍ମପରିଗ୍ରହଃ ।
ନ ସ ନାଶୟିତୁଂ ନ୍ୟାଯ୍ୟ ଆତ୍ମପ୍ରାଣପରିଗ୍ରହଃ ।୨୫।
ଅବଧ୍ୟତାଂ ତପୋଭିର୍ଯାଂ ଭବାନ୍ ସମନୁପଶ୍ୟତି ।
ଆତ୍ମନଃ ସାସୁରୈର୍ଦେବୈର୍ହେତୁସ୍ତତ୍ରାପ୍ୟୟଂ ମହାନ୍ ।୨୬।
ସୁଗ୍ରୀବୋ ନ ଚ ଦେବୋଽୟଂ ନ ଯକ୍ଷୋ ନ ଚ ରାକ୍ଷସଃ ।
ମାନୁଷୋ ରାଘବୋ ରାଜନ୍ ! ସୁଗ୍ରୀବଶ୍ଚ ହରୀଶ୍ୱରଃ ।
ତସ୍ମାତ୍ ପ୍ରାଣପରିତ୍ରାଣଂ କଥଂ ରାଜନ୍ ! କରିଷ୍ୟସି ।୨୭।
ନ ତୁ ଧର୍ମୋପସଂହାରମଧର୍ମଫଲସଂହିତମ୍ ।
ତଦେବ ଫଲମନ୍ୱେତି ଧର୍ମଶ୍ଚାଧର୍ମନାଶନଃ ।୨୮।
ପ୍ରାପ୍ତଂ ଧର୍ମଫଲଂ ତାବଦ୍ଭବତା ନାତ୍ର ସଂଶୟଃ ।
ଫଲମସ୍ୟାପ୍ୟଧର୍ମସ୍ୟ କ୍ଷିପ୍ରମେବ ପ୍ରପତ୍ସ୍ୟସେ ।୨୯।
ଜନସ୍ଥାନବଧଂ ବୁଦ୍ଧ୍ୱା ବାଲିନଶ୍ଚ ବଧଂ ତଥା ।
ରାମସୁଗ୍ରୀବସଖ୍ୟଂ ଚ ବୁଧ୍ୟସ୍ୱ ହିତମାତ୍ମନଃ ।୩୦।

---

ମଧ୍ୟ ନିଜ ପରାକ୍ରମଦ୍ୱାରା ବିଷ ସଂସୃଷ୍ଟ ଅନ୍ନକୁ ଭକ୍ଷଣକରି ଜୀର୍ଣ୍ଣକରି ନ ପାରିଲାପରି ସୀତାଙ୍କୁ ଜୀର୍ଣ୍ଣ କରିପାରିବେ ନାହିଁ ।୨୪। ତୁମ୍ଭେ ତପୋବଳରେ ଏହି ଯେଉଁ ଧର୍ମଲବ୍ଧ ଐଶ୍ୱର୍ଯ୍ୟ ଲାଭକରିଅଛ ନିଜର ସେହି ସୌଭାଗ୍ୟକୁ ବିନଷ୍ଟ କରିଦେବା ତୁମ୍ଭର ଉଚିତ ନୁହେଁ ।୨୫। ଆଜି ତୁମ୍ଭେ ଯେ ନିଜକୁ ଦେବତା ଏବଂ ଅସୁରମାନଙ୍କ ଦ୍ୱାରା ଅବଧ୍ୟ ବୋଲି ମନେକରୁଅଛ, ତହିଁର ପ୍ରଧାନ କାରଣ ମଧ୍ୟ ସେହି ତପୋବଳ ।୨୬। କପିବର ସୁଗ୍ରୀବ ଦେବତା, ରାକ୍ଷସ ବା ଯକ୍ଷ ନୁହନ୍ତି; ସେ ବାନରମାନଙ୍କର ରାଜା ଏବଂ ରାମ ମନୁଷ୍ୟ । ସୁତରାଂ ହେ ରାଜନ୍ ! ତୁମ୍ଭେ କିପରି ନିଜର ପ୍ରାଣ ରକ୍ଷାକରିବ ? ଅବଶ୍ୟ ଧର୍ମଦ୍ୱାରା ଯେ ଅଧର୍ମ ନାଶ ହୁଏ, ଏହା ସତ୍ୟ; କିନ୍ତୁ ଯାହାର ଅଧର୍ମ ଫଳୋନ୍ମୁଖ ହୋଇଅଛି, ସେ କଦାପି ଧର୍ମଫଳ ଲାଭକରି ପାରେ ନାହିଁ; ସେ ଅଧର୍ମଫଳ ହିଁ ପାଇଥାଏ ।୨୭-୨୮। ତୁମ୍ଭେ ଯେ ପୂର୍ବକୃତ ଧର୍ମର ଫଳ ପାଇଅଛ, ଏଥିରେ ସନ୍ଦେହ ନାହିଁ; ମାତ୍ର ଏ ଅଧର୍ମର ଫଳ ମଧ୍ୟ ତୁମ୍ଭେ ଶୀଘ୍ର ପାଇବ ।୨୯। ଜନସ୍ଥାନରେ ରାକ୍ଷସମାନଙ୍କର ବଧ, ବାଳି ବଧ ଏବଂ ରାମସୁଗ୍ରୀବଙ୍କ ମଧ୍ୟରେ ମିତ୍ରତା କଥା ଚିନ୍ତାକରି ତୁମ୍ଭର ନିଜର ହିତ କ'ଣ

କାମଂ ଖଲ୍ୱହମପ୍ୟେକଃ ସବାଜିରଥକୁଞ୍ଜରାମ୍ ।
ଲଙ୍କାଂ ନାଶୟିତୁଂ ଶକ୍ତସ୍ତସ୍ୟୈଷ ତୁ ନ ନିଶ୍ଚୟଃ । ୩୧ ।
ରାମେଣ ହି ପ୍ରତିଜ୍ଞାତଂ ହର୍ୟୃକ୍ଷଗଣସଂନିଧୌ ।
ଉତ୍ସାଦନମମିତ୍ରାଣାଂ ସୀତା ଯୈସ୍ତୁ ପ୍ରଧର୍ଷିତା । ୩୨ ।
ଅପକୁର୍ବନ୍ ହି ରାମସ୍ୟ ସାକ୍ଷାଦପି ପୁରନ୍ଦରଃ ।
ନ ସୁଖଂ ପ୍ରାପ୍ନୁୟାଦନ୍ୟଃ କିଂ ପୁନସ୍ତ୍ୱଦ୍‌ବିଧୋ ଜନଃ । ୩୩ ।
ଯାଂ ସୀତେତ୍ୟଭିଜାନାସି ଯେୟଂ ତିଷ୍ଠତି ତେ ଗୃହେ ।
କାଲରାତ୍ରୀତି ତାଂ ବିଦ୍ଧି ସର୍ବଲଙ୍କାବିନାଶିନୀମ୍ । ୩୪ ।
ତଦଲଂ କାଲପାଶେନ ସୀତାବିଗ୍ରହରୂପିଣା ।
ସ୍ୱୟଂ ସ୍କନ୍ଧାବସକ୍ତେନ କ୍ଷେମମାତ୍ମନି ଚିନ୍ତ୍ୟତାମ୍ । ୩୫ ।
ସୀତାୟାସ୍ତେଜସା ଦଗ୍‌ଧାଂ ରାମକୋପପ୍ରଦୀପିତାମ୍ ।
ଦହ୍ୟମାନାମିମାଂ ପଶ୍ୟ ପୁରୀଂ ସାଟ୍ଟପ୍ରତୋଲିକାମ୍ ।୩୬।
ସ୍ୱାନି ମିତ୍ରାଣି ମନ୍ତ୍ରୀଂଶ୍ଚ ଜ୍ଞାତୀନ୍ ଭ୍ରାତୄନ୍ ସୁତାନ୍ ହିତାନ୍ ।
ଭୋଗାନ୍ ଦାରାଂଶ୍ଚ ଲଙ୍କାଂ ଚ ମା ବିନାଶମୁପାନୟଃ । ୩୭ ।

---

ତାହା ବୁଝ । ୩୦ । ମୁଁ ଅବଶ୍ୟ ଏକାକୀ ଅଶ୍ୱ, ରଥ ଓ ଗଜ ସହିତ ସମଗ୍ର ଲଙ୍କା-ନଗରୀକୁ ବିନାଶ କରିଦେଇପାରେ; କିନ୍ତୁ ରାମଙ୍କର ତାହା ଅଭିପ୍ରାୟ ନୁହେଁ । ୩୧ । ରାମ ବାନର ଓ ଭଲ୍ଲୁକଗଣଙ୍କ ନିକଟରେ ପ୍ରତିଜ୍ଞା କରିଛନ୍ତି ଯେ ଯେଉଁମାନେ ସୀତାଙ୍କର ଅବମାନନା କରିଅଛନ୍ତି ସେ ସମସ୍ତ ଶତ୍ରୁଙ୍କର ସଂହାର ସେ ନିଜେ କରିବେ । ୩୨ । ରାମଙ୍କର ଅପକାର କରି ସାକ୍ଷାତ୍ ଇନ୍ଦ୍ର ମଧ୍ୟ ସୁଖ ଲାଭକରି ପାରିବେ ନାହିଁ; ସୁତରାଂ ତୁମ୍ଭ ଭଳି ଲୋକଙ୍କ କଥା ଆଉ କଅଣ କହିବା ? । ୩୩ । ଯାହାଙ୍କୁ ସୀତା ବୋଲି ତୁମ୍ଭେ ଜାଣ ଏବଂ ଯେ ତୁମ୍ଭ ଗୃହରେ ଏବେ ରହିଛନ୍ତି ତାହାଙ୍କୁ ସମଗ୍ର ଲଙ୍କାର ବିନାଶକାରିଣୀ କାଳରାତ୍ରି ବୋଲି ଜାଣ । ୩୪ । ସୁତରାଂ ସୀତାଙ୍କ ମୂର୍ତ୍ତିଧାରଣ କରିଥିବା କାଳପାଶକୁ ନିଜେ କାନ୍ଧରେ ଲମ୍ବାଇବା ଆବଶ୍ୟକ ନାହିଁ; ନିଜ ବିଷୟରେ ଯାହା ହିତକର ତାହା ହିଁ ଚିନ୍ତାକର ।୩୫। ତୁମ୍ଭେ ଦେଖିବ, ସମସ୍ତ ଅଟ୍ଟାଳିକା ଏବଂ ରାଜବର୍ତ୍ମ ସହିତ ଏହି ଲଙ୍କାନଗରୀ ସୀତାଙ୍କ ତେଜରେ ଦଗ୍‌ଧ ଏବଂ ରାମଙ୍କ କୋପରେ ପ୍ରଦୀପ୍ତ ହୋଇ ଭସ୍ମୀଭୂତ ହୋଇଯିବ ।୩୬। ସୁତରାଂ ନିଜର ହିତକାରୀ ମିତ୍ର, ମନ୍ତ୍ରୀ, ଜ୍ଞାତି, ଭ୍ରାତା ଏବଂ ପୁତ୍ରମାନଙ୍କୁ ତଥା ପତ୍ନୀ, ସମସ୍ତ ରାଜଭୋଗ ଏବଂ ଲଙ୍କାକୁ ବିନାଶ କରାଇ ଦିଅ ନାହିଁ ।୩୭। ହେ ରାକ୍ଷସରାଜେନ୍ଦ୍ର ! ମୁଁ ରାମଙ୍କର

ସତ୍ୟଂ ରାକ୍ଷସରାଜେନ୍ଦ୍ର ! ଶୃଣୁଷ୍ୱ ବଚନଂ ମମ ।
ରାମଦାସସ୍ୟ ଦୂତସ୍ୟ ବାନରସ୍ୟ ବିଶେଷତଃ । ୩୮ ।
ସର୍ବାନ୍ ଲୋକାନ୍ ସୁସଂହୃତ୍ୟ ସଭୂତାନ୍ ସଚରାଚରାନ୍ ।
ପୁନରେବ ତଥା ସ୍ରଷ୍ଟୁଂ ଶକ୍ତୋ ରାମୋ ମହାଯଶାଃ । ୩୯ ।
ଦେବାସୁରନରେନ୍ଦ୍ରେଷୁ ଯକ୍ଷରକ୍ଷୋରଗେଷୁ ଚ ।
ବିଦ୍ୟାଧରେଷୁ ନାଗେଷୁ ଗନ୍ଧର୍ବେଷୁ ମୃଗେଷୁ ଚ । ୪୦ ।
ସିଦ୍ଧେଷୁ କିନ୍ନରେନ୍ଦ୍ରେଷୁ ପତତ୍ରିଷୁ ଚ ସର୍ବତଃ ।
ସର୍ବତ୍ର ସର୍ବଭୂତେଷୁ ସର୍ବକାଳେଷୁ ନାସ୍ତି ସଃ । ୪୧ ।
ଯୋ ରାମଂ ପ୍ରତିଯୁଧ୍ୟେତ ବିଷ୍ଣୁତୁଲ୍ୟପରାକ୍ରମମ୍ ।
ସର୍ବଲୋକେଶ୍ୱରସ୍ୟୈବଂ କୃତ୍ୱା ବିପ୍ରିୟମୀଦୃଶମ୍ ।
ରାମସ୍ୟ ରାଜସିଂହସ୍ୟ ଦୁର୍ଲଭଂ ତବ ଜୀବିତମ୍ । ୪୨ ।
ଦେବାଶ୍ଚ ଦୈତ୍ୟାଶ୍ଚ ନିଶାଚରେନ୍ଦ୍ର !
ଗନ୍ଧର୍ବବିଦ୍ୟାଧରନାଗଯକ୍ଷାଃ ।
ରାମସ୍ୟ ଲୋକତ୍ରୟନାୟକସ୍ୟ
ସ୍ଥାତୁଂ ନ ଶକ୍ତାଃ ସମରେଷୁ ସର୍ବେ । ୪୩ ।
ବ୍ରହ୍ମା ସ୍ୱୟଂଭୂଶ୍ଚତୁରାନନୋ ବା
ରୁଦ୍ରସ୍ତ୍ରିନେତ୍ରସ୍ତ୍ରିପୁରାନ୍ତକୋ ବା ।

---

ଦାସ, ଦୂତ, ଏବଂ ବିଶେଷତଃ ମୁଁ ବାନର । ତୁମ୍ଭେ ମୋର ସତ୍ୟବଚନ ଶ୍ରବଣ କର । ୩୮ । ମହାଯଶା ରାମ ସଚରାଚର ପ୍ରାଣୀମାନଙ୍କ ସହିତ ସମଗ୍ର ଲୋକକୁ ସଂପୂର୍ଣ୍ଣ ସଂହାର କରିଦେଇ ପୁନର୍ବାର ତାହା ସୃଷ୍ଟି କରିବାକୁ ସମର୍ଥ ଅଟନ୍ତି । ୩୯ । ଦେବତା, ଅସୁର, ରାଜା, ଯକ୍ଷ, ରକ୍ଷ, ଉରଗ, ବିଦ୍ୟାଧର, ନାଗ, ଗନ୍ଧର୍ବ, ମୃଗ, ସିଦ୍ଧ, କିନ୍ନର ଓ ପକ୍ଷୀ ପ୍ରଭୃତି ପ୍ରାଣୀ ଏବଂ ସକଳ ଦେଶ ଓ ସବୁ କାଳରେ କୌଣସି ଠାରେ ଏପରି କେହି ନାହିଁ, ଯେଉଁ ବ୍ୟକ୍ତି ବିଷ୍ଣୁତୁଲ୍ୟ ପରାକ୍ରମୀ ରାମଙ୍କର ପ୍ରତି-ଯୋଦ୍ଧା ହୋଇପାରିବ । ରାଜସିଂହ ସର୍ବଲୋକେଶ୍ୱର ରାମଙ୍କର ଏପରି ଅପ୍ରିୟ କାର୍ଯ୍ୟ କରିବା ଦ୍ୱାରା ତୁମ୍ଭର ଜୀବନ ବର୍ତ୍ତମାନ ନିତାନ୍ତ ଦୁର୍ଲ୍ଲଭ ହୋଇପଡ଼ିଅଛି । ୪୦-୪୧ । ହେ ରକ୍ଷେନ୍ଦ୍ର ! ଦେବତା, ଦୈତ୍ୟ, ଗନ୍ଧର୍ବ, ବିଦ୍ୟାଧର, ନାଗ ଓ ଯକ୍ଷ ଏମାନେ ସମସ୍ତେ ଯୁଦ୍ଧରେ ତ୍ରିଲୋକନାଥ ରାମଙ୍କ ସମ୍ମୁଖରେ ଠିଆହେବାକୁ ସମର୍ଥ ନୁହନ୍ତି । ୪୩ । ଏପରିକି ଚତୁର୍ମୁଖ ସ୍ୱୟମ୍ଭୂ ବ୍ରହ୍ମା, ତ୍ରିପୁରାନ୍ତକାରୀ ତ୍ରିନେତ୍ର ରୁଦ୍ର

ଇନ୍ଦ୍ରୋ ମହେନ୍ଦ୍ରଃ ସୁରନାୟକୋ ବା
ସ୍ଥାତୁଂ ନ ଶକ୍ତା ଯୁଧି ରାଘବସ୍ୟ । ୪୪ ।
ସ ସୌଷ୍ଠବୋପେତମଦୀନବାଦିନଃ
କପେର୍ନିଶମ୍ୟାପ୍ରତିମୋଽପ୍ରିୟଂ ବଚଃ ।
ଦଶାନନଃ କୋପବିବୃତ୍ତଲୋଚନଃ
ସମାଦିଶତ୍ତସ୍ୟ ବଧଂ ମହାକପେଃ । ୪୫ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ସୁନ୍ଦରକାଣ୍ଡେ ହନୂମଦୁପଦେଶୋ ନାମ ଏକପଞ୍ଚାଶଃ ସର୍ଗଃ

---

# ଦ୍ୱିପଞ୍ଚାଶଃ ସର୍ଗଃ

## ଦୂତବଧନିବାରଣମ୍

ସ ତସ୍ୟ ବଚନଂ ଶ୍ରୁତ୍ୱା ବାନରସ୍ୟ ମହାତ୍ମନଃ ।
ଆଜ୍ଞାପୟଦ୍ ବଧଂ ତସ୍ୟ ରାବଣଃ କ୍ରୋଧମୂର୍ଚ୍ଛିତଃ । ୧ ।
ବଧେ ତସ୍ୟ ସମାଜ୍ଞପ୍ତେ ରାବଣେନ ଦୁରାତ୍ମନା ।
ନିବେଦିତବତୋ ଦୌତ୍ୟଂ ନାନୁମେନେ ବିଭୀଷଣଃ । ୨ ।

---

ଅଥବା ସୁରନାୟକ ମହେନ୍ଦ୍ର ଇନ୍ଦ୍ର ମଧ୍ୟ ଯୁଦ୍ଧରେ ରାମଙ୍କ ସହିତ ଠିଆହୋଇ ପାରିବେ ନାହିଁ" ।୪୪। ମହାକପି ହନୂମାନ୍‌ଠାରୁ ଧୃଷ୍ଟସହକାରେ ଏହିପରି ସୌଷ୍ଠବଯୁକ୍ତ ଅପ୍ରିୟବଚନ ଶୁଣି ଅପ୍ରତିମ ଦଶାନନର ଚକ୍ଷୁ କ୍ରୋଧରେ ଘୂର୍ଣ୍ଣିତ ହେବାକୁ ଲାଗିଲା ଏବଂ ସେ ସେହି ମହାକପିର ବଧ ଆଦେଶ ପ୍ରଦାନକଲା । ୪୫ ।

— — — —

## ୫୨ଶ ସର୍ଗ

(ଦୂତବଧନିବାରଣ)

ସେହି ମହାତ୍ମା ବାନରଙ୍କର ସେ କଥା ଶୁଣି ରାବଣ କ୍ରୋଧରେ ହତଜ୍ଞାନ ହୋଇ ତାହାଙ୍କୁ ବଧକରିବା ପାଇଁ ଆଦେଶ ଦେଲା । ୧ । ଦୁରାତ୍ମା ରାବଣକର୍ତ୍ତୃକ ତାହାଙ୍କର ବଧ ଆଦିଷ୍ଟହେବାରୁ ସେ ଯାହା କହିଥିଲେ ତାହା ଅନ୍ୟର ଦୂତରୂପରେ

ତଂ ରକ୍ଷୋଽଧିପତିଂ କ୍ରୁଦ୍ଧଂ ତଚ୍ଚ କାର୍ଯମୁପସ୍ଥିତମ୍ ।
ବିଦିତ୍ୱା ଚିନ୍ତୟାମାସ କାର୍ଯଂ କାର୍ଯବିଧୌ ସ୍ଥିତଃ । ୩ ।
ନିଶ୍ଚିତାର୍ଥସ୍ତତଃ ସାମ୍ନା ପୂଜ୍ୟଂ ଶତ୍ରୁଜିଦଗ୍ରଜମ୍ ।
ଉବାଚ ହିତମତ୍ୟର୍ଥଂ ବାକ୍ୟଂ ବାକ୍ୟବିଶାରଦଃ । ୪ ।

କ୍ଷମସ୍ୱ ରୋଷଂ ତ୍ୟଜ ରାକ୍ଷସେନ୍ଦ୍ର !
ପ୍ରସୀଦ ମେ ବାକ୍ୟମିଦଂ ଶୃଣୁଷ୍ୱ ।
ବଧଂ ନ କୁର୍ବନ୍ତି ପରାବରଜ୍ଞା –
ଦୂତସ୍ୟ ସନ୍ତୋ ବସୁଧାଧିପେନ୍ଦ୍ରାଃ । ୫ ।

ରାଜଧର୍ମବିରୁଦ୍ଧଂ ଚ ଲୋକବୃତ୍ତେଶ୍ଚ ଗର୍ହିତମ୍ ।
ତବ ଚାସଦୃଶଂ ବୀର ! କପେରସ୍ୟ ପ୍ରମାପଣମ୍ । ୬ ।
ଧର୍ମଜ୍ଞଶ୍ଚ କୃତଜ୍ଞଶ୍ଚ ରାଜଧର୍ମବିଶାରଦଃ ।
ପରାବରଜ୍ଞୋ ଭୂତାନାଂ ତ୍ୱମେବ ପରମାର୍ଥବିତ୍ । ୭ ।
ଗୃହ୍ୟନ୍ତେ ଯଦି ରୋଷେଣ ତ୍ୱାଦୃଶାପି ବିଚକ୍ଷଣାଃ ।
ତତଃ ଶାସ୍ତ୍ରବିପଶ୍ଚିତ୍ତ୍ୱଂ ଶ୍ରମ ଏବ ହି କେବଳମ୍ । ୮ ।

---

କହିଥିବାରୁ ବିଭୀଷଣ ସେ ଆଦେଶକୁ ଅନୁମୋଦନ କଲେ ନାହିଁ । ୨ । ଅନନ୍ତର ରାକ୍ଷସାଧିପତି ରାବଣଙ୍କୁ କ୍ରୁଦ୍ଧ ଏବଂ ହନୁମାନର ବଧକାର୍ଯ୍ୟ ଆସନ୍ନ ଜାଣି କାର୍ଯ୍ୟବିଧାନରେ ଦୃଢ଼ ରହିଥିବା ବିଭୀଷଣ ଏ କ୍ଷେତ୍ରରେ କର୍ତ୍ତବ୍ୟ ଚିନ୍ତାକରିବାକୁ ଲାଗିଲେ । କର୍ତ୍ତବ୍ୟ ସ୍ଥିରକରି ବାକ୍ୟବିଶାରଦ ବିଭୀଷଣ ଶାନ୍ତବାକ୍ୟରେ ଶତ୍ରୁଜୟୀ ପୂଜନୀୟ ଅଗ୍ରଜଙ୍କୁ ସମ୍ମାନକରି ଅତ୍ୟନ୍ତ ହିତକର ବାକ୍ୟରେ କହିଲେ । ୪ । "ହେ ରାକ୍ଷସେନ୍ଦ୍ର ! କ୍ରୋଧ ପରିତ୍ୟାଗ କର, କ୍ଷମା ଅବଲମ୍ବନ କର ଏବଂ ପ୍ରସନ୍ନ ହୋଇ ମୋର ଏହି କଥା ଶୁଣ । ଯେଉଁମାନେ କାର୍ଯ୍ୟର ଉତ୍କର୍ଷ ଅପକର୍ଷ ଆଦି ବିଷୟ ଜାଣନ୍ତି ସେପରି ସାଧୁଚରିତ ବସୁଧାଧିପତିମାନେ ଦୂତକୁ ବଧ କରନ୍ତି ନାହିଁ ।୫। ହେ ବୀର ! ଏହି ବାନରର ବଧ ରାଜଧର୍ମବିରୁଦ୍ଧ, ଲୋକାଚାରବିଗର୍ହିତ ଏବଂ ତୁମ୍ଭର ସର୍ବଥା ଅନୁପଯୁକ୍ତ । ୬ । ତୁମ୍ଭେ ଧର୍ମଜ୍ଞ, କୃତଜ୍ଞ, ରାଜଧର୍ମନିପୁଣ, ସବୁ ବିଷୟରେ ଉତ୍କର୍ଷ ଅପକର୍ଷ ଭଲକରି ଜାଣ ଏବଂ ପରମାର୍ଥତତ୍ତ୍ୱଜ୍ଞ ଅଟ । ୭। ତୁମ୍ଭପରି ବିଚକ୍ଷଣ ବ୍ୟକ୍ତିମାନେ ଯଦି କ୍ରୋଧର ବଶବର୍ତ୍ତୀ ହୁଅନ୍ତି, ତାହାହେଲେ ଶାସ୍ତ୍ର-ପାଣ୍ଡିତ୍ୟ ପରିଶ୍ରମମାତ୍ର । ୮ । ଅତଏବ ହେ ଦୁର୍ଜେୟ ! ଶତ୍ରୁସଂହାରକ

ତସ୍ମାତ୍ ପ୍ରସୀଦ ଶତ୍ରୁଘ୍ନ ! ରାକ୍ଷସେନ୍ଦ୍ର ! ଦୁରାସଦ !
ଯୁକ୍ତାଯୁକ୍ତଂ ବିନିଶ୍ଚିତ୍ୟ ଦୂତଦଣ୍ଡୋ ବିଧୀୟତାମ୍ । ୯ ।
ବିଭୀଷଣବଚଃ ଶ୍ରୁତ୍ୱା ରାବଣୋ ରାକ୍ଷସେଶ୍ୱରଃ ।
କୋପେନ ମହତାଽଽବିଷ୍ଟୋ ବାକ୍ୟମୁତ୍ତରମବ୍ରବୀତ୍ । ୧୦ ।
ନ ପାପାନାଂ ବଧେ ପାପଂ ବିଦ୍ୟତେ ଶତ୍ରୁସୂଦନ !
ତସ୍ମାଦେନଂ ବଧିଷ୍ୟାମି ବାନରଂ ପାପକାରିଣମ୍ । ୧୧ ।

ଅଧର୍ମମୂଳଂ ବହୁଦୋଷଯୁକ୍ତ-
ମନାର୍ଯ୍ୟଜୁଷ୍ଟଂ ବଚନଂ ନିଶମ୍ୟ ।
ଉବାଚ ବାକ୍ୟଂ ପରମାର୍ଥତତ୍ତ୍ୱମ୍
ବିଭୀଷଣୋ ବୁଦ୍ଧିମତାଂ ବରିଷ୍ଠଃ । ୧୨ ।

ପ୍ରସୀଦ ଲଙ୍କେଶ୍ୱର ! ରାକ୍ଷସେନ୍ଦ୍ର !
ଧର୍ମାର୍ଥତତ୍ତ୍ୱଂ ବଚନଂ ଶୃଣୁଷ୍ୱ ।
ଦୂତା ନ ବଧ୍ୟାଃ ସମୟେଷୁ ରାଜନ୍ !
ସର୍ବେଷୁ ସର୍ବତ୍ର ବଦନ୍ତି ସନ୍ତଃ । ୧୩ ।

ଅସଂଶୟଂ ଶତ୍ରୁରୟଂ ପ୍ରବୃଦ୍ଧଃ
କୃତଂ ହ୍ୟନେନାପ୍ରିୟମପ୍ରମେୟମ୍ ।

---

ରାକ୍ଷସାଧିପତେ ! ତୁମ୍ଭେ ପ୍ରସନ୍ନହୋଇ ଯୁକ୍ତାଯୁକ୍ତ ବିଚାରକରି ଦୂତ ପ୍ରତି ଦଣ୍ଡବିଧାନ କର” ।୯। ବିଭୀଷଣଙ୍କର କଥା ଶୁଣି ରାକ୍ଷସାଧିପତି ରାବଣ ଅତିଶୟ କ୍ରୋଧପରବଶ ହୋଇ ଉତ୍ତର କଲେ । ୧୦ । “ହେ ଶତ୍ରୁସୂଦନ ! ପାପୀ ଲୋକମାନଙ୍କୁ ବଧକଲେ କୌଣସି ପାପ ହୁଏ ନାହିଁ;ସୁତରାଂ ମୁଁ ଏହି ପାପକାରୀ ବାନରକୁ ବଧକରିବି”।୧୧। ବୁଦ୍ଧିମାନମାନଙ୍କର ଅଗ୍ରଗଣ୍ୟ ବିଭୀଷଣ ଏହି ଅନାର୍ଯ୍ୟ ଜନୋଚିତ, ଅଧର୍ମମୂଳକ, ବହୁଦୋଷଯୁକ୍ତ କଥା ଶ୍ରବଣକରି ପରମାର୍ଥତତ୍ତ୍ୱଯୁକ୍ତ ବାକ୍ୟରେ କହିଲେ । ୧୨ । “ହେ ରାକ୍ଷସେନ୍ଦ୍ର ! ହେ ଲଙ୍କେଶ୍ୱର ! ତୁମ୍ଭେ ପ୍ରସନ୍ନହୋଇ ଧର୍ମ ଏବଂ ଅର୍ଥଯୁକ୍ତ ବଚନ ଶ୍ରବଣକର । ସାଧୁଲୋକମାନେ କହିଛନ୍ତି ଯେ ପ୍ରଭୁର ଆଦେଶ ନିବେଦନ କରିବା ସମୟରେ ସବୁ ଦେଶରେ ଏବଂ ସବୁ ସ୍ଥାନରେ ଦୂତମାନେ ଅବଧ୍ୟ ଅଟନ୍ତି । ୧୩ । ଏ ବାନର ଯେ ଅତି ବଳବାନ୍ ଶତ୍ରୁ ଏଥିରେ ସନ୍ଦେହ ନାହିଁ । ଏ ଆପଣଙ୍କର ଅପରିମିତ ଅପ୍ରିୟ କାର୍ଯ୍ୟ କରିଅଛି; ମାତ୍ର ସାଧୁବ୍ୟକ୍ତିମାନେ ଦୂତର

ନ ଦୂତବଧ୍ୟାଂ ପ୍ରବଦନ୍ତି ସନ୍ତୋ-
ଦୂତସ୍ୟ ଦୃଷ୍ଟା ବହବୋ ହି ଦଣ୍ଡାଃ । ୧୪ ।
ବୈରୂପ୍ୟମଙ୍ଗେଷୁ କଶାଭିଘାତୋ-
ମୌଣ୍ଡ୍ୟଂ ତଥା ଲକ୍ଷଣସଂନପାତଃ ।
ଏତାନ୍ ହି ଦୂତେ ପ୍ରବଦନ୍ତି ଦଣ୍ଡାନ୍
ବଧସ୍ତୁ ଦୂତସ୍ୟ ନ ନଃ ଶ୍ରୁତୋଽସ୍ତି । ୧୫।
କଥଂ ଚ ଧର୍ମାର୍ଥବିନୀତବୁଦ୍ଧିଃ
ପରାବରପ୍ରତ୍ୟୟନିଶ୍ଚିତାର୍ଥଃ ।
ଭବଦ୍ୱିଧଃ କୋପବଶେ ହି ତିଷ୍ଠେତ୍
କୋପଂ ନ ଗଚ୍ଛନ୍ତି ହି ସତ୍ତ୍ୱବନ୍ତଃ । ୧୬ ।
ନ ଧର୍ମବାଦେ ନ ଚ ଲୋକବୃତ୍ତେ
ନ ଶାସ୍ତ୍ରବୁଦ୍ଧି ଗ୍ରହଣେଷୁ ଚାପି ।
ବିଦ୍ୟେତ କଶ୍ଚିତ୍ତବ ବୀର ! ତୁଲ୍ୟ-
ସ୍ତ୍ୱଂ ହ୍ୟୁତ୍ତମଃ ସର୍ବସୁରାସୁରାଣାମ୍ । ୧୭ ।
ନ ଚାପ୍ୟସ୍ୟ କପେର୍ଘାତେ କଂଚିତ୍ପଶ୍ୟାମ୍ୟହଂ ଗୁଣମ୍ ।
ତେଷ୍ୱୟଂ ପାତ୍ୟତାଂ ଦଣ୍ଡୋ ଯୈରୟଂ ପ୍ରେଷିତଃ କପିଃ ।୧୮।

---

ବଧ ନିର୍ଦ୍ଦେଶ କରନାହାନ୍ତି । ଦୂତମାନଙ୍କ ପ୍ରତି ବହୁପ୍ରକାର ଦଣ୍ଡ ଶାସ୍ତ୍ରରେ ନିର୍ଦ୍ଦିଷ୍ଟ ଅଛି । ୧୪ । ଅଙ୍ଗକୁ ବିରୂପ କରିବା, କୋରଡ଼ା ପ୍ରହାରକରିବା, ମସ୍ତକ ମୁଣ୍ଡନ କରିଦେବା ଏବଂ ସେମାନଙ୍କ ଦେହରେ କୌଣସି ଦାଗ ରଖିଦେବା; ଦୂତମାନଙ୍କ ସମ୍ପର୍କରେ ଏହି ସବୁ ଦଣ୍ଡର ବିଧାନ କରାଯାଇଅଛି ; ମାତ୍ର ଦୂତର ବଧଦଣ୍ଡ ଆମ୍ଭେମାନେ କେବେ ଶୁଣି ନାହୁଁ । ୧୫ । ଆପଣଙ୍କ ପରି ଯେଉଁ ବ୍ୟକ୍ତିମାନଙ୍କର ବୁଦ୍ଧି ଧର୍ମ ଏବଂ ଅର୍ଥବିଷୟରେ ସୁଶିକ୍ଷିତ ହୋଇଅଛି ଏବଂ ଯେଉଁମାନେ ଉଚ୍ଚ ନୀଚ ବିବେଚନାକରି କାର୍ଯ୍ୟନିଷ୍ପନ୍ନ କରନ୍ତି ସେମାନେ କିପରି କୋପର ବଶୀଭୂତ ହୋଇପାରନ୍ତି ? ସତ୍ତ୍ୱଗୁଣାବଲମ୍ବୀ ବ୍ୟକ୍ତିମାନେ କ୍ରୋଧକୁ ତ୍ୟଜତ କରିଥାନ୍ତି । ୧୬ । ହେ ବୀର ! କି ଧର୍ମବାଦ, କି ଲୋକାଚାର, କି ବୁଦ୍ଧି ଦ୍ୱାରା ଶାସ୍ତ୍ରର ତାତ୍ପର୍ଯ୍ୟଗ୍ରହଣ, ଏ ସମସ୍ତ ବିଷୟରେ ତୁମ୍ଭର ସମାନ କେହି ନାହାଁ । ସବୁ ଦେବତା ଏବଂ ଅସୁରମାନଙ୍କ ମଧ୍ୟରେ ତୁମ୍ଭେ ହିଁ ଶ୍ରେଷ୍ଠ ଅଟ । ୧୭ । ଏହି ବାନରକୁ ବଧ କରିବାରେ ମୁଁ କୌଣସି ପ୍ରକାର ଗୁଣ ଦେଖିପାରୁ ନାହିଁ । ଅତଏବ ଯେଉଁମାନେ ଏ ବାନରକୁ ଏଠାକୁ ପଠାଇଛନ୍ତି, ବରଂ ସେହିମାନଙ୍କ ପ୍ରତି

ସାଧୁର୍ବା ଯଦି ବାସାଧୁଃ ପରୈରେଷ ସମର୍ପିତଃ ।
ବ୍ରୁବନ୍ ପରାର୍ଥଂ ପରବାନ୍ ନ ଦୂତୋ ବଧମର୍ହତି । ୧୯ ।
ଅପି ଚାସ୍ମିନ୍ ହତେ ନାନ୍ୟଂ ରାଜନ୍ ! ପଶ୍ୟାମି ଖେଚରମ୍ ।
ଇହ ଯଃ ପୁନରାଗଚ୍ଛେତ୍ପରଂ ପାରଂ ମହୋଦଧେଃ । ୨୦ ।
ତସ୍ମାନ୍ନାସ୍ୟ ବଧେ ଯତ୍ନଃ କାର୍ଯ୍ୟଃ ପରପୁରଞ୍ଜୟ !
ଭବାନ୍ ସେନ୍ଦ୍ରେଷୁ ଦେବେଷୁ ଯତ୍ନମାସ୍ଥାତୁମର୍ହତି । ୨୧ ।
ଅସ୍ମିନ୍ ବିନଷ୍ଟେ ନ ହି ଦୂତମନ୍ୟମ୍
ପଶ୍ୟାମି ଯସ୍ତୌ ନରରାଜପୁତ୍ରୌ ।
ଯୁଦ୍ଧାୟ ଯୁଦ୍ଧପ୍ରିୟ ! ଦୁର୍ବିନୀତା-
ବୁଦ୍ୟୋଜୟେଦ୍ ବୈ ଭବତା ବରୁଦ୍ଧୌ । ୨୨ ।
ପରାକ୍ରମୋତ୍ସାହମନସ୍ୱିନାଂ ଚ
ସୁରାସୁରାଣାମପି ଦୁର୍ଜୟେନ ।
ତ୍ୱୟା ମନୋନନ୍ଦନ ! ନୈର୍ଋତାନାମ୍
ଯୁଦ୍ଧାୟତିର୍ନାଶୟିତୁଂ ନ ଯୁକ୍ତା । ୨୩ ।
ହିତାଶ୍ଚ ଶୂରାଶ୍ଚ ସମାହିତାଶ୍ଚ
କୁଲେଷୁ ଜାତାଶ୍ଚ ମହାଗୁଣେଷୁ ।

---

ଦଣ୍ଡବିଧାନ କର ।୧୮। ଏ ସାଧୁ ହେଉ ବା ଅସାଧୁ ହେଉ ଶତ୍ରୁମାନେ ହିଁ ଏହାକୁ ଏଠାକୁ ପଠାଇଛନ୍ତି । ପରାଧୀନ ଦୂତ ପରଲାଗି କଥା କହି କଦାପି ବଧଯୋଗ୍ୟ ହୁଏ ନାହିଁ । ୧୯ । ହେ ରାଜନ୍! ଏ ନିହତ ହେଲେ, ଆଉ କୌଣସି ଆକାଶଗାମୀ ପ୍ରାଣୀ ସମୁଦ୍ରର ଅପର ପାରରୁ ପୁଣି ଯେ ଏଠାକୁ ଆସି ପାରିବ, ତାହା ମୁଁ ଦେଖି-ପାରୁ ନାହିଁ ।୨୦। ଅତଏବ ହେ ଶତ୍ରୁପୁରଜୟିନ୍! ଏହାର ବଧନିମନ୍ତେ ଉଦ୍ୟମ କରିବା ଉଚିତ ନୁହେ । ଇନ୍ଦ୍ର ପ୍ରଭୃତି ଦେବତାମାନଙ୍କ ପ୍ରତି ହିଁ ଆପଣଙ୍କର ଏତାଦୃଶ ଯତ୍ନ କରିବା ଉଚିତ । ୨୧ । ହେ ଯୁଦ୍ଧପ୍ରିୟ ! ଏହି ଦୂତ ବିନଷ୍ଟହେଲେ ମୁଁ ଏପରି ଅନ୍ୟ କୌଣସି ଦୂତକୁ ଦେଖିପାରୁ ନାହିଁ, ଯେ କି ତୁମ୍ଭର ବିରୋଧୀ, ଦୁର୍ବିନୀତ ରାଜକୁମାର ଦୁହିଙ୍କୁ ଯୁଦ୍ଧପାଇଁ ଉତ୍ସାହିତ କରିବ । ୨୨ । ହେ ରାକ୍ଷସମାନଙ୍କର ମନର ଆନନ୍ଦଦାୟକ ! ପରାକ୍ରମ ଏବଂ ଉତ୍ସାହରେ ସମାହିତଚିତ୍ତ ଦେବତା ଓ ଅସୁରମାନେ ମଧ୍ୟ ତୁମ୍ଭଙ୍କୁ ଜୟ କରିପାରନ୍ତି ନାହିଁ । ରାକ୍ଷସମାନଙ୍କର ଯୁଦ୍ଧ-ଉଦ୍ୟମକୁ ତୁମ୍ଭେ ବିନଷ୍ଟ କରିଦେବା ଉଚିତ ନୁହେ । ୨୩ । ତୁମ୍ଭର ଯେଉଁ ଯୋଦ୍ଧାମାନେ ଅଛନ୍ତି ସେମାନେ ସମସ୍ତେ ହିତକାଂକ୍ଷୀ, ବୀର, ସମାହିତ, ସଦ୍‌ଗୁଣ-

ମନସ୍ୱିନଃ ଶସ୍ତ୍ରଭୃତାଂ ବରିଷ୍ଠାଃ
କୋପପ୍ରଶସ୍ତାଃ ସୁଭୃତାଶ୍ଚ ଯୋଧାଃ । ୨୪ ।
ତଦେକଦେଶେନ ବଲସ୍ୟ ତାବତ୍
କେଚିତ୍ତବାଦେଶକୃତୋଽଦ୍ୟ ଯାନ୍ତୁ ।
ତୌ ରାଜପୁତ୍ରାବୁପଗୃହ୍ୟ ମୂଢୌ
ପରେଷୁ ତେ ଭାବୟିତୁଂ ପ୍ରଭାବମ୍ । ୨୫ ।
ନିଶାଚରାଣାମଧିପୋଽନୁଜସ୍ୟ
ବିଭୀଷଣସ୍ୟୋତ୍ତମବାକ୍ୟମିଷ୍ଟମ୍ ।
ଜଗ୍ରାହ ବୁଦ୍ଧ୍ୟା ସୁରଲୋକଶତ୍ରୁ-
ର୍ମହାବଲୋ ରାକ୍ଷସରାଜମୁଖ୍ୟଃ । ୨୬ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ସୁନ୍ଦରକାଣ୍ଡେ ଦୂତବଧନିବାରଣଂ ନାମ ଦ୍ୱିପଞ୍ଚାଶଃ ସର୍ଗଃ ।

---

## ତ୍ରିପଞ୍ଚାଶଃ ସର୍ଗଃ

### ପାବକଶୈତ୍ୟମ୍

ତସ୍ୟ ତଦ୍‌ବଚନଂ ଶ୍ରୁତ୍ୱା ଦଶଗ୍ରୀବୋ ମହାତ୍ମନଃ ।
ଦେଶକାଲହିତଂ ବାକ୍ୟଂ ଭ୍ରାତୁରୁତ୍ତରମବ୍ରବୀତ୍ । ୧ ।

---

ସମ୍ପନ୍ନ କୁଳରେ ଜନ୍ମ, ମନସ୍ୱୀ, ଶସ୍ତ୍ରଧାରୀମାନଙ୍କ ମଧ୍ୟରେ ଶ୍ରେଷ୍ଠ ଏବଂ କ୍ରୋଧୀ ତୁମଦ୍ୱାରା ଉତ୍ତମରୂପେ ପରିପାଳିତ । ୨୪ । ସେହି ସମସ୍ତ ସୈନ୍ୟମାନଙ୍କର କିୟଦଂଶ ଆଜି ତୁମ ଆଦେଶରେ ଯାଆନ୍ତୁ ଏବଂ ସେହି ମୂଢ଼ ରାଜକୁମାର ଦୁହିଁଙ୍କୁ ଧରି ନେଇ ଆସନ୍ତୁ । ତାହାଦ୍ୱାରା ଶତ୍ରୁମାନଙ୍କ ମଧ୍ୟରେ ତୁମର ପ୍ରଭାବ ପ୍ରକାଶ ପାଇବ" । ୨୫ । ରାକ୍ଷସରାଜଶ୍ରେଷ୍ଠ ଦେବଶତ୍ରୁ ରାକ୍ଷସାଧିପତି ମହାବଳୀ ରାବଣ ଅନୁଜ ବିଭୀଷଣଙ୍କର ଏହି ଉତ୍କୃଷ୍ଟ ଓ ହିତକର ବାକ୍ୟକୁ ବୁଦ୍ଧିଦ୍ୱାରା ବିଚାରକରି ଗ୍ରହଣ କଲା । ୨୬ ।

---

## ୫୩ଶ ସର୍ଗ

### ( ଅଗ୍ନିଙ୍କର ଶୀତଳତା )

ଦଶଗ୍ରୀବ ମହାତ୍ମା ଭ୍ରାତାଙ୍କର ସେହି ଦେଶକାଳୋଚିତ ହିତକର ବାକ୍ୟ ଶୁଣି ଉତ୍ତରକଲେ । ୧ । "ତୁମେ ଯଥାର୍ଥ କହୁଛ । ଦୂତର ବଧ ନିନ୍ଦନୀୟ; କିନ୍ତୁ

ସମ୍ୟଗୁକ୍ତଂ ହି ଭବତା ଦୂତବଧ୍ୟା ବିଗର୍ହିତା ।
ଅବଶ୍ୟଂ ତୁ ବଧାଦନ୍ୟଃ କ୍ରିୟତାମସ୍ୟ ନିଗ୍ରହଃ ।୨।
କପୀନାଂ କିଲ ଲାଙ୍ଗୂଲମିଷ୍ଟଂ ଭବତି ଭୂଷଣମ୍ ।
ତଦସ୍ୟ ଦୀପ୍ୟତାଂ ଶୀଘ୍ରଂ ତେନ ଦଗ୍ଧେନ ଗଚ୍ଛତୁ ।୩।
ତତଃ ପଶ୍ୟନ୍ତ୍ୱିମଂ ଦୀନମଙ୍ଗବୈରୂପ୍ୟକର୍ଶିତମ୍ ।
ସମିତ୍ରଜ୍ଞାତୟଃ ସର୍ବେ ବାନ୍ଧବାଃ ସସୁହୃଜ୍ଜନାଃ ।୪।
ଆଜ୍ଞାପୟଦ୍ରାକ୍ଷସେନ୍ଦ୍ରଃ ପୁରଂ ସର୍ବଂ ସଚତ୍ୱରମ୍ ।
ଲାଙ୍ଗୂଲେନ ପ୍ରଦୀପ୍ତେନ ରକ୍ଷୋଭିଃ ପରିଣୀୟତାମ୍ ।୫।
ତସ୍ୟ ତଦ୍‌ବଚନଂ ଶ୍ରୁତ୍ୱା ରାକ୍ଷସାଃ କୋପକର୍କଶାଃ ।
ବେଷ୍ଟନ୍ତେ ତସ୍ୟ ଲାଙ୍ଗୂଲଂ ଜୀର୍ଣ୍ଣୈଃ କାର୍ପାସିକୈଃ ପଟୈଃ ।୬।
ସଂବେଷ୍ଟ୍ୟମାନେ ଲାଙ୍ଗୂଲେ ବ୍ୟବର୍ଧତ ମହାକପିଃ ।
ଶୁଷ୍କମିନ୍ଧନମାସାଦ୍ୟ ବନେଷ୍ୱିବ ହୁତାଶନଃ ।୭।
ତୈଲେନ ପରିଷିଚ୍ୟାଥ ତେଽଗ୍ନିଂ ତତ୍ରୋପପାଦୟନ୍ ।
ଲାଙ୍ଗୂଲେନ ପ୍ରଦୀପ୍ତେନ ରାକ୍ଷସାଂସ୍ତାନତାଡ଼ୟତ୍ ।୮।
ରୋଷାମର୍ଷପରୀତାତ୍ମା ବାଲସୂର୍ଯ୍ୟସମାନନଃ ।
ସ ଭୂୟଃ ସଂଗତୈଃ କ୍ରୂରୈ ରାକ୍ଷସୈର୍ହରିପୁଙ୍ଗବଃ ।୯।

---

ବଧବ୍ୟତୀତ ଅନ୍ୟ ଶାସ୍ତି ଏହାକୁ ଦିଆଯାଉ ।୨। ଲାଙ୍ଗୁଳ ହିଁ କପିମାନଙ୍କର ପ୍ରିୟ ଏବଂ ଭୂଷଣସ୍ୱରୂପ ଅଟେ; ସୁତରାଂ ଏହାର ଲାଙ୍ଗୁଳକୁ ଶୀଘ୍ର ପୋଡ଼ିଦିଆଯାଉ; ସେହି ପୋଡ଼ା ଲାଙ୍ଗୁଳ ନେଇ ସେ ଯାଉ ।୩। ତାହାହେଲେ ଏହାର ଜ୍ଞାତି, ବାନ୍ଧବ, ସୁହୃଦ ଓ ମିତ୍ରମାନେ ଦେଖିବେ ଯେ ଏହାର ଅଙ୍ଗ ବିରୂପ ହୋଇଥିବାରୁ ଏ କ୍ଷୀଣ ଓ କାତର ହୋଇପଡ଼ିଅଛି" ।୪। ଅନନ୍ତର ରାକ୍ଷସରାଜ ରାବଣ ଆଦେଶ ଦେଲା ଯେ ରାକ୍ଷସମାନେ ଏହାର ଲାଙ୍ଗୁଳରେ ନିଆଁ ଲଗାଇ ଏହାକୁ ଚତ୍ୱରମାନଙ୍କ ସହିତ ସମଗ୍ର ନଗରରେ ବୁଲାଇ ଆଣନ୍ତୁ ।୫। ଏହି ଆଦେଶ ଶୁଣି କ୍ରୁଦ୍ଧ, ନିଷ୍ଠୁର ରାକ୍ଷସମାନେ ଜୀର୍ଣ୍ଣ କାର୍ପାସ ବସ୍ତ୍ରରେ ତାହାର ଲାଙ୍ଗୁଳକୁ ଗୁଡ଼ାଇବାକୁ ଲାଗିଲେ ।୬। ସେହି ମହାବାନରଙ୍କର ଲାଙ୍ଗୁଳ ଗୁଡ଼ିଆ ହେବାରୁ ବନରେ ଶୁଖିଲା କାଠ ପାଇଲେ ଅଗ୍ନି ବର୍ଦ୍ଧିତ ହେଲାପରି ସେ ବର୍ଦ୍ଧିତ ହେବାକୁ ଲାଗିଲେ ।୭। ଅନନ୍ତର ରାକ୍ଷସମାନେ ଲାଙ୍ଗୁଳକୁ ତୈଳଦ୍ୱାରା ସିକ୍ତ କରି ସେଥିରେ ଅଗ୍ନିସଂଯୋଗ କଲେ । ହନୂମାନ୍ ସେହି ପ୍ରଜ୍ୱଳିତ ଲାଙ୍ଗୁଳଦ୍ୱାରା ରାକ୍ଷସମାନଙ୍କୁ ଆଘାତ କରିବାକୁ ଲାଗିଲେ ।୮। ରୋଷ ଏବଂ ଅମର୍ଷ ଦ୍ୱାରା ତାଙ୍କର ହୃଦୟ ଆଚ୍ଛନ୍ନ ହୋଇଗଲା ଏବଂ ମୁଖ ବାଳସୂର୍ଯ୍ୟସଦୃଶ ପ୍ରଜ୍ୱଳିତ ହୋଇଉଠିଲା । ସେତେବେଳେ କ୍ରୂରପ୍ରକୃତି

ସହସ୍ତ୍ରୀବାଲବୃଦ୍ଧାଶ୍ଚ ଜଗ୍ମୁଃ ପ୍ରୀତିଂ ନିଶାଚରାଃ ।
ନିବଦ୍ଧଃ କୃତବାନ୍ ବୀରସ୍ତତ୍କାଲସଦୃଶୀଂ ମତିମ୍ । ୧୦ ।
କାମଂ ଖଲୁ ନ ମେ ଶକ୍ତା ନିବଦ୍ଧସ୍ୟାପି ରାକ୍ଷସାଃ ।
ଛିତ୍ତ୍ୱା ପାଶାନ୍ ସମୁତ୍ପତ୍ୟ ହନ୍ୟାମହମିମାନ୍ ପୁନଃ । ୧୧ ।
ଯଦି ଭର୍ତ୍ତୃହିତାର୍ଥାୟ ଚରନ୍ତଂ ଭର୍ତ୍ତୃଶାସନାତ୍ ।
ନିବଧ୍ନନ୍ତେ ଦୁରାତ୍ମାନୋ ନ ତୁ ମେ ନିଷ୍କୃତିଃ କୃତା । ୧୨ ।
ସର୍ବେଷାମେବ ପର୍ଯ୍ୟାପ୍ତୋ ରାକ୍ଷସାନାମହଂ ଯୁଧି ।
କିଂ ତୁ ରାମସ୍ୟ ପ୍ରୀତ୍ୟର୍ଥଂ ବିଷହିଷ୍ୟେଽହମୀଦୃଶମ୍ । ୧୩ ।
ଲଙ୍କା ଚାରୟିତବ୍ୟା ମେ ପୁନରେବ ଭବେଦିତି ।
ରାତ୍ରୌ ନ ହି ସୁଦୃଷ୍ଟା ମେ ଦୁର୍ଗକର୍ମବିଧାନତଃ । ୧୪ ।
ଅବଶ୍ୟମେବ ଦ୍ରଷ୍ଟବ୍ୟା ମୟା ଲଙ୍କା ନିଶାକ୍ଷୟେ ।
କାମଂ ବଧ୍ନନ୍ତୁ ମେ ଭୂୟଃ ପୁଚ୍ଛସ୍ୟୋଦ୍ଦୀପନେନ ଚ । ୧୫ ।
ପୀଡ଼ାଂ କୁର୍ବନ୍ତୁ ରକ୍ଷାଂସି ନ ମେଽସ୍ତି ମନସଃ ଶ୍ରମଃ ।
ତତସ୍ତେ ସଂବୃତାକାରଂ ସତ୍ତ୍ୱବନ୍ତଂ ମହାକପିମ୍ । ୧୬ ।

---

ରାକ୍ଷସମାନେ ପୁଣି ସମସ୍ତେ ମିଳିତ ହୋଇ ଆବାଳବୃଦ୍ଧବନିତାଙ୍କ ସହିତ ଅତିଶୟ ଆନନ୍ଦିତ ହେଲେ । ବାନରଶ୍ରେଷ୍ଠ ବୀର ହନୁମାନ୍ ରାକ୍ଷସମାନଙ୍କ ଦ୍ୱାରା ନିବଦ୍ଧ ହୋଇ ତତ୍କାଳୋଚିତ ଚିନ୍ତା କରିବାକୁ ଲାଗିଲେ । ୯-୧୦ । 'ମୁଁ ଏପରି ବନ୍ଧା ହୋଇଥିଲେ ସୁଦ୍ଧା ରାକ୍ଷସମାନେ ମୋର ସମକକ୍ଷ ହୋଇ ପାରିବେ ନାହିଁ । ମୁଁ ଏ ପାଶକୁ ଛିଣ୍ଡାଇ ଡେଇଁପଡ଼ି ପୁଣି ଏମାନଙ୍କୁ ମାରିବି । ୧୧ । ମୁଁ ମୋର ସ୍ୱାମୀଙ୍କର ହିତସାଧନ ନିମନ୍ତେ ସ୍ୱାମୀଙ୍କ ଆଦେଶରେ ବିଚରଣ କରୁଥିବାବେଳେ ଏହି ଦୁରାତ୍ମାମାନେ ମୋତେ ବାନ୍ଧିଛନ୍ତି ଏବଂ ମୋତେ ମୁକ୍ତ କରି ଦେଉ ନାହାନ୍ତି । ୧୨ । ଅବଶ୍ୟ ମୁଁ ଏ ସମସ୍ତ ରାକ୍ଷସଙ୍କ ସହିତ ଯୁଦ୍ଧ କରିବା ପାଇଁ ସମ୍ପୂର୍ଣ୍ଣ ସମର୍ଥ ଅଟେ । କିନ୍ତୁ ରାମଙ୍କର ପ୍ରୀତିନିମନ୍ତେ ମୁଁ ଏ ବ୍ୟବହାର ସହ୍ୟକରିବି । ୧୩ । ମୁଁ ପୁଣି ଲଙ୍କାରେ ବିଚରଣ କରି ପାରିବି । ମୁଁ ରାତ୍ରିରେ ଏମାନଙ୍କ ଦୁର୍ଗର ଗଠନପ୍ରଣାଳୀ ଉତ୍ତମରୂପେ ଦେଖିପାରି ନାହିଁ; ସୁତରାଂ ମୁଁ ଦିନବେଳେ ଲଙ୍କାକୁ ଅବଶ୍ୟ ବୁଲି ଦେଖିବି । ଆଚ୍ଛା, ଏ ରାକ୍ଷସମାନେ ମନଇଚ୍ଛା ମୋତେ ପୁଣି ବାନ୍ଧନ୍ତୁ ଏବଂ ମୋର ଲାଙ୍ଗୁଡ଼ରେ ନିଆଁ ଲଗାଇ ମୋତେ କଷ୍ଟ ଦିଅନ୍ତୁ; ସେଥିପାଇଁ ମୋ ମନରେ କୌଣସିପ୍ରକାର କ୍ଳାନ୍ତି ନାହିଁ ।' ଅନନ୍ତର ସେହି ବଳବାନ୍ ମହାକପି ନିଜର ଶକ୍ତି -

ପରିଗୃହ୍ୟ ଯଯୁର୍ହୃଷ୍ଟା ରାକ୍ଷସାଃ କପିକୁଞ୍ଜରମ୍ ।
ଶଂଖଭେରୀନିନାଦୈଶ୍ଚ ଘୋଷୟନ୍ତଃ ସ୍ୱକର୍ମଭିଃ । ୧୭ ।
ରାକ୍ଷସାଃ କ୍ରୂରକର୍ମାଣଶ୍ଚାରୟନ୍ତି ସ୍ମ ତାଂ ପୁରୀମ୍ ।
ଅନ୍ୱୀୟମାନୋ ରକ୍ଷୋଭିର୍ୟଯୌ ସୁଖମରିନ୍ଦମଃ । ୧୮ ।
ହନୂମାଂଶ୍ଚାରୟାମାସ ରାକ୍ଷସାନାଂ ମହାପୁରୀମ୍ ।
ଅଥାପଶ୍ୟଦ୍ ବିମାନାନି ବିଚିତ୍ରାଣି ମହାକପିଃ । ୧୯ ।
ସଂବୃତାନଭିଭାଗାଂଶ୍ଚ ସୁବିଭକ୍ତାଂଶ୍ଚ ଚତ୍ୱରାନ୍ ।
ରଥ୍ୟାଶ୍ଚ ଗୃହସଂବାଧାଃ କପିଃ ଶୃଙ୍ଗାଟକାନି ଚ । ୨୦ ।
ତଥା ରଥ୍ୟୋପରଥ୍ୟାଶ୍ଚ ତଥୈବ ଚ ଗୃହାନ୍ତରାନ୍ ।
ଚତ୍ୱରେଷୁ ଚତୁଷ୍କେଷୁ ରାଜମାର୍ଗେ ତଥୈବ ଚ । ୨୧।
ଘୋଷୟନ୍ତି କପିଂ ସର୍ବେ ଚାର ଇତ୍ୟେବ ରାକ୍ଷସାଃ ।
ଦୀପ୍ୟମାନେ ତତସ୍ତସ୍ୟ ଲାଙ୍ଗୂଲାଗ୍ରେ ହନୂମତଃ । ୨୨ ।
ରାକ୍ଷସ୍ୟସ୍ତା ବିରୂପାକ୍ଷ୍ୟଃ ସଂସୁର୍ଦେବ୍ୟାସ୍ତଦପ୍ରିୟମ୍ ।
ଯସ୍ତ୍ୱୟା କୃତସଂବାଦଃ ସୀତେ ! ତାମ୍ରମୁଖଃ କପିଃ । ୨୩ ।
ଲାଙ୍ଗୂଲେନ ପ୍ରଦୀପ୍ତେନ ସ ଏଷ ପରିଣୀୟତେ ।
ଶ୍ରୁତ୍ୱା ତଦ୍‌ବଚନଂ କ୍ରୂରମାତ୍ମୋପହରଣୋପମମ୍ । ୨୪ ।

---

ପ୍ରକାଶ ନ କରି ରହିଲେ ଏବଂ ରାକ୍ଷସମାନେ ସେହି କପିଶ୍ରେଷ୍ଠଙ୍କୁ ନେଇ ହୃଷ୍ଟଚିତ୍ତରେ ଗମନ କରିବାକୁ ଲାଗିଲେ । ସେହି କ୍ରୂରକର୍ମା ରାକ୍ଷସମାନେ ଶଙ୍ଖ, ଭେରୀନିନାଦଦ୍ୱାରା ଏବଂ ନିଜର ପ୍ରହାର ଆଦି କର୍ମଦ୍ୱାରା ତାହାପ୍ରତି ରାଜଦଣ୍ଡ ଆଦେଶ ଥିବାର ଘୋଷଣା କରି କରି ତାହାଙ୍କୁ ସେହି ନଗରୀର ଚାରିଆଡ଼େ ବୁଲାଇଲେ । ଅରିନ୍ଦମ ହନୂମାନଙ୍କ ପଛେ ପଛେ ରାକ୍ଷସମାନେ ଚାଲିଥାନ୍ତି ।୧୪-୧୮। ଏହିପରିଭାବରେ ସେ ରାକ୍ଷସମାନଙ୍କର ମହାପୁରୀରେ ବିଚରଣ କରିବାକୁ ଲାଗିଲେ । ସେହି ମହାକପି ବିଚିତ୍ର ବିମାନ, ପ୍ରାଚୀରବୃତ ଭୂମିଭାଗ, ସୁନିର୍ମିତ ପ୍ରାଙ୍ଗଣ, ଗୃହପରିପୂର୍ଣ୍ଣ ରାଜପଥ, ଚତୁଷ୍ପଥ, ବଡ଼ ବଡ଼ ରାସ୍ତା ଓ ଗଳିରାସ୍ତାମାନ ଏବଂ ଗୃହମାନଙ୍କର ମଧ୍ୟବର୍ତ୍ତୀ ସ୍ଥାନମାନ ଦେଖିବାକୁ ଲାଗିଲେ ।୧୯-୨୧। ରାକ୍ଷସମାନେ ପ୍ରାଙ୍ଗଣ,ଚତୁଷ୍ପଥ ଓ ରାଜପଥମାନଙ୍କରେ ତାହାଙ୍କୁ 'ଗୁପ୍ତଚର' ବୋଲି ଘୋଷଣା କରୁଥାନ୍ତି । ଏହିପରି ହନୂମାନଙ୍କର ଲାଙ୍ଗୁଳର ଅଗ୍ରଭାଗ ପ୍ରଜ୍ୱଳିତ ହେବାରୁ ବିରୂପନୟନା ରାକ୍ଷସୀମାନେ ସୀତାଙ୍କ ନିକଟରେ ଯାଇ ଏ ଅପ୍ରିୟ ସମ୍ବାଦ ଦେଇ କହିଲେ, "ହେ ସୀତେ ! ତୁମେ ଯେଉଁ ତାମ୍ରମୁଖ ବାନର ସହିତ କଥାବାର୍ତ୍ତା କରୁଥିଲ, ଦେଇଛି ସେହି ବାନର ଲାଙ୍ଗୁଡ଼ରେ ନିଆଁ ଲଗାଯାଇ ଚାରିଆଡ଼େ ବୁଲି ହେଉଅଛି ।" ବିଶାଳାକ୍ଷୀ ବୈଦେହୀ ନିଜର

ବୈଦେହୀ ଶୋକସଂତପ୍ତା ହୁତାଶନମୁପାଗମତ୍ ।
ମଙ୍ଗଲାଭିମୁଖୀ ତସ୍ୟ ସା ତଦାସୀନ୍ମହାକପେଃ । ୨୫ ।
ଉପତସ୍ଥେ ବିଶାଲାକ୍ଷୀ ପ୍ରଯତା ହବ୍ୟବାହନମ୍ ।
ଯଦ୍ୟସ୍ତି ପତିଶୁଶ୍ରୂଷା ଯଦ୍ୟସ୍ତି ଚରିତଂ ତପଃ । ୨୬ ।
ଯଦି ଵାସ୍ତ୍ୟେକପତ୍ନୀତ୍ୱଂ ଶୀତୋ ଭବ ହନୂମତଃ ।
ତତସ୍ତୀକ୍ଷ୍ଣାର୍ଚିରବ୍ୟଗ୍ରଃ ପ୍ରଦକ୍ଷିଣଶିଖୋଽନଲଃ । ୨୭ ।
ଜଜ୍ୱାଲ ମୃଗଶାବାକ୍ଷ୍ୟାଃ ଶଂସନ୍ନିବ ଶୁଭଂ କପେଃ ।
ହନୂମଜ୍ଜନକଶ୍ଚୈବ ପୁଚ୍ଛାନଲଯୁତୋଽନିଲଃ ।
ବବୌ ସ୍ୱାସ୍ଥ୍ୟକରୋ ଦେବ୍ୟାଃ ପ୍ରାଲେୟାନିଲଶୀତଲଃ । ୨୮ ।
ଦହ୍ୟମାନେ ଚ ଲାଙ୍ଗୂଲେ ଚିନ୍ତୟାମାସ ବାନରଃ ।
ପ୍ରଦୀପ୍ତୋଽଗ୍ନିରୟଂ କସ୍ମାନ୍ନ ମାଂ ଦହତି ସର୍ବତଃ । ୨୯ ।
ଦୃଶ୍ୟତେ ଚ ମହାଜ୍ୱାଲଃ କରୋତି ଚ ନ ମେ ରୁଜମ୍ ।
ଶିଶିରସ୍ୟେବ ସଂପାତୋ ଲାଙ୍ଗୂଲାଗ୍ରେ ପ୍ରତିଷ୍ଠିତଃ । ୩୦ ।

---

ଅପହରଣ ସଦୃଶ ଏହି ନିଷ୍ଠୁରବାକ୍ୟ ଶୁଣି ଶୋକସନ୍ତପ୍ତ ହୋଇ ଅଗ୍ନିଙ୍କ ନିକଟକୁ ଗଲେ ଏବଂ ସେହି ମହାବାନରଙ୍କର ମଙ୍ଗଳକାମନାରେ ସଂଯତଚିତ୍ତ ହୋଇ ଅଗ୍ନିଙ୍କ ଉପାସନା କରିବାକୁ ଲାଗିଲେ । ସେ କହିଲେ, "ହେ ହୁତାଶନ ! ମୋର ଯଦି ପତିଶୁଶ୍ରୂଷା ଏବଂ ତପଶ୍ଚରଣ ଥାଏ ଏବଂ ମୁଁ ଯଦି ପତିବ୍ରତା ହୋଇଥାଏ; ତାହାହେଲେ ତୁମ୍ଭେ ହନୁମାନ୍ ପ୍ରତି ଶୀତଳ ହୁଅ ।" ଅନନ୍ତର ପ୍ରଖର ଜ୍ୱାଳାମୟ ଅଗ୍ନି ହରିଣନୟନା ସୀତାଙ୍କ ନିକଟରେ ହନୂମାନଙ୍କର ଶୁଭସମ୍ବାଦ କହିବା ନିମନ୍ତେ ଅନୁକୂଳ ଶିଖାବିଶିଷ୍ଟ ହୋଇ ପ୍ରଜ୍ୱଳିତ ହେବାକୁ ଲାଗିଲେ । ହନୂମାନଙ୍କର ଜନକ ପବନ ତାଙ୍କର ପୁଚ୍ଛରେ ଥିବା ଅଗ୍ନି ସହିତ ସଂଯୁକ୍ତ ହୋଇଥିଲେ ମଧ୍ୟ ସୀତାଦେବୀଙ୍କ ସମ୍ମୁଖରେ ଶିଶିରମୟ ବାୟୁସଦୃଶ ଶୀତଳ ଓ ସୁଖକର ହୋଇ ପ୍ରବାହିତ ହେବାକୁ ଲାଗିଲେ । ୨୪-୨୮ । ଲାଙ୍ଗୁଳ ଦଗ୍ଧ ହେବାରୁ ହନୂମାନ୍ ଚିନ୍ତା କରିବାକୁ ଲାଗିଲେ, 'ଏହି ଅଗ୍ନି ଚତୁର୍ଦ୍ଦିଗରୁ ପ୍ରଜ୍ୱଳିତ ହେଉଥିଲେ ମଧ୍ୟ ମୋତେ ସବୁଆଡୁ ପୋଡ଼ି ପକାଉ ନାହାନ୍ତି କାହିଁକି ? ସବୁଆଡ଼େ ପ୍ରବଳ ଶିଖା ଦେଖାଯାଉଛି; କିନ୍ତୁ ମୋତେ କୌଣସି କଷ୍ଟ ଦେଉ ନାହାନ୍ତି । ଏହି ଅଗ୍ନି ଶିଶିରଖଣ୍ଡ ସଦୃଶ ମୋର ଲାଙ୍ଗୁଳର ଅଗ୍ରଭାଗରେ ଅବସ୍ଥାନ

ଅଥବା ତଦିଦଂ ବ୍ୟକ୍ତଂ ଯଦ୍ଦୃଷ୍ଟଂ ପ୍ଲବତା ମୟା ।
ରାମପ୍ରଭାବାଦାଶ୍ଚର୍ଯ୍ୟଂ ପର୍ବତଃ ସରିତାଂ ପତୌ । ୩୧ ।
ଯଦି ତାବତ୍ସମୁଦ୍ରସ୍ୟ ମୈନାକସ୍ୟ ଚ ଧୀମତଃ ।
ରାମାର୍ଥଂ ସଂଭ୍ରମସ୍ତାଦୃକ୍ କିମଗ୍ନିର୍ନ କରିଷ୍ୟତି । ୩୨ ।
ସୀତାୟାଶ୍ଚାନୃଶଂସେ୍ୟନ ତେଜସା ରାଘବସ୍ୟ ଚ ।
ପିତୁଶ୍ଚ ମମ ସଖ୍ୟେନ ନ ମାଂ ଦହତି ପାବକଃ । ୩୩ ।
ଭୂୟଃ ସ ଚିନ୍ତୟାମାସ ମୁହୂର୍ତ୍ତଂ କପିକୁଞ୍ଜରଃ ।
କଥମସ୍ମଦ୍‌ବିଧସ୍ୟେହ ବନ୍ଧନଂ ରାକ୍ଷସାଧମୈଃ । ୩୪ ।
ପ୍ରତିକ୍ରିୟାସ୍ୟ ଯୁକ୍ତା ସ୍ୟାତ୍ସତି ମହ୍ୟଂ ପରାକ୍ରମେ ।
ତତଶ୍ଛିତ୍ତ୍ୱା ଚ ତାନ୍ ପାଶାନ୍ ବେଗବାନ୍ ବୈ ମହାକପିଃ । ୩୫
ଉତ୍ପପାତାଥ ବେଗେନ ନନାଦ ଚ ମହାକପିଃ ।
ପୁରଦ୍ୱାରଂ ତତଃ ଶ୍ରୀମାନ୍ ଶୈଳଶୃଙ୍ଗମିବୋନ୍ନତମ୍ । ୩୬ ।
ବିଭକ୍ତରକ୍ଷଃସଂବାଧମାସସାଦାନିଲାତ୍ମଜଃ ।
ସ ଭୂତ୍ୱା ଶୈଳସଂକାଶଃ କ୍ଷଣେନ ପୁନରାତ୍ମବାନ୍ । ୩୭ ।

---

କରୁଛନ୍ତି । ୨୯-୩୦ । ଅଥବା ସମୁଦ୍ରକୁ ଡେଇଁବା ସମୟରେ ମୁଁ ରାମଙ୍କ ପ୍ରଭାବରେ ସମୁଦ୍ର ମଧ୍ୟରେ ଯେଉଁ ଆଶ୍ଚର୍ଯ୍ୟ ପର୍ବତ ଦେଖିଥିଲି, ସେହି ଆଶ୍ଚର୍ଯ୍ୟ ଘଟଣା ଏଠାରେ ମଧ୍ୟ ପରିସ୍ଫୁଟ ହେଉଅଛି । ୩୧ । ସମୁଦ୍ର ଏବଂ ଧୀମାନ୍ ମୈନାକ ପର୍ବତ ଯଦି ରାମଙ୍କୁ ଏପରି ସମ୍ମାନ ପ୍ରଦର୍ଶନ କରିଥିଲେ, ତେବେ ଅଗ୍ନି କାହିଁକି ତାଙ୍କୁ ସମ୍ମାନ ନ କରିବେ ! । ୩୨ । ସୀତାଙ୍କର ଦୟା, ରାମଙ୍କ ତେଜର ପ୍ରଭାବ ଏବଂ ମୋର ପିତାଙ୍କର ବନ୍ଧୁତା ହେତୁରୁ ଅଗ୍ନି ମୋତେ ଦଗ୍ଧ କରୁନାହାନ୍ତି' ।୩୩ । ଅନନ୍ତର ବାନରଶ୍ରେଷ୍ଠ ବଳବାନ୍ ହନୁମାନ୍ ପୁନର୍ବାର କ୍ଷଣକାଳ ଚିନ୍ତାକଲେ ଯେ, 'ମୋପରି ବ୍ୟକ୍ତିକୁ ଏ ରାକ୍ଷସାଧମମାନେ କପରି ବାନ୍ଧି ରଖିପାରିବେ ! । ୩୪ । ମୋଠାରେ ଯେତେବେଳେ ପରାକ୍ରମ ଅଛି, ସେତେବେଳେ ଏହାର ପ୍ରତିକାର କରିବା କର୍ତ୍ତବ୍ୟ ।' ଅନନ୍ତର ବେଗବାନ୍ ମହାବାନର ହନୁମାନ୍ ସେହି ସମସ୍ତ ପାଶ ଛେଦନକରି ସବେଗରେ ଉତ୍‌ପତିତ ହୋଇ ଗର୍ଜନ କରିବାକୁ ଲାଗିଲେ । ଅନନ୍ତର ଶ୍ରୀମାନ୍ ପବନନନ୍ଦନ ରାକ୍ଷସଗୋଷ୍ଠୀକୁ ଛିନ୍ନଭିନ୍ନ କରିଦେଇ ଶୈଳଶୃଙ୍ଗସଦୃଶ ସମୁନ୍ନତ ନଗରର ଦ୍ୱାର ଉପରେ ଯାଇ ବସିଲେ । ହନୁମାନ୍ ମୁହୂର୍ତ୍ତକ ମଧ୍ୟରେ ପର୍ବତସଦୃଶ ଆକାର ଧାରଣକରି

ହ୍ରସ୍ୱତାଂ ପରମାଂ ପ୍ରାପ୍ତୋ ବନ୍ଧନାନ୍ୟବଶାତତ୍ୟଜତ୍ ।
ବିମୁକ୍ତଶ୍ଚାଭବଚ୍ଛ୍ରୀମାନ୍ ପୁନଃ ପର୍ବତସଂନିଭଃ । ୩୮ ।
ବୀକ୍ଷମାଣଶ୍ଚ ଦଦୃଶେ ପରିଘଂ ତୋରଣାଶ୍ରିତମ୍ ।
ସ ତଂ ଗୃହ୍ୟ ମହାବାହୁଃ କାଲାୟସପରିଷ୍କୃତମ୍ ।
ରକ୍ଷିଣସ୍ତାନ୍ ପୁନଃ ସର୍ବାନ୍ ସୂଦୟାମାସ ମାରୁତିଃ । ୩୯ ।
ସ ତାନ୍ନିହତ୍ୱା ରଣଚଣ୍ଡବିକ୍ରମଃ
ସମୀକ୍ଷମାଣଃ ପୁନରେବ ଲଙ୍କାମ୍ ।
ପ୍ରଦୀପ୍ତଲାଙ୍ଗୂଲକୃତାର୍ଚିମାଳୀ
ପ୍ରକାଶତାଦିତ୍ୟ ଇବାର୍ଚିମାଳୀ । ୪୦ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ସୁନ୍ଦରକାଣ୍ଡେ ଦ୍ୱିପଞ୍ଚାଶଃ ସର୍ଗଃ ।

---

ଏବଂ ତତକ୍ଷଣାତ୍ ଅତିଶୟ କ୍ଷୁଦ୍ର ଆକାର ହୋଇ ସବୁପାକ ବନ୍ଧନ ଛୁଣ୍ଡାଇ ପକାଇଲେ । ଶେଷରେ ଶ୍ରୀମାନ୍ ହନୁମାନ୍ ବନ୍ଧନରୁ ମୁକ୍ତହୋଇ ପୁଣି ପର୍ବତସଦୃଶ ମହାକାୟ ହୋଇଗଲେ । ୩୫-୩୮ । ଅନନ୍ତର ମାରୁତି ଇତସ୍ତତଃ ଦୃଷ୍ଟିସଂଚାଳନ କରି ତୋରଣ ଉପରେ ଥିବା ଗୋଟିଏ କୃଷ୍ଣବର୍ଣ୍ଣ ଲୌହନିର୍ମିତ ଗଦା ଦେଖି ଓ ତାହା ଧରି, ତଦ୍ଦ୍ୱାରା ସେଠାର ସମସ୍ତ ରକ୍ଷକ ରାକ୍ଷସମାନଙ୍କୁ ସଂହାରକଲେ । ୩୯ । ସଂଗ୍ରାମରେ ପ୍ରଚଣ୍ଡବିକ୍ରମ ହନୁମାନ୍ ସେହି ରକ୍ଷୀମାନଙ୍କୁ ହତ୍ୟାକରି ପୁନର୍ବାର ଲଙ୍କାର ଚାରିଆଡ଼େ ନିରୀକ୍ଷଣ କରିବାକୁ ଲାଗିଲେ । ସେତେବେଳେ ତାଙ୍କର ଲାଙ୍ଗୁଳସ୍ଥ ଅଗ୍ନିଶିଖା ପ୍ରଜ୍ୱଳିତ ହେଉଥିବାରୁ ସେ ରଶ୍ମିଜାଲସମାଚ୍ଛନ୍ନ ସୂର୍ଯ୍ୟଙ୍କ ପରି ପ୍ରତୀୟମାନ ହେବାକୁ ଲାଗିଲେ । ୪୦ ।

# ଚତୁଃପଞ୍ଚାଶଃ ସର୍ଗଃ

## ଲଙ୍କାଦାହଃ

ବୀକ୍ଷମାଣସ୍ତତୋ ଲଙ୍କାଂ କପିଃ କୃତମନୋରଥଃ ।
ବର୍ଦ୍ଧମାନସମୁତ୍ସାହଃ କାର୍ଯଶେଷମଚନ୍ତୟତ୍ । ୧ ।
କିଂ ନୁ ଖଲ୍ୱବଶିଷ୍ଟଂ ମେ କର୍ତ୍ତବ୍ୟମିହ ସାଂପ୍ରତମ୍ ।
ଯଦେଷାଂ ରକ୍ଷସାଂ ଭୂୟଃ ସଂତାପଜନନଂ ଭବେତ୍ । ୨ ।
ବନଂ ତାବତ୍ ପ୍ରମଥିତଂ ପ୍ରକୃଷ୍ଟା ରାକ୍ଷସା ହତାଃ ।
ବଲୈକଦେଶଃ କ୍ଷପିତଃ ଶେଷଂ ଦୁର୍ଗବିନାଶନମ୍ । ୩ ।
ଦୁର୍ଗେ ବିନାଶିତେ କର୍ମ ଭବେତ୍ସୁଖପରିଶ୍ରମମ୍ ।
ଅଲ୍ପଯତ୍ନେନ କାର୍ଯେଽସ୍ମିନ୍ମମ ସ୍ୟାତ୍ସଫଲଃ ଶ୍ରମଃ । ୪ ।
ଯୋ ହ୍ୟୟଂ ମମ ଲାଙ୍ଗୂଲେ ଦୀପ୍ୟତେ ହବ୍ୟବାହନଃ ।
ଅସ୍ୟ ସଂତର୍ପଣଂ ନ୍ୟାଯ୍ୟଂ କର୍ତୁମେଭିର୍ଗୃହୋତ୍ତମୈଃ । ୫ ।
ତତଃ ପ୍ରଦୀପ୍ତଲାଙ୍ଗୂଲଃ ସବିଦ୍ୟୁଦିବ ତୋୟଦଃ ।
ଭବନାଗ୍ରେଷୁ ଲଙ୍କାୟା ବିଚଚାର ମହାକପିଃ । ୬ ।

---

## ୫୪ଶ ସର୍ଗ

### ( ଲଙ୍କାଦାହ )

ମନୋରଥ ସିଦ୍ଧ ହେବାରୁ ହନୂମାନଙ୍କର ଉତ୍ସାହ ବର୍ଦ୍ଧିତ ହେବାକୁ ଲାଗିଲା ଏବଂ ସେ ଲଙ୍କା ଆଡ଼କୁ ଚାହିଁ ଅବଶିଷ୍ଟ କାର୍ଯ୍ୟବିଷୟ ଚିନ୍ତା କରିବାକୁ ଲାଗିଲେ ।୧। 'ବର୍ତ୍ତମାନ ମୋର ଆଉ କି କାର୍ଯ୍ୟ କରିବାକୁ ଅବଶିଷ୍ଟ ରହିଲା, ଯାହାଦ୍ୱାରା ଏହି ସମସ୍ତ ରାକ୍ଷସଙ୍କର ପୁନର୍ବାର ସନ୍ତାପ ଜାତ ହୋଇପାରିବ । ୨ । ମୁଁ ଅଶୋକ-ବନକୁ ଧ୍ୱସ୍ତବିଧ୍ୱସ୍ତ କରିଛି, ପ୍ରଧାନ ପ୍ରଧାନ ରାକ୍ଷସମାନଙ୍କୁ ନିହତ କରିଛି, ସୈନ୍ୟମାନଙ୍କର ଗୋଟିଏ ଅଂଶକୁ କ୍ଷୟପ୍ରାପ୍ତ କରିଦେଇଛି, କେବଳ ଦୁର୍ଗକୁ ଧ୍ୱଂସ କରିବା ହିଁ ଅବଶିଷ୍ଟ ରହିଛି । ୩। ଏହି ଦୁର୍ଗ ଧ୍ୱଂସହେଲେ ମୋର ପରିଶ୍ରମ ସୁଖପ୍ରଦ ହେବ । ଏ କାର୍ଯ୍ୟରେ ସାମାନ୍ୟ ଯତ୍ନଦ୍ୱାରା ମୋର ଶ୍ରମ ସଫଳ ହେବ । ୪ । ମୋର ଲାଙ୍ଗୂଳରେ ଏଇ ଯେଉଁ ଅଗ୍ନିଦେବ ପ୍ରଜ୍ୱଳିତ ହେଉଛନ୍ତି, ତାହାଙ୍କୁ ଏହି ସମସ୍ତ ଉତ୍କୃଷ୍ଟ ଗୃହଦ୍ୱାରା ସମ୍ୟକ୍ ରୂପେ ତୃପ୍ତକରିବା ନ୍ୟାୟସଙ୍ଗତ ହେବ' । ୫ । ଅନନ୍ତର ମହାବାନର ହନୂମାନ୍ ପ୍ରଜ୍ୱଳିତ ଲାଙ୍ଗୂଳ ଯେଉଁ ବିଦ୍ୟୁତ୍‌ସମନ୍ୱିତ ମେଘପରି ଲଙ୍କାର ଗୃହମାନଙ୍କ ଶିଖରଦେଶରେ ବିଚରଣ କରିବାକୁ ଲାଗିଲେ । ୬ ।

ଗୃହାଦ୍ ଗୃହଂ ରାକ୍ଷସାନାମୁଦ୍ୟାନାନି ଚ ବାନରଃ ।
ବୀକ୍ଷମାଣୋ ହ୍ୟସଂତ୍ରସ୍ତଃ ପ୍ରାସାଦାଂଶ୍ଚ ଚଚାର ସଃ । ୭ ।
ଅବପ୍ଲୁତ୍ୟ ମହାବେଗଃ ପ୍ରହସ୍ତସ୍ୟ ନିବେଶନମ୍ ।
ଅଗ୍ନିଂ ତତ୍ର ବିନିକ୍ଷିପ୍ୟ ଶ୍ୱସନେନ ସମୋ ବଲୀ । ୮ ।
ତତୋଽନ୍ୟତ୍ପୁପ୍ଲୁବେ ବେଶ୍ମ ମହାପାର୍ଶ୍ୱସ୍ୟ ବୀର୍ଯବାନ୍ ।
ମୁମୋଚ ହନୁମାନଗ୍ନିଂ କାଲାନଲଶିଖୋପମମ୍ । ୯ ।
ବଜ୍ରଦଂଷ୍ଟ୍ରସ୍ୟ ଚ ତଥା ପୁପ୍ଲୁବେ ସ ମହାକପିଃ ।
ଶୁକସ୍ୟ ଚ ମହାତେଜାଃ ସାରଣସ୍ୟ ଚ ଧୀମତଃ । ୧୦ ।
ତଥା ଚେନ୍ଦ୍ରଜିତୋ ବେଶ୍ମ ଦଦାହ ହରିଯୂଥପଃ ।
ଜମ୍ବୁମାଲେଃ ସୁମାଲେଶ୍ଚ ଦଦାହ ଭବନଂ ତତଃ । ୧୧ ।
ରଶ୍ମିକେତୋଶ୍ଚ ଭବନଂ ସୂର୍ଯଶତ୍ରୋସ୍ତଥୈବ ଚ ।
ହ୍ରସ୍ୱକର୍ଣସ୍ୟ ଦଂଷ୍ଟ୍ରସ୍ୟ ରୋମଶସ୍ୟ ଚ ରକ୍ଷସଃ । ୧୨ ।
ଯୁଦ୍ଧୋନ୍ମତ୍ତସ୍ୟ ମତ୍ତସ୍ୟ ଧ୍ୱଜଗ୍ରୀବସ୍ୟ ରକ୍ଷସଃ ।
ବିଦ୍ୟୁଜ୍ଜିହ୍ୱସ୍ୟ ଘୋରସ୍ୟ ତଥା ହସ୍ତିମୁଖସ୍ୟ ଚ । ୧୩ ।
କରାଳସ୍ୟ ବିଶାଳସ୍ୟ ଶୋଣିତାକ୍ଷସ୍ୟ ଚୈବ ହି ।
କୁମ୍ଭକର୍ଣସ୍ୟ ଭବନଂ ମକରାକ୍ଷସ୍ୟ ଚୈବ ହି । ୧୪ ।

---

ସେ ଇତସ୍ତତଃ ଦୃଷ୍ଟି ନିକ୍ଷେପ କରି ରାକ୍ଷସମାନଙ୍କର ଗୃହରୁ ଗୃହାନ୍ତରକୁ, ଉଦ୍ୟାନ ଓ ପ୍ରାସାଦମାନଙ୍କରେ ନିର୍ଭୀକଚିତ୍ତରେ ବିଚରଣ କରିବାକୁ ଲାଗିଲେ । ୭ । ଅନନ୍ତର ପବନସଦୃଶ ବଳବାନ୍ ମହାବେଗଶାଳୀ ହନୁମାନ୍ ଡେଇଁ ଯାଇ ପ୍ରହସ୍ତର ଗୃହରେ ଅଗ୍ନି ସଂଯୋଗକରି ତତ୍ପରେ ମହାପାର୍ଶ୍ୱର ଗୃହକୁ ଡେଇଁଲେ ଏବଂ ସେଠାରେ କାଳାଗ୍ନିସଦୃଶ ଅଗ୍ନି ମୋଚନକଲେ । ୮-୯ । ସେହିପରି ସେ ମହାକପି ଯଥାକ୍ରମରେ ବଜ୍ରଦଂଷ୍ଟ୍ର, ଶୁକ ଏବଂ ବୁଦ୍ଧିମାନ୍ ସାରଣଙ୍କର ଭବନକୁ ଡେଇଁଲେ । ୧୦ । ସେହିପରି ସେ ବାନରଦଳପତି ଇନ୍ଦ୍ରଜିତଙ୍କ ଗୃହକୁ ଦଗ୍ଧ କଲେ ଏବଂ ତତ୍ପରେ ଜମ୍ବୁମାଳି ଓ ସୁମାଳିଙ୍କ ଗୃହକୁ ମଧ୍ୟ ଦଗ୍ଧକଲେ । ୧୧ । ବାନରଶ୍ରେଷ୍ଠ ମହାତେଜା ହନୁମାନ୍ ଏହିପରି ବିଚରଣ କରି କରି ଏବଂ କେବଳ ବିଭୀଷଣଙ୍କ ଗୃହକୁ ଛାଡ଼ିଦେଇ କ୍ରମାନ୍ୱୟରେ ରଶ୍ମିକେତୁ, ସୂର୍ଯ୍ୟଶତ୍ରୁ, ହ୍ରସ୍ୱକର୍ଣ୍ଣ, ଦଂଷ୍ଟ୍ର, ରୋମଶ, ଯୁଦ୍ଧୋନ୍ମତ୍ତ, ମତ୍ତ, ଧ୍ୱଜଗ୍ରୀବ, ବିଦ୍ୟୁଜ୍ଜିହ୍ୱ, ଘୋର, ହସ୍ତମୁଖ,

ନରାନ୍ତକସ୍ୟ କୁମ୍ଭସ୍ୟ ନିକୁମ୍ଭସ୍ୟ ମହାତ୍ମନଃ ।
ଯଜ୍ଞଶତ୍ରୋଶ୍ଚ ଭବନଂ ବ୍ରହ୍ମଶତ୍ରୋସ୍ତଥୈବ ଚ । ୧୫ ।
ବର୍ଜୟିତ୍ୱା ମହାତେଜା ବିଭୀଷଣଗୃହଂ ପ୍ରତି ।
କ୍ରମମାଣଃ କ୍ରମେଣୈବ ଦଦାହ ହରିପୁଙ୍ଗବଃ । ୧୬ ।
ତେଷୁ ତେଷୁ ମହାର୍ହେଷୁ ଭବନେଷୁ ମହାଯଶାଃ ।
ଗୃହେଷ୍ୱୃଦ୍ଧିମତାମୃଦ୍ଧିଂ ଦଦାହ କପିକୁଞ୍ଜରଃ । ୧୭ ।
ସର୍ବେଷାଂ ସମତିକ୍ରମ୍ୟ ରାକ୍ଷସେନ୍ଦ୍ରସ୍ୟ ବୀର୍ଯବାନ୍ ।
ଆସସାଦାଥ ଲକ୍ଷ୍ମୀବାନ୍ରାବଣସ୍ୟ ନିବେଶନମ୍ । ୧୮ ।
ତତସ୍ତସ୍ମିନ୍ ଗୃହେ ମୁଖ୍ୟେ ନାନାରତ୍ନବିଭୂଷିତେ ।
ମେରୁମନ୍ଦରସଂକାଶେ ନାନାମଙ୍ଗଲଶୋଭିତେ । ୧୯ ।
ପ୍ରଦୀପ୍ତମଗ୍ନିମୁତ୍ସୃଜ୍ୟ ଲାଙ୍ଗୂଲାଗ୍ରେ ପ୍ରତିଷ୍ଠିତମ୍ ।
ନନାଦ ହନୂମାନ୍ ବୀରୋ ଯୁଗାନ୍ତଜଲଦୋ ଯଥା । ୨୦ ।
ଶ୍ୱସନେନ ଚ ସଂଯୋଗାଦତିବେଗୋ ମହାବଲଃ ।
କାଲାଗ୍ନିରିବ ଜଜ୍ୱାଲ ପ୍ରାବର୍ଧତ ହୁତାଶନଃ । ୨୧ ।
ପ୍ରଦୀପ୍ତମଗ୍ନିଂ ପବନସ୍ତେଷୁ ବେଶ୍ମସୁ ଚାରୟନ୍ ।
ତାନି କାଞ୍ଚନଜାଲାନି ମୁକ୍ତାମଣିମୟାନି ଚ । ୨୨ ।

---

କରାଳ, ବିଶାଳ, ଶୋଣିତାକ୍ଷ, କୁମ୍ଭକର୍ଣ୍ଣ, ମକରାକ୍ଷ, ନରାନ୍ତକ, କୁମ୍ଭ, ଦୁରାତ୍ମା ନିକୁମ୍ଭ, ଯଜ୍ଞଶତ୍ରୁ ଓ ବ୍ରହ୍ମଶତ୍ରୁ ଏହି ସମସ୍ତ ରାକ୍ଷସଙ୍କର ଗୃହସମୂହ ଦଗ୍ଧକଲେ ।୧୨-୧୬। ସମୃଦ୍ଧିଶାଳୀ ରାକ୍ଷସମାନଙ୍କର ସେହି ସମସ୍ତ ମହାମୂଲ୍ୟ ଭବନରେ ଯେ ସମସ୍ତ ଧନ ସମ୍ପତ୍ତି ଥିଲା, ତାହା ବାନରଶ୍ରେଷ୍ଠ ହନୂମାନ୍ ଦଗ୍ଧ କରିଦେଲେ । ୧୭ । ଅନନ୍ତର ବୀର୍ଯ୍ୟବାନ୍ ଲକ୍ଷ୍ମୀବାନ୍ ହନୂମାନ୍ ସେ ସମସ୍ତଙ୍କର ଗୃହ ଅତିକ୍ରମ କରି ରାକ୍ଷସେନ୍ଦ୍ର ରାବଣର ଗୃହ ନିକଟରେ ଆସି ପହଞ୍ଚିଲେ । ୧୮ । ଅନନ୍ତର ଏହି ବିବିଧ ରତ୍ନ ଓ ମଙ୍ଗଳମୟ ଦ୍ରବ୍ୟଶୋଭିତ, ମେରୁମନ୍ଦରସଦୃଶ ଶୋଭମାନ, ମୁଖ୍ୟ ଭବନରେ ବୀର ହନୂମାନ୍ ନିଜ ଲାଙ୍ଗୁଳରେ ବିରାଜିତ ଥିବା ପ୍ରଜ୍ୱଳିତ ଅଗ୍ନିକୁ ନିକ୍ଷେପକରି ପ୍ରଳୟକାଳୀନ ଜଳଦସଦୃଶ ଗର୍ଜନ କରିବାକୁ ଲାଗିଲେ ।୧୯-୨୦ । ବାୟୁ ସାହାଯ୍ୟରେ ଏହି ଅଗ୍ନି ପ୍ରଳୟାଗ୍ନିସଦୃଶ ପ୍ରବଳ ଏବଂ ଅତିଶୟ ବର୍ଦ୍ଧମାନ ହୋଇ ମହାବେଗରେ ଜଳିବାକୁ ଲାଗିଲା । ୨୧ । ପବନ ଏହି ପ୍ରଜ୍ୱଳିତ ଅଗ୍ନିକୁ ସେହି ସମସ୍ତ ଗୃହରେ ସଞ୍ଚାରିତକରି କାଞ୍ଚନରଚିତ ମୁକ୍ତାମଣିନିର୍ମିତ

ଭବନାନି ବ୍ୟଶୀର୍ଯ୍ୟନ୍ତ ରତ୍ନବନ୍ତି ମହାନ୍ତି ଚ ।
ତାନି ଭଗ୍ନବିମାନାନି ନିପେତୁର୍ବସୁଧାତଳେ । ୨୩ ।
ଭବନାନୀବ ସିଦ୍ଧାନାମମ୍ବରାତ୍ପୁଣ୍ୟସଂକ୍ଷୟେ ।
ସଂଜଜ୍ଞେ ତୁମୁଲଃ ଶବ୍ଦୋ ରାକ୍ଷସାନାଂ ପ୍ରଧାବତାମ୍ । ୨୪ ।
ସ୍ୱେ ସ୍ୱେ ଗୃହପରିତ୍ରାଣେ ଭଗ୍ନୋତ୍ସାହୋର୍ଜିତଶ୍ରିୟାମ୍ ।
ନୂନମେଷୋଽଗ୍ନିରାୟାତଃ କପିରୂପେଣ ହା ଇତି । ୨୫ ।
କ୍ରନ୍ଦନ୍ତ୍ୟଃ ସହସା ପେତୁଃ ସ୍ତନନ୍ଧୟଧରାଃ ସ୍ତ୍ରିୟଃ ।
କାଶ୍ଚିଦଗ୍ନିପରୀତାଙ୍ଗ୍ୟୋ ହର୍ମ୍ୟେଭ୍ୟୋ ମୁକ୍ତମୂର୍ଧଜାଃ । ୨୬ ।
ପତନ୍ତ୍ୟୋ ରେଜିରେଽଭ୍ରେଭ୍ୟଃ ସୌଦାମିନ୍ୟ ଇବାମ୍ବରାତ୍ ।
ବଜ୍ରବିଦ୍ରୁମବୈଦୂର୍ଯ୍ୟମୁକ୍ତାରଜତସଂହତାନ୍ । ୨୭ ।
ବିଚିତ୍ରାନ୍ ଭବନାଦ୍ଧାତୁନ୍ସ୍ୟନ୍ଦମାନାନ୍ଦଦର୍ଶ ସଃ ।
ନାଗ୍ନିସ୍ତୃପ୍ୟତି କାଷ୍ଠାନାଂ ତୃଣାନାଂ ଚ ଯଥା ତଥା ।୨୮।
ହନୂମାନ୍ରାକ୍ଷସେନ୍ଦ୍ରାଣାଂ ବଧେ କିଞ୍ଚିନ୍ନ ତୃପ୍ୟତି ।
ନ ହନୂମାନ୍ ବିଶସ୍ତାନାଂ ରାକ୍ଷସାନାଂ ବସୁନ୍ଧରା । ୨୯।

---

ରତ୍ନପୂର୍ଣ୍ଣ ବିଶାଳ ଗୃହମାନଙ୍କୁ ଭସ୍ମୀଭୂତ କରିଦେଲା ଏବଂ ଗୃହର ଅଗ୍ରଭାଗ ସବୁ ଭଗ୍ନହୋଇ ଧରାତଳରେ ନିପତିତ ହେଲା । ୨୨-୨୩ । ପୁଣ୍ୟକ୍ଷୟ ହେଲେ ସିଦ୍ଧମାନଙ୍କର ଗୃହମାନ ଆକାଶରୁ ଯେପରି ଖସିପଡ଼େ, ଏହି ଗୃହମାନ ସେହିପରି ଭୂଇଁରେ ଖସିପଡ଼ିଲା । ରାକ୍ଷସମାନେ ଆପଣା ଆପଣା ଗୃହ ରକ୍ଷାକରିବାରେ ଭଗ୍ନୋତ୍ସାହ ହୋଇ ସମ୍ପତ୍ତି ପରିତ୍ୟାଗପୂର୍ବକ ଇତସ୍ତତଃ ପ୍ରଧାବିତ ହେଲେ ଏବଂ ସେମାନଙ୍କ ମୁଖରୁ ମହାନ୍ ହାହାକାର ଶବ୍ଦ ଜାତହେଲା । ସେମାନେ ଚିତ୍କାରକଲେ ହାୟ ! ଅଗ୍ନିଦେବ ନିଶ୍ଚୟ ଏହି କପିରୂପରେ ଆସି ଉପସ୍ଥିତ ହୋଇଅଛନ୍ତି । ୨୪-୨୫ ।" ରମଣୀମାନେ ଦୁଗ୍ଧପୋଷ୍ୟ ଶିଶୁମାନଙ୍କୁ କୋଡ଼ରେ ଧରି କାନ୍ଦି କାନ୍ଦି ସହସା ଗୃହରୁ ନିର୍ଗତ ହେଲେ । କେହି କେହି ସର୍ବାଙ୍ଗ ଅଗ୍ନିବେଷ୍ଟିତହୋଇ ପ୍ରାସାଦମାନଙ୍କରୁ ନିପତିତ ହେବା ସମୟରେ ଆକାଶବିଚ୍ୟୁତ ବିଦ୍ୟୁତ୍ସଦୃଶ ଶୋଭା ପାଇବାକୁ ଲାଗିଲେ । ହନୁମାନ୍ ଦେଖିଲେ, ଗୃହମାନଙ୍କରୁ ହୀରକ, ବିଦ୍ରୁମ, ବୈଦୂର୍ଯ୍ୟ, ମୁକ୍ତା ଓ ରଜତ ପ୍ରଭୃତି ବିଚିତ୍ର ଧାତୁ ଦ୍ରବୀଭୂତ ହୋଇ ବହିଯାଉଛି । ଅଗ୍ନି ଯେପରି କାଷ୍ଠ ଏବଂ ତୃଣମାନଙ୍କୁ ଦଗ୍ଧ କରି ତୃପ୍ତ ହୁଅନ୍ତି ନାହିଁ, ସେହିପରି ହନୁମାନ୍ ସେହି ରାକ୍ଷସେନ୍ଦ୍ରମାନଙ୍କ ବଧରେ ଲେଶମାତ୍ର ତୃପ୍ତ ହେଲେ ନାହିଁ ଏବଂ ହନୁମାନଙ୍କ କର୍ତ୍ତୃକ ନିହତ ହୋଇଥିବା ରାକ୍ଷସମାନଙ୍କ ଦ୍ୱାରା ପୃଥିବୀ ମଧ୍ୟ ତୃପ୍ତ ହେଲେ ନାହିଁ । ୨୬-୨୯ । ରୁଦ୍ର

ହନୂମତା ବେଗବତା ବାନରେଣ ମହାତ୍ମନା ।
ଲଙ୍କାପୁରଂ ପ୍ରଦଗ୍ଧଂ ତଦ୍ରୁଦ୍ରେଣ ତ୍ରିପୁରଂ ଯଥା । ୩୦ ।
ତତସ୍ତୁ ଲଙ୍କାପୁରପର୍ବତାଗ୍ରେ
ସମୁତ୍ଥିତୋ ଭୀମପରାକ୍ରମୋଽଗ୍ନିଃ ।
ପ୍ରସାର୍ଯ୍ୟ ଚୂଡ଼ାବଲୟଂ ପ୍ରଦୀପ୍ତୋ-
ହନୂମତା ବେଗବତୋପସୃଷ୍ଟଃ । ୩୧ ।
ଯୁଗାନ୍ତକାଳାନଳତୁଲ୍ୟରୂପଃ
ସମାରୁତୋଽଗ୍ନିର୍ବବୃଧେ ଦିବସ୍ପୃକ୍ ।
ବିଧୂମରଶ୍ମିର୍ଭବନେଷୁ ସକ୍ତୋ-
ରକ୍ଷଃଶରୀରାଜ୍ୟସମର୍ପିତାର୍ଚ୍ଚିଃ । ୩୨ ।
ଆଦିତ୍ୟକୋଟୀସଦୃଶଃ ସୁତେଜା-
ଲଙ୍କାଂ ସମସ୍ତାଂ ପରିବାର୍ଯ୍ୟ ତିଷ୍ଠନ୍ ।
ଶବ୍ଦୈରନେକୈରଶନିପ୍ରରୂଢ଼ୈ-
ର୍ଭିନ୍ଦନ୍ନିବାଣ୍ଡଂ ପ୍ରବଭୌ ମହାଗ୍ନିଃ । ୩୩ ।
ତତ୍ରାମ୍ବରାଦଗ୍ନିରତିପ୍ରବୃଦ୍ଧୋ-
ରୁକ୍ଷପ୍ରଭଃ କିଂଶୁକପୁଷ୍ପଚୂଡ଼ଃ ।
ନିର୍ବାଣଧୂମାକୁଳରାଜୟଶ୍ଚ
ନୀଳୋତ୍ପଳାଭାଃ ପ୍ରଚକାଶିରେଽଭ୍ରାଃ । ୩୪ ।

---

ଯେପରି ତ୍ରିପୁର ଦଗ୍ଧ କରିଥିଲେ, ସେହିପରି ବେଗବାନ୍ ମହାତ୍ମା ବାନର ହନୂମାନ୍ ଲଙ୍କାପୁରୀକୁ ଦଗ୍ଧ କରିଦେଲେ । ୩୦ । ବେଗବାନ୍ ହନୂମାନ୍ କର୍ତ୍ତୃକ ଅଗ୍ନି ବିସୃଷ୍ଟହୋଇ ଲଙ୍କାପୁରୀର ପର୍ବତଶିଖରରେ ଅତିଭୀମପରାକ୍ରମରେ ଶିଖାସମୂହ ବିସ୍ତାରିତ କରି ପ୍ରଜ୍ୱଳିତ ହୋଇଉଠିଲେ । ୩୧ । ଅଗ୍ନିଦେବ ବାୟୁସଂଯୋଗରେ ପ୍ରଳୟକାଳୀନ ଅଗ୍ନିସଦୃଶ ରୂପ ଧାରଣକରି ଆକାଶମଣ୍ଡଳ ସ୍ପର୍ଶକରି ବର୍ଦ୍ଧିତହେବାକୁ ଲାଗିଲେ । ରାକ୍ଷସମାନଙ୍କର ଶରୀରରୂପ ଘୃତାହୁତି ପାଇ ତାହାଙ୍କର ଶିଖା ଜଳିଉଠିଲା । ଏହିପରିଭାବରେ ଅଗ୍ନି ସେହି ଗୃହମାନଙ୍କରେ ଲାଗି ଧୂମଶୂନ୍ୟ ରଶ୍ମିରାଶି ବିକିରଣ କରିବାକୁ ଲାଗିଲେ । ୩୨ । ଏହିପରି କୋଟିସୂର୍ଯ୍ୟସଦୃଶ ତେଜସ୍ୱୀ ମହାନଳ ବଜ୍ରତୁଲ୍ୟ ଘୋରତର ଶବ୍ଦରେ ବ୍ରହ୍ମାଣ୍ଡକୁ ଭେଦକରି ସମଗ୍ର ଲଙ୍କାପୁରୀକୁ ବେଷ୍ଟନକରି ଶୋଭା ପାଇବାକୁ ଲାଗିଲେ । ୩୩ । କିଂଶୁକପୁଷ୍ପସଦୃଶ ଶିଖାବିଶିଷ୍ଟ ରୁଦ୍ରରୂପ ଅଗ୍ନି ଏହିରୂପେ ଆକାଶପର୍ଯ୍ୟନ୍ତ ବ୍ୟାପ୍ତହୋଇ ବର୍ଦ୍ଧିତ ହେବାରୁ ନିମ୍ନଦେଶରୁ ନିର୍ବାପିତ ଧୂମରାଶି ନୀଳୋତ୍ପଳସଦୃଶ ପ୍ରଭା ବିସ୍ତାରକରି ମେଘରାଶି-

ବଜ୍ରୀ ମହେନ୍ଦ୍ରସ୍ତ୍ରିଦଶେଶ୍ୱରୋ ବା
ସାକ୍ଷାଦ୍ ଯମୋ ବା ବରୁଣୋଽନିଲୋ ବା ।
ରୌଦ୍ରୋଽଗ୍ନିରର୍କୋ ଧନଦଶ୍ଚ ସୋମୋ
ନ ବାନରୋଽୟଂ ସ୍ୱୟମେବ କାଲଃ । ୩୫ ।
କିଂ ବ୍ରହ୍ମଣଃ ସର୍ବପିତାମହସ୍ୟ
ଲୋକସ୍ୟ ଧାତୁଶ୍ଚତୁରାନନସ୍ୟ ।
ଇହାଗତୋ ବାନରରୂପଧାରୀ
ରକ୍ଷୋପସଂହାରକରଃ ପ୍ରକୋପଃ । ୩୬ ।
କିଂ ବୈଷ୍ଣବଂ ବା କପିରୂପମେତ୍ୟ
ରକ୍ଷୋବିନାଶାୟ ପରଂ ସୁତେଜଃ ।
ଅଚିନ୍ତ୍ୟମବ୍ୟକ୍ତମନନ୍ତମେକମ୍
ସ୍ୱମାୟୟା ସାଂପ୍ରତମାଗତଂ ବା । ୩୭ ।
ଇତ୍ୟେବମୂଚୁର୍ବହବୋ ବିଶିଷ୍ଟା-
ରକ୍ଷୋଗଣାସ୍ତତ୍ର ସମେତ୍ୟ ସର୍ବେ ।
ସପ୍ରାଣିସଙ୍ଘାଂ ସଗୃହାଂ ସବୃକ୍ଷାମ୍
ଦଗ୍ଧାଂ ପୁରୀଂ ତାଂ ସହସା ସମୀକ୍ଷ୍ୟ । ୩୮ ।
ତତସ୍ତୁ ଲଙ୍କା ସହସା ପ୍ରଦଗ୍ଧା
ସରାକ୍ଷସା ସାଶ୍ୱରଥା ସନାଗା

---

ସଦୃଶ ଶୋଭାପାଇଲେ । ୩୪ । "ଏ ବାନର ନୁହେଁ; ସ୍ୱୟଂ କାଳ କିମ୍ବା ସାକ୍ଷାତ୍ ତ୍ରିଦଶାଧିପତି ଇନ୍ଦ୍ର, ଯମ, ବରୁଣ, ପବନ, ରୁଦ୍ର, ଅଗ୍ନି, ସୂର୍ଯ୍ୟ, କୁବେର, କିମ୍ବା ଚନ୍ଦ୍ର ହେବେ । ୩୫ । କିମ୍ବା ସମସ୍ତଙ୍କର ପିତାମହ ଲୋକବିଧାତା ଚତୁରାନନ ବ୍ରହ୍ମାଙ୍କର କୋପ କ'ଣ ରାକ୍ଷସକୁଳସଂହାରକାରୀ ବାନରରୂପ ଧରି ଏଠାକୁ ଆସିଅଛି ! । ୩୬ । କିମ୍ବା ଅନନ୍ତ, ଅବ୍ୟକ୍ତ ଏବଂ ଅଚିନ୍ତ୍ୟ ବିଷ୍ଣୁଙ୍କର ତେଜ ରାକ୍ଷସମାନଙ୍କର ବିନାଶନିମନ୍ତେ ସମ୍ପ୍ରତି ସ୍ୱୀୟ ମାୟା ସାହାଯ୍ୟରେ କପିରୂପ ଧାରଣକରି ଏଠାକୁ ଆସିଅଛି !" । ୩୭ । ବହୁସଂଖ୍ୟକ ବିଶିଷ୍ଟ ରାକ୍ଷସ ସେଠାରେ ଏକତ୍ର ହୋଇ ପ୍ରାଣିଗୋଷ୍ଠୀ, ଗୃହ ଓ ବୃକ୍ଷ ସହିତ ସହସା ଭସ୍ମୀଭୂତ ହୋଇ-ଯାଇଥିବା ଲଙ୍କାପୁରୀକୁ ଦେଖି ଏହିପରିଭାବରେ କଥୋପକଥନ କରିବାକୁ ଲାଗିଲେ । ୩୮ । ଅନନ୍ତର ଲଙ୍କାନଗରୀ ରାକ୍ଷସ, ଅଶ୍ୱ, ରଥ, ହସ୍ତୀ, ପକ୍ଷୀ, ମୃଗ ଓ

ସପକ୍ଷିସଂଘା ସମୃଗା ସବୃକ୍ଷା
ରୁରୋଦ ଦୀନା ତୁମୁଲଂ ସଶବ୍ଦମ୍ । ୩୯ ।
ହା ତାତ ହା ପୁତ୍ରକ କାନ୍ତ ମିତ୍ର
ହା ଜୀବିତେଶାଙ୍ଗ ହତଂ ସୁପୁଣ୍ୟମ୍ ।
ରକ୍ଷୋଭିରେବଂ ବହୁଧା ବ୍ରୁବଦ୍ଭିଃ
ଶବ୍ଦଃ କୃତୋ ଘୋରତରଃ ସୁଭୀମଃ । ୪୦ ।
ହୁତାଶନଜ୍ୱାଲସମାବୃତା ସା
ହତପ୍ରବୀରା ପରିବୃତ୍ତଯୋଧା ।
ହନୂମତଃ କ୍ରୋଧବଲାଭିଭୂତା
ବଭୂବ ଶାପୋପହତେବ ଲଙ୍କା । ୪୧ ।
ସ ସଂଭ୍ରମଂ ତ୍ରସ୍ତବିଷଣ୍ଣରାକ୍ଷସାମ୍
ସମୁଜ୍ଜ୍ୱଲଜ୍ଜ୍ୱାଲହୁତାଶନାଙ୍କିତାମ୍ ।
ଦଦର୍ଶ ଲଙ୍କାଂ ହନୁମାନ୍ମହାମନାଃ
ସ୍ୱୟଂଭୁରୋଷୋପହତାମିବାବନିମ୍ । ୪୨ ।
ଭଂକ୍ତ୍ୱା ବନଂ ପାଦପରତ୍ନସଂକୁଳମ୍
ହତ୍ୱା ତୁ ରକ୍ଷାଂସି ମହାନ୍ତି ସଂଯୁଗେ ।
ଦଗ୍‌ଧ୍ୱା ପୁରୀଂ ତାଂ ଗୃହରତ୍ନମାଳିନୀମ୍
ତସ୍ଥୌ ହନୂମାନ୍ ପବନାତ୍ମଜଃ କପିଃ । ୪୩ ।

---

ବୃକ୍ଷଗଣ ସହିତ ସଦାଂଶା ଅତିଶୟ ଦଗ୍‌ଧହୋଇ ବ୍ୟାକୁଳଭାବରେ ଉଚ୍ଚୈଃସ୍ୱରରେ ରୋଦନ କରିବାକୁ ଲାଗିଲା । ୩୯ । ରାକ୍ଷସମାନେ, "ହା ତାତ ! ହା ପୁତ୍ର ! ହା କାନ୍ତ ! ହା ମିତ୍ର ! ହା ଜୀବିତେଶ ! ହାୟ ! ଆମ୍ଭମାନଙ୍କର ପୁଣ୍ୟକ୍ଷୟ ହୋଇଗଲା ।" ଏହିପ୍ରକାରେ ନାନା ବିଳାପକରି ଅତି ଭୟଙ୍କର ଘୋରତର ଶବ୍ଦ କରିବାକୁ ଲାଗିଲେ । ୪୦ । ସେତେବେଳେ ଅଗ୍ନିଶିଖାଦ୍ୱାରା ଚତୁର୍ଦ୍ଦିଗ ପରିବୃତ ଏବଂ ପ୍ରଧାନ ପ୍ରଧାନ ଯୋଦ୍ଧା ନିହତ ହେବାରୁ, ହନୁମାନଙ୍କର କ୍ରୋଧବଳରେ ଅଭିଭୂତ ଲଙ୍କାନଗରୀ ଶାପହତ ହେବାପରି ଦେଖାଗଲା । ୪୧ । ମହାମନା ହନୁମାନ୍ ଦେଖିଲେ, ରାକ୍ଷସମାନେ ଉଦ୍‌ବିଗ୍ନ, ଭୀତ ଓ ବିଷଣ୍ଣ ଏବଂ ପ୍ରଜ୍ୱଳିତ ଶିଖାବିଶିଷ୍ଟ ଅଗ୍ନିରେ ଚତୁର୍ଦ୍ଦିଗ ପରିବ୍ୟାପ୍ତ ହେବାରୁ, ବ୍ରହ୍ମାଙ୍କ କୋପରେ ଅଭିଭୂତ ଅବନୀପରି ଲଙ୍କାନଗରୀ ଦେଖାଯାଉଥିଲା । ୪୨ । ପବନନନ୍ଦନ ବାନର ପାଦପ ଏବଂ ରତ୍ନସଂକୁଳ ବନକୁ ଭାଙ୍ଗି, ପ୍ରଧାନ ପ୍ରଧାନ ରାକ୍ଷସମାନଙ୍କୁ ଯୁଦ୍ଧରେ ସଂହାରକରି ଏବଂ ଉତ୍ତମ ଗୃହସମନ୍ୱିତ ଲଙ୍କାନଗରୀକୁ ଦଗ୍‌ଧକରି ଦଣ୍ଡାୟମାନ ହୋଇରହିଲେ ।୪୩।

ସ ରାକ୍ଷସାଂସ୍ତାନ୍ ସୁବହୂଂଶ୍ଚ ହତ୍ୱା
ବନଂ ଚ ଭଂକ୍ତ୍ୱା ବହୁପାଦପଂ ତତ୍ ।
ବିସୃଜ୍ୟ ରକ୍ଷୋଭବନେଷୁ ଚାଗ୍ନିମ୍
ଜଗାମ ରାମଂ ମନସା ମହାତ୍ମା । ୪୪ ।
ତତସ୍ତୁ ତଂ ବାନରବୀରମୁଖ୍ୟମ୍
ମହାବଲଂ ମାରୁତତୁଲ୍ୟବେଗମ୍ ।
ମହାମତିଂ ବାୟୁସୁତଂ ବରିଷ୍ଠମ୍
ପ୍ରତୁଷ୍ଟୁବୁର୍ଦେବଗଣାଶ୍ଚ ସର୍ବେ । ୪୫ ।
ଦେବାଶ୍ଚ ସର୍ବେ ମୁନିପୁଙ୍ଗବାଶ୍ଚ
ଗନ୍ଧର୍ବବିଦ୍ୟାଧରପନ୍ନଗାଶ୍ଚ ।
ଭୂତାନି ସର୍ବାଣି ମହାନ୍ତି ତତ୍ର
ଜଗ୍ମୁଃ ପରାଂ ପ୍ରୀତିମତୁଲ୍ୟରୂପାମ୍ । ୪୬ ।
ଭଂକ୍ତ୍ୱା ବନଂ ମହାତେଜା ହତ୍ୱା ରକ୍ଷାଂସି ସଂଯୁଗେ ।
ଦଗ୍ଧ୍ୱା ଲଙ୍କାପୁରୀଂ ଭୀମାଂ ରରାଜ ସ ମହାକପିଃ । ୪୭ ।
ଗୃହାଗ୍ର୍ୟଶୃଙ୍ଗାଗ୍ରତଲେ ବିଚିତ୍ରେ
ପ୍ରତିଷ୍ଠିତୋ ବାନରରାଜସିଂହଃ ।
ପ୍ରଦୀପ୍ତଲାଙ୍ଗୂଲକୃତାର୍ଚିମାଲୀ
ବ୍ୟରାଜତାଦିତ୍ୟ ଇବାର୍ଚିମାଲୀ । ୪୮ ।

---

ବହୁସଂଖ୍ୟକ ରାକ୍ଷସ ନିହତକରି, ବହୁ ବୃକ୍ଷସମନ୍ୱିତ ସେହି ବନ ଭଗ୍ନକରି ଏବଂ ରାକ୍ଷସମାନଙ୍କ ଗୃହରେ ଅଗ୍ନିସଂଯୋଗ କରିସାରି, ମହାତ୍ମା ହନୁମାନ୍ ମନମଧ୍ୟରେ ରାମଙ୍କୁ ସ୍ମରଣ କରିବାକୁ ଲାଗିଲେ । ୪୪ । ଅନନ୍ତର ଦେବତାମାନେ ସମସ୍ତେ ପବନସଦୃଶ ବେଗବାନ୍, ମହାବଳୀ, ମହାମତି, ବାନରବୀରମାନଙ୍କ ମଧ୍ୟରେ ଶ୍ରେଷ୍ଠ, ପୂଜନୀୟ, ପବନନନ୍ଦନଙ୍କୁ ସ୍ତବ କରିବାକୁ ଲାଗିଲେ । ୪୫ । ସମଗ୍ର ଦେବଗଣ, ମହର୍ଷିଗଣ, ଗନ୍ଧର୍ବଗଣ, ବିଦ୍ୟାଧରଗଣ, ପନ୍ନଗଗଣ ଏବଂ ମହାପ୍ରାଣୀମାନେ ଅନୁପମ ପରମପ୍ରୀତି ଲାଭକଲେ । ୪୬ । ସେତେବେଳେ ମହାତେଜା ମହାକପି ହନୁମାନ୍ ବନକୁ ଭାଙ୍ଗି ରାକ୍ଷସକୁଳକୁ ଯୁଦ୍ଧରେ ବିନଷ୍ଟକରି ଏବଂ ଭୟଙ୍କରୀ ଲଙ୍କାପୁରୀକୁ ଦଗ୍ଧକରି ଶୋଭା ପାଇବାକୁ ଲାଗିଲେ । ୪୭ । ପ୍ରଦୀପ୍ତ ଲାଙ୍ଗୂଳରୁ ଅଗ୍ନିଶିଖାସମୂହ ବିକିରଣ କରି, ପ୍ରଧାନତମ ପ୍ରାସାଦଗୃହର ବିଚିତ୍ର ଶିଖରଉପରେ ବସିରହି, ସେହି ବାନରରାଜ ରଶ୍ମିମାଳୀ ସୂର୍ଯ୍ୟଙ୍କ ପରି ଶୋଭାପାଇଲେ । ୪୮ । ବାନରଶ୍ରେଷ୍ଠ

ଲଙ୍କାଂ ସମସ୍ତାଂ ସଂପୀଡ୍ୟ ଲାଙ୍ଗୂଲାଗ୍ନିଂ ମହାକପିଃ ।
ନିର୍ବାପୟାମାସ ତଦା ସମୁଦ୍ରେ ହରିପୁଙ୍ଗବଃ ।୪୯।
ତତୋ ଦେବାଃ ସଗନ୍ଧର୍ବାଃ ସିଦ୍ଧାଶ୍ଚ ପରମର୍ଷୟଃ ।
ଦୃଷ୍ଟ୍ୱା ଲଙ୍କାଂ ପ୍ରଦଗ୍ଧାଂ ତାଂ ବିସ୍ମୟଂ ପରମଂ ଗତାଃ ।୫୦।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ ସୁନ୍ଦରକାଣ୍ଡେ ଲଙ୍କାଦାହୋ ନାମ ଚତୁଃପଞ୍ଚାଶଃ ସର୍ଗଃ ।

---

# ପଞ୍ଚପଞ୍ଚାଶଃ ସର୍ଗଃ

## ହନୂମଦ୍‌ବିଭ୍ରମଃ

ସନ୍ଦୀପ୍ୟମାନାଂ ବିଧ୍ୱସ୍ତାଂ ତ୍ରସ୍ତରକ୍ଷୋଗଣାଂ ପୁରୀମ୍ ।
ଅବେକ୍ଷ୍ୟ ହନୁମାନ୍ ଲଙ୍କାଂ ଚିନ୍ତୟାମାସ ବାନରଃ ।୧।
ତସ୍ୟାଭୂତ୍ସୁମହାଂସ୍ତ୍ରାସଃ କୁତ୍ସା ଚାତ୍ମନ୍ୟଜାୟତ ।
ଲଙ୍କାଂ ପ୍ରଦହତା କାମଂ କିଂସ୍ୱିତ୍ କୃତମିଦଂ ମୟା ।୨।

---

ମହାକପି ହନୁମାନ୍ ସମଗ୍ର ଲଙ୍କାନଗରୀକୁ ନିପୀଡ଼ିତକରି ଲାଙ୍ଗୁଳସ୍ଥିତ ଅଗ୍ନିକୁ ସମୁଦ୍ରଜଳରେ ନିର୍ବାପିତକଲେ ।୪୯। ଅନନ୍ତର ସମଗ୍ର ଲଙ୍କା ଦଗ୍ଧ ହେବାର ଦେଖି ଦେବଗଣ, ଗନ୍ଧର୍ବଗଣ, ସିଦ୍ଧଗଣ ଓ ମହର୍ଷିଗଣ, ସମସ୍ତେ ଅତିଶୟ ବିସ୍ମିତ ହୋଇଗଲେ ।୫୦।

---

## ୫୫ଶ ସର୍ଗ

(ହନୁମାନଙ୍କର ଘୋର ଆଶଙ୍କା)

ଲଙ୍କାନଗରୀ ପ୍ରଜ୍ୱଳିତ, ବିଧ୍ୱସ୍ତ ଏବଂ ରକ୍ଷଗଣ ତ୍ରସ୍ତ ହୋଇଥିବାର ଦେଖି ବାନର ହନୁମାନ୍ ଚିନ୍ତାକରିବାକୁ ଲାଗିଲେ ।୧। ତାଙ୍କର ମହାନ୍ ତ୍ରାସ ଉପସ୍ଥିତ ହେଲା ଏବଂ ଆତ୍ମଗ୍ଲାନି ଜାତହେଲା । ସେ ଭାବିଲେ, 'ଲଙ୍କାକୁ ଦଗ୍ଧକରି ମୁଁ କି କୁକାର୍ଯ୍ୟ କଲି !' ।୨। ସେହି ମହାତ୍ମାମାନେହିଁ ଧନ୍ୟ, ଯେଉଁମାନେ ଜଳଦ୍ୱାରା

ଧନ୍ୟାଃ ଖଲୁ ମହାତ୍ମାନୋ ଯେ ବୁଦ୍ଧ୍ୟା କୋପମୁତ୍ଥିତମ୍ ।
ନିରୁନ୍ଧନ୍ତି ମହାତ୍ମାନୋ ଦୀପ୍ତମଗ୍ନିମିବାମ୍ଭସା । ୩ ।
କ୍ରୁଦ୍ଧଃ ପାପଂ ନ କୁର୍ଯ୍ୟାତ୍କଃ କ୍ରୁଦ୍ଧୋ ହନ୍ୟାଦ୍ ଗୁରୂନପି ।
କ୍ରୁଦ୍ଧଃ ପରୁଷୟା ବାଚା ନରଃ ସାଧୂନଧିକ୍ଷିପେତ୍ । ୪ ।
ବାଚ୍ୟାବାଚ୍ୟଂ ପ୍ରକୁପିତୋ ନ ବିଜାନାତି କର୍ହିଚିତ୍ ।
ନାକାର୍ଯ୍ୟମସ୍ତି କ୍ରୁଦ୍ଧସ୍ୟ ନାବାଚ୍ୟଂ ବିଦ୍ୟତେ କ୍ୱଚିତ୍ । ୫ ।
ଯଃ ସମୁତ୍ପତିତଂ କ୍ରୋଧଂ କ୍ଷମୟୈବ ନିରସ୍ୟତି ।
ଯଥୋରଗସ୍ତ୍ୱଚଂ ଜୀର୍ଣ୍ଣାଂ ସ ବୈ ପୁରୁଷ ଉଚ୍ୟତେ । ୬ ।
ଧିଗସ୍ତୁ ମାଂ ସୁଦୁର୍ବୁଦ୍ଧିଂ ନିର୍ଲଜ୍ଜଂ ପାପକୃତ୍ତମମ୍ ।
ଅଚିନ୍ତୟିତ୍ୱା ତାଂ ସୀତାମଗ୍ନିଦଂ ସ୍ୱାମିଘାତକମ୍ । ୭ ।
ଯଦି ଦଗ୍ଧା ତ୍ୱିୟଂ ସର୍ବା ନୂନମାର୍ଯ୍ୟାପି ଜାନକୀ ।
ଦଗ୍ଧା ତେନ ମୟା ଭର୍ତୁର୍ହତଂ କାର୍ଯ୍ୟମଜାନତା । ୮ ।
ଯଦର୍ଥମୟମାରମ୍ଭସ୍ତତ୍କାର୍ଯ୍ୟମବସାଦିତମ୍ ।
ମୟା ହି ଦହତା ଲଙ୍କାଂ ନ ସୀତା ପରିରକ୍ଷିତା । ୯ ।

---

ପ୍ରଜ୍ୱଳିତ ଅଗ୍ନିକୁ ପ୍ରଶମିତ କଲପରି ନିଜର ବୁଦ୍ଧିଦ୍ୱାରା କ୍ରୋଧକୁ ଦମନ କରିଥାନ୍ତି । ୩ । ମନୁଷ୍ୟ କ୍ରୁଦ୍ଧହେଲେ କି ପାପ ନ କରିପାରେ ! କ୍ରୁଦ୍ଧ ବ୍ୟକ୍ତି ଗୁରୁଜନଙ୍କୁ ମଧ୍ୟ ହତ୍ୟା କରିପାରେ ଏବଂ କର୍କଶ ବାକ୍ୟଦ୍ୱାରା ସାଧୁଜନଙ୍କୁ ନିନ୍ଦା କରିପାରେ । ୪ । କୋପାବିଷ୍ଟ ବ୍ୟକ୍ତି କ'ଣ କହିବା ଉଚିତ, କ'ଣ କହିବା ଉଚିତ ନୁହେ ତାହା ଜାଣିପାରେ ନାହିଁ । କ୍ରୁଦ୍ଧ ବ୍ୟକ୍ତିର ଅକାର୍ଯ୍ୟ କିଛି ନାହିଁ ବା ଅକଥ୍ୟ କିଛି ନାହିଁ । ୫ । ସର୍ପ ଯେପରି ନିଜର ଜୀର୍ଣ୍ଣ ତ୍ୱକ୍ ପରିତ୍ୟାଗକରେ, ସେହିପରି କ୍ରୋଧ ସମୁଦ୍ଭୂତ ହେଲେ ଯେଉଁ ବ୍ୟକ୍ତି ନିଜର କ୍ଷମାବଳରେ ତାହାକୁ ଦମନ କରିପାରେ, ତାହାକୁ ହିଁ ପ୍ରକୃତ ମନୁଷ୍ୟ ବୋଲି କୁହାଯାଏ । ୬ । ମୁଁ ପାପକାରୀମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ ଦୁର୍ବୁଦ୍ଧି ଏବଂ ନିର୍ଲଜ୍ଜ । ମୁଁ ସୀତାଙ୍କ ବିଷୟ ଚିନ୍ତା ନ କରି ଏହି ଅଗ୍ନିସଂଯୋଗ କରିବାଦ୍ୱାରା ସ୍ୱାମିଘାତୀ ହୋଇଅଛି; ମୋତେ ଧିକ୍ ।୭। ଯେତେବେଳେ ସମଗ୍ର ଲଙ୍କା ଦଗ୍ଧହୋଇଅଛି, ସେତେବେଳେ ଆର୍ଯ୍ୟା ଜାନକୀ ମଧ୍ୟ ନିଶ୍ଚୟଦଗ୍ଧ ହୋଇ ଅଛନ୍ତି । ମୁଁ ନିଜର କର୍ତ୍ତବ୍ୟ ନ ବୁଝି ସ୍ୱାମୀଙ୍କର କାର୍ଯ୍ୟକୁ ନଷ୍ଟ କରିଦେଇଅଛି । ୮ । ଯେ ଉଦ୍ଦେଶ୍ୟରେ ମୋର ଏ ଉଦ୍ୟୋଗ, ସେହି କାର୍ଯ୍ୟକୁ ମୁଁ ନଷ୍ଟ କରିଦେଲି । ମୁଁ ଲଙ୍କାକୁ ଦଗ୍ଧକରିଦେଲି; ମାତ୍ର ସୀତାଙ୍କୁ ରକ୍ଷାକଲି

ଈଷତ୍କାର୍ଯମିଦଂ କାର୍ଯଂ କୃତମାସୀନ୍ନ ସଂଶୟଃ ।
ତସ୍ୟ କ୍ରୋଧାଭିଭୂତେନ ମୟା ମୂଲକ୍ଷୟଃ କୃତଃ । ୧୦ ।
ବିନଷ୍ଟା ଜାନକୀ ବ୍ୟକ୍ତଂ ନ ହ୍ୟଦଗ୍‌ଧଃ ପ୍ରଦୃଶ୍ୟତେ ।
ଲଙ୍କାୟାଂ କଶ୍ଚିଦୁଦ୍ଦେଶଃ ସର୍ବା ଭସ୍ମୀକୃତା ପୁରୀ । ୧୧ ।
ଯଦି ତଦ୍ ବିହତଂ କାର୍ଯଂ ମୟା ପ୍ରଜ୍ଞାବିପର୍ଯୟାତ୍ ।
ଇହୈବ ପ୍ରାଣସଂନ୍ୟାସୋ ମମାପି ହ୍ୟଦ୍ୟ ରୋଚତେ । ୧୨ ।
କିମଗ୍ନୌ ନିପତାମ୍ୟଦ୍ୟ ଆହୋସ୍ୱିଦ୍‌ବଡ଼ବାମୁଖେ ।
ଶରୀରମାହୋ ସତ୍ତ୍ୱାନାଂ ଦଦ୍ମି ସାଗରବାସିନାମ୍ । ୧୩ ।
କଥଂ ନୁ ଜୀବତା ଶକ୍ୟୋ ମୟା ଦ୍ରଷ୍ଟୁଂ ହରୀଶ୍ୱରଃ ।
ତୌ ବା ପୁରୁଷଶାର୍ଦ୍ଦୂଲୌ କାର୍ଯସର୍ବସ୍ୱଘାତିନା । ୧୪ ।
ମୟା ଖଲୁ ତଦେବେଦଂ ରୋଷଦୋଷାତ୍ ପ୍ରଦର୍ଶିତମ୍ ।
ପ୍ରଥିତଂ ତ୍ରିଷୁ ଲୋକେଷୁ କପିତ୍ୱମନବସ୍ଥିତମ୍ । ୧୫ ।
ଧିଗସ୍ତୁ ରାଜସଂ ଭାବମନୀଶମନବସ୍ଥିତମ୍ ।
ଈଶ୍ୱରେଣାପି ଯଦ୍ରାଗାନ୍ମୟା ସୀତା ନ ରକ୍ଷିତା । ୧୬ ।

---

ନାହିଁ । ୯ । ଏହି କାର୍ଯ୍ୟକୁ ମୁଁ ଅତି କ୍ଷୁଦ୍ରକାର୍ଯ୍ୟରୂପେ ଅନାୟାସରେ ସମ୍ପାଦନ କରିଅଛି, ସନ୍ଦେହ ନାହିଁ; ମାତ୍ର ମୁଁ କ୍ରୋଧାଭିଭୂତ ହୋଇ ସେହି କାର୍ଯ୍ୟର ମୂଳକୁ ମଧ୍ୟ ନଷ୍ଟ କରିଦେଲି । ୧୦ । ସୀତା ନିଶ୍ଚୟ ବିନଷ୍ଟ ହୋଇଅଛନ୍ତି, କାରଣ ଲଙ୍କାରେ କୌଣସି ଅଞ୍ଚଳ ଏପରି ଦେଖାଯାଉନାହିଁ ଯାହାକି ଦଗ୍‌ଧ ନ ହୋଇଛି; ସମଗ୍ର ପୁରୀ ଭସ୍ମୀଭୂତ ହୋଇଯାଇଛି । ୧୧ । ମୁଁ ଯେତେବେଳେ ବୁଦ୍ଧିବିପର୍ଯ୍ୟୟ ହେତୁରୁ ଏହି କାର୍ଯ୍ୟ କରିଅଛି, ସେତେବେଳେ ଏହିଠାରେ ଆଜ ହିଁ ପ୍ରାଣବିସର୍ଜନ କରିବା ମୋତେ ସଙ୍ଗତ ବୋଧହେଉଅଛି ।୧୨। ଆଜ ମୁଁ ଅଗ୍ନିରେ ପଡ଼ିବି କିମ୍ବା ବଡ଼ବାଗ୍ନି ମୁଖରେ ପଡ଼ିବି ଅଥବା ସମୁଦ୍ରବାସୀ ପ୍ରାଣୀମାନଙ୍କୁ ନିଜର ଶରୀର ଅର୍ପଣ କରିଦେବି । ୧୩ । ମୁଁ ଜୀବିତ ଥାଇ କିପରି ବାନରରାଜଙ୍କ ସହିତ ସାକ୍ଷାତ୍ କରି-ପାରିବି କିମ୍ବା ସମସ୍ତ କାର୍ଯ୍ୟ ବିନଷ୍ଟକରି କିପରି ସେହି ପୁରୁଷସିଂହ ରାମ ଲକ୍ଷ୍ମଣଙ୍କୁ ସାକ୍ଷାତ କରିପାରିବି । ୧୪ । ମୁଁ ରୋଷଦୋଷର ବଶବର୍ତ୍ତୀ ହୋଇ ତିନିଲୋକରେ ବିଖ୍ୟାତ ଅନବସ୍ଥିତଚିତ୍ତତାରୂପ ବାନରସ୍ୱଭାବ ହିଁ ଦେଖାଇଅଛି । ୧୫ । ଯାହା କାର୍ଯ୍ୟକୁ ଅକ୍ଷମ ତଥା ଅବ୍ୟବସ୍ଥିତ କରିପକାଏ ସେହି ରାଜସିକ ଭାବକୁ ଧିକ୍ । ମୁଁ ସମର୍ଥ ହେଲେ ମଧ୍ୟ ରାଜସିକ କ୍ରୋଧହେତୁ ସୀତାଙ୍କୁ ରକ୍ଷାକଲି ନାହିଁ । ୧୬ ।

ବିନଷ୍ଟାୟାଂ ତୁ ସୀତାୟାଂ ତାବୁଭୌ ବିନଶିଷ୍ୟତଃ ।
ତୟୋର୍ବିନାଶେ ସୁଗ୍ରୀବଃ ସବନ୍ଧୁର୍ବିନଶିଷ୍ୟତି । ୧୭ ।
ଏତଦେବ ବଚଃ ଶ୍ରୁତ୍ୱା ଭରତୋ ଭ୍ରାତୃବତ୍ସଲଃ ।
ଧର୍ମାତ୍ମା ସହଶତ୍ରୁଘ୍ନଃ କଥଂ ଶକ୍ଷ୍ୟତି ଜୀବିତୁମ୍ । ୧୮ ।
ଇକ୍ଷ୍ୱାକୁବଂଶେ ଧର୍ମିଷ୍ଠେ ଗତେ ନାଶମସଂଶୟମ୍ ।
ଭବିଷ୍ୟନ୍ତି ପ୍ରଜାଃ ସର୍ବାଃ ଶୋକସନ୍ତାପପୀଡ଼ିତାଃ । ୧୯ ।
ତଦହଂ ଭାଗ୍ୟରହିତୋ ଲୁପ୍ତଧର୍ମାର୍ଥସଂଗ୍ରହଃ ।
ରୋଷଦୋଷପରୀତାତ୍ମା ବ୍ୟକ୍ତଂ ଲୋକବିନାଶନଃ । ୨୦ ।
ଇତି ଚିନ୍ତୟତସ୍ତସ୍ୟ ନିମିତ୍ତାନ୍ୟୁପପେଦିରେ ।
ପୂର୍ବମପ୍ୟୁପଲବ୍ଧାନି ସାକ୍ଷାତ୍ପୁନରଚିନ୍ତୟତ୍ । ୨୧ ।
ଅଥବା ଚାରୁସର୍ବାଙ୍ଗୀ ରକ୍ଷିତା ସ୍ୱେନ ତେଜସା ।
ନ ନଶିଷ୍ୟତି କଲ୍ୟାଣୀ ନାଗ୍ନିରଗ୍ନୌ ପ୍ରବର୍ତ୍ତତେ । ୨୨ ।
ନ ହି ଧର୍ମାତ୍ମନସ୍ତସ୍ୟ ଭାର୍ଯାମମିତତେଜସଃ ।
ସ୍ୱଚାରିତ୍ରାଭିଗୁପ୍ତାଂ ତାଂ ସ୍ପ୍ରଷ୍ଟୁମର୍ହତି ପାବକଃ । ୨୩ ।

---

ସୀତାଙ୍କର ମୃତ୍ୟୁ ହେବା ଫଳରେ ରାମ ଲକ୍ଷ୍ମଣ ଦୁହିଁଙ୍କର ମଧ୍ୟ ମୃତ୍ୟୁ ହେବ; ସେ ଦୁହିଁଙ୍କ ବିନାଶରେ ସୁଗ୍ରୀବ ମଧ୍ୟ ସବାନ୍ଧବରେ ବିନଷ୍ଟ ହେବେ । ୧୭ । ଏହି ସମ୍ବାଦ ଶୁଣି ଭ୍ରାତୃବତ୍ସଳ ଧର୍ମାତ୍ମା ଭରତ ଶତ୍ରୁଘ୍ନଙ୍କ ସହିତ କିପରି ବା ଜୀବନ ଧାରଣ କରିବାକୁ ସମର୍ଥ ହେବେ ! । ୧୮ । ଏହିପରି ଧର୍ମନିରତ ଇକ୍ଷ୍ୱାକୁବଂଶ ଧ୍ୱଂସ ହେଲେ ପ୍ରଜାମାନେ ସମସ୍ତେ ଯେ ଶୋକସନ୍ତାପରେ ଅଭିଭୂତ ହୋଇଯିବେ, ଏଥିରେ ସନ୍ଦେହ ନାହିଁ । ୧୯ । ଅତଏବ ହତଭାଗା ମୁଁ ରୋଷଦୋଷରେ ଆଚ୍ଛନ୍ନ-ହୃଦୟ ହୋଇ ସମଗ୍ର ଲୋକର ବିନାଶକ ହେଲି, ଏହା ସ୍ପଷ୍ଟ ଦେଖାଯାଉଅଛି; ମୋର ସଞ୍ଚିତ ଧର୍ମ ଓ ଅର୍ଥ ମଧ୍ୟ ବିଲୁପ୍ତହେଲା' । ୨୦ । ସେ ଏହିପରି ଚିନ୍ତା କରୁ କରୁ ପୂର୍ବଦୃଷ୍ଟ ଶୁଭସୂଚକ ନିମିତ୍ତମାନ ସାକ୍ଷାତ୍ ତାଙ୍କର ଉପଲବ୍ଧ ହେବାକୁ ଲାଗିଲା । ସୁତରାଂ ସେ ପୁଣି ଚିନ୍ତା କରିବାକୁ ଲାଗିଲେ । ୨୧ । 'ଅଥବା ସର୍ବାଙ୍ଗ-ସୁନ୍ଦରୀ କଲ୍ୟାଣୀ ସୀତାଦେବୀ ସ୍ୱୀୟ ତେଜଃପ୍ରଭାବରେ ହିଁ ସୁରକ୍ଷିତା ହୋଇଥିବେ । ସେ କଦାପି ନଷ୍ଟ ହୋଇଯିବେ ନାହିଁ; କାରଣ, ଅଗ୍ନି କଦାପି ଅଗ୍ନିକୁ ଦଗ୍ଧ କରି ପାରେ ନାହିଁ । ୨୨। ସେହି ଅମିତତେଜା ଧର୍ମାତ୍ମା ରାମଙ୍କର ଭାର୍ଯ୍ୟା ନିଜର ସଚ୍ଚରିତ୍ର ବଳରେ ହିଁ ସର୍ବଦା ସୁରକ୍ଷିତା; ସୁତରାଂ ଅଗ୍ନି ତାଙ୍କୁ କଦାପି ସ୍ପର୍ଶ କରିପାରିବେ

ନୂନଂ ରାମପ୍ରଭାବେଣ ବୈଦେହ୍ୟାଃ ସୁକୃତେନ ଚ ।
ଯନ୍ମାଂ ଦହନକର୍ମାୟଂ ନାଦହଦ୍ଧବ୍ୟବାହନଃ ।୨୪।
ଭ୍ରାତୃଣାଂ ଭରତାଦୀନାଂ ଭ୍ରାତୃଣାଂ ଦେବତା ଚ ଯା ।
ରାମସ୍ୟ ଚ ମନଃକାନ୍ତା ସା କଥଂ ବିନଶିଷ୍ୟତି ।୨୫।
ଯଦ୍ ବା ଦହନକର୍ମାୟଂ ସର୍ବତ୍ର ପ୍ରଭୁରବ୍ୟୟଃ ।
ନ ମେ ଦହତି ଲାଙ୍ଗୁଲଂ କଥମାର୍ଯାଂ ପ୍ରଧକ୍ଷ୍ୟତି ।୨୬।
ପୁନଶ୍ଚାଚିନ୍ତୟତ୍ତତ୍ର ହନୂମାନ୍ ବିସ୍ମିତସ୍ତଦା ।
ହିରଣ୍ୟନାଭସ୍ୟ ଗିରେର୍ଜଲମଧ୍ୟେ ପ୍ରଦର୍ଶନମ୍ ।୨୭।
ତପସା ସତ୍ୟବାକ୍ୟେନ ଅନନ୍ୟତ୍ୱାଚ୍ଚ ଭର୍ତ୍ତରି ।
ଅପିସୌ ବିନିର୍ଦ୍ଦହେଦଗ୍ନିଂ ନ ତାମଗ୍ନିଃ ପ୍ରଧକ୍ଷ୍ୟତି ।୨୮।
ସ ତଥା ଚିନ୍ତୟଂସ୍ତତ୍ର ଦେବ୍ୟା ଧର୍ମପରିଗ୍ରହମ୍ ।
ଶୁଶ୍ରାବ ହନୂମାଂସ୍ତତ୍ର ଚାରଣାନାଂ ମହାତ୍ମନାମ୍ ।୨୯।
ଅହୋ ଖଲୁ କୃତଂ କର୍ମ ଦୁର୍ବିଗାହଂ ହନୂମତା ।
ଅଗ୍ନିଂ ବିସୃଜତା ତୀକ୍ଷ୍ଣଂ ଭୀମଂ ରାକ୍ଷସସଦ୍ମନି ।୩୦।

---

ନାହିଁ ।୨୩। ଦହନସ୍ୱଭାବ ଏହି ଅଗ୍ନି ନିଶ୍ଚୟ ରାମଙ୍କର ପ୍ରଭାବ ଏବଂ ବୈଦେହୀଙ୍କର ସୁକୃତବଳରେ ମୋତେ ଦଗ୍ଧ କଲେ ନାହିଁ ।୨୪। ଯେଉଁ ସୀତା ରାମଙ୍କର ପ୍ରାଣରୁ ବଳି ପ୍ରିୟତରା ଏବଂ ଭରତ ପ୍ରଭୃତି ଅନ୍ୟ ତିନି ଭାଇଙ୍କର ଦେବତାସଦୃଶୀ, ସେ କପରି ବିନଷ୍ଟ ହୋଇଯିବେ ! ।୨୫। ଅଥବା ସର୍ବଦହନକ୍ଷମ, ଅବ୍ୟୟ, ହୁତାଶନ ଯେତେବେଳେ ମୋ ଲାଙ୍ଗୁଡ଼କୁ ଦହନ କରି ନାହାନ୍ତି, ସେତେବେଳେ ସେ ଆର୍ଯ୍ୟା ସୀତାଙ୍କୁ କପରି ବା ଦଗ୍ଧ କରିବେ' ! ।୨୬। ସେତେବେଳେ ହନୁମାନ୍ ପୁନର୍ବାର ବିସ୍ମିତ ହୋଇ ଜଳମଧ୍ୟରେ ହିରଣ୍ୟନାଭ ମୈନାକ ଯେ ନିଜେ ଦେଖା ଦେଇଥିଲେ, ସେ କଥା ଚିନ୍ତା କରିବାକୁ ଲାଗିଲେ ।୨୭। 'ସେ ତପସ୍ୟା, ସତ୍ୟବାଦିତା ଏବଂ ସ୍ୱାମୀଙ୍କ ପ୍ରତି ଅନନ୍ୟପରାୟଣତାହେତୁରୁ ଅଗ୍ନିଙ୍କୁ ମଧ୍ୟ ଦଗ୍ଧ କରିଦେଇ ପାରନ୍ତି । ସୁତରାଂ ଅଗ୍ନି ତାଙ୍କୁ ଦଗ୍ଧ କରିବାକୁ ସମର୍ଥ ହେବେ ନାହିଁ' ।୨୮। ହନୁମାନ୍ ସେଠାରେ ଏହିପରିଭାବରେ ଦେବୀ ଜାନକୀଙ୍କର ଧର୍ମନିଷ୍ଠା ବିଷୟ ଚିନ୍ତା କରୁ କରୁ ମହାତ୍ମା ଚାରଣମାନଙ୍କର ବଚନ ଶୁଣିବାକୁ ପାଇଲେ ।୨୯। "ଅହୋ ! ହନୁମାନ୍ ଯେ କାର୍ଯ୍ୟ କଲେ ନିଶ୍ଚୟ ତାହା ଅନ୍ୟର ଅସାଧ୍ୟ । ସେ ରାକ୍ଷସମାନଙ୍କ ଗୃହରେ ଭୟଙ୍କର ତୀବ୍ର ଅଗ୍ନି ପ୍ରଦାନ କରିଦେଲେ ।୩୦। ସମଗ୍ର ଲଙ୍କାନଗରୀ ଅଟ୍ଟାଳିକା,

ପ୍ରପଲାୟିତରକ୍ଷଃସ୍ତ୍ରୀବାଲବୃଦ୍ଧସମାକୁଳା ।
ଜନକୋଳାହଳାଧ୍ମାତା କ୍ରନ୍ଦନ୍ତୀବାଦ୍ରିକନ୍ଦରୈଃ । ୩୧ ।
ଦଗ୍‌ଧେୟଂ ନଗରୀ ଲଙ୍କା ସାଟ୍ଟପ୍ରାକାରତୋରଣା ।
ଜାନକୀ ନ ଚ ଦଗ୍‌ଧେତି ବିସ୍ମୟୋଽଦ୍‌ଭୁତ ଏବ ନଃ । ୩୨ ।
ଇତି ଶୁଶ୍ରାବ ହନୂମାନ୍ ବାଚଂ ତାମମୃତୋପମାମ୍ ।
ବଭୂବ ଚାସ୍ୟ ମନସୋ ହର୍ଷସ୍ତତ୍କାଲସଂଭବଃ । ୩୩ ।
ସ ନିମିତ୍ତୈଶ୍ଚ ଦୃଷ୍ଟାର୍ଥୈଃ କାରଣୈଶ୍ଚ ମହାଗୁଣୈଃ ।
ଋଷିବାକ୍ୟୈଶ୍ଚ ହନୂମାନଭବତ୍ ପ୍ରୀତମାନସଃ ।
ତତଃ କପିଃ ପ୍ରାପ୍ତମନୋରଥାର୍ଥ-
ସ୍ତାମକ୍ଷତାଂ ରାଜସୁତାଂ ବିଦିତ୍ୱା ।
ପ୍ରତ୍ୟକ୍ଷତସ୍ତାଂ ପୁନରେବ ଦୃଷ୍ଟ୍ୱା
ପ୍ରତିପ୍ରୟାଣାୟ ମତିଂ ଚକାର । ୩୫ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ସୁନ୍ଦରକାଣ୍ଡେ ହନୂମଦ୍‌ବିଭ୍ରମୋ ନାମ ପଞ୍ଚପଞ୍ଚାଶଃ ସର୍ଗଃ ।

---

ତୋରଣ ଓ ପ୍ରାକାର ସହିତ ଦଗ୍ଧ ହୋଇଗଲା, ଅଥଚ ସୀତା ଦଗ୍ଧ ହେଲେନାହିଁ ; ଏହା ଆମ୍ଭମାନଙ୍କୁ ଅତିଶୟ ଆଶ୍ଚର୍ଯ୍ୟ ଏବଂ ଅଦ୍‌ଭୁତ ବୋଧହେଉଅଛି । ଇତସ୍ତତଃ ଧାବମାନ ସ୍ତ୍ରୀ, ବାଳକ ଓ ବୃଦ୍ଧ ରକ୍ଷସମାନଙ୍କ ଦ୍ୱାରା ପରିପୂର୍ଣ୍ଣ ହୋଇ ଜନ-କୋଳାହଳରେ ଲଙ୍କାର ପର୍ବତକନ୍ଦରସମୂହ ସଙ୍ଗେ ଯେପରି କ୍ରନ୍ଦନ କରୁଅଛନ୍ତି ।୩୧-୩୨ ହନୁମାନ୍ ଚାରଣମାନଙ୍କଠାରୁ ଏହିପରି ଅମୃତୋପମ ବାକ୍ୟ ଶୁଣି, ତାତ୍କାଳିକ ଆନନ୍ଦରେ ତାଙ୍କର ମନ ପରିପୂର୍ଣ୍ଣ ହୋଇଉଠିଲା । ୩୩ । ବିଶ୍ୱାସ ଜନ୍ମିବାଭଳି ନିମିତ୍ତମାନ ଦେଖି, ମହାଗୁଣସମନ୍ୱିତ କାରଣମାନ ଆଲୋଚନାକରି ଏବଂ ଋଷିମାନଙ୍କ ବାକ୍ୟ ଶ୍ରବଣକରି ହନୂମାନଙ୍କ ମନ ଆନନ୍ଦିତ ହେଲା । ୩୪ । ଅନନ୍ତର ବାନର ହନୁମାନ୍ ମନୋରଥସିଦ୍ଧି ଲାଭକରି ଏବଂ ରାଜକୁମାରୀ ସୀତା ଅକ୍ଷତ ଥିବାର ଜାଣି, ପୁନର୍ବାର ଥରେ ସୀତାଙ୍କୁ ପ୍ରତ୍ୟକ୍ଷଭାବରେ, ସାକ୍ଷାତ୍‌କରି ଫେରିଯିବା ପାଇଁ ଇଚ୍ଛାକଲେ । ୩୫ ।

# ଷଟ୍‌ପଞ୍ଚାଶଃ ସର୍ଗଃ

## ପ୍ରତିପ୍ରସ୍ଥାଣୋପକ୍ରମନମ୍

ତତସ୍ତୁ ଶିଂଶପାମୂଲେ ଜାନକୀଂ ପର୍ଯବସ୍ଥିତାମ୍ ।
ଅଭିବାଦ୍ୟାବ୍ରବୀଦ୍ଦିଷ୍ଟ୍ୟା ପଶ୍ୟାମି ତ୍ୱାମିହାକ୍ଷତାମ୍ ।୧।
ତତସ୍ତଂ ପ୍ରସ୍ଥିତଂ ସୀତା ବୀକ୍ଷମାଣା ପୁନଃ ପୁନଃ ।
ଭର୍ତ୍ତୁଃ ସ୍ନେହାନ୍ୱିତଂ ବାକ୍ୟଂ ହନୂମନ୍ତମଭାଷତ ।୨।
କାମମସ୍ୟ ତ୍ୱମେବୈକଃ କାର୍ଯସ୍ୟ ପରିସାଧନେ ।
ପର୍ଯାପ୍ତଃ ପରବୀରଘ୍ନ ! ଯଶସ୍ୟସ୍ତେ ବଲୋଦୟଃ ।୩।
ବଲୈସ୍ତୁ ସଂକୁଲାଂ କୃତ୍ୱା ଲଙ୍କାଂ ପରବଲାର୍ଦ୍ଦନଃ ।
ମାଂ ନୟେଦ୍ ଯଦି କାକୁତ୍ସ୍ଥସ୍ତତ୍ତସ୍ୟ ସଦୃଶଂ ଭବେତ୍ ।୪।
ତଦ୍ ଯଥା ତସ୍ୟ ବିକ୍ରାନ୍ତମନୁରୂପଂ ମହାତ୍ମନଃ ।
ଭବତ୍ୟାହବଶୂରସ୍ୟ ତଥା ତ୍ୱମୁପପାଦୟ ।୫।
ତଦର୍ଥୋପହିତଂ ବାକ୍ୟଂ ପ୍ରଶ୍ରିତଂ ହେତୁସଂହିତମ୍ ।
ନିଶମ୍ୟ ହନୂମାନ୍ ବୀରୋ ବାକ୍ୟମୁତ୍ତରମବ୍ରବୀତ୍ ।୬।

---

## ୫୬ଶ ସର୍ଗ

(ପ୍ରତ୍ୟାବର୍ତ୍ତନ ପାଇଁ ହନୁମାନଙ୍କର ଲମ୍ଫପ୍ରଦାନ)

ଅନନ୍ତର ହନୁମାନ୍ ଶିଂଶପା ବୃକ୍ଷମୂଳରେ ସୁଖରେ ରହିଥିବା ସୀତାଙ୍କୁ ଅଭିବାଦନକରି କହିଲେ, "ମୋର ସୌଭାଗ୍ୟ ଯେ ମୁଁ ଆପଣଙ୍କୁ ଏପରି ଅକ୍ଷତ-ଶରୀରରେ ଦେଖୁଅଛି" ।୧। ଅନନ୍ତର ସୀତା ପ୍ରତ୍ୟାଗମନୋଦ୍ୟତ ହନୁମାନଙ୍କ ପ୍ରତି ବାରମ୍ବାର ଦୃଷ୍ଟିନିକ୍ଷେପକରି ପତିଙ୍କ ପ୍ରତି ସ୍ନେହବଶତଃ ତାଙ୍କୁ କହିଲେ ।୨। "ହେ ଶତ୍ରୁବୀରଘାତକ୍ ! ଅବଶ୍ୟ ଏକାକୀ ତୁମ୍ଭେ ହିଁ ଏହି କାର୍ଯ୍ୟସାଧନନିମନ୍ତେ ଯଥେଷ୍ଟ ଅଟ; କାରଣ ତୁମ୍ଭର ବଳର ଅଭିବୃଦ୍ଧି ଯଶସ୍କର ଅଟେ ।୩। ଶତ୍ରୁ-ସୈନ୍ୟମର୍ଦ୍ଦନକାରୀ କାକୁତ୍ସ୍ଥ ଯଦି ସେନାଦ୍ୱାରା ଲଙ୍କାକୁ ଆଚ୍ଛନ୍ନକରି ମୋତେ ନେଇଯିବେ ତେବେ ତାହା ହିଁ ତାଙ୍କର ଉପଯୁକ୍ତ କାର୍ଯ୍ୟ ହେବ ।୪। ଅତଏବ ସେହି ରଣବୀର ମହାତ୍ମାଙ୍କର ଯେପରି ଅନୁରୂପ ବିକ୍ରମ ପ୍ରକାଶପାଏ, ତୁମ୍ଭେ ତାହାର ଉପାୟ କର" ।୫। ସୀତାଙ୍କର ଏହି ଅର୍ଥସଙ୍ଗତ ଯୁକ୍ତିଯୁକ୍ତ ସ୍ନେହମୟ ବଚନ ଶ୍ରବଣ

କ୍ଷିପ୍ରମେଷ୍ୟତି କାକୁତ୍‌ସ୍ଥୋ ହର୍ୟୃକ୍ଷପ୍ରବରୈର୍ୟୁତଃ ।
ଯସ୍ତେ ଯୁଧି ବିଜିତ୍ୟାରୀନ୍ ଶୋକଂ ବ୍ୟପନୟିଷ୍ୟତି । ୭ ।
ଏବମାଶ୍ୱାସ୍ୟ ବୈଦେହୀଂ ହନୂମାନ୍ମାରୁତାତ୍ମଜଃ ।
ଗମନାୟ ମତିଂ କୃତ୍ୱା ବୈଦେହୀମଭ୍ୟବାଦୟତ୍ । ୮ ।
ରାକ୍ଷସାନ୍ ପ୍ରବରାନ୍ ହତ୍ୱା ନାମ ବିଶ୍ରାବ୍ୟ ଚାତ୍ମନଃ ।
ସମାଶ୍ୱାସ୍ୟ ଚ ବୈଦେହୀଂ ଦର୍ଶୟିତ୍ୱା ପରଂ ବଲମ୍ । ୯ ।
ନଗରୀମାକୁଲାଂ କୃତ୍ୱା ବଞ୍ଚୟିତ୍ୱା ଚ ରାବଣମ୍ ।
ଦର୍ଶୟିତ୍ୱା ବଲଂ ଘୋରଂ ବୈଦେହୀମଭିବାଦ୍ୟ ଚ । ୧୦ ।
ପ୍ରତିଗନ୍ତୁଂ ମନଶ୍ଚକ୍ରେ ପୁନର୍ମଧ୍ୟେନ ସାଗରମ୍ ।
ତତଃ ସ କପିଶାର୍ଦ୍ଦୂଲଃ ସ୍ୱାମିସଂଦର୍ଶନୋତ୍ସୁକଃ । ୧୧ ।
ଆରୁରୋହ ଗିରିଶ୍ରେଷ୍ଠମରିଷ୍ଟମରିମର୍ଦନଃ ।
ତୁଙ୍ଗପଦ୍ମକଜୁଷ୍ଟାଭିର୍ନୀଲାଭିର୍ବନରାଜିଭିଃ । ୧୨ ।
ସୋତ୍ତରୀୟମିବାମ୍ଭୋଦୈଃ ଶୃଙ୍ଗାନ୍ତରବିଲମ୍ବିଭିଃ ।
ବୋଧ୍ୟମାନମିବ ପ୍ରୀତ୍ୟା ଦିବାକରକରୈଃ ଶୁଭୈଃ । ୧୩ ।

---

କରି ବୀର ହନୂମାନ୍ ଉତ୍ତରଦେଲେ ।୭। "ପ୍ରଧାନ ପ୍ରଧାନ ବାନର ଓ ଭଲ୍ଲୂକମାନଙ୍କଦ୍ୱାରା ପରିବୃତ ହୋଇ କାକୁତ୍ସ୍ଥ ରାମଚନ୍ଦ୍ର ଶୀଘ୍ର ଏଠାକୁ ଆସିବେ ଏବଂ ଯୁଦ୍ଧରେ ଶତ୍ରୁମାନଙ୍କୁ ଜୟକରି ତୁମ୍ଭର ଶୋକ ଅପନୋଦନ କରିବେ"।୭। ପବନନନ୍ଦନ ହନୂମାନ୍ ଏହିପରି ଭାବରେ ବୈଦେହୀଙ୍କୁ ଆଶ୍ୱାସନା ଦେଇ ଓ ଫେରିଯିବା ପାଇଁ ଇଚ୍ଛା କରି ତାଙ୍କୁ ଅଭିବାଦନ କଲେ ।୮। ସେ ଅଦ୍ଭୁତ ବଳପ୍ରଦର୍ଶନ, ପ୍ରଧାନ ପ୍ରଧାନ ରାକ୍ଷସମାନଙ୍କୁ ନିହତ, ନିଜର ନାମଘୋଷଣା, ବୈଦେହୀଙ୍କୁ ସାନ୍ତ୍ୱନା, ଲଙ୍କାପୁରୀକୁ ବ୍ୟାକୁଳିତ, ରାବଣକୁ ବଞ୍ଚନା ଏବଂ ଜାନକୀଙ୍କୁ ଅଭିବାଦନକରି ସାଗର ମଧ୍ୟଦେଇ ପ୍ରତିଗମନ କରିବାପାଇଁ ମନକଲେ । ଅନନ୍ତର ଅରିମର୍ଦ୍ଦନ ବାନରବର ହନୂମାନ୍ ପ୍ରଭୁଙ୍କର ଦର୍ଶନପାଇଁ ଉତ୍ସୁକ ହୋଇ ପର୍ବତଶ୍ରେଷ୍ଠ ଅରିଷ୍ଟ ନାମ କପର୍ବତରେ ଆରୋହଣ କଲେ ।୯-୧୧। ଏହି ପର୍ବତ ଅତ୍ୟୁଚ୍ଚ ଭୂର୍ଜତରୁଶୋଭିତ ନୀଳବର୍ଣ୍ଣ ବନରାଜିରୂପ ବସ୍ତ୍ର ପରିଧାନ କରି ଶିଖରସଂଲଗ୍ନ ମେଘରାଜିସ୍ୱରୂପ ଉତ୍ତରୀୟ ଧାରଣପୂର୍ବକ ପ୍ରୀତିହେତୁରୁ ଦିବାକର ସୂର୍ଯ୍ୟଙ୍କର କିରଣରୂପ ଶୁଭକରସ୍ପର୍ଶଦ୍ୱାରା ଯେପରି କି ତହିଁସ୍ଥ ସମସ୍ତ ପଦାର୍ଥକୁ ଜାଗରିତ କରିଦେଉଥିଲେ ।୧୨-୧୩। ବିବିଧ ଧାତୁଦ୍ୱାରା ଯେପରି କି

ଉନ୍ମିଷନ୍ତମିବୋଦ୍ଧୂତୈର୍ଲୋଚନୈରିବ ଧାତୁଭିଃ ।
ତୋୟୌଘନିଃସ୍ୱନୈର୍ମନ୍ଦ୍ରୈଃ ପ୍ରାଧୀତମିବ ସର୍ବତଃ । ୧୪ ।
ପ୍ରଗୀତମିବ ବସ୍ପଷ୍ଟଂ ନାନାପ୍ରସ୍ରବଣସ୍ୱନୈଃ ।
ଦେବଦାରୁଭିରୁଦ୍ଭୂତୈରୂର୍ଦ୍ଧ୍ୱବାହୁମିବ ସ୍ଥିତମ୍ । ୧୫ ।
ପ୍ରପାତଜଲନିର୍ଘୋଷୈଃ ପ୍ରାକ୍ରୁଷ୍ଟମିବ ସର୍ବତଃ ।
ବେପମାନମିବ ଶ୍ୟାମୈଃ କମ୍ପମାନୈଃ ଶରଦ୍ବନୈଃ । ୧୬ ।
ବେଣୁଭିର୍ମାରୁତୋଦ୍ଧୂତୈଃ କୂଜନ୍ତମିବ କୀଚକୈଃ ।
ନିଃଶ୍ୱସନ୍ତମିବାମର୍ଷାଦ୍ ଘୋରୈରାଶୀବିଷୋତ୍ତମୈଃ । ୧୭ ।
ନୀହାରକୃତଗମ୍ଭୀରୈର୍ଧ୍ୟାୟନ୍ତମିବ ଗହ୍ୱରୈଃ ।
ମେଘପାଦନିଭୈଃ ପାଦୈଃ ପ୍ରକ୍ରାନ୍ତମିବ ସର୍ବତଃ । ୧୮ ।
ଜୃମ୍ଭମାଣମିବାକାଶେ ଶିଖରୈରଭ୍ରମାଳିଭିଃ ।
କୂଟୈଶ୍ଚ ବହୁଧାକୀର୍ଣ୍ଣଂ ଶୋଭିତଂ ବହୁକନ୍ଦରୈଃ । ୧୯ ।
ସାଲତାଲାଶ୍ୱକର୍ଣ୍ଣୈଶ୍ଚ ବଂଶୈଶ୍ଚ ବହୁଭିର୍ବୃତମ୍ ।
ଲତାବିତାନୈର୍ବିତତୈଃ ପୁଷ୍ପବଦ୍ଭିରଲଂକୃତମ୍ । ୨୦ ।

---

ସହସ୍ର ସହସ୍ର ଚକ୍ଷୁ ଉନ୍ମୀଳିତ ହେଉଥିଲା । ଚତୁର୍ଦ୍ଦିଗରେ ଜଳପ୍ରବାହର ଗମ୍ଭୀର ଶବ୍ଦ ଉଠୁଥିଲା । ବୋଧହେଉଥିଲା, ଯେପରିକି ସେ ପର୍ବତ ଅଧ୍ୟୟନ କରୁଅଛି । ବିବିଧ ପ୍ରସ୍ରବଣର ନିସ୍ୱନରୂପ ସ୍ପଷ୍ଟଶବ୍ଦ ଉତ୍ଥିତ ହେଉଥିବାରୁ ବୋଧହେଉଥିଲା, ଯେପରିକି ପର୍ବତ ସଙ୍ଗୀତ ଗାନକରୁଅଛି । ଅତ୍ୟୁଚ୍ଚ ଦେବଦାରୁ ବୃକ୍ଷସମୂହଦ୍ୱାରା ତାହା ଊର୍ଦ୍ଧ୍ୱବାହୁ ହୋଇ ରହିଥିବାପରି ଦେଖାଯାଉଥିଲା । ସର୍ବତ୍ର ଜଳପ୍ରପାତର ଶବ୍ଦଦ୍ୱାରା ସେହି ପର୍ବତ ଆର୍ତ୍ତନାଦ କଲାପରି ବୋଧହେଉଥିଲା । ଶରତ୍କାଳୀନ-ବୃକ୍ଷମାନେ କମ୍ପିତ ହେଉଥିବାରୁ ବୋଧହେଉଥିଲା, ଯେପରିକି ପର୍ବତ ନିଜେ ଥରୁଅଛି । ୧୪-୧୬ । ବାୟୁର ଆଘାତରେ ଶବ୍ଦାୟମାନ ବଂଶବୃକ୍ଷଦ୍ୱାରା ସେ ପର୍ବତ ଯେପରିକି ବଂଶୀଧ୍ୱନି କରୁଥିଲା । ଭୟଙ୍କର ସର୍ପମାନଙ୍କର ଗର୍ଜନଦ୍ୱାରା ପର୍ବତ କ୍ରୋଧବଶତଃ ଦୀର୍ଘନିଶ୍ୱାସ ପରିତ୍ୟାଗ କଲାପରି ବୋଧହେଉଥିଲା । ୧୭ । ନୀହାର-ଛାଦଦ୍ୱାରା ଅଚ୍ଛନ୍ନହୋଇ ଗହ୍ୱରଗୁଡ଼ିକ ଗମ୍ଭୀରଭାବଧାରଣ କରିଥିବାରୁ ବୋଧହେଉଥିଲା, ଯେପରିକି ପର୍ବତ ଧ୍ୟାନମଗ୍ନ ରହିଅଛି । ମେଘଖଣ୍ଡସଦୃଶ ପାଦଦ୍ୱାରା ସେ ପର୍ବତ ଯେପରିକି ସର୍ବତ୍ର ବିଚରଣ କରୁଥିଲା । ୧୮ । ମେଘଶ୍ରେଣିରୂପ ମାଳା ଧାରଣ-କରିଥିବା ଶିଖରସମୂହ ଆକାଶକୁ ଉଠିଥିବାରୁ ପର୍ବତ ଭିଡ଼ିମୋଡ଼ି ହେଲାପରି ଦେଖାଯାଉଥିଲା । ନାନା ଦିଗରେ ନାନା ଶୃଙ୍ଗ ବିକୀର୍ଣ୍ଣ ରହିଅଛି ଏବଂ ଅସଂଖ୍ୟ ଗୁହା ଶୋଭାପାଉଅଛି । ବହୁସଂଖ୍ୟକ ଶାଳ, ତାଳ, ଅଶ୍ୱକର୍ଣ୍ଣ ଏବଂ ବଂଶବୃକ୍ଷ ପର୍ବତକୁ ଆଚ୍ଛନ୍ନକରି ରହିଅଛନ୍ତି । ପୁଷ୍ପିତ ବିସ୍ତୀର୍ଣ୍ଣ ଲତାକୁଞ୍ଜ

ନାନାମୃଗଗଣୈଃ କୀର୍ଣ୍ଣଂ ଧାତୁନିଷ୍ୟନ୍ଦଭୂଷିତମ୍ ।
ବହୁପ୍ରସ୍ରବଣୋପେତଂ ଶିଳାସଞ୍ଚୟସଂକଟମ୍ । ୨୧ ।
ମହର୍ଷିଯକ୍ଷଗନ୍ଧର୍ବକିଂନରୋରଗସେବିତମ୍ ।
ଲତାପାଦପସମ୍ବାଧଂ ସିଂହାଧିଷ୍ଠିତକନ୍ଦରମ୍ । ୨୨ ।
ବ୍ୟାଘ୍ରାଦିଭିଃ ସମାକୀର୍ଣ୍ଣଂ ସ୍ୱାଦୁମୂଳଫଳଦ୍ରୁମମ୍ ।
ଆରୁରୋହାନିଲସୁତଃ ପର୍ବତଂ ପ୍ଲବଗୋତ୍ତମଃ । ୨୩ ।
ରାମଦର୍ଶନଶୀଘ୍ରେଣ ପ୍ରହର୍ଷେଣାଭିଚୋଦିତଃ ।
ତେନ ପାଦତଳାକ୍ରାନ୍ତା ରମ୍ୟେଷୁ ଗିରିସାନୁଷୁ । ୨୪ ।
ସଘୋଷାଃ ସମଶୀର୍ଯନ୍ତ ଶିଳାଶ୍ଚୂର୍ଣ୍ଣୀକୃତାସ୍ତତଃ ।
ସ ତମାରୁହ୍ୟ ଶୈଳେନ୍ଦ୍ରଂ ବ୍ୟବର୍ଧତ ମହାକପିଃ । ୨୫ ।
ଦକ୍ଷିଣାଦୁତ୍ତରଂ ପାରଂ ପ୍ରାର୍ଥୟଁଲ୍ଲବଣାମ୍ଭସଃ ।
ଅଧିରୁହ୍ୟ ତତୋ ବୀରଃ ପର୍ବତଂ ପବନାତ୍ମଜଃ । ୨୬ ।
ଦଦର୍ଶ ସାଗରଂ ଭୀମଂ ଭୀମୋରଗନିଷେବିତମ୍ ।
ସ ମାରୁତ ଇବାକାଶଂ ମାରୁତସ୍ୟାତ୍ମସମ୍ଭବଃ । ୨୭ ।

---

ସକଳ ସ୍ଥାନେ ସ୍ଥାନେ ଶୋଭାପାଉଅଛି । ୧୯-୨୦ । ବିବିଧ ମୃଗମାନେ ବିଚରଣ କରୁଅଛନ୍ତି ଏବଂ ଧାତୁର ପ୍ରବାହମାନ ସେ ପର୍ବତକୁ ଭୂଷିତକରିରଖିଅଛି । ବହୁ ପ୍ରସ୍ରବଣ ପ୍ରବାହିତ ହେଉଅଛି । ଶିଳାଶ୍ରେଣି ସ୍ଥାନେ ସ୍ଥାନେ ଜମାହୋଇ ପର୍ବତକୁ ଦୁର୍ଗମ କରିଅଛି ।୨୧। ମହର୍ଷି, ଯକ୍ଷ, ଗନ୍ଧର୍ବ କିନ୍ନର ଏବଂ ଉରଗମାନେ ସେଠାରେ ବାସକରି ରହିଅଛନ୍ତି । ଲତା ଏବଂ ବୃକ୍ଷମାନଙ୍କ ଦ୍ୱାରା ଗମନାଗମନର ପଥ ରୁଦ୍ଧ ହୋଇଅଛି । ଗୁହାମାନଙ୍କ ମଧ୍ୟରେ ସିଂହମାନେ ବାସକରି ରହିଅଛନ୍ତି ।୨୨। ବ୍ୟାଘ୍ର-ଗୋଷ୍ଠୀରେ ପୂରିଆଡ଼ ପୂର୍ଣ୍ଣ ହୋଇଅଛି । ସୁସ୍ୱାଦୁ ଫଳମୂଳ ଏବଂ ଜଳ ସେ ପର୍ବତରେ ରହିଅଛି । ପବନନନ୍ଦନ ବାନରଶ୍ରେଷ୍ଠ ହନୂମାନ୍ ରାମଙ୍କୁ ଦେଖିବାପାଇଁ ଆନନ୍ଦରେ ପ୍ରୋତ୍ସାହିତହୋଇ ସତ୍ୱର ସେହିପର୍ବତରେ ଆରୋହଣକଲେ । ତାହାଙ୍କର ପଦାଘାତରେ ପୀଡ଼ିତ ହୋଇ ସୁରମ୍ୟ ଶିଖରସ୍ଥିତ ଶିଳାସମୂହ ଶବ୍ଦରେ ଚୂର୍ଣ୍ଣୀଭୂତ ହୋଇ ଚତୁର୍ଦ୍ଦିଗରେ ବିକ୍ଷିପ୍ତ ହେବାକୁ ଲାଗିଲେ । ମହାକପି ହନୁମାନ୍ ସେହି ପର୍ବତ-ରାଜ ଉପରେ ଆରୋହଣକରି ଲବଣସମୁଦ୍ରର ଦକ୍ଷିଣତୀରରୁ ଉତ୍ତରତୀରକୁ ଉତ୍ତୀର୍ଣ୍ଣ ହେବା ଉଦ୍ଦେଶ୍ୟରେ ନିଜ ଶରୀରକୁ ବୃଦ୍ଧି କରିବାକୁ ଲାଗିଲେ । ପବନନନ୍ଦନ ବୀର ହନୂମାନ୍ ସେହି ପର୍ବତ ଉପରକୁ ଆରୋହଣକରି ଭୀଷଣ ସର୍ପସେବିତ

ପ୍ରପେଦେ ହରିଶାର୍ଦ୍ଦୂଲୋ ଦକ୍ଷିଣାଦୁତ୍ତରାଂ ଦିଶମ୍ ।
ସ ତଦା ପୀଡ଼ିତସ୍ତେନ କପିନା ପର୍ବତୋତ୍ତମଃ ।୨୮ ।
ରରାସ ବିବିଧୈର୍ଭୂତୈଃ ପ୍ରାବିଶଦ୍ବସୁଧାତଳମ୍ ।
କମ୍ପମାନୈଶ୍ଚ ଶିଖରୈଃ ପତଦ୍ଭିରପି ଚ ଦ୍ରୁମୈଃ । ୨୯ ।
ତସ୍ୟୋରୁବେଗୋନ୍ମଥିତାଃ ପାଦପାଃ ପୁଷ୍ପଶାଳିନଃ ।
ନିପେତୁର୍ଭୂତଲେ ଭଗ୍ନାଃ ଶକ୍ରାୟୁଧହତା ଇବ । ୩୦ ।
କନ୍ଦରୋଦରସଂସ୍ଥାନାଂ ପୀଡ଼ିତାନାଂ ମହୌଜସାମ୍ ।
ସିଂହାନାଂ ନିନଦୋ ଭୀମୋ ନଭୋ ଭିନ୍ଦନ୍ ହି ଶୁଶ୍ରୁବେ । ୩୧
ସ୍ରସ୍ତବ୍ୟାବିଦ୍ଧବସନା ବ୍ୟାକୁଲୀକୃତଭୂଷଣାଃ ।
ବିଦ୍ୟାଧର୍ଯ୍ୟଃ ସମୁତ୍ପେତୁଃ ସହସା ଧରଣୀଧରାତ୍ । ୩୨ ।
ଅତିପ୍ରମାଣା ବଲିନୋ ଦୀପ୍ତଜିହ୍ୱା ମହାବିଷାଃ ।
ନିପୀଡ଼ିତଶିରୋଗ୍ରୀବା ବ୍ୟବେଷ୍ଟନ୍ତ ମହାହୟଃ । ୩୩ ।
କିଂନରୋରଗଗନ୍ଧର୍ବଯକ୍ଷବିଦ୍ୟାଧରାସ୍ତଥା ।
ପୀଡ଼ିତଂ ତଂ ନଗବରଂ ତ୍ୟକ୍ତ୍ୱା ଗଗନମାସ୍ଥିତାଃ ।୩୪ ।

---

ଭୟଙ୍କର ସମୁଦ୍ରକୁ ଦେଖିଲେ । ପବନ ଯେପରି ଆକାଶପଥରେ ଗମନ କରେ, ବାୟୁନନ୍ଦନ ହନୁମାନ୍ ସେହିପରି ମନେ ମନେ ତତ୍କ୍ଷଣାତ୍ ଦକ୍ଷିଣରୁ ଉତ୍ତର ଗିରକୁ ଉତ୍ତୀର୍ଣ୍ଣ ହେଲେ । ସେତେବେଳେ ତାହାଙ୍କ ପଦଭରରେ ନିପୀଡ଼ିତ ହୋଇ ସେହି ପର୍ବତ ସମସ୍ତ ପ୍ରାଣୀଙ୍କ ସହିତ ବସୁଧା ତଳରେ ପଶିଗଲା, ଶିଖରମାନ କମ୍ପିଗଲା ଏବଂ ବୃକ୍ଷମାନେ ପଡ଼ିଗଲେ । ତାହାଙ୍କର ଗୁରୁତର ବେଗରେ ମଥିତ ଏବଂ ଭଗ୍ନହୋଇ ପୁଷ୍ପିତ ବୃକ୍ଷମାନେ ବଜ୍ରାହତପ୍ରାୟ ଭୂତଳରେ ପତିତ-ହେଲେ । ୨୮-୩୦ । ଗୁହାମଧ୍ୟସ୍ଥିତ ମହାବିକ୍ରମଶାଳୀ ସିଂହମାନଙ୍କର ଭୀଷଣ ଗର୍ଜନ ଆକାଶ ଭେଦକରି ଶୁଣାଗଲା । ୩୧ । ବିଦ୍ୟାଧରୀମାନଙ୍କର ବସନ ସ୍ଖଳିତ ହୋଇଗଲା ଏବଂ ଭୂଷଣସମୂହ ଇତସ୍ତତଃ ବିକ୍ଷିପ୍ତ ହୋଇଗଲା । ସେମାନେ ସହସା ସେହି ପର୍ବତ ଚୂଡ଼ ଉପରକୁ ଉଠିଗଲେ । ୩୨ । ଅତି ଦୀର୍ଘକାୟ, ବଳବାନ୍, ଦୀପ୍ତଜିହ୍ୱ, ମହାବିଷଧର, ବୃହତ୍ ସର୍ପମାନଙ୍କର ଗ୍ରୀବା ଓ ମସ୍ତକ ଭଗ୍ନହୋଇଯିବାରୁ ସେମାନେ ଛଟପଟ ହେବାକୁ ଲାଗିଲେ । ୩୩ । କିନ୍ନର, ଉରଗ, ଗନ୍ଧର୍ବ, ଯକ୍ଷ ଏବଂ ବିଦ୍ୟାଧରମାନେ ସେହି ନିପୀଡ଼ିତ ପର୍ବତଶ୍ରେଷ୍ଠକୁ ପରିତ୍ୟାଗକରି

ସ ଚ ଭୂମିଧରଃ ଶ୍ରୀମାନ୍ ବଳିନା ତେନ ପୀଡ଼ିତଃ ।
ସବୃକ୍ଷଶିଖରୋଦଗ୍ରଃ ପ୍ରବିବେଶ ରସାତଳମ୍ । ୩୫ ।
ଦଶଯୋଜନବିସ୍ତାରସ୍ତ୍ରିଂଶଦ୍ୟୋଜନମୁଚ୍ଛ୍ରିତଃ ।
ଧରଣ୍ୟାଂ ସମତାଂ ଯାତଃ ସ ବଭୂବ ଧରାଧରଃ । ୩୬ ।
ସ ଲିଲଙ୍ଘୟିଷୁର୍ଭୀମଂ ସଲୀଳଂ ଲବଣାର୍ଣବମ୍ ।
କଲ୍ଲୋଲାସ୍ଫାଲବେଲାନ୍ତମୁତ୍ପପାତ ନଭୋ ହରିଃ । ୩୭ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ ସୁନ୍ଦରକାଣ୍ଡେ ପ୍ରତିପ୍ରୟାଣୋପକ୍ରମଂ ନାମ ଷଟ୍‌ପଞ୍ଚାଶଃ ସର୍ଗଃ ।

---

# ସପ୍ତପଞ୍ଚାଶଃ ସର୍ଗଃ

## ହନୂମତ୍ପ୍ରତ୍ୟାଗମନମ୍

ଆପ୍ଲୁତ୍ୟ ଚ ମହାବେଗଃ ପକ୍ଷବାନିବ ପର୍ବତଃ ।
ଭୁଜଙ୍ଗଯକ୍ଷଗନ୍ଧର୍ବପ୍ରବୁଦ୍ଧକମଲୋତ୍ପଲମ୍ । ୧ ।

---

ଆକାଶରେ ଯାଇ ରହିଲେ । ୩୪ । ସେହି ସୌନ୍ଦର୍ଯ୍ୟସମ୍ପନ୍ନ ପର୍ବତ ବଳବାନ୍ ହନୂମାନଙ୍କ କର୍ତ୍ତୃକ ପୀଡ଼ିତ ହୋଇ ଉନ୍ନତ ବୃକ୍ଷ ଓ ଶୃଙ୍ଗସମୂହ ସହିତ ରସାତଳରେ ପ୍ରବିଷ୍ଟହେଲା । ୩୫ । ଦଶଯୋଜନବିସ୍ତୃତ ଏବଂ ତିରିଶଯୋଜନ ଉଚ୍ଚ ସେହି ପର୍ବତ ଭୂମି ସହିତ ସମତଳ ହୋଇଗଲା । ୩୬ । ବାନର ହନୂମାନ୍ ବେଳାନ୍ତତରଙ୍ଗାସ୍ଫାଳିତ ମହାସାଗରକୁ ଅବଲୀଳାକ୍ରମେ ଲଙ୍ଘନକରିବାକୁ ଇଚ୍ଛାକରି ଆକାଶ ଉପରକୁ ଉତ୍ଥିତହେଲେ । ୩୭ ।

---

# ୫୭ଶ ସର୍ଗ

## ( ହନୁମାନଙ୍କର ପ୍ରତ୍ୟାଗମନ )

ମହାବେଗଶାଳୀ ହନୁମାନ୍ ପକ୍ଷବିଶିଷ୍ଟ ପର୍ବତସଦୃଶ ଉଲ୍ଲମ୍ଫନପୂର୍ବକ ଅନାୟାସରେ ଆକାଶରୂପ ସାଗରରେ ସନ୍ତରଣ କରିବାକୁ ଲାଗିଲେ । ସର୍ପ, ଯକ୍ଷ

ସଚନ୍ଦ୍ରକୁମୁଦଂ ରମ୍ୟଂ ସାର୍କକାରଣ୍ଡବଂ ଶୁଭମ୍ ।
ତିଷ୍ୟଶ୍ରବଣକାଦମ୍ବମଭ୍ରଶୈବାଳଶାଦ୍ୱଳମ୍ । ୨ ।
ପୁନର୍ବସୁମହାମୀନଂ ଲୋହିତାଙ୍ଗମହାଗ୍ରହମ୍ ।
ଐରାବତମହାଦ୍ୱୀପଂ ସ୍ୱାତୀହଂସବିଲାସିତମ୍ । ୩ ।
ବାତସଂଘାତଜାତୋର୍ମିଂ ଚନ୍ଦ୍ରାଂଶୁଶିଶିରାମ୍ବୁମତ୍ ।
ହନୂମାନପରିଶ୍ରାନ୍ତଃ ପୁପ୍ଲୁବେ ଗଗନାର୍ଣ୍ଣବମ୍ । ୪ ।
ଗ୍ରସମାନ ଇବାକାଶଂ ତାରାଧିପମିବୋଲ୍ଲିଖନ୍ ।
ହରନ୍ନିବ ସନକ୍ଷତ୍ରଂ ଗଗନଂ ସାର୍କମଣ୍ଡଳମ୍ । ୫ ।
ଅପାରମପରିଶ୍ରାନ୍ତଶ୍ଚାମ୍ବୁଧିଂ ସମଗାହତ ।
ହନୂମାନ୍ମେଘଜାଳାନି ବିକର୍ଷନ୍ନିବ ଗଚ୍ଛତି । ୬ ।
ପାଣ୍ଡୁରାରୁଣବର୍ଣ୍ଣାନି ନୀଳମାଞ୍ଜିଷ୍ଠକାନି ଚ ।
ହରିତାରୁଣବର୍ଣ୍ଣାନି ମହାଭ୍ରାଣି ଚକାଶିରେ । ୭ ।
ପ୍ରବିଶନ୍ନଭ୍ରଜାଳାନି ନିଷ୍କ୍ରାମଂଶ୍ଚ ପୁନଃ ପୁନଃ ।
ପ୍ରକାଶଶ୍ଚାପ୍ରକାଶଶ୍ଚ ଚନ୍ଦ୍ରମା ଇବ ଦୃଶ୍ୟତେ । ୮ ।

---

ଓ ଗନ୍ଧର୍ବଗଣ ଏହି ସାଗରର ପ୍ରସ୍ଫୁଟିତ ପଦ୍ମ ଏବଂ ଉତ୍ପଳସଦୃଶ; ଚନ୍ଦ୍ର ଏହାର କୁମୁଦସଦୃଶ; ସୂର୍ଯ୍ୟ ଏହାର କାରଣ୍ଡବ ପକ୍ଷୀ; ପୁଷ୍ୟା ଓ ଶ୍ରବଣା ନକ୍ଷତ୍ର ଏହାର ହଂସ; ମେଘରାଜି ଏହାର ନୀଳବର୍ଣ୍ଣ ଶୈବାଳ; ପୁନର୍ବସୁ ନକ୍ଷତ୍ର ଏହାର ବୃହତ୍ ମତ୍ସ୍ୟ; ମଙ୍ଗଳଗ୍ରହ ଏହାର ବିଶାଳ କୁମ୍ଭୀର; ଐରାବତ ଏହାର ମହାହସ୍ତୀ; ସ୍ୱାତୀ ନକ୍ଷତ୍ର ଏହି ସାଗରର ଚଞ୍ଚଳଗତି ହଂସ; ବାୟୁସଂଘର୍ଷସମୂହ ଏହାର ତରଙ୍ଗ ଏବଂ ଚନ୍ଦ୍ର-କିରଣ ଏହାର ସୁଶୀତଳ ଜଳରାଶି । ୧-୪। ହନୁମାନ୍ ଯିବା ସମୟରେ ସତେ ଯେପରି ଆକାଶକୁ ଗ୍ରାସକରି ଚନ୍ଦ୍ରଙ୍କୁ ହସ୍ତଦ୍ୱାରା ରାମୁଡ଼ିପକାଇ, ନକ୍ଷତ୍ରଗଣ ଓ ସୂର୍ଯ୍ୟଙ୍କ ସହିତ ଆକାଶକୁ ଆହରଣକରି ଏବଂ ମେଘରାଜିକୁ ଆକର୍ଷଣକରି, ଅପରିଶ୍ରାନ୍ତଭାବରେ ଅପାର ଆକାଶସାଗର ପାରହେବାକୁ ଲାଗିଲେ । ୫-୬ । ସେତେବେଳେ ପାଣ୍ଡୁର, ଅରୁଣ, ନୀଳ, ମାଞ୍ଜିଷ୍ଠ ଏବଂ ହରିତ୍‌ବର୍ଣ୍ଣର ପ୍ରକାଣ୍ଡ ମେଘଖଣ୍ଡମାନ ଶୋଭା ପାଇବାକୁ ଲାଗିଲେ । ୭ । ସେ ପୁନଃ ପୁନଃ ମେଘରାଶି ମଧ୍ୟରେ ପ୍ରବେଶକରି ଓ ସେଥିମଧ୍ୟରୁ ନିର୍ଗତହୋଇ ଚନ୍ଦ୍ରଙ୍କ ପରି କେତେବେଳେ ପ୍ରକାଶ, କେତେବେଳେ ବା ଅପ୍ରକାଶ ହେବାକୁ

ବିବିଧାଭ୍ରଘନାପନ୍ନଗୋଚରୋ ଧବଳାମ୍ବରଃ ।
ଦୃଶ୍ୟାଦୃଶ୍ୟତନୁର୍ବୀରସ୍ତଥା ଚନ୍ଦ୍ରାୟତେଽମ୍ବରେ । ୯ ।
ତାର୍କ୍ଷ୍ୟାୟମାଣୋ ଗଗନେ ସ ବଭୌ ବାୟୁନନ୍ଦନଃ ।
ଦାରୟନ୍ମେଘବୃନ୍ଦାନି ନିଷ୍ପତଂଶ୍ଚ ପୁନଃ ପୁନଃ । ୧୦ ।
ନଦନ୍ନାଦେନ ମହତା ମେଘସ୍ୱନମହାସ୍ୱନଃ ।
ପ୍ରବରାନ୍ରାକ୍ଷସାନ୍ ହତ୍ୱା ନାମ ବିଶ୍ରାବ୍ୟ ଚାତ୍ମନଃ । ୧୧ ।
ଆକୁଳାଂ ନଗରୀଂ କୃତ୍ୱା ବ୍ୟଥୟିତ୍ୱା ଚ ରାବଣମ୍ ।
ଅର୍ଦୟିତ୍ୱା ମହାବୀରାନ୍ ବୈଦେହୀମଭିବାଦ୍ୟ ଚ । ୧୨ ।
ଆଜଗାମ ମହାତେଜାଃ ପୁନର୍ମଧ୍ୟେନ ସାଗରମ୍ ।
ପର୍ବତେନ୍ଦ୍ରଂ ସୁନାଭଂ ଚ ସମୁପସ୍ପୃଶ୍ୟ ବୀର୍ଯ୍ୟବାନ୍ । ୧୩ ।
ଜ୍ୟାମୁକ୍ତ ଇବ ନାରାଚୋ ମହାବେଗୋଽଭ୍ୟୁପାଗମତ୍ ।
ସ କିଞ୍ଚିଦନୁସଂପ୍ରାପ୍ତଃ ସମାଲୋକ୍ୟ ମହାଗିରିମ୍ । ୧୪ ।
ମହେନ୍ଦ୍ରଂ ମେଘସଂକାଶଂ ନନାଦ ସ ମହାକପିଃ ।
ସ ପୂରୟାମାସ କପିର୍ଦିଶୋ ଦଶ ସମନ୍ତତଃ । ୧୫ ।

---

ଲାଗିଲେ । ୮ । ସେହି ଶ୍ୱେତବସ୍ତ୍ରପରିଧାନକାରୀ ବୀର ହନୁମାନ୍ ନାନାବିଧ ମେଘରାଜିର ପଥରେ ଗମନକରି କେତେବେଳେ ଦୃଶ୍ୟ, କେତେବେଳେ ବା ଅଦୃଶ୍ୟ ହୋଇ ଆକାଶରେ ଚନ୍ଦ୍ରଙ୍କପରି ଆଚରଣକଲେ । ୯ । ବାୟୁନନ୍ଦନ ଆକାଶରେ ଗରୁଡ଼ଙ୍କ ପରି ମେଘରାଜିକୁ ବିଦାରଣକରି ପୁନଃ ପୁନଃ ପ୍ରକାଶିତ ହୋଇ ଶୋଭା-ପାଇଲେ । ୧୦ । ସେ ମେଘପରି ମହାଶବ୍ଦରେ ଗର୍ଜନକରି ଗମନକଲେ । ମହାତେଜା ହନୁମାନ୍ ପ୍ରଧାନ ପ୍ରଧାନ ରାକ୍ଷସଙ୍କୁ ନିହତକରି, ନିଜର ନାମକୁ ସେଠାରେ ଘୋଷିତକରି, ଲଙ୍କାନଗରୀକୁ ବ୍ୟାକୁଳିତକରି, ରାବଣକୁ ବ୍ୟଥିତକରି, ମହାବୀର ରାକ୍ଷସମାନଙ୍କୁ ନିପୀଡ଼ିତକରି ଏବଂ ଜାନକୀଙ୍କୁ ଅଭିବାଦନକରି ପୁଣି ସାଗରର ମଧ୍ୟସ୍ଥଳରେ ଆସି ଉପସ୍ଥିତ ହେଲେ । ବୀର୍ଯ୍ୟବାନ୍ ହନୁମାନ୍ ପର୍ବତଶ୍ରେଷ୍ଠ ସୁନାଭକୁ ସ୍ପର୍ଶକରି ଜ୍ୟାମୁକ୍ତ ଶରସଦୃଶ ଅତିବେଗରେ ଆସି ଉପସ୍ଥିତ ହେଲେ । କ୍ଷଣେ ଦୂରରୁ ମହାପର୍ବତ ମହେନ୍ଦ୍ରଗିରିକୁ ଦେଖି ସେହି ମହାକପି ମେଘସଦୃଶ ସୁଗମ୍ଭୀର ଶବ୍ଦରେ ଗର୍ଜନକରି ଦଶଦିଗ ପୂର୍ଣ୍ଣକରିଦେଲେ । ୧୧-୧୫ । ସୁହୃତ୍‌ମାନଙ୍କୁ

ନଦନ୍ନାଦେନ ମହତା ମେଘସ୍ୱନମହାସ୍ୱନଃ ।
ସ ତଂ ଦେଶମନୁପ୍ରାପ୍ତଃ ସୁହୃଦ୍ଦର୍ଶନଲାଲସଃ । ୧୬ ।
ନନାଦ ସୁମହନ୍ନାଦଂ ଲାଙ୍ଗୂଲଂ ଚାପ୍ୟକମ୍ପୟତ୍ ।
ତସ୍ୟ ନାନଦ୍ୟମାନସ୍ୟ ସୁପର୍ଣାଚରିତେ ପଥି । ୧୭ ।
ଫଲତୀବାସ୍ୟ ଘୋଷେଣ ଗଗନଂ ସାର୍କମଣ୍ଡଳମ୍ ।
ଯେ ତୁ ତତ୍ରୋତ୍ତରେ କୂଲେ ସମୁଦ୍ରସ୍ୟ ମହାବଲାଃ । ୧୮ ।
ପୂର୍ବଂ ସଂବିଷ୍ଠିତାଃ ଶୂରା ବାୟୁପୁତ୍ରଦିଦୃକ୍ଷବଃ ।
ମହତୋ ବାୟୁନୁନ୍ନସ୍ୟ ତୋୟଦସ୍ୟେବ ନିଃସ୍ୱନମ୍ ।
ଶୁଶ୍ରୁବୁସ୍ତେ ତଦା ଘୋଷମୂରୁବେଗଂ ହନୂମତଃ । ୧୯ ।
ତେ ଦୀନମନସଃ ସର୍ବେ ଶୁଶ୍ରୁବୁଃ କାନନୌକସଃ ।
ବାନରେନ୍ଦ୍ରସ୍ୟ ନିର୍ଘୋଷଂ ପର୍ଜନ୍ୟନିନଦୋପମମ୍ । ୨୦ ।
ନିଶମ୍ୟ ନଦତୋ ନାଦଂ ବାନରାସ୍ତେ ସମନ୍ତତଃ ।
ବଭୂବୁରୁତ୍ସୁକାଃ ସର୍ବେ ସୁହୃଦ୍ଦର୍ଶନକାଙ୍କ୍ଷିଣଃ । ୨୧ ।
ଜାମ୍ବବାନ୍ ସ ହରିଶ୍ରେଷ୍ଠଃ ପ୍ରୀତିସଂହୃଷ୍ଟମାନସଃ ।
ଉପାମନ୍ତ୍ର୍ୟ ହରୀନ୍ ସର୍ବାନିଦଂ ବଚନମବ୍ରବୀତ୍ । ୨୨ ।

---

ଦେଖିବା ଅଭିଳାଷରେ ସେ ଏହିପ୍ରକାର ମହାମେଘସଦୃଶ ଶବ୍ଦ କରିକରି ସେହି ସ୍ଥାନର ନିକଟବର୍ତ୍ତୀ ହେଲେ । ୧୬ । ସେ ଘନ ଘନ ଶବ୍ଦକରି ଲାଙ୍ଗୁଳକୁ କମ୍ପାଇଲେ । ତାଙ୍କର ସେହି ଗମ୍ଭୀରନାଦରେ ସୂର୍ଯ୍ୟମଣ୍ଡଳ ସହିତ ଆକାଶମଣ୍ଡଳ ସତେ ସେପରି ବିଦୀର୍ଣ୍ଣ ହୋଇଗଲା । ସେଠାରେ ସମୁଦ୍ରର ଉତ୍ତର-ତୀରରେ ପବନନନ୍ଦନଙ୍କୁ ଦେଖିବା ଅଭିଳାଷରେ ଯେଉଁ ମହାବୀର ବାନରମାନେ ପୂର୍ବରୁ ବସିରହିଥିଲେ, ସେମାନେ ମହାମେଘସଦୃଶ ହନୁମାନଙ୍କର ଗର୍ଜନ ଏବଂ ତାଙ୍କର ମହାବେଗଜନିତ ଶବ୍ଦ ଶୁଣିବାକୁ ଲାଗିଲେ ।୧୭-୧୯। ସେହି ବନବାସୀ ବାନରମାନେ ମଳିନମୁଖରେ ବସିରହିଥିଲେ; ଏବେ ବାନରଶ୍ରେଷ୍ଠ ହନୁମାନଙ୍କର ମେଘଗର୍ଜନ ସଦୃଶ ଶବ୍ଦ ଶୁଣିବାକୁ ପାଇଲେ । ୨୦ । ଗର୍ଜନକାରୀ ହନୁମାନଙ୍କର ଏହି ଶବ୍ଦ ଶୁଣି ସୁହୃଦ୍‌ଦର୍ଶନାଭିଳାଷୀ ସେହି ବାନରମାନେ ସମସ୍ତେ ଉତ୍ସୁକ ହୋଇଉଠିଲେ । ୨୧ । ବାନରଙ୍କ ମଧ୍ୟରେ ଖ୍ୟାତନାମା ଜାମ୍ବବାନ୍ ପ୍ରୀତିବଶତଃ ହୃଷ୍ଟଚିତ୍ତହୋଇ ସମସ୍ତ ବାନରଙ୍କୁ ସମ୍ବୋଧନକରି ଏହି କଥା କହିଲେ । ୨୨ । "ଏହି ହନୁମାନ୍

ସର୍ବଥା କୃତକାର୍ଯୋଽସୌ ହନୂମାନ୍ନାତ୍ର ସଂଶୟଃ ।
ନ ହ୍ୟସ୍ୟାକୃତକାର୍ଯସ୍ୟ ନାଦ ଏବଂବିଧୋ ଭବେତ୍ । ୨୩ ।
ତସ୍ୟ ବାହୂରୁବେଗଂ ଚ ନିନାଦଂ ଚ ମହାତ୍ମନଃ ।
ନିଶମ୍ୟ ହରୟୋ ହୃଷ୍ଟାଃ ସମୁତ୍ପେତୁର୍ଯତସ୍ତତଃ । ୨୪ ।
ତେ ନଗାଗ୍ରାନ୍ନଗାଗ୍ରାଣି ଶିଖରାଚ୍ଛିଖରାଣି ଚ ।
ପ୍ରହୃଷ୍ଟାଃ ସମପଦ୍ୟନ୍ତ ହନୂମନ୍ତଂ ଦିଦୃକ୍ଷବଃ । ୨୫ ।
ତେ ପ୍ରୀତାଃ ପାଦପାଗ୍ରେଷୁ ଗୃହ୍ୟ ଶାଖାମବସ୍ଥିତାଃ ।
ବାସାଂସୀବ ପ୍ରକାଶାନି ସମାବିଧ୍ୟନ୍ତ ବାନରାଃ । ୨୬ ।
ଗିରିଗହ୍ୱରସଂଲୀନୋ ଯଥା ଗର୍ଜତି ମାରୁତଃ ।
ଏବଂ ଜଗର୍ଜ ବଲବାନ୍ ହନୂମାନ୍ମାରୁତାତ୍ମଜଃ । ୨୭ ।
ତମଭ୍ରଘନସଂକାଶମାପତନ୍ତଂ ମହାକପିମ୍ ।
ଦୃଷ୍ଟ୍ୱା ତେ ବାନରାଃ ସର୍ବେ ତସ୍ଥୁଃ ପ୍ରାଞ୍ଜଳୟସ୍ତଦା । ୨୮ ।
ତତସ୍ତୁ ବେଗବାନ୍ ବୀରୋ ଗିରେର୍ଗିରିନିଭଃ କପିଃ ।
ନିପପାତ ଗିରେସ୍ତସ୍ୟ ଶିଖରେ ପାଦପାକୁଲେ । ୨୯ ।

---

ସର୍ବତୋଭାବରେ କୃତକାର୍ଯ୍ୟ ହୋଇଛନ୍ତି; ଏଥିରେ ସନ୍ଦେହ ନାହିଁ । ଅକୃତକାର୍ଯ୍ୟ ହୋଇଥିଲେ ସେ କଦାପି ଏପରି ନାଦ କରନ୍ତେ ନାହିଁ । ୨୩ । ମହାତ୍ମା ହନୁମାନଙ୍କର ବାହୁର ଅତିଶୟ ବେଗଜନିତ ଶବ୍ଦ ଏବଂ ଗର୍ଜନଜନିତ ଶବ୍ଦ ଶୁଣି, ବାନରମାନେ ଆନନ୍ଦିତ ହୋଇ ସବୁଆଡ଼ୁ ଡେଇଁ ଚାଲିଆସିଲେ । ୨୪ । ହନୁମାନଙ୍କୁ ଦେଖିବା ପାଇଁ ସେମାନେ ଅତି ଆନନ୍ଦରେ ବୃକ୍ଷାଗ୍ରରୁ ବୃକ୍ଷାଗ୍ରକୁ, ଏକ ପର୍ବତ-ଶିଖରରୁ ଅନ୍ୟ ପର୍ବତଶିଖରକୁ ଡ଼ିଆଁ ଡେଇଁ କରିବାକୁ ଲାଗିଲେ । ୨୫ । ସେମାନେ ପ୍ରୀତମନରେ ଶାଖାଗୁଡ଼ିକୁ ଧରି ବୃକ୍ଷର ଅଗ୍ରଭାଗରେ ଠିଆହୋଇ ରହିଲେ ଏବଂ ଶୁଭ୍ରବର୍ଣ୍ଣ ବସ୍ତ୍ରମାନ କମ୍ପିତ କରିବାକୁ ଲାଗିଲେ । ୨୬ । ବାୟୁ ଯେପରି ଗିରିଗହ୍ୱର ମଧ୍ୟରେ ଲୀନହୋଇ ଗର୍ଜନକରେ, ବଳବାନ୍ ପବନନନ୍ଦନ ସେହିପରି ଗର୍ଜନ କରିବାକୁ ଲାଗିଲେ । ୨୭ । ସେତେବେଳକୁ ହନୂମାନଙ୍କୁ ମେଘଖଣ୍ଡ ସଦୃଶ ମାତ୍ର ଆସୁଥିବାର ଦେଖି, ବାନରମାନେ ସମସ୍ତେ କୃତାଞ୍ଜଳିହୋଇ ଠିଆହୋଇ ରହିଲେ ।୨୮। ଅନନ୍ତର ପର୍ବତପ୍ରତିମ ବେଗବାନ୍ ବୀର ହନୂମାନ୍ ସେହି ପର୍ବତର ବୃକ୍ଷପରିପୂର୍ଣ୍ଣ ଶିଖରଦେଶରେ ଆସି ପଡ଼ିଲେ । ୨୯ । ସେ ଆହ୍ଲାଦପୂର୍ଣ୍ଣ ମନରେ

ହର୍ଷେଣ ପୂର୍ଯମାଣୋଽସୌ ରମ୍ୟେ ପର୍ବତନିର୍ଝରେ ।
ଛିନ୍ନପକ୍ଷ ଇବାକାଶାତ୍ପପାତ ଧରଣୀଧରଃ । ୩୦ ।
ତତସ୍ତେ ପ୍ରୀତମନସଃ ସର୍ବେ ବାନରପୁଙ୍ଗବାଃ ।
ହନୂମନ୍ତଂ ମହାତ୍ମାନଂ ପରିବାର୍ଯୋପତସ୍ଥିରେ । ୩୧ ।
ପରିବାର୍ଯ ଚ ତେ ସର୍ବେ ପରାଂ ପ୍ରୀତିମୁପାଗତାଃ ।
ପ୍ରହୃଷ୍ଟବଦନାଃ ସର୍ବେ ତମାଗତମୁପାଗମନ୍ । ୩୨ ।
ଉପାୟନାନି ଗୃହ୍ୟାଥ ମୂଲାନି ଚ ଫଲାନି ଚ ।
ପ୍ରତ୍ୟର୍ଚୟନ୍ ହରିଶ୍ରେଷ୍ଠଂ ହରୟୋ ମାରୁତାତ୍ମଜମ୍ । ୩୩ ।
ବିନେଦୁର୍ମୁଦିତାଃ କେଚିତ୍ କେଚିତ୍ କିଲକିଲାଂ ତଥା ।
ହୃଷ୍ଟାଃ ପାଦପଶାଖାଶ୍ଚ ଆନିନ୍ୟୁର୍ବାନରର୍ଷଭାଃ । ୩୪ ।
ହନୂମାଂସ୍ତୁ ଗୁରୂନ୍ ବୃଦ୍ଧାଞ୍ଜାମ୍ବବତ୍ପ୍ରମୁଖାଂସ୍ତଦା ।
କୁମାରମଙ୍ଗଦଂ ଚୈବ ସୋଽବନ୍ଦତ ମହାକପିଃ । ୩୫ ।
ସ ତାଭ୍ୟାଂ ପୂଜିତଃ ପୂଜ୍ୟଃ କପିଭିଶ୍ଚ ପ୍ରସାଦିତଃ ।
ଦୃଷ୍ଟା ଦେବୀତି ବିକ୍ରାନ୍ତଃ ସଂକ୍ଷେପେଣ ନ୍ୟବେଦୟତ୍ । ୩୬ ।
ନିଷସାଦ ଚ ହସ୍ତେନ ଗୃହୀତ୍ୱା ବାଲିନଃ ସୁତମ୍ ।
ରମଣୀୟେ ବନୋଦ୍ଦେଶେ ମହେନ୍ଦ୍ରସ୍ୟ ଗିରେସ୍ତଦା । ୩୭ ।

---

ଆକାଶରୁ ଛିନ୍ନପକ୍ଷପର୍ବତସଦୃଶ ରମଣୀୟ ପର୍ବତନିର୍ଝରରେ ପତିତହେଲେ ।୩୦। ଅନନ୍ତର ସେହି ଶ୍ରେଷ୍ଠ ବାନରମାନେ ପ୍ରୀତିପୂର୍ଣ୍ଣହୃଦୟରେ ସେହି ମହାତ୍ମାଙ୍କ ସମୀପରେ ଉପସ୍ଥିତ ହୋଇ ତାଙ୍କୁ ଘେରିଆଡୁ ବେଢ଼ିଗଲେ । ୩୧ । ସେମାନେ ଅତି ଖୁସି ହୋଇଗଲେ ଓ ସେମାନଙ୍କର ମୁଖ ପ୍ରଫୁଲ୍ଲ ହୋଇଉଠିଲା । ସମସ୍ତେ ତାଙ୍କ ନିକଟରେ ଆସି ଉପସ୍ଥିତ ହେଲେ । ୩୨ । ସେମାନେ ଫଳ, ମୂଳ ଓ ଅନ୍ୟାନ୍ୟ ଉପହାରମାନ ଆଣି ସେହି ପବନନନ୍ଦନ କପିକେଶରୀଙ୍କର ଅର୍ଚ୍ଚନାକଲେ । ୩୩ । ଏହି ବାନରମାନେ ଆହ୍ଲାଦିତ ହୋଇ ସେମାନଙ୍କ ମଧ୍ୟରୁ କେହି କେହି ଉଚ୍ଚନାଦ, କେହି କେହି ବା 'କିଲକିଲା' ଶବ୍ଦ କରିବାକୁ ଲାଗିଲେ । ପ୍ରଧାନ ପ୍ରଧାନ ବାନରମାନେ ଆନନ୍ଦରେ ବୃକ୍ଷଶାଖାମାନ ଆଣିଲେ । ୩୪ । ଅନନ୍ତର ମହାକପି ହନୂମାନ୍ ଜାମ୍ବବାନ୍ ପ୍ରଭୃତି ବୃଦ୍ଧ ଗୁରୁଜନମାନଙ୍କୁ ଏବଂ କୁମାର ଅଙ୍ଗଦଙ୍କୁ ଅଭିବାଦନ କଲେ ।୩୫। ସେମାନେ ତାଙ୍କୁ ପୂଜା କରିବା ଉତ୍ତାରୁ ଓ ଅନ୍ୟ କପିମାନେ ତାଙ୍କୁ ପ୍ରସନ୍ନ କରିବାଉତ୍ତାରୁ ପୂଜନୀୟ ବିକ୍ରମଶାଳୀ ହନୁମାନ୍ ସଂକ୍ଷେପରେ ନିବେଦନକଲେ, "ମୁଁ ଦେବୀ ସୀତାଙ୍କୁ ଦେଖିଅଛି" ।୩୬। ଅନନ୍ତରଂ ସେ ବାଲୀଙ୍କ ପୁତ୍ରର ହସ୍ତଧାରଣପୂର୍ବକ ମହେନ୍ଦ୍ର ଗିରିର ରମଣୀୟ ବନପ୍ରଦେଶରେ ଉପବିଷ୍ଟ ହେଲେ ।୩୭। ସମସ୍ତେ ତାଙ୍କୁ ପଗୃରିବାରୁ

ହନୂମାନବ୍ରବୀତ୍ ପୃଷ୍ଟସ୍ତଦା ତାନ୍ ବାନରର୍ଷଭାନ୍ ।
ଅଶୋକବନିକାସଂସ୍ଥା ଦୃଷ୍ଟା ସା ଜନକାତ୍ମଜା । ୩୮ ।
ରକ୍ଷ୍ୟମାଣା ସୁଘୋରାଭୀ ରାକ୍ଷସୀଭିରନିନ୍ଦିତା ।
ଏକବେଣୀଧରା ବାଳା ରାମଦର୍ଶନଲାଲସା ।୩୯ ।
ଉପବାସପରିଶ୍ରାନ୍ତା ମଳିନା ଜଟିଳା କୃଶା ।
ତତୋ ଦୃଷ୍ଟେତି ବଚନଂ ମହାର୍ଥମମୃତୋପମମ୍ । ୪୦।
ନିଶମ୍ୟ ମାରୁତେଃ ସର୍ବେ ମୁଦିତା ବାନରାଭବନ୍ ।
କ୍ଷ୍ୱେଡ଼ନ୍ତ୍ୟନ୍ୟେ ନଦନ୍ତ୍ୟନ୍ୟେ ଗର୍ଜନ୍ତ୍ୟନ୍ୟେ ମହାବଳାଃ । ୪୧ ।
ଚକ୍ରୁଃ କିଲକିଲାମନ୍ୟେ ପ୍ରତିଗର୍ଜନ୍ତି ଚାପରେ ।
କେଚିଦୁଚ୍ଛ୍ରିତଲାଙ୍ଗୂଲାଃ ପ୍ରହୃଷ୍ଟାଃ କପିକୁଞ୍ଜରାଃ । ୪୨ ।
ଆୟତାଞ୍ଚିତଦୀର୍ଘାଣି ଲାଙ୍ଗୂଲାନି ପ୍ରବିବ୍ୟଧୁଃ ।
ଅପରେ ତୁ ହନୂମନ୍ତଂ ଶ୍ରୀମନ୍ତଂ ବାନରୋତ୍ତମମ୍ । ୪୩ ।
ଆପ୍ଲୁତ୍ୟ ଗିରିଶୃଙ୍ଗେଷୁ ସଂସ୍ପୃଶନ୍ତି ସ୍ମ ହର୍ଷିତାଃ ।
ଉକ୍ତବାକ୍ୟଂ ହନୂମନ୍ତମଙ୍ଗଦସ୍ତୁ ତଦାବ୍ରବୀତ୍ । ୪୪ ।
ସର୍ବେଷାଂ ହରିବୀରାଣାଂ ମଧ୍ୟେ ବାଚମନୁତ୍ତମାମ୍ ।
ସତ୍ତ୍ୱେ ବୀର୍ଯେ ନ ତେ କଶ୍ଚିତ୍ସମୋ ବାନର ! ବିଦ୍ୟତେ । ୪୫ ।

---

ହନୂମାନ୍ ସେତେବେଳେ ସେହି ଶ୍ରେଷ୍ଠ ବାନରମାନଙ୍କୁ କହିଲେ, "ଜନକନନ୍ଦିନୀ ଅଶୋକବନରେ ଅଛନ୍ତି, ମୁଁ ତାଙ୍କୁ ଦେଖି ଆସିଛି" । ୩୮ । ସେହି ଅନିନ୍ଦିତାଙ୍କୁ ଘୋରରୂପା ରାକ୍ଷସୀମାନେ ଜଗିରହିଛନ୍ତି । ସେ ଏକବେଣୀ ଧରିଛନ୍ତି ଏବଂ ରାମଙ୍କୁ ଦେଖିବା ପାଇଁ ଉତ୍ସୁକହୋଇ ଅତି ଦୁଃଖରେ ରହିଛନ୍ତି । ୩୯ । ସେ ଉପବାସରେ ଅତିଶୟ କ୍ଲାନ୍ତ, ମଳିନ, ଓ କ୍ଷୀଣହୋଇ ପଡ଼ିଛନ୍ତି ଏବଂ ତାଙ୍କର କେଶ ଜଟା ବାନ୍ଧିଗଲାଣି । ଅନନ୍ତର 'ମୁଁ ଦେଖିଛି' ମାରୁତିଙ୍କର ଏହି ବିଶେଷ ଅର୍ଥପୂର୍ଣ୍ଣ ଅମୃତସଦୃଶ ବଚନ ଶ୍ରବଣକରି ବାନରମାନେ ସମସ୍ତେ ଅତ୍ୟନ୍ତ ଆନନ୍ଦିତ ହେଲେ । ସେହି ମହାବଳୀ ବାନରମାନଙ୍କ ମଧ୍ୟରୁ କିଏ ସିଂହନାଦ କଲା, କିଏ ଗର୍ଜିଲା, କିଏ କିଲକିଲା ଧ୍ୱନି କଲା ଏବଂ କୌଣସି କୌଣସି କପିଶ୍ରେଷ୍ଠ ଆହ୍ଲାଦିତ ହୋଇ ଲାଙ୍ଗୁଡ଼କୁ ଉପରକୁ ଟେକିଲେ; କିଏ ଆୟତଦୀର୍ଘ ଲାଙ୍ଗୂଳ ବିକ୍ଷେପକଲେ ଏବଂ ଅନ୍ୟମାନେ ହୃଷ୍ଟଚିତ୍ତରେ ଗିରିଶୃଙ୍ଗରୁ ଲମ୍ଫଦେଇ ଶ୍ରୀମାନ୍ ବାନରୋତ୍ତମ ହନୁମାନଙ୍କୁ ସ୍ପର୍ଶ କରିବାକୁ ଲାଗିଲେ । ସେତେବେଳେ ହନୂମାନ୍ ଏହି କଥା କହିବାଉତ୍ତାରୁ ଅଙ୍ଗଦ ବାନର ବୀରମାନଙ୍କ ମଧ୍ୟରେ ଉତ୍ତମ ବାକ୍ୟରେ ତାଙ୍କୁ କହିଲେ । "ହେ

ଯଦବପ୍ଲୁତ୍ୟ ବିସ୍ତୀର୍ଣଂ ସାଗରଂ ପୁନରାଗତଃ ।
ଜୀବିତସ୍ୟ ପ୍ରଦାତା ନସ୍ତ୍ୱମେକୋ ବାନରୋତ୍ତମ !! ୪୬ ।
ତ୍ୱତ୍ପ୍ରସାଦାତ୍ସମେଷ୍ୟାମଃ ସିଦ୍ଧାର୍ଥା ରାଘବେଣ ହ ।
ଅହୋ ସ୍ୱାମିନି ତେ ଭକ୍ତିରହୋ ବୀର୍ଯମହୋ ଧୃତିଃ । ୪୭ ।
ଦିଷ୍ଟ୍ୟା ଦୃଷ୍ଟା ତ୍ୱୟା ଦେବୀ ରାମପତ୍ନୀ ଯଶସ୍ୱିନୀ ।
ଦିଷ୍ଟ୍ୟା ତ୍ୟକ୍ଷ୍ୟତି କାକୁତ୍ସ୍ଥଃ ଶୋକଂ ସୀତାବିୟୋଗଜମ୍ ।୪୮
ତତୋଽଙ୍ଗଦଂ ହନୂମନ୍ତଂ ଜାମ୍ବବନ୍ତଂ ଚ ବାନରାଃ ।
ପରିବାର୍ଯ ପ୍ରମୁଦିତା ଭେଜିରେ ବିପୁଲାଃ ଶିଳାଃ । ୪୯।
ଉପବିଷ୍ଟା ଗିରେସ୍ତସ୍ୟ ଶିଳାସୁ ବିପୁଳାସୁ ତେ ।
ଶ୍ରୋତୁକାମାଃ ସମୁଦ୍ରସ୍ୟ ଲଙ୍ଘନଂ ବାନରୋତ୍ତମାଃ । ୫୦ ।
ଦର୍ଶନଂ ଚାପି ଲଙ୍କାୟାଃ ସୀତାୟା ରାବଣସ୍ୟ ଚ ।
ତସ୍ଥୁଃ ପ୍ରାଞ୍ଜଲୟଃ ସର୍ବେ ହନୂମଦ୍ବଦନୋନ୍ମୁଖାଃ । ୫୧।
ତସ୍ଥୌ ତତ୍ରାଙ୍ଗଦଃ ଶ୍ରୀମାନ୍ ବାନରୈର୍ବହୁଭିର୍ବୃତଃ ।
ଉପାସ୍ୟମାନୋ ବିବୁଧୈର୍ଦିବି ଦେବପତିର୍ଯଥା । ୫୨ ।

---

ବାନର ! ବଳ ଏବଂ ବୀର୍ଯ୍ୟରେ ତୁମ୍ଭର ସମାନ କେହି ନାହିଁ । ତୁମ୍ଭେ ଏକାକୀ ବିସ୍ତୀର୍ଣ୍ଣ ସାଗର ଲଙ୍ଘନକରି ପୁନର୍ବାର ଏଠାକୁ ଫେରି ଆସିଅଛ । ହେ ବାନରଶ୍ରେଷ୍ଠ ! ଏକମାତ୍ର ତୁମ୍ଭେ ହିଁ ଆମ୍ଭମାନଙ୍କର ଜୀବନଦାତା ଅଟ ।୪୦-୪୬। ତୁମ୍ଭର ଅନୁଗ୍ରହରୁ ଆମ୍ଭେମାନେ ସଫଳମନୋରଥ ହୋଇ ସମସ୍ତେ ରାଘବଙ୍କ ସହିତ ମିଳିତହେବା । ତୁମ୍ଭର ପ୍ରଭୁଭକ୍ତି, ବୀର୍ଯ୍ୟ ଏବଂ ଧୈର୍ଯ୍ୟ ବାସ୍ତବିକ ଅଦ୍ଭୁତ । ୪୭ । ସୌଭାଗ୍ୟବଶତଃ ତୁମ୍ଭେ ଯଶସ୍ୱିନୀ ରାମପ୍ରିୟା ସୀତାଦେବୀଙ୍କର ଦର୍ଶନ ଲାଭକରିଅଛ ଏବଂ ରାମ ଯେ ସୀତାବିୟୋଗଜନିତ ଶୋକ ପରିତ୍ୟାଗ କରିବେ, ଏହା ପରମ ସୌଭାଗ୍ୟର କଥା" । ୪୮ । ଅନନ୍ତର ବାନରମାନେ ଅଙ୍ଗଦ, ହନୁମାନ୍ ଓ ଜାମ୍ବବାନଙ୍କୁ ବେଷ୍ଟନକରି, ଅତିଶୟ ଆନନ୍ଦିତହୋଇ, ଗୋଟିଏ ବିଶାଳ ଶିଳାଖଣ୍ଡ ଉପରେ ବସିଲେ । ୪୯ । ସେହି ଶ୍ରେଷ୍ଠ ବାନରମାନେ ସେହି ପର୍ବତର ବିଶାଳ ଶିଳାଖଣ୍ଡମାନଙ୍କ ଉପରେ ବସି, ସମୁଦ୍ର ଲଙ୍ଘନକରିବା କଥା ଏବଂ ସୀତା ଓ ରାବଣଙ୍କୁ ଦେଖିବା କଥା ଶୁଣିବାପାଇଁ ଇଚ୍ଛୁକହୋଇ ସମସ୍ତେ କରଯୋଡ଼ି ହନୁମାନଙ୍କ ମୁହଁକୁ ଚାହିଁ ରହିଲେ । ୫୦-୫୧ । ଦେବରାଜ ଇନ୍ଦ୍ର ଯେପରି ସ୍ୱର୍ଗରେ ଦେବତାମାନଙ୍କ କର୍ତ୍ତୃକ ଉପାସିତ ହୁଅନ୍ତି, ସେହିପରି ଶ୍ରୀମାନ୍ ଅଙ୍ଗଦ ବହୁସଂଖ୍ୟକ ବାନରଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ସେଠାରେ ବସିଲେ ।୫୨। କାନ୍ତିମାନ୍

ହନୂମତା କୀର୍ତ୍ତିମତା ଯଶସ୍ୱିନା
ତଥାଙ୍ଗଦେନାଙ୍ଗଦନଦ୍ଧବାହୁନା ।
ମୁଦା ତଦାଧ୍ୟାସିତମୁନ୍ନତଂ ମହ-
ନ୍ମହୀଧରାଗ୍ରଂ ଜ୍ୱଳତଂ ଶ୍ରିୟାଽଭବତ୍ । ୫୩ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ ସୁନ୍ଦରକାଣ୍ଡେ ହନୂମତ୍ପ୍ରତ୍ୟାଗମନଂ ନାମ ସପ୍ତପଞ୍ଚାଶଃ ସର୍ଗଃ ।

---

# ଅଷ୍ଟପଞ୍ଚାଶଃ ସର୍ଗଃ

## ହନୂମଦ୍‌ବୃତ୍ତାନୁକଥନମ୍

ତତସ୍ତସ୍ୟ ଗିରେଃ ଶୃଙ୍ଗଂ ମହେନ୍ଦ୍ରସ୍ୟ ମହାବଲାଃ ।
ହନୂମତ୍ପ୍ରମୁଖାଃ ପ୍ରୀତିଂ ହରୟୋ ଜଗ୍ମୁରୁତ୍ତମାମ୍ । ୧ ।
ପ୍ରୀତିମତ୍ସୂପବିଷ୍ଟେଷୁ ବାନରେଷୁ ମହାତ୍ମସୁ ।
ତଂ ତତଃ ପ୍ରୀତସଂହୃଷ୍ଟଃ ପ୍ରୀତିଯୁକ୍ତଂ ମହାକପିମ୍ । ୨ ।
ଜାମ୍ବବାନ୍ କାର୍ଯ୍ୟବୃତ୍ତାନ୍ତମପୃଚ୍ଛଦନିଲାତ୍ମଜମ୍ ।
କଥଂ ଦୃଷ୍ଟା ତ୍ୱୟା ଦେବୀ କଥଂ ବା ତତ୍ର ବର୍ତ୍ତତେ । ୩ ।

---

ହନୁମାନ୍ ଏବଂ ଯଶସ୍ୱୀ ଅଙ୍ଗଦ, ଅଙ୍ଗଦଦ୍ୱାରା ବାହୁଯୁଗଳ ଅଳଂକୃତ ଜନରୁ ଏହିପରି ଆନନ୍ଦରେ ଉପବିଷ୍ଟ ହେବାରୁ, ସେହି ମହୋଚ୍ଚ ପର୍ବତଶିଖର ସୌନ୍ଦର୍ଯ୍ୟରେ ଦେଦୀପ୍ୟମାନ ଦେଖାଗଲା । ୫୩ ।

---

# ୫୮ଶ ସର୍ଗ

## (ହନୁମାନ୍‌କର୍ତ୍ତୃକ ବୃତ୍ତାନ୍ତକଥନ)

ଅନନ୍ତର ହନୁମାନ୍ ପ୍ରଭୃତି ମହାବଳୀ ବାନରମାନେ ସେହି ମହେନ୍ଦ୍ର-ପର୍ବତର ଶୃଙ୍ଗରେ ବସି ପରମପ୍ରୀତି ଲାଭକଲେ । ୧ । ସେହି ମହାତ୍ମା ବାନରମାନେ ଏହିପରି ବସିବାଉତ୍ତାରୁ ଜାମ୍ବବାନ୍ ପ୍ରୀତିରେ ଆନନ୍ଦିତ ହୋଇ ପ୍ରୀତ-ଚିତ୍ତ ମହାକପି ପବନନନ୍ଦନ ହନୁମାନଙ୍କୁ ସମସ୍ତ ବୃତ୍ତାନ୍ତ ପଚାରିଲେ । ସେ କହିଲେ, "ତୁମ୍ଭେ କିପରି ଦେବୀଙ୍କୁ ଦେଖିଲ ? ସେ ସେଠାରେ କିପରିଭାବରେ ଅଛନ୍ତି ? କ୍ରୂରକର୍ମା

ତସ୍ୟାଂ ଗୃହୀ କଥଂ ବୃତ୍ତଃ କ୍ରୂରକର୍ମା ଦଶାନନଃ ।
ତତ୍ତ୍ୱତଃ ସର୍ବମେତନ୍ନଃ ପ୍ରବ୍ରୂହି ତ୍ୱଂ ମହାକପେ ! । ୪ ।
ସଂମାର୍ଗିତା କଥଂ ଦେବୀ କିଂ ଚ ସା ପ୍ରତ୍ୟଭାଷତ ।
ଶ୍ରୁତାର୍ଥାଶ୍ଚିନ୍ତୟିଷ୍ୟାମୋ ଭୂୟଃ କାର୍ଯବିନିଶ୍ଚୟମ୍ ।୫ ।
ଯଶ୍ଚାର୍ଥସ୍ତତ୍ର ବକ୍ତବ୍ୟୋ ଗତୈରସ୍ମାଭିରାତ୍ମବାନ୍ ।
ରକ୍ଷିତବ୍ୟଂ ଚ ଯତ୍ତତ୍ର ତଦ୍ଭବାନ୍ ବ୍ୟାକରୋତୁ ନଃ । ୬ ।
ସ ନିଯୁକ୍ତସ୍ତତସ୍ତେନ ସଂପ୍ରହୃଷ୍ଟତନୂରୁହଃ ।
ନମସ୍ୟନ୍ ଶିରସା ଦେବ୍ୟୈ ସୀତାୟୈ ପ୍ରତ୍ୟଭାଷତ । ୭ ।
ପ୍ରତ୍ୟକ୍ଷମେବ ଭବତାଂ ମହେନ୍ଦ୍ରାଗ୍ରାତ୍ ଖମାପ୍ଲୁତଃ ।
ଉଦଧେର୍ଦକ୍ଷିଣଂ ପାରଂ କାଙ୍କ୍ଷମାଣଃ ସମାହିତଃ । ୮ ।
ଗଚ୍ଛତଶ୍ଚ ହି ମେ ଘୋରଂ ବିଘ୍ନରୂପମିବାଭବତ୍ ।
କାଞ୍ଚନଂ ଶିଖରଂ ଦିବ୍ୟଂ ପଶ୍ୟାମି ସୁମନୋହରମ୍ । ୯ ।
ସ୍ଥିତଂ ପନ୍ଥାନମାବୃତ୍ୟ ମେନେ ବିଘ୍ନଂ ଚ ତଂ ନଗମ୍ ।
ଉପସଙ୍ଗମ୍ୟ ତଂ ଦିବ୍ୟଂ କାଞ୍ଚନଂ ନଗମୁତ୍ତମମ୍ । ୧୦ ।

---

ଦଶାନନ ତାଙ୍କ ପ୍ରୀତି କପରି ବ୍ୟବହାର କରୁଅଛି; ହେ ମହାକପେ ! ଆମ୍ଭମାନଙ୍କୁ ଏ ସମସ୍ତ ବୃତ୍ତାନ୍ତ ଯଥାର୍ଥଭାବରେ କହ । ୨-୪ । ତୁମ୍ଭେ କିରୂପେ ଦେବୀଙ୍କ ଅନୁସନ୍ଧାନ କଲ ? ସେ ବା ତୁମ୍ଭଙ୍କୁ କଣ କହିଲେ ? ଏହି ସମସ୍ତ ବିଷୟ ଶୁଣିଲେ ପୁନର୍ବାର ଆମ୍ଭେମାନେ କର୍ତ୍ତବ୍ୟ ସ୍ଥିରକରିବା । ୫ । ଆମ୍ଭେଜ୍ଞ ରାମଙ୍କ ନିକଟରେ କେଉଁ ବିଷୟ ବ୍ୟକ୍ତ କରିବା ଏବଂ କେଉଁ କେଉଁ ବିଷୟ ତାଙ୍କଠାରୁ ଗୋପନ ରଖିବା ତୁମ୍ଭେ ସେ ସମସ୍ତ ବିଷୟ ଆମ୍ଭମାନଙ୍କ ନିକଟରେ ବର୍ଣ୍ଣନାକର” । ୬ । ତାହାଙ୍କ କର୍ତ୍ତୃକ ଆଦିଷ୍ଟହୋଇ ଆନନ୍ଦରେ ହନୁମାନଙ୍କର ଶରୀର ରୋମାଞ୍ଚିତ ହୋଇଗଲା ଏବଂ ସେ ମୁଣ୍ଡନୁଆଁଇ ସୀତାଦେବୀଙ୍କୁ ପ୍ରଣାମକରି ଉତ୍ତରଦେଲେ । ୭ । “ସମୁଦ୍ରର ଦକ୍ଷିଣ ପାରକୁ ଯିବା ଉଦ୍ଦେଶ୍ୟରେ ମୁଁ ସମାହିତ ହୋଇ କପରି ମହେନ୍ଦ୍ର ପର୍ବତରୁ ଆକାଶକୁ ଡେଇଁଲି ତାହା ଆପଣମାନେ ପ୍ରତ୍ୟକ୍ଷରେ ଦେଖିଛନ୍ତି । ୮ । ମୁଁ ଯାଉ ଯାଉ ଏକ ଘୋର ବିଘ୍ନ ଉପସ୍ଥିତ ହେଲା । ମୁଁ ଗୋଟିଏ ମନୋହର ଦିବ୍ୟ ସୁବର୍ଣ୍ଣ ଶୃଙ୍ଗ ଦେଖିଲି । ତାହାକୁ ଦେଖି ସେହି ପର୍ବତକୁ ମୋର ସାକ୍ଷାତ ଗୋଟିଏ ବିଘ୍ନ ବୋଲି ମୁଁ ମନେକଲି । ମୁଁ ସେହି ସୁବର୍ଣ୍ଣମୟ ପର୍ବତର ସନ୍ନିହିତ ହୋଇ ମନେ ମନେ ସ୍ଥିରକଲି ଯେ ଏହାକୁ ଭୟ ଦେଖାଇବା ମୋର ଉଚିତ । ଏହା ଭାବି ମୁଁ

କୃତା ମେ ମନସା ବୁଦ୍ଧିର୍ଭର୍ତବ୍ୟୋଽନ୍ୟଂ ମୟେତି ଚ ।
ପ୍ରହତସ୍ୟ ମୟା ତସ୍ୟ ଲାଙ୍ଗୁଲେନ ମହାଗିରେଃ । ୧୧ ।
ଶିଖରଂ ସୂର୍ଯସଂକାଶଂ ବ୍ୟଶୀର୍ଯତ ସହସ୍ରଧା ।
ବ୍ୟବସାୟଂ ଚ ତଂ ବୁଦ୍ଧ୍ୱା ସ ହୋବାଚ ମହାଗିରିଃ । ୧୨ ।
ପୁତ୍ରେତି ମଧୁରାଂ ବାଣୀଂ ମନଃପ୍ରହ୍ଲାଦୟନ୍ନିବ ।
ପିତୃବ୍ୟଂ ଚାପି ମାଂ ବିଦ୍ଧି ସଖାୟଂ ମାତରିଶ୍ୱନଃ । ୧୩।
ମୈନାକମିତି ବିଖ୍ୟାତଂ ନିବସନ୍ତଂ ମହୋଦଧୌ ।
ପକ୍ଷବନ୍ତଃ ପୁରା ପୁତ୍ର ! ବଭୂବୁଃ ପର୍ବତୋତ୍ତମାଃ । ୧୪ ।
ଛନ୍ଦତଃ ପୃଥିବୀଂ ଚେରୁର୍ବାଧମାନାଃ ସମନ୍ତତଃ ।
ଶ୍ରୁତ୍ୱା ନଗାନାଂ ଚରିତଂ ମହେନ୍ଦ୍ରଃ ପାକଶାସନଃ । ୧୫ ।
ବଜ୍ରେଣ ଭଗବାନ୍ ପକ୍ଷୌ ଚିଚ୍ଛେଦୈଷାଂ ସହସ୍ରଶଃ ।
ଅହଂ ତୁ ମୋଚିତସ୍ତସ୍ମାତ୍ତବ ତ୍ରପିତ୍ରା ମହାତ୍ମନା । ୧୬ ।
ମାରୁତେନ ତଦା ବତ୍ସ ! ପ୍ରକ୍ଷିପ୍ତୋ ବରୁଣାଲୟେ ।
ରାଘବସ୍ୟ ମୟା ସାହ୍ୟେ ବର୍ତ୍ତିତବ୍ୟମରିନ୍ଦମ ! ୧୭ ।
ରାମୋ ଧର୍ମଭୃତାଂ ଶ୍ରେଷ୍ଠୋ ମହେନ୍ଦ୍ରସମବିକ୍ରମଃ ।
ଏତଚ୍ଛ୍ରୁତ୍ୱା ମୟା ତସ୍ୟ ମୈନାକସ୍ୟ ମହାତ୍ମନଃ । ୧୮ ।

---

ଲାଙ୍ଗୁଳଦ୍ୱାରା ଆଘାତ କରିବାରେ ସେହି ମହାଗିରିର ସୂର୍ଯ୍ୟସଦୃଶ କାନ୍ତିଯୁକ୍ତ ଶିଖର ସହସ୍ରଖଣ୍ଡରେ ବିଦୀର୍ଣ୍ଣ ହୋଇଗଲା । ସେହି ମହାଗିରି ନିଜର ଏହି ଅବସ୍ଥା ବୁଝି 'ପୁତ୍ର' ଏହି ସୁମଧୁର ବାକ୍ୟରେ ମୋର ହୃଦୟକୁ ଅତିଶୟ ଆହ୍ଲାଦିତ କରି କହିଲେ, 'ମୁଁ ପବନଙ୍କର ସଖା;ଅତଏବ ମୋତେ ତୁମ୍ଭେ ପିତୃବ୍ୟ ବୋଲି ଜାଣ । ମୁଁ ମୈନାକ ନାମରେ ବିଖ୍ୟାତ ଏବଂ ଏହି ମହୋଦଧି ମଧ୍ୟରେ ବାସକରେଁ । ପୂର୍ବକାଳରେ ବଡ଼ବଡ଼ ପର୍ବତମାନେ ପକ୍ଷବିଶିଷ୍ଟ ଥିଲେ;ସୁତରାଂ ସେମାନେ ଇଚ୍ଛାନୁସାରେ ପୃଥିବୀରେ ସର୍ବତ୍ର ବିଚରଣକରି ନାନା ବାଧା ଉତ୍ପାଦନ କରୁଥିଲେ । ଭଗବାନ୍ ପାକଶାସନ ଇନ୍ଦ୍ର ପର୍ବତମାନଙ୍କର ଏହି ଆଚରଣ ଶୁଣି ବଜ୍ରଦ୍ୱାରା ଏମାନଙ୍କର ପକ୍ଷମାନ ସହସ୍ରଖଣ୍ଡକରି ଛେଦନ କରିପକାଇଲେ । ତୁମ୍ଭର ପିତା ମହାତ୍ମା ପବନ ସେତେବେଳେ ମୋତେ ଏ ବିପଦରୁ ମୁକ୍ତକରିଥିଲେ । ୯-୧୬ । ହେ ବତ୍ସ ! ସେତେବେଳେ ମୁଁ ପବନଙ୍କ କର୍ତ୍ତୃକ ମହାସାଗର ମଧ୍ୟରେ ନିକ୍ଷିପ୍ତ ହୋଇଥିଲି । ହେ ଅରିଦମନ ! ରାମ ଧାର୍ମିକମାନଙ୍କ ମଧ୍ୟରେ ଶ୍ରେଷ୍ଠ ଏବଂ ଇନ୍ଦ୍ରଙ୍କସଦୃଶ ବିକ୍ରମଶାଳୀ

କାର୍ଯ୍ୟମାବେଦ୍ୟ ଚ ଗିରେରୁଦ୍ୟତଂ ବୈ ମନୋ ମମ ।
ତେନ ଚାହମନୁଜ୍ଞାତୋ ମୈନାକେନ ମହାତ୍ମନା । ୧୯ ।
ସ ଚାପ୍ୟନ୍ତର୍ହିତଃ ଶୈଳୋ ମାନୁଷେଣ ବପୁଷ୍ମତା ।
ଶରୀରେଣ ମହାଶୈଳଃ ଶୈଳେନ ଚ ମହୋଦଧୌ । ୨୦ ।
ଉତ୍ତମଂ ଜବମାସ୍ଥାୟ ଶେଷମଧ୍ୱାନମାସ୍ଥିତଃ ।
ତତୋଽହଂ ସୁଚିରଂ କାଲଂ ଜବେନାଭ୍ୟଗମଂ ପଥି । ୨୧ ।
ତତଃ ପଶ୍ୟାମ୍ୟହଂ ଦେବୀଂ ସୁରସାଂ ନାଗମାତରମ ।
ସମୁଦ୍ରମଧ୍ୟେ ସା ଦେବୀ ବଚନଂ ଚେଦମବ୍ରବୀତ୍ । ୨୨ ।
ମମ ଭକ୍ଷ୍ୟଃ ପ୍ରଦିଷ୍ଟସ୍ତ୍ୱମମରୈର୍ହରିସତ୍ତମ !
ତତସ୍ତ୍ୱାଂ ଭକ୍ଷୟିଷ୍ୟାମି ବିହିତସ୍ତ୍ୱଂ ହି ମେ ସୁରୈଃ । ୨୩ ।
ଏବମୁକ୍ତଃ ସୁରସୟା ପ୍ରାଞ୍ଜଳିଃ ପ୍ରଣତଃ ସ୍ଥିତଃ ।
ବିବର୍ଣ୍ଣବଦନୋ ଭୂତ୍ୱା ବାକ୍ୟଂ ଚେଦମୁଦୀରୟନ୍ । ୨୪ ।
ରାମୋ ଦାଶରଥିଃ ଶ୍ରୀମାନ୍ ପ୍ରବିଷ୍ଟୋ ଦଣ୍ଡକାବନମ୍ ।
ଲକ୍ଷ୍ମଣେନ ସହ ଭ୍ରାତ୍ରା ସୀତୟା ଚ ପରନ୍ତପଃ । ୨୫ ।

---

ଅଛନ୍ତି; ସୁତରାଂ ରାମଙ୍କର ସାହାଯ୍ୟ କରିବା ମୋର ଅବଶ୍ୟ କର୍ତ୍ତବ୍ୟ ।' ମୁଁ ମହାତ୍ମା ମୈନାକଙ୍କର ଏହି କଥା ଶୁଣି ମୋର କାର୍ଯ୍ୟର ଉଦ୍ଦେଶ୍ୟ ତାଙ୍କୁ ଜଣାଇଲି; କିନ୍ତୁ ମୋର ମନ ଯିବାପାଇଁ ଚଞ୍ଚଳ ହୋଇଉଠିଲା; ମହାତ୍ମା ମୈନାକ ମଧ୍ୟ ଯିବାକୁ ଅନୁମତି ଦେଲେ । ୧୭-୧୯ । ସେହି ମହାଶୈଳ ମନୁଷ୍ୟଶରୀର ଧାରଣ କରିଥିଲେ; ମାତ୍ର ସାଗରମଧ୍ୟରେ ଶୈଳରୂପ ଧରି ଅନ୍ତର୍ହିତ ହୋଇଗଲେ । ୨୦ । ଅନନ୍ତର ମୁଁ ବିଶେଷ ବେଗ ଅବଲମ୍ବନକରି ଅବଶିଷ୍ଟ ପଥ ଅତିକ୍ରମ କରିବାରେ ପ୍ରବୃତ୍ତ ହେଲି ଏବଂ ଅନେକ ସମୟ ପର୍ଯ୍ୟନ୍ତ ଏହିପରି ବେଗରେ ଅଗ୍ରସର ହେଲି । ୨୧ । ତଦନନ୍ତର ମୁଁ ନାଗମାତା ଦେବୀ ସୁରସାଙ୍କୁ ଦେଖିଲି । ସେହି ଦେବୀ ସମୁଦ୍ରମଧ୍ୟରେ ମୋତେ କହିଲେ । ୨୨ । 'ହେ ବାନରଶ୍ରେଷ୍ଠ ! ଦେବତାମାନେ ତୁମ୍ଭଙ୍କୁ ମୋର ଭକ୍ଷ୍ୟସ୍ୱରୂପ ନିର୍ଦ୍ଦିଷ୍ଟକରି ପଠାଇଅଛନ୍ତି; ଅତଏବ ମୋରପାଇଁ ଉଦ୍ଦିଷ୍ଟ ତୁମ୍ଭଙ୍କୁ ମୁଁ ଭକ୍ଷଣ କରିବି' । ୨୩ । ସୁରସା ଏହିପ୍ରକାର କହିବାରୁ ମୋର ମୁଖ ବିବର୍ଣ୍ଣ ହୋଇଗଲା ଏବଂ ମୁଁ ପ୍ରଣତଭାବରେ ଓ କୃତାଞ୍ଜଳିପୁଟରେ ଠିଆହୋଇ ଏହି କଥା ତାଙ୍କୁ କହିଲି । ୨୪ । 'ଶତ୍ରୁସୂଦନ ଦଶରଥନନ୍ଦନ ଶ୍ରୀମାନ୍ ରାମ ଭ୍ରାତା ଲକ୍ଷ୍ମଣ ଏବଂ ଭାର୍ଯ୍ୟା ସୀତାଙ୍କ ସହିତ ଦଣ୍ଡକାରଣ୍ୟରେ ପ୍ରବେଶ କରିଥିଲେ । ୨୫ ।

ତସ୍ୟ ସୀତା ହୃତା ଭାର୍ଯା ରାବଣେନ ଦୁରାତ୍ମନା ।
ତସ୍ୟାଃ ସକାଶଂ ଦୂତୋଽହଂ ଗମିଷ୍ୟେ ରାମଶାସନାତ୍ । ୨୬ ।
କର୍ତ୍ତୁମର୍ହସି ରାମସ୍ୟ ସାହାଯ୍ୟଂ ବିଷୟେ ସତ ।
ଅଥବା ମୈଥିଲୀଂ ଦୃଷ୍ଟ୍ୱା ରାମଂ ଚାକ୍ଲିଷ୍ଟକାରିଣମ୍ । ୨୭ ।
ଆଗମିଷ୍ୟାମି ତେ ବକ୍ତ୍ରଂ ସତ୍ୟଂ ପ୍ରତିଶୃଣୋମି ତେ ।
ଏବମୁକ୍ତା ମୟା ସା ତୁ ସୁରସା କାମରୂପିଣୀ । ୨୮ ।
ଅବ୍ରବୀନ୍ନାତିବର୍ତ୍ତେତ କଶ୍ଚିଦେଷ ବରୋ ମମ ।
ଏବମୁକ୍ତଃ ସୁରସୟା ଦଶଯୋଜନମାୟତଃ । ୨୯ ।
ତତୋଽର୍ଦ୍ଧଗୁଣବିସ୍ତାରୋ ବଭୂବାହଂ କ୍ଷଣେନ ତୁ ।
ମତ୍ପ୍ରମାଣାଧିକଂ ଚୈବ ବ୍ୟାଦିତଂ ତୁ ମୁଖଂ ତୟା । ୩୦ ।
ତଦ୍ଦୃଷ୍ଟ୍ୱା ବ୍ୟାଦିତଂ ତ୍ୱାସ୍ୟଂ ହ୍ରସ୍ୱଂ ହ୍ୟକରବଂ ପୁନଃ ।
ତସ୍ମିନ୍ମୁହୂର୍ତ୍ତେ ଚ ପୁନର୍ବଭୂବାଙ୍ଗୁଷ୍ଠସମ୍ମିତଃ । ୩୧ ।
ଅଭିପତ୍ୟାଶୁ ତଦ୍‌ବକ୍ତ୍ରଂ ନିର୍ଗତୋଽହଂ ତତଃ କ୍ଷଣାତ୍ ।
ଅବ୍ରବୀତ୍ସୁରସା ଦେବୀ ସ୍ୱେନ ରୂପେଣ ମାଂ ପୁନଃ । ୩୨ ।

---

ତାଙ୍କର ଭାର୍ଯ୍ୟା ସୀତାଙ୍କୁ ଦୁରାତ୍ମା ରାବଣ ହରଣ କରିଅଛି । ମୁଁ ରାମଙ୍କ ଆଦେଶରେ ଦୂତରୂପେ ତାଙ୍କ ନିକଟକୁ ଯିବି । ୨୬ । ଅତଏବ ତୁମ୍ଭେ ରାମଙ୍କ ରାଜ୍ୟରେ ବାସ କରୁଥିବାହେତୁ ଏ ବିଷୟରେ ତାଙ୍କୁ ସାହାଯ୍ୟ କରିବା ଉଚିତ; ଅଥବା ମୁଁ ତୁମ୍ଭ ନିକଟରେ ସତ୍ୟପ୍ରତିଜ୍ଞା କରୁଅଛି ଯେ ସୀତାଙ୍କୁ ଦେଖି ଏବଂ ଅକ୍ଲିଷ୍ଟକର୍ମା ରାମଙ୍କ ସହିତ ସାକ୍ଷାତକରି, ସେ ସମ୍ବାଦଦେଇ ପୁନର୍ବାର ତୁମ୍ଭ ମୁଖମଧ୍ୟକୁ ଆଗମନ କରିବି' । ମୁଁ ଏହିପରି କହିବାଉତ୍ତାରୁ ସେହି କାମରୂପିଣୀ ସୁରସା କହିଲେ, 'ମୁଁ ଏହି ବର ପାଇଅଛି ଯେ କେହି ମୋଠାରୁ ବର୍ତ୍ତିକରି ଯାଇପାରିବ ନାହିଁ' । ସୁରସା ମୋତେ ଏହି କଥା କହିବାରୁ ମୁଁ ଦଶଯୋଜନ ଆକାରରେ ବର୍ଦ୍ଧିତହେଲି ।୨୭-୨୯। ପୁନର୍ବାର କ୍ଷଣକମଧ୍ୟରେ ମୁଁ ତାହାର ଦେଢ଼ଗୁଣ ବଢ଼ିଗଲି; କିନ୍ତୁ ସେ ମୋ ଆକାର ଅପେକ୍ଷା ଅଧିକକରି ମୁଖବ୍ୟାଦାନ କଲା । ୩୦ । ତାହାର ଏହି ବିସ୍ତାରିତ ମୁଖ ଦେଖି ମୁଁ ନିଜର ଶରୀରକୁ ସଙ୍କୁଚିତ କରିଦେଲି ଏବଂ ସେହି ମୁହୂର୍ତ୍ତରେ ପୁନର୍ବାର ଅଙ୍ଗୁଷ୍ଠ ପରିମାଣ ହୋଇଗଲି । ୩୧ । ଅନନ୍ତର ମୁଁ ତାହାର ମୁଖମଧ୍ୟରେ ପ୍ରବେଶକରି ତତ୍‌କ୍ଷଣାତ୍ ବିନିର୍ଗତ ହୋଇଗଲି । ଅତଃପର ଦେବୀ ସୁରସା ନିଜର ରୂପ ଧାରଣକରି ମୋତେ ପୁନର୍ବାର କହିଲେ । ୩୨ । 'ହେ ସୌମ୍ୟ !

ଅର୍ଥସିଦ୍ଧୌ ହରିଶ୍ରେଷ୍ଠ ! ଗଚ୍ଛ ସୌମ୍ୟ ! ଯଥାସୁଖମ୍ ।
ସମାନୟ ଚ ବୈଦେହୀଂ ରାଘବେଣ ମହାତ୍ମନା । ୩୩ ।
ସୁଖୀ ଭବ ମହାବାହୋ ! ପ୍ରୀତାସ୍ମି ତବ ବାନର ! ।
ତତୋଽହଂ ସାଧୁ ସାଧ୍ୱୀତି ସର୍ବଭୂତୈଃ ପ୍ରଶଂସିତଃ । ୩୪ ।
ତତୋଽନ୍ତରିକ୍ଷଂ ବିପୁଳଂ ପ୍ଲୁତୋଽହଂ ଗରୁଡ଼ୋ ଯଥା ।
ଛାୟା ମେ ନିଗୃହୀତା ଚ ନ ଚ ପଶ୍ୟାମି କିଂଚନ । ୩୫ ।
ସୋଽହଂ ବିଗତବେଗସ୍ତୁ ଦିଶୋ ଦଶ ବିଲୋକୟନ୍ ।
ନ କିଂଚିତ୍ତତ୍ର ପଶ୍ୟାମି ଯେନ ମେ ବିହତା ଗତିଃ । ୩୬ ।
ଅଥ ମେ ବୁଦ୍ଧିରୁତ୍ପନ୍ନା କିଂ ନାମ ଗମନେ ମମ ।
ଈଦୃଶୋ ବିଘ୍ନ ଉତ୍ପନ୍ନୋ ରୂପମତ୍ର ନ ଦୃଶ୍ୟତେ । ୩୭ ।
ଅଧୋଭାଗେ ତୁ ମେ ଦୃଷ୍ଟିଃ ଶୋଚତଃ ପତିତା ତଦା ।
ତତ୍ରାଦ୍ରାକ୍ଷମହଂ ଭୀମାଂ ରାକ୍ଷସୀଂ ସଲିଳେଶୟାମ୍ । ୩୮ ।
ପ୍ରହସ୍ୟ ଚ ମହାନାଦମୁକ୍ତୋଽହଂ ଭୀମୟା ତୟା ।
ଅବସ୍ଥିତମସଂଭ୍ରାନ୍ତମିଦଂ ବାକ୍ୟମଶୋଭନମ୍ । ୩୯ ।

---

ବାନରଶ୍ରେଷ୍ଠ ! ତୁମ୍ଭେ ଅର୍ଥସିଦ୍ଧି ନିମନ୍ତେ ଯଥାସୁଖରେ ଗମନକର ଏବଂ ମହାତ୍ମା ରାମଙ୍କ ସହିତ ବୈଦେହୀଙ୍କୁ ସମ୍ମିଳିତ କରାଅ । ୩୩ । ହେ ମହାବାହୁ ବାନର ! ମୁଁ ତୁମ୍ଭଠାରେ ପ୍ରୀତ ହୋଇଅଛି, ତୁମ୍ଭେ ସୁଖୀ ହୁଅ ।' ସମସ୍ତ ପ୍ରାଣୀ ସାଧୁ ସାଧୁ ବୋଲି ମୋତେ ପ୍ରଶଂସା କରିବାକୁ ଲାଗିଲେ । ୩୪ । ତଦନନ୍ତର ମୁଁ ଗରୁଡଙ୍କପରି ସୁବିଶାଳ ଆକାଶମଣ୍ଡଳରେ ପ୍ରବେଶକଲି । ମୋର ସେତେବେଳେ ଛାୟା ଆକର୍ଷିତ ହେବାକୁ ଲାଗିଲା; କିନ୍ତୁ ମୁଁ କାହାରିକୁ ଦେଖିପାରିଲି ନାହିଁ । ୩୫ । ଗତିରୋଧ ହେବାରୁ ମୁଁ ଦଶଦିଗକୁ ନିରୀକ୍ଷଣ କରିବାକୁ ଲାଗିଲି; ତଥାପି କିଏ ମୋର ଗତିରୋଧକଲା ତାହାର ରୂପ କିଛି ଦେଖିପାରିଲି ନାହିଁ ।୩୬। ଅନନ୍ତର ମୁଁ ଭାବିବାକୁ ଲାଗିଲି, 'କାହିଁକି ଆକାଶରେ ମୋର ଗତିରେ ଏପରି ବିଘ୍ନ ଘଟୁଅଛି ! ଏଠାରେ ତ ମୁଁ କୌଣସି ପ୍ରାଣୀର ରୂପ ଦେଖିପାରୁ ନାହିଁ । ୩୭ । ଅନନ୍ତର ଶୋକ କରୁ କରୁ ମୋର ଦୃଷ୍ଟି ଅଧୋଭାଗରେ ପଡ଼ିବାରୁ ଦେଖିଲି, ଗୋଟିଏ ଘୋରରୂପା ରାକ୍ଷସୀ ସେଠାରେ ଜଳରେ ଶୋଇରହିଛି । ୩୮ । ମୁଁ କୌଣସିପ୍ରକାର ଭୀତ ନ ହୋଇ ରହିଥିଲି । ସେହି ଭୟଙ୍କରୀ ରାକ୍ଷସୀ ବିକଟନାଦରେ ହାସ୍ୟକରି ମୋତେ ଏହି ଅସୁନ୍ଦର କଥା କହିଲା । ୩୯ । 'ହେ ମହାକାୟ ! ମୁଁ ବହୁକାଳ

କ୍ୱାପି ଗନ୍ତା ମହାକାୟ ! କ୍ଷୁଧିତାୟା ମମେପସିତଃ ।
ଭକ୍ଷ୍ୟଃ ପ୍ରୀଣୟ ମେ ଦେହଂ ଶରମାହାରବର୍ଜିତମ୍ । ୪୦ ।
ବାଢ଼ମିତ୍ୟେବ ତାଂ ବାଣୀଂ ପ୍ରତ୍ୟଗୃହ୍ଣାମହଂ ତତଃ ।
ଆସ୍ୟପ୍ରମାଣାଦଧିକଂ ତସ୍ୟାଃ କାୟମପୂରୟମ୍ । ୪୧ ।
ତସ୍ୟାଶ୍ଚାସ୍ୟଂ ମହଦ୍ଭୀମଂ ବର୍ଧତେ ମମ ଭକ୍ଷଣେ ।
ନ ତୁ ମାଂ ସାନୁବୁବୁଧେ ମମ ବା ନିକୃତଂ କୃତମ୍ । ୪୨ ।
ତତୋଽହଂ ବିପୁଳଂ ରୂପଂ ସଂକ୍ଷିପ୍ୟ ନିମିଷାନ୍ତରାତ୍ ।
ତସ୍ୟା ହୃଦୟମାଦାୟ ପ୍ରପତାମି ନଭସ୍ତଲମ୍ । ୪୩ ।
ସା ବିସୃଷ୍ଟଭୁଜା ଭୀମା ପପାତ ଲବଣାମ୍ଭସି ।
ମୟା ପର୍ବତସଂକାଶା ନିକୃତ୍ତହୃଦୟା ସତୀ । ୪୪ ।
ଶୃଣୋମି ଖଗତାନାଂ ଚ ବାଚଃ ସୌମ୍ୟା ମହାତ୍ମନାମ୍ ।
ରାକ୍ଷସୀ ସିଂହିକା ଭୀମା କ୍ଷିପ୍ରଂ ହନୁମତା ହତା । ୪୫ ।
ତାଂ ହତ୍ୱା ପୁନରେବାହଂ କୃତ୍ୟମାତ୍ୟୟିକଂ ସ୍ମରନ୍ ।
ଗତ୍ୱା ଚ ମହଦଧ୍ୱାନଂ ପଶ୍ୟାମି ନଗମଣ୍ଡିତମ୍ । ୪୬ ।

---

ହେଲି ଅନାହାରରେ ରହିଥିବାରୁ କ୍ଷୁଧିତ ହୋଇଅଛି; ସୁତରାଂ ତୁମ୍ଭଙ୍କୁ ଭକ୍ଷଣ କରିବାକୁ ମୁଁ ଇଚ୍ଛାକରୁଛି । ତୁମ୍ଭେ କୁଆଡ଼େ ଯାଉଛ ? ତୁମ୍ଭେ ମୋ ଶରୀରର ପ୍ରୀତିବିଧାନ କର' । ୪୦ । ମୁଁ 'ତାହାହେଉ' ବୋଲି କହି ତାହା କଥାରେ ସ୍ୱୀକାରକଲି ଏବଂ ତା'ର ମୁଖର ପରିମାଣ ଅପେକ୍ଷା ନିଜ ଶରୀରକୁ ଅଧିକ ବଢ଼ାଇଲି । ୪୧ । ସେ ରାକ୍ଷସୀ ମୋତେ ଭକ୍ଷଣ କରିବାପାଇଁ ତାହାର ଭୀଷଣ ମୁଖକୁ ବଢ଼ାଇବାକୁ ଲାଗିଲା । ସେ ମୋତେ ବା ମୁଁ ସେ ନିଜ ଶରୀରକୁ ରୂପାନ୍ତରିତ କରିଥିଲି ତାହା ଜାଣିପାରିଲା ନାହିଁ । ୪୨ । ମୁଁ ମୁହୂର୍ତ୍ତକମଧ୍ୟରେ ନିଜର ବିଶାଳକାୟକୁ ସଙ୍କୁଚିତକରି ତାହାର ହୃତ୍ପିଣ୍ଡ ଗ୍ରହଣପୂର୍ବକ ଆକାଶକୁ ଉଠିଲି । । ୪୩ । ତାର ହୃଦୟ ମୋ ଦ୍ୱାରା କର୍ତ୍ତିତ ହେବାରୁ ସେହି ଭୀମରୂପା ପର୍ବତାକାର ରାକ୍ଷସୀ ଭୁଜଦ୍ୱୟ ବିକ୍ଷିପ୍ତକରି ଲବଣସାଗରରେ ପଡ଼ିଗଲା । ୪୪ । ଏହି ସମୟରେ ମହାତ୍ମା ଆକାଶଗାମୀ ସିଦ୍ଧ ଓ ଚାରଣମାନଙ୍କର ମଧୁର ବାକ୍ୟ ମୁଁ ଶୁଣିଲି ଯେ 'ହନୁମାନ୍ ଭୟଙ୍କରୀ ସିଂହିକା ରାକ୍ଷସୀକୁ ଅତି ସତ୍ୱର ନିହତ କରିଛନ୍ତି ।' । ୪୫ । ତାହାକୁ ନିହତକରି ଓ ଅତି ଶୀଘ୍ର କରଣୀୟ ବିଷୟ ସ୍ମରଣକରି, ବହୁଦୂରପଥ ଗମନପୂର୍ବକ ପର୍ବତମଣ୍ଡିତ ମହାସାଗରର ଦକ୍ଷିଣ ତୀର ଦେଖିଲି । ଲଙ୍କା

ଦକ୍ଷିଣଂ ତୀରମୁଦଧେର୍ଲଙ୍କା ଯତ୍ର ଗତା ପୁରୀ ।
ଅସ୍ତଂ ଦିନକରେ ଯାତେ ରକ୍ଷସାଂ ନିଲୟଂ ପୁରୀମ୍ । ୪୭ ।
ପ୍ରବିଷ୍ଟୋଽହମବିଜ୍ଞାତୋ ରକ୍ଷୋଭିର୍ଭୀମବିକ୍ରମୈଃ ।
ତତ୍ର ପ୍ରବିଶତଶ୍ଚାପି କଳ୍ପାନ୍ତଘନସପ୍ରଭା । ୪୮ ।
ଅଟ୍ଟହାସଂ ବିମୁଞ୍ଚନ୍ତୀ ନାରୀ କାପ୍ୟୁତ୍ଥିତା ପୁରଃ ।
ଜିଘାଂସନ୍ତୀଂ ତତସ୍ତାଂ ତୁ ଜ୍ୱଲଦଗ୍ନିଶିରୋରୁହାମ୍ । ୪୯ ।
ସବ୍ୟମୁଷ୍ଟିପ୍ରହାରେଣ ପରାଜିତ୍ୟ ସୁଭୈରବାମ୍ ।
ପ୍ରଦୋଷକାଳେ ପ୍ରବିଶନ୍ ଭୀତୟାହଂ ତୟୋଦିତଃ । ୫୦ ।
ଅହଂ ଲଙ୍କାପୁରୀ ବୀର ! ନିର୍ଜିତା ବିକ୍ରମେଣ ତେ ।
ଯସ୍ମାତ୍ତସ୍ମାଦ୍ ବିଜେତାସି ସର୍ବରକ୍ଷାଂସ୍ୟଶେଷତଃ । ୫୧ ।
ତତ୍ରାହଂ ସର୍ବରାତ୍ରଂ ତୁ ବିଚରଞ୍ଜନକାତ୍ମଜାମ୍ ।
ରାବଣାନ୍ତଃପୁରଗତୋ ନ ଚାପଶ୍ୟଂ ସୁମଧ୍ୟମାମ୍ । ୫୨ ।
ତତଃ ସୀତାମପଶ୍ୟଂସ୍ତୁ ରାବଣସ୍ୟ ନିବେଶନେ ।
ଶୋକସାଗରମାସାଦ୍ୟ ନ ପାରମୁପଲକ୍ଷୟେ । ୫୩ ।

---

ନଗରୀ ସେହି ସ୍ଥାନରେ ଅବସ୍ଥିତ । ସୂର୍ଯ୍ୟ ଅସ୍ତ ହେବାଉତ୍ତାରୁ ମୁଁ ଭୀଷଣପରାକ୍ରମୀ ରାକ୍ଷସମାନଙ୍କର ଅଜ୍ଞାତସାରରେ ସେମାନଙ୍କର ଆବାସଭୂମି ଲଙ୍କାନଗରୀରେ ପ୍ରବେଶକଲି । ମୁଁ ସେହି ପୁରୀ ମଧ୍ୟରେ ପ୍ରବେଶ କଲାବେଳେ, ମେଘସଦୃଶୀ ଏକ କାମିନୀ ଅଟ୍ଟହାସକରି ମୋ ସମ୍ମୁଖରେ ଉପସ୍ଥିତ ହେଲା । ତାହାର କେଶରାଜି ପ୍ରଜ୍ୱଳିତ ଅଗ୍ନିସଦୃଶ । ସେ ମୋତେ ହତ୍ୟା କରିବା ପାଇଁ ଉଦ୍ୟତ ହେବାରୁ ମୁଁ ବାମମୁଷ୍ଟି ପ୍ରହାରଦ୍ୱାରା ସେହି ଭୟଙ୍କରୀ ରାକ୍ଷସୀକୁ ପରାଜିତ କରି ସନ୍ଧ୍ୟା ସମୟରେ ନଗରୀରେ ପ୍ରବେଶ କଲି । ସେତେବେଳେ ସେ ଭୀତ ହୋଇ ମୋତେ କହିଲା । ୪୭-୫୦ । 'ହେ ବୀର ! ମୁଁ ସ୍ୱୟଂ ଲଙ୍କାପୁରୀ । ତୁମ୍ଭେ ଯେତେବେଳେ ନିଜର ବିକ୍ରମଦ୍ୱାରା ମୋତେ ପରାଜିତ କରିଅଛ, ସେତେବେଳେ ନିଶ୍ଚୟ ସମସ୍ତ ରାକ୍ଷସଙ୍କୁ ସମ୍ପୂର୍ଣ୍ଣରୂପେ ଜୟକରିବ' । ୫୧ । ଅନନ୍ତର ମୁଁ ରାବଣର ଅନ୍ତଃପୁର ମଧ୍ୟରେ ସମସ୍ତ ରାତି ବିଚରଣକରି ଜନକନନ୍ଦିନୀଙ୍କୁ ଖୋଜିବାକୁ ଲାଗିଲି; ମାତ୍ର ସେ ସୁମଧ୍ୟମାଙ୍କୁ ଦେଖିଲି ନାହିଁ ।୫୨। ରାବଣର ଗୃହମଧ୍ୟରେ ସୀତାଙ୍କୁ ଦେଖିନ ପାରି ମୁଁ ଶୋକସାଗରରେ ନିମଗ୍ନ ହୋଇ ତାର ପାର ପାଇପାରିଲି ନାହିଁ । ୫୩ । ଏହିପରି ଚିନ୍ତାକରୁକରୁ ମୁଁ ଗୋଟିଏ ସୁବର୍ଣ୍ଣପ୍ରାଚୀର-

ଶୋଚତା ଚ ମୟା ଦୃଷ୍ଟଂ ପ୍ରାକାରେଣାଭିସଂବୃତମ୍ ।
କାଞ୍ଚନେନ ବିକୃଷ୍ଟେନ ଗୃହୋପବନମୁତ୍ତମମ୍ । ୫୪ ।
ସପ୍ରାକାରମବପ୍ଳୁତ୍ୟ ପଶ୍ୟାମି ବହୁପାଦପମ୍ ।
ଅଶୋକବନିକାମଧ୍ୟେ ଶିଂଶପାପାଦପୋ ମହାନ୍ । ୫୫ ।
ତମାରୁହ୍ୟ ଚ ପଶ୍ୟାମି କାଞ୍ଚନଂ କଦଳୀବନମ୍ ।
ଅଦୂରାଚ୍ଛିଂଶପାବୃକ୍ଷାତ୍ପଶ୍ୟାମି ବରବର୍ଣ୍ଣିନୀମ୍ । ୫୬ ।
ଶ୍ୟାମାଂ କମଲପତ୍ରାକ୍ଷୀମୁପବାସକୃଶାନନାମ୍ ।
ତଦେକବାସଃସଂବୀତାଂ ରଜୋଧ୍ୱସ୍ତଶିରୋରୁହାମ୍ । ୫୭ ।
ଶୋକସନ୍ତାପଦୀନାଙ୍ଗୀଂ ସୀତାଂ ଭର୍ତୃହିତେ ସ୍ଥିତାମ୍ ।
ରାକ୍ଷସୀଭିର୍ବିରୂପାଭିଃ କ୍ରୂରାଭିରଭିସଂବୃତାମ୍ । ୫୮ ।
ମାଂସଶୋଣିତଭକ୍ଷ୍ୟାଭିର୍ବ୍ୟାଘ୍ରୀଭିର୍ହରିଣୀଂ ଯଥା ।
ସା ମୟା ରାକ୍ଷସୀମଧ୍ୟେ ତର୍ଜ୍ଜମାନା ମୁହୁର୍ମୁହୁଃ । ୫୯ ।
ଏକବେଣୀଧରା ଦୀନା ଭର୍ତୃଚିନ୍ତାପରାୟଣା ।
ଭୂମିଶଯ୍ୟାବିବର୍ଣ୍ଣାଙ୍ଗୀ ପଦ୍ମିନୀବ ହିମାଗମେ । ୬୦ ।

---

ପରିବେଷ୍ଟିତ ସୁନ୍ଦର ଉପବନ ଦେଖିଲି । ୫୪ । ମୁଁ ସେହି ପ୍ରାଚୀର ଉପରକୁ ଡେଇଁ ବହୁ ବୃକ୍ଷସମନ୍ୱିତ ଅଶୋକବନ ମଧ୍ୟରେ ଏକ ବୃହତ୍ ଶିଂଶପାବୃକ୍ଷ ଦେଖିଲି ।୫୫। ସେହି ବୃକ୍ଷ ଉପରେ ଆରୋହଣକରି ମୁଁ ଅଦୂରରେ ଗୋଟିଏ କାଞ୍ଚନବର୍ଣ୍ଣ କଦଳୀ-ବନ ଦେଖିଲି ଏବଂ ସେହି ବରବର୍ଣ୍ଣିନୀ ସୀତାଙ୍କୁ ମଧ୍ୟ ଦେଖିଲି । ୫୬ । ଉପବାସ କରି ସେହି ସୁନ୍ଦରୀ ପଦ୍ମଲୋଚନାଙ୍କର ମୁଖ କ୍ଷୀଣ ହୋଇଯାଇଥିଲା । ସେ ଖଣ୍ଡିଏ ମାତ୍ର ବସ୍ତ୍ର ପରିଧାନ କରିଥିଲେ ଏବଂ ତାଙ୍କର କେଶରାଜି ଧୂଳିଧୂସରିତ ହୋଇଥିଲା । ୫୭ । ସୀତାଙ୍କର ଶରୀର ଶୋକସନ୍ତାପରେ ଦୁଃଖଭାବାପନ୍ନ ଦେଖାଯାଉଥିଲା । ସେ ସର୍ବଦା ସ୍ୱାମୀଙ୍କ ହିତ କାମନାରେ ରତଥିଲେ । ବିରୂପା କ୍ରୂର ମାଂସଶୋଣିତ-ଭକ୍ଷିଣୀ ରାକ୍ଷସୀମାନେ, ହରିଣୀକୁ ବ୍ୟାଘ୍ରୀମାନେ ଘେରିରହିଥିଲାପରି ତାଙ୍କୁ ଘେରି ରହିଥିଲେ ଓ ବାରମ୍ବାର ତାହାଙ୍କୁ ତର୍ଜନ କରୁଥିଲେ । ୫୮-୫୯ । ହିମଋତୁର ଆଗମନରେ ପଦ୍ମ ଯେପରି ବିବର୍ଣ୍ଣ ହୋଇଯାଏ, ସେହିପରି ସ୍ୱାମୀଙ୍କ ଚିନ୍ତାରେ ଭୂମିରେ ଶୟନ କରିବାଦ୍ୱାରା ତାଙ୍କର ଶରୀର ମଳିନ ହୋଇଯାଇଥିଲା ଏବଂ ସେ ଏକବେଣୀ ଧାରଣପୂର୍ବକ ଦୀନଭାବରେ ରହିଥିଲେ । ୬୦ । ରାବଣକର୍ତ୍ତୃକ

ରାବଣାଦ୍‌ବନବୃତ୍ତାର୍ଥୀ ମର୍ତ୍ତବ୍ୟେ କୃତନିଶ୍ଚୟା ।
କଥଂଚିନ୍ମୃଗଶାବାକ୍ଷୀ ତୂର୍ଣମାସାଦିତା ମୟା । ୭୧ ।
ତାଂ ଦୃଷ୍ଟ୍ୱା ତାଦୃଶୀଂ ନାରୀଂ ରାମପତ୍ନୀଂ ଯଶସ୍ୱିନୀମ୍ ।
ତମେବ ଚ ଶିଂଶପାବୃକ୍ଷେ ପଶ୍ୟନ୍ନହମବସ୍ଥିତଃ । ୭୨ ।
ତତୋ ହଲହଲାଶବ୍ଦଂ କାଞ୍ଚୀନୂପୁରମିଶ୍ରିତମ୍ ।
ଶୃଣୋମ୍ୟଧିକଗମ୍ଭୀରଂ ରାବଣସ୍ୟ ନିବେଶନେ । ୭୩ ।
ତତୋଽହଂ ପରମୋଦ୍‌ବିଗ୍ନଃ ସ୍ୱରୂପଂ ପ୍ରତ୍ୟସଂହରମ୍ ।
ଅହଂ ଚ ଶିଂଶପାବୃକ୍ଷେ ପକ୍ଷୀବ ଗହନେ ସ୍ଥିତଃ । ୭୪ ।
ତତୋ ରାବଣଦାରାଶ୍ଚ ରାବଣଶ୍ଚ ମହାବଳଃ ।
ତଂ ଦେଶମନୁସଂପ୍ରାପ୍ତୋ ଯତ୍ର ସୀତା ବ୍ୟବସ୍ଥିତା । ୭୫ ।
ତଂ ଦୃଷ୍ଟ୍ୱାଥ ବରାରୋହା ସୀତା ରକ୍ଷୋଗଣେଶ୍ୱରମ ।
ସଂକୁଚ୍ୟୋରୂସ୍ତନୌ ପୀନୌ ବାହୁଭ୍ୟାଂ ପରିରଭ୍ୟ ଚ । ୭୬ ।
ବିତ୍ରସ୍ତାଂ ପରମୋଦ୍‌ବିଗ୍ନାଂ ବୀକ୍ଷମାଣାମିତସ୍ତତଃ ।
ତ୍ରାଣଂ କଂଚିଦପଶ୍ୟନ୍ତୀଂ ବେପମାନାଂ ତପସ୍ୱିନୀମ୍ । ୭୭ ।
ତାମୁବାଚ ଦଶଗ୍ରୀବଃ ସୀତାଂ ପରମଦୁଃଖିତାମ୍ ।
ଅବାକ୍‌ଶିରାଃ ପ୍ରପତିତୋ ବହୁମନ୍ୟସ୍ୱ ଭାମିନି ! । ୭୮ ।

---

ସୁଖରୁ ବଞ୍ଚିତ ହୋଇ ସେ ମରିବା ପାଇଁ ନିଶ୍ଚୟ କରିଥିଲେ । ମୁଁ କୌଣସି-ପ୍ରକାରେ ସେହି ମୃଗଶିଶୁନୟନାଙ୍କୁ ତତ୍‌କ୍ଷଣାତ୍ ପାଇଲି । ୭୧ । ମୁଁ ସେହି ଯଶସ୍ୱିନୀ ରାମପତ୍ନୀଙ୍କୁ ସେହି ଅବସ୍ଥାରେ ଦେଖି ତାଙ୍କୁ ହିଁ ଲକ୍ଷ୍ୟକରି ସେହି ଶିଂଶପା ବୃକ୍ଷରେ ରହିଲି । ୭୨ । ଅନନ୍ତର ରାବଣ ଗୃହରେ କାଞ୍ଚନ ନୂପୁରଧ୍ୱନି-ମିଶ୍ରିତ ଅତି ଗମ୍ଭୀର ହଳହଳା ଶବ୍ଦ ମୁଁ ଶୁଣିଲି । ୭୩ । ସେତେବେଳେ ମୁଁ ଅତ୍ୟନ୍ତ ଉଦ୍‌ବିଗ୍ନ ହୋଇ ନିଜ ରୂପକୁ ଘୋଡ଼ାଇ ପକ୍ଷୀପରି ସେହି ଶିଂଶପା ବୃକ୍ଷର ନିବିଡ଼ ପତ୍ରମଧ୍ୟରେ ବସିରହିଲି । ୭୪ । ଅନନ୍ତର ମହାବଳ ରାବଣ ଓ ତାହାର ପତ୍ନୀମାନେ, ଯେଉଁଠାରେ ସୀତା ବସିରହିଥିଲେ ସେହିସ୍ଥାନରେ ଆସି ପହଞ୍ଚିଲେ । ୭୫ । ସେହି ରାକ୍ଷସରାଜଙ୍କୁ ଦେଖି ବରାରୋହା ସୀତା ଅତ୍ୟନ୍ତ ତ୍ରସ୍ତ ଏବଂ ଉଦ୍‌ବିଗ୍ନ ହୋଇ, ଊରୁଦ୍ୱୟ ସଙ୍କୁଚିତକରି, ବାହୁଦ୍ୱାରା ପୀନସ୍ତନଯୁଗଳକୁ ଆଚ୍ଛାଦିତ କଲେ ଏବଂ ଇତସ୍ତତଃ ଦୃଷ୍ଟିପାତକରି ପରିତ୍ରାଣର କୌଣସି ଉପାୟ ନ ଦେଖି କମ୍ପମାନ ହେବାକୁ ଲାଗିଲେ । ୭୬-୭୭ । ଦଶଗ୍ରୀବ ଅତ୍ୟନ୍ତ ଦୁଃଖିତା ରାମପ୍ରିୟା ସୀତାଙ୍କୁ କହିଲା, 'ମୁଁ ମସ୍ତକ ନତକରି ତୁମ୍ଭ ପାଦତଳେ ପଡ଼ୁଛି, ମୋତେ

ଯଦ ଚେତ୍ତ୍ୱଂ ତୁ ମାଂ ଦର୍ପାନ୍ନାଭିନନ୍ଦସେ ଗର୍ବିତେ !
ଦ୍ୱିମାସାନନ୍ତରଂ ସୀତେ ! ପାସ୍ୟାମି ରୁଧିରଂ ତବ । ୬୯ ।
ଏତଚ୍ଛ୍ରୁତ୍ୱା ବଚସ୍ତସ୍ୟ ରାବଣସ୍ୟ ଦୁରାତ୍ମନଃ ।
ଉବାଚ ପରମକ୍ରୁଦ୍ଧା ସୀତା ବଚନମୁତ୍ତମମ୍ । ୭୦ ।
ରାକ୍ଷସାଧମ ! ରାମସ୍ୟ ଭାର୍ଯାମମିତତେଜସଃ ।
ଇକ୍ଷ୍ୱାକୁବଂଶନାଥସ୍ୟ ସ୍ନୁଷାଂ ଦଶରଥସ୍ୟ ଚ । ୭୧ ।
ଅବାଚ୍ୟଂ ବଦତୋ ଜିହ୍ୱା କଥଂ ନ ପତିତା ତବ ।
କ୍ୱଂସ୍ୱିଦ୍ ବୀର୍ଯ ! ତବାନାର୍ଯ ! ଯୋ ମାଂ ଭର୍ତୁରସଂନ୍ନିଧୌ । ୭୨ ।
ଅପହୃତ୍ୟାଗତଃ ପାପ ! ତେନାଦୃଷ୍ଟୋ ମହାତ୍ମନା ।
ନ ତ୍ୱଂ ରାମସ୍ୟ ସଦୃଶୋ ଦାସ୍ୟେଽପ୍ୟସ୍ୟ ନ ଯୁଜ୍ୟସେ । ୭୩ ।
ଅଜେୟଃ ସତ୍ୟବାକ୍ ଶୂରୋ ରଣଶ୍ଲାଘୀ ଚ ରାଘବଃ ।
ଜାନକ୍ୟା ପରୁଷଂ ବାକ୍ୟମେବମୁକ୍ତୋ ଦଶାନନଃ । ୭୪ ।
ଜଜ୍ୱାଲ ସହସା କୋପାଚ୍ଚିତାସ୍ଥ ଇବ ପାବକଃ ।
ବବୃତ୍ୟ ନୟନେ କ୍ରୂରେ ମୁଷ୍ଟିମୁଦ୍ୟମ୍ୟ ଦକ୍ଷିଣମ୍ । ୭୫ ।

---

ସମ୍ମାନିତକର । ୬୮ । ହେ ଗର୍ବିତେ ସୀତେ ! ତୁମ୍ଭେ ଯଦ ଦର୍ପବଶତଃ ମୋତେ ଅଭିନନ୍ଦନ ନ କର, ତାହାହେଲେ ଦୁଇମାସ ଶେଷରେ ମୁଁ ତୁମ୍ଭର ରକ୍ତ ପାନ-କରିବି' । ୬୯ । ଦୁରାତ୍ମା ରାବଣର ଏହି କଥା ଶୁଣି ସୀତା ଅତିଶୟ କ୍ରୁଦ୍ଧ ହୋଇ ଉତ୍ତମ ବାକ୍ୟରେ କହିଲେ । ୭୦ । 'ରେ ରାକ୍ଷସାଧମ ! ମୁଁ ଅମିତ ତେଜା ରାମଙ୍କର ଭାର୍ଯ୍ୟା ଏବଂ ଇକ୍ଷ୍ୱାକୁକୁଳର ପ୍ରଭୁ ଦଶରଥଙ୍କର ପୁତ୍ରବଧୂ । ମୋତେ ଅକଥ୍ୟ କଥା କହି ତୋର ଜିହ୍ୱା ଖସିପଡ଼ୁ ନାହିଁ ? ରେ ଅନାର୍ଯ୍ୟ, ପାପୀ! ତୋର ବୀର୍ଯ୍ୟ କେଉଁଠାରେ ? ତୁ ମୋର ମହାତ୍ମା ସ୍ୱାମୀଙ୍କର ଅଗୋଚରରେ ଏବଂ ସେ ନିକଟରେ ନ ଥିଲାବେଳେ ମୋତେ ଅପହରଣକରି ନେଇଆସିଅଛୁ । ତୁ ରାମଙ୍କର ସମକକ୍ଷ ନୋହୁ ବା ତାଙ୍କର ଦାସ ହେବାକୁ ମଧ୍ୟ ଯୋଗ୍ୟ ନୋହୁ । ରାଘବ ସତ୍ୟବାଦୀ, ରଣଶ୍ଳାଘୀ ଏବଂ ଦୁର୍ଜେୟ ଅଟନ୍ତି ।' ଜାନକୀ ଏହିପରି କଠୋର ବାକ୍ୟ କହିବାରୁ ଦଶାନନ ହଠାତ୍ ଚିତାମଧ୍ୟସ୍ଥିତ ଅଗ୍ନିପରି କ୍ରୋଧରେ ଜଳିଉଠିଲା ଏବଂ କ୍ରୂର ନୟନଯୁଗଳକୁ ଘୂର୍ଣ୍ଣିତ ଏବଂ ଦକ୍ଷିଣ ମୁଷ୍ଟିକୁ ଉତ୍ତୋଳିତକରି ମୈଥିଳୀଙ୍କୁ ହତ୍ୟା କରିବାକୁ ଉଦ୍ୟତ ହେଲା । ରାବଣର ସ୍ତ୍ରୀମାନେ ସେତେବେଳେ ହାହାକାର

ମୈଥିଲୀଂ ହନ୍ତୁମାରବ୍ଧଃ ସ୍ତ୍ରୀଭିର୍ହାହାକୃତଂ ତଦା ।
ସ୍ତ୍ରୀଣାଂ ମଧ୍ୟାତ୍ସମୁତ୍ପତ୍ୟ ତସ୍ୟ ଭାର୍ଯା ଦୁରାତ୍ମନଃ । ୭୬ ।
ବରା ମନ୍ଦୋଦରୀ ନାମ ତୟା ସ ପ୍ରତିଷେଧିତଃ ।
ଉକ୍ତଶ୍ଚ ମଧୁରାଂ ବାଣୀଂ ତୟା ସ ମଦନାର୍ଦ୍ଦିତଃ । ୭୭ ।
ସୀତୟା ତବ କିଂ କାର୍ଯଂ ମହେନ୍ଦ୍ରସମବିକ୍ରମ !
ମୟା ସହ ରମସ୍ୱାଦ୍ୟ ମଦ୍‌ବିଶିଷ୍ଟା ନ ଜାନକୀ ।୭୮ ।
ଦେବଗନ୍ଧର୍ବକନ୍ୟାଭିର୍ଯକ୍ଷକନ୍ୟାଭିରେବ ଚ ।
ସାର୍ଦ୍ଧଂ ପ୍ରଭୋ ! ରମସ୍ୱେହ ସୀତୟା କିଂ କରିଷ୍ୟସି । ୭୯ ।
ତତସ୍ତାଭିଃ ସମେତାଭିର୍ନାରୀଭିଃ ସ ମହାବଳଃ ।
ଉତ୍ଥାପ୍ୟ ସହସା ନୀତୋ ଭବନଂ ସ୍ୱଂ ନିଶାଚରଃ । ୮୦ ।
ଯାତେ ତସ୍ମିନ୍ ଦଶଗ୍ରୀବେ ରାକ୍ଷସ୍ୟୋ ବିକୃତାନନାଃ ।
ସୀତାଂ ନିର୍ଭର୍ତ୍ସୟାମାସୁର୍ବାକ୍ୟୈଃ କ୍ରୂରୈଃ ସୁଦାରୁଣୈଃ । ୮୧ ।
ତୃଣବଦ୍ଭାଷିତଂ ତାସାଂ ଗଣୟାମାସ ଜାନକୀ ।
ଗର୍ଜିତଂ ଚ ତଥା ତାସାଂ ସୀତାଂ ପ୍ରାପ୍ୟ ନିରର୍ଥକମ୍ ।୮୨ ।
ବୃଥା ଗର୍ଜିତନିଶ୍ଚେଷ୍ଟା ରାକ୍ଷସୀଃ ପିଶିତାଶନାଃ ।
ରାବଣାୟ ଶଶଂସୁସ୍ତାଃ ସୀତାବ୍ୟବସିତଂ ମହତ୍ । ୮୩ ।

---

କରି ଉଠିଲେ । ମନ୍ଦୋଦରୀ ନାମକ ତାହାର ଶ୍ରେଷ୍ଠମହିଷୀ ତତ୍‌କ୍ଷଣାତ୍ ସ୍ତ୍ରୀମାନଙ୍କ ମଧ୍ୟରୁ ଉଠି କାମାତୁର ରାବଣକୁ ମଧୁର ବାକ୍ୟରେ ନିବାରଣକରି କହିଲେ । ୭୧-୭୭ । 'ହେ ଇନ୍ଦ୍ରତୁଲ୍ୟବିକ୍ରମଶାଳିନ୍ ! ମୋଠାରୁ ଜାନକୀ କୌଣସି ଗୁଣରେ ଉତ୍କୃଷ୍ଟ ନୁହେ; ଅତଏବ ସୀତାଠାରେ ତୁମ୍ଭର କି ପ୍ରୟୋଜନ ? ତୁମ୍ଭେ ଆଜ ମୋ ସହିତ ରମଣକର । ୭୮ । ହେ ପ୍ରଭୋ ! ଦେବ, ଗନ୍ଧର୍ବ ଓ ଯକ୍ଷ-କନ୍ୟାମାନଙ୍କ ସହିତ ରମଣକର, ସୀତାଙ୍କୁନେଇ କଣ କରିବ ? । ୭୯ । ଅନନ୍ତର ସେହି ମହିଳାମାନେ ସମସ୍ତେ ସମବେତ ହୋଇ ମହାବଳୀ ରାକ୍ଷସ ରାବଣକୁ ତତ୍‌କ୍ଷଣାତ ସେଠାରୁ ଉଠାଇ ସ୍ୱୀୟ ଗୃହକୁ ନେଇଗଲେ ।୮୦। ଦଶଗ୍ରୀବ ଚାଲିଯିବାପରେ ବିକୃତ-ବଦନା ରାକ୍ଷସୀମାନେ ଅତି ଦାରୁଣ ଏବଂ ନିଷ୍ଠୁର ବାକ୍ୟରେ ସୀତାଙ୍କୁ ଭର୍ତ୍ସନା କରିବାକୁ ଲାଗିଲେ । ୮୧ । ଜାନକୀ ସେମାନଙ୍କର କଥାକୁ ତୃଣବତ୍ ଅବଜ୍ଞାକଲେ । ତାହାଙ୍କ ନିକଟରେ ସେ ଗର୍ଜନ ବୃଥା ହେବାରୁ ମାଂସଭକ୍ଷଣା ରାକ୍ଷସୀମାନେ ବୃଥା ଗର୍ଜନ ଓ ବୃଥା ଚେଷ୍ଟା କରି ପରେ ରାବଣ ନିକଟକୁ ଯାଇଁ ସୀତାଙ୍କର ସେହି ମହତ୍ ସଂକଳ୍ପ ନିବେଦନ କଲେ । ୮୨-୮୩ । ଅନନ୍ତର ସେହି ସମସ୍ତ ରାକ୍ଷସୀଙ୍କର ଆଶା

ତତସ୍ତାଃ ସହିତାଃ ସର୍ବା ବିହତାଶା ନିରୁଦ୍ୟମାଃ ।
ପରିକ୍ଳିଷ୍ୟ ସମସ୍ତାସ୍ତା ନିଦ୍ରାବଶମୁପାଗତାଃ । ୮୪ ।
ତାସୁ ଚୈବ ପ୍ରସୁପ୍ତାସୁ ସୀତା ଭର୍ତୃହିତେ ରତା ।
ବିଲପ୍ୟ କରୁଣଂ ଦୀନା ପ୍ରଶୁଶୋଚ ସୁଦୁଃଖିତା । ୮୫ ।
ତାସାଂ ମଧ୍ୟାତ୍ସମୁତ୍ଥାୟ ତ୍ରିଜଟା ବାକ୍ୟମବ୍ରବୀତ୍ ।
ଆତ୍ମାନଂ ଖାଦତ କ୍ଷିପ୍ରଂ ନ ସୀତାମସିତେକ୍ଷଣାମ୍ । ୮୬ ।
ଜନକସ୍ୟାତ୍ମଜାଂ ସାଧ୍ୱୀଂ ସ୍ନୁଷାଂ ଦଶରଥସ୍ୟ ଚ ।
ସ୍ୱପ୍ନୋ ହ୍ୟଦ୍ୟ ମୟା ଦୃଷ୍ଟୋ ଦାରୁଣୋ ରୋମହର୍ଷଣଃ । ୮୭ ।
ରକ୍ଷସାଂ ଚ ବିନାଶାୟ ଭର୍ତୁରସ୍ୟା ଜୟାୟ ଚ ।
ଅଲମସ୍ମାନ୍ ପରିତ୍ରାତୁଂ ରାଘବାଦ୍ରାକ୍ଷସୀଗଣମ୍ । ୮୮ ।
ଅଭିଯାଚାମ ବୈଦେହୀମେତଦ୍ଧି ମମ ରୋଚତେ ।
ଯଦି ହ୍ୟେବଂବିଧଃ ସ୍ୱପ୍ନୋ ଦୁଃଖିତାୟାଃ ପ୍ରଦୃଶ୍ୟତେ । ୮୯ ।
ସା ଦୁଃଖୈର୍ବିବିଧୈର୍ମୁକ୍ତା ସୁଖମାପ୍ନୋତ୍ୟନୁତ୍ତମମ୍ ।
ପ୍ରଣିପାତପ୍ରସନ୍ନା ହି ମୈଥିଲୀ ଜନକାତ୍ମଜା । ୯୦ ।

---

ଏବଂ ଉଦ୍ୟମ ବିଫଳ ହେବାରୁ ସେମାନେ କ୍ଳାନ୍ତହୋଇ ନିଦ୍ରାର ବଶୀଭୂତ ହୋଇ-ପଡ଼ିଲେ । ୮୪ । ସେମାନେ ଶୋଇପଡ଼ିବାଉତ୍ତାରୁ ସ୍ୱାମୀଙ୍କର ହିତାଭିଳାଷିଣୀ ସୀତା ଅତିଶୟ ଦୁଃଖିତ ଏବଂ ଦୀନଭାବାପନ୍ନ ହୋଇ କରୁଣସ୍ୱରରେ ବିଳାପକରି ଶୋକ କରିବାକୁ ଲାଗିଲେ । ୮୫ । ସେମାନଙ୍କ ମଧ୍ୟରୁ ତ୍ରିଜଟା ନାମକ ରାକ୍ଷସୀ ଉଠି କହିଲା, 'ତୁମ୍ଭେମାନେ ଆପଣା ଆପଣାକୁ ହିଁ ଖାଇଯାଅ । ଜନକରାଜଙ୍କର ଦୁହିତା, ଦଶରଥଙ୍କର ପୁତ୍ରବଧୂ, କୃଷ୍ଣଲୋଚନା ସାଧ୍ୱୀ, ସୀତା ବିନଷ୍ଟ ହେବାର ନୁହନ୍ତି । ମୁଁ ଆଜ ଏକ ଦାରୁଣ ରୋମହର୍ଷଣକାରୀ ସ୍ୱପ୍ନ ଦେଖିଅଛି । ୮୬-୮୭ । ତଦ୍ୱାରା ରାକ୍ଷସମାନଙ୍କର ବିନାଶ ହେବ ଏବଂ ଏହାଙ୍କ ସ୍ୱାମୀଙ୍କର ଜୟ ହେବ । ସେତେବେଳେ ଏହି ସୀତା ଆମ୍ଭ ରାକ୍ଷସୀମାନଙ୍କୁ ରାଘବଙ୍କ ହାତରୁ ପରିତ୍ରାଣ କରିବାପାଇଁ ସମର୍ଥ ହେବେ । ୮୮ । ସୁତରାଂ ମୋ ମନକୁ ପାଉଛି ଯେ ଆମ୍ଭେମାନେ ନିଜ ନିଜର ରକ୍ଷାପାଇଁ ସୀତାଙ୍କୁ ପ୍ରାର୍ଥନାକରିବା । ସେହି ଦୁଃଖିତା ସୀତାଙ୍କ ନିକଟରେ ଯଦି ଏହି ସ୍ୱପ୍ନ ଆମ୍ଭେମାନେ ବର୍ଣ୍ଣନା କରିବା, ତାହାହେଲେ ସେ ସମସ୍ତ ପ୍ରକାର ଦୁଃଖରୁ ବିମୁକ୍ତ ହୋଇ ଉତ୍ତମ ସୁଖ ଲାଭକରିବେ । ଏତଏବ ଆସ ଆମ୍ଭେମାନେ ପ୍ରଣିପାତଦ୍ୱାରା ଜନକନନ୍ଦିନୀ ମୈଥିଳୀଙ୍କୁ ପ୍ରସନ୍ନ କରିବା । ସେ ରାକ୍ଷସୀ-

ଅଲମେଷା ପରିତ୍ରାତୁଂ ରାକ୍ଷସେଭ୍ୟୋ ମହତୋ ଭୟାତ୍ ।
ତତଃ ସା ହ୍ରୀମତୀ ବାଲା ଭର୍ତୁର୍ବିଜୟହର୍ଷିତା । ୯୧ ।
ଅବୋଚଦ୍ ଯଦି ତତ୍ତଥ୍ୟଂ ଭବେୟୁଂ ଶରଣଂ ହି ବଃ ।
ତାଂ ଗୃହଂ ତାଦୃଶୀଂ ଦୃଷ୍ଟ୍ୱା ସୀତାୟା ଦାରୁଣାଂ ଦଶାମ୍ । ୯୨ ।
ଚିନ୍ତୟାମାସ ବିଶ୍ରାନ୍ତୋ ନ ଚ ମେ ନିର୍ବୃତଂ ମନଃ ।
ସଂଭାଷଣାର୍ଥେ ଚ ମୟା ଜାନକ୍ୟାଶ୍ଚିନ୍ତିତୋ ବିଧିଃ । ୯୩ ।
ଇକ୍ଷ୍ୱାକୁକୁଲବଂଶସ୍ତୁ ସ୍ତୁତୋ ମମ ପୁରସ୍କୃତଃ ।
ଶ୍ରୁତ୍ୱା ତୁ ଗଦିତାଂ ବାଚଂ ରାଜର୍ଷିଗଣଭୂଷିତାମ୍ । ୯୪ ।
ପ୍ରତ୍ୟଭାଷତ ମାଂ ଦେବୀ ବାଷ୍ପୈଃ ପିହିତଲୋଚନା ।
କସ୍ତ୍ୱଂ କେନ କଥଂ ଚେହ ପ୍ରାପ୍ତୋ ବାନରପୁଙ୍ଗବ ! ୯୫ ।
କା ଚ ରାମେଣ ତେ ପ୍ରୀତିସ୍ତନ୍ମେ ଶଂସିତୁମର୍ହସି ।
ତସ୍ୟାସ୍ତଦ୍‌ବଚନଂ ଶ୍ରୁତ୍ୱା ଅହମପ୍ୟବ୍ରୁବଂ ବଚଃ ।୯୬ ।
ଦେବି ! ରାମସ୍ୟ ଭର୍ତୁସ୍ତେ ସହାୟୋ ଭୀମବିକ୍ରମଃ ।
ସୁଗ୍ରୀବୋ ନାମ ବିକ୍ରାନ୍ତୋ ବାନରେନ୍ଦ୍ରୋ ମହାବଲଃ । ୯୭ ।

---

ମାନଙ୍କୁ ମହତ୍ ଭୟରୁ ପରିତ୍ରାଣ କରିବା ପାଇଁ ସମର୍ଥ ଅଟନ୍ତି ।’ ଅନନ୍ତର ଲଜ୍ଜାଶୀଳା ବାଲା ଜାନକୀ ସ୍ୱାମୀଙ୍କର ବିଜୟ ସମ୍ଭାବନାରେ ଆହ୍ଲାଦିତ ହୋଇ କହିଲେ, ‘ଏ କଥା ଯଦି ସତ୍ୟ ହୁଏ, ତାହାହେଲେ ମୁଁ ତୁମ୍ଭମାନଙ୍କର ଶରଣ ହେବି ।’ ହେ ବାନରଗଣ ! ସୀତାଙ୍କର ଏତାଦୃଶ ଦାରୁଣଦଶା ଦେଖି ମୁଁ ଚିନ୍ତା କରିବାକୁ ଲାଗିଲି; ମାତ୍ର ମୋର ମନ କୌଣସିମତେ ଶାନ୍ତି ଲାଭ କଲା ନାହିଁ । ମୁଁ ବିଶ୍ରାମ କରିସାରି ଜାନକୀଙ୍କ ସହିତ କିପରିଭାବରେ ସମ୍ଭାଷଣ କରିବି ସେହି କଥା ଚିନ୍ତା କରିବାକୁ ଲାଗିଲି । ୮୯-୯୩ । ଅନନ୍ତର ମୁଁ ତାହାଙ୍କ ସମ୍ମୁଖରେ ଇକ୍ଷ୍ୱାକୁବଂଶର ସ୍ତବ କରିବାକୁ ଲାଗିଲି । ସୀତାଦେବୀ ରାଜର୍ଷିଗଣକୀର୍ତ୍ତିତ ମୋର ସେହି ବାକ୍ୟ ଶ୍ରବଣକରି ଅଶ୍ରୁପୂର୍ଣ୍ଣ ନୟନରେ ମୋତେ ପ୍ରତ୍ୟୁତ୍ତର ଦେଇ କହିଲେ, ‘ହେ କପିଶ୍ରେଷ୍ଠ ! ତୁମ୍ଭେ କିଏ, କିପରି ଓ କାହିଁକି ଏଠାକୁ ଆସିଛ ? ରାମଙ୍କ ସହିତ ତୁମ୍ଭର କିପରି ସୌହାର୍ଦ୍ଦ୍ୟ ହେଲା ? ଏ ସମସ୍ତ କଥା ମୋତେ କହିବା ଉଚିତ ।’ ମୁଁ ତାଙ୍କର ସେ କଥା ଶୁଣି କହିଲି । ୯୪-୯୬ । ‘ଦେବି ! ମହାବଳୀ ଭୀମପରାକ୍ରମ ସୁଗ୍ରୀବ ନାମକ ବାନରରାଜ ତୁମ୍ଭ ସ୍ୱାମୀଙ୍କର ସହାୟ ହୋଇଛନ୍ତି ।୯୭।

ତସ୍ୟ ମାଂ ବିଦ୍ଧି ଭୃତ୍ୟଂ ତ୍ୱଂ ହନୂମନ୍ତମିହାଗତମ୍ ।
ଭର୍ତ୍ରା ସଂପ୍ରହିତସ୍ତୁଭ୍ୟଂ ରାମେଣାକ୍ଲିଷ୍ଟକର୍ମଣା । ୯୮ ।
ଇଦଂ ତୁ ପୁରୁଷବ୍ୟାଘ୍ରଃ ଶ୍ରୀମାନ୍ ଦାଶରଥିଃ ସ୍ୱୟମ୍ ।
ଅଙ୍ଗୁଲୀୟମଭିଜ୍ଞାନମଦାତ୍ତୁଭ୍ୟଂ ଯଶସ୍ୱିନି ! । ୯୯ ।
ତଦିଚ୍ଛାମି ତ୍ୱୟାଜ୍ଞପ୍ତଂ ଦେବି ! କିଂ କରବାଣ୍ୟହମ୍ ।
ରାମଲକ୍ଷ୍ମଣୟୋଃ ପାର୍ଶ୍ୱଂ ନୟାମି ତ୍ୱାଂ କମୁତ୍ତରମ୍ । ୧୦୦ ।
ଏତଚ୍ଛ୍ରୁତ୍ୱା ବିଦିତ୍ୱା ଚ ସୀତା ଜନକନନ୍ଦିନୀ ।
ଆହ ରାବଣମୁତ୍ପାଟ୍ୟ ରାଘବୋ ମାଂ ନୟତ୍ୱିତି । ୧୦୧ ।
ପ୍ରଣମ୍ୟ ଶିରସା ଦେବୀମହମାର୍ଯାମନିନ୍ଦିତାମ୍ ।
ରାଘବସ୍ୟ ମନୋହ୍ଲାଦମଭିଜ୍ଞାନମୟାଚିଷମ୍ । ୧୦୨ ।
ଅଥ ମାମବ୍ରବୀତ୍ସୀତା ଗୃହ୍ୟତାମୟମୁତ୍ତମଃ ।
ମଣିର୍ଯେନ ମହାବାହୂ ରାମସ୍ତ୍ୱାଂ ବହୁମନ୍ୟତେ । ୧୦୩ ।
ଇତ୍ୟୁକ୍ତ୍ୱା ତୁ ବରାରୋହା ମଣିପ୍ରବରମୁତ୍ତମମ୍ ।
ପ୍ରାଯଚ୍ଛତ୍ପରମୋଦ୍ୱିଗ୍ନା ବାଚା ମାଂ ସଂଦିଦେଶ ହ । ୧୦୪ ।

---

ତୁମ୍ଭେ ମୋତେ ତାହାଙ୍କର ଭୃତ୍ୟ 'ହନୁମାନ୍' ବୋଲି ଜାଣ । ତୁମ୍ଭର ସ୍ୱାମୀ ଅକ୍ଳିଷ୍ଟକର୍ମା ରାମଙ୍କ ,କର୍ତ୍ତୃକ ମୁଁ ତୁମ୍ଭ ନିକଟକୁ ପ୍ରେରିତ ହୋଇଅଛି । ୯୮ । ହେ ଯଶସ୍ୱିନି ! ପୁରୁଷସିଂହ ଶ୍ରୀମାନ୍ ଦାଶରଥି ରାମ ସ୍ୱୟଂ ଅଭିଜ୍ଞାନସ୍ୱରୂପ ତୁମ୍ଭଙ୍କୁ ଏହି ଅଙ୍ଗୁଳୀୟକ ପ୍ରଦାନ କରିଅଛନ୍ତି । ୯୯ । ଦେବି ! ବର୍ତ୍ତମାନ ତୁମ୍ଭର କି ଆଜ୍ଞା ପାଳନ କରିବି ତାହା ଜାଣିବାକୁ ଇଚ୍ଛାକରୁଅଛି । ମୁଁ କ'ଣ ସମୁଦ୍ରର ଉତ୍ତର-କୂଳକୁ ରାମ ଲକ୍ଷ୍ମଣଙ୍କ ନିକଟକୁ ତୁମ୍ଭଙ୍କୁ ନେଇଯିବି ?' ୧୦୦ । ଏହି କଥା ଶୁଣି ଏବଂ ସେହି ମୁଦ୍ରିକୁ ଚିହ୍ନି ଜନକନନ୍ଦିନୀ ସୀତା କହିଲେ, 'ରାମ ନିଜେ ରାବଣର ଉଚ୍ଛେଦ ସାଧନକରି ମୋତେ ନେଇ ଯାଆନ୍ତୁ ।' ୧୦୧ । ମୁଁ ଅନିନ୍ଦିତା ଆର୍ଯ୍ୟା ସୀତାଦେବୀଙ୍କୁ ଅବନତମସ୍ତକରେ ପ୍ରଣାମକରି, ଯାହା ଦ୍ୱାରା ରାମଙ୍କ ମନରେ ଆନନ୍ଦ ଜନ୍ମିପାରେ, ସେହିପରି କୌଣସି ଅଭିଜ୍ଞାନ ଦେବା ପାଇଁ ପ୍ରାର୍ଥନାକଲି ।୧୦୨। ଅନନ୍ତର ସୀତା ମୋତେ କହିଲେ, 'ତୁମ୍ଭେ ଏହି ଉତ୍କୃଷ୍ଟ ମଣି ଗ୍ରହଣକର । ଏହାକୁ ଦେଖିଲେ ରାମ ତୁମ୍ଭଙ୍କୁ ବହୁମାନ କରିବେ ।' ୧୦୩ । ବରାରୋହା ଜାନକୀ ଏହା କହି, ମୋତେ ସେହି ଉତ୍ତମ ମଣିରତ୍ନ ଦେଲେ ଏବଂ ନିତାନ୍ତ ଉଦ୍‌ବିଗ୍ନ ହୋଇ ମୋଦ୍ୱାରା ସନ୍ଦେଶ ପ୍ରଦାନକଲେ । ୧୦୪ । ଅନନ୍ତର

ତତସ୍ତସ୍ୟୈ ପ୍ରଣମ୍ୟାହଂ ରାଜପୁତ୍ର୍ୟୈ ସମାହିତଃ ।
ପ୍ରଦକ୍ଷିଣଂ ପରିକ୍ରାମମିହାଭ୍ୟୁଦ୍‌ଗତମାନସଃ । ୧୦୫ ।
ଉତ୍ତରଂ ପୁନରେବାହ ନିଶ୍ଚିତ୍ୟ ମନସା ତଦା ।
ହନୂମନ୍ମମ ବୃତ୍ତାନ୍ତଂ ବକ୍ତୁମର୍ହସି ରାଘବେ । ୧୦୬ ।
ଯଥା ଶ୍ରୁତ୍ୱୈବ ନଚିରାତ୍ତାବୁଭୌ ରାମଲକ୍ଷ୍ମଣୌ ।
ସୁଗ୍ରୀବସହିତୌ ବୀରାବୁପେୟାତାଂ ତଥା କୁରୁ । ୧୦୭।
ଯଦନ୍ୟଥା ଭବେଦେତଦ୍ ଦ୍ୱୌ ମାସୌ ଜୀବିତଂ ମମ ।
ନ ମାଂ ଦ୍ରକ୍ଷ୍ୟତି କାକୁତ୍‌ସ୍ଥୋ ମ୍ରିୟେ ସାହମନାଥବତ୍ ।୧୦୮।
ତଚ୍ଛ୍ରୁତ୍ୱା କରୁଣଂ ବାକ୍ୟଂ କ୍ରୋଧୋ ମାମଭ୍ୟବର୍ତ୍ତତ ।
ଉତ୍ତର[illegible]ଚ ମୟା ଦୃଷ୍ଟଂ କାର୍ଯ୍ୟଶେଷମନନ୍ତରମ୍ । ୧୦୯ ।
ତତୋଽବର୍ଦ୍ଧତ ମେ କାୟସ୍ତଦା ପର୍ବତସଂନିଭଃ ।
ଯୁଦ୍ଧାକାଙ୍‌କ୍ଷୀ ବନଂ ତସ୍ୟ ବିନାଶୟିତୁମାରଭେ । ୧୧୦ ।
ତଦ୍‌ଭଗ୍ନଂ ବନଖଣ୍ଡଂ ତୁ ଭ୍ରାନ୍ତତ୍ରସ୍ତମୃଗଦ୍ୱିଜମ୍ ।
ପ୍ରତିବୁଦ୍ଧା ନିରୀକ୍ଷନ୍ତେ ରାକ୍ଷସ୍ୟୋ ବିକୃତାନନାଃ । ୧୧୧ ।

---

ମୁଁ ଏଠାକୁ ଫେରି ଆସିବା ପାଇଁ ଉଦ୍‌ବିଗ୍ନମନା ଓ ସମାହିତ ହୋଇ ସେହି ରାଜପୁତ୍ରୀଙ୍କୁ ପ୍ରଣାମ ଏବଂ ପ୍ରଦକ୍ଷିଣକଲି । ୧୦୫ । ସେ ସେତେବେଳେ ମନରେ ସ୍ଥିରକରି ପୁଣି ମୋତେ କହିଲେ,'ହନୁମନ୍‌! ମୋର ବୃତ୍ତାନ୍ତ ତୁମ୍ଭେ ରାଘବଙ୍କୁ ଏପରି-ଭାବରେ କହିବ, ଯେପରିକ ରାମ ଲକ୍ଷ୍ମଣ ଦୁଇ ବୀର ତାହା ଶୁଣି ଅଚିରମ୍ଭେ ସୁଗ୍ରୀବଙ୍କ ସହିତ ଏଠାକୁ ଆସିବେ । ୧୦୬-୧୦୭ । ଯଦି ଏ କଥାର ଅନ୍ୟଥା ଆଚରଣ ହୁଏ, ତେବେ ମୋ ଜୀବନର ଅବଧି ଦୁଇମାସ ମାତ୍ର । ମୁଁ ନିରାଶ୍ରୟଭାବରେ ମରିଯିବି, କାକୁତ୍ସ୍ଥ ମୋତେ ଆଉ ଦେଖିପାରିବେ ନାହିଁ ।' ୧୦୮ । ଏହି କରୁଣବାକ୍ୟ ଶୁଣି ମୋ ମନରେ କ୍ରୋଧ ଜାତହେଲା ଏବଂ ଏହାପରେ କ'ଣ କରିବାକୁ ହେବ ସେହି ଅବଶିଷ୍ଟ କାର୍ଯ୍ୟ ବିଷୟ ମୁଁ ଚିନ୍ତା କରିବାକୁ ଲାଗିଲି । ୧୦୯ । ସେତେବେଳେ କ୍ରୋଧରେ ମୋର ଶରୀର ପର୍ବତପରି ବଢ଼ିଗଲା ଏବଂ ମୁଁ ଯୁଦ୍ଧ ଆଶାରେ ରାବଣର ବନକୁ ବିନଷ୍ଟ କରିବାରେ ପ୍ରବୃତ୍ତହେଲି । ୧୧୦ । ସେହି ବନ ଭଗ୍ନ ହେଲା ଓ ତନ୍ମଧ୍ୟ ମୃଗପକ୍ଷିସମୂହ ତ୍ରସ୍ତଭାବରେ ବୁଲିବାକୁ ଲାଗିଲେ । ବିକୃତବଦନା ରାକ୍ଷସୀମାନେ ନିଦ୍ରାରୁ ଉଠି ଏହା ଦେଖିଲେ । ୧୧୧ ।

ମାଂ ଚ ଦୃଷ୍ଟ୍ୱା ବନେ ତସ୍ମିନ୍ ସମାଗମ୍ୟ ତତସ୍ତତଃ ।
ତାଃ ସମଭ୍ୟାଗତାଃ କ୍ଷିପ୍ରଂ ରାବଣାୟାଚଚକ୍ଷିରେ । ୧୧୨ ।
ରାଜନ୍ ! ବନମିଦଂ ଦୁର୍ଗଂ ତବ ଭଗ୍ନଂ ଦୁରାତ୍ମନା ।
ବାନରେଣ ହ୍ୟବଜ୍ଞାୟ ତବ ବୀର୍ଯଂ ମହାବଲଃ । ୧୧୩।
ତସ୍ୟ ଦୁର୍ବୁଦ୍ଧିତା ରାଜଂସ୍ତବ ବିପ୍ରିୟକାରଣଃ ।
ବଧମାଜ୍ଞାପୟ କ୍ଷିପ୍ରଂ ଯଥାସୌ ନ ପୁନର୍ବ୍ରଜେତ୍ । ୧୧୪ ।
ତଚ୍ଛ୍ରୁତ୍ୱା ରାକ୍ଷସେନ୍ଦ୍ରେଣ ବିସୃଷ୍ଟା ବହୁଦୁର୍ଜୟାଃ ।
ରାକ୍ଷସା କିଂକରା ନାମ ରାବଣସ୍ୟ ମନୋଽନୁଗାଃ । ୧୧୫ ।
ତେଷାମଶୀତି ସାହସ୍ରଂ ଶୂଳମୁଦ୍‌ଗରପାଣିନାମ୍ ।
ମୟା ତସ୍ମିନ୍ ବନୋଦ୍ଦେଶେ ପରିଘେଣ ନିଷୂଦିତମ୍ । ୧୧୬ ।
ତେଷାଂ ତୁ ହତଶିଷ୍ଟା ଯେ ତେ ଗତ୍ୱା ଲଘୁବିକ୍ରମାଃ ।
ନିହତଂ ଚ ମୟା ସୈନ୍ୟଂ ରାବଣାୟାଚଚକ୍ଷିରେ । ୧୧୭ ।
ତତୋ ମେ ବୁଦ୍ଧିରୁତ୍ପନ୍ନା ଚୈତ୍ୟପ୍ରାସାଦମୁତ୍ତମମ୍ ।
ତତ୍ରସ୍ଥାନ୍ ରାକ୍ଷସାନ୍ ହତ୍ୱା ଶତଂ ସ୍ତମ୍ଭେନ ବୈ ପୁନଃ । ୧୧୮ ।

---

ସେମାନେ ସେହି ବନରେ ମୋତେ ଦେଖି ଶୀଘ୍ର ଆସି ସମାଗତ ହୋଇ ସଭାରେ ରାବଣ ନିକଟରେ ଉପସ୍ଥିତ ହୋଇ ତାଙ୍କୁ କହିଲେ । ୧୧୨ । 'ହେ ମହାବଳୀ ରାଜନ୍ ! ଦୁରାତ୍ମା ବାନର ତୁମ୍ଭର ବୀର୍ଯ୍ୟ ପରାକ୍ରମ ନ ଜାଣି ତୁମ୍ଭର ଦୁର୍ଗମ ଏ ବନକୁ ଭାଙ୍ଗିପକାଇଅଛି । ୧୧୩ । ରାଜନ୍ ! ତାହାର ଦୁର୍ବୁଦ୍ଧି ଘଟିଅଛି । ତେଣୁ ତୁମ୍ଭର ଅପ୍ରିୟ ଆଚରଣ କରିଅଛି, ସୁତରାଂ ସେ ଯେପରି ଫେରି ନ ପାଇ-ପାରେ, ସେଥିନିମନ୍ତେ ତୁମ୍ଭେ ସତ୍ୱର ତାହାର ବଧ ଆଜ୍ଞାଦିଅ ।'। ୧୧୪ । ରାକ୍ଷସରାଜ ରାବଣ ତାହା ଶୁଣି 'କିଙ୍କର' ନାମକ ନିଜର କେତେକ ମନୋମତ ବିଶେଷଦୁର୍ଜୟ ରାକ୍ଷସମାନଙ୍କୁ ପଠାଇଦେଲ । ୧୧୫ । ଶୂଳମୁଦ୍‌ଗରଧାରୀ ସେହି ରାକ୍ଷସମାନଙ୍କ ମଧ୍ୟରୁ ଅଶୀ ହଜାରଙ୍କୁ ମୁଁ ସେହି ବନପ୍ରଦେଶରେ ପରିଘପ୍ରହାର ଦ୍ୱାରା ସଂହାର କରିଦେଲି । ୧୧୬ । ସେମାନଙ୍କ ମଧ୍ୟରୁ ଯେଉଁମାନେ ନ ମରି ଅବଶିଷ୍ଟ ରହିଲେ, ସେମାନେ କ୍ଷିପ୍ରଗତିରେ ରାବଣ ନିକଟକୁ ଯାଇ, ସୈନ୍ୟ-ମାନଙ୍କୁ ମୁଁ ନିହତ କରିଥିବା ସମ୍ବାଦ ତାଙ୍କୁ ଜଣାଇଲେ । ୧୧୭ । ତା'ପରେ ତତ୍ରତ୍ୟ ଉତ୍ତମ ଚୈତ୍ୟପ୍ରାସାଦକୁ ବିନଷ୍ଟ କରିବା ପାଇଁ ମୋର ଇଚ୍ଛା ହେଲା ଏବଂ ମୁଁ ସ୍ତମ୍ଭାଘାତରେ ପୁନର୍ବାର ସେଠାରେ ଥିବା ଶହେ ରାକ୍ଷସଙ୍କୁ ବଧକରି,

ଲଲାମଭୂତୋ ଲଙ୍କାୟା ମୟା ବିଧ୍ୱଂସିତୋ ରୁଷା ।
ତତଃ ପ୍ରହସ୍ତସ୍ୟ ସୁତଂ ଜମ୍ବୁମାଲିନମାଦିଶତ୍ । ୧୧୯ ।
ରାକ୍ଷସୈର୍ବହୁଭିଃ ସାର୍ଦ୍ଧଂ ଘୋରରୂପୈର୍ଭୟାନକୈଃ ।
ତମହଂ ବଲସଂପନ୍ନଂ ରାକ୍ଷସଂ ରଣକୋବିଦମ୍ । ୧୨୦ ।
ପରିଘେଣାତିଘୋରେଣ ସୂଦୟାମି ସହାନୁଗମ୍ ।
ତଚ୍ଛ୍ରୁତ୍ୱା ରାକ୍ଷସେନ୍ଦ୍ରସ୍ତୁ ମନ୍ତ୍ରିପୁତ୍ରାନ୍ମହାବଲାନ୍ । ୧୨୧ ।
ପଦାତିବଲସଂପନ୍ନାନ୍ ପ୍ରେଷୟାମାସ ରାବଣଃ ।
ପରିଘେଣୈବ ତାନ୍ ସର୍ବାନ୍ନୟାମି ଯମସାଦନମ୍ । ୧୨୨ ।
ମନ୍ତ୍ରିପୁତ୍ରାନ୍ ହତାନ୍ ଶ୍ରୁତ୍ୱା ସମରେ ଲଘୁବିକ୍ରମାନ୍ ।
ପଞ୍ଚସେନାଗ୍ରଗାଞ୍ଛୂରାନ୍ ପ୍ରେରୟାମାସ ରାବଣଃ । ୧୨୩ ।
ତାନହଂ ସହସୈନ୍ୟାନ୍ ବୈ ସର୍ବାନେବାଭ୍ୟସୂଦୟମ୍ ।
ତତଃ ପୁନର୍ଦଶଗ୍ରୀବଃ ପୁତ୍ରମକ୍ଷଂ ମହାବଲମ୍ । ୧୨୪ ।
ବହୁଭୀ ରାକ୍ଷସୈଃ ସାର୍ଦ୍ଧଂ ପ୍ରେଷୟାମାସ ସଂଯୁଗେ ।
ତଂ ତୁ ମନ୍ଦୋଦରୀପୁତ୍ରଂ କୁମାରଂ ରଣପଣ୍ଡିତମ୍ । ୧୨୫ ।
ସହସା ଖଂ ସମୁଦ୍ୟନ୍ତଂ ପାଦୟୋଶ୍ଚ ଗୃହୀତବାନ୍ ।
ଚର୍ମାସିନଂ ଶତଗୁଣଂ ଭ୍ରାମୟିତ୍ୱା ବ୍ୟପେଷୟମ୍ । ୧୨୬ ।

---

ରାଗରେ ଲଙ୍କାର ମୁକୁଟମଣିସଦୃଶ ସେହି ପ୍ରାସାଦକୁ ବିଧ୍ୱସ୍ତ କରିଦେଲି । ଅନନ୍ତର ସେ ପ୍ରହସ୍ତର ପୁତ୍ର ଜମ୍ବୁମାଳୀକୁ ମୋ ନିକଟକୁ ପଠାଇଲା । ୧୧୮-୧୧୯ । ମୁଁ ଭୟଙ୍କର ପରିଘ ପ୍ରହାରଦ୍ୱାରା ବିକଟାକାର ଭୟାବହ ରାକ୍ଷସଗଣ ପରିବେଷ୍ଟିତ, ଯୁଦ୍ଧବିଶାରଦ ସେହି ମହାବଳୀ ରାକ୍ଷସକୁ ଅନୁଚରମାନଙ୍କ ସହିତ ନିହତ କଲି । ରାକ୍ଷସରାଜ ରାବଣ ଏହି ବୃତ୍ତାନ୍ତ ଶୁଣି ପଦାତିସେନାସମନ୍ୱିତ ମହାବଳୀ ମନ୍ତ୍ରିପୁତ୍ରମାନଙ୍କୁ ପ୍ରେରଣକଲା । ମୁଁ ପରିଘପ୍ରହାରରେ ସେମାନଙ୍କୁ ଯମାଳୟକୁ ପ୍ରେରଣକଲି । ୧୨୦-୧୨୨ । ଲଘୁପରାକ୍ରମୀ ମନ୍ତ୍ରିପୁତ୍ରମାନେ ଯୁଦ୍ଧରେ ନିହତ ହେବାର ଶୁଣି ରାବଣ ପାଞ୍ଚଜଣ ବୀର ସେନାପତିଙ୍କୁ ପଠାଇଲା । ୧୨୩ । ମୁଁ ସୈନ୍ୟ ସହିତ ସେ ସମସ୍ତଙ୍କୁ ନିପାତିତକଲି । ତା'ପରେ ଦଶାନନ ପୁଣି ବହୁ ରାକ୍ଷସଙ୍କ ସହିତ ନିଜର ମହାବଳୀ ପୁତ୍ର ଅକ୍ଷକୁ ଯୁଦ୍ଧକୁ ପଠାଇଲା । ମନ୍ଦୋଦରୀପୁତ୍ର ଯୁଦ୍ଧବିଶାରଦ ସେହି କୁମାର ଖଣ୍ଡା ଓ ଖୋଳଧରି ଆକାଶକୁ ଉତ୍ପତିତ ହେବାବେଳେ ମୁଁ ତାହାର ପାଦଦ୍ୱୟ ଗ୍ରହଣପୂର୍ବକ ଶତବାର ଘୂର୍ଣ୍ଣିତ କରି ତାହାକୁ ନିଷ୍ପେଷିତ କରିଦେଲି ।୧୨୪-୧୨୬। ଦଶାନନ ରାବଣ ଯୁଦ୍ଧକୁ ଆସିଥିବା

ତମକ୍ଷମାଗତଂ ଭଗ୍ନଂ ନିଶମ୍ୟ ସ ଦଶାନନଃ ।
ତତଶ୍ଚେନ୍ଦ୍ରଜିତଂ ନାମ ଦ୍ୱିତୀୟଂ ରାବଣଃ ସୁତମ୍ ।୧୨୭।
ବ୍ୟାଦିଦେଶ ସୁସଂକ୍ରୁଦ୍ଧୋ ବଳିନଂ ଯୁଦ୍ଧଦୁର୍ମଦମ୍ ।
ତଚ୍ଚାପ୍ୟହଂ ବଲଂ ସର୍ବଂ ତଂ ଚ ରାକ୍ଷସପୁଙ୍ଗବମ୍ । ୧୨୮ ।
ନଷ୍ଟୌଜସଂ ରଣେ କୃତ୍ୱା ପରଂ ହର୍ଷମୁପାଗତଃ ।
ମହତାପି ମହାବାହୁଃ ପ୍ରତ୍ୟୟେନ ମହାବଲଃ । ୧୨୯ ।
ପ୍ରହିତୋ ରାବଣେନୈଷ ସହ ବୀରୈର୍ମଦୋଦ୍ଧତୈଃ ।
ସୋଽବିଷହ୍ୟଂ ହି ମାଂ ବୁଦ୍ଧା ସ୍ୱସୈନ୍ୟଂ ଚାବମର୍ଦ୍ଦିତମ୍ । ୧୩୦ ।
ବ୍ରହ୍ମଣୋଽସ୍ତ୍ରେଣ ସ ତୁ ମାଂ ପ୍ରାବଧ୍ନାଚ୍ଚାତିବେଗିତଃ ।
ରଜ୍ଜୁଭିଶ୍ଚାପି ବଧ୍ନନ୍ତି ତତୋ ମାଂ ତତ୍ର ରାକ୍ଷସାଃ ।୧୩୧ ।
ରାବଣସ୍ୟ ସମୀପଂ ଚ ଗୃହୀତ୍ୱା ମାମୁପାଗମନ୍ ।
ଦୃଷ୍ଟ୍ୱା ସଂଭାଷିତଶ୍ଚାହଂ ରାବଣେନ ଦୁରାତ୍ମନା । ୧୩୨ ।
ପୃଷ୍ଟଶ୍ଚ ଲଙ୍କାଗମନଂ ରାକ୍ଷସାନାଂ ଚ ତଂ ବଧମ୍ ।
ତତ୍ସର୍ବଂ ଚ ରଣେ ତତ୍ର ସୀତାର୍ଥମୁପଜଳ୍ପିତମ୍ । ୧୩୩ ।
ତସ୍ୟାସ୍ତୁ ଦର୍ଶନାକାଙ୍କ୍ଷୀ ପ୍ରାପ୍ତସ୍ତ୍ୱଦ୍ଭବନଂ ବିଭୋ !
ମାରୁତସ୍ୟୌରସଃପୁତ୍ରୋ ବାନରୋ ହନୂମାନହମ୍ । ୧୩୪ ।

'ଅକ୍ଷ' ବିନଷ୍ଟ ହୋଇଥିବାର ଶୁଣି ଅତିଶୟ କ୍ରୁଦ୍ଧ ହୋଇ ନିଜର ଦ୍ୱିତୀୟ ପୁତ୍ର ମହାବଳୀ ଯୁଦ୍ଧୋନ୍ମତ୍ତ ଇନ୍ଦ୍ରଜିତକୁ ପଠାଇଲା । ମୁଁ ଯୁଦ୍ଧରେ ସେହି ରାକ୍ଷସଶ୍ରେଷ୍ଠ ଇନ୍ଦ୍ରଜିତକୁ ଏବଂ ତାହାର ସମସ୍ତ ସୈନ୍ୟଙ୍କୁ ହତତେଜ କରିଦେଇ ଅତିଶୟ ଆନନ୍ଦିତ ହେଲି । ରାବଣ ବିପୁଳ ବିଶ୍ୱାସ ସହକାରେ ମହାବଳୀ ମହାବାହୁ ଇନ୍ଦ୍ରଜିତକୁ ମଦମତ୍ତ ବୀରମାନଙ୍କ ସହିତ ପଠାଇଥିଲା; କିନ୍ତୁ ସେ ମୋର ଅସହ୍ୟ ପରାକ୍ରମ ବୁଝି ଏବଂ ନିଜର ସୈନ୍ୟମାନଙ୍କୁ ନିପୀଡ଼ିତ ହେବାର ଦେଖି ମୋତେ ସବେଗରେ ବ୍ରହ୍ମାସ୍ତ୍ରରେ ବାନ୍ଧିପକାଇଲା । ଅନନ୍ତର ସେଠାରେ ଥିବା ରାକ୍ଷସମାନେ ମୋତେ ରଜ୍ଜୁମାନଙ୍କ ଦ୍ୱାରା ବନ୍ଧନକଲେ ଏବଂ ମୋତେ ଧରି ରାବଣ ନିକଟକୁ ନେଇଗଲେ । ଦୁରାତ୍ମା ରାବଣ ମୋତେ ଦେଖି ମୋ ସହିତ କଥାବାର୍ତ୍ତା କଲା । ୧୨୭-୧୩୨ । ସେ ମୋତେ ପଚାରିଲା, ମୁଁ ଲଙ୍କାକୁ କାହିଁକି ଆସିଲି ଏବଂ ରାକ୍ଷସମାନଙ୍କୁ କାହିଁକି ବଧ କଲି । ମୁଁ କହିଲି, ମୁଁ ସୀତାଙ୍କ ନିମନ୍ତେ ହିଁ ଯୁଦ୍ଧକରି ଏ ସମସ୍ତ କାର୍ଯ୍ୟ କରିଅଛି । ୧୩୩ । ବିଭୋ ! ସୀତାଙ୍କ ଦର୍ଶନାଭିଳାଷରେ ମୁଁ ତୁମ୍ଭ ଗୃହକୁ ଆଗମନ କରିଅଛି । ମୁଁ ପବନଙ୍କର ଔରସଜାତ ପୁତ୍ର, ରାମଙ୍କର ଦୂତ ଏବଂ

ରାମଦୂତଂ ଚ ମାଂ ବିଦ୍ଧି ସୁଗ୍ରୀବସଚିବଂ କପିମ୍ ।
ସୋଽହଂ ଦୌତ୍ୟେନ ରାମସ୍ୟ ତ୍ୱତ୍ସକାଶମିହାଗତଃ । ୧୩୫
ଶୃଣୁ ଚାପି ସମାଦେଶଂ ଯଦହଂ ପ୍ରବ୍ରବୀମି ତେ ।
ରାକ୍ଷସେଶ ହରୀଶସ୍ତ୍ୱାଂ ବାକ୍ୟମାହ ସମାହିତମ୍ । ୧୩୬ ।
ସୁଗ୍ରୀବସ୍ତୁ ମହାଭାଗଃ ସ ତ୍ୱାଂ କୌଶଲମବ୍ରବୀତ୍ ।
ଧର୍ମାର୍ଥକାମସହିତଂ ହିତଂ ପଥ୍ୟମୁବାଚ ହ । ୧୩୭ ।
ବସତୋ ଋଶ୍ୟମୂକେ ମେ ପର୍ବତେ ବିପୁଲଦ୍ରୁମେ ।
ରାଘବୋ ରଣବିକ୍ରାନ୍ତୋ ମିତ୍ରତ୍ୱଂ ସମୁପାଗତଃ । ୧୩୮ ।
ତେନ ମେ କଥିତଂ ରାଜନ୍ ! ଭାର୍ଯା ମେ ରକ୍ଷସା ହୃତା ।
ତତ୍ର ସାହାଯ୍ୟହେତୋର୍ମେ ସମୟଂ କର୍ତୁମର୍ହସି । ୧୩୯ ।
ବାଲିନା ହୃତରାଜ୍ୟେନ ସୁଗ୍ରୀବେଣ ସହ ପ୍ରଭୁଃ ।
ଚକ୍ରେଽଗ୍ନିସାକ୍ଷିକଂ ସଖ୍ୟଂ ରାଘବଃ ସହଲକ୍ଷ୍ମଣଃ । ୧୪୦ ।
ତେନ ବାଲିନମାହତ୍ୟ ଶରେଣୈକେନ ସଂଯୁଗେ ।
ବାନରାଣାଂ ମହାରାଜଃ କୃତଃ ସଂପ୍ଲବତାଂ ପ୍ରଭୁଃ । ୧୪୧ ।
ତସ୍ୟ ସାହାଯ୍ୟମସ୍ମାଭିଃ କାର୍ଯଂ ସର୍ବାତ୍ମନାତ୍ୱିହ ।
ତେନ ପ୍ରସ୍ଥାପିତସ୍ତୁଭ୍ୟଂ ସମୀପମିହ ଧର୍ମତଃ । ୧୪୨ ।

---

ସୁଗ୍ରୀବଙ୍କର ମନ୍ତ୍ରୀ: ମୋର ନାମ ହନୂମାନ୍ । ରାମଙ୍କର ଦୂତରୂପେ ମୁଁ ତୁମ୍ଭ ନିକଟକୁ ଆସିଛି । ୧୩୪-୧୩୫ । ରାକ୍ଷସରାଜ ! ବାନରରାଜ ମୋତେ ଯାହା କହିବା ପାଇଁ ଆଦେଶ ଦେଇଛନ୍ତି, ମୁଁ ତାହା ତୁମ୍ଭଙ୍କୁ କହୁଛି: ଅବହିତ ହୋଇ ଶୁଣ । ମହାଭାଗ ସୁଗ୍ରୀବ ତୁମ୍ଭଙ୍କ କୁଶଳପ୍ରଶ୍ନ ପଚାରିଛନ୍ତି ଏବଂ ଧର୍ମ, ଅର୍ଥ ଓ କାମଯୁକ୍ତ ଏବଂ ହିତକର କଥା କହିଛନ୍ତି । ୧୩୬-୧୩୭ । 'ମୁଁ ବିଶାଳଦ୍ରୁମପୂର୍ଣ୍ଣ ଋଷ୍ୟମୂକ ପର୍ବତରେ ବାସକରୁଥିବାବେଳେ ରଣବିକ୍ରମ ରାମଙ୍କ ସହିତ ମୋର ମିତ୍ରତା ସମ୍ପନ୍ନ ହୋଇଅଛି ।' ୧୩୮ । ରାଜନ୍ ! ସେ ମୋତେ କହିଲେ, 'ରାକ୍ଷସ-କର୍ତ୍ତୃକ ମୋର ଭାର୍ଯ୍ୟା ଅପହୃତ ହୋଇଛନ୍ତି । ସେ ବିଷୟରେ ମୋର ସହାୟ ହେବା ନିମନ୍ତେ ତୁମ୍ଭଙ୍କୁ ପ୍ରତିଜ୍ଞା କରିବାକୁ ହେବ । ୧୩୯ । ଏହା କହି ପ୍ରଭୁ ରାମ ଲକ୍ଷ୍ମଣଙ୍କ ସହିତ ଅଗ୍ନିଙ୍କୁ ସାକ୍ଷୀକରି ବାଲୀକର୍ତ୍ତୃକ ହୃତରାଜ୍ୟ ସୁଗ୍ରୀବଙ୍କ ସହିତ ମିତ୍ରତା ସ୍ଥାପନକଲେ । ୧୪୦ । ଅନନ୍ତର ସେ ଗୋଟିଏ ମାତ୍ର ଶରରେ ଯୁଦ୍ଧରେ ବାଲୀଙ୍କୁ ନିହତକରି, ସୁଗ୍ରୀବଙ୍କୁ ବାନରମାନଙ୍କର ମହାରାଜା କରାଇଲେ । ୧୪୧ । ସୁତରାଂ ସର୍ବାନ୍ତଃକରଣରେ ବର୍ତ୍ତମାନ ତାଙ୍କର ସାହାଯ୍ୟ କରିବା ଆମ୍ଭମାନଙ୍କର କର୍ତ୍ତବ୍ୟ ଅଟେ । ସେହିହେତୁରୁ ଧର୍ମାନୁସାରେ ବର୍ତ୍ତମାନ ତୁମ୍ଭଠାକୁ ଏହାଙ୍କୁ ପଠାଇଲି ।୧୪୨।

କ୍ଷିପ୍ରମାନୀୟତାଂ ସୀତା ଦୀୟତାଂ ରାଘବସ୍ୟ ଚ ।
ଯାବନ୍ନ ହରୟୋ ବୀରା ବିଧମନ୍ତି ବଲଂ ତବ । ୧୪୩ ।
ବାନରାଣାଂ ପ୍ରଭାବୋଽୟଂ ନ କେନ ବିଦିତଃ ପୁରା ।
ଦେବତାନାଂ ସକାଶଂ ଚ ଯେ ଗଚ୍ଛନ୍ତି ନିମନ୍ତ୍ରିତାଃ । ୧୪୪ ।
ଇତି ବାନରରାଜସ୍ତ୍ୱାମାହେତ୍ୟଭିହିତୋ ମୟା ।
ମାମୈକ୍ଷତ ତତୋ ରୁଷ୍ଟଶ୍ଚକ୍ଷୁସା ପ୍ରଦହନ୍ନିବ । ୧୪୫ ।
ତେନ ବଧ୍ୟୋଽହମାଜ୍ଞପ୍ତୋ ରକ୍ଷସା ରୌଦ୍ରକର୍ମଣା ।
ମତ୍ପ୍ରଭାବମବିଜ୍ଞାୟ ରାବଣେନ ଦୁରାତ୍ମନା । ୧୪୬ ।
ତତୋ ବିଭୀଷଣୋନାମ ତସ୍ୟ ଭ୍ରାତା ମହାମତିଃ ।
ତେନ ରାକ୍ଷସରାଜଶ୍ଚ ଯାଚିତୋ ମମ କାରଣାତ୍ । ୧୪୭ ।
ନୈବଂ ରାକ୍ଷସଶାର୍ଦ୍ଦୂଲ ! ତ୍ୟଜ୍ୟତାମେଷ ନିଶ୍ଚୟଃ ।
ରାଜଶାସ୍ତ୍ରବ୍ୟପେତୋ ହି ମାର୍ଗଃ ସଂଲକ୍ଷ୍ୟତେ ତ୍ୱୟା । ୧୪୮ ।
ଦୂତବଧ୍ୟା ନ ଦୃଷ୍ଟା ହି ରାଜଶାସ୍ତ୍ରେଷୁ ରାକ୍ଷସ !
ଦୂତେନ ବେଦିତବ୍ୟଂ ଚ ଯଥାଭିହିତବାଦିନା । ୧୪୯ ।
ସୁମହତ୍ୟପରାଧେଽପି ଦୂତସ୍ୟାତୁଲବିକ୍ରମ !
ବିରୂପକରଣଂ ଦୃଷ୍ଟଂ ନ ବଧୋଽସ୍ତି ହି ଶାସ୍ତ୍ରତଃ । ୧୫୦ ।

---

ସୁତରାଂ ବାନରବୀରମାନେ ତୁମ୍ଭର ସୈନ୍ୟମାନଙ୍କୁ ଧ୍ୱସ୍ତବିଧ୍ୱସ୍ତ କରି ନ ଦେବା ପୂର୍ବରୁ ତୁମ୍ଭେ ଅବିଳମ୍ବେ ସୀତାଙ୍କୁ ଆଣି ରାମଙ୍କ ହସ୍ତରେ ଅର୍ପଣକର । ୧୪୩ । ଯେଉଁ ବାନରମାନେ ନିମନ୍ତ୍ରିତ ହୋଇ ପୂର୍ବକାଳରେ ଦେବତାମାନଙ୍କ ନିକଟକୁ ଯାଉଥିଲେ, ସେହି ବାନରମାନଙ୍କ ପ୍ରଭାବ କିଏ ନ ଜାଣେ ?' । ୧୪୪ । ବାନରରାଜ ସୁଗ୍ରୀବ ତୁମ୍ଭଙ୍କୁ ଏହି କଥା କହି ପଠାଇଛନ୍ତି । ମୁଁ ଏହା ତାହାଙ୍କୁ କହିଲି । ଅନନ୍ତର ସେ କ୍ରୁଦ୍ଧ ହୋଇ ଚକ୍ଷୁଦ୍ୱାରା ମୋତେ ପୋଡ଼ିପକାଇବାପରି ଗୃହିଁଲେ । ୧୪୫ । ଉଗ୍ରକର୍ମା ଦୁରାତ୍ମା ରାବଣ ମୋର ପ୍ରଭାବ ନ ଜାଣି ମୋତେ ବଧକରିବା ଉଚିତ ବୋଲି ଆଦେଶଦେଲେ । ୧୪୬ । ତତ୍ପରେ ବିଭୀଷଣ ନାମକ ତାହାର ମହାମତି ଭ୍ରାତା ମୋଲାଗି ରାକ୍ଷସରାଜ ନିକଟରେ ପ୍ରାର୍ଥନାକରି କହିଲେ । ୧୪୭ । 'ହେ ରାକ୍ଷସସିଂହ ! ଏହା ଠିକ୍ ନୁହେ । ତୁମ୍ଭେ ଏ ସଙ୍କଳ୍ପ ପରିତ୍ୟାଗକର । ତୁମ୍ଭେ ଯେଉଁ ପଥ ଅବଲମ୍ବନ କରୁଛ ତାହା ରାଜନୀତିଶାସ୍ତ୍ରର ବିରୁଦ୍ଧ ଅଟେ । ୧୪୮ । ହେ ରାକ୍ଷସ ! ରାଜନୀତିଶାସ୍ତ୍ରରେ ଦୂତବଧର ବ୍ୟବସ୍ଥା ନାହିଁ । ଦୂତ ସ୍ୱାମୀର ସନ୍ଦେଶକୁ ଯଥାର୍ଥଭାବରେ ନିବେଦନ କରିବା ଉଚିତ । ୧୪୯। ହେ ଅତୁଳ-ବିକ୍ରମ ! ଅତି ଗୁରୁତର ଅପରାଧ କଲେ ମଧ୍ୟ ଦୂତର ବିରୂପକରଣ ବିହିତ ଅଛି ।

ବିଭୀଷଣେନୈବମୁକ୍ତୋ ରାବଣଃ ସଂଦିଦେଶ ତାନ୍ ।
ରାକ୍ଷସାନେତଦେବାଦ୍ୟ ଲାଙ୍ଗୂଲଂ ଦହ୍ୟତାମିତି । ୧୫୧ ।

ତତସ୍ତସ୍ୟ ବଚଃ ଶ୍ରୁତ୍ୱା ମମ ପୁଚ୍ଛଂ ସମନ୍ତତଃ ।
ବେଷ୍ଟିତଂ ଶଣବଲ୍କୈଶ୍ଚ ପଟ୍ଟୈଃ କାର୍ପାସକୈସ୍ତଥା । ୧୫୨ ।

ରାକ୍ଷସାଃ ସିଦ୍ଧସଂନାହାସ୍ତତସ୍ତେ ଚଣ୍ଡବିକ୍ରମାଃ ।
ତଦା ଦୀପ୍ୟନ୍ତ ମେ ପୁଚ୍ଛଂ ହନନ୍ତଃ କାଷ୍ଠମୁଷ୍ଟିଭିଃ । ୧୫୩ ।

ବଦ୍ଧସ୍ୟ ବହୁଭିଃ ପାଶୈର୍ଯନ୍ତ୍ରିତସ୍ୟ ଚ ରାକ୍ଷସୈଃ ।
ନ ମେ ପୀଡ଼ା ଭବେତ୍‌କାଚିଦ୍ଦିଦୃକ୍ଷୋର୍ନଗରୀଂ ଦିବା ।୧୫୪ ।

ତତସ୍ତେ ରାକ୍ଷସାଃ ଶୂରା ବଦ୍ଧଂ ମାମଗ୍ନିସଂବୃତମ୍ ।
ଅଘୋଷୟନ୍ରାଜମାର୍ଗେ ନଗରଦ୍ୱାରମାଗତାଃ । ୧୫୫ ।

ତତୋଽହଂ ସୁମହଦ୍ରୂପଂ ସଂକ୍ଷିପ୍ୟ ପୁନରାତ୍ମନଃ ।
ବିମୋଚୟିତ୍ୱା ତଂ ବନ୍ଧଂ ପ୍ରକୃତିସ୍ଥଃ ସ୍ଥିତଃ ପୁନଃ । ୧୫୬ ।

ଆୟସଂ ପରିଘଂ ଗୃହ୍ୟ ତାନି ରକ୍ଷାଂସ୍ୟସୂଦୟମ୍ ।
ତତସ୍ତନ୍ନଗରଦ୍ୱାରଂ ବେଗେନ ପ୍ଲୁତବାନହମ୍ । ୧୫୭ ।

---

ଶାସ୍ତ୍ରରେ ଦୂତକୁ ବଧ କରିବାର ବ୍ୟବସ୍ଥା ନାହିଁ । ୧୫୦ । ବିଭୀଷଣ ଏହିପ୍ରକାରେ କହିବାଉତ୍ତାରୁ ରାବଣ ସେହି ରାକ୍ଷସମାନଙ୍କ ଆଦେଶଦେଲେ , 'ତୁମ୍ଭେମାନେ ଏହାର ଲାଙ୍ଗୁଳ ଦଗ୍ଧ କରିଦିଅ' । ୧୫୧ । ଅନନ୍ତର ତାହା କଥା ଶୁଣି ଚଣ୍ଡବିକ୍ରମ ରାକ୍ଷସମାନେ ଚାରିଆଡୁ ଝୋଟ, ପାଟ ଏବଂ କାର୍ପାସ ବସ୍ତ୍ରଦ୍ୱାରା ମୋର ଲାଙ୍ଗୁଡ଼କୁ ଗୁଡ଼ାଇଲେ ଏବଂ ମୋତେ କାଠମୁଷ୍ଟିଦ୍ୱାରା ପ୍ରହାରକରି ମୋ ଲାଙ୍ଗୁଡ଼ରେ ନିଆଁ ଲଗାଇଦେଲେ । ୧୫୨-୧୫୩ । ମୁଁ ରାକ୍ଷସମାନଙ୍କ ଦ୍ୱାରା ନାନାବିଧ ପାଶରେ ବଦ୍ଧ ଏବଂ ନିୟନ୍ତ୍ରିତ ହେଲେ ମଧ୍ୟ ମୋତେ କିଛିମାତ୍ର କଷ୍ଟ ହେଲା ନାହିଁ । ମୁଁ ଦିନରେ ସେ ନଗରୀ ଦେଖିବାପାଇଁ ଉତ୍ସୁକ ହେଲି । ୧୫୪ । ଅନନ୍ତର ସେହି ରାକ୍ଷସ ବୀରମାନେ ମୋତେ ବଦ୍ଧ ଓ ଅଗ୍ନିବେଷ୍ଟିତକରି ରାଜମାର୍ଗରେ ଘୋଷଣା କରି କରି ନଗର ଦ୍ୱାରରେ ଉପସ୍ଥିତ ହେଲେ । ୧୫୫ । ଅନନ୍ତର ମୁଁ ନିଜର ସେହି ସୁବିଶାଳ ରୂପକୁ ପୁନର୍ବାର ସଂକୁଚିତକରି ସେହି ବନ୍ଧନ ମୋଚନପୂର୍ବକ ପ୍ରକୃତ ଅବସ୍ଥା ଲାଭକଲି । ୧୫୬ । ମୁଁ ଲୌହପରିଘ ଧରି ସେହି ରାକ୍ଷସମାନଙ୍କୁ ସଂହାର କରିବାକୁ ଲାଗିଲି । ଅନନ୍ତର ମୁଁ ସବେଗରେ ଡେଇଁ କରି ନଗରଦ୍ୱାର ଉପରେ ଯାଇ

ପୁଚ୍ଛେନ ଚ ପ୍ରଦୀପ୍ତେନ ତାଂ ପୁରୀଂ ସାଟ୍ଟଗୋପୁରାମ୍ ।
ଦହ୍ୟାମ୍ୟହମସଂଭ୍ରାନ୍ତୋ ଯୁଗାନ୍ତାଗ୍ନି ରିବ ପ୍ରଜାଃ । ୧୫୮ ।
ବିନଷ୍ଟା ଜାନକୀ ବ୍ୟକ୍ତଂ ନ ହ୍ୟଦଗ୍‌ଧଃ ପ୍ରଦୃଶ୍ୟତେ ।
ଲଙ୍କାୟାଃ କଶ୍ଚିଦୁଦ୍ଦେଶଃ ସର୍ବା ଭସ୍ମୀକୃତା ପୁରୀ ।୧୫୯।
ଦହତା ଚ ମୟା ଲଙ୍କା ଦଗ୍‌ଧା ସୀତା ନ ସଂଶୟଃ ।
ରାମସ୍ୟ ଚ ମହତ୍କାର୍ଯଂ ମୟୈବେଦଂ ବିଫଳଂ କୃତମ୍ । ୧୬୦ ।
ଇତି ଶୋକସମାବିଷ୍ଟଶ୍ଚିନ୍ତାମହମୁପାଗତଃ ।
ତତୋଽହଂ ବାଚମଶ୍ରୌଷଂ ଚାରଣାନାଂ ଶୁଭାକ୍ଷରାମ୍ ।୧୬୧।
ଜାନକୀ ନ ଚ ଦଗ୍‌ଧେତି ବିସ୍ମୟୋଦନ୍ତଭାଷିଣାମ୍ ।
ତତୋ ମେ ବୁଦ୍ଧିରୁତ୍ପନ୍ନା ଶ୍ରୁତ୍ୱା ତାମଦ୍ଭୁତାଂ ଗିରମ୍ । ୧୬୨ ।
ଅଦଗ୍ଧା ଜାନକୀତ୍ୟେବ ନିମିତ୍ତୈଶ୍ଚୋପଲକ୍ଷିତମ୍ ।
ଦୀପ୍ୟମାନେ ତୁ ଲାଙ୍ଗୂଲେ ନ ମାଂ ଦହତି ପାବକଃ । ୧୬୩ ।
ହୃଦୟଂ ଚ ପ୍ରହୃଷ୍ଟଂ ମେ ବାତାଃ ସୁରଭିଗନ୍ଧିନଃ ।
ତୈର୍ନିମିତ୍ତୈଶ୍ଚ ଦୃଷ୍ଟାର୍ଥୈଃ କାରଣୈଶ୍ଚ ମହାଗୁଣୈଃ । ୧୬୪ ।

---

ବସିଲି । ୧୫୭ । ମୁଁ ସେହି ପ୍ରଜ୍ୱଳିତ ପୁଚ୍ଛଦ୍ୱାରା, ପ୍ରଳୟାଗ୍ନି ପ୍ରଜାମାନଙ୍କୁ ଦହନ କଲାପରି ନିର୍ଭୟଭାବରେ ଅଟ୍ଟାଳିକା ଏବଂ ପୁରଦ୍ୱାରସହିତ ସମଗ୍ର ନଗରୀକୁ ଦଗ୍‌ଧ କରିଦେଲି । ୧୫୮ । ସମସ୍ତ ପୁରୀ ଦଗ୍‌ଧ ହେବାରୁ ମୁଁ ଭାବିଲି, ଲଙ୍କାରେ ଏପରି କୌଣସି ସ୍ଥାନ ନାହିଁ ଯାହା ଦଗ୍‌ଧହୋଇ ନ ଯାଇଛି; ସୁତରାଂ ଜାନକୀ ମଧ୍ୟ ବିନଷ୍ଟ ହୋଇଗଲେ, ଏହା ସ୍ପଷ୍ଟ ଜଣାଯାଉଛି । ୧୫୯ । ମୁଁ ଲଙ୍କାକୁ ଦହନ କରୁ କରୁ ସୀତା ମଧ୍ୟ ଦଗ୍‌ଧ ହୋଇଗଲେ ଏଥିରେ ସନ୍ଦେହ ନାହିଁ । ସୁତରାଂ ମୁଁ ରାମଙ୍କର ଏହି ମହତ୍ କାର୍ଯ୍ୟକୁ ବୃଥା କରିଦେଲି । ୧୬୦ । ଏହିପରି ଶୋକାଚ୍ଛନ୍ନ ହୋଇ ମୁଁ ଚିନ୍ତା କରୁଅଛି । ଏହିପରି ସମୟରେ ମୁଁ ଚାରଣମାନଙ୍କ ମଧୁରାକ୍ଷର ବାକ୍ୟ ଶୁଣିଲି ଯେ'ଜାନକୀ ଦଗ୍‌ଧହୋଇ ନାହାନ୍ତି' । ସେମାନଙ୍କର ଏହି ସମ୍ବାଦ ମୋତେ ବିସ୍ମିତ କରିଦେଲା । ମୁଁ ସେହି ଅଦ୍ଭୁତ ବାକ୍ୟ ଶୁଣିବାରୁ ମୋର ଜ୍ଞାନ ଉଦୟ ହେଲା । ୧୬୧-୧୬୨ । ଜାନକୀ ଯେ ଦଗ୍‌ଧହୋଇ ନାହାନ୍ତି ସେ କଥାରେ ଶୁଭସୂଚକ ଲକ୍ଷଣଦ୍ୱାରା ମୋର ବିଶ୍ୱାସ ହେଲା । କାରଣ ମୋର ଲାଙ୍ଗୁଳ ଜଳୁଥିଲେ ମଧ୍ୟ ଅଗ୍ନି ମୋତେ ଦଗ୍‌ଧ କରିଦେଇ ନ ଥିଲେ । ୧୬୩ । ମୋର ହୃଦୟ ପ୍ରଫୁଲ୍ଲିତ ହୋଇ-ଉଠିଲା । ସୁନ୍ଦର ଗନ୍ଧବାହୀ ବାୟୁ ପ୍ରବାହିତ ହେଉଥିଲା; ସୁତରାଂ ସେହି ସେହି

ଋଷିବାକ୍ୟୈଶ୍ଚ ଦୃଷ୍ଟାର୍ଥୈରଭବଂ ହୃଷ୍ଟମାନସଃ ।
ପୁନର୍ଦୃଷ୍ଟା ଚ ବୈଦେହୀ ବିସୃଷ୍ଟଶ୍ଚ ତୟା ପୁନଃ । ୧୭୫ ।
ତତଃ ପର୍ବତମାସାଦ୍ୟ ତତ୍ରାରିଷ୍ଟମହଂ ପୁନଃ ।
ପ୍ରତିପ୍ଲବନମାରେଭେ ଯୁଷ୍ମଦ୍ଦର୍ଶନକାଙ୍କ୍ଷୟା । ୧୭୬ ।
ତତଃ ଶ୍ୱସନଚନ୍ଦ୍ରାର୍କସିଦ୍ଧଗନ୍ଧର୍ବସେବିତମ୍ ।
ପନ୍ଥାନମହମାକ୍ରମ୍ୟ ଭବତୋ ଦୃଷ୍ଟବାନିହ । ୧୭୭ ।
ରାଘବସ୍ୟ ପ୍ରସାଦେନ ଭବତାଂ ଚୈବ ତେଜସା ।
ସୁଗ୍ରୀବସ୍ୟ ଚ କାର୍ଯ୍ୟାର୍ଥଂ ମୟା ସର୍ବମନୁଷ୍ଠିତମ୍ । ୧୭୮ ।
ଏତତ୍ସର୍ବଂ ମୟା ତତ୍ର ଯଥାବଦୁପପାଦିତମ୍ ।
ଅତ୍ର ଯନ୍ନ କୃତଂ ଶେଷଂ ତତ୍ସର୍ବଂ କ୍ରିୟତାମିତି । ୧୭୯ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ସୁନ୍ଦରକାଣ୍ଡେ ହନୂମଦ୍‌ବୃତ୍ତାନ୍ତାନୁକଥନଂ ନାମ ଅଷ୍ଟପଞ୍ଚାଶଃ ସର୍ଗଃ ।

---

ଶୁଭଲକ୍ଷଣ, ମହାଗୁଣବାନ୍ କାରଣମାନ ଏବଂ ସିଦ୍ଧାର୍ଥ ଋଷିମାନଙ୍କର ବାକ୍ୟ ଶୁଣି ମୋର ମନ ଆନନ୍ଦିତ ହେଲା । ଅନନ୍ତର ମୁଁ ପୁନର୍ବାର ବୈଦେହୀଙ୍କ ସହିତ ସାକ୍ଷାତ୍ କରି ତାଙ୍କଠାରୁ ବିଦାୟ ନେଲି । ୧୭୪-୧୭୫ । ଅନନ୍ତର ମୁଁ ପୁନର୍ବାର ଅରିଷ୍ଟ ପର୍ବତରେ ଆରୋହଣ କରି ତୁମ୍ଭମାନଙ୍କୁ ଦେଖିବା ଅଭିଳାଷରେ ପ୍ରତ୍ୟାଗମନ କରିବାକୁ ବାହାରିଲି । ୧୭୬ । ତଦନନ୍ତର ମୁଁ ବାୟୁ, ଚନ୍ଦ୍ର, ସୂର୍ଯ୍ୟ, ସିଦ୍ଧ ଏବଂ ଗନ୍ଧର୍ବଗଣସେବିତ ପଥ ଅବଲମ୍ବନପୂର୍ବକ ଆସି ଆପଣମାନଙ୍କୁ ଏଠାରେ ଦେଖିଲି । ୧୭୭ । ରାମଙ୍କ ପ୍ରସାଦରୁ ଏବଂ ଆପଣମାନଙ୍କ ତେଜର ପ୍ରଭାବରୁ ସୁଗ୍ରୀବଙ୍କ କାର୍ଯ୍ୟ ସାଧନ ନିମନ୍ତେ ମୁଁ ସମସ୍ତ କାର୍ଯ୍ୟ ଅନୁଷ୍ଠାନ କରିଅଛି । ୧୭୮ । ମୁଁ ସେଠାରେ ଯାହା ଯାହା କରିଅଛି ସେ ସମସ୍ତ ଆପଣମାନଙ୍କୁ କହିଲି । ଏବେ ଯାହା ମୁଁ କରି ନାହିଁ, ଅବଶିଷ୍ଟ ଅଛି ସେ ସମସ୍ତ କାର୍ଯ୍ୟ ଆପଣମାନେ କରନ୍ତୁ" । ୧୭୯ ।

# ଏକୋନଷଷ୍ଟିତମଃ ସର୍ଗଃ

## ଅନନ୍ତରକାର୍ଯ୍ୟପ୍ରବେଚନମ୍

ଏତଦାଖ୍ୟାୟ ତତ୍ସର୍ବଂ ହନୂମାନ୍ମାରୁତାତ୍ମଜଃ ।
ଭୂୟଃ ସମୁପଚକ୍ରାମ ବଚନଂ ବକ୍ତୁମୁତ୍ତରମ୍ । ୧ ।
ସଫଲୋ ରାଘବୋଦ୍ୟୋଗଃ ସୁଗ୍ରୀବସ୍ୟ ଚ ସଂଭ୍ରମଃ ।
ଶୀଲମାସାଦ୍ୟ ସୀତାୟା ମମ ଚ ପ୍ରୀଣିତଂ ମନଃ । ୨ ।
ଆର୍ଯ୍ୟାୟାଃ ସଦୃଶଂ ଶୀଲଂ ସୀତାୟାଃ ପ୍ଲବଗର୍ଷଭାଃ ।
ତପସା ଧାରୟେଲ୍ଲୋକାନ୍ କ୍ରୁଦ୍ଧୋ ବା ନିର୍ଦହେଦପି । ୩ ।
ସର୍ବଥାତିପ୍ରକୃଷ୍ଟୋଽସୌ ରାବଣୋ ରାକ୍ଷସେଶ୍ୱରଃ ।
ଯସ୍ୟ ତାଂ ସ୍ପୃଶତୋ ଗାତ୍ରଂ ତପସା ନ ବିନାଶିତମ୍ । ୪ ।
ନ ତଦଗ୍ନିଶିଖା କୁର୍ଯ୍ୟାତ୍ସଂସ୍ପୃଷ୍ଟା ପାଣିନା ସତୀ ।
ଜନକସ୍ୟ ସୁତା କୁର୍ଯ୍ୟାତ୍ ଯତ୍କ୍ରୋଧକଲୁଷୀକୃତା । ୫ ।

---

## ୫୯ତମ ସର୍ଗ

( ଅତଃପରକରଣୀୟ ବିଷୟରେ ପ୍ରବେଚନା )

ପବନନନ୍ଦନ ହନୂମାନ୍ ସମୁଦାୟ ଘଟଣା ଏହି ପ୍ରକାରେ ବର୍ଣ୍ଣନାକରି ପୁନର୍ବାର କହିବାକୁ ଲାଗିଲେ । ୧ । "ରାମଙ୍କର ଉଦ୍ୟୋଗ ଏବଂ ସୁଗ୍ରୀବଙ୍କର ଉତ୍ସାହ ସଫଳ ହୋଇଅଛି । ସୀତାଙ୍କର ସ୍ୱଭାବ ଦେଖି ମୋର ମନ ମଧ୍ୟ ଅତଶୟ ପ୍ରୀତ ହୋଇଅଛି । ୨ । ହେ ବାନରଶ୍ରେଷ୍ଠଗଣ ! ଆର୍ଯ୍ୟା ସୀତାଙ୍କର ଚରିତ୍ର ସର୍ବଥା ଉପଯୁକ୍ତ ରହିଅଛି । ସେ ତପଃପ୍ରଭାବରେ ସମସ୍ତ ଲୋକଙ୍କୁ ଧାରଣ କରିପାରନ୍ତି ଏବଂ କ୍ରୁଦ୍ଧ ହେଲେ ସମଗ୍ର ଲୋକଙ୍କୁ ଦହନ କରିଦେଇପାରନ୍ତି । ୩ । ରାକ୍ଷସରାଜ ରାବଣ ମଧ୍ୟ ସର୍ବଥା ଅତଶୟ ତପୋବନ୍ତ; କାରଣ ସେ ସୀତାଙ୍କର ଶରୀର ସ୍ପର୍ଶକରି ମଧ୍ୟ କେବଳ ତପୋବଳହେତୁ ତାହାର ଶରୀର ବିନଷ୍ଟ ହୋଇ ଯାଇ ନାହିଁ । ୪ । ପତିବ୍ରତା ଜନକନନ୍ଦିନୀ କ୍ରୋଧପରବଶ ହେଲେ ଯାହା କରିପାରନ୍ତି, ଅଗ୍ନିଶିଖା ହସ୍ତଦ୍ୱାରା ସ୍ପୃଷ୍ଟ ହେଲେ ମଧ୍ୟ ତାହା କରିପାରେ ନାହିଁ । ୫ ।

ଜାମ୍ବବତ୍ପ୍ରମୁଖାନ୍ସର୍ବାନନୁଜ୍ଞାପ୍ୟ ମହାକପୀନ୍ ।
ଅସ୍ମିନ୍ନେବଂଗତେ କାର୍ଯେ ଭବତାଂ ଚ ନିବେଦିତେ ।
ନ୍ୟାଯ୍ୟଂ ସ୍ମ ସହ ବୈଦେହ୍ୟା ଦ୍ରଷ୍ଟୁଂ ତୌ ପାର୍ଥିବାତ୍ମଜୌ ।୬।
ଅହମେକୋଽପି ପର୍ଯାପ୍ତଃ ସରାକ୍ଷସଗଣାଂ ପୁରୀମ୍
ତାଂ ଲଙ୍କାଂ ତରସା ହନ୍ତୁଂ ରାବଣଂ ଚ ସରାକ୍ଷସମ୍ । ୭ ।
କିଂ ପୁନଃ ସହିତୋ ବୀରୈର୍ବଲବଦ୍ଭିଃ କୃତାତ୍ମଭିଃ ।
କୃତାସ୍ତ୍ରୈଃ ପ୍ଲବଗୈଃ ଶକ୍ତୈର୍ଭବଦ୍ଭିର୍ବିଜୟୈଷିଭିଃ । ୮ ।
ଅହଂ ତୁ ରାବଣଂ ଯୁଦ୍ଧେ ସସୈନ୍ୟଂ ସପୁରଃସରମ୍ ।
ସହପୁତ୍ରଂ ବଧିଷ୍ୟାମି ସହୋଦରଯୁତଂ ଯୁଧି । ୯ ।
ବ୍ରାହ୍ମମସ୍ତ୍ରଂ ଚ ରୌଦ୍ରଂ ଚ ବାୟବ୍ୟଂ ବାରୁଣଂ ତଥା
ଯଦି ଶକ୍ରଜିତୋଽସ୍ତ୍ରାଣି ଦୁର୍ନିରୀକ୍ଷ୍ୟାଣି ସଂଯୁଗେ । ୧୦ ।
ତାନ୍ୟହଂ ନିହନିଷ୍ୟାମି ବଧିଷ୍ୟାମି ଚ ରାକ୍ଷସାନ୍ ।
ଭବତାମଭ୍ୟନୁଜ୍ଞାତୋ ବିକ୍ରମୋ ମେ ରୁଣଦ୍ଧି ତମ୍ । ୧୧ ।
ମୟାତୁଲା ବିସୃଷ୍ଟା ହି ଶୈଳବୃଷ୍ଟିର୍ନିରନ୍ତରା ।
ଦେବାନପି ରଣେ ହନ୍ୟାତ୍କିଂ ପୁନସ୍ତାନ୍ନିଶାଚରାନ୍ ।୧୨।

---

ଏପର୍ଯ୍ୟନ୍ତ କାର୍ଯ୍ୟ ଯାହା ହୋଇଅଛି ସେ ସମସ୍ତ ମୁଁ ଜାମ୍ବବାନ୍ ପ୍ରଭୃତି ପ୍ରଧାନ ପ୍ରଧାନ ବାନରମାନଙ୍କୁ ଜଣାଇଲି, । ଏବେ ସେମାନଙ୍କର ଅନୁମତି ନେଇ ରାଜକୁମାର ରାମ ଲକ୍ଷ୍ମଣଙ୍କ ସହିତ ସୀତାଙ୍କୁ ସମ୍ମିଳିତ ହେବାର ଦେଖିବାକୁ ଆମ୍ଭମାନଙ୍କର ଉପଯୁକ୍ତ କର୍ତ୍ତବ୍ୟ ହେଉଅଛି । ୬ । ମୁଁ ବଳଦ୍ୱାରା ଏକାକୀ ସମସ୍ତ ରାକ୍ଷସଙ୍କ ସହିତ ସମଗ୍ର ଲଙ୍କାପୁରୀ ଏବଂ ରାବଣକୁ ନିହତ କରିବାକୁ ସମର୍ଥ ଅଟେ । ୭ । ସୁତରାଂ ଆପଣମାନଙ୍କପରି କୃତାତ୍ମା, ଅସ୍ତ୍ରକୁଶଳ, ବଳବାନ, ବିଜୟାଭିଳାଷୀ ଓ ସମର୍ଥ ବୀରମାନେ ସାଙ୍ଗରେ ଥିଲେ ଆଉ କଥା କ'ଣ ଅଛି ? ।୮। ମୁଁ ରାବଣକୁ ଭ୍ରାତା, ପୁତ୍ର, ଭୃତ୍ୟ ଓ ସୈନ୍ୟଙ୍କ ସହିତ ଯୁଦ୍ଧରେ ବଧକରିବି । ଇନ୍ଦ୍ରଜିତର ବ୍ରାହ୍ମ, ରୌଦ୍ର, ବାୟବ୍ୟ ଓ ବାରୁଣ ପ୍ରଭୃତି ଅସ୍ତ୍ରସମୂହ ଯୁଦ୍ଧରେ ଦୁର୍ନିରୀକ୍ଷ୍ୟ ହେଲେ ମଧ୍ୟ ମୁଁ ସେ ସମସ୍ତଙ୍କୁ ଖଣ୍ଡ ଖଣ୍ଡ କରି ରାକ୍ଷସମାନଙ୍କୁ ସଂହାର କରିଦେବି । ୯-୧୦ । ଆପଣ-ମାନଙ୍କ ଅନୁଜ୍ଞା ପାଇଲେ ମୋର ପରାକ୍ରମ ତାହାକୁ ରୁଦ୍ଧ କରିଦେଇ ପାରିବ । ମୋ-କର୍ତ୍ତୃକ କ୍ଷିପ୍ତ ଅନୁପମ ଶୈଳବୃଷ୍ଟି ଯୁଦ୍ଧରେ ଦେବତାମାନଙ୍କୁ ମଧ୍ୟ ନିହତ କରିଦେଇ ପାରିବ; ସୁତରାଂ ସେ ରାକ୍ଷସମାନଙ୍କ କଥା କ'ଣ କହିବା ? । ୧୧-୧୨ । ସାଗର

ସାଗରୋଽପ୍ୟତିୟାଦ୍ ବେଲାଂ ମନ୍ଦରଃ ପ୍ରଚଲେଦପି ।
ନ ଜାମ୍ବବନ୍ତଂ ସମରେ କମ୍ପୟେଦରିବାହିନୀ । ୧୩ ।
ସର୍ବରାକ୍ଷସସଂଘାନାଂ ରାକ୍ଷସା ଯେ ଚ ପୂର୍ବଜାଃ ।
ଅଲମେକୋଽପି ନାଶାୟ ବୀରୋ ବାଳିସୁତଃ କପିଃ । ୧୪ ।
ପ୍ଲବଗସ୍ୟୋରୁବେଗେନ ନୀଲସ୍ୟ ଚ ମହାତ୍ମନଃ ।
ମନ୍ଦରୋଽପ୍ୟବଶୀର୍ଯ୍ୟେତ କିଂ ପୁନର୍ଯୁଧି ରାକ୍ଷସାଃ । ୧୫ ।
ସଦେବାସୁରଯକ୍ଷେଷୁ ଗନ୍ଧର୍ବୋରଗପକ୍ଷିଷୁ ।
ମୈନ୍ଦସ୍ୟ ପ୍ରତିଯୋଦ୍ଧାରଂ ଶଂସତ ଦ୍ୱିବିଦସ୍ୟ ବା । ୧୬ ।
ଅଶ୍ୱିପୁତ୍ରୌ ମହାବେଗାବେତୌ ପ୍ଲବଗସତ୍ତମୌ ।
ଏତୟୋଃ ପ୍ରତିଯୋଦ୍ଧାରଂ ନ ପଶ୍ୟାମି ରଣାଜିରେ । ୧୭ ।
ମୟୈବ ନିହତା ଲଙ୍କା ଦଗ୍ଧା ଭସ୍ମୀକୃତା ପୁରୀ ।
ରାଜମାର୍ଗେଷୁ ସର୍ବେଷୁ ନାମ ବିଶ୍ରାବିତଂ ମୟା । ୧୮ ।
ଜୟତ୍ୟତିବଳୋ ରାମୋ ଲକ୍ଷ୍ମଣଶ୍ଚ ମହାବଳଃ ।
ରାଜା ଜୟତି ସୁଗ୍ରୀବୋ ରାଘବେଣାଭିପାଳିତଃ । ୧୯ ।

---

ବରଂ ବେଳାଭୂମି ଅତିକ୍ରମ କରିପାରେ, ମନ୍ଦର ପର୍ବତ ମଧ୍ୟ ସ୍ୱସ୍ଥାନରୁ ବିଚଳିତ ହୋଇପାରେ; ମାତ୍ର ଶତ୍ରୁବାହିନୀ କଦାପି ଜାମ୍ବବାନଙ୍କୁ ଯୁଦ୍ଧରେ ବିଚଳିତ କରିଦେଇ ପାରିବ ନାହିଁ । ୧୩ । ସମଗ୍ର ରାକ୍ଷସଗୋଷ୍ଠୀ ମଧ୍ୟରେ ଯେଉଁ ବୟସ୍କ ରାକ୍ଷସମାନେ ଅଛନ୍ତି, ଏକମାତ୍ର ବାଳିପୁତ୍ର ବୀର ଅଙ୍ଗଦ ସେ ସମସ୍ତଙ୍କର ବିନାଶ ନିମନ୍ତେ ଯଥେଷ୍ଟ ସମର୍ଥ ଅଟନ୍ତି । ୧୪ । ମହାତ୍ମା ବାନର ନୀଳଙ୍କ ଉରୁବେଗରେ ଆହତ ହୋଇ ମନ୍ଦରପର୍ବତ ମଧ୍ୟ ଖଣ୍ଡବିଖଣ୍ଡ ହୋଇଯାଇପାରେ । ସୁତରାଂ ଯୁଦ୍ଧରେ ରାକ୍ଷସମାନେ ଯେ ଧ୍ୱସ୍ତବିଧ୍ୱସ୍ତ ହୋଇଯିବେ ସେଥିରେ ସନ୍ଦେହ କ'ଣ ? ।୧୫। ସମୁଦାୟ ସୁର, ଅସୁର, ଯକ୍ଷ, ଗନ୍ଧର୍ବ, ଉରଗ ଓ ବିହଙ୍ଗମାନଙ୍କ ମଧ୍ୟରେ ମୈନ୍ଦ ବା ଦ୍ୱିବିଦଙ୍କର ପ୍ରତିଦ୍ୱନ୍ଦୀ ଯୋଦ୍ଧା କିଏ ଅଛି, ତୁମ୍ଭେମାନେ କହ ଦେଖି ? । ୧୬ । ବାନରଶ୍ରେଷ୍ଠ ଅଶ୍ୱିନୀପୁତ୍ର ଦୁହେଁ ଅତି ବଳବାନ୍; ଯୁଦ୍ଧଭୂମିରେ ଏ ଦୁହିଁଙ୍କର ପ୍ରତିଯୋଦ୍ଧା ମୁଁ କାହାରିକୁ ଦେଖୁ ନାହିଁ ।୧୭। ମୁଁ ଏକାକୀ ଲଙ୍କାନଗରୀକୁ ନିହତ, ଦଗ୍ଧ ଏବଂ ଭସ୍ମୀକୃତକରି ରାଜମାର୍ଗରେ ସର୍ବତ୍ର ନିଜର ନାମ ଶୁଣାଇ ଦେଇ-ଆସିଛି । ୧୮। ମୁଁ ଘୋଷଣା କରିଦେଇଆସିଛି ଯେ ଅତି ବଳଶାଳୀ ରାମଙ୍କର ଜୟ, ମହାବଳୀ ଲକ୍ଷ୍ମଣଙ୍କର ଜୟ, ରାମପ୍ରତିପାଳିତ ରାଜା ସୁଗ୍ରୀବଙ୍କର ଜୟ । ୧୯ ।

ଅହଂ କୋଶଲରାଜସ୍ୟ ଦାସଃ ପବନସଂଭବଃ ।
ହନୂମାନିତି ସର୍ବତ୍ର ନାମ ବିଶ୍ରାବିତଂ ମୟା ॥ ୨୦ ॥
ଅଶୋକବନିକାମଧ୍ୟେ ରାବଣସ୍ୟ ଦୁରାତ୍ମନଃ ।
ଅଧସ୍ତାଚ୍ଛିଂଶପାମୂଲେ ସାଧ୍ୱୀ କରୁଣମାସ୍ଥିତା ॥ ୨୧ ॥
ରାକ୍ଷସୀଭିଃ ପରିବୃତା ଶୋକସଂତାପକର୍ଶିତା ।
ମେଘରେଖାପରିବୃତା ଚନ୍ଦ୍ରରେଖେବ ନିଷ୍ପ୍ରଭା ॥ ୨୨ ॥
ଅଚିନ୍ତୟନ୍ତୀ ବୈଦେହୀ ରାବଣଂ ବଲଦର୍ପିତମ୍ ।
ପତିବ୍ରତା ଚ ସୁଶ୍ରୋଣୀ ଅବଷ୍ଟବ୍ଧା ଚ ଜାନକୀ ॥ ୨୩ ॥
ଅନୁରକ୍ତା ହି ବୈଦେହୀ ରାମେ ସର୍ବାତ୍ମନା ଶୁଭା ।
ଅନନ୍ୟଚିତ୍ତା ରାମେ ଚ ପୌଲୋମୀବ ପୁରନ୍ଦରେ* ॥ ୨୪ ॥
ତଦେକବାସଃସଂବୀତା ରଜୋଧ୍ୱସ୍ତା ତଥୈବ ଚ ।
ସା ମୟା ରାକ୍ଷସୀମଧ୍ୟେ ତର୍ଜ୍ୟମାନା ମୁହୁର୍ମୁହୁଃ ॥ ୨୫ ॥

---

ମୁଁ କୋଶଳରାଜ ରାମଙ୍କର ଦାସ, ପବନପୁତ୍ର ଏବଂ ମୋର ନାମ ହନୁମାନ ଏହା ମୁଁ ସର୍ବତ୍ର ଶୁଣାଇଦେଇ ଆସିଛି ।୨୦। ଦୁରାତ୍ମା ରାବଣର ଅଶୋକବନ ମଧ୍ୟରେ ପତିବ୍ରତା ସୀତା ଶିଂଶପା ବୃକ୍ଷମୂଳରେ ଦୀନଭାବରେ ଅବସ୍ଥାନ କରୁଛନ୍ତି ।୨୧। ଶୋକସନ୍ତାପରେ କର୍ଶିତ ଏବଂ ରାକ୍ଷସୀମାନଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ଜାନକୀ ମେଘରେଖାଦ୍ୱାରା ପରିବୃତ ଚନ୍ଦ୍ରରେଖାପରି ପ୍ରଭାହୀନ ହୋଇପଡ଼ିଛନ୍ତି ।୨୨। ସେହି ସୁଶ୍ରୋଣୀ ପତିବ୍ରତା ଜନକନନ୍ଦିନୀ ରାବଣଦ୍ୱାରା ଅବରୁଦ୍ଧ ହୋଇଥିଲେ ମଧ୍ୟ ସେହି ବଳଦୃପ୍ତ ରାବଣକୁ ଆଦୌ ଖାତିର କରୁ ନାହାନ୍ତି ।୨୩। ଶଚୀ ଯେପରି ଇନ୍ଦ୍ରଙ୍କ ପ୍ରତି ଅନନ୍ୟଚିତ୍ତ ହୋଇ ରହିଥିଲେ, ଶୋଭନା ବିଦେହଦୁହିତା ମଧ୍ୟ ସେହିପରି ରାମଙ୍କ ପ୍ରତି ଅନନ୍ୟଚିତ୍ତଭାବରେ ଅନୁରକ୍ତ ହୋଇ ରହିଛନ୍ତି ।୨୪। ସୀତା ଧୂଳିଧୂସରିତ ହୋଇ, ଏକମାତ୍ର ବସ୍ତ୍ର ପରିଧାନକରି ରାକ୍ଷସୀମାନଙ୍କ ମଧ୍ୟରେ ରହିଛନ୍ତି ଏବଂ ସେହି ରାକ୍ଷସୀମାନେ ତାଙ୍କୁ ମୁହୁର୍ମୁହୁ ତାଡ଼ନା କରୁଛନ୍ତି । ସେ ଏକମାତ୍ର ବେଣୀ ଧାରଣ କରି ସ୍ୱାମୀଙ୍କ ଚିନ୍ତାରେ ତନ୍ମୟ ହୋଇ ଦୀନଭାବରେ

---

* ପୁରାଣମାନଙ୍କରେ ଉଲ୍ଲେଖ ଅଛି ଯେ ନହୁଷ ଯେତେବେଳେ ନିଜର ଧର୍ମାନୁଷ୍ଠାନ ବଳରେ ଇନ୍ଦ୍ରତ୍ୱ ପ୍ରାପ୍ତହୋଇ ସ୍ୱର୍ଗକୁ ଗଲେ, ସେତେବେଳେ ଶଚୀଙ୍କୁ ପତ୍ନୀରୂପେ ଗ୍ରହଣ କରିବା ପାଇଁ ବହୁ ଉଦ୍ୟମ କରିଥିଲେ । ମାତ୍ର ଶଚୀ ଇନ୍ଦ୍ରଙ୍କ ପ୍ରତି ଅନନ୍ୟମନା ରହିଥିଲେ ଏବଂ ନହୁଷ ଅଗସ୍ତ୍ୟ ମହର୍ଷିଙ୍କୁ ଅବମାନନା କରି ଇନ୍ଦ୍ରପଦରୁ ଚ୍ୟୁତ ହେବାପରେ ଶଚୀ ପୁନର୍ବାର ଇନ୍ଦ୍ରଙ୍କ ସହିତ ମିଳିତ ହୋଇଥିଲେ ।

ରାକ୍ଷସୀଭିର୍ବିରୂପାଭିର୍ଦୃଷ୍ଟା ହି ପ୍ରମଦାବନେ ।
ଏକବେଣୀଧରା ଦୀନା ଭର୍ତ୍ତୃଚିନ୍ତାପରାୟଣା । ୨୬ ।
ଅଧଃଶଯ୍ୟାବିବର୍ଣାଙ୍ଗୀ ପଦ୍ମିନୀବ ହିମୋଦୟେ ।
ରାବଣାଦ୍ବିନିବୃତ୍ତାର୍ଥା ମର୍ତ୍ତବ୍ୟକୃତନିଶ୍ଚୟା । ୨୭ ।
କଥଂଚନ୍ମୃଗଶାବାକ୍ଷୀ ବିଶ୍ୱାସମୁପପାଦିତା ।
ତତଃ ସଂଭାଷିତା ଚୈବ ସର୍ବମର୍ଥଂ ପ୍ରକାଶିତା । ୨୮ ।
ରାମସୁଗ୍ରୀବସଖ୍ୟଂ ଚ ଶ୍ରୁତ୍ୱା ପ୍ରୀତିମୁପାଗତା ।
ନିୟତଃ ସମୁଦାଚାରୋ ଭକ୍ତିର୍ଭର୍ତ୍ତରି ଚୋତ୍ତମା । ୨୯ ।
ଯନ୍ନ ହନ୍ତି ଦଶଗ୍ରୀବଂ ସ ମହାତ୍ମା ଦଶାନନଃ ।
ନିମିତ୍ତମାତ୍ରଂ ରାମସ୍ତୁ ବଧେ ତସ୍ୟ ଭବିଷ୍ୟତି । ୩୦ ।
ସା ପ୍ରକୃତ୍ୟୈବ ତନ୍ୱଙ୍ଗୀ ତଦ୍ୱିୟୋଗାଚ୍ଚ କର୍ଶିତା ।
ପ୍ରତିପତ୍ପାଠଶୀଲସ୍ୟ ବିଦ୍ୟେବ ତନୁତାଂ ଗତା । ୩୧ ।
ଏବମାସ୍ତେ ମହାଭାଗା ସୀତା ଶୋକପରାୟଣା ।
ଯଦତ୍ର ପ୍ରତିକର୍ତ୍ତବ୍ୟଂ ତତ୍ସର୍ବମୁପକଳ୍ପ୍ୟତାମ୍ । ୩୨ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ସୁନ୍ଦରକାଣ୍ଡେ ଅନନ୍ତରକାର୍ଯ୍ୟନିରୂପଣଂ ନାମ ଏକୋନଷଷ୍ଟିତମଃ ସର୍ଗଃ ।

---

ରାକ୍ଷସୀପରିବେଷ୍ଟିତ ହୋଇ ପ୍ରମଦାବନରେ ରହିଛନ୍ତି ଏବଂ ଭୂମିରେ ଶୟନ କରୁଥିବାହେତୁ ତାଙ୍କର ଶରୀର ହିମାଗମରେ ପଦ୍ମପୁଷ୍ପସଦୃଶ ବିବର୍ଣ୍ଣ ହୋଇଯାଇଅଛି । ରାବଣପ୍ରତି ତାଙ୍କର ଲେଶମାତ୍ର ପ୍ରବୃତ୍ତି ନାହିଁ ଏବଂ ସେ ମରିବାପାଇଁ କୃତସଂକଳ୍ପ ହୋଇଅଛନ୍ତି । ୨୫-୨୭ । ମୁଁ କୌଣସିମତେ ସେହି ମୃଗଶିଶୁନୟନାଙ୍କ ମନରେ ବିଶ୍ୱାସ ଉତ୍ପାଦନପୂର୍ବକ ତାଙ୍କ ସହିତ ସମ୍ଭାଷଣକରି ସମସ୍ତ ବୃତ୍ତାନ୍ତ ତାଙ୍କ ନିକଟରେ ପ୍ରକାଶ କରିଅଛି । ୨୮ । ସେ ରାମଙ୍କ ସହିତ ସୁଗ୍ରୀବଙ୍କ ମିତ୍ରତା ବିଷୟ ଶୁଣି ପ୍ରୀତି ଲାଭକଲେ । ତାଙ୍କର ସଂଯମ, ସଦାଚାର ଏବଂ ଉତ୍କୃଷ୍ଟ ପତିଭକ୍ତି ଯେ ରାବଣକୁ ନିହତ କରିଦେଇ ନାହିଁ, ସେଥିରୁ ଜଣାଯାଉଛି ଯେ ଦଶାନନ ଜଣେ ମହାତ୍ମା । ଯାହାହେଉ ସେହି ରାବଣର ବଧରେ ରାମ କେବଳ ନିମିତ୍ତମାତ୍ର ହେବେ । ୨୯-୩୦ । ସୀତା ସ୍ୱଭାବତଃ କ୍ଷୀଣଶରୀରା, ପୁଣି ରାମଙ୍କ ବିୟୋଗରେ ଦୁଃଖିତହୋଇ, ପ୍ରତିପଦ୍ ତିଥିରେ ବିଦ୍ୟାଭ୍ୟାସ କରୁଥିବା ଲୋକର ବିଦ୍ୟା ଯେପରି କ୍ଷୀଣହୋଇଯାଏ, ସେହିପରି ସେ ଅତିଶୟ କ୍ଷୀଣହୋଇ ଯାଇଛନ୍ତି । ୩୧ । ମହାଭାଗା ସୀତା ଏହିପରି ଶୋକପରାୟଣା ହୋଇ ରହିଛନ୍ତି; ସୁତରାଂ ଏ କ୍ଷେତ୍ରରେ ଯାହା ପ୍ରତିକର୍ତ୍ତବ୍ୟ ତାହା ଆପଣମାନେ ସ୍ଥିର କରନ୍ତୁ” । ୩୨ ।

— — — —

# ଷଷ୍ଟିତମଃ ସର୍ଗଃ

## ଅଙ୍ଗଦଜାମ୍ବବତ୍ସମ୍ବାଦଃ

ତସ୍ୟ ତଦ୍‌ବଚନଂ ଶ୍ରୁତ୍ୱା ବାଳସୂନୁରଭାଷତ ।
ଅଶ୍ୱିପୁତ୍ରୌ ମହାବେଗୌ ବଲବନ୍ତୌ ପ୍ଲବଙ୍ଗମୌ । ୧ ।
ପିତାମହବରୋତ୍ସେକାତ୍ପରମଂ ଦର୍ପମାସ୍ଥିତୌ ।
ଅଶ୍ୱିନୋର୍ମାନନାର୍ଥଂ ହି ସର୍ବଲୋକପିତାମହଃ ।୨।
ସର୍ବାବଧ୍ୟତ୍ୱମତୁଲମନୟୋର୍ଦତ୍ତବାନ୍ ପୁରା ।
ବରୋତ୍ସେକେନ ମତ୍ତୌ ଚ ପ୍ରମଥ୍ୟ ମହତୀଂ ଚମୂମ୍ । ୩ ।
ସୁରାଣାମମୃତଂ ବୀରୌ ପୀତବନ୍ତୌ ମହାବଲୌ ।
ଏତାବେବ ହି ସଂକ୍ରୁଦ୍ଧୌ ସବାଜିରଥକୁଞ୍ଜରାମ୍ । ୪ ।
ଲଙ୍କାଂ ନାଶୟିତୁଂ ଶକ୍ତୌ ସର୍ବେ ତିଷ୍ଠନ୍ତୁ ବାନରାଃ ।
ଅହମେକୋଽପି ପର୍ଯ୍ୟାପ୍ତଃ ସରାକ୍ଷସଗଣାଂ ପୁରୀମ୍ । ୫ ।
ତାଂ ଲଙ୍କାଂ ତରସା ହନ୍ତୁଂ ରାବଣଂ ଚ ମହାବଲମ୍ ।
କିଂ ପୁନଃ ସହିତୋ ବୀରୈର୍ବଲବଦ୍ଭିଃ କୃତାତ୍ମଭିଃ । ୬ ।

---

# ୬୦ଶ ସର୍ଗ

## ( ଅଙ୍ଗଦ ଓ ଜାମ୍ବବାନଙ୍କ ପରାମର୍ଶ )

ହନୁମାନଙ୍କର ଏହି କଥା ଶୁଣି ବାଳପୁତ୍ର ଅଙ୍ଗଦ କହିଲେ, "ଅଶ୍ୱିନୀଙ୍କ ପୁତ୍ର ବାନର ଦୁହେଁ ମହାବେଗଶାଳୀ ଓ ବଳବାନ୍ ଅଟନ୍ତି । ୧ । ସେ ଦୁହେଁ ବ୍ରହ୍ମାଙ୍କଠାରୁ ବର ପାଇଥିବାହେତୁରୁ ଅତିଶୟ ଦୃପ୍ତ ଅଟନ୍ତି । ଅଶ୍ୱିନୀକୁମାରଙ୍କ ପ୍ରତି ସମ୍ମାନକରି ସର୍ବଲୋକପିତାମହ ବ୍ରହ୍ମା ପୂର୍ବକାଳରେ ଏ ଦୁହିଁଙ୍କୁ 'ସମସ୍ତଙ୍କ ଦ୍ୱାରା ଅବଧ୍ୟ' ଏହି ଅନୁପମ ବର ଦେଇଥିଲେ । ସେ ଦୁଇ ବୀର ଏହି ବର-ଦର୍ପରେ ଉନ୍ମତ୍ତ ହୋଇ ଦେବତାମାନଙ୍କର ବିଶାଳ ସେନାକୁ ମଥିତ କରି ଅମୃତ ପାନ କରିଥିଲେ । ଏହି ଦୁଇ ବଳବାନ୍ ବାନର ହିଁ କ୍ରୁଦ୍ଧ ହେଲେ ଅଶ୍ୱ, ରଥ, ହସ୍ତିସମେତ ସମସ୍ତ ଲଙ୍କାନଗରୀକୁ ବିନାଶ କରିଦେବାକୁ ସମର୍ଥ ଅଟନ୍ତି । ଅନ୍ୟ ସମସ୍ତ ବାନରମାନେ ତୁନିହୋଇ ରହିଥାନ୍ତୁ; ମୁଁ ଏକାକୀ ମଧ୍ୟ ରାକ୍ଷସଗଣଙ୍କ ସହିତ ଲଙ୍କାପୁରୀକୁ ତଥା ମହାବଳୀ ରାବଣକୁ ହତ କରିବାକୁ ଯଥେଷ୍ଟ ଅଟେଁ ।

କୃତାସ୍ତ୍ରୈଃ ପ୍ଲବଗୈଃ ଶକ୍ତୈର୍ଭବଦ୍ଭିର୍ବିଜୟୈଷିଭିଃ ।
ବାୟୁସୂନୋର୍ବଲେନୈବ ଦଗ୍ଧା ଲଙ୍କେତି ନଃ ଶ୍ରୁତମ୍ । ୭ ।
ଦୃଷ୍ଟ୍ୱା ଦେବୀ ନ ଚାନୀତା ଇତି ତତ୍ର ନିବେଦିତୁମ୍ ।
ନ ଯୁକ୍ତମିବ ପଶ୍ୟାମି ଭବଦ୍ଭିଃ ଖ୍ୟାତପୌରୁଷୈଃ । ୮ ।
ନ ହି ବଃ ପ୍ଲବନେ କଶ୍ଚିନ୍ନାପି କଶ୍ଚିତ୍ପରାକ୍ରମେ ।
ତୁଲ୍ୟଃ ସାମରଦୈତ୍ୟେଷୁ ଲୋକେଷୁ ହରିସତ୍ତମାଃ ! । ୯ ।
ଜିତ୍ୱା ଲଙ୍କାଂ ସରକ୍ଷୌଘାଂ ହତ୍ୱା ତଂ ରାବଣଂ ରଣେ ।
ସୀତାମାଦାୟ ଗଚ୍ଛାମଃ ସିଦ୍ଧାର୍ଥା ହୃଷ୍ଟମାନସାଃ । ୧୦ ।
ତେଷ୍ୱେବଂ ହତଶେଷେଷୁ ରାକ୍ଷସେଷୁ ହନୂମତା ।
କିମନ୍ୟଦତ୍ର କର୍ତ୍ତବ୍ୟଂ ଗୃହୀତ୍ୱା ଯାମ ଜାନକୀମ୍ । ୧୧ ।
ରାମଲକ୍ଷ୍ମଣୟୋର୍ମଧ୍ୟେ ନ୍ୟସ୍ୟାମ ଜନକାତ୍ମଜାମ୍ ।
କିଂ ବ୍ୟଲୀକୈସ୍ତୁ ତାନ୍ ସର୍ବାନ୍ ବାନରାନ୍ ବାନରର୍ଷଭାନ୍ ।୧୨।

---

ପୁଣି ଆପଣମାନଙ୍କ ପରି ଅସ୍ତ୍ରନିପୁଣ, କୃତାତ୍ମା, ବଳବାନ୍, ବିଜୟାଭିଳାଷୀ, ବୀରମାନେ ସଙ୍ଗରେ ଥିଲେ ଆଉ କଥା କ'ଣ ଅଛି ? ଆମ୍ଭେମାନେ ଶୁଣିଲେଇଁ ଯେ ବାୟୁପୁତ୍ର ହନୂମାନ୍ ଲଙ୍କାକୁ ଦଗ୍ଧକରି ଦେଇଛନ୍ତି । ୬-୭ । ମାତ୍ର ସେ ସୀତାଙ୍କୁ ଦେଖିଲେ; କିନ୍ତୁ ଘେନି ଆସିଲେ ନାହିଁ, 'ଏହି କଥା ଆପଣମାନଙ୍କ ପରି ବିଖ୍ୟାତପୌରୁଷ ବ୍ୟକ୍ତିମାନେ ସେଠାରେ ଯାଇ ଜଣାଇବେ—ଏହା ମୋତେ ସମୀଚୀନ ବୋଧ ହେଉ ନାହିଁ । ୮ । ହେ ବାନରଶ୍ରେଷ୍ଠଗଣ ! ଦେବତା ଏବଂ ଅସୁରଙ୍କ ସହିତ ସମଗ୍ର ଲୋକମଧ୍ୟରେ ପରାକ୍ରମ ଏବଂ ପ୍ଲବନ କୌଣସି ବିଷୟରେ କେହି ଆପଣମାନଙ୍କ ସହିତ ସମକକ୍ଷ ନୁହନ୍ତି । ୯ । ଆମ୍ଭେମାନେ ରାକ୍ଷସବଳ ସହିତ ଲଙ୍କା ଜୟକରି, ଯୁଦ୍ଧରେ ରାବଣକୁ ନିହତକରି, ସୀତାଙ୍କୁ ସଙ୍ଗରେ ଘେନି, ସଫଳମନୋରଥ ଏବଂ ହୃଷ୍ଟଚିତ୍ତ ହୋଇ ଏଠାରୁ ଯିବା । ୧୦ । ହନୂମାନଙ୍କ କର୍ତ୍ତୃକ ରାକ୍ଷସଗଣ ଯେତେବେଳେ ନିହତ ହୋଇ ଆଉ ସାମାନ୍ୟ କିଛି ବାକି ରହିଯାଇଛନ୍ତି, ସେତେବେଳେ ଜାନକୀଙ୍କୁ ସଙ୍ଗରେ ନେଇ ଯିବା ଛଡ଼ା ଆମ୍ଭମାନଙ୍କର ଆଉ ଏ କ୍ଷେତ୍ରରେ ଅନ୍ୟ କି କର୍ତ୍ତବ୍ୟ ଥାଇପାରେ ? ।୧୧। ଆମ୍ଭେମାନେ ରାମ ଏବଂ ଲକ୍ଷ୍ମଣଙ୍କ ମଧ୍ୟରେ ଜାନକୀଙ୍କୁ ନେଇ ଥୋଇଦେବା । ସେହି କିଷ୍କିନ୍ଧାବାସୀ ଅନ୍ୟ ବାନରଶ୍ରେଷ୍ଠମାନଙ୍କୁ ଆଉ ବୃଥା ହଇରାଣ କରିବାର କି ପ୍ରୟୋଜନ ଅଛି ? ।୧୨। ଅତଏବ ଲଙ୍କାକୁ ଯାଇ ପ୍ରଧାନ ପ୍ରଧାନ ରାକ୍ଷସମାନଙ୍କୁ

ବୟମେବ ହି ଗତ୍ୱା ତାନ୍ ହତ୍ୱା ରାକ୍ଷସପୁଙ୍ଗବାନ୍ ।
ରାଘବଂ ଦ୍ରଷ୍ଟୁମର୍ହାମଃ ସୁଗ୍ରୀବଂ ସହଲକ୍ଷ୍ମଣମ୍ । ୧୩ ।
ତମେବଂ କୃତସଂକଳ୍ପଂ ଜାମ୍ବବାନ୍ ହରିସତ୍ତମଃ ।
ଉବାଚ ପରମପ୍ରୀତୋ ବାକ୍ୟମର୍ଥବଦର୍ଥବତ୍ । ୧୪ ।
ନୈଷା ବୁଦ୍ଧିର୍ମହାବୁଦ୍ଧେ ! ଯଦ୍‌ବ୍ରବୀଷି ମହାକପେ !
ବିଚେତୁଂ ବୟମାଜ୍ଞପ୍ତା ଦକ୍ଷିଣାଂ ଦିଶମୁତ୍ତମାମ୍ । ୧୫ ।
ନାନେତୁଂ କପିରାଜେନ ନୈବ ରାମେଣ ଧୀମତା ।
କଥଂଚିନ୍ନିର୍ଜିତାଂ ସୀତାମସ୍ମାଭିର୍ନାଭିରୋଚୟେତ୍ ।୧୬ ।
ରାଘବୋ ନୃପଶାର୍ଦ୍ଦୂଲଃ କୁଳଂ ବ୍ୟପଦିଶନ୍ ସ୍ୱକମ୍ ।
ପ୍ରତିଜ୍ଞାୟ ସ୍ୱୟଂ ରାଜା ସୀତାବିଜୟମଗ୍ରତଃ । ୧୭ ।
ସର୍ବେଷାଂ କପିମୁଖ୍ୟାନାଂ କଥଂ ମିଥ୍ୟା କରିଷ୍ୟତି ।
ବିଫଳଂ କର୍ମ ଚ କୃତଂ ଭବେତ୍ତୁଷ୍ଟିର୍ନ ତସ୍ୟ ଚ । ୧୮ ।
ବୃଥା ଚ ଦର୍ଶିତଂ ବୀର୍ଯ୍ୟଂ ଭବେଦ୍‌ବାନରପୁଙ୍ଗବାଃ !
ତସ୍ମାଦ୍ ଗଚ୍ଛାମ ବୈ ସର୍ବେ ଯତ୍ର ରାମଃ ସଲକ୍ଷ୍ମଣଃ ।
ସୁଗ୍ରୀବଶ୍ଚ ମହାତେଜାଃ କାର୍ଯ୍ୟସ୍ୟାସ୍ୟ ନିବେଦନେ । ୧୯ ।

---

ନିହତକରି ପରେ ରାମ ଲକ୍ଷ୍ମଣ ଏବଂ ସୁଗ୍ରୀବଙ୍କୁ ସାକ୍ଷାତ କରିବା ଆମ୍ଭମାନଙ୍କର ଉଚିତ । ୧୩ । ଏହିପରି କୃତସଂକଳ୍ପ ହୋଇଥିବା ଅଙ୍ଗଦଙ୍କୁ ବାନରଶ୍ରେଷ୍ଠ କାର୍ଯ୍ୟବିତ୍ ଜାମ୍ବବାନ୍ ଅତିଶୟ ପ୍ରୀତହୋଇ ଅର୍ଥସଙ୍ଗତ ବାକ୍ୟରେ କହିଲେ ।୧୪। "ହେ ବୁଦ୍ଧିମାନ୍ ବାନରଶ୍ରେଷ୍ଠ ! ଏ ବୁଦ୍ଧି ଯୁକ୍ତିଯୁକ୍ତ ନୁହେଁ; କାରଣ, ଧୀମାନ୍ ରାମ ଏବଂ କପିରାଜ ଆମ୍ଭମାନଙ୍କୁ କେବଳ ଦକ୍ଷିଣ ଦିଗକୁ ଅନ୍ୱେଷଣ କରିବାକୁ ଆଦେଶ ଦେଇଛନ୍ତି; କିନ୍ତୁ ସୀତାଙ୍କୁ ଆଣିବାକୁ କହି ନାହାନ୍ତି । ଆମ୍ଭେମାନେ ସୀତାଙ୍କୁ କୌଣସିପ୍ରକାରେ ଜୟକରି ନେଇ ଆସିବା କଦାପି ତାଙ୍କର ମନୋମତ ହେବ ନାହିଁ । ୧୫–୧୬ । ସେହି ରାଜସିଂହ ରାମ ନିଜର କୁଳମର୍ଯ୍ୟାଦା ବିଷୟ ଉଲ୍ଲେଖକରି ପ୍ରଧାନ ପ୍ରଧାନ ବାନରମାନଙ୍କ ସମ୍ମୁଖରେ ସ୍ୱୟଂ ସୀତାଙ୍କୁ ଉଦ୍ଧାର କରିଆଣିବେ ବୋଲି ପ୍ରତିଜ୍ଞା କରିଛନ୍ତି । ସେ ସେହି ପ୍ରତିଜ୍ଞାକୁ କିପରି ମିଥ୍ୟା କରିବେ ? ସୁତରାଂ ଏହାଦ୍ୱାରା ସେ କଦାପି ତୁଷ୍ଟ ହେବେ ନାହିଁ ଏବଂ ଆମ୍ଭମାନଙ୍କର ଏ କାର୍ଯ୍ୟ କରିବା ବିଫଳ ହେବ ।୧୭-୧୮। ହେ ବାନରପ୍ରଧାନଗଣ ! ତାହାହେଲେ ଆମ୍ଭମାନଙ୍କର ଏ ବୀରତ୍ୱପ୍ରଦର୍ଶନ ବୃଥା ହେବ; ସୁତରାଂ ରାମ, ଲକ୍ଷ୍ମଣ ଏବଂ ମହାତେଜା ସୁଗ୍ରୀବ ଯେଉଁଠାରେ ଅଛନ୍ତି, ଚାଲ, ସେହିଠାକୁ ଯାଇ

ନ ତାବଦେଷା ମତିରକ୍ଷମା ନୋ-
ଯଥା ଭବାନ୍ ପଶ୍ୟତି ରାଜପୁତ୍ର !
ଯଥା ତୁ ରାମସ୍ୟ ମତିର୍ନିବିଷ୍ଟା
ତଥା ଭବାନ୍ ପଶ୍ୟତୁ କାର୍ଯସିଦ୍ଧିମ୍ । ୨୦ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ସୁନ୍ଦରକାଣ୍ଡେ ଅଙ୍ଗଦ-ଜାମ୍ବବତ୍ସମ୍ବାଦୋ ନାମ ଷଷ୍ଟିତମଃ ସର୍ଗଃ ।

---

# ଏକଷଷ୍ଟିତମଃ ସର୍ଗଃ

## ମଧୁବନପ୍ରବେଶଃ

ତତୋ ଜାମ୍ବବତୋ ବାକ୍ୟମଗୃହ୍ଣନ୍ତ ବନୌକସଃ ।
ଅଙ୍ଗଦପ୍ରମୁଖା ବୀରା ହନୂମାଂଶ୍ଚ ମହାକପିଃ । ୧ ।
ପ୍ରୀତିମନ୍ତସ୍ତତଃ ସର୍ବେ ବାୟୁପୁତ୍ରପୁରଃସରାଃ ।
ମହେନ୍ଦ୍ରାଗ୍ରାତ୍ସମୁତ୍ପତ୍ୟ ପୁପ୍ଲୁବୁଃ ପ୍ଲବଗର୍ଷଭାଃ । ୨ ।

---

ଏହି କାର୍ଯ୍ୟ ସେମାନଙ୍କୁ ନିବେଦନ କରିବା । ୧୯ । ହେ ରାଜପୁତ୍ର ! ତୁମ୍ଭେ ଯେପରି ବିଚାରକରୁଛ, ଆମ୍ଭେମାନେ ସେ ତାହା ନ କରିପାରିବା ତାହା ନୁହେଁ; ତଥାପି ରାମ ତାଙ୍କ ମନରେ ଯାହା ସ୍ଥିର କରିଛନ୍ତି, ତଦନୁଯାୟୀ ତାଙ୍କର କାର୍ଯ୍ୟସିଦ୍ଧି ପ୍ରତି ଦୃଷ୍ଟି ଦିଅ" । ୨୦ ।

---

## ୬୧ଶ ସର୍ଗ

### ( ମଧୁବନପ୍ରବେଶ )

ଅନନ୍ତର ଅଙ୍ଗଦପ୍ରମୁଖ ବନବାସୀ ବୀର ବାନରଗଣ ଏବଂ ମହାକପି ହନୁମାନ୍ ସମସ୍ତେ ଜାମ୍ବବାନଙ୍କର କଥାକୁ ଗ୍ରହଣକଲେ । ୧ । ଅନନ୍ତର ସେହି ବାନର ବୀରମାନେ ହନୁମାନଙ୍କୁ ଅଗ୍ରଗାମୀ କରି ପ୍ରୀତିଚିତ୍ତରେ ମହେନ୍ଦ୍ର ପର୍ବତରୁ ଉତ୍ପତିତ ହୋଇ ଲମ୍ଫପ୍ରଦାନପୂର୍ବକ ଗମନକଲେ । ୨ । ମେରୁ ଓ ମନ୍ଦରପର୍ବତ

ମେରୁମନ୍ଦରସଂକାଶା ମତ୍ତା ଇବ ମହାଗଜାଃ ।
ଛାଦୟନ୍ତ ଇବାକାଶଂ ମହାକାୟା ମହାବଲାଃ । ୩ ।
ସଭାଜ୍ୟମାନଂ ଭୂତୈସ୍ତମାତ୍ମବନ୍ତଂ ମହାବଲମ୍ ।
ହନୂମନ୍ତଂ ମହାବେଗଂ ବହନ୍ତ ଇବ ଦୃଷ୍ଟିଭିଃ । ୪ ।
ରାଘବେ ଚାର୍ଥନିର୍ବୃତ୍ତିଂ କର୍ତୁଂ ଚ ପରମଂ ଯଶଃ ।
ସମାଧାୟ ସମୃଦ୍ଧାର୍ଥାଃ କର୍ମସିଦ୍ଧିଭିରୁନ୍ନତାଃ । ୫ ।
ପ୍ରିୟାଖ୍ୟାନୋନ୍ମୁଖାଃ ସର୍ବେ ସର୍ବେ ଯୁଦ୍ଧାଭିନନ୍ଦିନଃ ।
ସର୍ବେ ରାମପ୍ରତୀକାରେ ନିଶ୍ଚିତାର୍ଥା ମନସ୍ୱିନଃ । ୬ ।
ପ୍ଲବମାନାଃ ଖମାପ୍ଲୁତ୍ୟ ତତସ୍ତେ କାନନୌକସଃ ।
ନନ୍ଦନୋପମମାସେଦୁର୍ବନଂ ଦ୍ରୁମଶତାୟୁତମ୍ । ୭ ।
ଯତ୍ତନ୍ମଧୁବନଂ ନାମ ସୁଗ୍ରୀବସ୍ୟାଭିରକ୍ଷିତମ୍ ।
ଅଧୃଷ୍ୟଂ ସର୍ବଭୂତାନାଂ ସର୍ବଭୂତମନୋହରମ୍ । ୮ ।
ଯଦ୍ରକ୍ଷତି ମହାବୀର୍ଯଃ ସଦା ଦଧିମୁଖଃ କପିଃ ।
ମାତୁଲଃ କପିମୁଖ୍ୟସ୍ୟ ସୁଗ୍ରୀବସ୍ୟ ମହାତ୍ମନଃ । ୯ ।

---

ସଦୃଶ ସେହି ମହାକାୟ ମହାବଳ ବାନରମାନେ ବିଶାଳକାୟ (ମତ୍ତହସ୍ତୀଙ୍କ ପରି ଆକାଶକୁ ଆଚ୍ଛନ୍ନକରି ଚାଲିଲେ । ୩ । ଭୂତଗଣଙ୍କ ଦ୍ୱାରା ସମ୍ମାନିତ ଆତ୍ମଜ୍ଞାନ-ସମ୍ପନ୍ନ ମହାବଳୀ ଓ ମହାବେଗବାନ୍ ହନୂମାନଙ୍କୁ ସେମାନେ ଯେପରିକି ସମ୍ମାନ-ସୂଚକ ଦୃଷ୍ଟିଦ୍ୱାରା ବହନକରି ନେଇଗଲେ । ୪ । ସେମାନେ ସମସ୍ତେ ରାମଙ୍କର କାର୍ଯ୍ୟସିଦ୍ଧି ଏବଂ ତାଙ୍କର ପରମଯଶୋଲାଭ ନିମନ୍ତେ କୃତସଂକଳ୍ପ ହୋଇଥିଲେ; କାର୍ଯ୍ୟସିଦ୍ଧି ଦ୍ୱାରା ସେମାନଙ୍କର ମନୋରଥ ସଫଳ ଏବଂ ମନ ଉନ୍ନତ ହୋଇଥିଲା । ୫ । ସେହି ମନସ୍ୱୀ ବାନରମାନେ ସମସ୍ତେ ପ୍ରିୟସମ୍ବାଦ ଦେବାନିମନ୍ତେ ଉତ୍ସୁକ, ସମସ୍ତେ ଯୁଦ୍ଧୋତ୍ସାହୀ ଏବଂ ସମସ୍ତେ ରାମଙ୍କର ବୈରନିର୍ଯ୍ୟାତନ ନିମନ୍ତେ କୃତସଂକଳ୍ପ । ୬ । ସେହି ବନବାସୀ ବାନରମାନେ ଆକାଶରେ ଡେଇଁ ଡେଇଁ ଶତ ଶତ ବୃକ୍ଷପରିପୂର୍ଣ୍ଣ ନନ୍ଦନବନସଦୃଶ ଏକ ବନରେ ଉପସ୍ଥିତ ହେଲେ । ୭ । ଏହି 'ମଧୁବନ' ନାମକ ସୁଗ୍ରୀବଙ୍କ ବନ ଉତ୍ତମରୂପେ ସୁରକ୍ଷିତ ଥିଲା । ଏହି ବନ ସମସ୍ତ ପ୍ରାଣୀଙ୍କ କର୍ତ୍ତୃକ ଅଧୃଷ୍ୟ ଏବଂ ସବୁ ପ୍ରାଣୀଙ୍କର ମନୋହର । ୮ । ମହାତ୍ମା, ବାନରଶ୍ରେଷ୍ଠ ସୁଗ୍ରୀବଙ୍କର ମାତୁଳ ମହାବୀର୍ଯ୍ୟଶାଳୀ ବାନର ଦଧିମୁଖ ସର୍ବଦା ଏହି ବନର ରକ୍ଷକ ଥିଲେ । ୯ । ସେହି ବାନରମାନେ ବାନରରାଜଙ୍କର ଏହି

ତେ ତଦ୍‌ବନମୁପାଗମ୍ୟ ବଭୂବୁଃ ପରମୋତ୍କଟାଃ ।
ବାନରା ବାନରେନ୍ଦ୍ରସ୍ୟ ମନଃକାନ୍ତଂ ମହାବନମ୍ । ୧୦ ।
ତତସ୍ତେ ବାନରା ହୃଷ୍ଟା ଦୃଷ୍ଟ୍ୱା ମଧୁବନଂ ମହତ୍ ।
କୁମାରମଭ୍ୟଯାଚନ୍ତ ମଧୂନି ମଧୁପିଙ୍ଗଳାଃ । ୧୧ ।
ତତଃ କୁମାରସ୍ତାନ୍ ବୃଦ୍ଧାନ୍ ଜାମ୍ବବତ୍ପ୍ରମୁଖାନ୍ କପୀନ୍ ।
ଅନୁମାନ୍ୟ ଦଦୌ ତେଷାଂ ନିସର୍ଗଂ ମଧୁଭକ୍ଷଣେ । ୧୨ ।
ନିସୃଷ୍ଟାସ୍ତେ କୁମାରେଣ ଧୀମତା ବାଲିସୂନୁନା ।
ହରୟଃ ସମପଦ୍ୟନ୍ତ ଦ୍ରୁମାନ୍ମଧୁକରାକୁଲାନ୍ । ୧୩ ।
ଭକ୍ଷୟନ୍ତଃ ସୁଗନ୍ଧୀନି ମୂଳାନି ଚ ଫଳାନି ଚ ।
ଜଗ୍ମୁଃ ପ୍ରହର୍ଷଂ ତେ ସର୍ବେ ବଭୂବୁଶ୍ଚ ମଦୋତ୍କଟାଃ । ୧୪ ।
ତତଶ୍ଚାନୁମତାଃ ସର୍ବେ ସୁସଂହୃଷ୍ଟା ବନୌକସଃ ।
ମୁଦିତାଶ୍ଚ ତତସ୍ତେ ଚ ପ୍ରନୃତ୍ୟନ୍ତ ତତସ୍ତତଃ । ୧୫ ।

ଗାୟନ୍ତି କେଚିତ୍ ପ୍ରହସନ୍ତି କେଚି-
ନ୍ନୃତ୍ୟନ୍ତି କେଚିତ୍ ପ୍ରଣମନ୍ତି କେଚିତ୍ ।
ପଠନ୍ତି କେଚିତ୍ ପ୍ରଚରନ୍ତି କେଚିତ୍
ପ୍ଲବନ୍ତି କେଚିତ୍ ପ୍ରଲପନ୍ତି କେଚିତ୍ । ୧୬ ।

---

ମନୋରମ ମହାବନରେ ପହଞ୍ଚି ଅତିଶୟ ମଦଦୃପ୍ତ ହୋଇଉଠିଲେ ।୧୦। ଅନନ୍ତର ମଧୁସଦୃଶ ପିଙ୍ଗଳବର୍ଣ୍ଣ ସେହି ବାନରମାନେ ସେ ବିଶାଳ ମଧୁବନକୁ ଦେଖି ଅତିଶୟ ହୃଷ୍ଟହୋଇ କୁମାର ଅଙ୍ଗଦଙ୍କୁ ମଧୁପାନନିମନ୍ତେ ପ୍ରାର୍ଥନାକଲେ । ୧୧ । ଅନନ୍ତର କୁମାର ଅଙ୍ଗଦ ଜାମ୍ବବାନ୍ ପ୍ରଭୃତି ବୟୋବୃଦ୍ଧ ସେହି ବାନରମାନଙ୍କୁ ମଧୁଭକ୍ଷଣ କରିବା ନିମନ୍ତେ ସ୍ୱାଧୀନତା ପ୍ରଦାନକଲେ । ୧୨ । ସେହି ବାନରମାନେ ସମସ୍ତେ ଧୀମାନ୍ ବାଳିପୁତ୍ର ଅଙ୍ଗଦଙ୍କ ଦ୍ୱାରା ଆଦିଷ୍ଟହୋଇ ମଧୁମକ୍ଷିକାସମାକୁଳ ବୃକ୍ଷମାନଙ୍କରେ ଆରୋହଣକଲେ । ୧୩ । ସେମାନେ ସୁଗନ୍ଧ ଫଳମୂଳ ଭକ୍ଷଣକରି ଅତିଶୟ ଆନନ୍ଦିତ ହେଲେ ଏବଂ ମଦୋନ୍ମତ୍ତ ହୋଇପଡ଼ିଲେ । ୧୪ । ଏହାପରେ ସେହି ବନବାସୀ ବାନରମାନେ ଆନନ୍ଦିତ ହୋଇ ଏଣେ ତେଣେ ନୃତ୍ୟ କରିବାକୁ ଲାଗିଲେ । ୧୫ । ଅନନ୍ତର କେହି ନୃତ୍ୟ, କେହି ପ୍ରଣାମ, କେହି ଗାନ, କେହି ହାସ୍ୟ, କେହି ଇତସ୍ତତଃ ଗମନ, କେହି ଉଲ୍ଲମ୍ଫନ, କେହି ବା ପ୍ରଳାପ କରିବାକୁ ଲାଗିଲେ ।୧୬।

ପରସ୍ପରଂ କେଚଦୁପାଶ୍ରୟନ୍ତି
ପରସ୍ପରଂ କେଚାଦତି ବ୍ରୁବନ୍ତି ।
ଦ୍ରୁମାଦ୍ଦ୍ରୁମଂ କେଚଦଭିଦ୍ରବନ୍ତି
କ୍ଷିତୌ ନଗାଗ୍ରାନ୍ନିପତନ୍ତି କେଚତ୍ । ୧୭ ।
ମହୀତଲାକ୍କେଚଦୁଦୀର୍ଣବେଗା-
ମହାଦ୍ରୁମାଗ୍ରାଣ୍ୟଭିସଂପତନ୍ତି ।
ଗାୟନ୍ତମନ୍ୟଃ ପ୍ରହସନ୍ନୁପୈତି
ରୁଦନ୍ତମନ୍ୟଃ ପ୍ରରୁଦନ୍ନୁପୈତି । ୧୮ ।
ତୁଦନ୍ତମନ୍ୟଃ ପ୍ରଣୁଦନ୍ନୁପୈତି
ସମାକୁଲଂ ତତ୍କପିସୈନ୍ୟମାସୀତ୍ ।
ନ ଚାତ୍ର କଶ୍ଚିନ୍ନ ବଭୂବ ମତ୍ତୋ-
ନ ଚାତ୍ର କଶ୍ଚିନ୍ନ ବଭୂବ ଦୃପ୍ତଃ । ୧୯ ।
ତତସ୍ତା ବନଂ ତତ୍ପରିଭକ୍ଷ୍ୟମାଣମ୍
ଦ୍ରୁମାଂଶ୍ଚ ବିଧ୍ୱଂସିତପତ୍ରପୁଷ୍ପାନ୍ ।
ସମୀକ୍ଷ୍ୟ କୋପାଦ୍ଦଧିବକ୍ତ୍ରନାମା
ନିବାରୟାମାସ କପିଃ କପୀଂସ୍ତାନ୍ । ୨୦ ।

---

କିଏ ପରସ୍ପରକୁ ଆଶ୍ରୟକରି ଧଇଲେ, କିଏ ପରସ୍ପର ବିବାଦ କରିବାକୁ ଲାଗିଲେ, କିଏ ବୃକ୍ଷରୁ ବୃକ୍ଷକୁ ଦୌଡ଼ିବାକୁ ଲାଗିଲେ, କିଏ ବା ବୃକ୍ଷାଗ୍ରରୁ ଡେଇଁ ଭୂଇଁରେ ପଡ଼ିଲେ । ୧୭ । କିଏ ଭୂତଳରୁ ପ୍ରବଳବେଗରେ ପ୍ରକାଣ୍ଡ ବୃକ୍ଷମାନଙ୍କ ଉପରକୁ ଡେଇଁବାକୁ ଲାଗିଲେ, କିଏ ଗାଉଥିବାବେଳେ ଅନ୍ୟ ଜଣେ ହସି ହସି ତା' ନିକଟକୁ ଆସୁଥାଏ, କିଏ କାନ୍ଦୁଥିବାର ଦେଖି ଅନ୍ୟ ଗୋଟିଏ ବାନର କାନ୍ଦି କାନ୍ଦି ତା ନିକଟକୁ ଆସୁଥାଏ । ୧୮ । କିଏ ଜଣକୁ ପୀଡ଼ା ଦେଉଥିବାବେଳେ ଅନ୍ୟ ଜଣେ ତାହାକୁ ଉତ୍ପୀଡ଼ିତ କରି ତା' ନିକଟକୁ ଆସୁଥାଏ । ଏହିପରିଭାବରେ ସେହି ବାନରସେନା ଅତିଶୟ ଆକୁଳ ହୋଇ-ଉଠିଲେ । ସେଠାରେ ଏପରି ଜଣେ କେହି ନ ଥିଲା, ଯେ କି ଉନ୍ମତ୍ତ ବା ଦୃପ୍ତ ହୋଇ ନ ଥିଲା । ୧୯ । ଅନନ୍ତର ସମସ୍ତ ମଧୁବନ ଭକ୍ଷିତ ଏବଂ ବୃକ୍ଷସମୂହର ପତ୍ରପୁଷ୍ପ ବିଧ୍ୱସ୍ତ ହେବାର ଦେଖି ଦଧିମୁଖ ନାମକ ବାନର କ୍ରୁଦ୍ଧହୋଇ ସେମାନଙ୍କୁ ନିବାରଣକଲା । ୨୦ । ସେହି ମଦମତ୍ତ ବାନରମାନଙ୍କ ଦ୍ୱାରା ଅତିଶୟ ଭର୍ତ୍ସିତ

ସ ତୈଃ ପ୍ରବୃଦ୍ଧୈଃ ପରିଭର୍ତ୍ସ୍ୟମାନୋ
ବନସ୍ୟ ଗୋପ୍ତା ହରିବୃଦ୍ଧବୀରଃ ।
ଚକାର ଭୂୟୋ ମତିମୁଗ୍ରତେଜା
ବନସ୍ୟ ରକ୍ଷାଂ ପ୍ରତି ବାନରେଭ୍ୟଃ । ୨୧ ।
ଉବାଚ କାଂଶ୍ଚିତ୍ ପରୁଷାଣ୍ୟଭୀତ-
ମସକ୍ତମନ୍ୟାଂଶ୍ଚ ତଳୈର୍ଜଘାନ ।
ସମେତ୍ୟ କୈଶ୍ଚିତ୍ କଲହଂ ଚକାର
ତଥୈବ ସାମ୍ନୋପଜଗାମ କାଂଶ୍ଚିତ୍ । ୨୨ ।
ସ ତୈର୍ମଦାତ୍ ପ୍ରତିବାର୍ଯ୍ୟ ବେଗୈ-
ର୍ବଲାଚ୍ଚ ତେନ ପ୍ରତିବାର୍ଯ୍ୟମାଣୈଃ ।
ପ୍ରଧର୍ଷଣେ ତ୍ୟକ୍ତଭୟୈଃ ସମେତ୍ୟ
ପ୍ରକୃଷ୍ୟତେ ହ୍ୟପ୍ୟନବେକ୍ଷ୍ୟ ଦୋଷମ୍ । ୨୩ ।
ନଖୈସ୍ତୁଦନ୍ତୋ ଦଶନୈର୍ଦଶନ୍ତ-
ସ୍ତଳୈଶ୍ଚ ପାଦୈଶ୍ଚ ସମାପୟନ୍ତଃ ।
ମଦାତ୍ କପିଂ ତେ କପୟଃ ସମନ୍ତା-
ନ୍ମହାବନଂ ନିର୍ବିଷୟଂ ଚ ଚକ୍ରୁଃ । ୨୪ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ ସୁନ୍ଦରକାଣ୍ଡେ ମଧୁବନପ୍ରବେଶୋ ନାମ ଏକଷଷ୍ଟିତମଃ ସର୍ଗଃ ।

---

ହୋଇ ସେହି ବନର ରକ୍ଷକ ଉଗ୍ରତେଜା ପ୍ରଧାନ ବାନରବୀର ଦଧିମୁଖ ଏହି ବାନରମାନଙ୍କ ଉପଦ୍ରବରୁ ବନକୁ ରକ୍ଷା କରିବାପାଇଁ ସ୍ଥିରକଲେ । ୨୧ । ସେ ନିର୍ଭୀକଭାବରେ କାହାପ୍ରତି କଠୋର ବାକ୍ୟ ପ୍ରୟୋଗକଲେ, କାହାକୁ ବା କରତଳଦ୍ୱାରା ଆଘାତ କଲେ, କାହା ସହିତ କଳହ କଲେ ଏବଂ କାହା ନିକଟକୁ ବା ମଧୁର କଥା କହି ଗଲେ । ୨୨ । ମଧୁ-ନିଶାରେ ସେମାନଙ୍କର ବେଗ ଅନିର୍ବାର୍ଯ୍ୟ ହୋଇଉଠିଥିଲା । ଦଧିମୁଖ ବଳପୂର୍ବକ ସେମାନଙ୍କୁ ନିବାରଣ କରିବାରୁ, ତାହା ପ୍ରତି ଦୁର୍ବ୍ୟବହାର କଲେ ମଧ୍ୟ 'କୌଣସି ଦଣ୍ଡ ବା ଭୟ ନାହିଁ' କିମ୍ବା ସେଥିରେ କିଛି ଦୋଷ ନାହିଁ' ଏହା ବୁଝିର ସମସ୍ତେ ମିଳି ତାହାକୁ ଘୋଷାରିବାକୁ ଲଗିଲେ । ୨୩ । ସେହି ବାନରମାନେ ସମସ୍ତେ ମିଳି ତାହାକୁ ନଖାଘାତ,ଦନ୍ତାଘାତ ଚପେଟାଘାତ ଏବଂ ଭୂତଳରେ ନିପାତିତ କରି ପଦାଘାତଦ୍ୱାରା ମୃତପ୍ରାୟ କରିଦେଇ ଉନ୍ମତ୍ତତାବଶତଃ ସେହି ବିଶାଳ ମଧୁବନକୁ ଏକାବେଳକେ ବିନଷ୍ଟ କରିପକାଇଲେ । ୨୪ ।

---

# ଦ୍ୱିଷଷ୍ଟିତମଃ ସର୍ଗଃ

## ଦଧିମୁଖଖିଲୀକାରଃ

ତାନୁବାଚ ହରିଶ୍ରେଷ୍ଠୋ ହନୁମାନ୍ ବାନରର୍ଷଭଃ ।
ଅବ୍ୟଗ୍ରମନସୋ ଯୂୟଂ ମଧୁ ସେବତ ବାନରାଃ । ୧ ।
ଅହମାବର୍ଜୟିଷ୍ୟାମି ଯୁଷ୍ମାକଂ ପରିପନ୍ଥିନଃ ।
ଶ୍ରୁତ୍ୱା ହନୁମତୋ ବାକ୍ୟଂ ହରୀଣାଂ ପ୍ରବରୋଽଙ୍ଗଦଃ । ୨ ।
ପ୍ରତ୍ୟୁବାଚ ପ୍ରସନ୍ନାତ୍ମା ପିବନ୍ତୁ ହରୟୋ ମଧୁ ।
ଅବଶ୍ୟଂ କୃତକାର୍ଯ୍ୟସ୍ୟ ବାକ୍ୟଂ ହନୁମତୋ ମୟା । ୩ ।
ଅକାର୍ଯ୍ୟମପି କର୍ତ୍ତବ୍ୟଂ କିମଙ୍ଗ ପୁନରୀଦୃଶମ୍ ।
ଅଙ୍ଗଦସ୍ୟ ମୁଖାଚ୍ଛ୍ରୁତ୍ୱା ବଚନଂ ବାନରର୍ଷଭାଃ । ୪ ।
ସାଧୁ ସାଧ୍ୱିତି ସଂହୃଷ୍ଟା ବାନରାଃ ପ୍ରତ୍ୟପୂଜୟନ୍ ।
ପୂଜୟିତ୍ୱାଙ୍ଗଦଂ ସର୍ବେ ବାନରା ବାନରର୍ଷଭମ୍ । ୫ ।
ଜଗ୍ମୁର୍ମଧୁବନଂ ଯତ୍ର ନଦୀବେଗ ଇବ ଦ୍ରୁମମ୍ ।
ତେ ପ୍ରବିଷ୍ଟା ମଧୁବନଂ ପାଲାନାକ୍ରମ୍ୟ ଶକ୍ତିତଃ । ୬ ।

---

## ୬୨ତମ ସର୍ଗ

( ଦଧିମୁଖଙ୍କୁ ବାଧାପ୍ରଦାନ )

ବାନରଶ୍ରେଷ୍ଠ ହନୁମାନ୍ ସେମାନଙ୍କୁ ସମସ୍ତଙ୍କୁ କହିଲେ, "ହେ ବାନରଗଣ ! ତୁମ୍ଭେମାନେ ନିଶ୍ଚିନ୍ତରେ ମଧୁପାନ କର । ୧ । ତୁମ୍ଭମାନଙ୍କର ଯେଉଁମାନେ ବିରୋଧ କରିବେ ମୁଁ ସେମାନଙ୍କୁ ଅଟକାଇବି ।" ବାନରଶ୍ରେଷ୍ଠ ଅଙ୍ଗଦ ହନୁମାନଙ୍କର କଥା ଶୁଣି ପ୍ରସନ୍ନଚିତ୍ତରେ ପ୍ରତ୍ୟୁତ୍ତର କଲେ, "ବାନରମାନେ ମଧୁପାନ କରନ୍ତୁ । କୃତକାର୍ଯ୍ୟ ହୋଇ ଆସିଥିବା ହନୁମାନଙ୍କ କଥା ଅକରଣୀୟ ହେଲେ ମଧ୍ୟ ଆମ୍ଭମାନଙ୍କର ତାହା କରିବା ଉଚିତ; ପୁଣି ଏପରି ସଙ୍ଗତ କାର୍ଯ୍ୟବିଷୟରେ କଥା କ'ଣ ଅଛି ?" ଅଙ୍ଗଦଙ୍କ ମୁଖରୁ ଏହି କଥା ଶୁଣି ବାନରଶ୍ରେଷ୍ଠମାନେ ଅତିଶୟ ଆନନ୍ଦିତ ହୋଇ ବାରମ୍ବାର ସାଧୁବାଦକରି ତାହାଙ୍କୁ ପ୍ରଶଂସାକଲେ । ସେମାନେ ସମସ୍ତେ ବାନରଶ୍ରେଷ୍ଠ ଅଙ୍ଗଦଙ୍କୁ ସମ୍ମାନିତକରି, ନଦୀବେଗ ଯେପରି ବୃକ୍ଷକୁ ଟାଣିନେଇଯାଏ, ସେହିପରି ବଳପୂର୍ବକ ରକ୍ଷକମାନଙ୍କୁ ଆକ୍ରମଣ କରି ମଧୁବନରେ ପ୍ରବେଶ କଲେ । ୨-୬ ।

ଅଙ୍ଗଦସର୍ଗାଚ ପଞ୍ଚବୋ ଦୃଷ୍ଟ୍ୱା ଶ୍ରୁତ୍ୱା ଚ ମୈଥିଲୀମ୍ ।
ପପୁଃ ସର୍ବେ ମଧୁ ତଦା ରସବତ୍ଫଳମାଦଦୁଃ । ୭ ।
ଉତ୍ପୃତ୍ୟ ଚ ତତଃ ସର୍ବେ ବନପାଲାନ୍ ସମାଗତାନ୍ ।
ତେ ତାଡ଼ୟନ୍ତଃ ଶତଶଃ ସକ୍ତା ମଧୁବନେ ତଦା । ୮ ।
ମଧୂନି ଦ୍ରୋଣମାତ୍ରାଣି ବାହୁଭିଃ ପରିଗୃହ୍ୟତେ ।
ପିବନ୍ତି କପୟଃ କେଚତ୍ସଂଘଶସ୍ତତ୍ର ହୃଷ୍ଟବତ୍ । ୯ ।
ଘ୍ନନ୍ତି ସ୍ମ ସହିତାଃ ସର୍ବେ ଭକ୍ଷୟନ୍ତି ତଥାପରେ ।
କେଚତ୍ପୀତ୍ୱାପବଧ୍ୟନ୍ତି ମଧୂନି ମଧୁପିଙ୍ଗଳାଃ । ୧୦ ।
ମଧୂଚ୍ଛିଷ୍ଟେନ କେଚଚ୍ଚ ଜଘ୍ନୁରନ୍ୟୋନ୍ୟମୁତ୍କଟାଃ ।
ଅପରେ ବୃକ୍ଷମୂଲେଷୁ ଶାଖାଂ ଗୃହ୍ୟ ବ୍ୟବସ୍ଥିତାଃ । ୧୧ ।
ଅତ୍ୟର୍ଥଂ ଚ ମଦଗ୍ଲାନାଃ ପର୍ଣାନ୍ୟାସ୍ତୀର୍ଯ ଶେରତେ ।
ଉନ୍ମତ୍ତବେଗାଃ ପ୍ଲବଗା ମଧୁମତ୍ତାଶ୍ଚ ହୃଷ୍ଟବତ୍ । ୧୨ ।
କ୍ଷିପନ୍ତ୍ୟପି ତଥାନ୍ୟୋନ୍ୟଂ ସ୍ଖଲନ୍ତି ଚ ତଥାପରେ ।
କେଚତ୍ କ୍ଷ୍ୱେଡ଼ା ପ୍ରକୁର୍ବନ୍ତି କେଚତ୍ କୂଜନ୍ତି ହୃଷ୍ଟବତ୍ ।୧୩ ।

---

ଜାନକୀଙ୍କୁ ଦେଖିବା କଥା ଶୁଣି ଏବଂ ଅଙ୍ଗଦଙ୍କର ଅନୁମତି ପାଇ ସେମାନେ ସମସ୍ତେ ଆନନ୍ଦରେ ମଧୁପାନ ଓ ରସାଳ ଫଳମାନ ଭକ୍ଷଣ କରିବାକୁ ଲାଗିଲେ । ୭ । ଏହାପରେ ସେମାନେ ସମସ୍ତେ ମଧୁପାନରେ ଆସକ୍ତହୋଇ ସମାଗତ ବନରକ୍ଷକମାନଙ୍କୁ ଆକ୍ରମଣପୂର୍ବକ ତର୍ଜନ କରିବାକୁ ଲାଗିଲେ । ୮ । ସେମାନଙ୍କ ହସ୍ତଦ୍ୱାରା ଦ୍ରୋଣପରିମାଣ ମଧୁମାନ ଗ୍ରହଣକରି ଦଳଦଳହୋଇ ଆନନ୍ଦରେ ପିଇବାକୁ ଲାଗିଲେ ।୯ ସମସ୍ତେ ମିଶି ମଧୁମାନ ନଷ୍ଟକଲେ, କଏ ପିଇଲେ ଏବଂ ମଧୁସଦୃଶ ପିଙ୍ଗଳବର୍ଣ୍ଣ କୌଣସି କୌଣସି ବାନର ମଧୁମାନ ଭାଙ୍ଗିପକାଇଲେ । ୧୦ । କେହି କେହି ମଧୁନିଶାରେ ଉନ୍ମତ୍ତହୋଇ ଅନ୍ୟ ଉପରକୁ ଉଚ୍ଛିଷ୍ଟ ମଧୁ ଫୋପାଡ଼ିଲେ । କଏ ବା ଶାଖା ଧରି ବୃକ୍ଷମୂଳରେ ଯାଇ ବସିଲେ । ୧୧ । କେହି କେହି ମଧୁପାନକରି ନିତାନ୍ତ ଅବଶହୋଇ ପତ୍ରମାନ ବିଛାଇ ଶୋଇଲେ । ଏହାପରେ ସେହି ବାନରମାନେ ମଧୁପାନରେ ଉନ୍ମତ୍ତହୋଇ ଆନନ୍ଦ ଉପଭୋଗ କରିବାକୁ ଲାଗିଲେ । ୧୨ । ସେମାନେ ପରସ୍ପର ମଧୁ ନିକ୍ଷେପ କରୁଥାନ୍ତି, ଆଉ କଏ କଏ ଗୋଡ଼ ଖସି ପିଠାରୁ ତଡ଼ିଯାଉଥାନ୍ତି, କଏ କଏ ଆନନ୍ଦିତ ହୋଇ ସିଂହପରି ଗର୍ଜନ କରୁଥାନ୍ତି, କଏ ବା

ହରୟୋ ମଧୁନା ମତ୍ତାଃ କେଚସ୍ସୁପ୍ତା ମହୀତଳେ ।
ଧୃଷ୍ଟାଃ କେଚିଦ୍ଧସନ୍ତ୍ୟନ୍ୟେ କେଚିତ୍ କୁର୍ବନ୍ତି ଚେତରତ୍ । ୧୪ ।
କୃତ୍ବା କେଚିଦ୍‌ବଦନ୍ତ୍ୟନ୍ୟେ କେଚିଦ୍‌ବୁଧ୍ୟନ୍ତିଚେତରତ୍ ।
ଯେଽପ୍ୟତ୍ର ମଧୁପାଳାଃ ସ୍ୟୁଃ ପ୍ରେଷ୍ୟା ଦଧିମୁଖସ୍ୟ ତୁ । ୧୫ ।
ତେଽପି ତୈର୍ବାନରୈର୍ଭୀମୈଃ ପ୍ରତିଷିଦ୍ଧା ଦିଶୋ ଗତାଃ ।
ଜାନୁଭିଶ୍ଚ ପ୍ରଘୃଷ୍ଟାଶ୍ଚ ଦେବମାର୍ଗଂ ଚ ଦର୍ଶିତାଃ । ୧୬ ।
ଅବ୍ରୁବନ୍ ପରମୋଦ୍‌ବିଗ୍ନା ଗତ୍ବା ଦଧିମୁଖଂ ବଚଃ ।
ହନୂମତା ଦତ୍ତବରୈର୍ହତଂ ମଧୁବନଂ ବଲାତ୍ ।
ବୟଂ ଚ ଜାନୁଭିର୍ଘୃଷ୍ଟା ଦେବମାର୍ଗଂ ଚ ଦର୍ଶିତାଃ । ୧୭ ।
ତଦା ଦଧିମୁଖଃ କ୍ରୁଦ୍ଧୋ ବନପସ୍ତତ୍ର ବାନରଃ ।
ହତଂ ମଧୁବନଂ ଦୃଷ୍ଟ୍ବା ସାନ୍ତ୍ବୟାମାସ ତାନ୍ ହରୀନ୍ । ୧୮ ।
ଏତାଗଚ୍ଛତ ଗଚ୍ଛାମୋ ବାନରାନ୍‌ବଳଦର୍ପିତାନ୍ ।
ବଲେନାବାରୟିଷ୍ୟାମ ପ୍ରଭୁଞ୍ଜାନାନ୍ମଧୂତ୍ତମମ୍ । ୧୯ ।
ଶ୍ରୁତ୍ବା ଦଧିମୁଖସ୍ୟେଦଂ ବଚନଂ ବାନରର୍ଷଭାଃ ।
ପୁନର୍ବୀରା ମଧୁବନଂ ତେନୈବ ସହିତା ଯୟୁଃ । ୨୦ ।

---

ପକ୍ଷୀମାନଙ୍କ ପରି ମଧୁର ସ୍ୱର କରୁଥାନ୍ତି । ୧୩ । ବାନରମାନେ ମଧୁପାନରେ ମତ୍ତହୋଇ କିଏ ଭୂମିରେ ଶୟନ କରିଥାଏ, କିଏ ଧୃଷ୍ଟଭାବରେ ଅନ୍ୟକୁ ହସୁଥାଏ, କିଏ ବା ଆଉ କ'ଣ କରୁଥାଏ । ୧୪ । କିଏ ଗୋଟିଏ କଥା କହି ଅନ୍ୟ ଗୋଟିଏ କଥା କହେ, କିଏ ବା ଆଉ ଅନ୍ୟ କଥା ବୁଝେ । ସେଠାରେ ଦଧିମୁଖର ଯେଉଁ ମଧୁବନପାଳକ ଭୃତ୍ୟମାନେ ଥିଲେ ସେମାନେ ଏହି ଭୟଙ୍କର ବାନରମାନଙ୍କ ଦ୍ୱାରା ନିବାରିତ ହୋଇ ଏଣେତେଣେ ପଳାଇଲେ । ସେମାନଙ୍କର ଜଙ୍ଘ ଧରି ଟାଣି ଆକାଶକୁ ଫିଙ୍ଗିଦେଲେ; ସୁତରାଂ ସେମାନେ ଅତିଶୟ ଉତ୍କଣ୍ଠିତ ହୋଇ ଯାଇ ଦଧିମୁଖକୁ କହିଲେ, "ହନୁମାନଙ୍କର ଅନୁମତି ପାଇ ବାନରମାନେ ବଳପୂର୍ବକ ମଧୁବନକୁ ବିନଷ୍ଟ କରିଦେଲେ ଏବଂ ଆମ୍ଭମାନଙ୍କ ଜଙ୍ଘ ଧରି ଟାଣି ଆକାଶକୁ ଫିଙ୍ଗିଦେଲେ" । ୧୫-୧୭ । ଅନନ୍ତର ବନରକ୍ଷକ ଦଧିମୁଖ ମଧୁବନ ନଷ୍ଟହେବାର ଦେଖି କ୍ରୁଦ୍ଧହୋଇ ସେହି ବାନରମାନଙ୍କୁ ଆଶ୍ୱାସନା ଦେଇ କହିଲେ ।୧୮। "ଆସ ଆମ୍ଭେମାନେ ଯିବା ଓ ବଳପ୍ରୟୋଗପୂର୍ବକ ସେହି ବଳଦୃପ୍ତ ମଧୁଭକ୍ଷ ବାନରମାନଙ୍କୁ ନିବାରଣ କରିବା" । ୧୯ । ସେହି ବାନରଶ୍ରେଷ୍ଠ ବୀରମାନେ ଦଧିମୁଖର ଏହି କଥା

ମଧ୍ୟେ ତେଷାଂ ଦଧିମୁଖଃ ସୁପ୍ରଗୃହ୍ୟ ମହାତରୁମ୍ ।
ସମଭ୍ୟଧାବତ୍ ବେଗେନ ସର୍ବେ ତେ ଚ ପ୍ଲବଙ୍ଗମାଃ । ୨୧ ।
ତେ ଶିଳାଃ ପାଦପାଂଶ୍ଚୈବ ପାଷାଣାନପି ବାନରାଃ ।
ଗୃହୀତ୍ୱାଭ୍ୟଗମନ୍ କ୍ରୁଦ୍ଧା ଯତ୍ର ତେ କପିକୁଞ୍ଜରାଃ । ୨୨ ।
ବଳାନ୍ନିବାରୟନ୍ତସ୍ତ୍ର ଆସେଦୁର୍ହରୟୋ ହରୀନ୍ ।
ସଂଦଷ୍ଟୋଷ୍ଠପୁଟାଃ କ୍ରୁଦ୍ଧାଃ ଭର୍ତ୍ସୟନ୍ତୋ ମୁହୁର୍ମୁହୁଃ । ୨୩ ।
ଅଥ ଦୃଷ୍ଟ୍ୱା ଦଧିମୁଖଂ କ୍ରୁଦ୍ଧଂ ବାନରପୁଙ୍ଗବାଃ ।
ଅଭ୍ୟଧାବନ୍ତ ବେଗେନ ହନୁମତ୍ପ୍ରମୁଖାସ୍ତଦା । ୨୪ ।
ସବୃକ୍ଷଂ ତଂ ମହାବାହୁମାପତନ୍ତଂ ମହାବଳମ୍ ।
ବେଗବନ୍ତଂ ବିଜଗ୍ରାହ ବାହୁଭ୍ୟାଂ କୁପିତୋଽଙ୍ଗଦଃ । ୨୫ ।
ମଦାନ୍ଧୋ ନ କୃପାଂ ଚକ୍ରେ ଆର୍ଯକୋଽୟଂ ମମେତି ସଃ ।
ଅଥୈନଂ ନିଷ୍ପିପେଷାଶୁ ବେଗେନ ବସୁଧାତଳେ । ୨୬ ।
ସ ଭଗ୍ନବାହୂରୁମୁଖୋ ବିହ୍ୱଳଃ ଶୋଣିତୋକ୍ଷିତଃ ।
ପ୍ରମୁମୋହ ମହାବୀରୋ ମୁହୂର୍ତ୍ତଂ କପିକୁଞ୍ଜରଃ । ୨୭ ।

---

ଶୁଣି ପୁନର୍ବାର ତାହା ସହିତ ମଧୁବନକୁ ଗଲେ । ୨୦ । ଦଧିମୁଖ ଏମାନଙ୍କ ମଧ୍ୟରେ ଗୋଟିଏ ବିଶାଳବୃକ୍ଷ ଧରି ଅତିବେଗରେ ଧାବମାନ ହେଲେ ଏବଂ ସେହି ବାନରମାନେ ମଧ୍ୟ ତା ସହିତ ଗଲେ । ୨୧ । ଅନନ୍ତର ହନୁମାନ୍ ପ୍ରଭୃତି ବାନରଶ୍ରେଷ୍ଠଗଣ ଯେଉଁଠାରେ ଥିଲେ, ସେହି ସ୍ଥାନକୁ ଏହି ବାନରମାନେ ଅତିଶୟ କ୍ରୁଦ୍ଧହୋଇ ଶିଳା, ପାଷାଣ ଓ ବୃକ୍ଷଧରି କ୍ରୋଧରେ ଗଲେ ।୨୨। ସେମାନେ କ୍ରୋଧରେ ଓଷ୍ଠପୁଟଦଂଶନ ଓ ବାରମ୍ବାର ତିରସ୍କାରକରି ବଳପୂର୍ବକ ସେମାନଙ୍କୁ ନିବାରଣ କରିବାକୁ ଲାଗିଲେ । ୨୩ । ଅନନ୍ତର ହନୁମାନ୍ ପ୍ରଭୃତି ଶ୍ରେଷ୍ଠ ବାନରମାନେ ଦଧିମୁଖକୁ କ୍ରୁଦ୍ଧ ଦେଖି, ବେଗରେ ତାହା ଆଡ଼କୁ ଦୌଡ଼ିଲେ । ୨୪ । ମହାବାହୁ ମହାବଳୀ ଦଧିମୁଖ ବୃକ୍ଷ ଧରି ସବେଗରେ ଆସୁଥିବାର ଦେଖି ଅଙ୍ଗଦ କ୍ରୁଦ୍ଧହୋଇ ତାହାର ବାହୁଦ୍ୱୟ ଧାରଣକଲେ । ୨୫ । ମଦାନ୍ଧ ଅଙ୍ଗଦ ଏ ମୋର ଅଜା ବୋଲି ବିଚାରି ତାହା ପ୍ରତି ଦୟା ନ କରି ତାହାକୁ ସବେଗରେ ଭୂମିରେ ଦଳିଦେଲେ ।୨୬। ବାନରଶ୍ରେଷ୍ଠ ମହାବୀର ଦଧିମୁଖଙ୍କର ବାହୁ, ମୁଖ ଓ ଉରୁ ଭଗ୍ନହୋଇଗଲା ଏବଂ ସେ ରକ୍ତାକ୍ତକଳେବରରେ ମୁହୂର୍ତ୍ତେକ ପାଇଁ ବିହ୍ୱଳ ଓ ମୂର୍ଚ୍ଛିତ ହୋଇପଡ଼ିଲେ ।୨୭।

ସ କଥଂଚଦ୍‌ବିମୁକ୍ତସ୍ତୈର୍ବାନରୈର୍ବାନରର୍ଷଭଃ ।
ଉବାଚୈକାନ୍ତମାଗତ୍ୟ ସ୍ୱାନ୍‌ ଭୃତ୍ୟାନ୍‌ ସମୁପାଗତାନ୍‌ । ୨୮ ।

ଏତାଗଚ୍ଛତ ଗଚ୍ଛାମୋ ଭର୍ତ୍ତା ନୋ ଯତ୍ର ବାନରଃ ।
ସୁଗ୍ରୀବୋ ବିପୁଳଗ୍ରୀବଃ ସହ ରାମେଣ ତିଷ୍ଠତି । ୨୯ ।

ସର୍ବଂ ଚୈବାଙ୍ଗଦେ ଦୋଷଂ ଶ୍ରାବୟିଷ୍ୟାମି ପାର୍ଥିବେ ।
ଅମର୍ଷୀ ବଚନଂ ଶ୍ରୁତ୍ୱା ଘାତୟିଷ୍ୟତି ବାନରାନ୍‌ । ୩୦ ।

ଇଷ୍ଟଂ ମଧୁବନଂ ହ୍ୟେତତ୍‌ସୁଗ୍ରୀବସ୍ୟ ମହାତ୍ମନଃ ।
ପିତୃପୈତାମହଂ ଦିବ୍ୟଂ ଦେବୈରପି ଦୁରାସଦମ୍‌ । ୩୧ ।

ସ ବାନରାନିମାନ୍‌ ସର୍ବାନ୍ମଧୁଲୁବ୍ଧାନ୍‌ ଗତାୟୁଷଃ ।
ଘାତୟିଷ୍ୟତି ଦଣ୍ଡେନ ସୁଗ୍ରୀବଃ ସସୁହୃଜ୍ଜନମ୍‌ । ୩୨ ।

ବଧ୍ୟା ହ୍ୟେତେ ଦୁରାତ୍ମାନୋ ନୃପାଜ୍ଞାପରିପନ୍ଥିନଃ ।
ଅମର୍ଷପ୍ରଭବୋ ରୋଷଃ ସଫଲୋ ମେ ଭବିଷ୍ୟତି । ୩୩ ।

ଏବମୁକ୍ତ୍ୱା ଦଧିମୁଖୋ ବନପାଲାନ୍ମହାବଳଃ ।
ଜଗାମ ସହସୋତ୍ପତ୍ୟ ବନପାଳୈଃ ସମନ୍ୱିତଃ । ୩୪ ।

---

ସେହି ବାନରଶ୍ରେଷ୍ଠ କୌଣସିମତେ ସେମାନଙ୍କଠାରୁ ମୁକ୍ତିଲାଭକରି ଏକାନ୍ତ ସ୍ଥାନକୁ ଆସି ସେଠାରେ ଉପସ୍ଥିତ ଥିବା ନିଜର ଭୃତ୍ୟମାନଙ୍କୁ କହିଲେ । ୨୮ । "ଯେଉଁଠାରେ ଆମ୍ଭମାନଙ୍କର ପ୍ରଭୁ ବିଶାଳଗ୍ରୀବ ସୁଗ୍ରୀବ ରାମଙ୍କ ସହିତ ଅଛନ୍ତି, ଚାଲ ଆମ୍ଭେମାନେ ସେଠାକୁ ଯିବା । ୨୯ । ମୁଁ ସେଠାରେ ରାଜାଙ୍କୁ ଅଙ୍ଗଦର ସମସ୍ତ ଦୋଷ ନିବେଦନ କରିବି । କ୍ରୋଧପରବଶ ରାଜା ସେ କଥା ଶୁଣି ଏହି ବାନରମାନଙ୍କୁ ହତ୍ୟା କରାଇବେ । ୩୦ । ଏହି ପିତୃପୈତାମହ ଦିବ୍ୟ ମଧୁବନ ମହାତ୍ମା ସୁଗ୍ରୀବଙ୍କର ଅତିଶୟ ପ୍ରିୟ ଏବଂ ଦେବତାମାନେ ମଧ୍ୟ ଏଠାକୁ ଆସିପାରନ୍ତି ନାହିଁ । ୩୧ । ସୁଗ୍ରୀବ ଏହି ମଧୁଲୋଲୁପ ଅଳ୍ପାୟୁଷ ବାନରମାନଙ୍କୁ ଦଣ୍ଡବିଧାନପୂର୍ବକ ସବାନ୍ଧବରେ ବଧ କରାଇବେ । ୩୨ । ଏହି ଦୁରାତ୍ମା ବାନରମାନେ ରାଜାଙ୍କ ଆଦେଶ ଅବମାନନାକାରୀ; ସୁତରାଂ ବଧ୍ୟ ଅଟନ୍ତି । ତାହାହେଲେ ମୋର କ୍ରୋଧଜନିତ ରୋଷ ସାର୍ଥକ ହେବ । ୩୩ । ମହାବଳୀ ଦଧିମୁଖ ବନପାଳମାନଙ୍କୁ ଏହା କହି ତତ୍‌କ୍ଷଣାତ୍‌ ଉପରକୁ ଡେଇଁ ସେମାନଙ୍କ ସହିତ ଚାଲିଗଲେ । ୩୪ । ସୂର୍ଯ୍ୟପୁତ୍ର ବୁଦ୍ଧିମାନ୍‌ ବାନର

ନିମେଷାନ୍ତରମାତ୍ରେଣ ସ ହି ପ୍ରାପ୍ତୋ ବନାଲୟଃ ।
ସହସ୍ରାଂଶୁସୁତୋ ଧୀମାନ୍ ସୁଗ୍ରୀବୋ ଯତ୍ର ବାନରଃ । ୩୫ ।
ରାମଂ ଚ ଲକ୍ଷ୍ମଣଂ ଚୈବ ଦୃଷ୍ଟ୍ୱା ସୁଗ୍ରୀବମେବ ଚ ।
ସମପ୍ରତିଷ୍ଠାଂ ଜଗତୀମାକାଶାନ୍ନିପପାତ ହ । ୩୬ ।
ସ ନିପତ୍ୟ ମହାବୀରଃ ସର୍ବୈସ୍ତୈଃ ପରିବାରିତଃ ।
ହରିର୍ଦଧିମୁଖଃ ପାଲୈଃ ପାଲାନାଂ ପରମେଶ୍ୱରଃ । ୩୭ ।
ସ ଦୀନବଦନୋ ଭୂତ୍ୱା କୃତ୍ୱା ଶିରସି ଚାଞ୍ଜଳିମ୍ ।
ସୁଗ୍ରୀବସ୍ୟାଶୁ ତୌ ମୂର୍ଧ୍ନା ଚରଣୌ ପ୍ରତ୍ୟପୀଡ଼ୟତ୍ । ୩୮ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ସୁନ୍ଦରକାଣ୍ଡେ ଦଧିମୁଖଶିଲୀକାରୋ ନାମ ଦ୍ୱିଷଷ୍ଟିତମଃ ସର୍ଗଃ ।

---

# ତ୍ରିଷଷ୍ଟିତମଃ ସର୍ଗଃ

## ସୁଗ୍ରୀବହର୍ଷଃ

ତତୋ ମୂର୍ଧ୍ନା ନିପତିତଂ ବାନରଂ ବାନରର୍ଷଭଃ ।
ଦୃଷ୍ଟ୍ୱୈବୋଦ୍ୱିଗ୍ନହୃଦୟୋ ବାକ୍ୟମେତଦୁବାଚ ହ । ୧ ।

---

ସୁଗ୍ରୀବ ଯେଉଁଠାରେ ଥିଲେ, ଏହି ବନବାସୀ ବାନର ମୁହୂର୍ତ୍ତିକମଧ୍ୟରେ ସେଠାରେ ଯାଇ ପହଞ୍ଚିଲେ । ୩୫ । ରାମ, ଲକ୍ଷ୍ମଣ ଏବଂ ସୁଗ୍ରୀବଙ୍କୁ ଦେଖି ସେ ଆକାଶରୁ ସେହି ସମତଳ ଭୂମିକୁ ଅବତରଣକଲେ । ୩୬ । ବନପାଳମାନଙ୍କର ପ୍ରଭୁ ମହାବୀର ଦଧିମୁଖ ସେହି ସମସ୍ତ ବନରକ୍ଷକମାନଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ସେଠାରେ ଅବତରଣକରି ମସ୍ତକରେ ଅଞ୍ଜଳିବନ୍ଧନପୂର୍ବକ ଦୀନବଦନରେ ତତ୍‌କ୍ଷଣାତ୍ ସୁଗ୍ରୀବଙ୍କର ପାଦତଳେ ମୁଣ୍ଡିଆ ମାଇଲେ । ୩୭-୩୮ ।

---

## ୬୩ତମ ସର୍ଗ

### ( ସୁଗ୍ରୀବଙ୍କର ଆନନ୍ଦ )

ମୁଣ୍ଡିଆ ମାରି ପଡ଼ିଥିବା ବାନର ଦଧିମୁଖଙ୍କୁ ଦେଖିବାମାତ୍ରେ ବାନରଶ୍ରେଷ୍ଠ ସୁଗ୍ରୀବ ଉଦ୍‌ବିଗ୍ନଚିତ୍ତ ହୋଇ କହିଲେ । ୧ । "ହେ ବୀର ! ଉଠ ଉଠ; ତୁମ୍ଭେ କାହିଁକି

ଉତ୍ତିଷ୍ଠୋତ୍ତିଷ୍ଠ କସ୍ମାତ୍ତ୍ୱଂ ପାଦୟୋଃ ପତିତୋ ମମ ।
ଅଭୟଂ ତେ ପ୍ରଦାସ୍ୟାମି ସତ୍ୟମେବାଭିଧୀୟତାମ୍ । ୨ ।
କିଂ ସଂଭ୍ରମାଦ୍ଧିତଂ କୃତ୍ସ୍ନଂ ବ୍ରୂହି ଯଦ୍‌ବକ୍ତୁମର୍ହସି ।
କଚ୍ଚିନ୍ମଧୁବନେ ସ୍ୱସ୍ତି ଶ୍ରୋତୁମିଚ୍ଛାମି ବାନର ! । ୩ ।
ସ ସମାଶ୍ୱାସିତସ୍ତେନ ସୁଗ୍ରୀବେଣ ମହାତ୍ମନା ।
ଉତ୍ଥାୟ ସ ମହାପ୍ରାଜ୍ଞୋ ବାକ୍ୟଂ ଦଧିମୁଖୋଽବ୍ରବୀତ୍ । ୪
ନୈବର୍କ୍ଷରଜସା ରାଜନ୍ ତ୍ୱୟା ନ ଚ ବାଲିନା ।
ବନଂ ନିସୃଷ୍ଟପୂର୍ବଂ ତେ ନାଶିତଂ ତତ୍ତୁ ବାନରୈଃ । ୫ ।
ନ୍ୟବରୟମହଂ ସର୍ବାନ୍ ସହୈଭିର୍ବନଚାରିଭିଃ ।
ଅଚନ୍ତୟିତ୍ୱା ମାଂ ହୃଷ୍ଟା ଭକ୍ଷୟନ୍ତି ପିବନ୍ତି ଚ । ୬ ।
ଏଭିଃ ପ୍ରଧର୍ଷଣାୟାଂ ଚ ବାରିତଂ ବନପାଳକୈଃ ।
ମାମପ୍ୟଚିନ୍ତୟନ୍ଦେବ ! ଭକ୍ଷୟନ୍ତି ବନୌକସଃ । ୭ ।
ଶିଷ୍ଟମତ୍ରାପବିଧ୍ୟନ୍ତି ଭକ୍ଷୟନ୍ତି ତଥାପରେ ।
ନିବାର୍ୟମାଣାସ୍ତେ ସର୍ବେ ଭ୍ରୁକୁଟିଂ ଦର୍ଶୟନ୍ତି ହି । ୮ ।

---

ମୋ ଗୋଡ଼ତଳେ ପଡ଼ିଲ ? ମୁଁ ତୁମ୍ଭଙ୍କୁ ଅଭୟ ଦାନକରୁଛି, କ'ଣ ଘଟଣା, ସତ୍ୟ କଥା କହ । ୨ । ଭୟ କରିବାର କ'ଣ କାରଣ ଅଛି ? ତୁମ୍ଭର ଯେଉଁ ମଙ୍ଗଳ-ଜନକ କଥା କହିବାର ଅଛି, ସେ ସମସ୍ତ କହ । ହେ ବାନର ! ମଧୁବନର ସମସ୍ତ ମଙ୍ଗଳ ତ ? ତାହା ଶୁଣିବାକୁ ମୁଁ ଇଚ୍ଛାକରେଁ" । ୩ । ମହାତ୍ମା ସୁଗ୍ରୀବ ଏହିପରି ଆଶ୍ୱାସନା ଦେବାପରେ ମହାପ୍ରାଜ୍ଞ ଦଧିମୁଖ ଉଠି କହିଲେ । ୪ । "ରାଜନ୍ ! ତୁମ୍ଭେ, ବାଳୀ ବା ଋକ୍ଷରାଜ କେହି ଯେଉଁ ବନକୁ ପୂର୍ବେ କାହାରିକୁ ସ୍ୱଚ୍ଛନ୍ଦରେ ଭୋଗ କରିବାକୁ ଦେଇ ନ ଥିଲ, ସେହି ବନ ବର୍ତ୍ତମାନ ବାନରମାନଙ୍କ ଦ୍ୱାରା ବିନଷ୍ଟ ହୋଇଅଛି । ୫ । ମୁଁ ଏହି ବନଚର ବାନରମାନଙ୍କ ସହିତ ସେମାନଙ୍କୁ ନିବାରଣ କଲି; ମାତ୍ର ସେମାନେ ସେଥିପ୍ରତି ଭ୍ରୂକ୍ଷେପ ନ କରି ଖାଇବା ପିଇବାରେ ଲାଗିଲେ ।୬। ହେ ଦେବ ! ଏହି ବନରକ୍ଷକମାନେ ବାରଣ କରିବାରୁ ସେମାନେ ତାଙ୍କ ପ୍ରତି ବଳପ୍ରୟୋଗ କଲେ ଏବଂ ମୋତେ ଖାତିର ନ କରି ମଧୁ ଖାଇଲାଗିଛନ୍ତି । ୭ । ଯାହା ଖାଇବାର ଖାଉଛନ୍ତି ଏବଂ ଅବଶିଷ୍ଟ ମଧୁମାନ ଭାଙ୍ଗିପକାଉଛନ୍ତି । ମନାକଲେ ସେମାନେ ସମସ୍ତେ ଭ୍ରୂକୁଟି ଦେଖାଉଛନ୍ତି ।୮। ଏହିପ୍ରକାରେ ଏମାନେ ଅତିଶୟ ଅପମାନିତ

ଇମେ ହି ସଂରକ୍ଷିତାସ୍ତଦା ତୈଃ ସଂପ୍ରଧର୍ଷିତାଃ ।
ନିବାର୍ଯନ୍ତୋ ବନାତସ୍ମାତ୍ କ୍ରୁଦ୍ଧୈର୍ବାନରପୁଙ୍ଗବୈଃ । ୯ ।
ତତସ୍ତୈର୍ବହୁଭିର୍ବୀରୈର୍ବାନରୈର୍ବାନରର୍ଷଭାଃ ।
ସଂରକ୍ତନୟନୈଃ କ୍ରୋଧାଦ୍ଧରୟଃ ସଂପ୍ରଧର୍ଷିତାଃ । ୧୦ ।
ପାଣିଭିର୍ନିହତାଃ କେଚିତ୍କେଚିଜ୍ଜାନୁଭିରାହତାଃ ।
ପ୍ରକୃଷ୍ଟାଶ୍ଚ ତଦା କାମଂ ଦେବମାର୍ଗଂ ଚ ଦର୍ଶିତାଃ । ୧୧ ।
ଏବମେତେ ହତାଃ ଶୂରାସ୍ତ୍ୱୟି ତିଷ୍ଠତି ଭର୍ତ୍ତରି ।
କୃତ୍ସ୍ନଂ ମଧୁବନଂ ଚୈବ ପ୍ରକାମଂ ତୈଶ୍ଚ ଭକ୍ଷ୍ୟତେ । ୧୨ ।
ଏବଂ ବିଜ୍ଞାପ୍ୟମାନଂ ତଂ ସୁଗ୍ରୀବଂ ବାନରର୍ଷଭମ୍ ।
ଅପୃଚ୍ଛତ୍ତଂ ମହାପ୍ରାଜ୍ଞୋ ଲକ୍ଷ୍ମଣଃ ପରବୀରହା । ୧୩ ।
କିମୟଂ ବାନରୋ ରାଜନ୍ ! ବନପଃ ପ୍ରତ୍ୟୁପସ୍ଥିତଃ ।
କଂ ଚାର୍ଥମଭିନିର୍ଦ୍ଦିଶ୍ୟ ଦୁଃଖିତୋ ବାକ୍ୟମବ୍ରବୀତ୍ । ୧୪ ।
ଏବମୁକ୍ତସ୍ତୁ ସୁଗ୍ରୀବୋ ଲକ୍ଷ୍ମଣେନ ମହାତ୍ମନା ।
ଲକ୍ଷ୍ମଣଂ ପ୍ରତ୍ୟୁବାଚେଦଂ ବାକ୍ୟଂ ବାକ୍ୟବିଶାରଦଃ । ୧୫ ।
ଆର୍ଯ ! ଲକ୍ଷ୍ମଣ ! ସଂପ୍ରାହ ବୀରୋ ଦଧିମୁଖଃ କପିଃ ।
ଅଙ୍ଗଦପ୍ରମୁଖୈର୍ବୀରୈର୍ଭକ୍ଷିତଂ ମଧୁ ବାନରୈଃ । ୧୬।

---

ଏବଂ ସେମାନଙ୍କ ଦ୍ୱାରା ପ୍ରହୃତ ହୋଇଅଛନ୍ତି ଏବଂ ନିବାରଣ କରିବାରୁ ସେହି ବାନରଶ୍ରେଷ୍ଠମାନେ କ୍ରୁଦ୍ଧହୋଇ ସେ ବନରୁ ଏମାନଙ୍କୁ ତଡ଼ିଦେଇଛନ୍ତି । ୯ । ଏହିପରିଭାବରେ ସେହି ବାନରଶ୍ରେଷ୍ଠ ବୀରମାନେ କ୍ରୋଧରେ ରକ୍ତଚକ୍ଷୁ ହୋଇ ଏମାନଙ୍କୁ ପ୍ରହାରକଲେ । ୧୦ । କାହାର କାହାର ହାତ ଜଖମ ହୋଇସାରିଛି, କାହାର ବା ଜଙ୍ଘ ଭାଙ୍ଗିଯାଇଛି । ସେମାନେ ଏମାନଙ୍କୁ ମନଇଚ୍ଛା ଘୋଷାରିଲେ ଏବଂ ଆକାଶକୁ ଘୁଞ୍ଚି ଫିଙ୍ଗିଦେଲେ ।୧୧। ତୁମ୍ଭେ ପ୍ରଭୁ ହୋଇ ଥାଉ ଥାଉ ଏମାନେ ଏହିପରିଭାବରେ ମାଡ଼ ଖାଇଛନ୍ତି ଏବଂ ସେମାନେ ସମସ୍ତ ମଧୁବନ ଯଥେଚ୍ଛଭାବରେ ଭକ୍ଷଣ କରୁଅଛନ୍ତି" । ୧୨ । ସେ ସୁଗ୍ରୀବଙ୍କ ନିକଟରେ ଏହିପରି ସମସ୍ତ ବୃତ୍ତାନ୍ତ ଜଣାଉଥିବାବେଳେ ଶତ୍ରୁଘାତକ ମହାପ୍ରାଜ୍ଞ ଲକ୍ଷ୍ମଣ ତାଙ୍କୁ ପଚାରିଲେ । ୧୩ । "ହେ ରାଜନ୍ ! ଏହି ବନପାଳକ ବାନର କିନିମନ୍ତେ ତୁମ୍ଭ ନିକଟକୁ ଆସିଅଛି ଏବଂ କେଉଁ ବିଷୟରେ ଦୁଃଖିତଭାବରେ ତୁମ୍ଭଙ୍କୁ ନିବେଦନ କରୁଅଛି ?" । ୧୪ । ମହାତ୍ମା ଲକ୍ଷ୍ମଣ ଏହି ପ୍ରକାର କହିବାରୁ ବାକ୍ୟବିଶାରଦ ସୁଗ୍ରୀବ ତାଙ୍କୁ ପ୍ରତ୍ୟୁତ୍ତର ଦେଲେ । ୧୫ । "ହେ ଆର୍ଯ୍ୟ ଲକ୍ଷ୍ମଣ ! ବୀର ଦଧିମୁଖ ବାନର କହୁଛନ୍ତି ଅଙ୍ଗଦ

ଇମେ ହି ସଂରକ୍ଷିତାସ୍ତଦା ତୈଃ ସଂପ୍ରଧର୍ଷିତାଃ ।
ନିବାର୍ଯ୍ୟନ୍ତେ ବନାତ୍ତସ୍ମାତ୍ କ୍ରୁଦ୍ଧୈର୍ବାନରପୁଙ୍ଗବୈଃ । ୯ ।
ତତସ୍ତୈର୍ବହୁଭିର୍ବୀରୈର୍ବାନରୈର୍ବାନରର୍ଷଭାଃ ।
ସଂରକ୍ତନୟନୈଃ କ୍ରୋଧାଦ୍ଧରୟଃ ସଂପ୍ରଧର୍ଷିତାଃ । ୧୦ ।
ପାଣିଭିର୍ନିହତାଃ କେଚତ୍କେଚଜ୍ଜାନୁଭିରାହତାଃ ।
ପ୍ରକୃଷ୍ଟାଶ୍ଚ ତଦା କାମଂ ଦେବମାର୍ଗଂ ଚ ଦର୍ଶିତାଃ । ୧୧ ।
ଏବମେତେ ହତାଃ ଶୂରାସ୍ତ୍ୱୟି ତିଷ୍ଠତି ଭର୍ତ୍ତରି ।
କୃତ୍ସ୍ନଂ ମଧୁବନଂ ଚୈବ ପ୍ରକାମଂ ତୈଶ୍ଚ ଭକ୍ଷ୍ୟତେ । ୧୨ ।
ଏବଂ ବିଜ୍ଞାପ୍ୟମାନଂ ତଂ ସୁଗ୍ରୀବଂ ବାନରର୍ଷଭମ୍ ।
ଅପୃଚ୍ଛତ୍ତଂ ମହାପ୍ରାଜ୍ଞୋ ଲକ୍ଷ୍ମଣଃ ପରବୀରହା । ୧୩ ।
କିମୟଂ ବାନରୋ ରାଜନ୍ ! ବନପଃ ପ୍ରତ୍ୟୁପସ୍ଥିତଃ ।
କଂ ଚାର୍ଥମଭିନିର୍ଦ୍ଦିଶ୍ୟ ଦୁଃଖିତୋ ବାକ୍ୟମବ୍ରବୀତ୍ । ୧୪ ।
ଏବମୁକ୍ତସ୍ତୁ ସୁଗ୍ରୀବୋ ଲକ୍ଷ୍ମଣେନ ମହାତ୍ମନା ।
ଲକ୍ଷ୍ମଣଂ ପ୍ରତ୍ୟୁବାଚେଦଂ ବାକ୍ୟଂ ବାକ୍ୟବିଶାରଦଃ । ୧୫ ।
ଆର୍ଯ ! ଲକ୍ଷ୍ମଣ ! ସଂପ୍ରାହ ବୀରୋ ଦଧିମୁଖଃ କପିଃ ।
ଅଙ୍ଗଦପ୍ରମୁଖୈର୍ବୀରୈର୍ଭକ୍ଷିତଂ ମଧୁ ବାନରୈଃ । ୧୬।

---

ଏବଂ ସେମାନଙ୍କ ଦ୍ୱାରା ପ୍ରହୃତ ହୋଇଅଛନ୍ତି ଏବଂ ନିବାରଣ କରିବାରୁ ସେହି ବାନରଶ୍ରେଷ୍ଠମାନେ କ୍ରୁଦ୍ଧହୋଇ ସେ ବନରୁ ଏମାନଙ୍କୁ ତଡ଼ିଦେଇଛନ୍ତି । ୯ । ଏହିପରିଭାବରେ ସେହି ବାନରଶ୍ରେଷ୍ଠ ବୀରମାନେ କ୍ରୋଧରେ ରକ୍ତଚକ୍ଷୁ ହୋଇ ଏମାନଙ୍କୁ ପ୍ରହାରକଲେ । ୧୦ । କାହାର କାହାର ହାତ ଜଖମ ହୋଇଯାଇଛି, କାହାର ବା ଜଙ୍ଘ ଭାଙ୍ଗିଯାଇଛି । ସେମାନେ ଏମାନଙ୍କୁ ମନଇଚ୍ଛା ଘୋଷାରିଲେ ଏବଂ ଆକାଶକୁ ଗୁଡ଼ି ଫିଙ୍ଗିଦେଲେ ।୧୧। ତୁମ୍ଭେ ପ୍ରଭୁ ହୋଇ ଥାଉ ଥାଉ ଏମାନେ ଏହିପରିଭାବରେ ମାଡ଼ ଖାଇଛନ୍ତି ଏବଂ ସେମାନେ ସମସ୍ତ ମଧୁବନ ଯଥେଚ୍ଛଭାବରେ ଭକ୍ଷଣ କରୁଅଛନ୍ତି” । ୧୨ । ସେ ସୁଗ୍ରୀବଙ୍କ ନିକଟରେ ଏହିପରି ସମସ୍ତ ବୃତ୍ତାନ୍ତ ଜଣାଉଥିବାବେଳେ ଶତ୍ରୁବୀରନିହନ୍ତା ମହାପ୍ରାଜ୍ଞ ଲକ୍ଷ୍ମଣ ତାଙ୍କୁ ପଚାରିଲେ । ୧୩ । “ହେ ରାଜନ୍ ! ଏହି ବନପାଳକ ବାନର କିନିମନ୍ତେ ତୁମ୍ଭ ନିକଟକୁ ଆସିଅଛି ଏବଂ କେଉଁ ବିଷୟରେ ଦୁଃଖିତଭାବରେ ତୁମ୍ଭଙ୍କୁ ନିବେଦନ କରୁଅଛି ?” । ୧୪ । ମହାତ୍ମା ଲକ୍ଷ୍ମଣ ଏହି ପ୍ରକାର କହିବାରୁ ବାକ୍ୟବିଶାରଦ ସୁଗ୍ରୀବ ତାଙ୍କୁ ପ୍ରତ୍ୟୁତ୍ତର ଦେଲେ । ୧୫ । “ହେ ଆର୍ଯ୍ୟ ଲକ୍ଷ୍ମଣ ! ବୀର ଦଧିମୁଖ ବାନର କହୁଛନ୍ତି ଅଙ୍ଗଦ

ନୈଷାମକୃତକାର୍ଯାଣାମୀଦୃଶଃ ସ୍ୟାଦ୍‌ବ୍ୟତିକ୍ରମଃ ।
ବନଂ ଯଦଭିପନ୍ନାସ୍ତେ ସାଧିତଂ କର୍ମ ତଦ୍ଧ୍ରୁବମ୍ । ୧୭ ।
ବାରୟନ୍ତୋ ଭୃଶଂ ପ୍ରାପ୍ତାଃ ପାଲା ଜାନୁଭିରାହତାଃ ।
ତଥା ନ ଗଣିତଶ୍ଚାର୍ଯ୍ୟ ! କପିର୍ଦଧିମୁଖୋ ବଲୀ । ୧୮ ।
ପତିର୍ମମ ବନସ୍ୟାୟମସ୍ମାଭିଃ ସ୍ଥାପିତଃ ସ୍ୱୟମ ।
ଦୃଷ୍ଟା ଦେବୀ ନ ସନ୍ଦେହୋ ନ ଚାନ୍ୟେନ ହନୂମତା ।୧୯।
ନ ହ୍ୟନ୍ୟଃ ସାଧନେ ହେତୁଃ କର୍ମଣୋଽସ୍ୟ ହନୂମତଃ ।
କାର୍ଯସିଦ୍ଧିର୍ହନୂମତି ମତିଶ୍ଚ ହରିପୁଙ୍ଗବେ । ୨୦ ।
ବ୍ୟବସାୟଶ୍ଚ ବୀର୍ଯଂ ଚ ଶ୍ରୁତଂ ଚାପି ପ୍ରତିଷ୍ଠିତମ୍ ।
ଜାମ୍ବବାନ୍ ଯତ୍ର ନେତା ସ୍ୟାଦଙ୍ଗଦଶ୍ଚ ମହାବଲଃ । ୨୧।
ହନୂମାଂଶ୍ଚାପ୍ୟଧିଷ୍ଠାତା ନ ତସ୍ୟ ଗତିରନ୍ୟଥା ।
ଅଙ୍ଗଦପ୍ରମୁଖୈର୍ବୀରୈର୍ହତଂ ମଧୁବନଂ କିଲ । ୨୨ ।
ବିଚିତ୍ୟ ଦକ୍ଷିଣାମାଶାମାଗତୈର୍ହରିପୁଙ୍ଗବୈଃ ।
ଆଗତୈଶ୍ଚ ପ୍ରହୃଷ୍ଟଂ ତଦ୍‌ଯଥା ମଧୁବନଂ ହି ତୈଃ ।୨୩।

---

ପ୍ରଭୃତି ବୀର ବାନରମାନେ ମଧୁ ଖାଇଯାଇଅଛନ୍ତି । ୧୭ । ଯାହା ହେଉ ସେମାନେ ଅକୃତକାର୍ଯ୍ୟ ହୋଇଥିଲେ ଏପରି ବ୍ୟତିକ୍ରମ କରିବାରେ ପ୍ରବୃତ୍ତ ହୁଅନ୍ତେ ନାହିଁ । ସେମାନେ ଯେଉଁଠବେଳେ ଏ ମଧୁବନରେ ଆସି ପଡ଼ିଅଛନ୍ତି, ସେତେବେଳେ ନିଶ୍ଚୟ କାର୍ଯ୍ୟ ସାଧନକରି ଆସିଛନ୍ତି । ୧୭ । ବାରମ୍ବାର ମନା କଲେ ମଧ୍ୟ ସେମାନେ ବନରେ ପଶି ବନପାଳକମାନଙ୍କର ଜାନୁ ଭାଙ୍ଗିଦେଇଛନ୍ତି ଏବଂ ଯେଉଁ ବଳବାନ୍ ବାନର ଦଧିମୁଖକୁ ଏ ବନର ପ୍ରଭୁରୂପେ ସ୍ୱୟଂ ମୁଁ ନିଯୁକ୍ତ କରିଛି, ତାହାକୁ ମଧ୍ୟ ସେମାନେ ଖାତିର କରି ନାହାନ୍ତି । ସେମାନେ ଦେବୀଙ୍କୁ ଦେଖିଛନ୍ତି,ଏଥିରେ ସନ୍ଦେହ ନାହିଁ; ଏହା ଅନ୍ୟ କାହାରିଦ୍ୱାରା ନୁହେ, ହନୁମାନଙ୍କଦ୍ୱାରା ହିଁ ସାଧିତ ହୋଇଅଛି ।୧୮-୧୯। ଏହି କର୍ମସାଧନରେ ହନୁମାନଙ୍କ ଛଡ଼ା ଅନ୍ୟ କେହି କାରଣଭୂତ ହୋଇ ନ ପାରେ । ସେହି ବାନରଶ୍ରେଷ୍ଠ ହନୁମାନଙ୍କଠାରେ ହିଁ କାର୍ଯ୍ୟସିଦ୍ଧି, ବୁଦ୍ଧି, ଉଦ୍ୟମ ବୀର୍ଯ୍ୟ ଏବଂ ଜ୍ଞାନ ପ୍ରତିଷ୍ଠିତ ରହିଅଛି । ଯେଉଁ କ୍ଷେତ୍ରରେ ମହାବଳୀ ଅଙ୍ଗଦ ଓ ଜାମ୍ବବାନ୍ ଅଧିନାୟକ ଏବଂ ହନୂମାନ୍ ଅଧିଷ୍ଠାତା,ସେ କାର୍ଯ୍ୟର ଅନ୍ୟପ୍ରକାର ଫଳ ହୋଇ ନ ପାରେ । ଅଙ୍ଗଦ ପ୍ରଭୃତି ବାନର ବୀରମାନେ ଦକ୍ଷିଣଦିଗ ଅନ୍ୱେଷଣ କରି ଆନନ୍ଦିତ ହୋଇ ଫେରିଆସି ନିଶ୍ଚୟ ଏହି ମଧୁବନକୁ ନଷ୍ଟ କରୁଅଛନ୍ତି । ୨୦-୨୩ ।

ଧର୍ଷଣଂ ଚ ବନଂ କୃତ୍ସ୍ନମୁପଯୁକ୍ତଂ ତୁ ବାନରୈଃ ।
ପାତିତା ବନପାଲାସ୍ତେ ତଥା ଜାନୁଭିରାହତାଃ । ୨୪ ।
ଏତଦର୍ଥମହଂ ପ୍ରାପ୍ତୋ ବକ୍ତୁଂ ମଧୁରବାଗିହ ।
ନାମ୍ନା ଦଧିମୁଖୋ ନାମ ହରିଃ ପ୍ରଖ୍ୟାତବିକ୍ରମଃ । ୨୫ ।
ଦୃଷ୍ଟା ସୀତା ମହାବାହୋ ! ସୌମିତ୍ରେ ! ପଶ୍ୟ ତତ୍ତ୍ୱତଃ ।
ଅଭିଗମ୍ୟ ଯଥା ସର୍ବେ ପିବନ୍ତି ମଧୁ ବାନରାଃ । ୨୬ ।
ନ ଚାପ୍ୟଦୃଷ୍ଟ୍ୱା ବୈଦେହୀଂ ବିଶ୍ରୁତାଃ ପୁରୁଷର୍ଷଭ !
ବନଂ ଦତ୍ତବରଂ ଦିବ୍ୟଂ ଧର୍ଷୟେୟୁର୍ବନୌକସଃ । ୨୭ ।
ତତଃ ପ୍ରହୃଷ୍ଟଃ ଧର୍ମାତ୍ମା ଲକ୍ଷ୍ମଣଃ ସହରାଘବଃ ।
ଶ୍ରୁତ୍ୱା କର୍ଣ୍ଣସୁଖାଂ ବାଣୀଂ ସୁଗ୍ରୀବବଦନାଚ୍ଚ୍ୟୁତାମ୍ । ୨୮ ।
ପ୍ରାହୃଷ୍ୟତ ଭୃଶଂ ରାମୋ ଲକ୍ଷ୍ମଣଶ୍ଚ ମହାଯଶାଃ ।
ଶ୍ରୁତ୍ୱା ଦଧିମୁଖସ୍ୟେଦଂ ସୁଗ୍ରୀବସ୍ତୁ ପ୍ରହୃଷ୍ୟ ଚ । ୨୯ ।
ବନପାଳଂ ପୁନର୍ବାକ୍ୟଂ ସୁଗ୍ରୀବଃ ପ୍ରତ୍ୟଭାଷତ ।
ପ୍ରୀତୋଽସ୍ମି ସୋଽହଂ ଯଦ୍ଭୁକ୍ତଂ ବନଂ ତୈଃ କୃତକର୍ମଭିଃ ।୩୦।

---

ସେହି ବାନରମାନେ ସମଗ୍ର ଉତ୍କୃଷ୍ଟ ମଧୁବନକୁ ଧ୍ୱସ୍ତବିଧ୍ୱସ୍ତ କରିଛନ୍ତି । ବନରକ୍ଷକମାନଙ୍କୁ ମାରି ତଳେ ପକାଇଦେଇଛନ୍ତି ଏବଂ ସେମାନଙ୍କ ଜଙ୍ଘ ଭାଙ୍ଗିଦେଇଛନ୍ତି ।୨୪। ସେହିହେତୁରୁ ଏହି ବିଖ୍ୟାତ-ପୌରୁଷ ଦଧିମୁଖ ବାନର ସେହି ମଧୁର କଥା ଜଣାଇବାକୁ ଏଠାକୁ ଆସିଅଛି । ୨୫ । ହେ ମହାବାହୋ ସୌମିତ୍ରେ ! ଏହି ବାନରମାନେ ସମସ୍ତେ ଆସି ଯେପରି ମଧୁ ପାନକରୁଛନ୍ତି, ସେଥିରୁ ସେମାନେ ସୀତାଙ୍କୁ ନିଶ୍ଚୟ ଦେଖି ଆସିଛନ୍ତି, ଏକଥା ତୁମ୍ଭେ ଯଥାର୍ଥ ବୋଲି ଜାଣ । ୨୬ । ହେ ନରଶ୍ରେଷ୍ଠ ! ଏହି ବିଖ୍ୟାତ ବନବାସୀ ବାନରମାନେ କଦାପି ବୈଦେହୀଙ୍କୁ ନ ଦେଖି ମୋର ଏହି ଦେବଦତ୍ତ ଦିବ୍ୟ ମଧୁବନକୁ ବିନଷ୍ଟ କରି ନ ଥାନ୍ତେ'' । ୨୭ । ଅନନ୍ତର ସୁଗ୍ରୀବଙ୍କ ମୁଖନିସୃତ ଏହି କର୍ଣ୍ଣମଧୁର ବାଣୀ ଶୁଣି ଧର୍ମାତ୍ମା ଲକ୍ଷ୍ମଣ ଏବଂ ରାମ ଅତିଶୟ ଆହ୍ଲାଦିତ ହେଲେ । ୨୮ । ମହାଯଶା ଲକ୍ଷ୍ମଣ, ରାମ ତଥା ସୁଗ୍ରୀବ ଦଧିମୁଖର ଏହି କଥା ଶୁଣି ଅତିଶୟ ଆନନ୍ଦିତ ହେଲେ । ୨୯ । ସୁଗ୍ରୀବ ବନରକ୍ଷକ ଦଧିମୁଖକୁ ପୁନର୍ବାର କହିଲେ, ''ସେମାନେ କୃତକାର୍ଯ୍ୟ ହୋଇ ଯେ ମଧୁ ଭକ୍ଷଣ କରିଅଛନ୍ତି ଏଥିରେ ମୁଁ ପ୍ରୀତିହେଲି । ୩୦ । କାର୍ଯ୍ୟସାଧନ କରିଥିବା

ଧର୍ଷିତମର୍ଷଣୀୟଂ ଚ ଚେଷ୍ଟିତଂ କୃତକର୍ମଣାମ୍ ।
ଗଚ୍ଛ ଶୀଘ୍ରଂ ମଧୁବନଂ ସଂରକ୍ଷସ୍ୱ ତ୍ୱମେବ ହି ।
ଶୀଘ୍ରଂ ପ୍ରେଷୟ ସର୍ବାଂସ୍ତାନ୍ ହନୂମତ୍ପ୍ରମୁଖାନ୍ କପୀନ୍ ।୩୧।
ଇଚ୍ଛାମି ଶୀଘ୍ରଂ ହନୂମତ୍ପ୍ରଧାନାନ୍
ଶାଖାମୃଗାଂସ୍ତାନ୍ମୃଗରାଜଦର୍ପାନ୍ ।
ପ୍ରଷ୍ଟୁଂ କୃତାର୍ଥାନ୍ ସହ ରାଘବାଭ୍ୟାମ୍
ଶ୍ରୋତୁଂ ଚ ସୀତାଧିଗମେ ପ୍ରୟତ୍ନମ ।୩୨।
ପ୍ରୀତିସ୍ଫୀତାକ୍ଷୌ ସଂପ୍ରହୃଷ୍ଟୌ କୁମାରୌ
ଦୃଷ୍ଟ୍ୱା ସିଦ୍ଧାର୍ଥୌ ବାନରାଣାଂ ଚ ରାଜା ।
ଅଙ୍ଗୈଃ ପ୍ରହୃଷ୍ଟୈଃ କାର୍ଯ୍ୟସିଦ୍ଧିଂ ବିଦିତ୍ୱା
ବାହ୍ୱୋରାସନ୍ନାମତିମାତ୍ରଂ ନନନ୍ଦ ।୩୩।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ସୁନ୍ଦରକାଣ୍ଡେ ସୁଗ୍ରୀବହର୍ଷୋ ନାମ ତ୍ରିଷଷ୍ଟିତମଃ ସର୍ଗଃ ।

---

ବ୍ୟକ୍ତିମାନଙ୍କର ଦୁର୍ବ୍ୟବହାର ଏବଂ ବଳପ୍ରୟୋଗ ସହିନେବା ଉଚିତ । ତୁମ୍ଭେ ଶୀଘ୍ର ମଧୁବନକୁ ଯାଇ ତାହାକୁ ରକ୍ଷାକର ଏବଂ ହନୂମାନ୍ ପ୍ରଭୃତି ବାନରମାନଙ୍କ୍ ସମସ୍ତଙ୍କୁ ଏଠାକୁ ଶୀଘ୍ର ପଠାଇ ଦିଅ । ୩୧ । ମୁଁ ରାମ ଏବଂ ଲକ୍ଷ୍ମଣଙ୍କ ସହିତ ମିଶି ସେହି ସିଂହସଦୃଶ ଦର୍ପଶାଳୀ ହନୁମାନ୍ ପ୍ରଭୃତି ସଫଳକାମ ବାନରମାନଙ୍କ୍ ପଚାରିବାକୁ ଏବଂ ସୀତାଙ୍କୁ ପାଇବା ବିଷୟରେ ସେମାନେ କ ଯତ୍ନ କରିଛନ୍ତି ତାହା ଶୀଘ୍ର ଶୁଣିବାକୁ ଇଚ୍ଛାକରୁଅଛି" ।୩୨। ରାମ ଲକ୍ଷ୍ମଣ ଦୁଇ ରାଜପୁତ୍ର ଏହି କଥା ଶୁଣି ଅତିଶୟ ପୁଲକିତ ହେଲେ ଏବଂ ପ୍ରୀତିବଶତଃ ସେମାନଙ୍କର ଚକ୍ଷୁ ବିସ୍ତାରିତ ହୋଇଗଲା । ସେ ଦୁହିଁଙ୍କୁ ସଫଳ-ମନୋରଥ ହେବାର ଦେଖି ବାନରରାଜ ସୁଗ୍ରୀବଙ୍କର ମଧ୍ୟ ସର୍ବାଙ୍ଗ ହୃଷ୍ଟ ହୋଇଗଲା । କାର୍ଯ୍ୟସିଦ୍ଧି ହସ୍ତଗତ ହୋଇଅଛି ଜାଣି ସେ ଅତିଶୟ ଆନନ୍ଦିତ ହୋଇଥିଲେ । ୩୩ ।

# ଚତୁଃଷଷ୍ଟିତମଃ ସର୍ଗଃ

## ହନୂମଦାଦ୍ୟାଗମନମ୍

ସୁଗ୍ରୀବେଣୈବମୁକ୍ତସ୍ତୁ ହୃଷ୍ଟୋ ଦଧିମୁଖଃ କପିଃ ।
ରାଘବଂ ଲକ୍ଷ୍ମଣଂ ଚୈବ ସୁଗ୍ରୀବଂ ଚାଭ୍ୟବାଦୟତ୍ । ୧ ।
ସ ପ୍ରଣମ୍ୟ ଚ ସୁଗ୍ରୀବଂ ରାଘବୌ ଚ ମହାବଲୌ ।
ବାନରୈଃ ସହିତଃ ଶୂରୈର୍ଦିବମେବୋତ୍ପପାତ ହ । ୨ ।
ସ ଯଥୈବାଗତଃ ପୂର୍ବଂ ତଥୈବ ତ୍ୱରିତଂ ଗତଃ ।
ନିପତ୍ୟ ଗଗନାଦ୍ଭୂମୌ ତଦ୍ୱନଂ ପ୍ରବିବେଶ ହ । ୩ ।
ସ ପ୍ରବିଷ୍ଟୋ ମଧୁବନଂ ଦଦର୍ଶ ହରିଯୂଥପାନ୍ ।
ବିମଦାନୁଦ୍ଧତାନ୍ ସର୍ବାନ୍ମେହମାନାନ୍ମଧୂଦକମ୍ । ୪ ।
ସ ତାନୁପାଗମଦ୍‌ବୀରୋ ବଦ୍ଧ୍ୱା କରପୁଟାଞ୍ଜଳିମ୍ ।
ଉବାଚ ବଚନଂ ଶ୍ଲକ୍ଷ୍ଣମିଦଂ ହୃଷ୍ଟବଦଙ୍ଗଦମ୍ । ୫ ।
ସୌମ୍ୟ ! ରୋଷୋ ନ କର୍ତ୍ତବ୍ୟୋ ଯଦେଭିଃ ପରିବାରଣମ୍ ।
ଅଜ୍ଞାନାଦ୍ରକ୍ଷିଭିଃ କ୍ରୋଧାଦ୍ଭବନ୍ତଃ ପ୍ରତିଷେଧିତାଃ । ୬ ।

---

## ୬୪ତମ ସର୍ଗ

( ହନୁମାନ୍ ପ୍ରଭୃତିଙ୍କର ଆଗମନ)

ସୁଗ୍ରୀବ ଏହିପରି କହିବାରୁ ବାନର ଦଧିମୁଖ ଆହ୍ଲାଦିତ ହୋଇ ରାମ, ଲକ୍ଷ୍ମଣ ଏବଂ ସୁଗ୍ରୀବଙ୍କୁ ଅଭିବାଦନ କଲେ ।୧। ସେ ସୁଗ୍ରୀବ ଓ ମହାବଳୀ ରଘୁନନ୍ଦନ ଦ୍ୱୟଙ୍କୁ ଅଭିବାଦନ କରି ବୀର ବାନରମାନଙ୍କ ସହିତ ଆକାଶମାର୍ଗକୁ ଉଠିଲେ ।୨। ସେ ଯେପରିଭାବରେ ଆସିଥିଲେ, ସେହିପରି ଭାବରେ ସତ୍ୱର ଗଲେ ଓ ଆକାଶରୁ ଭୂତଳରେ ନିପତିତ ହୋଇ ସେହି ବନରେ ପ୍ରବେଶକଲେ ।୩। ସେ ମଧୁବନରେ ପ୍ରବେଶକରି ଦେଖିଲେ ଯେ ସେହି ବାନରଦଳପତିମାନଙ୍କର ମଦନିଶା ଛୁଟିଯାଇଛି ଏବଂ ସେମାନେ ପାନ କରିଥିବା ମଧୁକୁ ମୂତ୍ରରୂପରେ ପରିତ୍ୟାଗ କରୁଛନ୍ତି ।୪। ବୀର ଦଧିମୁଖ କରପୁଟରେ ଅଞ୍ଜଳିବନ୍ଧନ ପୂର୍ବକ ସେମାନଙ୍କ ନିକଟକୁ ଅଗ୍ରସର ହେଲେ ଏବଂ ହୃଷ୍ଟଚିତ୍ତରେ ଅଙ୍ଗଦଙ୍କୁ ମଧୁର ବାକ୍ୟରେ କହିଲେ ।୫। "ହେ ସୌମ୍ୟ ! ଏହି ବନରକ୍ଷୀ ବାନରମାନେ ନ ଜାଣି କ୍ରୋଧରେ ତୁମ୍ଭମାନଙ୍କୁ ନିବାରଣ କରିଅଛନ୍ତି । ସେଥିପାଇଁ ତୁମ୍ଭମାନଙ୍କର ରୋଷ

ଶ୍ରାନ୍ତୋ ଦୂରାଦନୁପ୍ରାପ୍ତୋ ଭକ୍ଷୟସ୍ୱ ସ୍ୱକଂ ମଧୁ ।
ଯୁବରାଜସ୍ତ୍ୱମୀଶଶ୍ଚ ବନସ୍ୟାସ୍ୟ ମହାବଳୀ । ୭ ।
ମୌର୍ଖ୍ୟାତ୍ ପୂର୍ବଂ କୃତୋ ଦୋଷସ୍ତଦ୍ ଭବାନ୍ କ୍ଷନ୍ତୁମର୍ହତି ।
ଯଥୈବ ହି ପିତା ତେଽଭୂତ୍ପୂର୍ବଂ ହରିଗଣେଶ୍ୱରଃ ।
ତଥା ତ୍ୱମପି ସୁଗ୍ରୀବୋ ନାନ୍ୟସ୍ତୁ ହରିସତ୍ତମ !
ଆଖ୍ୟାତଂ ହି ମୟା ଗତ୍ୱା ପିତୃବ୍ୟସ୍ୟ ତବାନଘ ! ୯ ।
ଇହୋପଯାନଂ ସର୍ବେଷାମେତେଷାଂ ବନଚାରିଣାମ୍ ।
ଭବଦାଗମନଂ ଶ୍ରୁତ୍ୱା ସହୈଭିର୍ବନଚାରିଭିଃ । ୧୦ ।
ପ୍ରହୃଷ୍ଟୋ ନ ତୁ ରୁଷ୍ଟୋଽସୌ ବନଂ ଶ୍ରୁତ୍ୱା ପ୍ରଧର୍ଷିତମ୍ ।
ପ୍ରହୃଷ୍ଟୋ ମାଂ ପିତୃବ୍ୟସ୍ତେ ସୁଗ୍ରୀବୋ ବାନରେଶ୍ୱରଃ । ୧୧ ।
ଶୀଘ୍ରଂ ପ୍ରେଷୟ ସର୍ବାଂସ୍ତାନିତି ହୋବାଚ ପାର୍ଥିବଃ ।
ଶ୍ରୁତ୍ୱା ଦଧିମୁଖସ୍ୟୈତଦ୍‌ବଚନଂ ଶ୍ଲକ୍ଷ୍ଣମଙ୍ଗଦଃ । ୧୨ ।
ଅବ୍ରବୀତ୍ତାନ୍ ହରିଶ୍ରେଷ୍ଠାନ୍ ବାକ୍ୟଂ ବାକ୍ୟବିଶାରଦଃ ।
ଶଙ୍କେ ଶ୍ରୁତୋଽୟଂ ବୃତ୍ତାନ୍ତୋ ରାମେଣ ହରିଯୂଥପାଃ ! ୧୩ ।

---

କରିବା ଉଚିତ ନୁହେଁ । ୬ । ହେ ମହାବଳନ୍! ତୁମ୍ଭେ ଯୁବରାଜ ଏବଂ ବନର ପ୍ରଭୁ ଅଟ । ବହୁଦୂରରୁ ଆସିଥିବାରୁ ତୁମ୍ଭେମାନେ ଶ୍ରାନ୍ତ ହୋଇଅଛ । ଏତଏବ ସ୍ୱୀୟ ମଧୁ ପାନକର । ୭ । ମୂର୍ଖତାହେତୁରୁ ଆମ୍ଭେମାନେ ପୂର୍ବରୁ ଯେ ଦୋଷ କରି ପକାଇଅଛୁଁ, ତାହା ତୁମ୍ଭେ କ୍ଷମା କରିବା ଉଚିତ । ତୁମ୍ଭର ପିତା ବାଳୀ ପୂର୍ବେ ଯେପରି ବାନରମାନଙ୍କର ଅଧିପତି ଥିଲେ, ବର୍ତ୍ତମାନ ସୁଗ୍ରୀବ ଏବଂ ତୁମ୍ଭେ ମଧ୍ୟ ସେହିପରି ସେମାନଙ୍କର ପ୍ରଭୁ ଅଟ । ହେ ବାନରଶ୍ରେଷ୍ଠ ! ଅନ୍ୟ କେହି ସେମାନଙ୍କର ପ୍ରଭୁ ନୁହେଁ । ହେ ନିଷ୍ପାପ ! ମୁଁ ଯାଇ ତୁମ୍ଭ ପିତୃବ୍ୟଙ୍କ ନିକଟରେ ସମସ୍ତ ବନଚାରୀ ବାନରମାନେ ଏଠାରେ ଆସି ଉପସ୍ଥିତ ହୋଇଥିବା କଥା ଜଣାଇଲି । ଏହି ବନଚାରୀମାନଙ୍କ ସହିତ ତୁମ୍ଭେ ଫେରି ଆସିଥିବା କଥା ଶୁଣି ଏବଂ ଏହି ବନ ବିଧ୍ୱଂସିତ ହୋଇଥିବା କଥା ଶୁଣି ସେ ରୁଷ୍ଟ ହେଲେ ନାହିଁ; ବରଂ ଅତିଶୟ ଆନନ୍ଦିତ ହେଲେ । ବାନରାଧିପତି, ତୁମ୍ଭର ପିତୃବ୍ୟ, ରାଜା ସୁଗ୍ରୀବ ବିଶେଷ ଆନନ୍ଦିତ ହୋଇ ମୋତେ କହିଲେ ଯେ ସେସମସ୍ତଙ୍କୁ ଶୀଘ୍ର ପଠାଇଦିଅ ।" ବାକ୍ୟବିଶାରଦ ଅଙ୍ଗଦ ଦଧିମୁଖଠାରୁ ଏହି ମଧୁର ବଚନ ଶୁଣି ସେହି ବାନରଶ୍ରେଷ୍ଠ-ମାନଙ୍କୁ କହିଲେ, "ହେ ବାନରଦଳପତିଗଣ ! ମୋର ଆଶଙ୍କା ହୁଏ, ରାମ

ଅସ୍ମାଂ ଚ ହର୍ଷାଦାଖ୍ୟାତ ଚେନ ଜାନାମି ହେତୁନା ।
ତଷ୍ମାଂ ନେହ ନଃ ସ୍ଥାତୁଂ କୃତେ କାର୍ଯେ ପରଂତପାଃ ! ।୧୪ ।
ପୀତ୍ୱା ମଧୂ ଯଥାକାମଂ ବିଶ୍ରାନ୍ତା ବନଚାରିଣଃ !
କିଂ ଶେଷଂ ଗମନଂ ତତ୍ର ସୁଗ୍ରୀବୋ ଯତ୍ର ବାନରଃ । ୧୫ ।
ସର୍ବେ ଯଥା ମାଂ ବକ୍ଷ୍ୟନ୍ତି ସମେତ୍ୟ ହରିପୁଙ୍ଗବାଃ ।
ତଥାସ୍ମି କର୍ତ୍ତା କର୍ତ୍ତବ୍ୟ ଭବଦ୍ଭିଃ ପରବାନହମ୍ । ୧୬ ।
ନାଜ୍ଞାପୟିତୁମୀଶୋଽହଂ ଯୁବରାଜୋଽସ୍ମି ଯଦ୍ୟପି ।
ଅଯୁକ୍ତଂ କୃତକର୍ମାଣୋ ଯୂୟଂ ଧର୍ଷୟିତୁଂ ବଲାତ୍ । ୧୭ ।
ବ୍ରୁବତଶ୍ଚାଙ୍ଗଦସୈ୍ୟବଂ ଶ୍ରୁତ୍ୱା ବଚନମୁତ୍ତମମ୍ ।
ପ୍ରହୃଷ୍ଟମନସୋ ବାକ୍ୟମିଦମୂଚୁର୍ବନୌକସଃ । ୧୮ ।
ଏବଂ ବକ୍ଷ୍ୟତି କୋ ରାଜନ୍ ! ପ୍ରଭୁଃ ସନ୍ ବାନରର୍ଷଭଃ ।
ଐଶ୍ୱର୍ଯମଦମତ୍ତୋ ହି ସର୍ବୋଽହମିତି ମନ୍ୟତେ । ୧୯ ।
ତବ ଚେଦଂ ସୁସଦୃଶଂ ବାକ୍ୟଂ ନାନ୍ୟସ୍ୟ କସ୍ୟଚିତ୍ ।
ସନ୍ନତିର୍ହି ତବାଖ୍ୟାତି ଭବିଷ୍ୟଚ୍ଛୁଭଯୋଗ୍ୟତାମ୍ । ୨୦ ।

---

ଆମ୍ଭମାନଙ୍କର ଏ ବୃତ୍ତାନ୍ତ ଶୁଣି ସାରିଲେଣି । ସୁତରାଂ ହେ ଶତ୍ରୁସୂଦନଗଣ ! ଆମ୍ଭେମାନେ ତ କାର୍ଯ୍ୟ ସମ୍ପାଦନ କରି ସାରିଥାଇଁ, ଏଠାରେ ଆଉ ବିଳମ୍ବ କରିବା ଉଚିତ ନୁହେଁ । ଆପଣମାନେ ମନଇଚ୍ଛା ମଧୁ ପାନକରି ବିଶ୍ରାମ ଲାଭ କରିଅଛନ୍ତି । ଅତଏବ ବର୍ତ୍ତମାନ ସୁଗ୍ରୀବଙ୍କ ନିକଟକୁ ଗମନ କରିବାହିଁ ବାକି ରହିଅଛି ।୮-୧୫ । ଆପଣମାନେ ସମସ୍ତେ ମିଳିତହୋଇ ମୋତେ ଯାହା କହିବେ ମୁଁ ତାହା ହିଁ କରିବି; କାରଣ ମୁଁ ଆପଣମାନଙ୍କର ଅଧୀନ ଅଟେ । ୧୬ । ମୁଁ ଯୁବରାଜ ହେଲେ ମଧ୍ୟ ଆପଣମାନଙ୍କୁ ଆଜ୍ଞା ଦେବାର ଅଧିକାରୀ ନୁହେଁ । କାରଣ ଆପଣମାନେ କୃତକର୍ମା; ସୁତରାଂ ଆପଣମାନଙ୍କୁ ବଳପୂର୍ବକ ବାଧ୍ୟ କରିବା ମୋର ଉଚିତ ନୁହେଁ" । ୧୭ । ବନବାସୀ ବାନରମାନେ ଅଙ୍ଗଦଙ୍କର ଏହି ଉତ୍କୃଷ୍ଟ ବଚନ ଶୁଣି ହୃଷ୍ଟଚିତ୍ତରେ କହିଲେ । ୧୮ । "ହେ ରାଜନ୍ ! କେଉଁ ବାନରଶ୍ରେଷ୍ଠ ପ୍ରଭୁ ହୋଇ ଏପରି କଥା କହିବ ? ପ୍ରଭୁ ଐଶ୍ୱର୍ଯ୍ୟମଦରେ ମତ୍ତ ହୋଇ 'ମୁଁ ସବୁ' ବୋଲି ନିଜକୁ ମନେ କରେ । ୧୯ । କିନ୍ତୁ ଏହି କଥା ତୁମ୍ଭର ହିଁ ଏକାନ୍ତ ଉପଯୁକ୍ତ, ଅନ୍ୟର ନୁହେ । ତୁମ୍ଭର ଏହି ନମ୍ରତା ପ୍ରକଟ କରୁଅଛି ଯେ ତୁମ୍ଭେ ଭବିଷ୍ୟତରେ ସୌଭାଗ୍ୟଯୁକ୍ତ ହେବ । ୨୦ ।

ସର୍ବେ ବୟମପି ପ୍ରାପ୍ତାସ୍ତତ୍ର ଗନ୍ତୁଂ କୃତକ୍ଷଣାଃ ।
ସ ଯତ୍ର ହରିବୀରାଣାଂ ସୁଗ୍ରୀବଃ ପତିରବ୍ୟୟଃ । ୨୧ ।
ତ୍ୱୟା ହ୍ୟନୁକ୍ତୈର୍ହରିଭିର୍ନୈବ ଶକ୍ୟଂ ପଦାତ୍ପଦମ୍ ।
କ୍ୱଚିଦ୍‌ଗନ୍ତୁଂ ହରିଶ୍ରେଷ୍ଠ ! ବ୍ରୂମଃ ସତ୍ୟମିଦଂ ତୁ ତେ । ୨୨ ।
ଏବଂ ତୁ ବଦତାଂ ତେଷାମଙ୍ଗଦଃ ପ୍ରତ୍ୟଭାଷତ ।
ସାଧୁ ଗଚ୍ଛାମ ଇତ୍ୟୁକ୍ତ୍ୱା ଖମୁତ୍ପେତୁର୍ମହାବଲାଃ । ୨୩ ।
ଉତ୍ପତନ୍ତମନୂତ୍ପେତୁଃ ସର୍ବେ ତେ ହରିଯୂଥପାଃ ।
କୃତ୍ୱାକାଶଂ ନିରାକାଶଂ ଯନ୍ତ୍ରୋତ୍କ୍ଷିପ୍ତା ଇବୋପଲାଃ । ୨୪ ।
ଅଙ୍ଗଦଂ ପୁରତଃ କୃତ୍ୱା ହନୂମନ୍ତଂ ଚ ବାନରମ୍ ।
ତେଽମ୍ବରଂ ସହସୋତ୍ପତ୍ୟ ବେଗବନ୍ତଃ ପ୍ଲବଙ୍ଗମାଃ । ୨୫ ।
ବିନଦନ୍ତୋ ମହାନାଦଂ ଘନା ବାତେରିତା ଯଥା ।
ଅଙ୍ଗଦେ ସମନୁପ୍ରାପ୍ତେ ସୁଗ୍ରୀବୋ ବାନରେଶ୍ୱରଃ । ୨୬ ।
ଉବାଚ ଶୋକସଂତପ୍ତଂ ରାମଂ କମଲଲୋଚନମ୍ ।
ସମାଶ୍ୱସିହି ଭଦ୍ରଂ ତେ ଦୃଷ୍ଟା ଦେବୀ ନ ସଂଶୟଃ । ୨୭ ।

---

ବାନର ବୀରମାନଙ୍କ ଅଧିପତି ଅକ୍ଷୟ ରାଜା ସୁଗ୍ରୀବ ଯେଉଁଠାରେ ଅଛନ୍ତି, ସେହି ସ୍ଥାନକୁ ଯିବାକୁ ଆମ୍ଭେମାନେ ସମସ୍ତେ ଅପେକ୍ଷାକରି ରହିଅଛୁଁ । ୨୧ । ହେ ବାନର-ଶ୍ରେଷ୍ଠ ! ଆମ୍ଭେମାନେ ତୁମ୍ଭଙ୍କୁ ସତ୍ୟ କଥା କହୁଛୁଁ; ତୁମ୍ଭେ ଆଦେଶ ନ ଦେବା ପର୍ଯ୍ୟନ୍ତ ବାନରମାନେ ପାଦେମାତ୍ର ଅଗ୍ରସର ହେବାକୁ ସମର୍ଥ ନୁହନ୍ତି । ୨୨ । ସେମାନେ ଏହିପରି କହିବାରୁ ଅଙ୍ଗଦ ଉତ୍ତରଦେଲେ, "ହଉ, ଚାଲ ଯିବା", ଏହା କହି ସେହି ମହାବଳୀ ଅଙ୍ଗଦ ଡେଇଁକରି ଆକାଶକୁ ଉଠିଲେ । ୨୩ । ସେ ଆକାଶକୁ ଉଠିବାରୁ ଅନ୍ୟ ସମସ୍ତ ବାନରଦଳପତି ତାହାଙ୍କର ଅନୁସରଣକରି ଯନ୍ତ୍ରୋତ୍କ୍ଷିପ୍ତ ଶିଳାଖଣ୍ଡ ସଦୃଶ ଆକାଶକୁ ସମ୍ପୂର୍ଣ୍ଣ ଆଚ୍ଛାଦିତ କରିପକାଇଲେ । ୨୪ । ସେହି ବେଗଶାଳୀ ବାନରମାନେ ଅଙ୍ଗଦ ଓ ହନୁମାନଙ୍କୁ ଅଗ୍ରଗାମୀ କରି, ସହସା ଆକାଶକୁ ଉତ୍‌ଥିତ ହୋଇ, ବାୟୁସଂଚାଳିତ ମେଘସଦୃଶ ଘୋରନାଦ କରି ଗମନ କଲେ । ଅଙ୍ଗଦ ନିକଟରେ ଆସି ଉପସ୍ଥିତ ହେବାରୁ ବାନରାଧିପତି ସୁଗ୍ରୀବ ଶୋକସନ୍ତପ୍ତ କମଳଲୋଚନ ରାମଙ୍କୁ କହିଲେ, "ତୁମ୍ଭର ମଙ୍ଗଳ ହେଉ, ତୁମ୍ଭେ ଆଶ୍ୱସ୍ତ ହୁଅ, ଏମାନେ ନିଶ୍ଚୟ ସୀତାଦେବୀଙ୍କୁ ଦେଖିଛନ୍ତି;" ଏଥିରେ ସନ୍ଦେହ

ନାଗନ୍ତୁମିହ ଶକ୍ୟଂ ତୈରତୀତସମୟୈରିହ ।
ଅଙ୍ଗଦସ୍ୟ ପ୍ରହର୍ଷାଚ୍ଚ ଜାନାମି ଶୁଭଦର୍ଶନ ! । ୨୮ ।
ନ ମୟ୍ୟକାଶମାଗନ୍ତୁେଲ୍ଳତ୍ୟେ ହି ବନପାତଟେ ।
ଯୁବାରାଜୋ ମହାବାହୁଃ ପ୍ଲବାତାମଙ୍ଗଦୋ ବରଃ । ୨୯ ।
ଯଦ୍ୟପ୍ୟକୃତକୃତ୍ୟାନାମୀଦୃଶଃ ସ୍ୟାଦୁପକ୍ରମଃ ।
ଭବେତ୍ତୁ ଦୀନବଦନୋ ଭ୍ରାନ୍ତବପ୍ଲୁତମାନସଃ । ୩୦ ।
ପିତୃପୈତାମହଂ ଚୈତତ୍ପୂର୍ବକୈରଭିରକ୍ଷିତମ୍ ।
ନ ମେ ମଧୁବନଂ ହନ୍ୟାଦଦୃଷ୍ଟ୍ୱା ଜନକାତ୍ମଜାମ୍ । ୩୧ ।
କୌସଲ୍ୟାସୁପ୍ରଜା ରାମ ! ସମାଶ୍ୱସିହି ସୁବ୍ରତ !
ଦୃଷ୍ଟା ଦେବୀ ନ ସଂଦେହୋ ନଚାନ୍ୟେନ ହନୂମତା । ୩୨ ।
ନ ହ୍ୟସ୍ୟ କର୍ମଣୋ ହେତୁଃ ସାଧନେ ତଦ୍ବିଧୋ ଭବେତ୍ ।
ହନୂମତି ହି ସିଦ୍ଧିଶ୍ଚ ମତିଶ୍ଚ ମତିସତ୍ତମ ! । ୩୩ ।
ବ୍ୟବସାୟଶ୍ଚ ଶୌର୍ଯ୍ୟଂ ଚ ଶ୍ରୁତଂ ଚାପି ପ୍ରତିଷ୍ଠିତମ୍ ।
ଜାମ୍ବବାନ୍ ଯତ୍ର ନେତାସ୍ୟାଦଙ୍ଗଦଶ୍ଚ ହରୀଶ୍ୱରଃ । ୩୪ ।

---

ନାହିଁ । ୨୫-୨୭ । ହେ ଶୁଭଦର୍ଶନ ! ନିର୍ଦ୍ଦିଷ୍ଟ ସମୟ ଅତୀତକର ସେମାନେ କଦାପି ଏଠାକୁ ଆସିପାରନ୍ତେ ନାହିଁ । ଅଙ୍ଗଦର ଆନନ୍ଦ ଦେଖି ମୁଁ ଏ କଥା ବେଶ୍ ଜାଣିପାରୁଛି । ୨୮ । ବାନରଶ୍ରେଷ୍ଠ, ମହାବାହୁ, ଯୁବରାଜ, ଅଙ୍ଗଦ କାର୍ଯ୍ୟ-ସିଦ୍ଧିରେ ବିଫଳ ହୋଇଥିଲେ କଦାପି ମୋ ନିକଟକୁ ଆସନ୍ତା ନାହିଁ । ୨୯ । ବାନରମାନେ ଅକୃତକାର୍ଯ୍ୟ ହୋଇ ଯଦି ଏପରି କାର୍ଯ୍ୟରେ ପ୍ରବୃତ୍ତ ହୋଇଥାନ୍ତେ, ତାହାହେଲେ ଅଙ୍ଗଦର ମୁଖ ମ୍ଲାନ ଏବଂ ମନ ଭ୍ରାନ୍ତ ଓ ବିଚଳିତ ହୋଇ-ଯାଇଥାନ୍ତା । ୩୦ । ସେ ଜନକନନ୍ଦିନୀଙ୍କୁ ନ ଦେଖି ମୋର ପିତୃପିତାମହାଦି ପୂର୍ବପୁରୁଷମାନଙ୍କ ଦ୍ୱାରା ସୁରକ୍ଷିତ ଏହି ମଧୁବନକୁ କଦାପି ଧ୍ୱଂସ କରିପାରି-ନ ଥାନ୍ତା । ୩୧ । ହେ ରାମ ! କୌଶଲ୍ୟା ତୁମ୍ଭଙ୍କ ପାଇ ସୁପୁତ୍ରବତୀ ହୋଇଛନ୍ତି । ହେ ସୁବ୍ରତ ! ତୁମ୍ଭେ ଆଶ୍ୱସ୍ତ ହୁଅ । ଅନ୍ୟ କେହି ନୁହେ, ହନୁମାନ ହିଁ ସୀତାଦେବୀଙ୍କୁ ଦେଖିଛନ୍ତି, ଏଥିରେ ସନ୍ଦେହ ନାହିଁ । ୩୨ । ହନୁମାନଙ୍କ ବ୍ୟତୀତ ଅନ୍ୟ କେହି ଏତାଦୃଶ କାର୍ଯ୍ୟସାଧନରେ ହେତୁ ହୋଇ ନ ପାରେ । ହେ ସୁବୁଦ୍ଧିମାନ୍ ! କାର୍ଯ୍ୟସିଦ୍ଧି, ବୁଦ୍ଧି, ବ୍ୟବସାୟ, ଶୌର୍ଯ୍ୟ ଏବଂ ବେଦଜ୍ଞାନ ହନୁମାନଙ୍କଠାରେ ପ୍ରତିଷ୍ଠିତ ରହିଅଛି । କପିଶ୍ରେଷ୍ଠ ଅଙ୍ଗଦ ଏବଂ ଜାମ୍ବବାନ୍ ଯେଉଁ ବିଷୟରେ

ହନୂମାଂଶ୍ଚାପ୍ୟଧିଷ୍ଠାତା ନ ତତ୍ର ଗତିରନ୍ୟଥା ।
ମା ଭୂଚ୍ଚିନ୍ତାସମାୟୁକ୍ତଃ ସଂପ୍ରତ୍ୟମିତବିକ୍ରମ ! ।୩୫ ।
ଯଦା ହି ଦର୍ପିତୋଦଗ୍ରାଃ ସଂଗତାଃ କାନନୌକସଃ ।
ନୈଷାମକୃତକାର୍ଯ୍ୟାଣାମୀଦୃଶଃ ସ୍ୟାଦୁପକ୍ରମଃ । ୩୬ ।
ବନଭଙ୍ଗେନ ଜାନାମି ମଧୂନାଂ ଭକ୍ଷଣେନ ଚ ।
ତତଃ କିଲକିଲାଶବ୍ଦଂ ଶୁଶ୍ରାବାସନ୍ନମମ୍ବରେ । ୩୭ ।
ହନୂମତ୍କର୍ମଦୃପ୍ତାନାଂ ନଦତାଂ କାନନୌକସାମ୍ ।
କିଷ୍କିନ୍ଧାମୁପଯାତାନାଂ ସିଦ୍ଧିଂ କଥୟତାମିବ । ୩୮ ।
ତତଃ ଶ୍ରୁତ୍ୱା ନିନାଦଂ ତଂ କପୀନାଂ କପିସତ୍ତମଃ ।
ଆୟତାଞ୍ଚିତଲାଙ୍ଗୂଲଃ ସୋଽଭବଦ୍ଧୃଷ୍ଟମାନସଃ । ୩୯ ।
ଆଜଗ୍ମୁସ୍ତେଽପି ହରୟୋ ରାମଦର୍ଶନକାଙ୍କ୍ଷିଣଃ ।
ଅଙ୍ଗଦଂ ପୁରତଃ କୃତ୍ୱା ହନୂମନ୍ତଂ ଚ ବାନରମ୍ । ୪୦ ।
ତେଽଙ୍ଗଦପ୍ରମୁଖା ବୀରାଃ ପ୍ରହୃଷ୍ଟାଶ୍ଚ ମଦାନ୍ୱିତାଃ ।
ନିପେତୁର୍ହରିରାଜସ୍ୟ ସମୀପେ ରାଘବସ୍ୟ ଚ । ୪୧ ।

---

ଅଧିନାୟକ ଏବଂ ହନୂମାନ୍ ସର୍ବୋପରି ଅଧିଷ୍ଠାତା, ସେ କାର୍ଯ୍ୟର ଅନ୍ୟଥା ପରିଣତି ହୋଇ ନ ପାରେ । ହେ ଅମିତବିକ୍ରମ ! ତୁମ୍ଭେ ବର୍ତ୍ତମାନ ଆଉ ଚିନ୍ତାନ୍ୱିତ ହୁଅ ନାହିଁ । ୩୩-୩୫ । ବାନରମାନେ ଦର୍ପିତ ଏବଂ ଉଦ୍ଧାମ ହୋଇ ସମାଗତ ହୋଇଛନ୍ତି । ଏମାନେ ଅକୃତକାର୍ଯ୍ୟ ହୋଇଥିଲେ କଦାପି ଏପରି ଆଡ଼ମ୍ବର କରନ୍ତେ ନାହିଁ । ସେମାନଙ୍କର ବନ ଭାଙ୍ଗିବା ଓ ମଧୁଭକ୍ଷଣ କରିବାରୁ ହିଁ ମୁଁ ଏହା ଜାଣିପାରୁଛି ।” ଅନନ୍ତର ସେ ହନୁମାନଙ୍କ କାର୍ଯ୍ୟରେ ଦୃପ୍ତ ହୋଇଥିବା ବନବାସୀ ବାନରମାନଙ୍କର କିଲକିଲା ଶବ୍ଦ ଅତି ନିକଟରେ ଆକାଶରେ ଶୁଣିଲେ । ସେମାନେ କିଷ୍କିନ୍ଧାରେ ଉପସ୍ଥିତହୋଇ ଏହି ଶବ୍ଦଦ୍ୱାରା ସତେ ଯେପରି ନିଜର କାର୍ଯ୍ୟ-ସିଦ୍ଧି ଜ୍ଞାପନକରୁଥିଲେ । ୩୬-୩୮ । ସେମାନଙ୍କର ଏହି ନିନାଦ ଶ୍ରବଣକରି କପିଶ୍ରେଷ୍ଠ ସୁଗ୍ରୀବ ହୃଷ୍ଟଚିତ୍ତରେ ନିଜର ଲାଙ୍ଗୁଡ଼କୁ ଉପରକୁ ଟେକିଲେ । ୩୯ । ସେହି ବାନରମାନେ ଅଙ୍ଗଦ ଓ ହନୁମାନଙ୍କୁ ଅଗ୍ରଗାମୀ କରି ରାମଙ୍କୁ ଦେଖିବା ଅଭିଳାଷରେ ଅଗ୍ରସର ହେଲେ । । ୪୦ । ଅନନ୍ତର ଅଙ୍ଗଦ ପ୍ରଭୃତି ସେହି ବାନର-ବୀରମାନେ ଅତିଶୟ ଆନନ୍ଦିତ ଓ ଗର୍ବିତ ହୋଇ ବାନରରାଜ ସୁଗ୍ରୀବ ଏବଂ ରାମଙ୍କ ନିକଟରେ ଅବତରଣ କଲେ । ୪୧ । ଅନନ୍ତର ମହାବାହୁ ହନୂମାନ୍

ହନୂମାଂଶ୍ଚ ମହାବାହୁଃ ପ୍ରଣମ୍ୟ ଶିରସା ତତଃ ।
ନିୟୁକ୍ତାମକ୍ଷତାଂ ଦେବୀଂ ରାଘବାୟ ନ୍ୟବେଦୟତ୍ । ୪୨ ।
ଦୃଷ୍ଟ୍ୱା ଦେବୀତି ହନୁମଦ୍‌ବଦନାଦମୃତୋପମମ୍ ।
ଆକର୍ଣ୍ୟ ବଚନଂ ରାମୋ ହର୍ଷମାପ ସଲକ୍ଷ୍ମଣଃ । ୪୩ ।
ନିଶ୍ଚିତାର୍ଥଂ ତତସ୍ତସ୍ମିନ୍ ସୁଗ୍ରୀବଂ ପବନାତ୍ମଜେ ।
ଲକ୍ଷ୍ମଣଃ ପ୍ରୀତିମାନ୍ ପ୍ରୀତୋ ବହୁମାନାଦବୈକ୍ଷତ । ୪୪ ।
ପ୍ରୀତ୍ୟା ଚ ପରମୋପେତୋ ରାଘବଃ ପରବୀରହା ।
ବହୁମାନେନ ମହତା ହନୂମନ୍ତମବୈକ୍ଷତ । ୪୫ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ସୁନ୍ଦରକାଣ୍ଡେ ହନୂମଦାଦ୍ୟାଗମନଂ ନାମ ଚତୁଃଷଷ୍ଟିତମଃ ସର୍ଗଃ ।

---

ଅବନତମସ୍ତକରେ ପ୍ରଣାମକରି, ସୀତାଦେବୀ ସ୍ୱୀୟ ଚରିତ୍ର ରକ୍ଷାକରି କୁଶଳରେ ଥିବାର ରାଘବଙ୍କୁ ଜଣାଇଲେ । । ୪୨ । "ହନୁମାନ୍ ସୀତାଦେବୀଙ୍କୁ ଦେଖିଛନ୍ତି" ଏହି ଅମୃତ ସଦୃଶ ବାକ୍ୟ ଶ୍ରବଣ କରି ରାମ ଏବଂ ଲକ୍ଷ୍ମଣ ଉଭୟେ ଆନନ୍ଦିତ ହେଲେ । ୪୩ । ଅନନ୍ତର ପ୍ରୀତିସମ୍ପନ୍ନ ଲକ୍ଷ୍ମଣ ଅତିଶୟ ପ୍ରୀତ ହୋଇ ସେହି ହନୁମାନଙ୍କଠାରେ କାର୍ଯ୍ୟସିଦ୍ଧି ବିଷୟରେ ପୂର୍ଣ୍ଣବିଶ୍ୱାସ ସ୍ଥାପନ କରିଥିବା ସୁଗ୍ରୀବଙ୍କୁ ବିଶେଷ ସମ୍ମାନ ଦୃଷ୍ଟିରେ ନିରୀକ୍ଷଣକଲେ । ୪୪ । ଶତ୍ରୁବୀରହନ୍ତା ରାମ ମଧ୍ୟ ଅତିଶୟ ପ୍ରୀତିସମ୍ପନ୍ନ ହୋଇ ବିଶେଷ ସମ୍ମାନ ସହକାରେ ହନୁମାନଙ୍କ ଆଡ଼କୁ ଚାହିଁଲେ । ୪୫ ।

# ପଞ୍ଚଷଷ୍ଟିତମଃ ସର୍ଗଃ

## ଚୂଡ଼ାମଣିପ୍ରଦାନମ୍

ତତଃ ପ୍ରସ୍ରବଣଂ ଶୈଳଂ ତେ ଗତ୍ୱା ଚିତ୍ରକାନନମ୍ ।
ପ୍ରଣମ୍ୟ ଶିରସା ରାମଂ ଲକ୍ଷଣଂ ଚ ମହାବଲମ୍ । ୧ ।
ଯୁବରାଜଂ ପୁରସ୍କୃତ୍ୟ ସୁଗ୍ରୀବମଭିବାଦ୍ୟ ଚ ।
ପ୍ରବୃତ୍ତିମଥ ସୀତାୟାଃ ପ୍ରବକ୍ତୁମୁପଚକ୍ରମୁଃ । ୨ ।
ରାବଣାନ୍ତଃପୁରେ ରୋଧଂ ରାକ୍ଷସୀଭିଶ୍ଚ ତର୍ଜନମ୍ ।
ରାମେ ସମନୁରାଗଂ ଚ ଯଥା ଚ ନିୟମଃ କୃତଃ । ୩ ।
ଏତଦାଖ୍ୟାୟ ତେ ସର୍ବଂ ହରୟୋ ରାମସଂନିଧୌ ।
ବୈଦେହୀମକ୍ଷତାଂ ଶ୍ରୁତ୍ୱା ରାମସ୍ତୂତ୍ତରମବ୍ରବୀତ୍ । ୪ ।
କ୍ୱ ସୀତା ବର୍ତ୍ତତେ ଦେବୀ କଥଂ ଚ ମୟି ବର୍ତ୍ତତେ ।
ଏତନ୍ମେ ସର୍ବମାଖ୍ୟାତ ବୈଦେହୀଂ ପ୍ରତି ବାନରାଃ ! । ୫ ।
ରାମସ୍ୟ ଗଦିତଂ ଶ୍ରୁତ୍ୱା ହରୟୋ ରାମସଂନିଧୌ ।
ଚୋଦୟନ୍ତି ହନୂମନ୍ତଂ ସୀତାବୃତ୍ତାନ୍ତକୋବିଦମ୍ । ୬ ।

---

## ୬୫ତମ ସର୍ଗ

( ହନୂମାନଙ୍କର ରାମଙ୍କୁ ମଥ ମଣିପ୍ରଦାନ )

ଅନନ୍ତର ହନୁମାନ୍ ପ୍ରଭୃତି ସେହି ବାନରମାନେ ସମସ୍ତେ ବିଚିତ୍ର କାନନ-ସମନ୍ୱିତ ପ୍ରସ୍ରବଣ ପର୍ବତକୁ ଯାଇ ମହାବଳୀ ରାମ ଓ ଲକ୍ଷ୍ମଣଙ୍କୁ ମୁଣ୍ଡିଆମାରି ପ୍ରଣାମ କରି, ସୁଗ୍ରୀବଙ୍କୁ ଅଭିବାଦନପୂର୍ବକ ଯୁବରାଜ ଅଙ୍ଗଦଙ୍କୁ ପୁରୋବର୍ତ୍ତୀ କରି ସୀତାଙ୍କ ବୃତ୍ତାନ୍ତ ବର୍ଣ୍ଣନା କରିବାକୁ ଆରମ୍ଭ କଲେ । ୧-୨। ରାବଣର ଅନ୍ତଃପୁର ମଧ୍ୟରେ ସୀତାଙ୍କର ଅବରୋଧ, ରାକ୍ଷସୀମାନଙ୍କ କର୍ତ୍ତୃକ ତାହାଙ୍କର ତର୍ଜନା ଏବଂ ରାମଙ୍କ ପ୍ରତି ତାହାଙ୍କର ସବିଶେଷ ଅନୁରାଗ ଓ ସୀତା ଯେଉଁ ସମୟ ନିର୍ଦ୍ଦେଶ କରିଥିଲେ, ସେ ସମସ୍ତ କଥା ସେହି ବାନରମାନେ ସମସ୍ତେ ରାମଙ୍କ ନିକଟରେ କହିଲେ । ସୀତା ନିରାପଦରେ ଥିବାର ଶୁଣି ରାମ ଉତ୍ତରକଲେ । ୩-୪ । " ହେ ବାନରଗଣ ! ଦେବୀ ସୀତା କେଉଁଠାରେ ଅଛନ୍ତି ଏବଂ ମୋପ୍ରତି ତାଙ୍କର ମନୋଭାବ କିପରି, ସୀତାଙ୍କ ବିଷୟରେ ଏ ସବୁ କଥା ମୋତେ କହ" ।୫। ବାନରମାନେ ରାମଙ୍କ କଥା ଶୁଣି ସୀତାଙ୍କ ବୃତ୍ତାନ୍ତ ବିଷୟରେ ବିଶେଷଜ୍ଞାନ ଥିବା ହନୁମାନଙ୍କୁ ଏ ସମସ୍ତ-

ଶ୍ରୁତ୍ୱା ତୁ ବଚନଂ ତେଷାଂ ହନୂମାନ୍ମାରୁତାତ୍ମଜଃ ।
ପ୍ରଣମ୍ୟ ଶିରସା ଦେବ୍ୟୈ ସୀତାୟୈ ତାଂ ଦିଶଂ ପ୍ରତି । ୭ ।
ଉବାଚ ବାକ୍ୟଂ ବାକ୍ୟଜ୍ଞଃ ସୀତାୟା ଦର୍ଶନଂ ଯଥା ।
ତଂ ମଣିକାଞ୍ଚନଂ ଦିବ୍ୟଂ ଦୀପ୍ୟମାନଂ ସ୍ୱତେଜସା । ୮ ।
ଦତ୍ତ୍ୱା ରାମାୟ ହନୂମାଂସ୍ତତଃ ପ୍ରାଞ୍ଜଳିରବ୍ରବୀତ୍ ।
ସମୁଦ୍ରଂ ଲଙ୍ଘୟିତ୍ୱାହଂ ଶତଯୋଜନମାୟତମ୍ । ୯ ।
ଅଗଚ୍ଛଂ ଜାନକୀଂ ସୀତାଂ ମାର୍ଗମାଣୋ ଦିଦୃକ୍ଷୟା ।
ତତ୍ର ଲଙ୍କେତି ନଗରୀ ରାବଣସ୍ୟ ଦୁରାତ୍ମନଃ । ୧୦ ।
ଦକ୍ଷିଣସ୍ୟ ସମୁଦ୍ରସ୍ୟ ତୀରେ ବସତି ଦକ୍ଷିଣେ ।
ତତ୍ର ସୀତା ମୟା ଦୃଷ୍ଟା ରାବଣାନ୍ତଃପୁରେ ସତୀ । ୧୧ ।
ତ୍ୱୟି ସଂନ୍ୟସ୍ୟ ଜୀବନ୍ତୀ ରାମା ରାମ ! ମନୋରଥମ୍ ।
ଦୃଷ୍ଟା ମେ ରାକ୍ଷସୀମଧ୍ୟେ ତର୍ଜ୍ୟମାଣା ମୁହୁର୍ମୁହୁଃ । ୧୨ ।
ରାକ୍ଷସୀଭିର୍ବିରୂପାଭୀ ରକ୍ଷିତା ପ୍ରମଦାବନେ ।
ଦୁଃଖମାପଦ୍ୟତେ ଦେବୀ ତ୍ୱୟା ବୀର ! ସୁଖୋଚିତା । ୧୩ ।

---

କଥା କହିବାକୁ ଉତ୍ସାହିତ କଲେ । ୭ । ବାକ୍ୟବିଶାରଦ ପବନନନ୍ଦନ ହନୁମାନ୍ ସେମାନଙ୍କ କଥା ଶୁଣି ଅବନତମସ୍ତକରେ ସୀତାଦେବୀଙ୍କ ଉଦ୍ଦେଶ୍ୟରେ ସେ ଯେଉଁ ଦକ୍ଷିଣ ଦିଗରେ ଥିଲେ, ସେହି ଦିଗ ଆଡ଼କୁ ମୁହଁ ପ୍ରଣାମକରି, ସୀତାଙ୍କୁ ଯେପରିଭାବରେ ଦେଖିଥିଲେ, ସେହି କଥା କହିଲେ । ହନୁମାନ୍ ନିଜ ତେଜରେ ଭାସମାନ ସ୍ୱର୍ଣ୍ଣନିର୍ମିତ ସେହି ଦିବ୍ୟମଣିକୁ ରାମଙ୍କୁ ପ୍ରଦାନକରି କରଯୋଡ଼ି କହିଲେ । "ମୁଁ ସୀତାଦେବୀଙ୍କୁ ଦେଖିବା ଅଭିଳାଷରେ ଶତଯୋଜନବିସ୍ତୃତ ସମୁଦ୍ର ଲଙ୍ଘନକରି, ତାହାଙ୍କୁ ଖୋଜି ଖୋଜି ଗମନ କରିବାକୁ ଲାଗିଲି । ଦକ୍ଷିଣ ସମୁଦ୍ରର ଦକ୍ଷିଣତୀରରେ ଦୁରାତ୍ମା ରାବଣର 'ଲଙ୍କା' ନାମକ ନଗରୀ ଅବସ୍ଥିତ । ମୁଁ ସେହିଠାରେ ରାବଣର ଅନ୍ତଃପୁର ମଧ୍ୟରେ ସତୀ ସୀତାଦେବୀଙ୍କୁ ଦେଖିଲି । ୭-୧୧। ହେ ରାମ ! ସେହି ରାମା ତୁମ୍ଭଠାରେ ଚିତ୍ତ ସନ୍ନିବେଶିତ କରି ପ୍ରାଣ ଧାରଣକରି ରହିଛନ୍ତି । ରାକ୍ଷସୀମାନେ ଚତୁର୍ଦିଗରେ ବେଷ୍ଟନକରି ତାଙ୍କୁ ବାରମ୍ବାର ତାଡ଼ନା କରୁଥିବାର ମୁଁ ଦେଖିଲି । ୧୨ । ହେ ବୀର ! ବିରୂପା ରାକ୍ଷସୀମାନେ ତାହାଙ୍କୁ ପ୍ରମଦାବନମଧ୍ୟରେ ଜଗି ରହିଛନ୍ତି । ସେହି ସତୀ ଚିରସୁଖାଭ୍ୟସ୍ତା ହୋଇ ମଧ୍ୟ ତୁମ୍ଭର ବିରହରେ ଅତି ଦୁଃଖଭାଗିନୀ ହୋଇଛନ୍ତି ।୧୩।

ରାବଣାନ୍ତଃପୁରେ ରୁଦ୍ଧା ରାକ୍ଷସୀଭିଃ ସୁରକ୍ଷିତା ।
ଏକବେଣୀଧରା ଦୀନା ତ୍ୱୟି ଚିନ୍ତାପରାୟଣା । ୧୪ ।
ଅଧଃଶଯ୍ୟାବିବର୍ଣାଙ୍ଗୀ ପଦ୍ମିନୀବ ହିମାଗମେ ।
ରାବଣାଦ୍‌ବିନିବୃତ୍ତାର୍ଥା ମର୍ତ୍ତବ୍ୟକୃତନିଶ୍ଚୟା । ୧୫ ।
ଦେବୀ କଥଂଚିତ୍‌କାକୁତ୍‌ସ୍ଥ ! ତ୍ୱନ୍ମନା ମାର୍ଗିତା ମୟା ।
ଇକ୍ଷ୍ୱାକୁବଂଶବିଖ୍ୟାତିଂ ଶନୈଃ କୀର୍ତ୍ତୟତାନଘ ! । ୧୬ ।
ସା ମୟା ନରଶାର୍ଦ୍ଦୂଳ ! ଶନୈର୍ବିଶ୍ୱାସିତା ତଦା ।
ତତଃ ସଂଭାଷିତା ଦେବୀ ସର୍ବମର୍ଥଂ ଚ ଦର୍ଶିତା । ୧୭ ।
ରାମସୁଗ୍ରୀବସଖ୍ୟଂ ଚ ଶ୍ରୁତ୍ୱା ହର୍ଷମୁପାଗତା ।
ନିୟତଃ ସମୁଦାଚାରୋ ଭକ୍ତିଶ୍ଚାସ୍ୟାଃ ସଦା ତ୍ୱୟି । ୧୮ ।
ଏବଂ ମୟା ମହାଭାଗ ! ଦୃଷ୍ଟା ଜନକନନ୍ଦିନୀ ।
ଉଗ୍ରେଣ ତପସା ଯୁକ୍ତା ତ୍ୱଦ୍‌ଭକ୍ତ୍ୟା ପୁରୁଷର୍ଷଭ ! । ୧୯ ।
ଅଭିଜ୍ଞାନଂ ଚ ମେ ଦତ୍ତଂ ଯଥାବୃତ୍ତଂ ତବାନ୍ତିକେ ।
ଚିତ୍ରକୂଟେ ମହାପ୍ରାଜ୍ଞ ! ବାୟସଂ ପ୍ରତି ରାଘବ ! । ୨୦ ।

---

ସେ ରାବଣର ଅନ୍ତଃପୁର ମଧ୍ୟରେ ଅବରୁଦ୍ଧ ଏବଂ ରାକ୍ଷସୀଗଣକର୍ତ୍ତୃକ ସୁରକ୍ଷିତ ହୋଇ ଏକବେଣୀ-ଧାରଣ ଏବଂ ଭୂମିରେ ଶୟନକରି ଦୁଃଖିତଭାବରେ ସର୍ବଦା ତୁମ୍ଭର ଚିନ୍ତାରେ ନିମଗ୍ନ ରହିଛନ୍ତି । ହିମଋତୁର ଆଗମନରେ ପଦ୍ମିନୀ ମଳିନ ହୋଇଗଲାପରି ତାଙ୍କର ଅଙ୍ଗ ବିବର୍ଣ୍ଣ ହୋଇଯାଇଛି । ରାବଣ ପ୍ରତି ତାଙ୍କର ଲେଶମାତ୍ର ପ୍ରବୃତ୍ତି ନାହିଁ ଏବଂ ସେ ମରିବା ପାଇଁ କୃତସଂକଳ୍ପ ହୋଇଛନ୍ତି ।୧୪-୧୫। ହେ ନିଷ୍ପାପ ନରଶ୍ରେଷ୍ଠ ! ମୁଁ ଏହିପରି ଅବସ୍ଥାରେ ଜାନକୀଙ୍କୁ କୌଣସିମତେ ଖୋଜି ଖୋଜି ଦେଖି, ଇକ୍ଷ୍ୱାକୁବଂଶର ସୁଖ୍ୟାତି ବିଷୟ କ୍ରମଶଃ ବର୍ଣ୍ଣନାକରି କରି ତାଙ୍କ ମନରେ ବିଶ୍ୱାସ ଜନ୍ମାଇଲି । ଅନନ୍ତର ସେହି ଦେବୀ ମୋ ସହିତ ସମ୍ଭାଷଣ କଲେ ଏବଂ ମୁଁ ତାଙ୍କୁ ସବୁ କଥା ଜଣାଇଲି । ୧୬-୧୭ । ରାମ ଓ ସୁଗ୍ରୀବଙ୍କ ମଧ୍ୟରେ ବନ୍ଧୁତା ସ୍ଥାପିତ ହୋଇଥିବା କଥା ଶୁଣି ସେ ପ୍ରୀତି ଲାଭକଲେ । ତୁମ୍ଭ ପ୍ରତି ତାହାଙ୍କର ସର୍ବଦା ଭକ୍ତି ରହିଛି ଏବଂ ତାହାଙ୍କର ସଦାଚାର ଅବିଚଳିତ ରହିଛି ।୧୮। ହେ ନରଶ୍ରେଷ୍ଠ ମହାଭାଗ ! ମୁଁ ଏହିପରି ଅବସ୍ଥାରେ ଜନକନନ୍ଦିନୀଙ୍କୁ ଦେଖିଛି । ସେ କଠୋର ତପଃଶାଳିନୀ ଏବଂ ତୁମ୍ଭ ପ୍ରତି ଭକ୍ତିମତୀ ହୋଇ ରହିଛନ୍ତି । ୧୯ । ହେ ମହାପ୍ରାଜ୍ଞ ରାଘବ ! ଜାନକୀ ମୋତେ ଏହି ଅଭିଜ୍ଞାନ ଦେଇ କହିଲେ ଯେ,

ବକ୍ତ୍ୱାପ୍ୟ ପୁନରପେ୍ୟଷ ରାମୋ ବାୟୁସୁତ ! ତ୍ୱୟା ।
ଅଖିଲେନ ଯଥାଦୃଷ୍ଟମିତି ମାମାହ ଜାନକୀ ।୨୧।
ଅୟଂ ଚାସ୍ମୈ ପ୍ରଦାତବ୍ୟୋ ଯତ୍ନାତ୍ସୁପରିରକ୍ଷିତଃ ।
ବ୍ରୁବତା ବଚନାନ୍ୟେବଂ ସୁଗ୍ରୀବସ୍ୟୋପଶୃଣ୍ୱତଃ । ୨୨ ।
ଏଷ ଚୂଡ଼ାମଣିଃ ଶ୍ରୀମାନ୍ମୟା ତେ ଯତ୍ନରକ୍ଷିତଃ ।
ମନଃଶିଲାୟାସ୍ତିଲକଂ ତତ୍ସ୍ମରସ୍ୱେତି ଚାବ୍ରବୀତ୍ । ୨୩।
ଏଷ ନିର୍ଯାତିତଃ ଶ୍ରୀମାନ୍ମୟା ତେ ବାରିସମ୍ଭବଃ ।
ଏନଂ ଦୃଷ୍ଟ୍ୱା ପ୍ରମୋଦିଷ୍ୟେ ବ୍ୟସନେ ତ୍ୱାମିବାନଘ ।। ୨୪ ।
ଜୀବିତଂ ଧାରୟିଷ୍ୟାମି ମାସଂ ଦଶରଥାତ୍ମଜ ! ।
ଊର୍ଦ୍ଧ୍ୱଂ ମାସାନ୍ନ ଜୀବେୟଂ ରକ୍ଷସାଂ ବଶମାଗତା ।୨୫ ।
ଇତି ମାମବ୍ରବୀତ୍ସୀତା କୃଶାଙ୍ଗୀ ଧର୍ମଚାରିଣୀ ।
ରାବଣାନ୍ତଃପୁରେ ରୁଦ୍ଧା ମୃଗୀବୋତ୍ଫୁଲ୍ଲଲୋଚନା । ୨୬ ।
ଏତଦେବ ମୟା ଖ୍ୟାତଂ ସର୍ବଂ ରାଘବ ! ଯଦ୍ୟଥା ।
ସର୍ବଥା ସାଗରଜଲେ ସନ୍ତାରଃ ପ୍ରବିଧୀୟତାମ୍ । ୨୭ ।

---

"ହେ ବାୟୁନନ୍ଦନ ! ଚିତ୍ରକୂଟରେ ବାୟସସମ୍ବନ୍ଧୀୟ ଯେ ଘଟଣା ଘଟିଥିଲା, ତାହା ରାଘବଙ୍କୁ ଜଣାଇ, ଏଠାରେ ଯାହା ଯାହା ଦେଖିଗଲ ତାହା କହିବ । ୨୦-୨୧ । ଅତି ଯତ୍ନରେ ରକ୍ଷିତ ଏହି ମଣି ତାହାଙ୍କୁ ଦେଇ, ସୁଗ୍ରୀବଙ୍କୁ ଶୁଣାଇ, ତାଙ୍କୁ ଏହି ସମସ୍ତ କଥା କହିବ । ୨୨ । ପୁଣି କହିବ ଯେ ତୁମ୍ଭର ଏହି ସୁନ୍ଦର ମଥାମଣିକୁ ମୁଁ ଯତ୍ନରେ ରଖିଅଛି । ତୁମ୍ଭେ ଯେଉଁ ମନଃଶିଳାର ତିଳକ ଆଙ୍କି ଦେଇଥିଲ, ତାହା ସ୍ମରଣକର । ଏହି ବାରିସମ୍ଭୂତ ମଣି ମୁଁ ତୁମ୍ଭ ନିକଟକୁ ପଠାଇଲି । ତାଙ୍କୁ କହିବ, ହେ ନିଷ୍ପାପ ! ଏଣିକ (ତୁମ୍ଭେ ପଠାଇଥିବା) ଏହି ଅଙ୍ଗୁଳୀୟକକୁ ଦେଖି ମୁଁ ବିପଦ ସମୟରେ ନିଜେ ତୁମ୍ଭଙ୍କୁ ଦେଖିଲାପରି ଆନନ୍ଦ ଅନୁଭବ କରିବି । ୨୩-୨୪ । ହେ ଦଶରଥନନ୍ଦନ ! ମୁଁ ଏକମାସ ପର୍ଯ୍ୟନ୍ତ ଜୀବନ ଧାରଣକରି ରହିବି । ରାକ୍ଷସମାନଙ୍କର ବଶୀଭୂତ ହୋଇ ଏପରି ଅବସ୍ଥାରେ ମୁଁ ମାସକରୁ ଅଧିକ କାଳ କଦାପି ଜୀବିତ ରହିବି ନାହିଁ ।' ୨୫ । ହରିଣୀସଦୃଶ ଉତ୍ଫୁଲ୍ଲଲୋଚନା, ରାବଣର ଅନ୍ତଃପୁର ମଧ୍ୟରେ ଅବରୁଦ୍ଧା ସେହି ଧର୍ମଚାରିଣୀ, କୃଶାଙ୍ଗୀ, ସୀତା ମୋତେ ଏହି କଥା କହିଥିଲେ । ୨୬ । ରାଘବ ! ମୁଁ ଏ ସମସ୍ତ କଥା ଯଥାଯଥଭାବରେ ତୁମ୍ଭଙ୍କୁ କହିଲି । ବର୍ତ୍ତମାନ ସମୁଦ୍ରଜଳକୁ ସନ୍ତରଣ କରିବା ଉପାୟ ସର୍ବଥା ବିଧାନକରନ୍ତୁ" । ୨୭ ।

ତୌ କାତାଶ୍ୱାସୌ ରାଜପୁତ୍ରୌ ବିଦିତ୍ୱା
ତଚ୍ଚାଭିଜ୍ଞାନଂ ରାଘବାୟ ପ୍ରଦାୟ ।
ଦେବ୍ୟା ଚାଖ୍ୟାତଂ ସର୍ବମେବାନୁପୂର୍ବ୍ୟାଦ୍-
ବାଚା ସଂପୂର୍ଣଂ ବାୟୁପୁତ୍ରଃ ଶଶଂସ । ୨୮ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍ ସଂହିତାୟାଂ ସୁନ୍ଦରକାଣ୍ଡେ ଚୂଡ଼ାମଣିପ୍ରଦାନଂ ନାମ ପଞ୍ଚଷଷ୍ଟିତମଃ ସର୍ଗଃ ।

---

# ଷଟ୍‌ଷଷ୍ଟିତମଃ ସର୍ଗଃ

## ସୀତାଭାଷିତପ୍ରଶ୍ନଃ

ଏବମୁକ୍ତୋ ହନୂମତା ରାମୋ ଦଶରଥାତ୍ମଜଃ ।
ତଂ ମଣିଂ ହୃଦୟେ କୃତ୍ୱା ରୁରୋଦ ସହଲକ୍ଷ୍ମଣଃ । ୧ ।
ତଂ ତୁ ଦୃଷ୍ଟ୍ୱା ମଣିଶ୍ରେଷ୍ଠଂ ରାଘବଃ ଶୋକକର୍ଶିତଃ ।
ନେତ୍ରାଭ୍ୟାମଶ୍ରୁପୂର୍ଣାଭ୍ୟାଂ ସୁଗ୍ରୀବମିଦମବ୍ରବୀତ୍ । ୨ ।

---

ରାଜକୁମାର ରାମ ଓ ଲକ୍ଷ୍ମଣ ଉଭୟେ ଆଶ୍ୱସ୍ତ ହୋଇଥିବାର ଜାଣି ବାୟୁପୁତ୍ର ହନୂମାନ୍ ରାମଙ୍କ ହସ୍ତରେ ସେହି ଅଭିଜ୍ଞାନ ପ୍ରଦାନକରି ଏହିପରିଭାବରେ ଜାନକୀଙ୍କ କଥା ଆମୂଳଚୂଳ ବର୍ଣ୍ଣନାକଲେ । ୨୮ ।

---

# ୬୬ତମ ସର୍ଗ

## ( ସୀତାଙ୍କ ଉକ୍ତିବିଷୟରେ ରାମଙ୍କର ପ୍ରଶ୍ନ )

ହନୁମାନ୍ ଏହିପରି କହିବାରୁ ଦଶରଥନନ୍ଦନ ରାମ ସେହି ମଣିକୁ ହୃଦୟରେ ଧାରଣକରି ଲକ୍ଷ୍ମଣଙ୍କ ସହିତ ରୋଦନ କରିବାକୁ ଲାଗିଲେ । ୧ । ରାମ ସେହି ଉତ୍କୃଷ୍ଟ ମଣିକୁ ଦେଖି ଶୋକାକୁଳ ହୋଇ ଅଶ୍ରୁପୂର୍ଣ୍ଣ ନୟନରେ ସୁଗ୍ରୀବଙ୍କୁ

ଯଥୈବ ଧେନୁଃ ସ୍ରବତି ସ୍ନେହାଦ୍ ବତ୍ସସ୍ୟ ବତ୍ସଲା ।
ତଥା ମମାପି ହୃଦୟଂ ମଣିଶ୍ରେଷ୍ଠସ୍ୟ ଦର୍ଶନାତ୍ । ୩ ।
ମଣିରତ୍ନମିଦଂ ଦତ୍ତଂ ବୈଦେହ୍ୟାଃ ଶ୍ୱଶୁରେଣ ମେ ।
ବଧୂକାଲେ ଯଥାବଦ୍ଧମଧିକଂ ମୂର୍ଦ୍ଧ୍ନି ଶୋଭତେ । ୪ ।
ଅୟଂ ହି ଜଲସଂଭୂତୋ ମଣିଃ ପ୍ରବରପୂଜିତଃ ।
ଯଜ୍ଞେ ପରମତୁଷ୍ଟେନ ଦତ୍ତଃ ଶକ୍ରେଣ ଧୀମତା । ୫ ।
ଇମଂ ଦୃଷ୍ଟ୍ୱା ମଣିଶ୍ରେଷ୍ଠଂ ତଥା ତାତସ୍ୟ ଦର୍ଶନମ୍ ।
ଅଦ୍ୟାସ୍ମ୍ୟବଗତଃ ସୌମ୍ୟ ! ବୈଦେହସ୍ୟ ତଥା ବିଭୋଃ । ୬ ।
ଅୟଂ ହି ଶୋଭତେ ତସ୍ୟାଃ ପ୍ରିୟାୟା ମୂର୍ଦ୍ଧ୍ନି ମେ ମଣିଃ ।
ଅଦ୍ୟାସ୍ୟ ଦର୍ଶନେନାହଂ ପ୍ରାପ୍ତାଂ ତାମିବ ଚିନ୍ତୟେ । ୭ ।
କିମାହ ସୀତା ବୈଦେହୀ ବ୍ରୂହି ସୌମ୍ୟ ! ପୁନଃ ପୁନଃ ।
ପରାସୁମିବ ତୋୟେନ ସିଞ୍ଚନ୍ତୀ ବାକ୍ୟବାରିଣା । ୮ ।
ଇତସ୍ତୁ କିଂ ଦୁଃଖତରଂ ଯଦିମଂ ବାରିସଂଭବମ୍ ।
ମଣିଂ ପଶ୍ୟାମି ସୌମିତ୍ରେ ! ବୈଦେହୀମାଗତଂ ବିନା । ୯ ।

---

କହିଲେ । ୨ । "ବତ୍ସକୁ ଦେଖି ସ୍ନେହବଶତଃ ବତ୍ସଳା ଧେନୁ ଯେପରି ଦୁଗ୍ଧ ସ୍ରାବକରାଏ, ସେହିପରି ଏହି ଶ୍ରେଷ୍ଠମଣିକୁ ଦେଖି ମୋର ହୃଦୟ ବିଗଳିତ ହେଉଅଛି ।୩। ମୋର ଶ୍ୱଶୁର ବିବାହ ସମୟରେ ବୈଦେହୀଙ୍କୁ ଏହି ମଣି ଦେଇଥିଲେ । ସେତେବେଳେ ଏହି ମଣି ଯଥାସ୍ଥାନରେ ଖଚିତ ହୋଇ ତାଙ୍କ ମସ୍ତକରେ ଅଧିକ ଶୋଭା ପାଉଥିଲା । ୪ । ଧୀମାନ୍ ଇନ୍ଦ୍ର ଯଜ୍ଞରେ ସନ୍ତୁଷ୍ଟ ହୋଇ ସମୁଦ୍ରସଂଭୂତ ଦେବପୂଜିତ ଏହି ମଣିକୁ (ଜନକଙ୍କୁ) ଦେଇଥିଲେ ।୫। ହେ ସୌମ୍ୟ ! ଆଜି ଏହି ମଣିକୁ ଦେଖି ମୋର ପିତା ତଥା ବିଦେହରାଜ ପ୍ରଭୁ ଜନକଙ୍କୁ ସାକ୍ଷାତ୍ ଦେଖିଲାପରି ମୋର ମନେହେଉଛି । ୬ । ଏହି ମଣି ମୋର ସେହି ପ୍ରିୟାଙ୍କର ମସ୍ତକରେ ଶୋଭା ପାଉଥିଲା; ଆଜି ଏହାକୁ ଦେଖି ମୁଁ ତାହାଙ୍କୁ ପାଇଲାପରି ମନେକରୁଅଛି । ୭ । ହେ ସୌମ୍ୟ ! ବିଦେହନନ୍ଦିନୀ ସୀତା କ'ଣ କହିଥିଲେ ତାହା ମୋତେ ବାରମ୍ବାର କହ । ମୂର୍ଚ୍ଛିତ ବ୍ୟକ୍ତିକୁ ଜଳସେଚନ କଲାପରି ସେ ମୋତେ ବାକ୍ୟବାରିଦ୍ୱାରା ଅଭିଷେଚିତ କରିଛନ୍ତି । ୮ । ସୌମିତ୍ରେ ! ମୋତେ ଯେତେବେଳେ ଜାନକୀଙ୍କ ବ୍ୟତୀତ କେବଳ ଏହି ସମୁଦ୍ରସମ୍ଭବ ମଣି ଦେଖିବାକୁ ପଡ଼ିଲା, ସେତେବେଳେ ଏହାଠାରୁ ଆଉ ଅଧିକ ଦୁଃଖଜନକ ବିଷୟ କ'ଣ ହୋଇପାରେ ? । ୯ । ବୀର ! ଜାନକୀ ଯଦି ଆଉ ଏକ

ଚିରଂ ଜୀବତି ବୈଦେହୀ ଯଦି ମାସଂ ଧରିଷ୍ୟତି ।
କ୍ଷଣଂ ବୀର ! ନ ଜୀବେୟଂ ବିନା ତାମସିତେକ୍ଷଣାମ୍ । ୧୦ ।
ନୟ ମାମପି ତଂ ଦେଶଂ ଯତ୍ର ଦୃଷ୍ଟା ମମ ପ୍ରିୟା ।
ନ ତିଷ୍ଠେୟଂ କ୍ଷଣମପି ପ୍ରବୃତ୍ତିମୁପଲଭ୍ୟ ଚ । ୧୧ ।
କଥଂ ସା ମମ ସୁଶ୍ରୋଣୀ ଭୀରୁଭୀରୁଃ ସତୀ ତଦା ।
ଭୟାବହାନାଂ ଘୋରାଣାଂ ମଧ୍ୟେ ତିଷ୍ଠତି ରକ୍ଷସାମ୍ । ୧୨ ।
ଶାରଦସ୍ତିମିରୋନ୍ମୁକ୍ତୋ ନୂନଂ ଚନ୍ଦ୍ର ଇବାମ୍ବୁଦୈଃ ।
ଆବୃତୋ ବଦନଂ ତସ୍ୟା ନ ବିରାଜତି ସାଂପ୍ରତମ୍ । ୧୩ ।
କିମାହ ସୀତା ହନୁମଂସ୍ତତ୍ତ୍ୱତଃ କଥୟସ୍ୱ ମେ ।
ଏତେନ ଖଲୁ ଜୀବିଷ୍ୟେ ଭେଷଜେନାତୁରୋ ଯଥା । ୧୪ ।
ମଧୁରା ମଧୁରାଲାପା କିମାହ ମମ ଭାମିନୀ ।
ମଦ୍ୱିହୀନା ବରାରୋହା ହନୂମନ୍ ! କଥୟସ୍ୱ ମେ ।
ଦୁଃଖାଦ୍ ଦୁଃଖତରଂ ପ୍ରାପ୍ୟ କଥଂ ଜୀବତି ଜାନକୀ । ୧୫ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାମ୍
ସଂହିତାୟାଂ ସୁନ୍ଦରକାଣ୍ଡେ ସୀତାଭାଷିତ ପ୍ରଶ୍ନୋ ନାମ ଷଟ୍ଷଷ୍ଟିତମଃ ସର୍ଗଃ ।

---

ମାସକାଳ ଜୀବିତ ରହନ୍ତି, ତାହାହେଲେ ସେ ଖୁବ୍ ଦୀର୍ଘକାଳ ବଞ୍ଚିଲେ ବୋଲି ବୁଝିବାକୁ ହେବ; କିନ୍ତୁ ମୁଁ ସେହି କୃଷ୍ଣଲୋଚନାଙ୍କ ବିରହରେ ମୁହୂର୍ତ୍ତେ ମାତ୍ର ବଞ୍ଚିବି ନାହିଁ ।୧୦ (ହେ ହନୁମନ୍! ) ତୁମ୍ଭେ ଯେଉଁଠାରେ ମୋର ପ୍ରିୟାଙ୍କୁ ଦେଖିଆସିଛ, ସେହି ସ୍ଥାନକୁ ମୋତେ ନେଇଯାଅ । ମୁଁ ତାଙ୍କର ସମ୍ବାଦ ପାଇବା ପରେ ଆଉ କ୍ଷଣେମାତ୍ର ରହିପାରିବି ନାହିଁ । ୧୧ । ମୋର ସେହି ସତୀ, ଗୁରୁନିତମ୍ବିନୀ, ଅତ୍ୟନ୍ତ ଭୀରୁସ୍ୱଭାବା, ସୀତା ନିଷ୍ଠୁର ଭୟାବହ ରାକ୍ଷସମାନଙ୍କ ମଧ୍ୟରେ କିପରି ରହି ଅଛନ୍ତି ? ।୧୨ । ଅନ୍ଧକାରମୁକ୍ତ ଶରଚ୍ଚନ୍ଦ୍ର ମେଘାବୃତ ହୋଇ ଯେପରି ପ୍ରକାଶପାଏ ନାହିଁ, ସେହିପରି ରାକ୍ଷସୀମାନଙ୍କଦ୍ୱାରା ପରିବେଷ୍ଟିତ ହୋଇ ସୀତାଙ୍କର ମୁଖମଣ୍ଡଳ ଏବେ ଶୋଭା ପାଉ-ନ ଥିବ । ୧୩ । ହନୂମନ୍ ! ସୀତା କଅଣ କହିଛନ୍ତି, ତୁମ୍ଭେ ତାହା ମୋ ନିକଟରେ ଯଥାର୍ଥଭାବରେ ବର୍ଣ୍ଣନାକର । ପୀଡ଼ିତ ବ୍ୟକ୍ତି ଯେପରି ଔଷଧଦ୍ୱାରା ଜୀବନ ଲାଭ-କରେ, ମୁଁ ସେହିପରି ତାହା ଶ୍ରବଣକରି ଜୀବନଲାଭ କରିବି । ୧୪ । ହନୁମନ୍ ! ମଧୁରସ୍ୱଭାବା, ମଧୁରଭାଷିଣୀ, ମୋର ସେହି ଗୁରୁନିତମ୍ବିନୀ, ଭାମିନୀ, ମୋର ବିରହରରେ ଦୁଃଖିତ ହୋଇ କ'ଣ କହିଛନ୍ତି ଏବଂ ସେହି ଜାନକୀ ଉତ୍ତରୋତ୍ତର ଅସହ୍ୟ ଦୁଃଖ ଭୋଗକରି କିପରି ଜୀବିତ ରହିଛନ୍ତି, ତାହା ବର୍ଣ୍ଣନାକର" । ୧୫ ।

# ସପ୍ତଷଷ୍ଟିତମଃ ସର୍ଗଃ

## ସୀତାଭୂଷିତାନୁବଚନମ୍

ଏବମୁକ୍ତସ୍ତୁ ହନୁମାନ୍ରାଘବେଣ ମହାତ୍ମନା ।
ସୀତାୟା ଭାଷିତଂ ସର୍ବଂ ନ୍ୟବେଦୟତ ରାଘବେ । ୧ ।
ଇଦମୁକ୍ତବତୀ ଦେବୀ ଜାନକୀ ପୁରୁଷର୍ଷଭ !
ପୂର୍ବବୃତ୍ତମଭିଜ୍ଞାନଂ ଚିତ୍ରକୂଟେ ଯଥାତଥମ୍ । ୨ ।
ସୁଖସୁପ୍ତା ତ୍ୱୟା ସାର୍ଧଂ ଜାନକୀ ପୂର୍ବମୁତ୍ଥିତା ।
ବାୟସଃ ସହସୋତ୍ପତ୍ୟ ବଦଦାର ସ୍ତନାନ୍ତରମ୍ । ୩ ।
ପର୍ଯ୍ୟାୟେଣ ଚ ସୁପ୍ତସ୍ତ୍ୱଂ ଦେବ୍ୟଙ୍କେ ଭରତାଗ୍ରଜ !
ପୁନଶ୍ଚ କିଲ ପକ୍ଷୀ ସ ଦେବ୍ୟା ଜନୟତି ବ୍ୟଥାମ୍ । ୪ ।
ତତଃ ପୁନରୁପାଗମ୍ୟ ବଦଦାର ଭୃଶଂ କିଲ ।
ତତସ୍ତ୍ୱଂ ବୋଧିତସ୍ତସ୍ୟାଃ ଶୋଣିତେନ ସମୁକ୍ଷିତଃ । ୫ ।

---

## ୬୭ତମ ସର୍ଗ

( ହନୁମାନ୍ କର୍ତ୍ତୃକ ସୀତାଙ୍କ ଉକ୍ତିର ବର୍ଣ୍ଣନା )

ମହାତ୍ମା ରାଘବ ଏହିପରି କହିବାଉତ୍ତାରୁ ହନୁମାନ୍ ସୀତା କହିଥିବା ସମସ୍ତ କଥା ତାହାଙ୍କ ନିକଟରେ ବର୍ଣ୍ଣନାକରି କହିଲେ । ୧ । "ହେ ପୁରୁଷଶ୍ରେଷ୍ଠ ! ପୂର୍ବେ ଚିତ୍ରକୂଟଠାରେ ଯେ ଘଟଣା ଘଟିଥିଲା, ଦେବୀ ଜାନକୀ ଅଭିଜ୍ଞାନସ୍ୱରୂପ ତାହା ଯଥାଯଥଭାବରେ ବର୍ଣ୍ଣନାକରି କହିଥିଲେ । ୨ । ଦିନେ ଜାନକୀ ତୁମ୍ଭ ସହିତ ସୁଖରେ ନିଦ୍ରିତ ହୋଇ ତୁମ୍ଭ ପୂର୍ବରୁ ଉଠିପଡ଼ିଥିଲେ । ସେତେବେଳେ ସହସା ଗୋଟିଏ ବାୟସ ଉଡ଼ିଆସି ତାଙ୍କର ସ୍ତନଦ୍ୱୟର ମଧ୍ୟଭାଗକୁ କ୍ଷତକରି ଦେଇଥିଲା ! ୩ । ହେ ଭରତାଗ୍ରଜ ! ତୁମ୍ଭେ ଦେବୀଙ୍କ କୋଳରେ ପର୍ଯ୍ୟାୟକ୍ରମରେ ଶୋଇ-ରହିଥିଲ; ପୁନର୍ବାର ସେହି ପକ୍ଷୀ ଦେବୀଙ୍କୁ କ୍ଷତକରି ବ୍ୟଥା ଜାତକରାଇଲା । ୪ । ଅନନ୍ତର ସେ ଥରକୁ ଥର ଆସି ଦେବୀଙ୍କ ଶରୀରକୁ ଅତିଶୟ କ୍ଷତବିକ୍ଷତ କରିବାକୁ ଲାଗିଲା । ତାହାପରେ ତାହାଙ୍କର ରକ୍ତ ତୁମ୍ଭ ଦେହରେ ପଡ଼ିବାରୁ ତୁମ୍ଭେ ଜାଗରିତ ହେଲ । ୫ । ହେ ପରନ୍ତପ ! ତୁମ୍ଭେ ସୁଖରେ ଶୋଇଥିଲ । କାକ ବାରମ୍ବାର ଆସି

**ବାୟସେନ ଚ ତେନୈବଂ ସତତଂ ବାଧମାନୟା ।**
**ବୋଧିତଃ କିଲ ଦେବ୍ୟା ତ୍ୱଂ ସୁଖସୁପ୍ତଃ ପରଂତପ ! । ୬ ।**
**ତାଂ ଚ ଦୃଷ୍ଟ୍ୱା ମହାବାହୋ ! ଦାରିତାଂ ଚ ସ୍ତନାନ୍ତରେ ।**
**ଆଶୀବିଷ ଇବ କ୍ରୁଦ୍ଧସ୍ତତୋ ବାକ୍ୟଂ ତ୍ୱମୂଚିବାନ୍ । ୭ ।**
**ନଖାଗ୍ରୈଃ କେନ ତେ ଭୀରୁ ! ଦାରିତଂ ବୈ ସ୍ତନାନ୍ତରମ୍ ।**
**କଃ କ୍ରୀଡ଼ତି ସରୋଷେଣ ପଞ୍ଚବକ୍ତ୍ରେଣ ଭୋଗିନା । ୮ ।**
**ନିରୀକ୍ଷମାଣଃ ସହସା ବାୟସଂ ସମୁଦୈକ୍ଷଥାଃ ।**
**ନଖୈଃ ସରୁଧିରୈସ୍ତୀକ୍ଷ୍ଣୈସ୍ତାମେବାଭିମୁଖଂ ସ୍ଥିତମ୍ । ୯ ।**
**ସୁତଃ କିଲ ସ ଶକ୍ରସ୍ୟ ବାୟସଃ ପତତାଂ ବରଃ ।**
**ଧରାନ୍ତରଗତଃ ଶୀଘ୍ରଂ ପବନସ୍ୟ ଗତୌ ସମଃ । ୧୦ ।**
**ତତସ୍ତସ୍ମିନ୍ମହାବାହୋ ! କୋପସଂବର୍ତ୍ତିତେକ୍ଷଣଃ ।**
**ବାୟସେ ତ୍ୱଂ ବ୍ୟଧାଃ କ୍ରୂରାଂ ମତିଂ ମତିମତାଂ ବର ! । ୧୧ ।**
**ସ ଦର୍ଭଂ ସଂସ୍ତରାଦ୍‌ଗୃହ୍ୟ ବ୍ରହ୍ମାସ୍ତ୍ରେଣ ନ୍ୟଯୋଜୟଃ ।**
**ସ ଦୀପ୍ତ ଇବ କାଲାଗ୍ନିର୍ଜଜ୍ୱାଲାଭିମୁଖଂ ଖଗମ୍ । ୧୨ ।**
**ସ ତ୍ୱଂ ପ୍ରଦୀପ୍ତଂ ଚିକ୍ଷେପ ଦର୍ଭଂ ତଂ ବାୟସଂ ପ୍ରତି ।**
**ତତସ୍ତୁ ବାୟସଂ ଦୀପ୍ତଃ ସ ଦର୍ଭୋଽନୁଜଗାମ ହ । ୧୩ ।**

---

ତାଙ୍କୁ ବ୍ୟତିବ୍ୟସ୍ତ କରିବାରୁ ଦେବୀ ତୁମ୍ଭର ନିଦ୍ରାଭଙ୍ଗ କରାଇଲେ । ୬ । ହେ ମହାବାହୋ ! ତାଙ୍କର ସ୍ତନମଧ୍ୟସ୍ଥଳ ବିଦୀର୍ଣ୍ଣ ହୋଇଥିବାର ଦେଖି, ତୁମ୍ଭେ ବିଷାକ୍ତ ସର୍ପସଦୃଶ କ୍ରୁଦ୍ଧ ହୋଇ କହିଥିଲ । ୭ । "ଭୀରୁ ! ନଖାଗ୍ରଦ୍ୱାରା କିଏ ତୁମ୍ଭର ସ୍ତନ-ଯୁଗଳର ମଧ୍ୟସ୍ଥଳ ବିଦାରଣ କରିଅଛି ? କ୍ରୁଦ୍ଧ ପଞ୍ଚମୁଖ ସର୍ପ ସହିତ କିଏ କ୍ରୀଡ଼ା କରୁଅଛି ? ୮ । ତୁମ୍ଭେ ଏଣିକି ତେଣିକି ଚାହିଁ ହଠାତ୍ ରୁଧିରଯୁକ୍ତ ତୀକ୍ଷ୍ଣନଖବିଶିଷ୍ଟ ବାୟସକୁ ଦେବୀଙ୍କ ଆଡ଼କୁ ଚାହିଁ ରହିଥିବାର ଦେଖିଲ ।୯। ସେହି ପକ୍ଷିଶ୍ରେଷ୍ଠ ବାୟସ ଇନ୍ଦ୍ରଙ୍କ ପୁତ୍ର (ଜୟନ୍ତ) ଅଟେ । ସେ ଗତିରେ ପବନତୁଲ୍ୟ ବେଗଶାଳୀ ହୋଇ ଶୀଘ୍ର ପାତାଳ ମଧ୍ୟରେ ପ୍ରବେଶ କରିଗଲା । ୧୦ । ହେ ବୁଦ୍ଧିମତ୍‌ଶ୍ରେଷ୍ଠ ମହାବାହୋ ! ସେତେବେଳେ କ୍ରୋଧରେ ତୁମ୍ଭର ଚକ୍ଷୁ ବିବର୍ତ୍ତିତ ହେବାକୁ ଲାଗିଲା ଏବଂ ସେହି ବାୟସକୁ ହତ୍ୟାକରିବା ପାଇଁ ତୁମ୍ଭେ ନିଷ୍ଠୁରଭାବ ଧାରଣକଲ । ୧୧ । ତୁମ୍ଭେ କୁଶାସନରୁ ଗୋଟିଏ କୁଶ ନେଇ ବ୍ରହ୍ମାସ୍ତ୍ରରେ ସଂଯୋଜିତ କଲ । ସେହି କୁଶ ପ୍ରଳୟାଗ୍ନି ସଦୃଶ ବାୟସ ଆଡ଼କୁ ମୁଖକରି ପ୍ରଜ୍ୱଳିତ ହେବାକୁ ଲାଗିଲା । ୧୨ । ଅନନ୍ତର ତୁମ୍ଭେ ସେହି ପ୍ରଦୀପ୍ତ କୁଶକୁ ସେହି ବାୟସ ପ୍ରତି ନିକ୍ଷେପକଲ ଏବଂ ସେହି

ତ୍ରୀନ୍ ଲୋକାନ୍ ସଂପରିକ୍ରମ୍ୟ ତ୍ରାତାରଂ ନାଧିଗଚ୍ଛତ । ୧୪ ।
ପୁନରପ୍ୟାଗତସ୍ତ୍ରସ୍ତ ତ୍ୱତ୍ସକାଶମରିନ୍ଦମ !
ତ୍ୱଂ ତଂ ନିପତିତଂ ଭୂମୌ ଶରଣ୍ୟଃ ଶରଣାଗତମ୍ । ୧୫ ।
ବଧାର୍ହମପି କାକୁତ୍ସ୍ଥ କୃପୟା ପର୍ଯ୍ୟପାଲୟଃ ।
ମୋଘମସ୍ତ୍ରଂ ନ ଶକ୍ୟଂ ତୁ କର୍ତୁମିତ୍ୟେବ ରାଘବ ! । ୧୬ ।
ତତସ୍ତସ୍ୟାକ୍ଷି କାକସ୍ୟ ହିନସ୍ତି ସ୍ମ ସଦକ୍ଷିଣମ୍ ।
ବାୟସସ୍ତ୍ୱାଂ ନମସ୍କୃତ୍ୟ ରାଜ୍ଞୋ ଦଶରଥସ୍ୟ ଚ । ୧୭ ।
ବିସୃଷ୍ଟସ୍ତୁ ତଦା କାକଃ ପ୍ରତିପେଦେ ସ୍ୱମାଳୟମ୍ ।
ଏବମସ୍ତ୍ରବିଦାଂ ଶ୍ରେଷ୍ଠଃ ସତ୍ତ୍ୱବାଞ୍ଛୀଲବାନପି । ୧୮ ।
କିମର୍ଥମସ୍ତ୍ରଂ ରକ୍ଷଃସୁ ନ ଯୋଜୟସି ରାଘବ !
ନ ଦାନବା ନ ଗନ୍ଧର୍ବା ନାସୁରା ନ ମରୁଦ୍‌ଗଣାଃ । ୧୯ ।
ତବ ରାମ ! ରଣେ ଶକ୍ତାସ୍ତଥା ପ୍ରତିସମାସିତୁମ୍ ।
ତବ ବୀର୍ଯ୍ୟବତଃ କଚ୍ଚିନ୍ମୟି ଯଦ୍ୟସ୍ତି ସଂଭ୍ରମଃ । ୨୦ ।

---

ପ୍ରଜ୍ୱଳିତ କୁଶ ସେହି ବାୟସର ପଛେ ପଛେ ଧାବିତ ହେଲା । ୧୩ । ଦେବତାମାନେ ସେତେବେଳେ ଖିନ୍ନ ହୋଇ ସମସ୍ତେ ତାକୁ ପରିତ୍ୟାଗ କଲେ । ସେ ତିନିଲୋକଯାକ ବୁଲି ବୁଲି କୌଣସିଠାରେ କାହାରିକୁ ତ୍ରାଣକର୍ତ୍ତା ରୂପେ ପାଇଲା ନାହିଁ । ୧୪ । ହେ ଅରିନ୍ଦମ ! ସେତେବେଳେ ସେ ପୁଣି ତୁମ୍ଭ ନିକଟରେ ଆସି ଉପସ୍ଥିତ ହେଲା । ହେ ଶରଣରକ୍ଷକ କାକୁତ୍ସ୍ଥ ! ସେ ଶରଣାଗତ ହୋଇ ଭୂତଳରେ ପତିତ ହେବାର ଦେଖି ସେ ବଧାର୍ହ ହେଲେ ମଧ୍ୟ ତୁମ୍ଭେ କୃପାକରି ତା'ର ଜୀବନ ରକ୍ଷାକଲ । ହେ ରାଘବ ! କେବଳ ତୁମ୍ଭର ଶର କଦାପି ବ୍ୟର୍ଥ ହେବ ନାହିଁ, ଏଇଥିଲାଗି ତୁମ୍ଭେ ତାହାର ଦକ୍ଷିଣ ଚକ୍ଷୁ ନଷ୍ଟ କରିଥିଲ । ହେ ରାମ ! ସେତେବେଳେ ସେ ବାୟସ ତୁମ୍ଭଙ୍କୁ ଓ ରାଜା ଦଶରଥଙ୍କ ଉଦ୍ଦେଶ୍ୟରେ ପ୍ରଣାମକରି ତୁମ୍ଭଠାରୁ ବିଦାୟ ନେଇ ନିଜ ଘରକୁ ଯାଇଥିଲା । ଏତାଦୃଶ ଅସ୍ତ୍ରଜ୍ଞମାନଙ୍କ ମଧ୍ୟରେ ଶ୍ରେଷ୍ଠ, ଶୌର୍ଯ୍ୟ ଓ ସଚ୍ଚରିତ୍ର-ସମ୍ପନ୍ନ ହେ ରାଘବ ! ତୁମ୍ଭେ କାହିଁକି ଏବେ ରାକ୍ଷସମାନଙ୍କ ପ୍ରତି ଅସ୍ତ୍ର ପ୍ରୟୋଗ କରୁ ନାହଁ ? ହେ ରାମ ! କି ଦାନବ, କି ଗନ୍ଧର୍ବ, କି ଦେବ, କି ମରୁଦ୍‌ଗଣ କେହି ଯୁଦ୍ଧରେ ତୁମ୍ଭର ପ୍ରତିଦ୍ୱନ୍ଦୀ ହୋଇ ପାରିବେ ନାହିଁ । ହେ ବୀର୍ଯ୍ୟବନ୍ ! ତୁମ୍ଭର ମୋ

କ୍ଷିପ୍ରଂ ସୁନିଶ୍ଚିତୈର୍ବାଣୈର୍ହନ୍ୟତାଂ ଯୁଧି ରାବଣଃ ।
ଭ୍ରାତୁରାଦେଶମାଜ୍ଞାୟ ଲକ୍ଷ୍ମଣୋ ବା ପରନ୍ତପଃ । ୨୧ ।
ସ କିମର୍ଥଂ ନରବରୋ ନ ମାଂ ରକ୍ଷତି ରାଘବଃ ।
ଶକ୍ତୌ ତୌ ପୁରୁଷବ୍ୟାଘ୍ରୌ ବାୟ୍ୱଗ୍ନିସମତେଜସୌ । ୨୨ ।
ସୁରାଣାମପି ଦୁର୍ଧର୍ଷୌ କିମର୍ଥଂ ମାମୁପେକ୍ଷତଃ ।
ମମୈବ ଦୁଷ୍କୃତଂ କିଂଚିନ୍ମହଦସ୍ତି ନ ସଂଶୟଃ । ୨୩ ।
ସମର୍ଥୌ ସହିତୌ ଯନ୍ମାଂ ନ ରକ୍ଷେତେ ପରନ୍ତପୌ ।
ବୈଦେହ୍ୟା ବଚନଂ ଶ୍ରୁତ୍ୱା କରୁଣଂ ସାଧୁଭାଷିତମ୍ । ୨୪ ।
ପୁନରପ୍ୟହମାର୍ଯାଂ ତାମିଦଂ ବଚନମବ୍ରୁବମ୍ ।
ତ୍ୱଚ୍ଛୋକବିମୁଖୋ ରାମୋ ଦେବି ! ସତ୍ୟେନ ତେ ଶପେ ।୨୫।
ରାମେ ଦୁଃଖାଭିଭୂତେ ଚ ଲକ୍ଷ୍ମଣଃ ପରିତପ୍ୟତେ ।
କଥଂଚିଦ୍ଭବତୀ ଦୃଷ୍ଟା ନ କାଲଃ ପରିଶୋଚିତୁମ୍ । ୨୬ ।
ଇଦଂ ମୁହୂର୍ତ୍ତଂ ଦୁଃଖାନାମନ୍ତଂ ଦ୍ରକ୍ଷ୍ୟସି ଭାମିନି !
ତାବୁଭୌ ନରଶାର୍ଦୂଲୌ ରାଜପୁତ୍ରୌ ପରନ୍ତପୌ । ୨୭ ।

---

ପ୍ରିୟ ସଦି ଟିକିଏ ହେଲେ ଆଦର ଥାଏ, ତେବେ ଅତି ସତ୍ୱର ସୁତୀକ୍ଷ୍ଣ ଶରସମୂହ-ଦ୍ୱାରା ଯୁଦ୍ଧରେ ରାବଣକୁ ହତ୍ୟାକର । ଭ୍ରାତାଙ୍କର ଆଦେଶ ଲାଭକରି ଶତ୍ରୁସୂଦନ, ରଘୁନନ୍ଦନ, ନରଶ୍ରେଷ୍ଠ ଲକ୍ଷ୍ମଣ ବା କାହିଁକି ମୋତେ ଉଦ୍ଧାର କରୁ ନାହାନ୍ତି ? ସେହି ଦୁଇ ପୁରୁଷଶ୍ରେଷ୍ଠ ବାୟୁ ଓ ଅଗ୍ନିଙ୍କ ସଦୃଶ ତେଜସ୍ୱୀ ଏବଂ ଦେବତା-ମାନଙ୍କର ଅଜେୟ ଅଟନ୍ତି । ତେବେ ସେ ଦୁହେଁ କାହିଁକି ମୋତେ ଉପେକ୍ଷା କରୁଛନ୍ତି ? ସେହି ପରନ୍ତପ ରାମ ଓ ଲକ୍ଷ୍ମଣ ସମର୍ଥ ହୋଇ ମଧ୍ୟ ଯେତେବେଳେ ମୋତେ ରକ୍ଷା କରୁ ନାହାନ୍ତି, ସେତେବେଳେ ମୋର ହିଁ କୌଣସି ମହାପାପ ଅଛି, ଏଥିରେ ସନ୍ଦେହ ନାହିଁ ।' ଆର୍ଯ୍ୟା ଜନକାଙ୍କର ଏହି ସୁଭାଷିତ ବିଳାପବାକ୍ୟ ଶ୍ରବଣକରି ମୁଁ ତାଙ୍କୁ ପୁଣି ଏହି କଥା କହିଲି । 'ହେ ଦେବି ! ମୁଁ ତୁମ୍ଭ ନିକଟରେ ସତ୍ୟଦ୍ୱାରା ଶପଥକରି କହୁଅଛି, ତୁମ୍ଭର ଶୋକରେ ରାମ ସବୁ କାର୍ଯ୍ୟରେ ବିମୁଖ ହୋଇପଡ଼ିଛନ୍ତି । ୧୫-୨୫। ରାମ ଦୁଃଖରେ କାତର ହୋଇ ପଡ଼ିବାରୁ ଲକ୍ଷ୍ମଣ ମଧ୍ୟ ପରିତାପ କରୁଛନ୍ତି । ଯେତେବେଳେ ବହୁକଷ୍ଟରେ ମୁଁ ତୁମ୍ଭଙ୍କୁ ଦେଖିପାରିଲିଣି, ସେତେବେଳେ ଏହା ଆଉ ଶୋକ କରିବାର ସମୟ ନୁହେଁ । ୨୬ । ହେ ଭାମିନି ! ତୁମ୍ଭେ ଏହି ମୁହୂର୍ତ୍ତଠାରୁ ଦୁଃଖର ଅବସାନ ଦେଖିପାରିବ । ସେହି ଦୁଇ ନରସିଂହ,

ତ୍ୱଦ୍ଦର୍ଶନକୃତୋତ୍ସାହୌ ଲଙ୍କାଂ ଭସ୍ମୀକରିଷ୍ୟତଃ ।
ହତ୍ୱା ଚ ସମରେ ରୌଦ୍ରଂ ରାବଣଂ ସହବାନ୍ଧବମ୍ । ୨୮ ।
ରାଘବସ୍ତ୍ୱାଂ ବରାରୋହେ ! ସ୍ୱ ପୁରୀଂ ନୟିତା ଧ୍ରୁବମ୍ ।
ଯତ୍ତୁ ରାମୋ ବିଜାନୀୟାଦଭିଜ୍ଞାନମନିନ୍ଦିତେ ! । ୨୯ ।
ପ୍ରୀତିସଂଜନନଂ ତସ୍ୟ ପ୍ରଦାତୁଂ ତତ୍ତ୍ୱମର୍ହସି ।
ସାଭିବୀକ୍ଷ୍ୟ ଦିଶଃ ସର୍ବାଃ ବେଣ୍ୟୁଦ୍‌ଗ୍ରଥନମୁତ୍ତମମ୍ । ୩୦ ।
ମୁକ୍ତ୍ୱା ବସ୍ତ୍ରାଦ୍ଦଦୌ ମହ୍ୟଂ ମଣିମେତଂ ମହାବଳ ! ।
ପ୍ରତିଗୃହ୍ୟ ମଣିଂ ଦୋର୍ଭ୍ୟାଂ ତବ ହେତୋ ରଘୁପ୍ରିୟ ! । ୩୧ ।
ଶିରସା ସଂପ୍ରଣମ୍ୟ ତାମହମାଗମନେ ତ୍ୱରେ ।
ଗମନେ ଚ କୃତୋତ୍ସାହମବେକ୍ଷ୍ୟ ବରବର୍ଣ୍ଣିନୀ । ୩୨ ।
ବିବର୍ଦ୍ଧମାନଂ ଚ ହି ମାମୁବାଚ ଜନକାତ୍ମଜା ।
ଅଶ୍ରୁପୂର୍ଣ୍ଣମୁଖୀ ଦୀନା ବାଷ୍ପଗଦ୍‌ଗଦଭାଷିଣୀ । ୩୩ ।
ମମୋତ୍ପତନସଂଭ୍ରାନ୍ତା ଶୋକବେଗସମାହତା ।
ମାମୁବାଚ ତତଃ ସୀତା ସଭାଗ୍ୟୋଽସି ମହାକପେ ! । ୩୪ ।

---

ଶତ୍ରୁସୂଦନ, ରାଜପୁତ୍ର ତୁମ୍ଭର ଦର୍ଶନଲାଭ ନିମନ୍ତେ ଉତ୍ସାହିତ ହୋଇ ଲଙ୍କାକୁ ଭସ୍ମସାତ୍ କରିବେ । ହେ ବରାରୋହେ ! ରାମ ଯୁଦ୍ଧରେ ରୁଦ୍ରସ୍ୱଭାବ ରାବଣକୁ ସବାନ୍ଧବରେ ହତ୍ୟାକରି ତୁମ୍ଭଙ୍କୁ ନିଜ ନଗରୀକୁ ନିଶ୍ଚୟ ନେଇଯିବେ । ହେ ଅନିନ୍ଦିତେ ! ରାମ ଯାହା ଚିହ୍ନିପାରିବେ ଏବଂ ଯହିଁରେ ତାଙ୍କ ମନରେ ବିଶେଷ ପ୍ରୀତି ଜାତ ହେବ, ସେହିପରି କୌଣସି ଅଭିଜ୍ଞାନ ତୁମେ ମୋତେ ପ୍ରଦାନକର ।' ହେ ମହାବଳ ! ସେତେବେଳେ ସେ ସବୁ ଦିଗକୁ ନିରୀକ୍ଷଣକରି ବେଣୀରେ ବାନ୍ଧାହେବାର ଯୋଗ୍ୟ ଉତ୍କୃଷ୍ଟ ମଥାମଣି ବସ୍ତ୍ରମଧ୍ୟରୁ ବାହାରକରି ମୋତେ ଦେଲେ । ହେ ରଘୁକୁଳପ୍ରିୟ ! ମୁଁ ତୁମ୍ଭ ନିମନ୍ତେ ଦୁଇହସ୍ତରେ ସେହି ମଣି ଗ୍ରହଣକରି ଏବଂ ମସ୍ତକ ଅବନତପୂର୍ବକ ତାହାଙ୍କୁ ପ୍ରଣାମକରି ଆସିବା ନିମନ୍ତେ ତ୍ୱରାନ୍ୱିତ ହେଲି । ମୁଁ ଗମନ ନିମନ୍ତେ ଉତ୍ସାହୀ ହୋଇ ସ୍ୱୀୟ ଶରୀରକୁ ବର୍ଦ୍ଧିତ କରିବାର ଦେଖି ବରବର୍ଣ୍ଣିନୀ ଜନକନନ୍ଦିନୀ ଦୁଃଖହେତୁ ଅଶ୍ରୁପୂର୍ଣ୍ଣ ମୁଖରେ ବାଷ୍ପଗଦ୍‌ଗଦ ସ୍ୱରରେ ଦୀନଭାବରେ କହିଲେ ।୨୭-୩୩। ମୁଁ ଉପରକୁ ଉଠିବାକୁ ଉପକ୍ରମ କରିବାର ଦେଖି ସୀତା ବ୍ୟାକୁଳ ଏବଂ ଶୋକସମାଚ୍ଛନ୍ନ ହୋଇ ମୋତେ କହିଲେ,'ହେ ମହାକପେ ! ତୁମେହିଁ ଭାଗ୍ୟବାନ୍ ।୩୪। ଯେହେତୁ ତୁମେ

ଯଦ୍ଦ୍ରକ୍ଷ୍ୟସି ମହାବାହୁଂ ରାମଂ କମଲଲୋଚନମ୍ ।
ଲକ୍ଷ୍ମଣଂ ଚ ମହାବାହୁଂ ଦେବରଂ ମେ ଯଶସ୍ୱିନମ୍ । ୩୫ ।
ସୀତୟାପ୍ୟେବମୁକ୍ତୋଽହମବ୍ରୁବଂ ମୈଥିଲୀଂ ତଦା ।
ପୃଷ୍ଠମାରୋହ ମେ ଦେବି ! କ୍ଷିପ୍ରଂ ଜନକନନ୍ଦିନି ! । ୩୬ ।
ଯାବତ୍ତେ ଦର୍ଶୟାମ୍ୟଦ୍ୟ ସସୁଗ୍ରୀବଂ ସଲକ୍ଷ୍ମଣମ୍ ।
ରାଘବଂ ଚ ମହାଭାଗେ ! ଭର୍ତ୍ତାରମସିତେକ୍ଷଣେ ! । ୩୭ ।
ସାବ୍ରବୀନ୍ମାଂ ତତୋ ଦେବୀ ନୈଷ ଧର୍ମୋ ମହାକପେ !
ଯତ୍ତେ ପୃଷ୍ଠଂ ସିଷେବେଽହଂ ସ୍ୱବଶା ହରିପୁଙ୍ଗବ ! ୩୮ ।
ପୁରା ଚ ଯଦହଂ ବୀର ! ସ୍ପୃଷ୍ଟା ଗାତ୍ରେଷୁ ରକ୍ଷସା ।
ତତ୍ରାହଂ କିଂ କରିଷ୍ୟାମି କାଲେନୋପନିପୀଡ଼ିତା । ୩୯ ।
ଗଚ୍ଛ ତ୍ୱଂ କପିଶାର୍ଦ୍ଦୂଲ ! ଯତ୍ର ତୌ ନୃପତେଃ ସୁତୌ ।
ଇତ୍ୟେବଂ ସା ସମାଭାଷ୍ୟ ଭୂୟଃ ସଂଦେଷ୍ଟୁମାସ୍ଥିତା । ୪୦ ।
ହନୂମନ୍ ! ସିଂହସଂକାଶୌ ତାବୁଭୌ ରାମଲକ୍ଷ୍ମଣୌ ।
ସୁଗ୍ରୀବଂ ଚ ମହାମାତ୍ୟଂ ସର୍ବାନ୍ ବ୍ରୂୟା ଅନାମୟମ୍ । ୪୧ ।

---

ସେହି କମଲଲୋଚନ ମହାବାହୁ ରାମ ଏବଂ ମୋର ସେହି ମହାବାହୁ ଯଶସ୍ୱୀ ଦେବର ଲକ୍ଷ୍ମଣଙ୍କୁ ଦେଖିବ' । ୩୫ । ସୀତା ଏହିପରି କହିବାଉତ୍ତାରୁ ମୁଁ ତାଙ୍କୁ କହିଲି, 'ହେ ଦେବି ! ଜନକନନ୍ଦିନି ! ତୁମ୍ଭେ ଶୀଘ୍ର ମୋ ପୃଷ୍ଠରେ ଆରୋହଣକର । ହେ କୃଷ୍ଣଲୋଚନେ ! ମହାଭାଗେ ! ତାହାହେଲେ ମୁଁ ଆଜହିଁ ସୁଗ୍ରୀବ ଓ ଲକ୍ଷ୍ମଣଙ୍କ ସହିତ ରାମଙ୍କୁ ତୁମ୍ଭଙ୍କୁ ଦେଖାଇଦେବି ।' ୩୬-୩୭ । ଅନନ୍ତର ସେହି ଦେବୀ ମୋତେ କହିଲେ, 'ହେ ମହାକପେ ବାନରଶ୍ରେଷ୍ଠ ! ମୁଁ ଯେ ସ୍ୱେଚ୍ଛାକ୍ରମେ ତୁମ୍ଭର ପୃଷ୍ଠରେ ଆରୋହଣ କରିବି ଏହା ଧର୍ମାନୁମୋଦିତ ନୁହେଁ । ୩୮ । ହେ ବୀର ! ଏଥିପୂର୍ବେ ରାକ୍ଷସ ଯେ ମୋର ଦେହକୁ ସ୍ପର୍ଶ କରିଅଛି, ସେବିଷୟରେ ମୁଁ ବା କ'ଣ କରନ୍ତି;କାଳ କର୍ତ୍ତୃକ ନିପୀଡ଼ିତ ହୋଇ ତାହା ହୋଇଯାଇଅଛି । ୩୯ । ହେ କପିଶାର୍ଦ୍ଦୂଳ ! ସେହି ରାଜପୁତ୍ର ଦୁହେଁ ଯେଉଁଠାରେ ଅଛନ୍ତି, ତୁମେ ସେହିଠାକୁ ଯାଅ ।' ମୋତେ ସେ ଏହିପରି କହି ପୁଣି ସନ୍ଦେଶ ଦେଲେ । ୪୦ । 'ହେ ହନୁମନ୍ ! ସିଂହସଦୃଶ ପରାକ୍ରମୀ ରାମ ଓ ଲକ୍ଷ୍ମଣ ଏବଂ ଅମାତ୍ୟ ସହିତ ସୁଗ୍ରୀବ ଏ ସମସ୍ତଙ୍କୁ ମୋର କୁଶଳ ସମ୍ବାଦ କହିବ । ୪୧ । ଆଜ ଯେପରି ମହାବାହୁ ମୋତେ ଏ ଦୁଃଖସାଗରରୁ

ଯଥା ଚ ସ ମହାବାହୁର୍ମାଂ ତାରୟତୁ ରାଘବଃ ।
ଅସ୍ମାଦ୍ଦୁଃଖାମ୍ବୁସଂରୋଧାତ୍ତ୍ୱମାଖ୍ୟାତୁମର୍ହସି । ୪୨ ।
ଇଦଂ ଚ ତୀବ୍ରଂ ମମ ଶୋକବେଗମ୍
ରକ୍ଷୋଭିରେଭିଃ ପରିଭର୍ତ୍ସନଂ ଚ ।
ବ୍ରୂୟାସ୍ତୁ ରାମସ୍ୟ ଗତଃ ସମୀପମ୍
ଶିବଶ୍ଚ ତେଽଧ୍ୱାସ୍ତୁ ହରିପ୍ରବୀର ! । ୪୩ ।
ଏତତ୍ତବାର୍ଯ୍ୟା ନୃପ ! ସଂଯତା ସା
ସୀତା ବଚଃ ପ୍ରାହ ବିଷାଦପୂର୍ବମ୍ ।
ଏତଚ୍ଚ ବୁଦ୍ଧ୍ୱା ଗଦତୋ ଯଥା ତ୍ୱମ୍
ଶ୍ରଦ୍ଧସ୍ୱ ସୀତାଂ କୁଶଲାଂ ସମଗ୍ରାମ୍ । ୪୪ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ ସୁନ୍ଦରକାଣ୍ଡେ ସୀତାଭାଷିତାନୁବଚନଂ ନାମ ସପ୍ତଷଷ୍ଟିତମଃ ସର୍ଗଃ ।

---

ଉଦ୍ଧାର କରିବେ ସେ ବିଷୟରେ ତୁମେ ତାଙ୍କୁ କହିବା ଉଚିତ । ୪୨ । ହେ ବାନରଶ୍ରେଷ୍ଠ ! ତୁମ୍ଭେ ରାମଙ୍କ ନିକଟକୁ ଯାଇ ମୋର ଏହି ନିରନ୍ତରସ୍ଥ ଶୋକାବେଗ ଏବଂ ରାକ୍ଷସୀମାନଙ୍କ କର୍ତ୍ତୃକ ମୋର ଏହି ଭର୍ତ୍ସନା ଜଣାଇବ । ପଥମଧ୍ୟରେ ତୁମ୍ଭର ମଙ୍ଗଳ ହେଉ’ । ୪୩ । ହେ ରାଜନ୍ ! ଆର୍ଯ୍ୟା ସୀତା ଆଗ୍ରହପୂର୍ବକ ବିଷାଦସହକାରେ ତୁମ୍ଭ ଉଦ୍ଦେଶ୍ୟରେ ଏହି କଥା କହିଛନ୍ତି । ମୁଁ ଏ ଯାହା କହିଲି ସେ କଥା ବୁଝି ତୁମ୍ଭେ ବିଶ୍ୱାସକର ଯେ ସୀତା ସର୍ବଥା କୁଶଳରେ ଅଛନ୍ତି” । ୪୪ ।

# ଅଷ୍ଟଷଷ୍ଟିତମଃ ସର୍ଗଃ

## ହନୂମଦ୍ରମାଶ୍ୱାସବଚନାନୁବାଦଃ

ଅଥାହମୁତ୍ତରଂ ଦେବ୍ୟା ପୁନରୁକ୍ତଃ ସସଂଭ୍ରମମ୍ ।
ତବ ସ୍ନେହାନ୍ନରବ୍ୟାଘ୍ର ! ସୌହାର୍ଦାଦନୁମାନ୍ୟ ଚ ।୧।
ଏବଂ ବହୁବିଧଂ ବାଚ୍ୟୋ ରାମୋ ଦାଶରଥିସ୍ତ୍ୱୟା ।
ଯଥା ମାଂ ପ୍ରାପ୍ନୁୟାଚ୍ଛୀଘ୍ରଂ ହତ୍ୱା ରାବଣମାହବେ ।୨।
ଯଦି ବା ମନ୍ୟସେ ବୀର ! ବସୈକାହମରିଂଦମ !
କସ୍ମିଂଶ୍ଚିତ୍ସଂବୃତେ ଦେଶେ ବିଶ୍ରାନ୍ତଃ ଶ୍ୱୋ ଗମିଷ୍ୟସି ।୩।
ମମ ଚାପ୍ୟଲ୍ପଭାଗ୍ୟାୟାଃ ସାଂନିଧ୍ୟାତ୍ତବ ବାନର !
ଅସ୍ୟ ଶୋକବିପାକସ୍ୟ ମୁହୂର୍ତ୍ତଂ ସ୍ୟାଦ୍ୱିମୋକ୍ଷଣମ୍ ।୪।
ଗତେ ହି ତ୍ୱୟି ବିକ୍ରାନ୍ତ ! ପୁନରାଗମନାୟ ବୈ ।
ପ୍ରାଣାନାମପି ସଂଦେହୋ ମମ ସ୍ୟାନ୍ନାତ୍ର ସଂଶୟଃ ।୫।
ତବାଦର୍ଶନଜଂ ଚାପି ଭୂୟଂ ମାଂ ପରିତାପୟେତ୍ ।
ଦୁଃଖାଦ୍ଦୁଃଖପରାଭୂତାଂ ଦୁର୍ଗତାଂ ଦୁଃଖଭାଗିନୀମ୍ ।୬।

---

# ୬୮ତମ ସର୍ଗ

## (ରାମଙ୍କୁ ହନୁମାନଙ୍କର ଆଶ୍ୱାସନାବାଣୀ)

"ହେ ନରବ୍ୟାଘ୍ର ! ତଦନନ୍ତର ଆପଣଙ୍କର ମୋ ପ୍ରତି ସ୍ନେହ ଏବଂ ସୌହାର୍ଦ୍ୟ ଥିବାହେତୁରୁ ଦେବୀ ମୋତେ ସମ୍ମାନ ଦେଖାଇ କହିଲେ । ୧ । 'ତୁମେ ଏହିପ୍ରକାରେ ବହୁବିଧ କଥା ଦଶରଥନନ୍ଦନ ରାମଙ୍କୁ କହିବ, ଯେପରିକି ସେ ଶୀଘ୍ର ଯୁଦ୍ଧରେ ରାବଣକୁ ନିହତକରି ମୋତେ ଲାଭକରିବେ । ୨ । ହେ ବୀର ଶତ୍ରୁସୂଦନ ! ଯଦି ତୁମ୍ଭ ମନକୁ ପାଉଛି, ତେବେ କୌଣସି ନିଭୃତ ସ୍ଥାନରେ ଗୋଟିଏ ଦିନ ରହ; ବିଶ୍ରାମଲାଭ କରିସାରି କାଲିଯିବ । ୩ । ହେ ବାନର ! ତୁମ୍ଭେ ମୋ ନିକଟରେ ଥିଲେ ମନ୍ଦଭାଗିନୀ ମୋର ଏହି ଶୋକବିପାକର ମଧ୍ୟ ମୁହୂର୍ତ୍ତକ ପାଇଁ ବିମୋଚନ ହୋଇପାରେ । ୪ । ବିକ୍ରମଶାଳୀ ତୁମେ ପୁଣି ଫେରି ଆସିବା ଉଦ୍ଦେଶ୍ୟରେ ହେଲେ ମଧ୍ୟ, ଏଠାରୁ ଚାଲିଯିବାଉତ୍ତାରୁ ମୋର ଜୀବନ ରହିବ କି ନାହିଁ ସନ୍ଦେହ । ୫ । ଅଭାଗିନୀ ମୁଁ ଦୁରବସ୍ଥାପନ୍ନ ହୋଇଅଛି । ଦୁଃଖ ପରେ ଦୁଃଖ ମୋତେ ଅଭିଭୂତ କରିଚକାଉଅଛି; ସୁତରାଂ ତୁମ୍ଭକୁ ନ ଦେଖି ମୋର ଯେଉଁ ଶୋକ ଜାତହେବ, ତାହା ମୋତେ

ଅୟଂ ଚ ବୀର ! ସଂଦେହସ୍ତିଷ୍ଠତୀବ ମହାନ୍ମମାଗ୍ରତଃ ।
ସୁମହାଂସ୍ତ୍ୱତ୍ସହାୟେଷୁ ହର୍ୟୃକ୍ଷେଷୁ ହରୀଶ୍ୱର ॥ ୭ ।
କଥଂ ନୁ ଖଲୁ ଦୁଷ୍ପାରଂ ତରିଷ୍ୟନ୍ତି ମହୋଦଧିମ୍ ।
ତାନି ହର୍ୟୃକ୍ଷସୈନ୍ୟାନି ତୌ ବା ନରବରାତ୍ମଜୌ । ୮ ।
ତ୍ରୟାଣାମେବ ଭୂତାନାଂ ସାଗରସ୍ୟେହ ଲଙ୍ଘନେ ।
ଶକ୍ତିଃ ସ୍ୟାଦ୍ୱୈନତେୟସ୍ୟ ବାୟୋର୍ବା ତବ ଚାନଘ ! । ୯ ।
ତଦସ୍ମିନ୍ କାର୍ଯନିର୍ଯୋଗେ ବୀରୈବଂ ଦୁରତିକ୍ରମେ ।
କିଂ ପଶ୍ୟସି ସମାଧାନଂ ବ୍ରୂହି ବାକ୍ୟବିଦାଂବର ! । ୧୦।
କାମମସ୍ୟ ତ୍ୱମେବୈକଃ କାର୍ଯସ୍ୟ ପରିସାଧନେ ।
ପର୍ଯାପ୍ତଃ ପରବୀରଘ୍ନ ! ଯଶସ୍ୟସ୍ତେ ବଲୋଦୟଃ ।।୧୧ ।
ବଲୈଃ ସମଗ୍ରୈର୍ଯଦି ମାଂ ହତ୍ୱା ରାବଣମାହବେ ।
ବିଜୟୀ ସ୍ୱପୁରୀଂ ରାମୋ ନୟେତ୍ତତ୍ସ୍ୟାଦ୍ୟଶସ୍କରମ୍ । ୧
ଯଥାହଂ ତସ୍ୟ ବୀରସ୍ୟ ବନାଦୁପଧିନା ହୃତା ।
ରକ୍ଷସା ତଦ୍ଭୟାଦେବ ତଥା ନାର୍ହତି ରାଘବଃ । ୧୩।

---

ପରିତପ୍ତ କରିପକାଇବ । ୬ । ହେ ବୀର ! ତୁମ୍ଭର ସହାୟକ ଋକ୍ଷ ଏବଂ ବାନର-ମାନଙ୍କ ବିଷୟରେ ମୋ ସମ୍ମୁଖରେ ଏହି ଘୋର ସନ୍ଦେହ ଉପସ୍ଥିତ ହେଉଅଛି ଯେ ଏହି ସମସ୍ତ ଋକ୍ଷ ଏବଂ ବାନରସୈନ୍ୟ ତଥା ସେହି ରାଜକୁମାରଦୁହେଁ କପରି ଏହି ଦୁଷ୍ପାର ମହାସାଗରକୁ ପାରିହେବେ । ୭-୮ । ହେ ନିଷ୍ପାପ ! ପ୍ରାଣୀମାନଙ୍କ ମଧ୍ୟରେ ଏ ସମୁଦ୍ର ଲଙ୍ଘନ କରିବାକୁ କେବଳ ବିନତାନନ୍ଦନ ଗରୁଡ଼, ପବନ ଏବଂ ତୁମ୍ଭେ ଏହି ତିନିଜଣଙ୍କରହିଁ ସାମର୍ଥ୍ୟ ଅଛି । ୯ । ଅତଏବ ହେ ବାକ୍ୟକୁଶଳ ବୀର ! ଏହି ଦୁରତିକ୍ରମଣୀୟ କାର୍ଯ୍ୟନିମନ୍ତେ ତୁମ୍ଭେ କି ଉପାୟ ଦେଖିପାରୁଛ ତାହା ମୋତେ କହ ।୧୦। ହେ ଶତ୍ରୁବୀରଘ୍ନ ! ତୁମ୍ଭେ ଏକାକୀହିଁ ଅନାୟାସରେ ଏହି କାର୍ଯ୍ୟ ସମ୍ପାଦନ କରିବାକୁ ସମର୍ଥ ଅଟ । କାରଣ ତୁମ୍ଭର ବଳବୀର୍ଯ୍ୟ ଯଶସ୍କର ଅଟେ । ୧୧ । ରାମ ଯଦି ସମଗ୍ର ସେନା ସହିତ ରାବଣକୁ ନିହତକରି ବିଜୟୀ ହୋଇ ମୋତେ ନିଜ ପୁରୀକୁ ନେଇଯାନ୍ତେ, ତେବେ ତାହା ତାଙ୍କ ପକ୍ଷରେ ଯଶସ୍କର ହୁଅନ୍ତା । ୧୨ । ଯେ ରାବଣ ସେହି ବୀରଙ୍କ ଉପରେ ମୋତେ ଯେପରି ଛଳନାପୂର୍ବକ ବନରୁ ଅପହରଣ କରିଅଛି,ରାମଙ୍କର ଅବଶ୍ୟ ତାହା କରିବା କଦାପି ଉଚିତ ନୁହେଁ । ୧୩ । କାକୁତ୍ସ୍ଥନନ୍ଦନ, ଶତ୍ରୁସୈନ୍ୟର ପୀଡ଼ାଦାୟକ, ରାମ

ବଳୈସ୍ତୁ ସଂକୁଳାଂ କୃତ୍ୱା ଲଙ୍କାଂ ପରବଳାର୍ଦ୍ଦନଃ ।
ମାଂ ନୟେଦ୍ ଯଦି କାକୁତ୍ସ୍ଥସ୍ତତ୍ତସ୍ୟ ସଦୃଶଂ ଭବେତ୍ । ୧୪ ।
ତଦ୍ ଯଥା ତସ୍ୟ ବିକ୍ରାନ୍ତମନୁରୂପଂ ମହାତ୍ମନଃ ।
ଭବତ୍ୟାହବଶୂରସ୍ୟ ତଥା ତ୍ୱମୁପପାଦୟ । ୧୫ ।
ତଦର୍ଥୋପହିତଂ ବାକ୍ୟଂ ପ୍ରଶ୍ରିତଂ ହେତୁସଂହିତମ୍ ।
ନିଶମ୍ୟାହଂ ତତଃ ଶେଷଂ ବାକ୍ୟମୁତ୍ତରମବ୍ରୁବମ୍ । ୧୬ ।
ଦେବ ! ହର୍ୟୃକ୍ଷସୈନ୍ୟାନାମୀଶ୍ୱରଃ ପ୍ଲବତାଂ ବରଃ ।
ସୁଗ୍ରୀବଃ ସତ୍ତ୍ୱସଂପନ୍ନସ୍ତ୍ୱଦର୍ଥେ କୃତନିଶ୍ଚୟଃ । ୧୭ ।
ତସ୍ୟ ବିକ୍ରମସଂପନ୍ନାଃ ସତ୍ତ୍ୱବନ୍ତୋ ମହାବଳାଃ ।
ମନଃସଂକଳ୍ପସଦୃଶା ନିଦେଶେ ହରୟଃ ସ୍ଥିତା । ୧୮ ।
ଯେଷାଂ ନୋପରି ନାଧସ୍ତାନ୍ନ ତିର୍ଯକ୍ ସଜ୍ଜତେ ଗତିଃ ।
ନ ଚ କର୍ମସୁ ସୀଦନ୍ତି ମହତ୍ସ୍ୱମିତତେଜସଃ । ୧୯ ।
ଅସକୃତ୍ତୈର୍ମହାଭାଗୈର୍ବାନରୈର୍ବଲସଂଯୁତୈଃ ।
ପ୍ରଦକ୍ଷିଣୀକୃତା ଭୂମିର୍ବାୟୁମାର୍ଗାନୁସାରିଭିଃ । ୨୦ ।
ମଦ୍‌ବିଶିଷ୍ଟାଶ୍ଚ ତୁଲ୍ୟାଶ୍ଚ ସନ୍ତି ତତ୍ର ବନୌକସଃ ।
ମତ୍ତଃ ପ୍ରତ୍ୟବରଃ କଶ୍ଚିନ୍ନାସ୍ତି ସୁଗ୍ରୀବସଂନିଧୌ । ୨୧ ।

---

ଲଙ୍କାକୁ ନିଜର ସୈନ୍ୟମାନଙ୍କଦ୍ୱାରା ସମାଚ୍ଛାଦିତ କରି ଯଦି ମୋତେ ନେଇଯାଆନ୍ତେ ତାହାହେଲେ ତାହା ତାଙ୍କର ଉପଯୁକ୍ତ କାର୍ଯ୍ୟ ହୁଅନ୍ତା । ୧୪ । ସୁତରାଂ ଯେଉଁ କାର୍ଯ୍ୟ ସେହି ଯୁଦ୍ଧଶୂର ମହାତ୍ମା ରାମଙ୍କର ଅନୁରୂପ ହେବ ଏବଂ ଯଦ୍ଦ୍ୱାରା ତାଙ୍କର ବିକ୍ରମ ପ୍ରକାଶ ପାଇବ, ତୁମ୍ଭେ ସେହିପରି ବ୍ୟବସ୍ଥା କର' । ୧୫ । ମୁଁ ତାଙ୍କର ଏହି ଯୁକ୍ତିଯୁକ୍ତ, ଅର୍ଥସମ୍ପନ୍ନ ଏବଂ ସ୍ନେହମୟ ବଚନ ଶୁଣି ଶେଷରେ ଉତ୍ତରଦେଲି । । ୧୬ । 'ହେ ଦେବି ! ବାନର ଓ ଋକ୍ଷସୈନ୍ୟମାନଙ୍କର ଅଧିପତି, ପରାକ୍ରମଶାଳୀ, ବାନରଶ୍ରେଷ୍ଠ, ସୁଗ୍ରୀବ ତୁମ୍ଭଙ୍କୁ ଉଦ୍ଧାର କରିବାପାଇଁ କୃତସଂକଳ୍ପ ହୋଇଅଛନ୍ତି ।୧୭। ମହାପରାକ୍ରମୀ, ସାହସୀ, ମହାବଳୀ ଏବଂ ମନସଦୃଶ ଶୀଘ୍ରଗାମୀ ବାନରମାନେ ତାଙ୍କର ଆଜ୍ଞାଧୀନ ହୋଇ ରହିଛନ୍ତି । ୧୮ । କି ଊର୍ଦ୍ଧ୍ୱ, କି ଅଧଃ କି ତିର୍ଯକ୍ କୌଣସି ଦିଗରେ ସେମାନଙ୍କର ଗତିରୋଧ ହୁଏ ନାହିଁ । ସେହି ଅମିତତେଜସ୍ୱୀ ବାନରମାନେ କେବେ କୌଣସି ମହତ୍ କାର୍ଯ୍ୟରେ ଅବସନ୍ନ ହୁଅନ୍ତି ନାହିଁ ।୧୯। ସେହି ମହାଭାଗ ବାନରମାନେ ବଳଦୃପ୍ତ ହୋଇ ବହୁବାର ବାୟୁମାର୍ଗରେ ଏ ଭୂମଣ୍ଡଳ ପ୍ରଦକ୍ଷିଣ କରିଅଛନ୍ତି ।୨୦। ସୁଗ୍ରୀବଙ୍କ ନିକଟରେ ମୋ ଅପେକ୍ଷା ବିଶିଷ୍ଟ ଏବଂ ମୋ ସମାନ ବହୁ ବାନର ଅଛନ୍ତି; କିନ୍ତୁ ମୋଠାରୁ ନିକୃଷ୍ଟ କୌଣସି ବାନର ସେଠାରେ ନାହିଁ । ୨୧ ।

ଅହଂ ତାବଦିହ ପ୍ରାପ୍ତଃ କିଂ ପୁନସ୍ତେ ମହାବଲାଃ ।
ନ ହି ପ୍ରକୃଷ୍ଟାଃ ପ୍ରେଷ୍ୟନ୍ତେ ପ୍ରେଷ୍ୟନ୍ତେ ହୀତରେ ଜନାଃ । ୨୨ ।
ତଦଲଂ ପରିତାପେନ ଦେବି ! ମନ୍ୟୁରପୈତୁ ତେ ।
ଏକୋତ୍ପାତେନ ତେ ଲଙ୍କାମେଷ୍ୟନ୍ତି ହରିଯୂଥପାଃ । ୨୩ ।
ମମ ପୃଷ୍ଠଗତୌ ତୌ ଚ ଚନ୍ଦ୍ରସୂର୍ଯାବିବୋଦିତୌ ।
ତ୍ୱତ୍ସକାଶଂ ମହାଭାଗେ ! ନୃସିଂହାବାଗମିଷ୍ୟତଃ । ୨୪ ।
ଅରିଘ୍ନଂ ସିଂହସଂକାଶଂ କ୍ଷିପ୍ରଂ ଦ୍ରକ୍ଷ୍ୟସି ରାଘବମ୍ ।
ଲକ୍ଷ୍ମଣଂ ଚ ଧନୁଷ୍ମନ୍ତଂ ଲଙ୍କାଦ୍ୱାରମୁପାଗତମ୍ । ୨୫ ।
ନଖଦଂଷ୍ଟ୍ରାୟୁଧାନ୍ ବୀରାନ୍ ସିଂହଶାର୍ଦୂଳବିକ୍ରମାନ୍ ।
ବାନରାନ୍ ବାରଣେନ୍ଦ୍ରାଭାନ୍ କ୍ଷିପ୍ରଂ ଦ୍ରକ୍ଷ୍ୟସି ସଂଗତାନ୍ । ୨୬ ।
ଶୈଳାମ୍ବୁଦନିକାଶାନାଂ ଲଙ୍କାମଲୟସାନୁଷୁ ।
ନର୍ଦତାଂ କପିମୁଖ୍ୟାନାଂ ନଚିରାଚ୍ଛ୍ରୋଷ୍ୟସେ ସ୍ୱନମ୍ । ୨୭ ।
ନିବୃତ୍ତବନବାସଂ ଚ ତ୍ୱୟା ସାର୍ଧମରିନ୍ଦମମ୍ ।
ଅଭିଷିକ୍ତମୟୋଧ୍ୟାୟାଂ କ୍ଷିପ୍ରଂ ଦ୍ରକ୍ଷ୍ୟସି ରାଘବମ୍ । ୨୮ ।

---

ମୁଁ ଯେତେବେଳେ ଏଠାକୁ ଆସି ପହଞ୍ଚିପାରିଅଛି, ସେତେବେଳେ ସେହି ମହାବଳୀ ବାନରମାନଙ୍କ କଥା କଣ କହିବା ? ପ୍ରଧାନ ବ୍ୟକ୍ତିମାନଙ୍କୁ କେହି କେବେ ଦୂତରୂପେ ପଠାଏ ନାହିଁ; ଇତର ସାଧାରଣ ବ୍ୟକ୍ତିହିଁ ଏପରି କାର୍ଯ୍ୟରେ ପ୍ରେରିତ ହୋଇଥାନ୍ତି । ୨୨ । ସୁତରାଂ ହେ ଦେବି ! ତୁମ୍ଭର ବିଳାପ କରିବାର ପ୍ରୟୋଜନ ନାହିଁ । ତୁମ୍ଭର ବିଷାଦ ଦୂରହେଉ । ସେହି ସମସ୍ତ ବାନରଦଳପତି ଏକାଡିଆଁରେ ଲଙ୍କାକୁ ଚାଲି ଆସିବେ । ୨୩ । ହେ ମହାଭାଗେ ! ସେହି ଦୁଇ ନରସିଂହ ରାମ ଲକ୍ଷ୍ମଣ ମୋ ପୃଷ୍ଠରେ ଆରୋହଣ କରି ଉଦିତ ଚନ୍ଦ୍ର ସୂର୍ଯ୍ୟଙ୍କ ସଦୃଶ ତୁମ୍ଭ ନିକଟରେ ଆସି ଉପସ୍ଥିତ ହେବେ । ୨୪ । ତୁମ୍ଭେ ଅବିଳମ୍ବେ ଦେଖିବ, ସିଂହତୁଲ୍ୟ ପରାକ୍ରମୀ, ଶତ୍ରୁଘାତୀ ରାମ ଏବଂ ଲକ୍ଷ୍ମଣ ଧନୁ ହାତରେ ଧରି ଲଙ୍କାଦ୍ୱାରରେ ଆସି ଉପସ୍ଥିତ ହେବେ । ୨୫ । ତୁମ୍ଭେ ଶୀଘ୍ର ଦେଖିବ, ନଖଦଂଷ୍ଟ୍ରାୟୁଧ, ସିଂହଶାର୍ଦୂଳ-ସଦୃଶ ପରାକ୍ରମୀ, ଗଜରାଜସଦୃଶ ବାନରଗଣ ଏକତ୍ର ସମବେତ ହୋଇଅଛନ୍ତି । ୨୬ । ତୁମ୍ଭେ ଅବିଳମ୍ବେ ଶୁଣିବ, ପର୍ବତାକାର ମେଘସଦୃଶ ବାନରଗଣ ଲଙ୍କାର ମଳୟ ପର୍ବତର ସାନୁଦେଶରେ ଗର୍ଜନ କରୁଅଛନ୍ତି । ୨୭ । ତୁମ୍ଭେ ଅତିଶୀଘ୍ର ଦେଖିବ, ବନବାସରୁ ଫେରିଯାଇ ଅରିନ୍ଦମ ରାମ ଅଯୋଧ୍ୟାରେ ତୁମ୍ଭ ସହିତ ଅଭିଷିକ୍ତ ହେବେ । ୨୮ ।

ତତୋ ମୟା ବାଗ୍‌ଭିରଦୀନଭାଷିଣୀ
ଶିବାଭିରିଷ୍ଟାଭିରଭିପ୍ରସାଦିତା ।
ଜଗାମ ଶାନ୍ତିଂ ମମ ମୈଥିଲାତ୍ମଜା
ତବାପି ଶୋକେନ ତଥାଽତିପୀଡ଼ିତା । ୨୯ ।

ଇତ୍ୟାର୍ଷେ ଶ୍ରୀମଦ୍ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ଚତୁର୍ବିଂଶତିସହସ୍ରିକାୟାଂ ସଂହିତାୟାଂ ସୁନ୍ଦରକାଣ୍ଡେ ହନୂମଦ୍ରାମାଶ୍ୱାସବଚନାନୁବାଦୋ ନାମ ଅଷ୍ଟଷଷ୍ଟିତମଃ ସର୍ଗଃ ।

## ଶ୍ରୀମଦ୍‌ବାଲ୍ମୀକିରାମାୟଣେ ସୁନ୍ଦରକାଣ୍ଡଃ ସମ୍ପୂର୍ଣ୍ଣଃ

---

ସୀତା ତୁମ୍ଭ ଶୋକରେ ତାଦୃଶ ପ୍ରପୀଡ଼ିତ ହୋଇଥିଲେ ମଧ୍ୟ ମୋଠାରୁ ଏହିପରି ଅଭୀଷ୍ଟ ଶୁଭବାକ୍ୟ ଶ୍ରବଣକରି ଜନକନନ୍ଦିନୀଙ୍କ ମନରେ ଶାନ୍ତି ଜାତହେଲା” । ୨୯ ।

---

କଟକ ସତ୍ୟବାଦୀ ପ୍ରେସରେ ଶ୍ରୀ ଉଦୟନାଥ ଷଡ଼ଙ୍ଗୀଙ୍କ ଦ୍ୱାରା ମୁଦ୍ରିତ—୧୯୫୭